# ମାନସିଂହଙ୍କ ବିଚାରଧାରା

( A THESIS PRODUCED UNDER UTKAL UNIVERSITY
FOR Ph. D. DEGREE, 1988 )


**ଅଧ୍ୟାପକ ଶ୍ରୀଚରଣ ମହାନ୍ତ**

ଓଡ଼ିଆ ବିଭାଗ, ସରକାରୀ ମହାବିଦ୍ୟାଳୟ, ରାଉରକେଲା

REGD. No. 85 ARTS, 1977 - 73

ତତ୍ତ୍ୱାବଧାରକ

**ଡକ୍ଟର ନିତ୍ୟାନନ୍ଦ ଶତପଥୀ**

ପ୍ରଫେସର, ସତ୍ୟବାଦୀ ଚେୟାର

ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର

# ମାନସିଂହଙ୍କ ବିଚାରଧାରା

( A THESIS PRODUCED UNDER UTKAL UNIVERSITY
FOR Ph. D. DEGREE, 1988 )

**ଅଧ୍ୟାପକ ଶ୍ରୀଚରଣ ମହାନ୍ତ**

ଓଡ଼ିଆ ବିଭାଗ, ସରକାରୀ ମହାବିଦ୍ୟାଳୟ, ରାଉରକେଲା

REGD. No. 85 ARTS, 1977 - 73

ତତ୍ତ୍ୱାବଧାରକ

**ଡକ୍ଟର ନିତ୍ୟାନନ୍ଦ ଶତପଥୀ**

ପ୍ରଫେସର, ସତ୍ୟବାଦୀ ଚେୟାର

ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର

This is to certify that Sricharan Mohanty, Lecturer
)riya, Government College Rourkela has produced this thesis
"MANSINGHANKA BICHARADHARA"( ମାନସିଂହଙ୍କ ବିଚାରଧାରା )
›r my supervision and guidance. The scholar has exerted a
in moving from place to place and in meeting personalities
substantiate his analogy. He has collected many documents
n different persons, including Mrs. Hemalata Mansingh. The
›lar has been inspired to undertake research on Dr. Mansingh
le he was a student in P.G. Department of Oriya, Visva Bharati
versity, Santiniketan. This was manifested from his receiving
zes for three consecutive years on the Annual Essay compe-
ion on Dr. Mansingh. I understand that his relentless efforts
e been crowned with successes. Notwithstanding, from the
ly period of his teaching career Sri Mohanty was determined
do some higher research on Dr. Mansingh.

All the theses produced so far on Dr. Mansingh are
ıfined to his poetic works. None has gone deep into his talent
prose work. Now this work relates to his prose work, which
riously is a gigantic job for any scholar to reach at any
ference. He has tried to collect the scattered works of
. Mansingh from published and unpublished sources and has
alysed with his own vision and language. I wish this effort
success.

## ଘୋଷଣା ପତ୍ର

ଏତଦ୍ୱାରା ମୁଁ ଶ୍ରୀ ଶ୍ରୀଚରଣ ମହାନ୍ତି, ଅଧ୍ୟାପକ ଓଡ଼ିଆ ବିଭାଗ, ରାଉରକେଲା ସରକାରୀ ମହାବିଦ୍ୟାଳୟ, ଘୋଷଣା କରୁଅଛି ଯେ, ଡକ୍ଟର ନିତ୍ୟାନନ୍ଦ ଶତପଥୀ, ପ୍ରଫେସର, ସତ୍ୟବାଦୀ ଚେୟାର ଓଡ଼ିଆ ବିଭାଗ ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀ ବିହାରଙ୍କ ତତ୍ତ୍ୱାବଧାନରେ ଲିଖିତ ମୋର ନିବନ୍ଧ "ମାନସିଂହଙ୍କ ବିଚାରଧାରା" ମୋର ନିଜସ୍ୱ ତଥା ମୌଳିକ ରଚନା । ଏହା ପୂର୍ବରୁ କୌଣସି ଡିଗ୍ରୀ କିମ୍ବା ଡିପ୍ଲୋମା ନିମନ୍ତେ ଉପସ୍ଥାପିତ ହୋଇନାହିଁ ।

(ଶ୍ରୀ ଶ୍ରୀଚରଣ ମହାନ୍ତି)

ରେଜି•ନଂ• 85, ଆର୍ଟସ୍–1977–78•

ଅଧ୍ୟାପକ, ଓଡ଼ିଆ ବିଭାଗ, ସରକାରୀ ମହାବିଦ୍ୟାଳୟ,

ରାଉରକେଲା–769004•

## କୃତଜ୍ଞତା ଜ୍ଞାପନ

କବି ଓ ପ୍ରାବନ୍ଧିକ ଡକ୍ଟର ମାୟାଧର ମାନସିଂହଙ୍କ ପ୍ରତି ମୋର ଶ୍ରଦ୍ଧା ତଥା ଆକର୍ଷଣ ବହୁଦିନର । ବିଶ୍ୱ ଭାରତୀ, ଶାନ୍ତିନିକେତନ, ଓଡିଆ ବିଭାଗରେ ଉପାଧ୍ୟୁତ୍ତର ଶ୍ରେଣୀରେ ଛାତ୍ର ଥିଲାବେଳେ ମୁଁ ଡକ୍ଟର ସୂର୍ଯ୍ୟକାନ୍ତ ଦାସଙ୍କ ଦ୍ୱାରା ଆୟୋଜିତ 'ମାୟାଧର ମାନସିଂହ ସ୍ମାରକୀ ପ୍ରବନ୍ଧ ପ୍ରତିଯୋଗିତା'ରେ ଅଂଶ ଗ୍ରହଣ କରିଥିଲି ଓ ତିନିଥର ପୁରସ୍କୃତ ହୋଇଥିଲି । ପୂର୍ବରୁ ମାନସିଂହଙ୍କ ପ୍ରତି ଥିବା ଶ୍ରଦ୍ଧା, ତାଙ୍କ ସାହିତ୍ୟର ଅଧ୍ୟୟନ ପାଇଁ ମତେ ଅନୁପ୍ରେରିତ କରିଥିଲା ଓ ଯାହାର ପରିଣାମ ହୋଇଥିଲା, ମୋର ପୂର୍ବରୁ ପ୍ରକାଶିତ 'ମାନସିଂହ ମାନସ' ଗ୍ରନ୍ଥ ।

ଦୀର୍ଘ ବାର ତେର ବର୍ଷ ଧରି ମାନସିଂହ ସାହିତ୍ୟ ଚର୍ଚ୍ଚାରେ ମୁଁ ପ୍ରବୃତ୍ତ । ମାନସିଂହ ସାହିତ୍ୟ ଲୋକର ବିଭିନ୍ନ ପରିସର ଏବେ ମଧ୍ୟ ଅନୁଦ୍‌ଘାଟିତ । ମାନସିଂହଙ୍କର ବିପୁଳ ଅକ୍ଷର କୀର୍ତ୍ତି ମଧ୍ୟରୁ ତାଙ୍କର କାବ୍ୟ କବିତା ଅଧିକ ଭାବରେ ପାଠକ, ଆଲୋଚକ ତଥା ଗବେଷକମାନଙ୍କର ଦୃଷ୍ଟି ଆକର୍ଷଣ କରିଛି । କବି ମାନସିଂହ ବରେଣ୍ୟ ସତ, କିନ୍ତୁ ତାଙ୍କଠାରୁ ଅଧିକ ଉଜ୍ଜ୍ୱଳ ମନୀଷାର ଅଧିକାରୀ ଚିନ୍ତାନାୟକ ମାନସିଂହ । ତେଣୁ ଗବେଷଣାର ବିଷୟ ଗ୍ରହଣ କଲାବେଳେ ମୁଁ 'ମାନସିଂହଙ୍କ ବିଚାରଧାରା' ବିଷୟକୁ ଗ୍ରହଣ କରିଛି ।

ଗବେଷଣା ଏକ ପବିତ୍ର ସାଧନା । ଏଥିରେ ସିଦ୍ଧିଲାଭ କରିବାକୁ ହେଲେ ଅବଧୂତଙ୍କ ଭଳି ବହୁ ଗୁରୁଙ୍କର ସାହାଯ୍ୟ ନେବାକୁ ପଡେ ଓ ବିଭିନ୍ନ ତୀର୍ଥରେ ବୁଡ ପକାଇବାକୁ ପଡେ । ଏ ଦୀର୍ଘ ଦିନ ଭିତରେ ଯାହାଙ୍କର ନିରବଚ୍ଛିନ୍ନ ଶ୍ରଦ୍ଧା, ଉପଦେଶ, ପରାମର୍ଶ ତଥା ନିର୍ଦ୍ଦେଶ ମତେ ବାଟ କଢେଇ ଆଣିଛି, ସେ ହେଲେ ମୋର ଗୁରୁଦେବ ପ୍ରଫେସର ଡକ୍ଟର ନିତ୍ୟାନନ୍ଦ ଶତପଥୀ । ତାଙ୍କର ନିର୍ଦ୍ଦେଶ ଅନୁସାରେ ମାନସିଂହଙ୍କୁ ଚିହ୍ନିବା ଓ ଜାଣିବା ପାଇଁ ତାଙ୍କର ଜନ୍ମସ୍ଥଳୀ ଓ କର୍ମସ୍ଥଳୀ ମୁଁ ପରିଭ୍ରମଣ କରିଛି ଓ ତାଙ୍କର ସହପାଠୀ, ବନ୍ଧୁ, ସମ୍ପର୍କୀୟ ତଥା ଛାତ୍ରମାନଙ୍କ ଠାରୁ ଅକୁଣ୍ଠ ସହଯୋଗ ବି ପାଇଛି । ବିଶେଷତଃ କବିପତ୍ନୀ ଶ୍ରୀମତୀ ହେମଲତା ମାନସିଂହଙ୍କର ସାହାଯ୍ୟ ଗଭୀର କୃତଜ୍ଞତା ସହ ମୁଁ ସ୍ମରଣ କରୁଛି ।

ଉତ୍କଳ ବିଶ୍ୱବିଦ୍ୟାଳୟରେ ଏମ୍.ଫିଲ୍. ଅଧ୍ୟୟନ କାଳରେ ମୋର ଗୁରୁ ପ୍ରଫେସର ଡକ୍ଟର କୃଷ୍ଣଚରଣ ସାହୁ ନିବନ୍ଧର ନାମ କରଣ ଓ ତତ୍‌ସମ୍ପର୍କୀୟ କେତେକ ସୂଚନା ଦେଇ ମତେ ଅନୁଗୃହିତ କରିଥିଲେ, ଏହି ଚର୍ଚ୍ଚା ନିବନ୍ଧର ଉପସ୍ଥାପନ କାଳରେ ମୋର ସଭକ୍ତି ପ୍ରଣାମ ଜ୍ଞାପନ କରୁଛି । ଓଡିଶାର ପ୍ରତିଷ୍ଠିତା କବି ଓ ସମାଲୋଚିକା ଡକ୍ଟର ପ୍ରତିଭା ଶତପଥୀ ବିଭିନ୍ନ ସମୟରେ ଆନୁସଂଗିକ ସୂଚନା ଦେଇ ମତେ କୃତଜ୍ଞ କରିଛନ୍ତି । ଲୋକରତ୍ନ ଡକ୍ଟର କୁଞ୍ଜ ବିହାରୀ ଦାଶ, ଡାକ୍ତର ରାମଚନ୍ଦ୍ର ମିଶ୍ର(ପଟୁରାନନ୍ଦ), ନାଟ୍ୟକାର ଶ୍ରୀ ରାମଚନ୍ଦ୍ର ମିଶ୍ର, ସ୍ୱର୍ଗତ ଚକ୍ରଧର ମହାପାତ୍ର, ପ୍ରଫେସର ଡଃ ଖଗେଶ୍ୱର ମହାପାତ୍ର, ପ୍ରଫେସର ଡଃ ସୂର୍ଯ୍ୟକାନ୍ତ ଦାସ, କବି କୃଷ୍ଣଚନ୍ଦ୍ର ତ୍ରିପାଠୀ, କଥାଶିଳ୍ପୀ ମହାପାତ୍ର ନୀଳମଣି ସାହୁ, ଶ୍ରୀ ଚିତ୍ତରଞ୍ଜନ ଦାସ, କବି ବିନୋଦ ଚନ୍ଦ୍ର ନାୟକ, ନବପତ୍ର ର ସମ୍ପାଦକ ସାମ୍ବାଦିକ ରଜନୀକାନ୍ତ ଦାସ, ଶ୍ରୀକୃଷ୍ଣଚନ୍ଦ୍ର ମହାନ୍ତି, କବି ରବି ସିଂହ, ଡକ୍ଟର କୃଷ୍ଣଚରଣ ବେହେରା, ସ୍ୱର୍ଗତ ଡଃ କ୍ଷେତ୍ରବାସୀ ନାୟକ, ଅଧ୍ୟାପକ ବ୍ରହ୍ମାନନ୍ଦ ଦାସ, ଅଧ୍ୟାପକ ଗୌରାଂଗ ଚରଣ ଦାସ, ଡଃ କିଶୋର ଚନ୍ଦ୍ର ମିଶ୍ର ପ୍ରମୁଖଙ୍କ ସାନିଧ୍ୟ ଫଳରେ ମୁଁ ଉପକୃତ ହୋଇଛି ।

ପୁନଶ୍ଚ ଡଃ କୁମରବର ଦାସ, ଡଃ ଶରତଚନ୍ଦ୍ର ନାୟକ, ଡଃ କୁଳମଣି ପରିଡା, ଡଃ ଜୟନ୍ତ କୁମାର ପରିଡା, ଅଧ୍ୟାପକ ସଚ୍ଚିଦାନନ୍ଦ ଷଡଙ୍ଗୀ, ଅଧ୍ୟାପକ ବିଜୟ କୁମାର ଚୌଧୁରୀ, ଅଧ୍ୟାପକ କୁଶଚରଣ ପରିଜା, ଏଡ୍‌ଭୋକେଟ ସଦାନନ୍ଦ ସାମନ୍ତସିଂହାର(ପୁରୀ), ବିଜୟକୁମାର ହରିଚନ୍ଦନ(ନନ୍ଦଳା), ଶ୍ରୀ ଗଦାଧର ପୃଷ୍ଟି, ମୋତେ ସମୟୋଚିତ ପରାମର୍ଶ ଦେଇଥିବାରୁ ମୁଁ ଏହି ଅବସରରେ ସ୍ମରଣ କରୁଛି ।

ବିଭିନ୍ନ ପାଠାଗାର ଓ ତାର କର୍ମକର୍ତ୍ତାମାନଙ୍କୁ ଏହି ଅବସରରେ ମୁଁ କୃତଜ୍ଞତା ଜଣାଉଛି । ନିବନ୍ଧର ଉପାଦାନ ବିଶ୍ୱଭାରତୀ, ଶାନ୍ତି ନିକେତନ କେନ୍ଦ୍ରୀୟ ତଥା ଓଡିଆ ବିଭାଗ ପାଠାଗାର, କଲିକତା ସ୍ଥିତ ନ୍ୟାସନାଲ ଲାଇବ୍ରେରୀ, କେନ୍ଦ୍ରାପଡା କଲେଜ ପାଠାଗାର, କରିଲୋ-ପାଟଣା ଦୀନବନ୍ଧୁ ପାଠାଗାର, କୁଜଂଗ ବନବିହାରୀ ହାଇସ୍କୁଲ ପାଠାଗାର, ଉତ୍କଳ ବିଶ୍ୱବିଦ୍ୟାଳୟ ପରିଜା ପାଠାଗାର, ଓଡିଶା ରାଜ୍ୟ ଅଭିଲେଖାଗାର, ପଞ୍ଚାୟତ କଲେଜ ବରଗଡ ପାଠାଗାର, ରାଉରକେଲା ସରକାରୀ କଲେଜ ପାଠାଗାର, ରାଉରକେଲା ପ୍ରଗତି ଉତ୍କଳ ସଂଘ ପାଠାଗାରରୁ ସଂଗୃହିତ । ଯଦୁମଣି ସାହିତ୍ୟ ସଂସଦର ବାର୍ତ୍ତାନିଧି ପାଠାଗାର ଓ ମାନସିଂହଙ୍କ ବ୍ୟକ୍ତିଗତ ପାଠା-ଗାର ମୋ ଗବେଷଣା ନିବନ୍ଧର ପ୍ରାଥମିକ ଉପାଦାନର ଉତ୍ସ । ମୁଁ ଏହି ଅବସରରେ ଶ୍ରୀ ଦାଶ-ରଥୀ ପଟ୍ଟନାୟକ ଓ ଶ୍ରୀମତୀ ମାନସିଂହଙ୍କୁ ମୋର ଶ୍ରଦ୍ଧା ନିବେଦନ କରୁଅଛି ।

ନିବନ୍ଧରେ ବ୍ୟବହୃତ ଉପାଦାନକୁ ଯଥା ସମ୍ଭବ ପ୍ରାମାଣିକ କରିବା ପାଇଁ ଗୋଟିଏ ପ୍ରଶ୍ନନାମା ( Questionnaire ) ପ୍ରସ୍ତୁତ କରି ମୁଁ ଓଡିଶାର ପ୍ରାୟ ଦୁଇ ଶହ ବ୍ୟକ୍ତିଙ୍କ ପାଖକୁ ସେମାନଙ୍କ ମତାମତ ଓ ମାନସିଂହଙ୍କ ଫଟୋର୍ଗୀର ଅଭିଜ୍ଞତା ଜଣାଇବାକୁ ଅନୁରୋଧ କରିଥିଲି । ସେମାନଙ୍କ ମଧ୍ୟରୁ ପ୍ରାୟ ପ୍ରଚିଶ ଜଣ ମୋ ପ୍ରଶ୍ନ–ନାମାର ଉତ୍ତର ଦେଇ ମୋତ ଅନୁଗୃହୀତ କରି–ଛନ୍ତି ଓ ଏହି ନିବନ୍ଧ ପାଇଁ କିଛି ତଥ୍ୟ ଯୋଗାଇଛନ୍ତି । ମୁଁ ସେମାନଙ୍କ ନିକଟରେ କୃତଜ୍ଞତା ପାଶରେ ଆବଦ୍ଧ ।

ପ୍ରବନ୍ଧ ପ୍ରସ୍ତୁତି ତଥା ଆନୁସଙ୍ଗିକ ବିଷୟରେ ମତେ ସାହାଯ୍ୟ ଓ ସହଯୋଗ କରିଛନ୍ତି, ରାଉରକେଲା ସରକାରୀ ମହାବିଦ୍ୟାଳୟର ଅଧ୍ୟକ୍ଷ ଶ୍ରୀ ଗଣେଶ୍ୱର ଦାସ । ଗବେଷଣା ପାଇଁ ଆବଶ୍ୟକ ସୁଯୋଗ ଓ ପ୍ରେରଣା ଅଧ୍ୟକ୍ଷ ଶ୍ରୀ ଦାସ ମୋତେ ପ୍ରଦାନ କରି ନଥିଲେ ଏ ନିବନ୍ଧ ଉପସ୍ଥାପନ ଆହୁରି ବିଳମ୍ବିତ ହୋଇଥାନ୍ତା । ମୋର ସହକର୍ମୀମାନଙ୍କର ପ୍ରେରଣା ମଧ୍ୟ ସ୍ମରଣ ଯୋଗ୍ୟ ।

ବିଶ୍ୱ–ଭାରତୀ ରେ ଅଧ୍ୟୟନ କଲାବେଳେ ମୋର ପୂଜ୍ୟ ଅଧ୍ୟାପକ ବର୍ଗ ମୋତେ କେବଳ ତୁଚ୍ଛା ଉତ୍ସାହ ଦେଇ ନଥିଲେ, ସେଇମାନଙ୍କ ପାଖରେ ବସି ମୁଁ ମାନସିଂହ ସାହିତ୍ୟର ଅଧ୍ୟୟନ ଓ ଚର୍ଚ୍ଚା ଆରମ୍ଭ କରିଥିଲି । ସେମାନଙ୍କୁ ଏହି ଅବସରରେ ମୋର କୃତଜ୍ଞତା ଜ୍ଞାପନ ନକଲେ ମୁଁ ନିଜ ପ୍ରତି ନିଜେ ଅନ୍ୟାୟ କରି ବସିବି ।

ମୋର ଶାନ୍ତିନିକେତନର ଅଧ୍ୟାପକ ତଥା ବର୍ତ୍ତମାନର ବନ୍ଧୁ ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ, ପ୍ରସ୍ତୁତ ଚର୍ଚ୍ଚା ନିବନ୍ଧ ପ୍ରସ୍ତୁତିରେ ଅକୁଣ୍ଠ ସାହାଯ୍ୟ, ପରାମର୍ଶ ପ୍ରଦାନ କରି ନିବନ୍ଧ ପରିସମାପ୍ତିରେ ତାଙ୍କର ମୂଲ୍ୟବାନ ସମୟ ବିନିଯୋଗ କରିଥିବାରୁ ମୁଁ ଗଭୀର କୃତଜ୍ଞତା ଜଣାଉଛି ।

ମୋର ଛାତ୍ର ଶ୍ରୀମାନ୍ ସତ୍ୟ ଷଡଙ୍ଗୀ, ସଞ୍ଜୟ କୁମାର ହାତୀ ଓ ଅନନ୍ତ କିଶୋର ଜେନା ମତେ ବିଭିନ୍ନ ପ୍ରକାର ସାହାଯ୍ୟ ତଥା ସହଯୋଗ କରିଥିବାରୁ ସେମାନଙ୍କୁ ଧନ୍ୟବାଦ ଜଣାଉଛି । ମୋର ବଡଭାଇ ଶ୍ରୀ ମନମୋହନ ମହାନ୍ତି, ଶ୍ରୀ ନିତ୍ୟାନନ୍ଦ ମହାନ୍ତି ଓ ଶ୍ରୀ ହିରଣ୍ମୟ ଚରଣ ମହାନ୍ତି, ନିବନ୍ଧ ପ୍ରସ୍ତୁତିରେ ପ୍ରେରଣା ପ୍ରଦାନ କରିଥିବାରୁ ମୁଁ ପ୍ରଣାମ ଜଣାଉଛି ଓ ସାନଭାଇ ଶ୍ରୀମାନ୍ କ୍ଷିରୋଦ ପ୍ରସାଦ ମହାନ୍ତି(ରାଜ୍ୟ ଅଭିଲେଖାଗାର)ତଥ୍ୟପ୍ରଦାନ କରିଥିବାରୁ ଧନ୍ୟବାଦ ଜଣାଉଛି ।

ମୋର ଚର୍ଚ୍ଚା ନିବନ୍ଧ 'ମାନସିଂହଙ୍କ ବିଗ୍ରହଧାରା' ଓଡିଶାର ଏକ ବଳିଷ୍ଠ ବ୍ୟକ୍ତିତ୍ୱ ଓ ବୁଦ୍ଧିଜୀବୀଙ୍କ ସମ୍ପର୍କରେ କିଛି ନୂତନ ଆଲୋକପାତ କରି ପାରିଲେ ମୋ ଶ୍ରମ ସାର୍ଥକ ମଣିବି ।

# ସୂଚୀପତ୍ର

# ପରିଶିଷ୍ଟ – ଫଟୋଷ୍ଟାଟ୍

## ପରିଶିଷ୍ଟରେ ପ୍ରଦତ୍ତ ଫଟୋଚିତ୍ରର ତାଲିକା

| କ୍ର.ସଂ. | ବିଷୟ | | | ପୃଷ୍ଠାଙ୍କ |
|---|---|---|---|---|
| 1 | ସହକାର, 5/7, | ଚୈତ୍ର 1332, ମଲାଟ | 1 | |
| 2 | " | " ସୂଚୀପତ୍ର | 2 | |
| 3 | ସହକାର, 5/12, | ଭାଦ୍ର, 1332 ସୂଚୀପତ୍ର | 3 | |
| 4 | ବାରବାଟୀ(କବିତା) ଉତ୍କଳ ସାହିତ୍ୟ 30/8, ମାର୍ଗଶିର, 1334, ପୃ.435, 4 | | | |
| 5 | କବିର ନିମନ୍ତ୍ରଣ(କବିତା), ଉତ୍କଳ ସାହିତ୍ୟ, 30/11, ଫାଲ୍ଗୁନ, 1334, ପୃ.529 | | | 5. |
| 6 | ତରୁଣ କବିର ଆଶା(କବିତା) ଉ.ସା.32/1, ବୈଶାଖ, 1335, ପୃ.1, | | | 6. |
| 7 | " | " | ପୃ.2, | 7. |
| 8 | ଶୋକ ତର୍ପଣ(କବିତା) ଉ.ସା.32/3, ଆଷାଢ଼, 1335, ପୃ.128 | | | 8. |
| 9 | " | " | ପୃ.129 | 9' |
| 10 | ନିର୍ଜିତ ଭଗବାନ(କବିତା) ଉ.ସା. 32/8, ମାର୍ଗଶିର, 1336 ପୃ.309, | | | 10 |
| 11 | " | " | ପୃ.310, | 11 |
| 12 | " | " | ପୃ.311, | 12 |
| 13 | ରାଜକବି(ବିଜ୍ଞାପନ) ଉ.ସା. 32/9, ପୌଷ, 1336, | | | 13 |
| 14 | ମେହେରଙ୍କ ମହତ୍ତ୍ୱ(ପ୍ରବନ୍ଧ), ଶଙ୍ଖ, 2/1, ଆଷାଢ଼, 1946, | | | 14 |
| 15 | ପ୍ରଶ୍ନୋତ୍ତର(ସନେଟ) ଚତୁରଙ୍ଗ, 1/1, 14.5.1946 | | | 15 |
| 16 | 'ଅକ୍ଷତ' କବିର ପ୍ରଥମ ମୁଦ୍ରଣର ଉପର | | | 16 |
| 17 | 'କମଳାୟନ' କାବ୍ୟ ପ୍ରଥମ ମୁଦ୍ରଣର ଉପର ,1947, | | | 17 |
| 18 | ଗାନ୍ଧୀଜୀ ଓ ସାହିତ୍ୟ(ପ୍ରବନ୍ଧ), ଉଦୟ, 2/1 ଫେବ୍ର.ମାର୍ଚ୍ଚ–1948, ପୃ.18, | | | 18 |
| 19 | " | " | ପୃ.19, | 19 |
| 20 | " | " | ପୃ.20, | 20 |

21 ସାହିତ୍ୟର ସାଧନା(ଭାଷଣ) ଝଙ୍କାର 2/2, ମଇ, 1950, ବର୍ଷ, 1357 21

22 ଓଡ଼ିଆ ସମାଜ ଓ ସାହିତ୍ୟ ପ୍ରଥମ ମୁଦ୍ରଣ 1951, ପ୍ରକାଶକଙ୍କ ପ୍ରତି 22

23 ଓଡ଼ିଆ ବିଶ୍ୱକୋଷ ନେଇ ଧଳଙ୍କୁ ଏକ ଚିଠି, ଝଙ୍କାର, 5/5, ଅଗଷ୍ଟ, 1953, ପୃ.486 –23

24 " " ପୃ.487– 24

25 କବିର ପୁରସ୍କାର(କବିତା ଚିଠି), କଳିଙ୍ଗ ଶାରଦୀୟ ବିଶେଷାଙ୍କ, 1964, ପୃ.9 25

26 ଊର୍ଜ୍ଜା ପତ୍ରିକାର ଇନର 2/2, ଅଗଷ୍ଟ 1967, 26

27 ସମସାମୟିକ ଓଡ଼ିଆ ସାହିତ୍ୟ ପ୍ରତି ଅବିଶ୍ୱର(ଶରତ କୁମାର ମହାନ୍ତିଙ୍କ ପ୍ରବନ୍ଧ)
ନବଜୀବନ 7/11 (1963) ପୃ.718 27

28 " " ପୃ. 719 28

29 କାବଦୂତ ପ୍ରଶ୍ନାମାର ଏକ ନମୁନା 29

30 ମାନସିଂହଙ୍କ ଏକ ହସ୍ତଲିପିର ନମୁନା 30

———00000———

## ॥ ଉପୋଦ୍‌ଘାତ ॥

ଡକ୍ଟର ମାୟାଧର ମାନସିଂହ (1905–1973), ଓଡିଆ ସାହିତ୍ୟର ଇତିହାସରେ କବି, ନାଟ୍ୟକାର, ପ୍ରାବନ୍ଧିକ ଓ ସମାଲୋଚକ ଭାବରେ ପ୍ରତିଷ୍ଠିତ । କିନ୍ତୁ ସାଧାରଣ ପାଠକଙ୍କ ହୃଦୟ ଭୂମିରେ କବି ମାନସିଂହଙ୍କର ହିଁ ଅଧିଷ୍ଠାନ । ଶିକ୍ଷାବିତ୍ ଓ ବୁଦ୍ଧିଜୀବୀ ମାନସିଂହଙ୍କର କିଛି ସାଧାରଣ ପରିଚୟ ବି ରହିଛି । ତାଙ୍କ ପ୍ରତିଭାର ବହୁ ଦିଗ ତାଁର ପ୍ରାସଙ୍ଗିକ ମୂଲ୍ୟନେଇ ଏବେ ମଧ୍ୟ ଅନୁଦ୍‌ଘାଟିତ । ଓଡିଆ ସାହିତ୍ୟର ବିଶ୍ଳେଷଣ ମୁଖ୍ୟତଃ ଐତିହାସିକ ପଦ୍ଧତିରେ କରାଯାଉଥିବାରୁ, ମାନସିଂହଙ୍କ ଭଳି ଏଇ ଶତାବ୍ଦୀର କବି ଓ ସାହିତ୍ୟିକ ମାନଙ୍କର ପରିପୂର୍ଣ୍ଣ ବିଶ୍ଳେଷଣ ସମ୍ଭବପର ହୋଇନାହିଁ । ଗତ ଚାରି ପାଞ୍ଚବର୍ଷ ଭିତରେ ତାଙ୍କ ସଂପର୍କରେ ଚାରିଗୋଟି ଚର୍ଚ୍ଚା ନିବଂଧ ବିଶ୍ୱବିଦ୍ୟାଳୟରେ ଉପସ୍ଥାପିତ ହୋଇଛି; ସେ ଗୁଡିକ ମୁଖ୍ୟତଃ ତାଙ୍କର କବିତା ଓ ଅନ୍ୟାନ୍ୟ ସାହିତ୍ୟ କୃତିର ପ୍ରାସଙ୍ଗିକ ଐତିହାସିକ ବିଶ୍ଳେଷଣ ଉପରେ ପର୍ଯ୍ୟବସିତ । ଚିନ୍ତାନାୟକ ମାନସିଂହ, ତାଙ୍କର ପୂର୍ଣ୍ଣାବୟବ ବୈଶିଷ୍ଟ୍ୟ ନେଇ ସାଧାରଣ ପାଠକତ ଦୂରର କଥା, ବୁଦ୍ଧିଜୀବୀମାନଙ୍କ ଆଗରେ ଛିଡାହୋଇ ପାରିନାହାନ୍ତି । ସଂପୃକ୍ତ ଚର୍ଚ୍ଚା ନିବଂଧରେ ଚିନ୍ତାନାୟକ ମାନସିଂହଙ୍କୁ ପରିଚିତ କରାଇ ଦେବାର ଏକ ବିନମ୍ର ଉଦ୍ୟମ କରାଯାଇଛି । ନିଜର ଲେଖକୀୟ ଜୀବନକାଳ ଭିତରେ ମାନସିଂହ ନିଜ ପ୍ରଜ୍ଞା ଓ ବିଶ୍ୱରଧାରାର ଯେଉଁ ପ୍ରୋଜ୍ଜ୍ୱଳ ସ୍ୱାକ୍ଷର ଛାଡି ଯାଇଛନ୍ତି, ତାହାକୁ ଗୋଟାଇଆଣି ନିଜସ୍ୱ ମହିମାରେ ତାକୁ ଚିହ୍ନେଇବାପାଇଁ ଚେଷ୍ଟା କରାଯାଇଛି ।

ମାନସିଂହ ସାହିତ୍ୟ ସଂପର୍କରେ ମୌଳିକ ଓ ତଥ୍ୟନିଷ୍ଠ ଗବେଷଣା କରିବାପାଇଁ ଏକ ପ୍ରଧାନ ପ୍ରତିବଂଧକ ରହିଛି । ତାହା ହେଉଛି ତାଙ୍କ ରଚନାବଳୀର ଏକତ୍ର ସହାବସ୍ଥାନର ଅଭାବ । ତାଙ୍କ ଜୀବିତାବସ୍ଥାରେ ଗ୍ରନ୍ଥାବଳୀର ତିନୋଟି ଖଣ୍ଡ ପ୍ରକାଶ ପାଇଛି । କିନ୍ତୁ ସେ ତିନୋଟି ଖଣ୍ଡ ଭିତରେ ତାଙ୍କ ସାହିତ୍ୟ କୃତିର ଗୋଟିଏ ଅଂଶର ହିଁ ପରିଚୟ ନିହିତ । ହୁଏତ ସେ ସବୁର ସାହାଯ୍ୟରେ ମାନସିଂହଙ୍କର ବିଶିଷ୍ଟ କାବ୍ୟ ବା ନାଟକର ମୂଲ୍ୟାୟନ କରାଯାଇ ପାରେ, କିନ୍ତୁ ମାନସିଂହଙ୍କ ବିଶ୍ୱରଧାରା ଭଳି ସାମଗ୍ରିକ ବିଶ୍ଳେଷଣ ସମ୍ଭବ ନୁହେଁ । ଗ୍ରନ୍ଥାବଳୀ ବାହାରେ ବିକ୍ଷିପ୍ତ ଆକାରରେ ଥିବା ମାନସିଂହଙ୍କର ବହୁ ପୁସ୍ତକ, କବିତା, ପ୍ରବଂଧ, ସଂପାଦକୀୟ, ମୁଖବଂଧ, ଚିଠିପତ୍ର, ବିତର୍କ ଓ ଅନେକ ଅପ୍ରକାଶିତ ରଚନା ଭିତରେ ମାନସିଂହଙ୍କ ପ୍ରଜ୍ଞାବୋଧର ଉତ୍ସ ଖୋଜାଯାଇପାରେ । ଏଇ ସମସ୍ତ ରଚନାବଳୀକୁ ଯଥା ସମ୍ଭବ ଅଧ୍ୟୟନ କରି, ମାନସିଂହଙ୍କ ବିଶ୍ୱରଧାରାର ସ୍ୱରୂପ ବିଶ୍ଳେଷଣ କରାଯାଇଛି ।

ମାନସିଂହଙ୍କ ବିଗ୍ଭରଧାରା

ମାନସିଂହ ମୁଖ୍ୟତଃ ଜଣେ ରୋମାଣ୍ଟିକ କବି ଥିଲେ । କିନ୍ତୁ ତାଙ୍କର ସ୍ରଷ୍ଟା–ମାନସ ଏକ ଅମୁକ୍ତ(closed) ତଥା ସରଳ ମନ ନୁହେଁ । ଦୀର୍ଘ ଅର୍ଦ୍ଧଶତାବ୍ଦୀ ଭିତରେ ସେ ବହୁ ବାଦ, ପରିବେଶ ଓ ବ୍ୟକ୍ତିତ୍ୱର ସମ୍ପର୍କରେ ଆସିଛନ୍ତି, ଯାହା ତାଙ୍କର ବ୍ୟକ୍ତିତ୍ୱକୁ ପ୍ରଭାବିତ କରିଛି, ଚେତନାକୁ ଆଲୋଡିତ କରିଛି ଓ ଚିନ୍ତାକୁ ନିୟନ୍ତ୍ରିତ ମଧ୍ୟ କରିଛି । ସାମ୍ପ୍ରତିକ–କାଳର ଦର୍ପଣରେ ମାନସିଂହଙ୍କ ବ୍ୟକ୍ତିତ୍ୱକୁ ନ ଦେଖିଲେ, ବିଭିନ୍ନ କାଳ–ପର୍ବରେ ସେ କିଭଳି ପ୍ରଭାବିତ ହୋଇଛନ୍ତି ତାହା ନ ଦେଖାଇଲେ, ଚିନ୍ତାନାୟକ ମାନସିଂହଙ୍କୁ ଚିହ୍ନାଯାଇ ପାରିବ ନାହିଁ । କୌଣସି ସ୍ରଷ୍ଟା ମାନସ, ଦେଶ–କାଳ ଅନାଲିଙ୍ଗିତ ଅଚଳ ସତ୍ତା ଭାବରେ ତିଷ୍ଠି ରହିପାରେ ନାହିଁ । ମାନସିଂହଙ୍କର ମଧ୍ୟ ତାହା ହୋଇଛି । ସ୍ୱତନ୍ତ୍ର ଉତ୍କଳ ପୁନର୍ଗଠନର ଆବହାଓ୍ୱା, ସତ୍ୟବାଦୀ ଗୋଷ୍ଠୀର ଜାତୀୟ ଚେତନା, ମହାତ୍ମା ଗାନ୍ଧିଙ୍କର ଅହିଂସା ଆନ୍ଦୋଳନ, ବ୍ରିଟିଶ ଉଦାରତନ୍ତ୍ରୀ ରାଜନୀତି ପୁଣି ରବୀନ୍ଦ୍ରଙ୍କ ମର୍ତ୍ତ୍ୟପ୍ରୀତି ତାଙ୍କୁ ସମକାଳରେ ସ୍ପର୍ଶ କରିଛି । ତେଣୁ ସମ୍ପୃକ୍ତ ନିବନ୍ଧର ପ୍ରଥମ ଭାଗରେ ମାନସିଂହଙ୍କ ଜୀବନ ଓ ରଚନାବଳୀର ତଥ୍ୟନିଷ୍ଠ ଆଲୋଚନା ସ୍ଥାନିତ ।

କୌଣସି ସ୍ରଷ୍ଟା ବା ଚିନ୍ତାବିତ୍ ଜୀବନ ଓ ଜଗତର ମୌଳ ସମସ୍ୟା ସମ୍ପର୍କରେ ଅନବହିତ ରହି ପାରନ୍ତି ନାହିଁ । ପରିଦୃଶ୍ୟମାନ ପ୍ରକୃତି, ବିଚିତ୍ର ମଣିଷ ଜୀବନ, ତାହାର ବିବିଧ ସ୍ତର ଓ ଉପସ୍ତର, ଜୀବନର ବର୍ଣ୍ଣିଳ ପ୍ରକାଶ, ପ୍ରକୃତି ତଥା ମଣିଷକୁ ଘେରିରହିଥିବା ଓ ତାକୁ ବାରମ୍ବାର ଉଦ୍‌ବୋଧିତ କରୁଥିବା ଅଦୃଶ୍ୟ ଶକ୍ତି ସମ୍ପର୍କୀୟ 'ଜିଜ୍ଞାସା' ଚିରନ୍ତନ । ଏହି ମୌଳ ଜିଜ୍ଞାସାକୁ ତିନୋଟି ଶୀର୍ଷକରେ ବିଶ୍ଳେଷଣ କରାଯାଇପାରେ: ମଣିଷ, ପ୍ରକୃତି ଓ ଭଗବାନ । ଜୀବନର ବିଭିନ୍ନ ପର୍ଯ୍ୟାୟରେ ମାନସିଂହ ଏଇ ସମସ୍ତ ସମ୍ପର୍କରେ ନିଜର ଯେଉଁ ବିଗ୍ଭରବୋଧ ପ୍ରକଟିତ କରିଛନ୍ତି, ତାହା ଏହି ଚର୍ଚ୍ଚା ନିବନ୍ଧର ଦ୍ୱିତୀୟ ଭାଗରେ ସ୍ଥାନିତ ।

ସୃଷ୍ଟିର ସମସ୍ତ ଜୀବଜଗତ ଭିତରେ ମଣିଷହିଁ ଏକମାତ୍ର ମୌଳିକ ସୃଷ୍ଟି କରିପାରେ । ତା'ର କାରଣ ହେଲା ଶିକ୍ଷା ଦେବା ଓ ନେବାପାଇଁ ସେ ହିଁ କେବଳ ସମର୍ଥ । ଶିକ୍ଷିତ ମଣିଷ ନିଜର ଜୀବନ ଯାତ୍ରା ଭିତର ଦେଇ ସଂସ୍କୃତିର ପ୍ରତିଷ୍ଠା କରେ । ଉତ୍କର୍ଷ ଅପକର୍ଷର ରାୟଦେଇ ନିଜର ବିଗ୍ଭର ପ୍ରକଟିତ କରେ । କିନ୍ତୁ ସେ ସେତିକିରେ ସନ୍ତୁଷ୍ଟ ରହିପାରେ ନାହିଁ । ସେ ଦ୍ୱିତୀୟ ପ୍ରଜାପତି ହେବାର ଆଶା ପୋଷଣ କରେ । ଏକ ନୂଆ ଜଗତ ସୃଷ୍ଟି କରେ । ସେ ଜଗତ ହେଉଛି କଳାର ଜଗତ । ତେଣୁ ପ୍ରତ୍ୟେକ ଚିନ୍ତାନାୟକ ଶିକ୍ଷା, କଳା ଓ ସଂସ୍କୃତି ସମ୍ପର୍କରେ ନିଜର ବିଗ୍ଭରଧାରା ଉପସ୍ଥାପିତ କରିବାକୁ ବାଧ୍ୟ । ବ୍ୟକ୍ତିଗତ ଜୀବନରେ ମାନସିଂହ ଥିଲେ ଶିକ୍ଷକ, ଓଡିଆ କାବ୍ୟ ଶିଳ୍ପର ଅନୁପମ ସ୍ରଷ୍ଟା, ଉତ୍କଳୀୟ ସଂସ୍କୃତିର ସମ୍ବାହକ । ସନ୍ଦର୍ଭର ତୃତୀୟ ଭାଗରେ ତାଙ୍କର ଶିକ୍ଷା, କଳା ଓ ସଂସ୍କୃତି ସମ୍ପର୍କୀୟ ମତ ଉପସ୍ଥାପନ କରାଯାଇଛି ।

---

# ମାନସିଂହଙ୍କ କାବ୍ୟଧାରା

# ପ୍ରଥମ ଭାଗ

- ଚନ୍ତାନାୟକ ମାନସିଂହ: ଦେଶ, କାଳ, ପାତ୍ର
- ମାନସିଂହଙ୍କ କାବ୍ୟଧାରାର ଉତ୍ସ
- ମାନସିଂହଙ୍କ ସୃଷ୍ଟି କାବ୍ୟର ବିମର୍ଶର ପୂର୍ବାଧ୍ୟାୟ
- ମାନସିଂହଙ୍କ କାବ୍ୟଧାରାର ପୃଷ୍ଠପୀଠିକା

## ମାନସିଂହଙ୍କ ଜଗୁରଧାର

# ପ୍ରଥମ ଅଧ୍ୟାୟ

ଚିନ୍ତାନାୟକ ମାନସିଂହ:

ଦେଶ, କାଳ, ପାତ୍ର

## ।। ପ୍ରଥମ ଅଧ୍ୟାୟ ।।

### ମାନସିଂହଙ୍କ ରଚନାର ଦେଶ, କାଳ, ପାତ୍ର ।।

ବିଂଶ ଶତକର ପ୍ରଥମ ଦଶକ, ଓଡିଶାର ଜାତୀୟ ଜାଗରଣର ସମୟ । ଗଂଗା ଠାରୁ କାବେରୀ ପର୍ଯ୍ୟନ୍ତ ନିଜ ବାହୁ ବଳରେ ସାମ୍ରାଜ୍ୟ ବିସ୍ତାର କରିଥିବା ଓଡିଶା ଇଂରେଜ ମାନଙ୍କ(୧୫03) ଅଧିକାର ସମୟକୁ ସଂକୁଚିତ ହୋଇ ମାତ୍ର ଉପକୂଳ ଅଞ୍ଚଳ—ମୋଗଲ ବନ୍ଦୀ—ମଧ୍ୟରେ ସୀମାବଦ୍ଧ ଥିଲା । ଗଡଜାତ ଅଞ୍ଚଳ ଗୁଡିକ ଛୋଟ ଛୋଟ ରାଜ୍ୟ ଖଣ୍ଡରେ ବିଭକ୍ତ ହୋଇ କେନ୍ଦ୍ର ଶାସନ ବା ଗଜପତିଙ୍କର ଶାସନ କଳରୁ ଅଲଗା ରହି ପରସ୍ପର କଳହରେ ରତଥିଲେ । ନାମକୁ ମାତ୍ର ଲକ୍ଷେ ରାଜାର ମଉଡ ମଣି, ଚଳନ୍ତି ବିଷ୍ଣୁ, ନବକୋଟୀ କର୍ଣ୍ଣାଟ କଳବର୍ଗେଶ୍ୱର ଉପାଧି—ଭୂଷିତ—ଗଜପତି—ରଜାମାନେ, ଖୋର୍ଦ୍ଧା ଆଉ ପୁରୀର ଆନୁଷ୍ଠାନିକ ରଜା ଭାବରେ ଗାଦି ମାଡି ବସିଥିଲେ । ଖଣ୍ଡାୟତ ପାଇକମାନେ, ପୁରୁଷ ପୁରୁଷ ଧରି ନିଷ୍କର ଜମିବାଡି ଭୋଗକରି, ନାମକୁ ମାତ୍ର ଗଜପତି ରାଜାଙ୍କର ଆଦେଶକୁ କର୍ତ୍ତବ୍ୟ ଭାବରେ ଗ୍ରହଣ କରୁଥିଲେ । ତଥାପି ୧୫03 ବେଳକୁ ଯେତେବେଳେ ଇଂରେଜମାନେ ଓଡିଶା ଅଧିକାର କଲେ, ସେତେବେଳେ ସାମାନ୍ୟ ଆର୍ଥିକ ପ୍ରତିବାଦ ଛଡା ସାମୂହିକ ଭାବରେ ବିଦ୍ରୋହ ଦେଖାଯାଇ ନ ଥିଲା । ମାତ୍ର ଯେତେବେଳେ ପାଇକ ମାନଙ୍କର ପୁରୁଷାନୁକ୍ରମିକ ନିଷ୍କର ସଂପତ୍ତି ଉପରେ ଇଷ୍ଟଇଣ୍ଡିଆ କଂପାନୀ ସରକାର କରଧାର୍ଯ୍ୟ କରିବାକୁ ବସିଲେ, ସେତେବେଳେ ଖୋର୍ଦ୍ଧାର ପାଇକ ବିଦ୍ରୋହ ଆରମ୍ଭ ହେଲା । ସେତେବେଳର ବିଦ୍ରୋହ ଇଂରେଜମାନଙ୍କୁ ଏଦେଶରୁ ତଡିବା ପାଇଁ ନୁହେଁ; ବରଂ ପାଇକମାନଙ୍କର କ୍ଷମତାଚ୍ୟୁତିର ପୁନର୍ନବୀକରଣ ମସୁଧା ଥିଲା ପାଇକ ବିଦ୍ରୋହ । ବୋଧହୁଏ ସେଇଥିପାଇଁ ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ପାଇକ ବିଦ୍ରୋହକୁ ଜାତୀୟ ସଂଗ୍ରାମର ସମ୍ମାନ ଦିଆ ନଯାଇ ଏକ ଆର୍ଥିକ ଆନ୍ଦୋଳନ ଭାବରେ ଚିହ୍ନିତ କରାଯାଏ ।

ତଥାପି ସ୍ୱୀକାର କରିବାକୁ ହେବଯେ, ଏହି ବୀର—ପାଇକ—ଖଣ୍ଡାୟତ ମାନଙ୍କର ସାହସ ଓ ସାଧନା ବଳରେ ଦିନେ ଓଡିଶାର ସ୍ୱାଧୀନତା ରବି ଦୀପ୍ତିମାନ ଅବସ୍ଥାରେ ଝଲସି ଉଠୁଥିଲା । ଆଫଗାନ, ମୋଗଲ, ମରହଟ୍ଟା ମାନଙ୍କର ଧାରାବାହିକ ଅତ୍ୟାଗ୍ଭର ଫଳରେ, ଓଡିଶାର ଛୋଟ ଛୋଟ ରାଜ୍ୟମାନଙ୍କ ଉପରେ ସାର୍ବଭୌମତ୍ୱ ଜାହିର କରୁଥିବା କେନ୍ଦ୍ରଶକ୍ତି, ଗଜପତି କ୍ରମେ ହୀନବଳ ହୋଇଯିବାରୁ, ଏହି ପାଇକମାନେ କ୍ରମେ ନିସ୍ତେଜ ହୋଇପଡିଲେ । ଶାସନଗତ ଐକ୍ୟ ହରାଇଥିଲେ ମଧ୍ୟ, ଓଡିଶା ଓଡିଆର କେନ୍ଦ୍ର ଜଗନ୍ନାଥ ତଥା ଠାକୁର ରଜାଙ୍କ ପ୍ରତି ପାଇକମାନେ ଆସ୍ଥା

ହୁଲାଇ ନଥିଲେ । ବଣିକ ଓଡିଆ କାର୍ତ୍ତିକ ପୂର୍ଣ୍ଣିମାରେ କଦଳୀ ବାଟୁଙ୍ଗାର ବୋଇତ ଉପାଇ ଅତୀତକୁ ସ୍ମରଣ କଲାପରି, ଏବେବି ଖଣ୍ଡାୟତ ପାଇକ ଗାଁ ମାନଙ୍କରେ ପାଇକ ଆଖଡାମାନ ରହିଛି ଓ ଦଶହରା ସମୟରେ ପାଇକନାଚ ଅନୁଷ୍ଠିତ ହୋଇ ଅତୀତ ଗୌରବର ସ୍ମୃତିସ୍ମରଣ ହେଉଅଛି ।

ଓଡିଶାର ବିଶିଷ୍ଟ କବି, ସମାଲୋଚକ, ଶିକ୍ଷାବିତ୍ ତଥା ଜାତୀୟତାପ୍ରେମୀ ମାୟାଧର ମାନସିଂହଙ୍କର ଜନ୍ମ ଏହିପରି ଏକ ପାଇକ ଖଣ୍ଡାୟତ ପରିବାରରେ ।

## ପ୍ରାକୃତିକ ବିପର୍ଯ୍ୟୟ: ଜାତୀୟତାର ଅଙ୍କୁରୋଦ୍ଗମ ॥

ଊନବିଂଶ ଶତାବ୍ଦୀର ନ'ଅଙ୍କ ଦୁର୍ଭିକ୍ଷକୁ ଓଡିଆମାନଙ୍କର ଏକ ବିପର୍ଯ୍ୟୟର ସମୟ ରୂପେ ଚିତ୍ରିତ କରାଯାଉ ଥିଲେ ମଧ୍ୟ, ପ୍ରକୃତରେ ଏହା ଓଡିଆ ମାନଙ୍କର ସୁପ୍ତି ଅପନୋଦନର ସମୟ ବୋଲି କୁହାଯିବା ଆବଶ୍ୟକ ।

ସୂର୍ଯ୍ୟବଂଶୀ ସମ୍ରାଟ ପ୍ରତାପରୁଦ୍ରଙ୍କ ସମୟରେ, ଶ୍ରୀଚୈତନ୍ୟଙ୍କ ଆଗମନ ଓ ନାମ ପ୍ରଚ୍ଭର ଦ୍ୱାରା ବୀର ଓଡିଆର, ସାତ୍ତ୍ୱିକ ଆହାର, ନିରାମିଷ ଭୋଜନ ତଥା ହରିନାମ କୀର୍ତ୍ତନରେ ହାତରୁ ଖଣ୍ଡା ଖସିଗଲା, ଓଡିଶାର ସ୍ୱାଧୀନତା ରବି ଅସ୍ତ ହୋଇଗଲା । ଊନବିଂଶ ଶତାବ୍ଦୀର ଆଦ୍ୟ ଭାଗରେ ଇଂରେଜ ଆଗମନ ସମୟରେ କଲିକତା ଫୋର୍ଟ ଉଇଲିଅମ୍ ର ବଙ୍ଗୀୟ କିରାଣୀ ମାନଙ୍କ ଚକ୍ରାନ୍ତରେ, ଓଡିଶାର ଭାତହାଣ୍ଡି, ଜମିଦାରୀ ଓଡିଆମାନଙ୍କ ହାତରୁ, ବଙ୍ଗାଳୀ କିରାଣୀମାନଙ୍କ ପାଖରେ ଶାଗମାଛ ଦରରେ ନିଲାମ କରାଗଲା । ନ'ଅଙ୍କ ଦୁର୍ଭିକ୍ଷ ସମୟରେ ଓଡିଶାର ଅଧିକାଂଶ ଜମିଦାର ବଙ୍ଗାଳୀ, ସରକାରୀ କର୍ମଗ୍ଭରୀମାନେ ଅଧିକାଂଶ ବଙ୍ଗାଳୀ, କେତେକ ବଡ ଅଫିସରଙ୍କୁ ଛାଡିଦେଲେ, ରାଜ୍ୟଯାକ ଖାଲି ବଙ୍ଗାଳୀ । ବଡ ଆଶ୍ୱସନାର କଥା ଯେଉଁ ଅଣ ଓଡିଆ ମାନଙ୍କର ପୂର୍ବ–ପୁରୁଷ ଓଡିଶାର ମାଟିରେ ସ୍ଥାୟୀ ଭାବରେ ବସବାସ କରି ଓଡିଶାର ମାଟିକୁ ନିଜର କରି ନେଇଥିଲେ, ଓଡିଶାର ଜାତୀୟ ଜାଗରଣ କାଳରେ, ସେହିମାନେ ହିଁ ଅଗ୍ରଣୀ ଭାବରେ ଭୂମିକା ଗ୍ରହଣ କଲେ ।

ଓଡିଶାର ପାରମ୍ପରିକ ଶିକ୍ଷା–ପଦ୍ଧତି, ଜଗନ୍ନାଥ ସଂସ୍କୃତି ତଥା ଓଡିଆ ଭାଗବତ ଓଡିଶାରେ ପରିମାଣାତ୍ମକ ସାକ୍ଷରତା ବୃଦ୍ଧି କରିଥିଲେ ମଧ୍ୟ, ଆଧୁନିକ ଶିକ୍ଷା ବା ଇଂରାଜୀ ଶିକ୍ଷା ବ୍ୟବସ୍ଥାରେ ଓଡିଆମାନେ ଅନେକ ପଛୁଆ ଥିଲେ । ଇଷ୍ଟଇଣ୍ଡିଆ କମ୍ପାନୀ ସରକାର ଓଡିଆମାନଙ୍କର ଶିକ୍ଷାପାଇଁ ସେପରି ବିଶେଷ କୌଣସି ବ୍ୟବସ୍ଥା କରି ନଥିଲେ । ଖ୍ରୀଷ୍ଟିୟ ମିଶନାରୀ ମାନଙ୍କର ଧର୍ମପ୍ରଚ୍ଭର ଉଦ୍ଦେଶ୍ୟରେ ପ୍ରଯୁକ୍ତ ଶିକ୍ଷା ପ୍ରସାରହିଁ ଓଡିଶାରେ ଆଧୁନିକ ଶିକ୍ଷାର ପ୍ରସାର କଲା । ଆଧୁନିକ ଶିକ୍ଷା ପ୍ରସାରର ଶ୍ରେଷ୍ଠ ମାଧ୍ୟମ ମୁଦ୍ରଣ ଶିଳ୍ପ ହିଁ ମିଶନାରୀମାନଙ୍କର ଓଡିଶାପ୍ରତି ଶ୍ରେଷ୍ଠ ଅବଦାନ । ପରେ ଓଡିଶାର ଶାସନ ଦାୟିତ୍ୱରେ ଅବସ୍ଥାପିତ କର୍ମଗ୍ଭରୀ ମାନଙ୍କର ସନ୍ତାନ ସନ୍ତତିଙ୍କ ଶିକ୍ଷାବ୍ୟବସ୍ଥା ଲାଗି ଇଷ୍ଟଇଣ୍ଡିଆ କମ୍ପାନୀ ଓ ପରେ ବ୍ରିଟିଶ ସରକାର କେତେକ ସ୍କୁଲ ପ୍ରତିଷ୍ଠା କଲେ । କ୍ରମେ ଓଡିଶାରେ ଆଧୁନିକ ଶିକ୍ଷା ପ୍ରବେଶ କଲା । ଯେଉଁମାନେ ଉଚ୍ଚଶିକ୍ଷାପାଇଁ ଆଗ୍ରହ ପ୍ରକାଶ କଲେ ସେମାନଙ୍କୁ ପାଲଟଣା ବୋଇତରେ, ଗୋରୁ ଗାଡିରେ ବା କେତେବାଟ

ପାଦରେ ଗୁଲିଖୁଲି କଲିକତା ଯାଇ ଉଚ୍ଚଶିକ୍ଷା ଗ୍ରହଣ କରିବାକୁ ହେଉଥିଲା । ଉତ୍କଳ ଗୌରବ ମଧୁସୂଦନ, କର୍ମବୀର ଗୌରୀଶଙ୍କର ଓ କବିବର ରାଧାନାଥ ପ୍ରଭୃତିଙ୍କୁ ଏହିପରିଭାବରେ ଉଚ୍ଚଶିକ୍ଷାପାଇଁ କଲିକତା ଯାତ୍ରା କରିବାକୁ ପଡିଥିଲା ।

ନ'ଅଙ୍କ ଦୁର୍ଭିକ୍ଷକୁ ସାଧାରଣତଃ ପ୍ରାକୃତିକ ବିପର୍ଯ୍ୟୟ କହିଲେ ମଧ୍ୟ, ଏହା ଅନେକାଂଶରେ ମନୁଷ୍ୟକୃତ ବିପର୍ଯ୍ୟୟ । କାରଣ ଏ ପ୍ରକାର ଅନାବୃଷ୍ଟି, ବନ୍ୟା, କେବଳ ୧୪୬୬ ରେ ନୂଆ ନୁହେଁ; ଅନେକ ଆଗରୁ ବିଭିନ୍ନ ସମୟରେ ଓଡିଶାରେ ଏ ପ୍ରକାର ପ୍ରାକୃତିକ ଦୁର୍ବିପାକ ଘଟିଆସିଥାଏ । ମାତ୍ର ୧୪୬୬ ରେ ମଣିଷ ଯେପରି ପୋକମାଛି ପରି ମରିଗଲେ, ସେପରି କେବେ ଦେଖାଯାଇ ନଥିଲା । ଅଣ ଓଡିଆ ଜମିଦାରଙ୍କ ଅସହଯୋଗ ସ୍ଥାନୀୟ ସରକାରୀ ଅଫିସର ମାନଙ୍କର ଇଂରେଜ ସରକାରଙ୍କ ନିକଟରେ ଭୁଲ ରିପୋର୍ଟ ସାଂଗକୁ ଅଦୂରଦର୍ଶୀ ଓଡିଆମାନଙ୍କର ଭୁଲ୍‌ବିଗ୍ରହ ଏହି ଦୁର୍ଭିକ୍ଷକୁ ଭୟାବହରୂପ ପ୍ରଦାନ କରିଥିଲା । ପୂର୍ବ ବର୍ଷ ଭଲ ଫସଲ ହୋଇଥିବାରୁ ଓଡିଆ କୃଷକମାନେ ବ୍ରୁମ୍‌ଟୀ ମହାଜନ ମାନଙ୍କୁ ଧାନ ମପାଇଦେଇ, ଖାଲି ସ୍ୱଳ୍ପମାସର ଖାଇବାକୁ ଫସଲ ରଖି ସୁନାରୁପା କିଣି ବସିଲେ । ବାସ୍ତବତାରେ ଦୁର୍ଭିକ୍ଷର ସୂଚନା ପାଇ ବଂଗାଳୀ ଜମିଦାରମାନେ ଓଡିଶାରୁ ଧାନ ସଂଗ୍ରହ କରି ବଂଗଳାକୁ ପଠାଇ ଦେଲେ । ଜଳସେଚନର ସୁବିଧା ନ ଥିବାରୁ ଓ ବର୍ଷା ଅଭାବରୁ ଫଳିଆସୁଥିବା ଧାନ କିଆରୀ ଜଳିଗଲା ।

ଗୌରୀ, ରାଧାନାଥ, ମଧୁସୂଦନ ରାଓଙ୍କ ପରି ଯେଉଁମାନଙ୍କ ପୂର୍ବପୁରୁଷ ଓଡିଶା ବାହାରୁ ଆସିଥିଲେ ହେଁ ଓଡିଶାକୁ ନିଜର ମାତୃଭୂମି ଭାବରେ ଗ୍ରହଣ କରି ନେଇଥିଲେ, ସେମାନେ ଓଡିଆମାନଙ୍କ ସହିତ ଓଡିଶାର ସ୍ୱାର୍ଥ ରକ୍ଷା ପାଇଁ ଅଣ୍ଟାଭିଡି ଲାଗି ପଡିଲେ । "ଓଡିଶାର ଲୋମହର୍ଷଣକାରୀ ନ'ଅଙ୍କ ଦୁର୍ଭିକ୍ଷ ଆରମ୍ଭ ହେବାର ସଂଗେ ସଂଗେ ଉତ୍କଳ ଦୀପିକାର ପ୍ରଥମ ସଂସ୍କରଣ ବାହାରିଲା । ସେଇ ଦୁର୍ଭିକ୍ଷ ଯୋଗୁ ଓଡିଶାର ସବୁକିଛି ବଦଳିବାର ସୂତପାତ ହେଲା । ଦୁର୍ଭିକ୍ଷ ନ ହେବା ପର୍ଯ୍ୟନ୍ତ ଇଂରେଜ ସରକାରଙ୍କର ଶୁଭଦୃଷ୍ଟି କେବେ ଭୁଲରେ ବି ଓଡିଶା ଦିଗକୁ ପଡି ନ ଥିଲା କହିଲେ ଚଳେ । ସେଇ ବର୍ଷରେ ରେଭେନ୍‌ସା ସାହେବ ନୂତନ ହୋଇ କମିଶନର ହିସାବରେ ଆସିଥିଲେ । ଦୁର୍ଭିକ୍ଷ ହେବାର ସମ୍ଭାବନା ବିଷୟରେ ଭୁଲ ଧାରଣା ପାଇ ସେ ଅନଭିଜ୍ଞତା ଯୋଗୁ କୌଣସି ଉପଯୁକ୍ତ ବ୍ୟବସ୍ଥା ନେଇ ନ ଥିଲେ । ତା' ଫଳରେ ଯେତେବେଳେ ମାଛି ମଶା ପରି ଲୋକେ ଅନାହାରରେ ମରିଯାଉଥିଲେ, ସେତେବେଳେ ହତାଶ ଭାବରେ ଚାହିଁ ରହିବା ଛଡା ରେଭେନ୍‌ସାଙ୍କ ପକ୍ଷରେ ଆଉ କିଛି ସମ୍ଭବ ନ ଥିଲା । ସେ ନିଜ ଭୁଲ ପାଇଁ ଅନୁତାପରେ ଅଭିଭୂତ ହୋଇ ପ୍ରତିଜ୍ଞା କଲେ ଯେ, କ୍ଷତି ପୂରଣ ହିସାବରେ ଓଡିଶା ପାଇଁ ସବୁକିଛି କରିବା ପାଇଁ ପ୍ରସ୍ତୁତ ହେବେ । ତେଣୁ ତାଙ୍କ ଅମଳରେ କୃଷି ଉନ୍ନତି ପାଇଁ ନୂଆ ନୂଆ ଖାଲଖଣା ହେଲା । ଆଉ ଓଡିଆଙ୍କ ଶିକ୍ଷାପାଇଁ କିଛି ନୂଆ ସୁଯୋଗ ସୃଷ୍ଟି ହେଲା । ତା' ମଧ୍ୟରେ ରହିଲା ଓଡିଆ ଭାଷାରେ ରଚନା ହୋଇଥିବା ନୂଆ ପାଠ୍ୟ ପୁସ୍ତକ ପାଇଁ କିଛି କିଛି ପୁରସ୍କାର ଘୋଷଣା ।"(୧)

॥ ମାନସିଂହଙ୍କ ବିଗ୍ରହଧାରା ॥

ନ' ଅଙ୍କ ଦୁର୍ଭିକ୍ଷ ପରେ ପରେ ଓଡିଆ ଜାତି ଉପରେ ଆଉ ଏକ ମନୁଷ୍ୟକୃତ ଚଡକ ପଡିଲା । ଓଡିଶାରେ ଚାକିରୀ କରୁଥିବା କେତେକ ବଙ୍ଗୀୟ ଲୋକ ୧୮୬୮ ରେ ଓଡିଆଙ୍କ ମୁହଁରୁ ଭାଷା ଛଡାଇ ନେବାପାଇଁ ଉଦ୍ୟମ କଲେ । କଟକ ଡିବେଟିଂ ସୋସାଇଟିରେ ରାଜେନ୍ଦ୍ରଲାଲ୍ ମିତ୍ର କହିଲେ– ଓଡିଆ ଭାଷା ବଙ୍ଗଳା ଲିପିରେ ଲେଖାଯିବା ଉଚିତ ଓ ବାଲେଶ୍ୱର ଗଭର୍ଣ୍ଣମେଣ୍ଟ ଜିଲ୍ଲା ସ୍କୁଲର ପଣ୍ଡିତ କାନ୍ତିଲାଲ୍ ଭଟ୍ଟାଚାର୍ଯ୍ୟ ଗୋଟିଏ ଚଟି ବହି ଲେଖି ଘୋଷଣା କଲେ–'ଓଡିଆ ସ୍ୱତନ୍ତ୍ର ଭାଷା ନହେ' (2) ଏହି ଚିନ୍ତା କତିପୟ ବଙ୍ଗବାସୀଙ୍କ ମନରେ ପ୍ରବେଶ କରିବାରୁ ସେମାନେ ଓଡିଆ ଭାଷା ଉଠାଇଦେଇ ସେ ସ୍ଥାନରେ ସ୍କୁଲ ମାନଙ୍କରେ ବଙ୍ଗଳା ଲିପି ତଥା ବଙ୍ଗଳା ଭାଷା ଚଳାଇବା ପାଇଁ ଲାଗି ପଡିଲେ । ଅବଶ୍ୟ ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କ ଯୁକ୍ତି କେବଳ ବଙ୍ଗ ପ୍ରୀତିରୁ ନୁହେଁ, ଆର୍ଥନୀତିକ ଦୃଷ୍ଟିକୋଣରୁ କେତେକ ଏହି ପ୍ରସ୍ତାବ ପ୍ରଦାନ କରୁଥିଲେ । କାରଣ ମୁଦ୍ରଣ ଶିଳ୍ପର ବିକାଶ ପୁସ୍ତକ ପାଠକ ସଂଖ୍ୟା ଉପରେ ନିର୍ଭର କରେ । ଅଳ୍ପ ପାଠକ ଥିବା ତତ୍କାଳୀନ ଓଡିଶାରେ ପୁସ୍ତକ ମୁଦ୍ରଣ ଲାଭ ଜନକ ନଥିଲା, ବଙ୍ଗଳାରେ ପାଠକ ସଂଖ୍ୟା ଅପେକ୍ଷାକୃତ ଅଧିକ ଥିଲେ । ମୁଦ୍ରଣ ଶିଳ୍ପରେ ଲାଭ ଦୃଷ୍ଟିରୁ ନିଜ ଭାଷାରେ ଲୋକସଂଖ୍ୟା ତଥା ପାଠକ ସଂଖ୍ୟା ବୃଦ୍ଧି ପାଇଁ ସମସ୍ତେ ତତ୍ପର ଥିଲେ । ସେ ଯାହାହେଉ ଓଡିଆ ଭାଷା ବିଲୋପ ପ୍ରଚେଷ୍ଟା, ତତ୍କାଳୀନ ଶାସକ ଜନ୍ ବିମ୍ସ ତଥା ସରସ୍ୱତୀ ଫକୀରମୋହନ ପ୍ରମୁଖଙ୍କ ଚେଷ୍ଟାରେ ରକ୍ଷା ପାଇ ଯାଇଥିଲା ।

ଆଧୁନିକ ଓଡିଆ ସାହିତ୍ୟର ସାରଥୀ ସେନାପତି ଫକୀରମୋହନଙ୍କ ଭୂମିକା ଏ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ । ଜାତି ଉପରେ ପୂର୍ବୋକ୍ତ ଧକ୍କା ଓଡିଆ ପ୍ରାଣର ଚେତନା ଫେରାଇ ଆଣିଲା । ପରବର୍ତ୍ତୀ ଅର୍ଦ୍ଧ–ଶତାବ୍ଦୀର ଓଡିଆ ସାହିତ୍ୟ ଏହି ଅବସ୍ଥାର ପ୍ରତିକ୍ରିୟାରୁ ଉଦ୍ଭୂତ । ମାନସିଂହଙ୍କର ଜନ୍ମର ପ୍ରାୟ ତ୍ରିଶ ବର୍ଷ ପୂର୍ବରୁ ଏ ଘଟଣାମାନ ଘଟିଥିଲେ ମଧ୍ୟ ଏହି କ୍ରିୟା ମାନଙ୍କର ପ୍ରତିକ୍ରିୟା ମାନସିଂହଙ୍କ ଜୀବନୀ ଓ ସାହିତ୍ୟରେ ଅନେକତ୍ର ପ୍ରତିଫଳିତ । ପରବର୍ତ୍ତୀ ପର୍ଯ୍ୟାୟରେ ଏ ବିଷୟରେ ଆଲୋଚନା କରାଯାଇଅଛି । ଓଡିଆ ଜାତି, ଭାଷା ଓ ସାହିତ୍ୟରେ ଏହି ସଂକଟ ମୁହୂର୍ତ୍ତ ପରେ ଯେଉଁ ବଳିଷ୍ଠ ପରିବର୍ତ୍ତନର ସୂତ୍ରପାତ ହେଲା, ତାହାହେଲା:— ଭାଷାରେ ପ୍ରଚୁର ପରିମାଣରେ ବହିଛପା ଓ ବିକ୍ରୟ ଆବଶ୍ୟକ, ସେଥିପାଇଁ———

(କ) ଗୌରୀଶଙ୍କରଙ୍କ କଟକ ପ୍ରିଣ୍ଟିଂ କମ୍ପାନୀ, ଫକୀରମୋହନ ପ୍ରମୁଖଙ୍କ ପି.ଏମ୍.ସେନାପତି ଏଣ୍ଡ କୋ ଇତ୍ୟାଦି ପ୍ରେସ୍ ପ୍ରତିଷ୍ଠା ।

(ଖ) ଜାତିର ସ୍ୱରକୁ ପତ୍ରପତ୍ରିକା ମାଧ୍ୟମରେ ପ୍ରକାଶ କରିବା— 'ଉତ୍କଳ ଦୀପିକା'ଠାରୁ ଆରମ୍ଭ କରି 'ବାଲେଶ୍ୱର ସମ୍ବାଦ ବାହିକା', ବୋଧଦାୟିନୀ, ତଥା ଉତ୍କଳ ମଧୁପ'ଠାରୁ—ଉତ୍କଳ ସାହିତ୍ୟ, ମୁକୁର, ସହକାର ପର୍ଯ୍ୟନ୍ତ ପତ୍ରିକା ପ୍ରକାଶ ।

|| ମାନସିଂହଙ୍କ ବିଗ୍ରହଧାରା ||

(ଘ) ପୁସ୍ତକ ମୁଦ୍ରଣ—ପାଠ୍ୟ ପୁସ୍ତକ ତଥା ପୁରାଣ ବହି ମୁଦ୍ରଣ ।
(ଘ) ଓଡିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ପାଇଁ ଚେତନା ।

ଓଡିଶାର ଏହି ନବ ଜାଗରଣ ସମୟରେ, ଓଡିଆ ଜାତିର ଅଭାବବୋଧକୁ ଲକ୍ଷ୍ୟକରି, ପାଶ୍ଚାତ୍ୟ ସାହିତ୍ୟ ଓ ପାଶ୍ଚାତ୍ୟ ସାହିତ୍ୟ ପ୍ରଭାବିତ ବଙ୍ଗ ସାହିତ୍ୟ, ଓଡିଆ ସାହିତ୍ୟିକ ମାନଙ୍କ ସମ୍ମୁଖରେ ଆଦର୍ଶ ଭାବରେ ଦେଖାଦେଲା । ବଙ୍ଗ ସାହିତ୍ୟରେ ଆଧୁନିକତାର ସୂତ୍ରଧର ବଙ୍କିମଚନ୍ଦ୍ର, ମାଇକେଲ ମଧୁସୂଦନ ଦତ୍ତ , ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ପ୍ରଭୃତିଙ୍କର ସାହିତ୍ୟ, ସେତେବେଳକୁ ଓଡିଶା ସୀମା ପାର ହୋଇ ଆସି ଓଡିଆ ମାନଙ୍କ ପାଖରେ ପହଁଚି ସାରିଲାଣି । ପରବର୍ତ୍ତୀ ସମୟରେ ସମଗ୍ର ଭାରତୀୟ ସାହିତ୍ୟରେ ଦୃଷ୍ଟି ଆକର୍ଷଣ କରିଥିବା, କବିଗୁରୁ ରବୀନ୍ଦ୍ରନାଥ, କାନ୍ତକବି ରଜନୀକାନ୍ତଙ୍କ ଆବିର୍ଭାବ ଓ ସାହିତ୍ୟ ସାଧନା ଆରମ୍ଭ ହୋଇଯାଇଥାଏ । ରାଜାରାମମୋହନ ରାୟଙ୍କ ପ୍ରତିଷ୍ଠିତ ବ୍ରାହ୍ମଧର୍ମ ଓ ବ୍ରାହ୍ମ ସମାଜ ଓଡିଶାରେ ପ୍ରବେଶ କରି ସାମାଜିକ ଜୀବନରେ ପରିବର୍ତ୍ତନର ସୂତ୍ରପାତ କରିଥାଏ । ଉପର୍ଯ୍ୟୁକ୍ତ ସମସ୍ତ କାରଣର ପ୍ରଭାବ ଆଧୁନିକ ଓଡିଆ ସାହିତ୍ୟର ଗତି ନିୟନ୍ତ୍ରଣ କରିବା ସଂଗେ ସଂଗେ ମାନସିଂହ ସାହିତ୍ୟର ପୃଷ୍ଠଭୂମି ଗଠନରେ ସାହାଯ୍ୟ କରିଛି ।

ଊନବିଂଶ ଶତକର ବିଶିଷ୍ଟ ସାହିତ୍ୟିକ, କବିବର ରାଧାନାଥ ରାୟ, ଭକ୍ତକବି ମଧୁସୂଦନ ରାଓ ଓ ସରସ୍ୱତୀ ଫକୀରମୋହନଙ୍କ ସୃଷ୍ଟି ସଂପଦ ବିଂଶ ଶତକର ସାହିତ୍ୟିକ ମାନଙ୍କୁ ପ୍ରଭାବିତ କରିବା ସଂଗେ ସଂଗେ, ମାନସିଂହଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇଛି । ଊନବିଂଶ ଶତକରେ ସଂଘଟିତ ନାନା ଆଂଦୋଳନର ଅନ୍ତିମ ପର୍ଯ୍ୟାୟରେ, ସମ୍ବଲପୁର ଅଞ୍ଚଳରୁ ସରକାରୀ ଭାଷା ଓଡିଆ ପରିବର୍ତ୍ତେ ହିନ୍ଦୀର ପ୍ରଚଳନ ବିରୁଦ୍ଧରେ ପ୍ରତିକ୍ରିୟା, ସ୍ୱତନ୍ତ୍ର ଉତ୍କଳ ରାଜ୍ୟ ଗଠନର ସର୍ବଶେଷ ରୂପ ଉତ୍କଳ ସମ୍ମିଳନୀ(୧୨୦୩, ଡିସେମ୍ବର, ୩୦–୩୧) ଗଠନ ପୂର୍ବରୁ ୧୨୦୩ ଅପ୍ରେଲରେ ଅନୁଷ୍ଠିତ ଗଞ୍ଜାମ ସମ୍ମିଳନୀକୁ ପୃଷ୍ଠଭୂମି ଭାବରେ ଗ୍ରହଣ କରାଯାଇ ପାରେ । ଉପର୍ଯ୍ୟୁକ୍ତ ରାଜନୈତିକ, ସାମାଜିକ ଓ ସାଂସ୍କୃତିକ ପୃଷ୍ଠଭୂମି ଉପରେ ମାୟାଧର ମାନସିଂହଙ୍କ ଜନ୍ମ । ପୁନଶ୍ଚ ମାନସିଂହଙ୍କ ଜନ୍ମସ୍ଥାନର ପ୍ରାକୃତିକ ପରିବେଶ ହିଁ ମାନସିଂହଙ୍କ କବି ପ୍ରାଣକୁ ବାଲ୍ୟ କାଳରୁ ଉଜ୍ଜୀବିତ କରିପାରିଛି ।

ଏକପଟେ ମରାଳମାଳିନୀ ନୀଳାମ୍ବୁ ଚିଲିକା, ଆରପଟେ ନୀଳ ମହୋଦଧି । ଦକ୍ଷିଣ ଦିଗରୁ ପଶ୍ଚିମ ପଟଦେଇ ଉତ୍ତରପାଖ ପର୍ଯ୍ୟନ୍ତ ମୁକୁଟ ମଣ୍ଡନକରି ଦଣ୍ଡାୟମାନ ନୀଳପାହାଡମାଳା । ଗ୍ରାମର ସୀମାକୁଲାଗି ଚିଲିକାତୀରବର୍ତ୍ତୀ ସବୁଜ ଫସଲକ୍ଷେତ । କିଆକେତକୀର ଅରଣ୍ୟ ମଧ୍ୟରେ ପ୍ରୋଲାଙ୍ଗ ଲଙ୍କାଆମ୍ବ, ତାଳ ତମାଳ ନାରିକେଳର କୁଞ୍ଜ ବେଷ୍ଟିତ ମନୋରମ ବାଲିବନ୍ତ । କବିବର ରାଧାନାଥଙ୍କ ସଖୀପ୍ରତିମ ଚିଲିକା, ଯାହାର ତୀରବର୍ତ୍ତୀ ଜଟିଆ କୋଳରେ ନିବାସ ରଚନା କରି, ପଶ୍ଚିମ ଜୀବନଯାପନ ପାଇଁ ସେ କଳ୍ପନା କରିଥିଲେ; ସେହି ଚିଲିକାର ବହୁରଙ୍ଗୀବେଶ ସନ୍ଦର୍ଶନ କରୁଥିବା ପରିବେଶରେ ବାଳକ ମାୟାଧର ବାଲ୍ୟଜୀବନ ଅତିବାହିତ କରିଥିଲେ । ଚିଲିକାର ଦକ୍ଷିଣ–ପୂର୍ବ କୋଣରେ, ଠିଆ ହୋଇଛି ନନ୍ଦଲା ଗାଁ, ଚିଲିକାର ନୀଳଜଳକୁ ସ୍ପର୍ଶକରି । ଖଣ୍ଡାୟତ ଗାଁ । ପାଇକାଳୀ ଗାଁ । ଓଡିଶା ରାଜାଙ୍କ ପାଇକ

!! ମାନସିଂହଙ୍କ ବିଗ୍ରହଧାରା !!

ସେମାନେ । ଓଡିଶାର ବୀର ସୈନିକ । କୃଷକ ସୈନ୍ୟ । ନିଜ କ୍ଷେତରେ କାମ କରନ୍ତି, ସଞ୍ଜ ହେଲେ ପାଇକ ଆଖଡାରେ କସରତ କରନ୍ତି, ସାଧନ କରନ୍ତି, ଗଦା ବୁଲାଇ, ଖଣ୍ଡା ତଲୁଆର ବୁଲାଇ, ଠିକ୍ ସାରଳା ମହାଭାରତର ବୀର ମାନଙ୍କ ପରି ।

ନିଜ ଅଂଚଳ, ପାରିକୁଦ ରାଜାଙ୍କ ଅଧୀନରେ ସେମାନେ ସମର କରନ୍ତି । ସାରା ଓଡିଶାକୁ ବିପତ୍ତି ପଡିଲେ ବା ଓଡିଶାର ବିଜୟ ଅଭିଯାନ ଆରମ୍ଭ ହେଲେ ସେମାନେ ଗଜପତି ସୈନ୍ୟ ରୂପେ ଯୁଦ୍ଧ କରନ୍ତି । ପୁରୁଷ ପୁରୁଷ ଧରି ସେମାନେ ଭୋଗକରି ଆସୁଥିଲେ ନିଷ୍କର ଭୂ-ସଂପତ୍ତି । ମାଟି ମା' ଧାନ ଦିଏ, ଚିଲିକା ଆଉ ମହୋଦଧି ମାଛ ଦିଅନ୍ତି । ପୁରୁଷାନୁକ୍ରମେ ସେମାନେ ଏମିତି ଚଳି ଆସୁଥିଲେ । ଯୁଦ୍ଧ କ୍ଷେତ୍ରରେ ସେମାନେ ଶତ୍ରୁର ସମ୍ମୁଖୀନ ହୁଅନ୍ତି । ମଲେ 'ସ୍ୱର୍ଗବାସ ବର୍ତ୍ତିଲେ ବୀର ଶିରୋପା, ରାଜା କାନ୍ଧରେ ହାତପକାଇ ବଧାଇ ଜଣାନ୍ତି । ଫେରିଲାବେଳେ କୁଳ ସୀମନ୍ତିନୀ ମାନେ ଅର୍ଘ୍ୟଥାଳୀ ଧରି ବନ୍ଦାଇ ଆସନ୍ତି । ମାନସିଂହଙ୍କ ସାହିତ୍ୟରେ ଅନେକ ସ୍ଥାନରେ ଏହି ଚେତନାର ପ୍ରତିଫଳନ ଘଟିଛି । ମାନସିଂହ ନିଜ ଗ୍ରାମର ପରିଚୟ ଓ ପରିବେଶ ବିଷୟରେ କହନ୍ତି: "ମୋର ଘର ଚିଲିକା କୂଳସ୍ଥ ଗୋଟିଏ ଛୋଟ ପଲ୍ଲୀରେ । ତିରିଶ/ଚାଳିଶଟି ପରିବାର ମାତ୍ର ସେଠାରେ ବାସ କରନ୍ତି । ସେମାନେ ସମସ୍ତେ ଖଣ୍ଡାୟତ । କିନ୍ତୁ ଖଣ୍ଡାୟତର ଗୌରବମୟ ଇତିହାସ ସେମାନେ କିଛିହେଲେ ଜାଣନ୍ତି ନାହିଁ । ସେମାନେ ସମସ୍ତେ ପ୍ରାୟ ମୂର୍ଖ । କିନ୍ତୁ ପ୍ରାଚୀନ ପ୍ରଥାନୁସାରେ ସେମାନେ କୌଳିକ ସନ୍ତକ ଖଣ୍ଡିଟି ମାନଙ୍କୁ ପୂଜା କରନ୍ତି । ଆମରି ଘରେ ସେ ପୂଜା ବସେ । ବିଜୟା ଦଶମୀର ବିମଳ ଜ୍ୟୋସ୍ନାରେ ଧରଣୀ ଆଲୋକିତ ହୋଇ ଉଠିଲେ, ଗ୍ରାମ ଦାଣ୍ଡରେ ଗ୍ରାମ୍ୟ ହାଡିର ଗମ୍ଭୀର ଢୋଲ ଧ୍ୱନି ଛୋଟ ଗ୍ରାମରେ ସମସ୍ତଙ୍କ ପ୍ରାଣକୁ ଚଥଳ କରିପକାଏ । ଗ୍ରାମ୍ୟ ପୁରୋହିତ ପୂଜା ଶେଷ କରନ୍ତେ, ଗ୍ରାମର ଟୋକା ଓ ବୁଢାମାନେ କାଳକଳଙ୍କିତ ଓ ଅବ୍ୟବହୃତ ମୌନ ଖଣ୍ଡା, ତରବାରୀ, ଢାଲ ଓ ପଟାବାଡି ସବୁ ଧରି ବାହାରି ପଡନ୍ତି, ଗ୍ରାମ ଦାଣ୍ଡକୁ ଶ୍ରେଣୀବଦ୍ଧ ଭାବରେ । ଗ୍ରାମ ଶେଷରେ ଗ୍ରାମ ଦେବତାଙ୍କ ମନ୍ଦିର । ଶ୍ରେଣୀବଦ୍ଧ ପାଇକେ ସେଠାକୁ ଯାଇ ଦେବତାଙ୍କୁ ନମସ୍କାର କରି ଫେରି ଆସିଲାବେଳେ ଢୋଲବାଦ୍ୟରେ ତାଙ୍କର ପାଦସବୁ ବୀରଦର୍ପରେ ଆପେ ଆପେ ନାଚିଯାଏ । ଗ୍ରାମର ମଝି ଦାଣ୍ଡକୁ ଆସିଲେ ତାଙ୍କୁ ଆଉ ରଖେ କିଏ ? ଜଣ ଜଣ ହୋଇ ଢାଲ ତରବାରୀ ଧରି ଝପା ଝପ୍ ଡେଇଁ ପଡନ୍ତି ଓ ନୃତ୍ୟମୟ ପାହୁଲରେ ପରସ୍ପର ମଧ୍ୟରେ ଦ୍ୱନ୍ଦ୍ୱଯୁଦ୍ଧ ଆରମ୍ଭ କରିଦିଅନ୍ତି । ବନ୍ଧୁଗଣ ଆପଣ ବିଶ୍ୱାସ କରନ୍ତୁ ବା ନ କରନ୍ତୁ, ମୁଁ ଯେତେଥର ସେଠାରେ ଉପସ୍ଥିତ ହୋଇଛି, ମୋର ଗ୍ରାମବାସୀଙ୍କର ସେଇ ମୁହୂର୍ତ୍ତକର ରଣ ନୃତ୍ୟ ଦେଖି ସେତେଥର ମୋର ଆଖି ଲୋତକ ଯୁକ୍ତ ହୋଇ ଉଠିଛି । ଅବଶ୍ୟ କାଳେ କିଏ ଦେଖିବ ବୋଲି, ମୁଁ ଜନତାର ଅନ୍ତରାଳରେ ମୋର ଭାବାବେଗକୁ ରୁଦ୍ଧ କରିପକାଏ । କିନ୍ତୁ ସେ ଦୃଶ୍ୟର କରୁଣ ମାଧୁରୀ ମୋର ଜାତୀୟତାର ଏକ ପ୍ରଧାନ ଉପାଦାନ ହୋଇ ରହିଛି । ମୋର ସେ ଗ୍ରାମବାସୀ, ଉତ୍କଳର ପ୍ରାଚୀନ ଯୋଦ୍ଧୃବର୍ଗଙ୍କର ଅଧଃପତିତ ବଂଶଧର ଗଣ ଆଜି ଭୋକଉପାସରେ କାହିଁ ରେଙ୍ଗୁନ କଲିକତା ଆସାମରେ ମାଟିକାମ କରିବାରେ ବାଧ୍ୟ ହେଉଛନ୍ତି ।

ସେମାନେ ଏତକ ବିଶ୍ବାସ କରିବେ ନାହିଁଯେ,ତାଙ୍କରି ପୂର୍ବ ପୁରୁଷ କାହିଁ ବାରାଂଗଳ ପ୍ରଭୃତି ଦୂରଦେଶରେ ଯୁଦ୍ଧକରି ଜନ୍ମମାଲ୍ୟନେଇ ଫେରି ଆସିଥିଲେ ।"(3)

ଏହିଭଳି ଏକଗ୍ରାମରେ ଖଣ୍ଡାୟତ ପରିବାରରେ ଜନ୍ମ ହୋଇଥିଲେ,କବି ମାୟାଧର ମାନସିଂହ । ଖ୍ରୀ:1905 ମସିହା ନଭେମ୍ବର ମାସ 13 ତାରିଖରେ । ପିତାଙ୍କ ନାମ ପଦ୍ମଚରଣ ମାନସିଂହ । ମାନସିଂହ ତାଙ୍କର ପାରିବାରିକ ପଦବୀ ନୁହେଁ,ପଦ୍ମଚରଣଙ୍କର ମାନସିଂହ ଉପାଧି ରାଜଦତ୍ତ । ପଦ୍ମଚରଣଙ୍କ ପିତାଙ୍କ ନାମ ସତ୍ୟବାଦୀ ନାୟକ । ସତ୍ୟବାଦୀ ନାୟକ ମଧ୍ୟ ଜଣେ କବି । ତାଙ୍କ କବିତ୍ୱର ସଂଧାନ ମାନସିଂହ ପରେ ପାଇଲେ,ମାତ୍ର ସତ୍ୟବାଦୀ ନାୟକଙ୍କର କବି ରକ୍ତ ଯେ ମାନସିଂହଙ୍କ ଠାରେ ବିଦ୍ୟମାନ,ସେ କଥା ନିଜେ ମାନସିଂହ ମଧ୍ୟ ଜାଣି ନଥିଲେ । ଖ୍ରୀ: 1956 ମସିହାର ଗ୍ରୀଷ୍ମକାଳରେ କବି ମାନସିଂହ ଯାଇ ଦେଖନ୍ତି ଯେ,ଔପନ୍ୟାସିକ ଶ୍ରୀ ଗୋପୀନାଥ ମହାନ୍ତି ମାନସିଂହଙ୍କ ଗ୍ରାମକୁ ଯାଇ,ମାନସିଂହଙ୍କର କବିତ୍ୱ ପରିଚୟ ଦେବା ସଂଗେ ସଂଗେ ମାନସିଂହଙ୍କ ଗୋସାଇଁବାପ ସତ୍ୟବାଦୀ ନାୟକ ଯେ ଜଣେ କବି,ସେ କଥା ଅନୁ ସଂଧାନ କରିଛନ୍ତି । ମାନସିଂହଙ୍କ ଭାଷାରେ—"ତାଙ୍କର ଏଇ ଅପ୍ରତ୍ୟାଶିତ ନୂତନ ଖନନ କର୍ମ ଫଳରେ ଆମ ଗାଁ ଓ ଆଖପାଖରେ ଲୋକେ ପ୍ରଥମ ଥର ପାଇଁ ହିଁ ଜାଣି ପାରିଛନ୍ତି ଯେ ମୁଁ କବି କରେ ଏବଂ ନିଜେ ମୁଁ ଜାଣିବାକୁ ପାଇଲି ଯେ ମୋର ଗୋସେଇଁବାପ ସତ୍ୟବାଦୀ ନାୟକ ଜଣେ କବି ଥିଲେ ।(4

ନିଜର ପାରିବାରିକ ପୃଷ୍ଠଭୂମି ଉପରେ ମାନସିଂହ ଲେଖିଛନ୍ତି—"ପାରିକୁଦ-ମାଲୁଦ ବର୍ତ୍ତମାନ ଘୋର ଅନୁନ୍ନତ ଅଞ୍ଚଳ । ଏ ଅଞ୍ଚଳକୁ ପାନୀୟ ଜଳହୀନ,ଚିର ଦୁର୍ଭିକ୍ଷଗ୍ରସ୍ତ,ପଥହୀନ ଏକ ମରୁଦେଶ କହିଲେ ଅତ୍ୟୁକ୍ତି ହେବନାହିଁ । କିନ୍ତୁ ଆଜି ପଛକୁ ଅନାଇ,ମୁଁ ବିସ୍ମୟରେ ଅଭିଭୂତ ହେବାକୁ ବାଧ୍ୟ ହେଉଛି ଯେ,ଏହି ଈଶ୍ୱର ପରିତ୍ୟକ୍ତ ଭୂମିରେ ମଧ୍ୟ ଆଧୁନିକତାର ଅରୁଣାଲୋକ ଯେତେବେଳେ ସେଠି ଦେଖାଯାଇ ନଥିଲା,ସେଠି ଏକ ସାଂସ୍କୃତିକ ବାତାବରଣ ଥିଲା । ଆମର ସେଇ ଛୋଟ ଗ୍ରାମରେ ବାହାରେ ବୟସ୍କମାନେ ଛାନ୍ଦ-ଚଉପଦୀର ଚର୍ଚ୍ଚା,ପାଠକ ସାଧନ ଓ ଗାଣିତିକ ଗୂଢ଼ାର୍ଥରେ ମଉଥିଲାବେଳେ,ଘର ଭିତରେ କାଣ୍ଡେଇର ଅପା(କାଣ୍ଡସର ନାମକ ଗ୍ରାମରେ ବୋହୂ ହୋଇଥିବାରୁ,ସମସ୍ତେ ତାଙ୍କୁ ସେଇ ନାମରେ ଡାକୁ ଥିଲେ)ସୂତା-ଗୁନ୍ଥା ତିଣ-ଚଷମା ନାସିକାଗ୍ରରେ ଦେଇ ଅତି ଯତ୍ନ-ରକ୍ଷିତ ରସକଲ୍ଲୋଳ ଓ ବିଦଗ୍ଧ ଚିନ୍ତାମଣି ଦୁଇଟି ଗନ୍ଥକୁ ଗୁଣ ଗୁଣ ବୋଲି ଗୃହ ସୀମନ୍ତିନୀ ମାନଙ୍କୁ 'ମହାପୁରୁଷ'ଙ୍କ କଥା ବୁଝାଉଥାଏ । ସେ କାଳରେ ସାର୍ଟିଫିକେଟର ଦୌରାତ୍ମ୍ୟରେ ବିଦ୍ୟା ଦେଶବାସୀର ଦୈନଂଦିନ ଜୀବନରୁ ଏବ ପରି ପଳାୟନ କରି ନଥିଲା । ଲୋକେ ବିଦ୍ୟାପାଇଁ ବିଦ୍ୟାର୍ଜନ କରୁଥିଲେ ଏବଂ ଯେ ଯେତେବେଳେ ପାଉଥିଲା ତାକୁଇ ସେ ଜୀବନର ସକଳ ପ୍ରୟୋଜନର କାମଧେନୁପରି ବ୍ୟବହାର କରୁଥିଲା । ପୁଣି ଏହି ବିଦ୍ୟା ବିନା-ଅକ୍ଷର-ଜ୍ଞାନରେ ମଧ୍ୟ ଲୁବ୍ଧ ହୋଇ ପାରୁଥିଲା । ପାରିକୁଦର ନିରକ୍ଷର ପ୍ରସାଦ ତରାଇ ମୁହେଁ ମୁହେଁ 'ମଣିମା,ପାରିକୁଦ ନରେଶ'ରୁ ଆରମ୍ଭକରି ମାଳ ମାଳ ଶ୍ଳୋକ ଅବଲୀଳାକ୍ରମେ ବୋଲି ଯାଉଥିଲା । ପାରିକୁଦ ରଜାଙ୍କ ପାଟ ଅଗଣାରେ ଢଳି ଢଳି । ପ୍ରସାଦ ତରାଇ ଆଉ ନାହିଁ । x x x

॥ ମାନସିଂହଙ୍କ ବିଗ୍ଭରଧାରା ॥

ଏଇହେଲା ଆମ ପାରିକୁଦର ମୋଟାମୋଟି ସାଂସ୍କୃତିକ ଚିତ୍ର । ଆମ ଗାଁର ଆର୍ଥିକ, ସାମାଜିକ ଓ ସାଂସ୍କୃତିକ ଜୀବନ ଆମ ପରିବାରକୁ କେନ୍ଦ୍ରକରି ଗଢି ଉଠିଥିଲା । ଆମ ପରିବାରର ବିଶେଷତ୍ୱ ଏଇ ଥିଲା ଯେ ଅନ୍ୟଗ୍ରାମବାସୀ ମାନଙ୍କପରି କୃଷିବାସ କରୁଥିଲେ ହେଁ, ଏମାନେ ପାରିକୁଦ ରାଜ ଦରବାରରେ ସାତପୁରୁଷ ଧରି ଚାକିରୀ କରି ଆସୁଥିଲେ । ସମଗ୍ର ପାରିକୁଦରେ ଆମବଂଶର ପ୍ରତିପତ୍ତିର ଏକ ପ୍ରଧାନ କାରଣ ବୋଧହୁଏ ଏହାହିଁ ଥିଲା । ମୋ' ଠାରୁ ହିଁ ଏହି ସ୍ଥାନୀୟ ପ୍ରତିପତ୍ତିର ଶେଷ ହୋଇଛି ।"(5)

ମାନସିଂହ ନିଜ ଗୋସାଇଁବାପା, ସତ୍ୟବାଦୀ ନାୟକଙ୍କ ବିଷୟରେ ପୁଣି ଲେଖିଛନ୍ତି—"କବି ସତ୍ୟବାଦୀ ନାୟକ ପାରିକୁଦ ରାଜ ଦରବାରରେ ଅମିନ ଥିଲେ । ଏବେବି ତାଙ୍କୁ ଲୋକେ ଅମିନ ବୋଲି କହିଥାନ୍ତି । କବି ଅଳ୍ପ ବୟସରେ ପ୍ରାଣତ୍ୟାଗ କରିଥିଲେ—କେତେ ବୟସରେ ଠିକ୍ କହିପାରୁ ନାହିଁ । ତଥାପି ପିଲାପିଲିଙ୍କ ପାଇଁ ଯଥେଷ୍ଟ ଭୂ-ସମ୍ପତ୍ତି ଛାଡି ଯାଇଥିଲେ । ମୁଁ ମନେ କରୁନାହିଁ ଯେ ଏ ସମସ୍ତ ସମ୍ପତ୍ତି ସେ କେବଳ ଅମିନଗିରି କରି କମେଇ ଥିଲେ । ତାଙ୍କର ଆବିଷ୍କୃତ ଗନ୍ଥଟି ପାରିକୁଦ ରାଜା—ତାଙ୍କର ସେ କାଳର ମୁନିବ ଶ୍ରୀ ଗୌରଚନ୍ଦ୍ର ମାନସିଂହଙ୍କ ନାମରେ ଭଣିତ । ମୋର ଅନୁମାନ ସେ ସତ୍ୟବାଦୀ କେବଳ ଅମିନ ଭାବରେ ନୁହଁ, କବି ଭାବରେ ମଧ୍ୟ ରାଜ ଦରବାରରେ ସମ୍ମାନିତ ଓ ପୁରସ୍କୃତ ହୋଇଥିଲେ ।"(6)

ସତ୍ୟବାଦୀ ନାୟକଙ୍କର ପାଞ୍ଚିପୁଅ ଓ ଗୋଟିଏ କନ୍ୟା । ସେ ପୁଅମାନଙ୍କ ନାମ କ୍ରମାନ୍ୱୟରେ, ଅଗାଧୁ ନାୟକ, ପଦ୍ମଚରଣ ମାନସିଂହ, ଯୁଗଳ ନାୟକ, ବୈକୁଣ୍ଠ ନାୟକ ଓ ବାଞ୍ଛାନିଧି ନାୟକ । ମାନସିଂହଙ୍କ ପିତା ପଦ୍ମଚରଣ ସତ୍ୟବାଦୀଙ୍କର ଦ୍ୱିତୀୟ ପୁତ୍ର । ପଦ୍ମଚରଣଙ୍କର ଦୁଇ ଝିଅ ଓ ଗୋଟିଏ ପୁଅ । ବଡଝିଅ ପୂଜା, ବର୍ତ୍ତମାନ ଜୀବିତ ଅଛନ୍ତି, ସେ ମାୟାଧରଙ୍କ କଣ୍ଢକାଚ କବିତାର ଅପା, ସାନଝିଅ ଧୋବୀ, ଅକାଳରେ ମୃତ୍ୟୁ ବରଣ କରିଥିଲେ ।

ମାନସିଂହଙ୍କ ପରିବାରର ସାଂସ୍କୃତିକ ପୃଷ୍ଠଭୂମି ଉପରେ ଆହୁରି ଏକ ପରିଚୟ, ମାନସିଂହଙ୍କ ଲେଖାରୁ ଦୃଷ୍ଟାନ୍ତ ଭାବରେ ନିଆଯାଇ ପାରେ—" ସତ୍ୟବାଦୀ ନାୟକ ପ୍ରକୃତରେ ଏକ ଗ୍ରାମ୍ୟ କବି ଏବଂ ଏକାନ୍ତ ଭାବରେ ଅଜ୍ଞାତ । ହୁଏତ ତାଙ୍କ ସମସାମୟିକ ଲୋକେ ତାଙ୍କୁ କବି ବୋଲି ଜାଣିଥିବେ, କିନ୍ତୁ ଅଧିକାଂଶଙ୍କ ନିକଟରେ ସେ କେବଳ 'ଅମିନ' ବୋଲି ପରିଚିତ । ବୋଧହୁଏ ଗୌରଚନ୍ଦ୍ର ମାନସିଂହଙ୍କୁ ଖୁସି କରାଇବା ପାଇଁ, ରାଜାଙ୍କ ଭଣିତାରେ ସେ ଏ କାବ୍ୟ ଲେଖିଥିଲେ । ହୁଏତ ରାଜ ଦରବାରରେ ସେ ଏହା ଆବୃତ୍ତି କରିଥାଇ ପାରନ୍ତି । ତାଙ୍କର ଏଇଗୁଣ ତାଙ୍କର ଅନ୍ତତଃ ଦୁଇଟି ପୁଅଙ୍କ ଠାରେ ଦେଖା ଦେଇଛି । ତାଙ୍କର ତୃତୀୟ ପୁତ୍ର ଯୁଗଳ ନାୟକଙ୍କୁ ଆମର ସମଗ୍ର ଅଞ୍ଚଳରେ 'ଗାହାକ' ବୋଲି ହିଁ ଜାଣନ୍ତି । ପିଲାଦିନେ ମୁଁ ଦେଖିଛି 'ଗାହାକଦା' ସାରାରାତି ଗାଁର କୃଷ୍ଣଲୀଳାର ପ୍ରଧାନ ଗାୟକ ରୂପେ ଏକସ୍ଥାନରେ ଠିଆହୋଇ ଛାନ୍ଦକୁ ଛାନ୍ଦ ଗାଇଗ୍ଭଲିଥା'ନ୍ତି । ତାଙ୍କର କଣ୍ଠ ଉଦାତ୍ତ ମଧୁର ଥିଲା । ପ୍ରାଚୀନ ଛାନ୍ଦ ଚଉପଦୀ ଚଉପଦୀ ପାଇଁ ଏକାନ୍ତ ଉପଯୁକ୍ତ । ପୂର୍ବରୁ ମଧ୍ୟ କହିଛି ଯେ ସାନ ଦଦା(ବାଞ୍ଛାନିଧି ନାୟକ)ଙ୍କ କଣ୍ଠ ମଧ୍ୟ ପ୍ରାଚୀନ ଗାନ ଓ କୀର୍ତ୍ତନାଦି ପାଇଁ ବେଶ ସୁନ୍ଦର ଓ ଶକ୍ତିମନ୍ତ ଥିଲା । ସତ୍ୟବାଦୀଙ୍କ ଗୁଣରେ ହୁଏତ ମୁନିବ ରଜା ସନ୍ତୁଷ୍ଟ ହୋଇଥିବେ ଓ ପାରିତୋଷିକ ଦେଇଥିବେ । X X X"(7)

॥ ମାନସିଂହଙ୍କ ବିଗ୍ରହଧାରା ॥

ନିପଟ ପଲ୍ଲୀ ଅଞ୍ଚଳରେ ହେଲେ ମଧ୍ୟ, ଏକ ସଂସ୍କୃତି ସଂପନ୍ନ ପରିବାରରେ କବି ମାୟାଧରଙ୍କ ଜନ୍ମ । ମାୟାଧରଙ୍କ ଜନ୍ମ ପରେ ମଧ୍ୟ ସେ ପରିବାରର ପ୍ରତିପତ୍ତି ଲୋପ ହୋଇ ନଥିଲା । କବିଙ୍କ ପିତା ଅକାଳରେ ଅର୍ଥାତ ମାୟାଧରଙ୍କୁ ମାତ୍ର ଗୁରିବର୍ଷ ହେଲା ବେଳକୁ ଇହଲୀଳା ସମ୍ବରଣ କଲେ, ଶୁଣାଯାଏ ସେହି ଦୁଃଖରେ ମା' ସୁଭଦ୍ରା ଦେବୀ ଆତ୍ମହତ୍ୟା କଲେ । ଏକାନ୍ନବର୍ତ୍ତୀ ପରିବାରରେ ମାନସିଂହଙ୍କ ଲାଳନ ପାଳନର କୌଣସି ଅସୁବିଧା ହେଲାନାହିଁ । କିନ୍ତୁ କବି ମାନସିଂହଙ୍କ ମନ ମଧ୍ୟରେ ଗୋଟିଏ ସ୍ନେହର ଅଭାବବୋଧ ସାରା ଜୀବନ ରହିଥିବା, ଯାହା ତାଙ୍କର ସାହିତ୍ୟିକ ଜୀବନରେ ପ୍ରତିଫଳିତ । ପାରିକୁଦ ରାଜଦରବାରରେ ମାନସିଂହଙ୍କ ସାଆନ୍ତ ବାପା, ଅଗାଧୁ ନାୟକଙ୍କର ସୁନାମ ବି ଥାଏ । ମାନସିଂହଙ୍କ ବାଲ୍ୟଶିକ୍ଷା ପାରିକୁଦ ଗଡରେ ଆରମ୍ଭ ହେଲା ।

## ଆବିର୍ଭାବ

ମାନସିଂହଙ୍କ ଆବିର୍ଭାବ ଐତିହାସିକ ଦୃଷ୍ଟିକୋଣରୁ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ସମୟ । ଇଂରେଜମାନେ ଓଡିଶା ଅଧିକାର କରିବାର ପ୍ରାୟ ଏକଶହ ବର୍ଷରୁ ଅଧିକ ହୋଇଥିଲେ ହେଁ ଓଡିଶା ରାଜ୍ୟର ସୀମା ସେ ପର୍ଯ୍ୟନ୍ତ ନିର୍ଦ୍ଧାରିତ ହୋଇ ନଥାଏ । ତିରିଶ/ଖ୍ରିଶ ବର୍ଷ ଧରି ଓଡିଆ ମାନଙ୍କ ଭିତରେ ତତ୍‌ସଂପର୍କୀୟ ଜାଗରଣର ସୂତ୍ରପାତ ହୋଇଥାଏ । ରମ୍ଭାରେ ଅନୁଷ୍ଠିତ ଗଞ୍ଜାମ ସମ୍ମିଳନୀ(ଏପ୍ରିଲ, ୧୨୦୩) କଟକରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀ(୧୨୦୩, ଡିସେମ୍ବର, ୩୦, ୩୧) ଏହି ଆନ୍ଦୋଳନର ନୂତନ ପର୍ଯ୍ୟାୟକୁ ଦୃଢ ଭାବରେ ସଂଗଠିତ କରି ଗତିଶୀଳ କରାଉଥାଏ । ଆଧୁନିକ ସାହିତ୍ୟ ସୃଷ୍ଟି କ୍ଷେତ୍ରରେ ରାଧାନାଥ ମଧୁସୂଦନ ଓ ଫକୀରମୋହନଙ୍କ ଅନେକ ସୃଷ୍ଟି ପ୍ରକାଶ ଲାଭ କରିସାରିଥାଏ । ସ୍ୱଭାବ କବି ଗଙ୍ଗାଧର, ପଲ୍ଲୀକବି ନନ୍ଦକିଶୋର, ନାଟ୍ୟକାର ରାମଶଙ୍କର ତଥା ପ୍ରାବନ୍ଧିକ ବିଶ୍ୱନାଥ କର ପ୍ରମୁଖ ଉତ୍କଳର ସାହିତ୍ୟିକ ବାତାବରଣକୁ ଜାଗ୍ରତ ରଖିଥା'ନ୍ତି । ସର୍ବଭାରତୀୟ କ୍ଷେତ୍ରରେ କ୍ଷେତ୍ରରେ ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହୋଇସାରିଥାଏ । ମାନସିଂହଙ୍କ ସାହିତ୍ୟ ସୃଷ୍ଟିର ପ୍ରାକ୍ କାଳରେ ଉତ୍କଳୀୟ ଜାତୀୟ ଜାଗରଣର ଯେଉଁ ଚମକ ଖେଳି ଯାଇଥିଲା, ତାହା ପରବର୍ତ୍ତୀ କାଳରେ ମାନସିଂହଙ୍କ ସୃଷ୍ଟିରେ ସ୍ପଷ୍ଟ ଭାବରେ ପ୍ରତିଫଳିତ ।

ମାନସିଂହଙ୍କ ବିଦ୍ୟାରମ୍ଭ ସମୟକୁ, ସାହିତ୍ୟ ପତ୍ର ଭାବରେ ବିଶ୍ୱନାଥ କରଙ୍କର 'ଉତ୍କଳ ସାହିତ୍ୟ' ବ୍ରଜ ସୁନ୍ଦର ଦାସଙ୍କର 'ମୁକୁର' ପ୍ରତିଷ୍ଠିତ ତଥା ସମ୍ମାନିତ । ରାଜନୈତିକ ଆବହାଓ୍ୱା ଦୃଷ୍ଟିରୁ ମାନସିଂହଙ୍କ ସାଆନ୍ତ ବାପା ଅଗାଧୁ ନାୟକ, କେବଳ ପାରିକୁଦର ଦେବାନ ନଥିଲେ, ସେ ଉତ୍କଳ ସମ୍ମିଳନୀର ଜଣେ ସଂଗଠକ ତଥା ପ୍ରତିନିଧି ସ୍ଥାନୀୟ ବ୍ୟକ୍ତି ଥିଲେ । ଏହି ସମୟକୁ ଉତ୍କଳୀୟ ଜାତୀୟତାର ଅନ୍ୟତମ କେନ୍ଦ୍ରାନୁଷ୍ଠାନ ସତ୍ୟବାଦୀ ବନବିଦ୍ୟାଳୟ(୧୨୦୯) ପ୍ରତିଷ୍ଠା ହୋଇସାରିଥାଏ । ସତ୍ୟବାଦୀ ସ୍କୁଲ ଓ ତାର କର୍ମକର୍ତ୍ତାଗଣ ସେତେବେଳେ ଲୋକମାନଙ୍କର ଆଦର୍ଶ ହୋଇ ରହିଥା'ନ୍ତି । ସତ୍ୟବାଦୀ ସ୍କୁଲ ମଧ୍ୟ ସାରା ଓଡିଶାର ଛାତ୍ର ମାନଙ୍କର ଲକ୍ଷ୍ୟସ୍ଥଳ ଥାଏ । ମାନସିଂହ ଲେଖିଛନ୍ତି—

## ।। ମାନସିଂହଙ୍କ ବିଗ୍ରହଧାରା ।।

"ମୁଁ ଯେ ଖୋର୍ଦ୍ଧା ସ୍କୁଲର ଛାତ୍ରାବସ୍ଥାରେ ମଧ୍ୟ ଶିକ୍ଷକତାର ସ୍ୱପ୍ନ ଦେଖିଥିଲି, ତାର ମୂଳ ହେତୁ ହେଉଛନ୍ତି ସତ୍ୟବାଦୀ ସ୍କୁଲ ଓ ତାର ବିଖ୍ୟାତ ଅଧ୍ୟାପକ ଗଣ । ଖ୍ରୀ: ୧୨୧୬ ରେ ପୁରୀରେ ଉତ୍କଳ ସମ୍ମିଳନୀର ଏକ ଅଧିବେଶନ ବସିଥିଲା । ମୋର ସାଂନ୍ତ ବାପା ଶ୍ରୀଯୁକ୍ତ ଅଗାଧୁ ନାୟକ ଯେ କି ପାରିକୁଦ ରାଜାଙ୍କର ସେ ସମୟରେ ଦେବାନ ଥିଲେ, ସେ ପ୍ରତିନିଧି ଭାବରେ ଏହି ସମ୍ମିଳନୀରେ ଯୋଗଦେଇଥିଲେ । ଏ ସମ୍ମିଳନୀର ସଭାପତି ଥିଲେ ସମ୍ବଲପୁରର ସ୍ୱର୍ଗତ ଚନ୍ଦ୍ରଶେଖର ବେହେରା । ମୋର ପିଲାଦିନେ ସାହିତ୍ୟରେ ନିରତିଶୟ ଆଗ୍ରହ ଦେଖି, ସାଂନ୍ତ ବାପା ମୋ ସାଙ୍ଗରେ ପଢୁଥିବା ତାଙ୍କ ନିଜ ପୁଅକୁ ସାଂଗରେ ନ ନେଇ, ମତେ ସାଙ୍ଗରେ ନେଇ ଯାଇଥିଲେ, ଏଇ ସମ୍ମିଳନୀ ଦେଖାଇ ଆଣିବା ପାଇଁ । ଏଇ ସୁଯୋଗ ମତେ ଯେପରି ଏକ ନୂତନ ସଂସାରରେ ନେଇ ପହଁଚାଇ ଦେଲା । କାରଣ ସେଥର ସେଇଠାରେ ହିଁ ଓଡିଶାର ସେ କାଳର ସକଳ ବିଖ୍ୟାତ ଲୋକଙ୍କୁ ମୁଁ ଏକାବେଳକେ ପ୍ରଥମକରି ଏକତ୍ର ଦେଖିବାକୁ ପାଇଲି । ସେଇଠି ପ୍ରଥମେ ମଧୁବାବୁଙ୍କୁ ଦେଖିଲି, ଗୋପବନ୍ଧୁଙ୍କୁ ଦେଖିଲି, ଦେଖିଲି ସତ୍ୟବାଦୀର ବରେଣ୍ୟ ଶିକ୍ଷକବୃନ୍ଦଙ୍କୁ, ପଣ୍ଡିତ ନୀଳକଣ୍ଠ, ଗୋଦାବରୀଶ ଓ କୃପାସିନ୍ଧୁଙ୍କୁ । ଏଗାର/ବାର ବର୍ଷ ବୟସର ବାଳକର ଅନ୍ତରତମ ଗହନତଳେ ହୁଏତ ସ୍ୱପ୍ନ ଗଜୁରୀ ଉଠିଥିବ, ଏଇ ମାନଙ୍କ ପରି ଜଣେ ହେବାକୁ ।"(୪)

ମାନସିଂହଙ୍କ ଉପର୍ଯ୍ୟୁକ୍ତ ଲେଖାରୁ ସ୍ପଷ୍ଟ ହୁଏଯେ, ଏଗାର/ବାର ବର୍ଷ ବୟସ ବେଳକୁ ମାନସିଂହଙ୍କର ସାହିତ୍ୟ ପ୍ରତି ଆଗ୍ରହ ଦେଖାଗଲାଣି ଓ ତାହା ତାଙ୍କର ସାଂନ୍ତ ବାପାଙ୍କର ଦୃଷ୍ଟିପଥାରୂଢ ହୋଇ ସାରିଲାଣି ।

ଖୋର୍ଦ୍ଧା ହାଇସ୍କୁଲରେ ପଢିବା ପୂର୍ବରୁ, ମାୟାଧର ପାରିକୁଦ ପ୍ରାଥମିକ ସ୍କୁଲ ଓ ବାଣପୁର ମାଇନର ସ୍କୁଲରେ ଅଧ୍ୟୟନ କରିଥିଲେ । ତାଙ୍କ ସହିତ ଏକାଧାରାରେ ଆଠବର୍ଷ ବାଣପୁର ଓ ଖୋର୍ଦ୍ଧାରେ ଅଧ୍ୟୟନ କରିଥିବା ତାଙ୍କର ବନ୍ଧୁ, ଅବସର ପ୍ରାପ୍ତ ପୋଲିସ ଡି.ଏସ୍.ପି. ଶ୍ରୀଯୁକ୍ତ ମାର୍କଣ୍ଡେୟ ଶତପଥୀ କହନ୍ତି: 'ବାଣପୁର ମାଇନର ସ୍କୁଲରେ ପାଠ ପଢିଲାବେଳେ, ମାୟାଧର ଘଣ୍ଟଶିଳା ପାହାଡ ତଳେ ଅବସ୍ଥିତ କୋଟ ବିଦ୍ୟାଧରପୁର ଶାସନକୁ ଅନେକ ସମୟରେ ବୁଲି ଆସନ୍ତି । ସେତେବେଳେ ମାନସିଂହ କବିତା ରଚନା କରିବାର ସେମାନେ ଦେଖିଥିଲେ ।'(୨)

ମାନସିଂହଙ୍କ ପାଠପଢା ସମୟକୁ ସତ୍ୟବାଦୀ ବନବିଦ୍ୟାଳୟର ବିଲୟ ଘଟିଥିଲେ ମଧ୍ୟ, ସତ୍ୟବାଦୀ ଗୋଷ୍ଠୀର ଜାତୀୟତା ଓ ଆଦର୍ଶପ୍ରତି ମାୟାଧରଙ୍କର ଅତ୍ୟନ୍ତ ଶ୍ରଦ୍ଧାଥିଲା । ପରବର୍ତ୍ତୀ କାଳରେ ସାହିତ୍ୟିକ ଜୀବନରେ ସେ ଯେଉଁମାନଙ୍କୁ ଆନ୍ତରିକ ଶ୍ରଦ୍ଧା କରିବାର ପରିଚୟ ମିଳେ, ସେମାନଙ୍କ ମଧ୍ୟରେ ଗାନ୍ଧି ଓ ଗୋପବନ୍ଧୁ ମୁଖ୍ୟସ୍ଥାନ ଗ୍ରହଣ କରିଛନ୍ତି । ତେଣୁ ତାଙ୍କ କବିତା ତଥା ସାହିତ୍ୟିକ ଚେତନାରେ ଏହି ଦୁଇ ମହାପୁରୁଷଙ୍କ ଗୁଣ ତଥା ଭାବଧାରା ଅନେକ ସ୍ଥାନରେ ପ୍ରତିଫଳିତ ।

ମାୟାଧରଙ୍କର ପ୍ରାଥମିକ ଶିକ୍ଷା ପାରିକୁଦରେ, ମାଇନର ପାଠ ବାଣପୁରରେ ସମାପନ ପରେ ଖୋର୍ଦ୍ଧା ହାଇସ୍କୁଲରୁ ୧୨୨୬ ରେ ପ୍ରଥମ ଶ୍ରେଣୀରେ ମାଟ୍ରିକ, ୧୨୨୪ ରେ ରେଭେନ୍ସା କଲେଜରୁ ଆଇ.ଏ ପାସ ବେଳକୁ

ସେ ଜଣେ କବି ଭାବରେ ପରିଚିତ ହୋଇ ସାରିଲେଣି । ଖ୍ରୀ: ୧୨୩୦ ରେ ସେ ରେଭେନ୍ସା କଲେଜରୁ ଇଂରାଜୀ ସାହିତ୍ୟରେ ଦ୍ୱିତୀୟ ଶ୍ରେଣୀରେ ଅନର୍ସ ସହିତ ବି.ଏ. ପାଶ କରି 1932 ରେ ପାଟଣା ବିଶ୍ୱବିଦ୍ୟାଳୟରୁ ଇଂରାଜୀ ସାହିତ୍ୟରେ ଏମ୍.ଏ. ପାଶ କରିଥିଲେ ।

**ସାହିତ୍ୟ ସାଧନା:**

ପ୍ରାକୃତିକ ସୌନ୍ଦର୍ଯ୍ୟର ଗନ୍ତାଘର ପାରିକୁଦ ସ୍କୁଲରୁ ବାଣପୁର ମାଇନର ସ୍କୁଲକୁ ପଢ଼ିବାକୁ ଆସିଲା ପରେ ସାଲିଆ ନଈର କୂଳେକୂଳେ ବୁଲି, ସୋଲେରୀ, ଭାଲେରୀ, ଘଣ୍ଟଶିଳା ଓ ଆହୁରି ଅନେକ ମନୋମୁଗ୍ଧକର ପାହାଡ ଦେଖିବା ସଂଗେସଂଗେ, ପାଇକାଳୀ ଗାଁ ମାନଙ୍କର ଆଖଡାର ରଣକୌଶଳ ଅଭିନୟ, ଆଉ ସମସାମୟିକ ଓଡିଶାର ଜାତୀୟତାର ଝଡ ମାନସିଂହଙ୍କ କବି ମନରେ ଉଦ୍‌ବେଳନ ଆଣିଥିଲା । ବାଣପୁର ମାଇନର ସ୍କୁଲରେ ତାଙ୍କର ପ୍ରଥମ କବିତାର ସ୍ଫୁରଣ ହୋଇଥିଲା । ଆଦର୍ଶ ହେଡ୍‌ମାଷ୍ଟର ବାଙ୍କନିଧି ପଟ୍ଟନାୟକଙ୍କ ଶାସନ ଓ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଖୋର୍ଦ୍ଧା ହାଇସ୍କୁଲ ସେତେବେଳେ ସୁପରିଚାଳିତ । ଛାତ୍ରାବାସରେ ରହିବାଦ୍ୱାରା ବାହ୍ୟ ଜଞ୍ଜାଳରୁ ମୁକ୍ତରହି ମାୟାଧର ବିଦ୍ୟାଧ୍ୟୟନ ସଂଗେସଂଗେ ସାହିତ୍ୟ ସାଧନାରେ ଲାଗି ପଡିଥିଲେ । କୃତୀଛାତ୍ର ଥିବାରୁ ମାୟାଧର ଶିକ୍ଷକମାନଙ୍କର ପ୍ରୀତିଭାଜନ ହୋଇପାରିଥିଲେ । ମାୟାଧରଙ୍କର ଆଦ୍ୟ ଜୀବନର ଲେଖା ମୁଖ୍ୟତଃ ପ୍ରକୃତି ପ୍ରୀତି ଓ ଉତ୍କଳୀୟ ଜାତୀୟତା ମୂଳକ କବିତା ।

ଖୋର୍ଦ୍ଧାରେ ଅଧ୍ୟୟନର ଶେଷ ସମୟକୁ ମାୟାଧର ଜଣେ ସମବୟସୀ ମହିଳାଙ୍କର(10) ସଖ୍ୟଲାଭ କରି ପ୍ରେମ କବିତା ରଚନା କଲେ । ଏଥିପାଇଁ କବିଙ୍କ ଜୀବନରେ ନାନା ସମସ୍ୟାର ଉଦ୍‌ଭବ ହୋଇଥିଲେ ମଧ୍ୟ, ଏହି ସମୟରେ ହିଁ କବିଙ୍କର ଶ୍ରେଷ୍ଠ କୃତି ଧୂପ'ର ବୀଜ ବପନ ହୋଇଥିଲା । ସେହି ସମବୟସୀ ମହିଳାଙ୍କ ପ୍ରେମ, ଗୋଟିଏ ପ୍ରେମ କାଙ୍ଗାଳ ପ୍ରାଣକୁ ଶାନ୍ତ କରିବା ସଂଗେସଂଗେ, ଓଡିଆ ଭାଷାକୁ କେତୋଟି ଶ୍ରେଷ୍ଠ ପ୍ରେମ କବିତା ଦାନକରିଗଲା । ପୃଥିବୀର ଶ୍ରେଷ୍ଠ ପ୍ରେମ କବିତା ଗୁଡିକ ମୂଳରେ କୌଣସି କୌଣସି ମହିଳାଙ୍କ ସଖ୍ୟ ରହିଅଛି । ଓଡିଆ ସାହିତ୍ୟରେ ପୂର୍ବର ବ୍ୟକ୍ତିଗତ ପ୍ରେମକୁ ରାଧାକୃଷ୍ଣ, ପୌରାଣିକ ନାୟକ ନାୟିକା ତଥା କାଳ୍ପନିକ ଚରିତ୍ର ମାନଙ୍କୁ ନେଇ ଲେଖା ହୋଇଥିଲେ ମଧ୍ୟ, ମାୟାଧର ଏଠାରେ ସାହସର ସହିତ ନିଜର ବ୍ୟକ୍ତିଗତ ପ୍ରେମକୁ ନିଜ ନାମରେ ହିଁ କାବ୍ୟରୂପ ଦେଲେ ବୋଧହୁଏ ସେଇଥିପାଇଁ ସମସାମୟିକ ଭାରତୀୟ ରାଜନୈତିକ ଝଡଝଞ୍ଜାରେ ମାନସିଂହ ପ୍ରବେଶ କରି ପାରିଲେ ନାହିଁ ।

ଭାରତୀୟ ରାଜନୀତିରେ ଗାନ୍ଧିଜୀଙ୍କର ପ୍ରବେଶ ଓ ସତ୍ୟବାଦୀ ଗୋଷ୍ଠୀର ଜାତୀୟ ଜାଗରଣରେ ସ୍ୱର ଅତିମାତ୍ରାରେ ଉଗ୍ର ହୋଇ ଉଠୁଥିଲାବେଳେ, ମାନସିଂହଙ୍କର କବିପ୍ରାଣ ମଧ୍ୟ ଉତ୍କଳର ଜାତୀୟ ଜାଗରଣରେ ଉଦ୍‌ବୁଦ୍ଧ ହୋଇ ଉଠିଛି । ମାତ୍ର ସେ ଏହି ବଣଂଧରେ ଓ ପରେ ପ୍ରତ୍ୟକ୍ଷ ଆନ୍ଦୋଳନରେ ଭାଗ ନେଇ ନାହାନ୍ତି । ତାର କାରଣ ହୁଏତ ଏୟା ହୋଇପାରେ ଯେ, 1926 ପୂର୍ବବର୍ତ୍ତୀ ଜୀବନରେ ସମବୟସୀ ମହିଳାଙ୍କର ସଖ୍ୟ ଓ 1926 ପରବର୍ତ୍ତୀ

ସମୟରେ ବିବାହର ପୂର୍ବରୁ ସେହି ମହିଳାଙ୍କର ଗୁଣବାହୁନି, ପ୍ରେମ ଓ ବିରହର ସଂଗୀତ ଗାଇବା ଦ୍ୱାରା ପ୍ରତ୍ୟକ୍ଷ ଆଂଦୋଳନରୁ ଦୂରେଇ ଯାଇଥିଲେ । ମାନସିଂହ ତାଙ୍କର କାବ୍ୟ, କବିତା, ପ୍ରବଂଧ, ଆଲୋଚନା ଓ ଭ୍ରମଣ କାହାଣୀରେ ଯେଉଁ ମାତ୍ରାରେ ଗାଂଧି ଗୋପବଂଧୁଙ୍କୁ ଶ୍ରଦ୍ଧା କରିଛନ୍ତି; ସେ ବ୍ୟକ୍ତି ସମସାମୟିକ ଜାତୀୟ ଆଂଦୋଳନରେ ଭାଗ ନ ନେବା ଅନ୍ତରାଳରେ ଆହୁରି କେତେକ କାରଣ ଥାଇପାରେ ?

ଖୋର୍ଦ୍ଧା ହାଇସ୍କୁଲରୁ ପାଟଣା ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ଅର୍ଥାତ 1922 ରୁ 1932 ପର୍ଯ୍ୟନ୍ତ ମାନସିଂହଙ୍କ ରଚନାର ଧାରା ମୁଖ୍ୟତଃ ଦୁଇଟି ଧାରାର ଥିଲା—ପ୍ରଥମଟି ଉତ୍କଳର ଅତୀତ ପ୍ରୀତି, ଦ୍ୱିତୀୟଟି ବ୍ୟକ୍ତିଗତ ପ୍ରେମର ଚିତ୍ର । ଏଠାରେ ସୂଚାଇ ଦିଆଯାଇ ପାରେ ଯେ, ମାନସିଂହଙ୍କ ହୃଦୟରେ ଯଦି କେବଳ ଦୈହିକ ପ୍ରେମର ଧାରା ପ୍ରବାହିତ ହୋଇଥାନ୍ତା, ତେବେ କୋଣାର୍କ, ମହାନଦୀରେ ଜ୍ୟୋତ୍ସ୍ନାବିହାର, ପରି ପ୍ରତିନିଧି ସ୍ଥାନୀୟ କବିତା ତଥା ରାଜକବିଭଳି ଗୀତିନାଟ୍ୟ ସୃଷ୍ଟି ହୋଇପାରି ନଥାନ୍ତା ।

ମାୟାଧର ପ୍ରଥମରୁ ଅକ୍ଷରଯୋଡା କବି ନଥିଲେ । ମନର ଭାବାବେଗକୁ ଅକ୍ଷରରେ ମୂର୍ତ୍ତିମନ୍ତ ରୂପଦେବା ତାଙ୍କର ପ୍ରଧାନ ଲକ୍ଷ୍ୟ; ନହେଲେ ଉତ୍କଳ ସାହିତ୍ୟ'ର ପ୍ରବୀଣ ସଂପାଦକ, ନୀତିବାଦୀ ବିଶ୍ୱନାଥ କର, ଉତ୍କଳ ସାହିତ୍ୟର ପ୍ରଥମ ପୃଷ୍ଠାରେ 'ତରୁଣ କବିର ଆଶା' ପରି କବିତା ସ୍ଥାନୀତ କରି ନଥାନ୍ତେ । ଅନେକ ହୃଦୟର କଥା କହିପାରେ ବୋଲି, କବିର କବିତା ଆଦର ପାଏ । ମାୟାଧର ସେହିପରି ଅନେକ ମରମୀ ପ୍ରେମିକର ହୃଦୟର ବାଣୀ, ଯାହା ସେମାନେ ନିଜ ଭାଷାରେ ପ୍ରକାଶ କରିବାକୁ ସାହସ କରୁ ନଥିଲେ, ସେହିକଥା ପ୍ରକାଶ କରିବାରୁ, ଲକ୍ଷ ପ୍ରେମିକର ହୃଦୟରେ ସେ ବସା ବାନ୍ଧି ରହିଲେ । ସେ ପ୍ରେମ କବିତାରେ ତୁଚ୍ଛା ଦେହ ମିଳନର ଚିତ୍ର ନାହିଁ, ଅଛି ମନର ମିଳନର ଛବି । 'ଧୂପ' ଏକ କବିତା ସଂକଳନ ନୁହେଁ, ଧୂପ ଏକ କାବ୍ୟ । କ୍ରମ ପର୍ଯ୍ୟାୟରେ ପ୍ରେମିକର ଆକାଂକ୍ଷା ଠାରୁ ଆରମ୍ଭ କରି ମୃତ୍ୟୁ ଚିନ୍ତା ପର୍ଯ୍ୟନ୍ତ, ହୃଦୟର ଅନୁଚିନ୍ତାକୁ ଅନୁଭବୀର ଭାଷାରେ ପ୍ରକାଶ କରାଯାଇଛି । କିନ୍ତୁ ଏହି କାବ୍ୟର ସମସ୍ତ କବିତା ଏକ ଏକ ସ୍ୱୟଂ ସଂପୂର୍ଣ୍ଣ କବିତା ମଧ୍ୟ ।

1913 ମସିହାରେ କବି ରବୀନ୍ଦ୍ରନାଥ ସାହିତ୍ୟରେ ନୋବେଲ ପୁରସ୍କାର ଲାଭ କଲାପରେ, ସମଗ୍ର ଭାରତୀୟ ସାହିତ୍ୟର ଲେଖକ ତଥା ପାଠକ ମାନଙ୍କର ଦୃଷ୍ଟି ରବୀନ୍ଦ୍ର ସାହିତ୍ୟ ଉପରେ ନିବଦ୍ଧ ରହିଲା । କବି ମାନସିଂହ ରବୀନ୍ଦ୍ରନାଥଙ୍କର ଜଣେ ପ୍ରିୟ ତଥା ମୁଗ୍ଧ ପାଠକ । ଇଂରାଜୀ ସାହିତ୍ୟର ଛାତ୍ର ଭାବରେ ଇଂରାଜୀ ରୋମାଣ୍ଟିକ କବି ନାଟ୍ୟକାର ସେକ୍ସପିଅରଙ୍କ ସୃଷ୍ଟି ସମେତ ଅନ୍ୟାନ୍ୟ କବିମାନଙ୍କର ସୃଷ୍ଟି ସହିତ ପରିଚିତ ହୋଇଥିବେ । ମାନସିଂହଙ୍କ ଗ୍ରାମ ଓ ତାହାର ପାର୍ଶ୍ୱବର୍ତ୍ତୀ ଗଞ୍ଜାମ ଅଂଚଳ, ପ୍ରାଚୀନ ଓଡିଆ ଗୀତି କବିତା, ଛନ୍ଦ ତଥା କାବ୍ୟର ଆଲୋଚନାର ସ୍ଥଳ ଥିଲା । ମାନସିଂହ ନିଜେ କେତେକ ପ୍ରାଚୀନ କବିତା ବିଶେଷତଃ କବି ଗୋପାଳ–କୃଷ୍ଣଙ୍କର ପ୍ରିୟ ପାଠକ ଥିଲେ । ମାନସିଂହ ସଂସ୍କୃତ ସାହିତ୍ୟର ଛାତ୍ର ଥିବାରୁ ମହାକବି କାଳିଦାସ ତଥା କେତେକ ସଂସ୍କୃତ କବିଙ୍କ ସୃଷ୍ଟି ସଂପର୍କରେ ଆସିଥିଲେ ।

## ॥ ମାନସିଂହଙ୍କ ବିଗୃରଧାରା ॥

ଉପର୍ଯ୍ୟୁକ୍ତ ପୃଷ୍ଠଭୂମିରେ ଓ ସେ ସମୟର ସ୍ୱର ବହନ କରି ମାନସିଂହଙ୍କ ରଚନା ପରିପୁଷ୍ଟ । ଆଧୁନିକ ଯୁଗର ରାଧାନାଥ, ମଧୁସୂଦନ, ଫକୀରମୋହନଙ୍କ ପରେ ଗଙ୍ଗାଧର, ନନ୍ଦକିଶୋର, ପଦ୍ମଚରଣ, ଲକ୍ଷ୍ମୀକାନ୍ତ ତଥା ସତ୍ୟବାଦୀ ସାହିତ୍ୟ ସାଧକ ସେ ସମୟରେ ଯୁବଗୋଷ୍ଠୀର ଆଦର୍ଶ ଥିଲେ । ଖ୍ରୀ: 1925 ବେଳକୁ ସତ୍ୟବାଦୀ ଯୁଗର ଆଦର୍ଶବାଦର ପ୍ରତିକ୍ରିୟାରେ ଏକ ଯୁବ କବି ଗୋଷ୍ଠୀ, ସବୁଜ କବି ନାମରେ ସାହିତ୍ୟ ସାଧନା ଆରମ୍ଭ କରିଥିଲେ । ମାତ୍ର ଆଠ/ଦଶ ବର୍ଷ ପରେ ସେମାନଙ୍କ ମଧ୍ୟରୁ କେତେକ ପ୍ରଗତିବାଦକୁ ସ୍ୱର ପରିବର୍ତ୍ତନ କଲେ । ମାତ୍ର ମାୟାଧର ମାନସିଂହ ତାଙ୍କ ସମସାମୟିକ ଗୋଷ୍ଠୀ ଦ୍ୱାରା ଆବଦ୍ଧ ନ ହୋଇ ଜଣେ ଏକକ କବି ଭାବରେ ସାହିତ୍ୟ ସାଧନା କରି ଆସିଛନ୍ତି ।

1932 ମସିହାରେ ମାୟାଧରଙ୍କର ଶ୍ରୀମତୀ ହେମନ୍ତାଙ୍କ ସହିତ ବିବାହ ପରେ, କବିତା ରଚନାର ସ୍ରୋତ ବଦଳି ଯାଇଛି । ହେମଶସ୍ୟ ଓ ତାର ପରବର୍ତ୍ତୀ କବିତାରେ ପୂର୍ବର ସ୍ୱତଃସ୍ଫୁର୍ତ୍ତତା ରହିପାରିନି, ବରଂ କବିତା ରଚନାର ଧାରା କ୍ରମଶଃ ମ୍ଳାନ ହୋଇଗଲାପରି ମନେ ହୁଏ । ଜୀବନର ଉତ୍ତରାର୍ଦ୍ଧର କବିତା ଭାବୋଚ୍ଛ୍ୱାସ ହରାଇ ଦାର୍ଶନିକ ଭାବଧାରରେ ଗମ୍ଭୀର ହେଲାପରି ମନେହୁଏ । ଅବଶ୍ୟ ମାନସିଂହ ଜୀବନର ଅନ୍ତିମ କାଳ ପର୍ଯ୍ୟନ୍ତ କବିତା ରଚନା ଅବ୍ୟାହତ ରଖିଥିଲେ ।

ମାନସିଂହଙ୍କର ସୃଷ୍ଟିର ଧାରା ବହୁମୁଖୀ, କିନ୍ତୁ ସର୍ବତ୍ର କବି ମାନସିଂହଙ୍କର ଉପସ୍ଥିତି ହିଁ ଜଣାପଡେ । ନିବନ୍ଧର ତୃତୀୟ ଭାଗରେ ତାହା ଆଲୋଚିତ ହୋଇଅଛି ।

### ଶିକ୍ଷକତା :

ଶିକ୍ଷକତା ମାନସିଂହଙ୍କ ଜୀବନର ପ୍ରଥମ ଅଭିଳାଷ ଥିଲା । ଖୋର୍ଦ୍ଧା ହାଇସ୍କୁଲରେ ଛାତ୍ର ଥିଲାବେଳେ ଯେତେବେଳେ ସହାଧ୍ୟାୟୀମାନେ ନାନା ଉଚ୍ଚତର ଅଭିଳାଷ ପୋଷଣ କରୁଥିଲେ ସେତେବେଳେ ମାୟାଧର କହିଥିଲେ– 'ଯଦି ମୁଁ କୌଣସି ମତେ ମ୍ୟାଟ୍ରିକ ପରୀକ୍ଷାଟା ପାଶ କରେ, ତେବେ ମୁଁ କୌଣସି ସ୍କୁଲରେ ଶିକ୍ଷକତା କରିବି'(11) ମ୍ୟାଟ୍ରିକ୍ ପରୀକ୍ଷାରେ ତ ସେ ଯେ କୌଣସି ମତେ ପାଶ କଲେନି, ବରଂ ପ୍ରଥମ ଶ୍ରେଣୀରେ ବୃତ୍ତି ପାଇ ଉତ୍ତୀର୍ଣ୍ଣ ହେଲେ । ମାୟାଧରଙ୍କର ସହପାଠୀଙ୍କର ବୟାନ ଅନୁସାରେ ସେ(ମାୟାଧର) କେବଳ ଗଣିତରେ ଦୁର୍ବଳ ଥିଲେ, ନଚେତ୍ ଅନ୍ୟ ସମସ୍ତ ବିଷୟରେ ତାଙ୍କର ଯଥେଷ୍ଟ ଦଖଲ ଥିଲା; ତେଣୁ ମ୍ୟାଟ୍ରିକ ପାଶ କରିବା ପାଇଁ ତାଙ୍କର ଆଶଙ୍କା ରହିବା ସ୍ୱାଭାବିକ ।

ଛାତ୍ରାବସ୍ଥାର ଅନୁଚିନ୍ତା ହିଁ, ତାଙ୍କ ପରବର୍ତ୍ତୀ ଜୀବନରେ ଘଟିଥିଲା । ଶିକ୍ଷକତା ଠାରୁ ଆରମ୍ଭ କରି ଶିକ୍ଷା ବିଭାଗର ବିଭିନ୍ନ ପଦ ପଦବୀରେ ରହିଥିଲେ ମଧ୍ୟ, ଉତ୍ତମ ଶିକ୍ଷକ ହେବାର ଅଭିଳାଷ ତ୍ୟାଗ କରିପାରି ନଥିଲେ । ଅବସର ଗ୍ରହଣ ପରେ ସେ କହିଥିଲେ—"ଏକାଗ୍ରଚିତ୍ତ ଭାବରେ, ମୂଳରୁ ଶେଷଯାଏଁ କେବଳ ଶିକ୍ଷକହିଁ ରହିଥିଲେ,

ହୁଏତ ମୁଁ ପାଇଥାନ୍ତି ଅଧିକ ଶାନ୍ତି ଓ ଆନନ୍ଦ, ଅନେକ ବେଶି କୃତକାର୍ଯ୍ୟତା ଓ ପରିପୂର୍ଣ୍ଣତାର ଅନୁଭବ ଓ ଅନେକ ବେଶି ଆତ୍ମତୃପ୍ତି ।"(12)

ସତ୍ୟବାଦୀ ବନବିଦ୍ୟାଳୟର ଆଦର୍ଶପ୍ରତି ମାୟାଧରଙ୍କର ଶ୍ରଦ୍ଧାଥିବେ ମଧ୍ୟ, ସେ ସତ୍ୟବାଦୀ ସ୍କୁଲରେ ଅଧ୍ୟୟନର ସୁଯୋଗ ପାଇଁ ନଥିଲେ । ସତ୍ୟବାଦୀ ସ୍କୁଲର ଅବସାନ ପରେ, ଯେତେବେଳେ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ଠାରୁ ବାଣପୁରଠାରେ ସତ୍ୟବାଦୀ ଢାଞ୍ଚାରେ ଏକ ବିଦ୍ୟାଳୟ ପ୍ରତିଷ୍ଠାର ଡାକରା ପାଇଲେ, ତାପରେ ଆଦର୍ଶର ମୋହରେ, ବି.ଏ.ପାସ୍ ପରେ ବାଣପୁରକୁ ଶିକ୍ଷକତା କରିବାକୁ ଆସିଲେ । ମାନସିଂହ ଲେଖିଛନ୍ତି—"ମୁଁ ଯେତେବେଳେ ବାଣପୁର ଯାଇଥିଲି, ସେତେବେଳେ ଭାବି ନେଇଥିଲି, ସେଇଠାରେ ସମଗ୍ର ଜୀବନ କଟାଇବା ପାଇଁ । ମୋର ନିଜର ବଡ଼–ଶ୍ୱଶୁର ଔପନ୍ୟାସିକ ଶ୍ରୀଯୁକ୍ତ ସତ୍ୟାନନ୍ଦ ଚେହୁରା, ସେଠାରେ କେତେମାସ ଧରି ଶିକ୍ଷକତା କରିଆସି, ତାଙ୍କର ତିକ୍ତ ଅଭିଜ୍ଞତା ଯୋଗୁ, ମୋର ସେଠାକୁ ଯିବା ଆଦୌ ପସନ୍ଦ ନକରି ବାଧା ଦେଇଥିଲେ । କିନ୍ତୁ ତାହା ସତ୍ତ୍ୱେ ମୁଁ ଝାସ ଦେଇଥିଲି ଏକ ଆଦର୍ଶର ମୋହରେ ।"(13)

ସେତେବେଳେ ବାଣପୁର ସ୍କୁଲର ପ୍ରଧାନ ଶିକ୍ଷକ ଥାଆନ୍ତି ଶ୍ରୀଯୁକ୍ତ ଶ୍ରୀକୃଷ୍ଣ ମହାନ୍ତି । ସେ ଅତ୍ୟନ୍ତ ବୁଦ୍ଧିମାନ ଓ ସ୍ପଷ୍ଟବାଦୀ ଲୋକ । ପଣ୍ଡିତ ଗୋଦାବରୀଶ ମିଶ୍ର ଥାଆନ୍ତି ସ୍କୁଲର ସେକ୍ରେଟାରୀ । ମାନସିଂହ ସେ ସ୍କୁଲକୁ ଯେଉଁ ଆଶାନେଇ ଯାଇଥିଲେ ସେ ଆଶା ଫଳବତୀ ହେବା ନାହିଁ, ବରଂ ଅଳ୍ପଦିନ ମଧ୍ୟରେ ମାନସିଂହ ସେ ସ୍କୁଲରୁ ବିଦାୟ ନେଇଗଲେ । ଡକ୍ଟର କୁଞ୍ଜବିହାରୀ ଦାଶ ଲେଖିଛନ୍ତି: "ମାନସିଂହଙ୍କ ସ୍ୱାଧୀନ ମନୋଭାବ, ଛାତ୍ରମାନଙ୍କ ସହିତ ଏକାତ୍ମ ହେବାର ରୀତି, ସ୍ୱଚ୍ଛନ୍ଦ ଗତି, ରକ୍ଷଣଶୀଳ ଶିକ୍ଷକ ମହଲରେ ତାଙ୍କୁ ଅପ୍ରିୟ କରିଦେଲା । କାନକୁହା ଗୋଦାବରୀଶଙ୍କୁ ଲଗେଇ ଲୁଚେଇ କହିଲେ, ତାର ମର୍ମ–ମାନସିଂହ ସ୍କୁଲର ଶୃଂଖଳା ଭଙ୍ଗ କରୁଛନ୍ତି । ମାନସିଂହଙ୍କ ପରି ଲୋକ କେବେ ଶୃଂଖଳା ଭଙ୍ଗ କରି ନ ପାରନ୍ତି । ଏ ଅଭିଯୋଗ ତାଙ୍କୁ ଉତ୍ପୀଡିତ କରିଥିଲା । ସେ ଚରମ ଭାବେ ଆହତ ହୋଇଥିଲେ, ଯେତେବେଳେ ଗୋଦାବରୀଶ କୌଣସି କୈଫିୟତ ନଶୁଣି ତାଙ୍କୁ କହିଲେ—'ତମେ ପଦ୍ୟ ଗାରେଇ ପାରୁଛ ବୋଲି ନିଜକୁ ବଡ ମନେ କରନି । ମୁଁ ବି ଯୌବନରେ ପଦ୍ୟ କିଛି ଗାରେଇଛି । ଇତ୍ୟାଦି ଇତ୍ୟାଦି"(14)

ମାନସିଂହ ସେଇ ମୁହୂର୍ତ୍ତରେ ସେଠାରୁ ବିଦାୟନେଇ ଗ୍ରାମକୁ ଗଲେ । ପରେ 1934 ମସିହା ଶେଷ ଆଡକୁ ନିମାପଡାର ଜୁବିଲି ହାଇସ୍କୁଲରେ ଯୋଗଦେଲେ । ସେତେବେଳେ ନିମାପଡା ସ୍କୁଲର ସେକ୍ରେଟାରୀ ଥିଲେ, ମଧୁସୂଦନ ଦାସ, ରିଟାୟାର୍ଡ ଗଭର୍ଣ୍ଣମେଣ୍ଟ ସ୍କୁଲର ହେଡମାଷ୍ଟର । ହେଡମାଷ୍ଟର ଥିଲେ ମଦନ ମୋହନ ଘୋଷ । ଏହି ଶିକ୍ଷକ ଜୀବନରେ ମାନସିଂହଙ୍କର କୌଣସି ଦୁଃଖର କାରଣ ନଥିଲେ ମଧ୍ୟ, ତାଙ୍କ ଉପରେ ନିର୍ଭର କରୁଥିବା ପରିବାର ଓ ତାଙ୍କ ପ୍ରତି ଉଚ୍ଚାକାଂକ୍ଷା ପ୍ରତିପୋଷଣ କରୁଥିବା ଅଭିଭାବକ ମାନେ ଅସନ୍ତୁଷ୍ଟ ହେଉଥିଲେ । ନିମାପଡାର ରହଣୀ ପ୍ରତି ମାନସିଂହ ଖୁବ୍ ଅନୁକୂଳ ମତ ପ୍ରଦାନ କରିଛନ୍ତି: "ନିମାପଡାରେ ବର୍ଷେ ଦେଢବର୍ଷ ଯାହାଥିଲି, ମୋଟ ଉପରେ ବେଶ୍ ଶାନ୍ତିରେ ଥିଲି । ନିମାପଡା ଏକ ସ୍ୱାସ୍ଥ୍ୟକର ସ୍ଥାନ । ଖୋଲା ଯାଗା । ଏଇଠାରେ ସତ୍ୟବାଦୀର ଶ୍ରୀ ବାସୁଦେବ ମହାପାତ୍ର ମୋର ସହକର୍ମୀ ଥିଲେ ।"(15) କେବଳ ଅଧିକ ଦରମା ପାଇବା ପାଇଁ ମାନସିଂହ ନିମାପଡା ଛାଡି

|| ମାନସିଂହଙ୍କ ବିଗ୍ରହଧାରା ||

ଭବାନୀପାଟଣା ଯାତ୍ରା କଲେ । ନିମାପଡାରେ ମାସିକ ଦରମା ମାତ୍ର ଷାଠିଏ ଟଙ୍କା ଥିଲା, ସେତେବେଳେ ମାନସିଂହ ବିବାହିତ । ଏକାନ୍ନବର୍ତ୍ତୀ ପରିବାର ଯୋଗୁଁ ଗାଁ କୁ ସେହି ଟଙ୍କାରୁ ପର୍ଯ୍ୟନ୍ତ କରି ପଠାଇବାକୁ ହେଉଥିଲା— ସେତେବେଳେ ଭବାନୀପାଟଣା ହାଇସ୍କୁଲରେ ଆସିଷ୍ଟାଣ୍ଟ ହେଡମାଷ୍ଟର ପୋଷ୍ଟ ପାଇଁ ମାସିକ ନବେ ଟଙ୍କା ବେତନ ମିଳିବାର ହେଲା ସେତେବେଳେ ମାନସିଂହ ଏହି ସିଦ୍ଧାନ୍ତ ନେଲେ ।

ଭବାନୀପାଟଣା ହାଇସ୍କୁଲରେ ଶିକ୍ଷକତା ସମୟରେ ମାନସିଂହ ଉଚ୍ଚଶିକ୍ଷା ନିମନ୍ତେ ବିଲାତ ଯାତ୍ରା କଲେ । ଏହାପରେ ତାଙ୍କ ଜୀବନର ଅଧ୍ୟାୟ ଭିନ୍ନ ବାଟରେ ଗତି କରିଛି । କିନ୍ତୁ ଶିକ୍ଷକତାରେ ସେ ଯେତେ ଶାନ୍ତି ପାଉଥିବେ, ତାହା ପରବର୍ତ୍ତୀ ଜୀବନରେ ସମ୍ଭବ ହୋଇ ପାରିନି । ଶିକ୍ଷକତାରେ ଆତ୍ମିକ ଶାନ୍ତି ବିଷୟରେ ମାନସିଂହ କହନ୍ତି:— "କହି ରଖେଯେ, ରେଭେନ୍‌ସା କଲେଜର ପାଷ୍ଟ ଇଅରରେ ପଢୁ ପଢୁ ହିଁ ମୁଁ ଏ ଦେଶରେ କବି ଭାବରେ ଜଣାଶୁଣା ହୋଇପଡିଥିଲି । କଲେଜ ଛାଡିଲା ବେଳକୁ ମୁଁ ଏକ ପ୍ରକାର ପ୍ରତିଷ୍ଠିତ ଲେଖକ । କିନ୍ତୁ ଯାହା ଲେଖିଥିଲି ସେସବୁ ଛାତ୍ରାବସ୍ଥାରେ । କଲେଜ ଛାଡିଲା ପରେ ଏଇ ସବୁ ଯେ ଘଟଣାର ଯେ ଘୂର୍ଣ୍ଣନ ଏଥିରେ ପଡି ଆଉ ଲେଖି ପାରୁ ନଥାଏ । ଚିତ୍ତ ଯେତେବେଳେ ଅବସାଦଗ୍ରସ୍ତ ହୋଇଆସେ ସେତେବେଳେ ବେଳେ ବେଳେ ମନେ କରୁଥିଲି, ଅର୍ଥୋପାର୍ଜନ ତ ଗଲା, ବୋଧହୁଏ ଲେଖକ ଭାବରେ ମୋର ସବୁ ଶେଷ ହେଲା ।

ସେହି ସମୟରେ ମୋର ମନେ ପଡିଲା, କାହିଁ କେଉଁଠି ପଢିଥିଲି କେବେ ଇଂରାଜୀ କବି ଓ୍ୱାର୍ଡସଓ୍ୱାର୍ଥଙ୍କର ବାଣୀ–'ମୁଁ ଜଗତ ଆଖିରେ ଜଣେ ଶିକ୍ଷକ ବୋଲିହିଁ ଧରାହୁଏ ଯେପରି'।

କବି ପୁଣି ଶିକ୍ଷକ ? ମୁଁ ଏକ ବିଚିତ୍ର ଆତ୍ମଜ୍ଞାନ ଯେପରି ଉପଲବ୍ଧି କରିବାର ଆରମ୍ଭ କଲି । ଏହା ସତ୍ୟଯେ, କାବ୍ୟ ଶିକ୍ଷାତତ୍ତ୍ୱ ନୁହେଁ । ତଥାପି କବି ହିଁ ଜାତିର ପ୍ରକୃତ ଶିକ୍ଷକ, ଅନ୍ୟକେହି ସେପରି ହୋଇ ନ ପାରେ । ସେହି ଦିନଠାରୁ ମୋ ଲେଖକ ଜୀବନର ଦୁଇ ପ୍ରଧାନପଥ ମୁଁ ସ୍ଥିର କରିନେଲି । ପ୍ରଥମ, ଯେତେବେଳେ ଲେଖିବା ପାଇଁ ପ୍ରକୃତ ଇନସ୍ପିରେସନ ବା ପ୍ରେରଣା ଆସିବ, ମୁଁ କାବ୍ୟ କବିତା ଲେଖିବି । ଦ୍ୱିତୀୟ, ବାକି ସମୟତକ ଶିକ୍ଷାତତ୍ତ୍ୱ ଓ ଜୀବନ ତତ୍ତ୍ୱ ପାଇଁ ପାଇଁ ଦେବି । ମଲାବେଳକୁ ଯଦି ମତେ କବି ଓ ଲେଖକ ଭାବରେ ମୋ ଜାତି ସ୍ୱୀକାର କରିଥିବ ଭଲକଥା । କିନ୍ତୁ ତା ନ ହୋଇଥିଲେ ମଧ୍ୟ ବା ତା ସଂଗେ ସଂଗେ, ମତେ ଜାତି 'ଶିକ୍ଷକ' ଭାବରେ ମଧ୍ୟ ଯେପରି ଗଣିବ, ଏଇ ମୋର ଆଶା "।(16)

କବି ମାନସିଂହଙ୍କ ଆଶା ବ୍ୟର୍ଥ ହୋଇନି । ଜୀବନ କାଳ ମଧ୍ୟରେ ମାନସିକ ସ୍ତରରେ ସେ ନାନା ହଇରାଣ ହରକତ ହୋଇଥିଲେ ମଧ୍ୟ, ତାଙ୍କ ମୃତ୍ୟୁ ପରେ ଏ ଜାତି ତାଙ୍କୁ କବି ଭାବରେ ଯେତିକି ସ୍ମରଣ କରିଛି, 'ଶିକ୍ଷକ' ଭାବରେ ମଧ୍ୟ ତଦପେକ୍ଷା ଅଧିକ ସମ୍ମାନ ପ୍ରଦର୍ଶନ କରିଛି । ତେଣୁ କବି ମାନସିଂହ ହିଁ ଶିକ୍ଷକ ମାନସିଂହ, ଶିକ୍ଷାବିତ ମାନସିଂହ ।

॥ ମାନସିଂହଙ୍କ ବିଗ୍ଭରଧାରା ॥

**ବିଦେଶଯାତ୍ରା**

ଭବାନୀପାଟଣାରେ ଶିକ୍ଷକତା ସମୟରେ ମାନସିଂହ 1937 ମସିହା ଅଗଷ୍ଟମାସ 20 ତାରିଖରେ ବିଲାତ ଯାତ୍ରା କଲେ । ବିଦେଶଯାତ୍ରାର କାରଣ ସମ୍ପର୍କରେ ମାନସିଂହ ଲେଖିଛନ୍ତି—"ଛାତ୍ର ଅବସ୍ଥାରେ ଇଂରାଜୀ ସାହିତ୍ୟର ପୁଣି ଇଂଲଣ୍ଡ ଓ ଇଉରୋପ ଇତିହାସର ଛାତ୍ର ଭାବରେ, ପୁଣି ଭ୍ରମଣକାରୀ ମାନଙ୍କର ଗ୍ରନ୍ଥ ସବୁ ପଢି ପଢି, ସେହି ସେହି ଦେଶ ଓ ସେହି ସେହି ଜାତିକୁ ଦେଖିଆସିବା ପାଇଁ ମୋର ଅନ୍ତରତଳେ ଗଭୀର ତୃଷ୍ଣା ଲୁକ୍‌କାୟିତ ଥାଏ । ଯେଉଁ ସମୟର କଥା କହୁଛି, ସେହି ସମୟରେ, ହେମଲତାଙ୍କ ବଡଭାଇ ଦୁର୍ଗାମାଧବ ବେହୁରା ବିଲାତ ଗଲେ କୃଷି ବିଜ୍ଞାନରେ ଡିଗ୍ରୀ ଆଣିବା ପାଇଁ । ନିମାପଡାରେ ଥିବାବେଳେ, ଗାନ୍ଧିଜୀଙ୍କ ଆତ୍ମଚରିତଟି ମୁଁ ପ୍ରଥମ କରି ମୂଳରୁ ଶେଷଯାଏ ପଢିଲି । ଏହି ମହତ ଗ୍ରନ୍ଥର ପାଠକ ମାନଙ୍କର ମନେଥା ଇପାରେଯେ ସେ ଗ୍ରନ୍ଥରେ ବାପୁଜୀ, ହେମ-ଚନ୍ଦ୍ର ନାମକ ଜଣେ ଗୁଜରାଟୀ ସାହିତ୍ୟିକଙ୍କର ଭ୍ରାମ୍ୟମାଣ ଜୀବନ ବର୍ଣ୍ଣନା କରିଛନ୍ତି । ଡେକ୍ ପାସେଞ୍ଜର ହୋଇ ସେ ଜାହାଜରେ କାମକରି, ହେମଚନ୍ଦ୍ର ଇଂରାଜୀ ଅନଭିଜ୍ଞ ଥାଇ ମଧ୍ୟ, ପୃଥିବୀର ଅର୍ଦ୍ଧେକ ବୁଲି ଆସିଲେ । ଏଇ ଲୋକଟିର କୃତି ହିଁ ପ୍ରକୃତରେ ମୋର ବିଲାତ ଯାତ୍ରାର ପ୍ରେରଣା ।"(17)

ସେତେବେଳେ ଭବାନୀପାଟଣାରେ ଟଙ୍କାରେ ଗ୍ଭଉଳ ତିରିଶ ସେରେ, ଦୁଧ ସେର ଗ୍ଭରଣା(25 ପ.) ତାଙ୍କର ପିଲାପିଲି ମଧ୍ୟ ହୋଇ ନଥାନ୍ତି, ଏଣୁ କିଛି କିଛି ସଞ୍ଚୟ କରି ବିଦେଶ ଯାତ୍ରାର ସ୍ୱପ୍ନ ଦେଖିଲେ ।"କି'ଟା କପୋତକପୋତୀର କେତେଖର୍ଚ୍ଚ ? ଏଇଠି ପ୍ରଥମକରି ମୋର କିଛି ଟଙ୍କା ବଳିଲା । ଷ୍ଟେଟ୍‌ସ୍‌ମ୍ୟାନ କାଗଜରେ ଜାପାନୀ ଜାହାଜ ମାନଙ୍କର ବିଜ୍ଞାପନ ଦେଖି, ଟମାସ୍‌କୁକ୍ ଜରିଆରେ ଶସ୍ତା ଯାତ୍ରାର ଆୟୋଜନ କଲି । ସବୁ ବ୍ୟବସ୍ଥା ସେଇ ଭବାନୀପାଟଣାରେ ହିଁ ବସିବସି କରିଥିଲି । ଟିକେଟ ବାଦେ ହାତରେ ଟ250.00 ଧରି ବାହାରି ପଡିଲି, ସେଦିନ ଅଜ୍ଞାତ ଜଗତର ଅଭିମୁଖରେ ।"(18)

ବିଲାତରେ ଅଭାବ ଓ ଦାରିଦ୍ର୍ୟ ସଂଗେ ସଂଗ୍ରାମ କରି, ମାନସିଂହ ଡରହାମ୍ ବିଶ୍ୱବିଦ୍ୟାଳୟରୁ, କାଳିଦାସ ଓ ସେକ୍ସପିଅରଙ୍କ ଉପରେ ତୁଳନାତ୍ମକ ଅଧ୍ୟୟନ କରି ପିଏଇଚ.ଡି. ଡିଗ୍ରୀ ଲାଭ କଲେ । ସେତେବେଳେ ଏଇ ଭଳି ଡିଗ୍ରୀ ପ୍ରାପ୍ତ ବ୍ୟକ୍ତିଙ୍କୁ ଦୁ' ଦୁଟା ଇନକ୍ରିମେଣ୍ଟ ଦିଆଯାଉଥିଲା । କିନ୍ତୁ ମାନସିଂହଙ୍କ ପ୍ରତି ଭିନ୍ନ ବିବେଚନା କରା ଗଲା । ସେ ଦୁଃଖରେ ଲେଖିଛନ୍ତି–"କାଳେ ଆମପରି ଅଯୋଗ୍ୟ ଏ ସୁବିଧା ପାଇଯିବ, ଏଇଥିପାଇଁ କର୍ତ୍ତୃପକ୍ଷ ସେହି ବର୍ଷ ଠାରୁ ଏ ନିୟମ କାମିକା ହେବ ବୋଲି ସ୍ଥିର କରିଥିଲେ, ଯେଉଁଥିରେ କି ଭାଗ୍ୟବାନଙ୍କ ପଂକ୍ତିରେ ଆମେ ନଥିବୁ । ପ୍ରତିଭାବାନ, ଭାଗ୍ୟବାନ, ତରୁଣର ଦଳ ଉତ୍କଳମାତାକୁ ଜ୍ଞାନରତ୍ନର ମାଳାସବୁ ପିନ୍ଧାଇବାର ପୁରସ୍କାର ରୂପେ ଦୁ'ଦୁ' ଇନକ୍ରିମେଣ୍ଟ ତେଣୁ ପାଇଗଲେ, ଆମପରି ଗୋଷ୍ଠୀହୀନ, ମୁରବୀହୀନ ଅଧମକୁ କିଏ କାହିଁକି ଲେଖାରେ ଆଣିବ ? "(19)

॥ ମାନସିଂହଙ୍କ ବିଗ୍ରହଧାରା ॥

## ପୂର୍ବ-ଗଡଜାତ ସମୂହର ଶିକ୍ଷା ପରାମର୍ଶ ଦାତା:

ଡକ୍ଟର ମାନସିଂହ ବିଲାତରୁ ଫେରି କିଛିଦିନ ବେକାର ରହିବା ପରେ ପୂର୍ବ-ଗଡଜାତ ସମୂହର ଶିକ୍ଷା ପରାମର୍ଶଦାତା ରୂପେ ନିଯୁକ୍ତି ପାଇଲେ । ସେତେବେଳେ ସେ ସମ୍ବଲପୁରରେ ବୁଦ୍ଧରାଜ ହିଲ ପାହାଡ ଉପରେ ଥିବା ସର୍କିଟ ହାଉସରେ ରହୁଥିଲେ ।

ସ୍ପଷ୍ଟବାଦିତା, ଭାବପ୍ରବଣତା ତଥା ଆଦର୍ଶବାଦର ମୋହ ଅନେକ ସମୟରେ ଡଃ ମାନସିଂହଙ୍କ ଜୀବନରେ ଉତ୍ଥାନ ପତନର ଯୁଗପତ୍ କାରଣ ବୋଲି ପରିଦୃଷ୍ଟ ହୋଇଛି । ସେ ସମସାମୟିକ ରାଜନୀତି ବା ରାଜନୈତିକ ନେତାଙ୍କ ଅନୁକୂଳରେ ନ ଯିବାରୁ, ଗୁକିରୀ ଲାଭ କ୍ଷେତ୍ରରେ ନାନା ସମସ୍ୟାର ସମ୍ମୁଖୀନ ହୋଇଛନ୍ତି । ସେ ସମୟରେ ଭାରତରେ ଇଂରେଜ ରାଜତ୍ୱ ଗୁଲିଥିଲେ ମଧ୍ୟ, ଭାରତୀୟମାନଙ୍କୁ ପ୍ରକୃତରେ ଶାସନ କରୁଥିଲେ, ଭାରତୀୟ କଳା ହାକିମ ମାନେ । ଅଧିକାଂଶ କଳା ହାକିମମାନେ ହିଁ କଳା ଲୋକଙ୍କର ଭାଗ୍ୟ ଆକାଶରେ ଧୂମକେତୁ ଭାବରେ ଦେଖା ଦେଉଥିଲେ । ଖ୍ରୀ: ୧୨୨୮ ପରେ ପଣ୍ଡିତ ଗୋପବନ୍ଧୁଙ୍କ ପରଲୋକ ଗମନରେ ବ୍ୟଥିତ ହୋଇ କେତୋଟି କବିତା ଲେଖିଥିବାରୁ, ମାନସିଂହଙ୍କୁ ଇଂରେଜ ସରକାରଙ୍କର ବିଦ୍ରୋହୀ ବୋଲି ଧରି ନିଆଯାଇଥିଲା । ସେଥିପାଇଁ ମାନସିଂହଙ୍କ ସହପାଠୀମାନେ ସେତେବେଳର ଲୋଭନୀୟ ଗୁକିରୀ ଡେପୁଟୀ ଭାବରେ ଯୋଗ ଦେଇଥିଲେ ମଧ୍ୟ, ସେମାନଙ୍କ ଠାରୁ ଅଧିକ ଯୋଗ୍ୟ, ମାନସିଂହଙ୍କ ଭାଗ୍ୟରେ କଳାଦାଗ ବସିଯାଇଥିଲା । ଖ୍ରୀ: ୧୨37 ରେ ଭାରତୀୟମାନେ ସ୍ୱାୟତ୍ତ ଶାସନର ଅଧିକାର ପାଇଲା ପରେ, ସ୍ୱାଧୀନତା ପାଇଁ ସଂଗ୍ରାମ କରୁଥିବା କେତେକ କଂଗ୍ରେସୀ ଲୋକ କ୍ଷମତାରେ ରହିବା ପାଇଁ ଘୋଡା ଦଉଡ ଚଳାଇଲେ । ବର୍ତ୍ତମାନ ପରି ସେତେବେଳେ ମଧ୍ୟ କଂଗ୍ରେସ ରାଜନୀତିରେ ଭଲ ଓ ମନ୍ଦ, ଉଭୟର ସମାହାର ଘଟିଥିଲା । ଅନେକ ତ୍ୟାଗୀ ଲୋକଙ୍କ ମେଳରେ କେତେକ ଧୂର୍ତ୍ତ ଚତୁର ରାଜନୀତିଜ୍ଞ ନିଜ କ୍ଷମତା ଅଭିଳାଷକୁ ଚରିତାର୍ଥ କରିବା ପାଇଁ ଖୁବ୍ ତତ୍ପର ଥିଲେ । ନୀତିବାଦୀ ଓ ସ୍ପଷ୍ଟବାଦୀ ମାନସିଂହ ଏହିପରି କେତେଜଣ କଂଗ୍ରେସ ନେତାଙ୍କ ସମ୍ମାନ ଭାଜନ ନ ହୋଇ ପାରିବା ଏକାନ୍ତ ସ୍ୱାଭାବିକ ଥିଲା । ତାଙ୍କ ଆତ୍ମଜୀବନୀରୁ ଜଣାଯାଏ ଯେ, ତାଙ୍କ ଭାଗ୍ୟ ବିପର୍ଯ୍ୟୟ ପାଇଁ ଏହିପରି କେତେକ ନେତା ଦାୟୀ । ସମଗ୍ର ଗୁକିରୀ ଜୀବନ କାଳରେ ସେ ଯେ ବାରମ୍ବାର ରାଜନୈତିକ ଅଭିସନ୍ଧିର ଶରବ୍ୟ ହୋଇଛନ୍ତି ଓ ରାଜାନୁଗ୍ରହ ଅଭାବରୁ ତାଙ୍କ ପଦୋନ୍ନତି ତଥା ତାଙ୍କ ଯୋଗ୍ୟତା ପାଇଁ ଉପଯୁକ୍ତ ସମ୍ମାନ ସେ ପାଇ ନାହାନ୍ତି, ଏକଥା ଭୁଣା ଅଧିକେ ଓଡିଶାର ସମସ୍ତେ ଜାଣନ୍ତି । ତାଙ୍କ ଜୀବନ କାଳର ଏହି ପ୍ରକାର ପରିବେଶକୁ ସେ ଆତ୍ମଜୀବନୀରେ ନିମ୍ନରୂପେ ଉଲ୍ଲେଖ କରିଛନ୍ତି ।

ମାନସିଂହଙ୍କ ନିଜ ଭାଷାରେ କହିଲେ"- ବିଲାତରୁ ଉଚ୍ଚ ଡିଗ୍ରୀ ପାଇ ଫେରିଲେ ମଧ୍ୟ, ମତେ ଉତ୍କଳ ଦେଶରେ ଉପଯୁକ୍ତ ଗୁକିରୀ ମିଳିଲାନି । ସେଥିପାଇଁ ଧରି ନେଇଛି ଯେ, ମୋ'ର ଯଥାଯୋଗ୍ୟ ବା ଯଥେଷ୍ଟ ନିପୁଣତା ନ ଥିଲା । କର୍ତ୍ତୃପକ୍ଷଙ୍କ ବାଛୁବିଗ୍ରହ ନେଇ, ଆଲୋଚନା ଏଠାରେ ଅର୍ଥହୀନ, ଅନ୍ତତଃ ମୋ ନିକଟରେ । କାରଣ ପରେ

ମୋ ଜୀବନ ଯେପରି ବିଚିତ୍ର ଭାବରେ ସମୃଦ୍ଧ ଓ ଅଭିଜ୍ଞ ହୋଇ ଉଠିଲା, ତାର ମୂଳ ପତ୍ତନ ଯେପରି ହେଲା, ଖ୍ରୀ: 1940 ରେ ମୋର ସରକାରୀ ଚାକିରି ନ ହେବାରେ, ଠିକ୍ ଯେପରି ତା'ର ଦଶବର୍ଷ ପୂର୍ବରୁ 1930 ରେ ମୋ'ର ସାଙ୍ଗମାନେ ଡେପୁଟି ମାଜିଷ୍ଟ୍ରେଟ ହୋଇଗଲେ । କିନ୍ତୁ ମୁଁ ହୋଇ ପାରିଲି ନାହିଁ ଓ ସେହି ବିଫଳତା ଯୋଗୁଁ, ତା'ର ସମଗ୍ର ଜୀବନର ଗତି, ନିର୍ଦ୍ଧାରିତ ପଥରୁ ଓଲଟା ପଥରେ ଯିବାରୁହିଁ, ସେ ଆଜି ଯାହାକିଛି ସାମାନ୍ୟ ଭାବରେ ନିଜସ୍ୱବନ୍ତ, ତାହା ହୋଇ ପାରିଛି । ଖ୍ରୀ: 1930 ରେ ଏ ଲେଖକ ସରକାରୀ ଚାକିରିରେ ପ୍ରତିଷ୍ଠିତ ହୋଇଯାଇ ଥିଲେ, ତା'ର ଆତ୍ମିକ ସମାଧି ଘଟିଯାଇଥା'ନ୍ତା ବୋଲି କୁହାଯାଇ ପାରେ ।"(20)

ଇଂରେଜ ରାଜତ୍ୱ କାଳରେ ସମଗ୍ର ପ୍ରାକୃତିକ ଓଡିଶା, ଭାରତର ଅନ୍ୟାନ୍ୟ ଅଂଚଳ ପରି, ଦୁଇପ୍ରକାର ଶାସନରେ ଥିଲା । କେତେକ ଅଂଚଳ ଇଂରେଜ ସରକାରଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଥିଲା, ଗଡଜାତ ସମୂହ ରାଜାମାନଙ୍କର ଅଧୀନରେ ଇଂରେଜ ସରକାରଙ୍କ ପରୋକ୍ଷ ଶାସନରେ ରହୁଥିଲେ । ରାଜାମାନେ ପ୍ରଜାମାନଙ୍କ ଠାରୁ ରାଜସ୍ୱ ଆଦାୟକରି ପରୋକ୍ଷ କର ଭାବରେ ଇଂରେଜ ସରକାରଙ୍କୁ ଦେଉଥିଲେ । ସେହି ଗଡଜାତ ରାଜ୍ୟ ମାନଙ୍କରେ ଏତେ ଛୋଟ ଛୋଟ ରାଜ୍ୟ ଥିଲେ ଯେ, ସେମାନଙ୍କର ଆୟ ଯଥେଷ୍ଟ କମ୍ ଥିଲା । ସେହି ସ୍ୱଳ୍ପ ପରିମାଣର ଆୟରେ ସେମାନେ ରାଜ୍ୟର ଉନ୍ନତି ତଥା ପ୍ରଜାମାନଙ୍କର ମଙ୍ଗଳ ପାଇଁ, ଶିକ୍ଷା, ପୂର୍ତ୍ତ, ପୋଲିସ, ଫରେଷ୍ଟ, ରେଭିନ୍ୟୁ ଆଦି ବିଭାଗକୁ ନିପୁଣ ଭାବରେ ଚଳାଇ ପାରୁ ନଥିଲେ । ସେଥିପାଇଁ ସେ କାଳର ପଲିଟିକାଲ୍ ଡିପାର୍ଟମେଣ୍ଟ, ଏଇ ଗଡଜାତ ମାନଙ୍କ ପାଇଁ(ଆଡଭାଇଜର)ପରାମର୍ଶଦାତା ପୋଷ୍ଟ ସବୁ ସୃଷ୍ଟି କରିଥିଲେ । ବ୍ୟବସ୍ଥା ଏଇପରି ଥିଲା ଯେ, ଭିନ୍ନ ଭିନ୍ନ ଦରବାରମାନେ କିଛି କିଛି ଟଙ୍କା ରେସିଡେଣ୍ଟଙ୍କ ହାତରେ ଦେବେ ଓ ସେଇ ପାଣ୍ଠିରୁ ଗୋଟିଏ ଗୋଟିଏ ଡିପାର୍ଟମେଣ୍ଟ ପାଇଁ ଜଣେ ଜଣେ କମନ ଆଡଭାଇଜର ବା ପରାମର୍ଶଦାତା ସବୁ ଗଡଜାତ ମାନଙ୍କ ପାଇଁ ନିଯୁକ୍ତ ହେବେ । ତାଙ୍କରି ଉପଦେଶ ଅନୁସାରେ ଭିନ୍ନ ଭିନ୍ନ ରାଜ୍ୟରେ ସେହି ସେହି ଡିପାର୍ଟମେଣ୍ଟ ପରିଚାଳିତ ହେବ ।

ସେହି ପଦ୍ଧତି ଅନୁସାରେ ଡକ୍ଟର ମାୟାଧର ମାନସିଂହ ପୂର୍ବାଞ୍ଚଳ ଗଡଜାତ ସମୂହର ଶିକ୍ଷା ପରାମର୍ଶଦାତା ଭାବରେ ଯୋଗଦେଲେ ଓ ଗଡଜାତର ଶିକ୍ଷାର ଉନ୍ନତି କଳ୍ପେ ନାନା ପରିବର୍ତ୍ତନ ପାଇଁ ଚେଷ୍ଟା କଲେ । ସେ ସମୟରେ ଗଡଜାତର ରାଜାମାନେ ଏହି ପଦବୀର ଲୋକଙ୍କୁ ସନ୍ଦେହ ଦୃଷ୍ଟିରେ ଦେଖୁଥିଲେ, କାରଣ ଏମାନେ ରାଜାମାନଙ୍କ ପଇସାରେ ରହିଥିଲେ ମଧ୍ୟ, ପଲିଟିକାଲ ଏଜେଣ୍ଟଙ୍କ ପାଖ ଲୋକ ଥିଲେ । ଡଃ ମାନସିଂହ ନିଜର ଭବିଷ୍ୟତକୁ ଦୃଷ୍ଟି ନ ଦେଇ ଯାହା ଉଚିତବୋଲି ଭାବୁଥିଲେ, ସେହିକଥା ପ୍ରଚଳନ କରାଇବା ପାଇଁ ଲାଗିପଡୁଥିଲେ । ଶିକ୍ଷକ ମାନଙ୍କର ବେତନର ହାର ଆଶ୍ଚର୍ଯ୍ୟଜନକ ଭାବରେ ବଢାଇ ଦେଇଥିଲେ, ଯାହାକି ମୋଗଲବନ୍ଦୀର ଶିକ୍ଷକ ମାନଙ୍କଠାରୁ ମଧ୍ୟ ଅଧିକ । "ଏଜୁକେଶନାଲ ଆଡଭାଇଜରର ଦଣ୍ଡ ଓ ପୁରସ୍କାରର କ୍ଷମତା ମଧ୍ୟଥିଲା । ଯା' ଫଳରେ ବହୁ ରାଜ୍ୟର ବହୁ ଯୋଗ୍ୟ ଶିକ୍ଷକଙ୍କୁ ମୁଁ ଆର୍ଥିକ ସମ୍ମାନ ଦେଇପାରି ଆନନ୍ଦ ଅନୁଭବ କରୁଥିଲି । ସାଧାରଣ ଭାବରେ ଓଡିଶା ଗଡଜାତର ଶିକ୍ଷକ ମାନଙ୍କ ପାଇଁ ମୁଁ ସେତେବେଳେ ଯେଉଁ ନୂଆ ସ୍କେଲ-ଅଫ-ପେ, କରିଦେଇଥିଲି ତାହା ସମକାଳୀନ ବ୍ରିଟିଶ ଓଡିଶାର କଳ୍ପନାର ବାହାରେ ଥିଲା ।"(21)

॥ ମାନସିଂହଙ୍କ ବିଗ୍ଭରଧାରା ॥

ସ୍ୱାଧୀନ ଭାରତରେ ଯେଉଁ ଧନ୍ଦା–ମୂଳକ ବା ବୃତ୍ତି–ଭିତ୍ତିକ ଶିକ୍ଷାଦାନର ମହତ୍ତ୍ୱ ଉପଲବ୍ଧ କରାଯାଉଛି, ଇଷ୍ଟର୍ଣ୍ଣ ଷ୍ଟେଟ ଏଜେନ୍ସିର ଶିକ୍ଷା ପରାମର୍ଶଦାତା ଥିଲାବେଳେ, ଡଃ ମାନସିଂହ ସେ ଶିକ୍ଷାର ଅଭାବ ଅନୁଭବ କରି ପରାମର୍ଶ ପ୍ରଦାନ କରିଥିଲେ । ସମଗ୍ର ଓଡିଆ ଭାଷା–ଭାଷୀ ଅଞ୍ଚଳର ଏକତ୍ରୀକରଣ ପାଇଁ ଚେଷ୍ଟା ଅନେକ ଆଗରୁ ହୋଇଥିଲେ ହେଁ, ।୭36 ରେ ନାମକୁ ମାତ୍ର ଓଡିଶା ଗଠିତ ହୋଇଥିଲା । ପ୍ରଥମତଃ ଇଂରେଜ ସରକାରଙ୍କର ବିଭେଦୀକରଣ ନୀତି ତଥା ଗଡଜାତ ରାଜ୍ୟ ମାନଙ୍କର ଏକତ୍ରୀକରଣ ବିଷୟରେ ଅସହଯୋଗ, ଉଦ୍ଦେଶ୍ୟକୁ ଫଳବତୀ କରି ଦେଉ ନଥିଲା । ଯଦିଓ ସେତେବେଳେ ପାରଳାଖେମୁଣ୍ଡି, ମୟୂରଭଞ୍ଜ ଓ ବାମଣ୍ଡା ପ୍ରଭୃତି ରାଜ୍ୟର ରାଜାମାନେ ଓଡିଶା ସ୍ୱତନ୍ତ୍ରୀକରଣରେ ଅଗ୍ରଣୀ ଥିଲେ; ତଥାପି ଏକ ଭାଷା ଓ ଏକ ସଂସ୍କୃତିର ଗଡଜାତମାନେ ଭିନ୍ନ ଭିନ୍ନ ଗୋଷ୍ଠୀରେ ବିଭକ୍ତ ହୋଇ ରହିଥିଲେ । ସେ ମାନଙ୍କୁ ଏକତ୍ରିତ କରିବାର ଆଶା ନେଇ ମାନସିଂହ କହିଥିଲେ: "ଶିକ୍ଷା ପରାମର୍ଶ ଦାତା ଭାବରେ ଅନ୍ତତଃ ଓଡିଶା ଗଡଜାତ ସବୁ ବୁଲି ଗଲାପରେ ମୋ ମନରେ ବାରମ୍ବାର ଏଇ ପ୍ରଶ୍ନ ସ୍ୱତଃ ଉଠିବାକୁ ଲାଗିଲା ଯେ, ଏଇ ଏକ ଭାଷା–ଭାଷୀ ଓ ଏକତ୍ରାବସ୍ଥିତ ରାଜ୍ୟ ସବୁର ଏକତ୍ୱବୋଧ ନାହିଁ କାହିଁକି ? ଏମାନେ ନିଜନିଜକୁ ଏକ ବିରାଟ ଏକକତ୍ୱର ଅଂଶବୋଲି ମନେ ନକରି ନିଜ ନିଜର କ୍ଷୁଦ୍ରତାରେ ହିଁ ଏପରି ଆତ୍ମତୁଷ୍ଟ ଓ ଆତ୍ମ ପ୍ରସନ୍ନ ରହୁଛନ୍ତି କାହିଁକି ? X X X ମୁଁ ଭାବିଲି ଏକାଠି ହୋଇ କାମ କରିପାରିଲେ, ଏମାନେ ଓଡିଆ ଜାତିକୁ କି ବିରାଟ ଶକ୍ତି ଯୋଗାଇ ନ ପାରନ୍ତେ ! ଠିକ୍ ସେତିକିବେଳେ ହିଂଦୋଳରୁ ଡାକରା ଆସିଲା । ଏଇଠି ମୋର ଆଦର୍ଶକୁ ବଖାଣିବାର ଲୋଭ ଆଉ ମୁଁ ସମ୍ବରଣ କରି ପାରିଲି ନାହିଁ ।"(22)

ସମଗ୍ର ଗଡଜାତ ମୂଳକରେ ଆଦର୍ଶ ଧରଣର ଶିକ୍ଷା ତଥା ଏକତ୍ରିକରଣ ନିମନ୍ତେ ମାନସିଂହ ଆଗ୍ରହ ପ୍ରକାଶ କରି ହିଂଦୋଳ ରିପୋର୍ଟରେ ନାନା ପରାମର୍ଶ ଦେବାକୁ ଲାଗିଲେ । ଏହି ମନ୍ତବ୍ୟରୁ ମାନସିଂହଙ୍କର ଭବିଷ୍ୟତ ଦୃଷ୍ଟି ସଂପର୍କରେ ଧାରଣା କରିହେବ । ଏ ସଂପର୍କରେ ସପ୍ତମ ଅଧ୍ୟାୟରେ ବ୍ୟାପକ ଭାବରେ ଆଲୋଚନା କରା ଯାଇଅଛି ।

ଏହି ଆଦର୍ଶ ଓ ଜାତି ଗଠନ ଚେଷ୍ଟାର ଲକ୍ଷ୍ୟ ହିଁ ମାନସିଂହଙ୍କ ସହିତ ରାଜାମାନଙ୍କର ବିରୋଧର କାରଣ ହେଲା । ସେମାନେ ଭାବିଲେ ଯେ ଏହା ଦ୍ୱାରା ରାଜାମାନଙ୍କର ଏକଚ୍ଛତ୍ର ଭାବ ତଥା ସାର୍ବଭୌମତ୍ୱ ଲୋପ ପାଇଯିବ । ରାଜାମାନଙ୍କର ମିଳିତ ଚେଷ୍ଟାରେ, ଏଜୁକେଶନାଲ ଆଡଭାଇଜର ପୋଷ୍ଟକୁ ହିଁ ଉଠାଇ ଦିଆ ଗଲା । ଯାହା ଫଳରେ ମାନସିଂହ ।୨46–47 ମସିହାରେ ଦ୍ୱିତୀୟଥର ପାଇଁ ବେକାର ହୋଇ କଟକରେ ବସି ରହିଲେ ।

**ଅଧ୍ୟାପନା**

ମାନସିଂହ ଇଂରାଜୀ ସାହିତ୍ୟରେ ଜଣେ କୃତି ଛାତ୍ର । ଇଂରାଜୀ ଓ ସଂସ୍କୃତ ସାହିତ୍ୟର ଦୁଇ ବିଶିଷ୍ଟ ନାଟ୍ୟକାର କାଳିଦାସ ଓ ସେକ୍ସପିଅରଙ୍କ ଉପରେ ଗବେଷଣା କରି ବିଲାତର ଡରହାମ୍ ବିଶ୍ୱବିଦ୍ୟାଳୟରୁ ପିଏଚ.ଡି. ଡିଗ୍ରୀ ପାଇଥିଲେ ମଧ୍ୟ ଡଃ ମାନସିଂହଙ୍କୁ ସ୍ଥାୟୀ ଅଧ୍ୟାପକ ପଦଟିଏ ମିଳିଲା ନାହିଁ । ବିଲାତରୁ ଫେରିବା ପରେ ଅସ୍ଥାୟୀ ଭାବରେ ରେଭେନସା କଲେଜରେ ଇଂରାଜୀ ଅଧ୍ୟାପକ ଥିଲେ । ପବ୍ଲିକ୍ ସର୍ଭିସ କମିଶନ ଦ୍ୱାରା ସ୍ୱୀକୃତି ନ ପାଇବାରୁ ଶିକ୍ଷକତା ଓ ଶିକ୍ଷା ପରାମର୍ଶ ଦାତା ଗ୍ରକିରି ପରେ କିଛିଦିନ ବେକାର ହୋଇ ପୁଣି ଅଧ୍ୟାପନା ନିମିତ୍ତ ପ୍ରାର୍ଥୀ ହେଲେ । ଛାତ୍ର ଅବସ୍ଥାରେ ମାନସିଂହ ଜଣେ ପ୍ରତିଷ୍ଠିତ କବି ଭାବରେ ଓଡିଶାରେ ଜଣାଶୁଣା ହୋଇ ଯାଇଥିଲେ । ପରେ ନାଟକ ପ୍ରବନ୍ଧ, ଆଲୋଚନା କ୍ଷେତ୍ରରେ ମଧ୍ୟ ସେ ଅନେକ ସୃଷ୍ଟି କରିଗଲେ; ଓଡିଆ ଭାଷା ଓ ସାହିତ୍ୟ ଅଧ୍ୟାପନା ଦିଗରେ ତାଙ୍କର ବିଧିବଦ୍ଧ ତାଲିମ ନଥିଲା । ତଥାପି "ସେ କିଛିକାଳ ରେଭେନସା କଲେଜରେ ଓଡିଆ ଅଧ୍ୟାପକ ହୋଇଥିଲେ ଓ ସଦ୍ୟ ଉନ୍ମୋଚିତ ଓଡିଆ ଏମ୍.ଏ. ଶ୍ରେଣୀରେ ପଢାଇଥିଲେ । ଓଡିଆରେ ଏମ୍.ଏ. ପାଶ୍ ଯୋଗ୍ୟତା ନଥିଲେ ବି, ଓଡିଆ ପଢାଇବାକୁ କହିବା, ଶିକ୍ଷା କର୍ତ୍ତୃପକ୍ଷଙ୍କର ନିଷ୍ଠିତ ଭାବରେ ଓଡିଆ ସାହିତ୍ୟ ପ୍ରତି ଏକ ଅବିଗ୍ରର ଓ ଅବମାନନା । ଦର୍ଶନ, ଇତିହାସ, ସଂସ୍କୃତରେ ଯୋଗ୍ୟତା ଅର୍ଜିଥିବା ବ୍ୟକ୍ତି କ୍ୱଚିତ୍ କେହି ସାର୍ଥକ ଓଡିଆ ଅଧ୍ୟାପକ ହୋଇପାରିଥିଲେ । ଓଡିଆ କ୍ଲାସରେ ଇଂରାଜୀରେ ସମାଲୋଚନା ନୋଟ୍ ଡାକିବା ଏକ ଅପରାଧ ରୂପେ ବିବେଚିତ ହୋଇଥିଲା । ସେ ପଦଚ୍ୟୁତ ହୋଇଥିଲେ ।"(23)

**ଶିକ୍ଷା ପ୍ରଶାସନ**

ଏହାପରେ ସେ କିଛିକାଳ ଶିକ୍ଷା ବିଭାଗରେ ଇନସପେକ୍ଟର ଭାବରେ ଯୋଗ ଦେଇଥିଲେ । ସ୍ୱାଧୀନ ଭାରତରେ ଶିକ୍ଷାର ମୌଳିକ ବିକାଶ ଓ ଜାତି ଗଠନର ଚେଷ୍ଟା କରିବାକୁ ଯାଇ, ସମସାମୟିକ ନେତା ମାନଙ୍କର ରୋଷ ଦୃଷ୍ଟିରେ ପଡିଥିଲେ । ଡଃ କୁଞ୍ଜବିହାରୀ ଦାଶଙ୍କ ମତରେ– "ମାନସିଂହଙ୍କର ଏଇ ଗୋଟିଏ ଗୁଣ–ଯାହା ସତ୍ୟବୋଲି ବୁଝନ୍ତି, ଖାଲରେ ପଡୁ ବା ଢିପରେ ପଡୁ ରୋକ୍ ଠୋକ୍ ଭାବେ ତାହା ପ୍ରକାଶ କରି ଦିଅନ୍ତି । ଏହା ତାଙ୍କର ବ୍ୟକ୍ତି ସ୍ୱାର୍ଥର ପ୍ରତିକୂଳ ବା ଅନୁକୂଳ ହେବ, ସେ ବିବେଚନା ନଥାଏ । ମୌଳିକ ଶିକ୍ଷା ସେତେବେଳେ ଉଠିଲା ନାହିଁ, ପରେ ଉଠିଲା । ମାନସିଂହଙ୍କ କଥା ବି ଠିକ୍ ହେଲା । କିନ୍ତୁ ସେତେବେଳକୁ ତାଙ୍କର ଯାହା କ୍ଷତି ହେବାର ହୋଇ ପାରିଥିଲା, ସେ ପଦଚ୍ୟୁତ ହୋଇଥିଲେ ।"(24) ସ୍ୱାଧୀନ ଭାରତରେ ଜଣେ ଶିକ୍ଷା ପ୍ରଶାସକର ତିକ୍ତ ଅଭିଜ୍ଞତା ନେଇ ଡକ୍ଟର ମାନସିଂହ ଲେଖିଛନ୍ତି: "ଗଡଜାତ ମାନଙ୍କରେ ଏଜୁକେଶନ ଆଡଭାଇଜର ଅଭିଜ୍ଞତା ଘେନି ମୁଁ ପରେ ଓଡିଶା ପ୍ରଦେଶରେ, ଉତ୍ତର ଓ ଦକ୍ଷିଣ ଅଂଚଳରେ ଇନସପେକ୍ଟର ହେଲି ।

॥ ମାନସିଂହଙ୍କ ବିଗ୍ଭରଧାରା ॥

ଏଇ ପରବର୍ତ୍ତୀ ଅଭିଜ୍ଞତା କିନ୍ତୁ କେବଳ ବ୍ୟର୍ଥତା ଓ ତିକ୍ତତାମୟ । ମୁଁ ଦେଖିଲି, ଇନ୍‌ସ୍‌ପେକ୍ଟର ପୋଷ୍ଟଟି ଗୋଟିଏ ଅପବ୍ୟୟ-ଶୀଳ ପୋଷ୍ଟ-ଅଫିସ ଚୁଡା ଆଉକିଛି ନୁହେଁ । ଏକ ବିରାଟ ଫାଙ୍କା ଆବାଜ ମାତ୍ର । ଇନ୍‌ସ୍ପେକ୍ଟର ଇଚ୍ଛାକଲେ ଗୋଟିଏ ସୁଯୋଗ୍ୟ ଶିକ୍ଷକକୁ ଏକ ନୂଆ ପଇସା ପୁରସ୍କାର ଦେଇ ପାରିବନି, କି ଅଯୋଗ୍ୟ ଶିକ୍ଷକକୁ ବାହାର କରି ପାରିବନି । ସେତେବେଳେ ଜିଲ୍ଲାବୋର୍ଡ ସବୁଥିଲା । ଇନ୍‌ସ୍ପେକ୍ଟିଂ ଅଫିସର ଓ ଜିଲ୍ଲାବୋର୍ଡ ଏହି ଦୁର୍ଦ୍ଦାନ୍ତ କର ଦ୍ୱୈତ ଶାସନରେ ବିଚରା ଶିକ୍ଷକମାନେ କେବଳ ପଶାଖେଳର ଗୋଟି ହେଉଥିଲେ । ସ୍କୁଲ ସବୁ ଦେଖି ଇନ୍‌ସ୍ପେକ୍ଟର କୌଣସି ସ୍କୁଲର ଦୋଷ ଦୁର୍ବଳତା ବାରମ୍ବାର ଦେଖାଇଲେ ମଧ୍ୟ, ନା ମ୍ୟାନେଜିଂ କମିଟୀ, ନା ଡି.ବି.ଆଇ. କେହି ହେଲେ ଇନ୍‌ସ୍ପେକ୍ଟର କଥା ଶୁଣୁ ନଥିଲେ । ଦେଖିଲି ଇନ୍‌ସ୍ପେକ୍ଟର ଭାବରେ ମୋର ପୃଷ୍ଠା ପୃଷ୍ଠା ମନ୍ତବ୍ୟ କେବଳ ପଣ୍ଡଶ୍ରମମାତ୍ର । ସ୍ୱାଧୀନ ଭାବରେ ଯେଉଁଠି କାମ କରିବାର ଅବକାଶ ନାହିଁ, ସେ ପଦର କି ମୂଲ୍ୟ ?"(25)

ସତ୍ୟ କଥା ଓ ମୌଳିକ ଚିନ୍ତା ପରିବେଷଣ କରି, ଡଃ ମାନସିଂହ, ରାଜନୈତିକ ହୋ-ହୁଲ୍ଲାର ଶିକାର ହୋଇଛନ୍ତି । ସମଗ୍ର ପ୍ରାକୃତିକ ଓଡିଶାର ବିଭିନ୍ନ ସ୍ଥାନରେ ଶିକ୍ଷା ପ୍ରଶାସନ କ୍ଷେତ୍ରରେ କାମକରି ମାନସିଂହ, ଓଡିଶାର ଶିକ୍ଷା ବ୍ୟବସ୍ଥା ସମ୍ପର୍କରେ ପ୍ରତ୍ୟକ୍ଷ ଜ୍ଞାନ ଲାଭ କରିଥିଲେ; କିନ୍ତୁ ସମସାମୟିକ ଓଡିଶା ତାଙ୍କ ଚିନ୍ତାଧାରାର ମୂଲ୍ୟ ବୁଝିପାରି ନଥିଲା । ସେ ସେତେବେଳେ ସ୍କୁଲ ମାନଙ୍କର ତଦାନୀନ୍ତନ ଅବସ୍ଥା ଓ ପରିବେଶରେ ଯାହା ଯାହା କରଣୀୟ ମନେ କରୁଥିଲେ, ସେହି କ୍ରମରେ ସେ ଗୁଡିକ ଉପରେ ଅନେକ ସର୍କୁଲାର ଦେଇଥିଲେ । ଉତ୍ତର ଓଡିଶାର ଇନ୍‌ସ୍ପେକ୍ଟର ଥିଲାବେଳେ ବେସିକ୍ ସିଷ୍ଟମ୍ ବିଷୟରେ ବିଭିନ୍ନ ଦୃଷ୍ଟିକୋଣରୁ ପତ୍ରପତ୍ରିକାରେ ଆଲୋଚନା କରିଥିବାରୁ, ସରକାର ତାଙ୍କୁ ଦଣ୍ଡ ସ୍ୱରୂପ ଇନ୍‌ସ୍ପେକ୍ଟର ପଦରୁ ତଡିଦେଇ ସମ୍ବଲପୁର ଗଙ୍ଗାଧର ମେହେର କଲେଜର ପ୍ରିନ୍‌ସିପାଲ କରି ପଠାଇଦେଲେ । ମାନସିଂହ ବେସିକ୍ ଶିକ୍ଷାକୁ ଅନ୍ଧ ଭାବରେ ବିରୋଧ କରୁ ନଥିଲେ ବରଂ ବେସିକ୍ ଶିକ୍ଷାର କେତେକ ଭଲ ଗୁଣକୁ ସ୍କୁଲ ମାନଙ୍କରେ ପ୍ରଚଳନ ପାଇଁ ଏକ ସର୍କୁଲାର ସମଗ୍ର ଉତ୍ତର ଓଡିଶାରେ ଜାରି କରିଥିଲେ ।

<u>ମେହେର କଲେଜରେ ଅଧ୍ୟକ୍ଷତା</u> ॥

1940 ରୁ 1949 ଯାଏ ବିଭିନ୍ନ ପଦ-ପଦବୀରେ ରହି ନାନା ଝଡ ଝଞ୍ଜା ମଧ୍ୟରେ, କେତେବେଳେ ସ୍କୁଲ ଶିକ୍ଷକ, ଶିକ୍ଷା ପରାମର୍ଶଦାତା ଓ ଶିକ୍ଷା ପରିଦର୍ଶକ—ଏସବୁ ବାହାରକୁ ଅଲଗା ଅଲଗା ଦେଖାଗଲେ ମଧ୍ୟ, ଶିକ୍ଷାବିତ୍ ମାନସିଂହଙ୍କ ମତରେ ଏହା ସମଗ୍ର ଭାବରେ ଏକ ଅଖଣ୍ଡ ଆତ୍ମିକ ଅଭିଜ୍ଞତା । କେବଳ ସେତିକି ନୁହେଁ, ଏହାପରେ ସମ୍ବଲପୁର କଲେଜରେ ଯେଉଁ ସାତବର୍ଷ ପ୍ରିନ୍‌ସିପାଲ ଭାବରେ କାମକଲେ, ତାହା ମଧ୍ୟ ଏହି ଅଖଣ୍ଡ ଆତ୍ମିକ ଅଭିଜ୍ଞତାର ଏକ ଅଂଶ । ଇନ୍‌ସ୍ପେକ୍ଟର ପଦରୁ ମାନସିଂହଙ୍କୁ ଗଙ୍ଗାଧର ମେହେର କଲେଜର ପ୍ରିନ୍‌ସିପାଲ କରି

ଦଣ୍ଡ ସ୍ୱରୂପ ବଦଳି କରାଗଲା । ମାନସିଂହ ଲେଖିଛନ୍ତି——" ଦଣ୍ଡଦାତା ଓ ଭୋକ୍ତା କେହି ସେତେବେଳେ କଳ୍ପନା କରି ନଥିଲେ ଯେ,ଏ ନିର୍ବାସନ ସୁଧାମୟ ପୁରସ୍କାରରେ ପରିଣତ ହେବ । ଶେଷରେ ଏହା ପ୍ରକୃତରେ ହେବା ଲେଖକ ପ୍ରତି ନିର୍ବାସିତର ଏକ ନୂତନ ରାଜ୍ୟ ସ୍ଥାପନ ।"(26) ଏଠାରେ ମାନସିଂହ ନିର୍ବାସନ କହିବାର ଅର୍ଥ ଯେ, ତାଙ୍କର ଇଚ୍ଛା ବିରୋଧରେ ତାଙ୍କୁ ସମ୍ବଲପୁର ପଠାଯାଇଥିଲା । ଏଜୁକେଶନାଲ ଆଡଭାଇଜର ଥିଲାବେଳେ ମାନସିଂହ ତାଙ୍କର ଏକ ପ୍ରିୟତମ କନ୍ୟାକୁ ସମ୍ବଲପୁରରେ ହରାଇଥିବାରୁ,ସମ୍ବଲପୁର ବ୍ୟତୀତ ଅନ୍ୟ ଯେ କୌଣସି ସ୍ଥାନକୁ ବଦଳି ପାଇଁ କର୍ତ୍ତୃପକ୍ଷଙ୍କୁ ଅନୁରୋଧ କରିଥିଲେ । ଏହା ସତ୍ତ୍ୱେ ତାଙ୍କୁ ବାଧ୍ୟକରି ସମ୍ବଲପୁର ପଠାଯାଇଥିବା । ଯାହାହେଉ ଗଙ୍ଗାଧର ମେହେର କଲେଜର ଅବସ୍ଥାନ ସମୟ ହିଁ ମାନସିଂହଙ୍କ ଜୀବନର ସର୍ବଶ୍ରେଷ୍ଠ ସମୟ ଭାବରେ ବିବେଚିତ ।

ଗଙ୍ଗାଧର ମେହେର କଲେଜର ଦାୟିତ୍ୱ ଗ୍ରହଣ କଲାପରେ,ମାନସିଂହ କଲେଜର ସର୍ବାଙ୍ଗୀନ ଉନ୍ନତି ପାଇଁ ମନ ଦେଲେ । ଶିକ୍ଷା ବିଭାଗର ସର୍ବାଂଶ ସହିତ ଏକ ଆନୁପାତିକ ସମ୍ବନ୍ଧ ସ୍ଥାପନ ସଂଗେ ସଂଗେ ପ୍ରତ୍ୟେକ ଶିକ୍ଷାନୁଷ୍ଠାନ କିପରି ଏକ ଏକ ସ୍ୱୟଂସମ୍ପୂର୍ଣ୍ଣ ଏକକ ହେବା ଉଚିତ,ତାହାହିଁ ଥିଲା ତାଙ୍କର ମୌଳିକ ଲକ୍ଷ୍ୟ ଓ ଆଦର୍ଶ । ସେହି ଆଦର୍ଶର ପ୍ରଥମ ରୂପାୟନ ହେଲା ମେହେର କଲେଜ ଛାତ୍ରାବାସରେ ରୋଷେଇଶାଳାର ସଂସ୍କାର । କଲେଜରେ ଯୋଗ ଦେବାର ଦିନେ ଦୁଇଦିନ ମଧ୍ୟରେ,ସେ ଅନ୍ତେବାସୀଙ୍କର ଇତସ୍ତତଃ ଭ୍ରମଣ ଓ ହଷ୍ଟେଲରେ ଷ୍ଟୁଡି ପିରିୟଡ ନଥିବାର ଶୁଣି ପାରିଥିଲେ । ତା ପରେ ଦିନେ ପିଲାମାନଙ୍କର ନିମନ୍ତ୍ରଣରେ ହଷ୍ଟେଲରେ ଖାଇବାକୁ ଯାଇ କର୍ଦ୍ଦମାକ୍ତ ମାଟି ଚଟାଣରେ ସାମାନ୍ୟ ଟିକିଏ ପାଣିଆ ଡାଲି ସହିତ,ଥରେ ମାତ୍ର ପରିବେଷିତ ସାମାନ୍ୟ ଟିକିଏ ତରକାରୀ ପରିବେଷଣ ଦେଖି,ଅତ୍ୟନ୍ତ ମର୍ମାହତ ହୋଇଥିଲେ । ଏ ବିଷୟରେ କାହାକୁ କିଛି ନ କହିଲେ ମଧ୍ୟ ଏ ଦୃଶ୍ୟ ତାଙ୍କୁ ଗଭୀର ଦୁଃଖ ଦେଇଥିଲା । "ମୁଁ ନିଜକୁ ପଚାରିଲି—ମୁଁ ଏଠି କାହିଁକି ଅଛି ? ମୋ ଜାତିର ଏଇ ଶତ ଶତ ତରୁଣ ମୋ ଜିମାରେ ବର୍ତ୍ତମାନ । କିନ୍ତୁ ଠିକ ଏଇ ହେଉଛି ଏମାନଙ୍କର ଶରୀର ଓ ମନର ବଢିବାର ଓ ଗଢା ହେବାର ସମୟ । ସେଇବେଳରେ,ଏମାନେ କି ବିଶୃଂଖଳ ପରିସ୍ଥିତିରେ ବାସ କରୁଛନ୍ତି ! କି ଦୀନହୀନ ଖାଦ୍ୟ ଖାଉଛନ୍ତି ଏ ମାନେ ? ଏମାନେ କି ମଣିଷ ହେବେ ! କି ଆଦର୍ଶ ଶିଖିଲେ ? ଏଇ କୁତ୍ସିତ ବିଶୃଂଖଳ ପରିବେଶରେ ବଢିଲେ ଉତ୍ତମ ବ୍ୟକ୍ତିତ୍ୱ ଫୁଟିବାର ଆଶା କରାଯାଇ ପାରେ କି ?"(27)

ଏହାପରେ ଆରମ୍ଭ ହେଲା ରୋଷେଇଶାଳାର ସଂସ୍କାର । କିଛିଦିନ ପରେ ତାହା ଏପରି ଉଚ୍ଚଧରଣର ହୋଇ ପଡିଲା ଯେ,ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ଅଧ୍ୟକ୍ଷତାରେ ଡକ୍ଟର ପ୍ରାଣକୃଷ୍ଣ ପରିଜା ପ୍ରମୁଖ ବିଶିଷ୍ଟ ବ୍ୟକ୍ତି ମାନେ ହଷ୍ଟେଲ ଓ କୋ–ଅପରେଟିଭ୍ ଷ୍ଟୋରର ପ୍ରଶଂସା କରିଥିଲେ । ତତ୍କାଳିନ ଓଡିଶାର ରାଜ୍ୟପାଳ ଶ୍ରୀ ପି.ଏସ୍. କୁମାରସ୍ୱାମୀ ରାଜା ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟକ୍ରମରେ ନଥିଲେ ମଧ୍ୟ,କଲେଜର ନିଜସ୍ୱ କାଣ୍ଟିନରୁ ଷ୍ଟୁ,ଇଡଲ୍ ଖାଇ,ପିଲାଙ୍କ ସହିତ ଖୁସିଗପ କରିଥିଲେ । ଖର୍ଚ୍ଚ ଦୃଷ୍ଟିରୁ ମଧ୍ୟ ତାହା ଯଥେଷ୍ଟ କମ୍ ଥିବାରୁ ସାଧାରଣରେ ଆଲୋଚନାର ବିଷୟ ହୋଇଥିଲା ।

॥ ମାନସିଂହଙ୍କ ବିଗ୍ରହଧାରା ॥

ଭାରତ ସ୍ୱାଧୀନତା ଲାଭ କଲାପରେ ଜାତି–ଗଠନ ତଥା ଦେଶ–ଗଠନ ଯେତେବେଳେ ଜାତୀୟ କର୍ତ୍ତବ୍ୟ ଭାବରେ ଗଣାହେବା ଅବଶ୍ୟକ ଥିଲା, ସେତେବେଳେ କ୍ଷମତାସୀନ ଲୋକମାନେ ବ୍ୟକ୍ତିଗତ ସ୍ୱାର୍ଥ ପୂରଣ କରୁଥିଲେ । ଦେଶର ମେରୁଦଣ୍ଡ ଛାତ୍ର ସମାଜର ସର୍ବାଙ୍ଗୀନ ଉନ୍ନତି ପାଇଁ ଚେଷ୍ଟା କରୁଥିବା ବ୍ୟକ୍ତି ଗଣଙ୍କ ଏ ଅବସ୍ଥାରେ ନାନା ଅସୁବିଧାରେ ସମ୍ମୁଖୀନହୋଇଥିଲେ । ବାହ୍ୟ ପ୍ରଭାବ ଠାରୁ ଦୂରରେଥିବା ଦେଶପ୍ରେମୀ, ଡକ୍ଟର ମାୟାଧର ମାନସିଂହ ଯେତେବେଳେ ନାନା ପ୍ରକାର ସଂସ୍କାର ପାଇଁ ଆଗଭର ହେଲେ, ସେତେବେଳେ ପିଲାମାନେ ହିଁ ତାର ପ୍ରତିବାଦ କରିଥିଲେ । ପିଲାମାନଙ୍କ ଆଚରଣଗତ ସଂସ୍କାର ପାଇଁ ମାନସିଂହ ଗଙ୍ଗାଧର ମେହେର କଲେଜ ସନ୍ନିକଟ ଆଖପାଖ 50/60 ଟି ହାଇସ୍କୁଲ ସହିତ କୁଟୁମ୍ବିତା ସ୍ଥାପନ ଚେଷ୍ଟା କରିଥିଲେ । ସନ 1953 ଫେବୃୟାରୀ ମାସରେ ମାନସିଂହ ସ୍କୁଲର ହେଡମାଷ୍ଟର ମାନଙ୍କ ପାଖକୁ ଏକ ସର୍କୁଲାର ପଠାଇଥିଲେ, ସେଥିରେ ଲେଖିଥିଲେ: " X X X ଆପଣମାନେ ମନେ ରଖିଥିବେ ଯେ, ଆପଣ ଓ ଆପଣଙ୍କ ସହକର୍ମୀମାନେ ସେହିକାମ କରୁଛନ୍ତି, ଯାହା ମୁଁ ଓ ମୋର ଲେକ୍‌ଚରର୍ ମାନେ କରୁଛୁ । ସେ କାମଟି ହେଉଛି, ଭାରତୀୟ ଗଣରାଷ୍ଟ୍ରର ଭବିଷ୍ୟତ ନାଗରିକ ମାନଙ୍କୁ ଗଢିବା । ଆପଣମାନେ ଆମକୁ କେବଳ ବି.ଏ., ବି.କମ୍., ଗଢିବା ରୂପକ ନିକୃଷ୍ଟ କର୍ତ୍ତବ୍ୟରେ ହିଁ ଏବଯାଏ ସହାୟତା କରି ଆସିଛନ୍ତି, ଏବେ ନାଗରିକ ଗଢିବାର ଉତ୍କୃଷ୍ଟ କର୍ତ୍ତବ୍ୟରେ ସହାୟକ ହୁଅନ୍ତୁ । X X X"(24)

ମାନସିଂହଙ୍କ ଉପର୍ଯ୍ୟୁକ୍ତ ଉକ୍ତିରୁ ତାଙ୍କର ଆନ୍ତରିକ ଜାତିଗଠନର ଲକ୍ଷ୍ୟ ଜଣାପଡିଥାଏ । ମେହେର କଲେଜରେ ମାନସିଂହ ତାଙ୍କ ଚିନ୍ତାର ଶ୍ରେଷ୍ଠଧାରାକୁ ପରୀକ୍ଷା ନିରୀକ୍ଷା କରିବାର ସୁଯୋଗ ପାଇଥିଲେ । ମାତ୍ର ତାଙ୍କର ସମସ୍ତ ସମସ୍ତ ବାସନା ପୂର୍ଣ୍ଣତା ପ୍ରାପ୍ତି ନିମନ୍ତେ ସୁଯୋଗ ପାଇ ନଥିଲା । ସେ ଶିକ୍ଷାବିତର ଗାଥା ପୁସ୍ତକରେ ଲେଖିଛନ୍ତି— "ମେହେର କଲେଜଟିକୁ ଗୋଟିଏ ସ୍ୱୟଂସମ୍ପୂର୍ଣ୍ଣ, ସୁନ୍ଦର, ସମ୍ମାନିତ ବିଦ୍ୟାନୁଷ୍ଠାନ କରି ଗଢିବାହିଁ ମୋର ଲକ୍ଷ୍ୟଥିଲା । ମୋର ସେହି ସ୍ୱପ୍ନ ଅନେକ ପରିମାଣରେ ସାଧିତ ହୋଇଥିଲା । କୋ–ଅପରେଟିଭ ଷ୍ଟୋରରେ ମିଳେ ତାଙ୍କର ଯାବତୀୟ ଦୈନନ୍ଦିନ ବ୍ୟବହାର୍ଯ୍ୟ ଦ୍ରବ୍ୟାଦି ପାଉଥିଲେ–ବାହାରକୁ ଯିବାର ଦରକାର ନଥିଲା । ମେସ୍ ଓ କ୍ୟାଣ୍ଟିନ୍ ଓ ସେ ସବୁକୁ ସୁପରିଚାଳିତ କରାଇ, ପିଲାଙ୍କ ଭୋଜନ ଓ ଜଳଖିଆର ଅତି ଉତ୍ତମ ବ୍ୟବସ୍ଥା ସେଇ କଲେଜ କମ୍ପାଉଣ୍ଡ ଭିତରେହିଁ କରାହୋଇପାରିଥିଲା । ଏ ସବୁ ଏପରି ଚାଲିଥିଲାଯେ, ବାହାରର ଲୋକେ ବି କଲେଜର ମେସ୍ ଓ କ୍ୟାଣ୍ଟିନ୍‌ର ସୁବିଧା ନେଲେ । କାରଣ ଏତେ ଶସ୍ତାରେ ଏପରି ଉତ୍କୃଷ୍ଟ ଖାଦ୍ୟ ସହରରେ ଅନ୍ୟତ୍ର ମିଳିବା ଅସମ୍ଭବ ଥିଲା । ଗୋଶାଳା ପ୍ରତିଷ୍ଠା କରି ପିଲାଙ୍କୁ ଦୁଧ ଯୋଗାଇ ଦିଆଗଲା । କଲେଜ ବଗିଚାକୁ ବଢେଇ, ବର୍ଷା ଓ ଶୀତ ଦିନରେ ପ୍ରଚୁର ପରିବା ଉତ୍ପନ୍ନ କରାଗଲା । କଲେଜର ବିଦ୍ୟାର ସମ୍ମାନ ଉପରକୁ ଉଠିଲା ଓ କଲେଜ ବିଶ୍ୱବିଦ୍ୟାଳୟର ପରୀକ୍ଷା ମାନଙ୍କରେ ପ୍ରତିବର୍ଷ ନାମ ରଖିଲା । କଲେଜ ନିଜର ଗୋଟାଏ ଉଚ୍ଚାଙ୍ଗ ମାସିକପତ୍ର ମଧ୍ୟ ପ୍ରକାଶ କଲା । କଲେଜର ବାର୍ଷିକ ଡ୍ରାମାକୁ ମଧ୍ୟ ଲୋକେ ଚାହିଁ ରହିଥିଲେ ଓ ଟିକେଟ କିଣି ଦେଖିବାକୁ ଧାଇଁଲେ । ଛାତ୍ରମାନଙ୍କ ପାଇଁ

ଚମତ୍କାର ଘର ସବୁରେ ସୁନ୍ଦର ଏକ କଲୋନି ଠିଆ କରାହେଲା । କଲେଜର ନୂଆ ବିଲ୍ଡିଂ ହେଲା । ପିଲାମାନଙ୍କ ପାଇଁ ପ୍ରଶସ୍ତ ନୂତନ ଛାତ୍ରାବାସର ପ୍ଲାନ ଇତ୍ୟାଦି ସବୁ ହୋଇସାରି ମୂଳପତ୍ତନ ପଡ଼ିଲା ।"(29)

ଏଇ ଅବସ୍ଥାରେ ମାନସିଂହଙ୍କୁ ସମ୍ବଲପୁରରୁ ତଡ଼ିଦିଆଗଲା । ସ୍ପଷ୍ଟବାଦୀ ତଥା ଆଦର୍ଶବାଦୀ ମାନସିଂହ ଦୁଃଖରେ ଲେଖିଛନ୍ତି:—"କିନ୍ତୁ ମୋର କ'ଣ ଆଉ କିଛି କରିବାର ନଥିଲା ? ହଁ ନିଶ୍ଚୟଥିଲା, ବର୍ତ୍ତମାନ ବି ଅଛି, ଯଦିବା ମୁଁ ଆଉ ମେହେର କଲେଜର କିଛି ନୁହେଁ ।"(30)

ମାନସିଂହ ତାଙ୍କର ପରବର୍ତ୍ତୀ ଲକ୍ଷ୍ୟ ରଖିଥିଲେ ଯେ, ମେହେର କଲେଜର ହଷ୍ଟେଲ୍‌ରେ ପ୍ରତିଦିନ ନୂତନ ଖାଦ୍ୟର ପରିବେଷଣ କରାଯିବ । ମେହେର କଲେଜ ନିଜର ଦୁଧ ଓ ପରିବା ଯୋଗାଡ଼ କରି ପାରିଥିଲା । ସେ ଭାବିଥିଲେ ଗୋଟିଏ ପୋଲ୍‌ଟ୍ରୀ ଫାର୍ମ କରି ପିଲାଙ୍କୁ ନିୟମିତ ଭାବରେ ଶସ୍ତାରେ ଅଣ୍ଡା ଯୋଗାଇଦେବେ । କାରଣ ଆମ ଖାଦ୍ୟରେ ପ୍ରୋଟିନ୍‌ର ବଡ଼ ଅଭାବ । ଅଣ୍ଡା ସବୁଠୁ ଶ୍ରେଷ୍ଠ ପ୍ରୋଟିନ୍ ଯୋଗାଏ, ଆଉ ଶସ୍ତାରେ । ପୁଣି ମେହେର କଲେଜର ଭବିଷ୍ୟତ ଅଭିବୃଦ୍ଧି ଲାଗି, ସେ ତାର ଆଗ ଓ ପଛ, ବାମ ଓ ଦକ୍ଷିଣରେ ବୁଢାରଜା ପାହାଡଠାରୁ ବୁକସ୍ ହିଲ୍ ପାହାଡ ପର୍ଯ୍ୟନ୍ତ ଜମିସବୁ ଆକ୍ୱାର କରିବା ପାଇଁ କେବଳ ସ୍ୱପ୍ନ ଦେଖି ନଥିଲେ, ସେ ଦିଗରେ କାମ ବି କରିଥିଲେ । କଲେଜ ପାଖ ରେଳ ଷ୍ଟେସନକୁ ସେଠାରୁ ମାଇଲିଏ ଦୂରକୁ ଉଠାଇ ଦେବାକୁ ଓ ଷ୍ଟେସନ ଆଡ଼କୁ ଯାଇଥିବା କଲେଜ ସାମନା ରାସ୍ତାଟିକୁ ଉଠାଇ ଦେବାପାଇଁ ସେ କରେସ୍ପଣ୍ଡେନସ୍ କରିଥିଲେ । ତାଙ୍କ ପ୍ରସ୍ତାବିତ କର୍ମହିଁ କେବଳ ସ୍ୱପ୍ନରେ ପରିଣତ ହେଲା ।

ସେ ସମ୍ପର୍କରେ ମାନସିଂହ ଦୁଃଖ ଆଉ ଅନୁଶୋଚନାରେ କହିଥିଲେ:——"ଏ ଦେଶ ଯଦି ବିଦ୍ୟା ଓ ବିଦ୍ୟାମନ୍ଦିରକୁ ସମ୍ମାନ ଦେଇ ଜାଣିଥାନ୍ତା, ତେବେ ଏ ଦେଶର ସରକାର ଅକ୍ଷରେ ଅକ୍ଷରେ ମୋର ପ୍ରସ୍ତାବ ଗ୍ରହଣ କରିଥାନ୍ତେ । ସେ ପ୍ରସ୍ତାବରେ ମୋର କୌଣସି ସାମାନ୍ୟତମ ସ୍ୱାର୍ଥହିଁ ନ ଥିଲା । ମୁଁ ଯାହା କହୁଥିଲି, ତାହା ଦେଶ, ଜାତି ଓ ମେହେର କଲେଜର ଭବିଷ୍ୟତ କଲ୍ୟାଣ ଦୃଷ୍ଟିରୁ । ଓଡ଼ିଶା ସରକାର ରାଜାମହାରାଜାଙ୍କ ବଦରା ପ୍ୟାଲେସ୍ ସବୁ, ଲକ୍ଷ ଲକ୍ଷ ଟଙ୍କାରେ କିଣି, ସେ ସବୁର ମରାମତିରେ ପୁଣି ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରି ପାରନ୍ତି, କିନ୍ତୁ ସମ୍ବଲପୁର କଲେଜର ଅବଶ୍ୟମ୍ଭାବୀ ଅଭିବୃଦ୍ଧି ପାଇଁ ଆଗରେ ପଛରେ ଥିବା କେତେକ ଏକର ଧାନ ଜମି କିଣିବାର ମୋର ଯେଉଁ ପ୍ରସ୍ତାବ ତାହା ତତ୍କାଳୀନ କର୍ତ୍ତୃପକ୍ଷଙ୍କୁ ଅସମ୍ଭବ ଦେଖାଗଲା । କିନ୍ତୁ ସେହି ଅସମ୍ଭବ ସ୍ଥାନରେ ବର୍ଷ ଦୁଇଟା ଭିତରେ ପ୍ରାଇଭେଟ ଘର ମାନଙ୍କର ଏକ କ୍ଷୁଦ୍ର ସହର ଆପେ ଆପେ ଗଢି ଉଠିବା ସମ୍ଭବପର ହୋଇ ପାରିଲା । ସେ ଦିନର ଶିକ୍ଷାମନ୍ତ୍ରୀ ନିଜେ ଯାଇ ଦେଖିଆସନ୍ତୁ, ସେ ସବୁ ଜମି କଲେଜ ପାଇଁ ରଖିଥିଲେ, କେତେ ସୁବିଧା ହୋଇଥାନ୍ତା, ମେହେର କଲେଜର ।"(31) ଏହା ସଂଗେ ସଂଗେ ମାନସିଂହ ଆଶା କରିଥିଲେ ମେହେରଙ୍କର ଏକ ପୂର୍ଣ୍ଣାବୟବ ଦଣ୍ଡାୟମାନ ମର୍ମର ପ୍ରସ୍ତର ମୂର୍ତ୍ତି ସ୍ଥାପନ ସଂଗେ ସଂଗେ, ଓଡ଼ିଶାର ଦ୍ୱିତୀୟ ଦ୍ୱିତୀୟ ବିଶ୍ୱବିଦ୍ୟାଳୟ ସ୍ଥାପନ କାଳରେ ମେହେର କଲେଜରେ ହୀରାଖଣ୍ଡ ୟୁନିଭରସିଟି କରିବାପାଇଁ ।

॥ ମାନସିଂହଙ୍କ ବିଗ୍ରହଧାରା ॥

ମାନସିଂହଙ୍କ ସମୟର ମେହେର କଲେଜ ପରିଚାଳନା ସଂପର୍କରେ ଡକ୍ଟର କୁଞ୍ଜବିହାରୀ ଦାଶ କହନ୍ତି:— "ଏଥିରୁ ଗୋଟିଏ ହେଲେ ଘଟଣା ଅତିରଂଜିତ ନୁହେଁ । ମୁଁ ମାନସିଂହଙ୍କ ଆୟୋଜିତ ଓଡିଆ ସାହିତ୍ୟ ସମ୍ମିଳନୀରେ ଯୋଗଦେଇ ଅବସ୍ଥା ଲକ୍ଷ୍ୟକରି ଆସିଛି । କାଣ୍ଟିନ୍ ଓ ମେସ୍‌ରେ ଖାଇଛି, ସମ୍ବଲପୁରୀ ଭାଷାରେ ଲିଖିତ ମେହେରଙ୍କ ଜୀବନ କାହାଣୀ ସମ୍ବଳିତ ନାଟକ ଦେଖିଛି । ମାନସିଂହଙ୍କୁ ଛାଡିଦେଲେ ଆଉ ସମସାମୟିକ ପ୍ରାୟ ସମସ୍ତ ଅଧ୍ୟକ୍ଷଙ୍କ କଲେଜ ପରିଚାଳନା ରୀତି ଗତାନୁଗତିକ ଥିଲା । ମାନସିଂହ ଜଣେ ଗଠନଶୀଳ ଅକ୍ଲାନ୍ତ କର୍ମୀ, ଉପଯୁକ୍ତ କ୍ଷେତ୍ର ପାଇଲେ ସେ ଅସାଧ୍ୟ ସାଧନକରି ନିଜ ମୌଳିକତାର ପରିଚୟ ଦେଇପାରନ୍ତି । ଗତାନୁଗତିକ ଭାବରେ ଅର୍ଥାର୍ଜନ ମାନସିଂହଙ୍କ ଲକ୍ଷ୍ୟ ନୁହେଁ । ତାଙ୍କ ଦେଶପ୍ରେମ ମୌଖିକ ନୁହେଁ ହାର୍ଦ୍ଦିକ, ଏହା ତାଙ୍କର ଅନୁଷ୍ଠାନ ପରିଚାଳନା ଓ ଛାତ୍ରସେବାରୁ ଜଣାଯାଏ । ଭବିଷ୍ୟତ ବଂଶଧରଙ୍କ ଉନ୍ନତ ଚରିତ୍ର ଗଠନ ଲାଗି ପ୍ରାଣପାତ ପରିଶ୍ରମ କରିଥିଲେ । ଆଜି କଟୁଆଳ ଅଛନ୍ତି ମଙ୍ଗୁଆଳ ନାହାନ୍ତି, ବୃତ୍ତିଜୀବୀ ଅଛନ୍ତି ଜୀବନଜୀବୀ ନାହାନ୍ତି, ଛାତ୍ରପାଳ ଅଛନ୍ତି ଦିଗ୍‌ଦର୍ଶକ ନାହାନ୍ତି । ତେଣୁ ଏତେ ବିଭ୍ରାଟ ଏତେ ବିଶୃଂଖଳା ।" (32)

ଓଡିଆ ମାନଙ୍କର ଅସଲ ରାଜ୍ୟ ପ୍ରାକୃତିକ ଓଡିଶା ଏକତ୍ରିତ ହୋଇ ପାରିଲା ନାହିଁ । ଖ୍ରୀ: 1936 ମସିହା ଅପ୍ରେଲ ପହିଲାରେ ଓଡିଆମାନେ ଯେଉଁ ସ୍ୱତନ୍ତ୍ର ଓଡିଶା ପାଇଲେ, ତାହା ପ୍ରାକୃତିକ ଓଡିଶାର ଖଣ୍ଡିତ ରୂପ ମାତ୍ର । ସ୍ୱାଧୀନତା ପରେ ଯେତେବେଳେ ଭାଷାଭିତ୍ତିକ ରାଜ୍ୟ ଗଠନର ବଂଦୋବସ୍ତ କରାଗଲା, ଭାରତର ଅଧିକାଂଶ ରାଜ୍ୟ ନିଜ ଭାଷାଭାଷୀ ଅଂଚଳକୁ ନେଇ ପ୍ରଦେଶ ଗଠନ କଲେ; ମାତ୍ର ସମସାମୟିକ ନେତୃବୃନ୍ଦଙ୍କର ବ୍ୟକ୍ତିଗତ ଲାଭ ଅଥବା ଅପାରଗତା ଯୋଗୁ, ଓଡିଶାର ଦକ୍ଷିଣ, ପଶ୍ଚିମ ଓ ଉତ୍ତର ପାର୍ଶ୍ୱର ବହୁ ଓଡିଆ ଭାଷୀ ଅଂଚଳ ପଡୋଶୀ ରାଜ୍ୟ ମାନଙ୍କୁ ଚାଲିଗଲା ।

ଓଡିଶାର ଉତ୍ତର ଭାଗରେଥିବା ସଂପୂର୍ଣ୍ଣ ଓଡିଆ ଭାଷାଭାଷୀ ଷଢେଇକଳା, ଖରସୁଆଁ, ସିଂହଭୂମି ପ୍ରଭୃତି ଅଂଚଳ ଯେତେବେଳେ ଓଡିଶାରୁ ଅଲଗା କରିନେଇ ବିହାର ସହିତ ମିଶାଇ ଦିଆଗଲା, ସେତେବେଳେ ସମଗ୍ର ଓଡିଶାରେ ଆଂଦୋଳନ ଦେଖାଗଲା । ଏହି ଅଂଚଳ ମାନଙ୍କୁ ଓଡିଶାରୁ ନେଇ ବିହାର ସହିତ ମିଶାଇ ରଖିବାରେ ସର୍ବ ଭାରତୀୟ ସ୍ତରରେ ପୂଜନୀୟ ନେତା, ଭାରତର ପ୍ରଥମ ରାଷ୍ଟ୍ରପତି ସ୍ୱର୍ଗତ ରାଜେନ୍ଦ୍ର ପ୍ରସାଦଙ୍କର ପ୍ରଚ୍ଛନ୍ନ ହାତ ଥିବା(33) ଏହି ସୀମା ଆଂଦୋଳନରେ ଛାତ୍ର ସମାଜ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ । ଖ୍ରୀ: 1956 ଜାନୁୟାରୀ 12 ତାରିଖ ବେଳକୁ ସମ୍ବଲପୁର ଅଂଚଳରେ ଏହି ଆଂଦୋଳନ ବ୍ୟାପିଗଲା । ଡକ୍ଟର ମାନସିଂହ ସେତେବେଳେ ଗଙ୍ଗାଧର ମେହେର କଲେଜର ଅଧ୍ୟକ୍ଷ ଥାଆନ୍ତି । ଛାତ୍ର ମାନଙ୍କୁ ପୋଲିସର ଶିକାର ହେବାକୁ ନ ଦେବାରୁ ପୋଲିସ୍ ତାଙ୍କ ନାମରେ ମିଥ୍ୟା ଅଭିଯୋଗ ଆଣିଲେ । ତାଙ୍କର ସ୍ୱଦେଶପ୍ରେମ, ଛାତ୍ରପ୍ରୀତି ତଥା କର୍ତ୍ତବ୍ୟ ନିଷ୍ଠା ହିଁ ଶେଷରେ ତାଙ୍କର ବିପଦର କାରଣ ହେଲା । ପୋଲିସ୍ ତରଫରୁ ତାଙ୍କ ନାମରେ ଘୋର ମିଥ୍ୟା ରିପୋର୍ଟ ପେଶ କରାଗଲା ।

॥ ମାନସିଂହଙ୍କ ବିଗ୍ରହଧାରା ॥

ସେ ସଂପର୍କରେ ମାନସିଂହ ଲେଖିଛନ୍ତି—"ଏଇ ଘୋର ପ୍ରବଞ୍ଚନା ପୂର୍ଣ୍ଣ ମିଥ୍ୟା ଅଭିଯୋଗରେହିଁ, ଯେଉଁ କଲେଜରେ ମୁଁ ଆନ୍ତରିକତା ସହିତ ସେବାଦେଇ ସାତବର୍ଷ କାଳ ଗଡି ଆସିଥିବି, ନବ ଚୌଧୁରୀ–ରାଧାନାଥ ରଥଙ୍କ ଶାସନ ମତେ ସେଠୁ ଏକ ପ୍ରକାର ରାତାରାତି ବାହାର କରିଦେଲା । ଏଇ ତଥା କଥିତ ଗାନ୍ଧି–ଶିଷ୍ୟମାନେ, ସେ ଦିନ ପୂର୍ବରୁ ବହୁ ନିନ୍ଦିତ ଓ ବହୁ ଘୃଣିତ ଭାରତୀୟ ପୋଲିସ୍‌ଙ୍କୁ ବିଶ୍ୱାସ କରିପାରିଲେ କିନ୍ତୁ ଜଣେ ଶିକ୍ଷାବିତ୍ ପ୍ରିନ୍‌ସପାଲ୍‌କୁ ବିଶ୍ୱାସ କରି ପାରିଲେ ନାହିଁ । ବାପୁଜୀଙ୍କ ସ୍ୱପ୍ନକୁ ମୂର୍ତ୍ତି ଦେଉଥିବା ଏହି ଧୁରନ୍ଦର ବୃନ୍ଦ ପୋଲିସର ମିଥ୍ୟାକୁ ସମ୍ମାନ ଦେଇ ପାରିଲେ, କିନ୍ତୁ ଶିକ୍ଷା ବିଭାଗର ଜଣେ ପ୍ରଥମଶ୍ରେଣୀ କର୍ମଚାରୀ ସତ୍ୟପ୍ରତି ବଦ୍ଧତାର ଅଭିନୟ କଲେ । ବୋଧହୁଏ ଭାରତର କୋଟିଜନର ସ୍ୱପ୍ନ ରାମରାଜ୍ୟର ନମୁନା ରୂପେ ।"(34)

ଓଡିଶାର ତତ୍‌କାଳୀନ ନେତାଙ୍କର କୋପଦୃଷ୍ଟିରେ ପଡିଥିଲେ ମଧ୍ୟ ସୀମା ଆନ୍ଦୋଳନ ସମୟର କାର୍ଯ୍ୟ କଳାପ ଉପରେ ପଣ୍ଡିତ ନୀଳକଣ୍ଠଙ୍କ ଚିଠି ମାନସିଂହଙ୍କ ବ୍ୟକ୍ତିତ୍ୱର ଅସଲ ପରିଚୟ ଦିଏ ।(35)

ପୁରୀ
29.1.1956.

ଜଗନ୍ନାଥେ ଭଲ କରନ୍ତୁ

ଆୟୁଷ୍ମାନ ମାୟାଧର ବାବୁ,

ନିଜ ଦାୟିତ୍ୱରେ ଛାତ୍ରଙ୍କୁ ଜେଲ୍‌ରୁ କାଢି ନେଲ ବୋଲି କାଗଜରେ ବାହାରିଛି । ଆଶୀର୍ବାଦ କରୁଛି । ଏପରି ଛାତ୍ର ଶିକ୍ଷକ ସମ୍ବନ୍ଧ ଏ ଯୁଗରେ ଅତି ଅସାମାନ୍ୟ । ତୁମର ଏଇ ଓ ଏଇପରି କାର୍ଯ୍ୟର ପ୍ରତିଷ୍ଠା ଓ ପ୍ରସାର ହେଉ ।

ଶୁଭାକାଂକ୍ଷୀ
ନୀଳକଣ୍ଠ ଦାଶ

ଓଡିଶା ଲୋକଙ୍କର ଅନ୍ୟାନ୍ୟ ଆନ୍ଦୋଳନ ପରି ସୀମା ଆନ୍ଦୋଳନ ଏକ ସପ୍ତାହ ଭିତରେ ଉଭେଇ ଗଲା । ପୁଣି ଚୁପ୍‌ଚାପ ଭାବରେ ସବୁ ଚାଲିଲା । ଏ ଘଟଣା ଘଟିଲା ଜାନୁୟାରୀ ମାସରେ ମାତ୍ର ମାନସିଂହଙ୍କ ଉପରେ ଶାସନିକ ମର୍ଯ୍ୟାଦା ପାଇଁ ବା ଅପରାଧ ଜନିତ ଶୃଙ୍ଖଳା ବ୍ୟବସ୍ଥା ପାଇଁ ତାଙ୍କୁ ଡି–ଗ୍ରେଡ କରି ଟ୍ରାନ୍‌ସଫର କରାଗଲା ସେପ୍ଟେମ୍ବର ମାସରେ ।

ସେ ସମୟରେ ସମସ୍ତେ ଅନୁମାନ କରୁଥିଲେ ଯେ ମାନସିଂହଙ୍କର ଟ୍ରାନ୍‌ସଫର ହେବ । ମାନସିଂହ ମଧ୍ୟ ସେହି କ୍ରମରେ ସମସାମୟିକ ଶିକ୍ଷାମନ୍ତ୍ରୀ, ବର୍ତ୍ତମାନର ସମାଜ' ସଂପାଦକ ଶ୍ରୀ ରାଧାନାଥ ରଥଙ୍କୁ ଓ ସେତେବେଳର ଡି.ପି.ଆଇ. ଡକ୍ଟର ବଳଭଦ୍ର ପ୍ରସାଦଙ୍କୁ ଅନୁରୋଧ କରିଥିଲେ ଯେ, ଗ୍ରୀଷ୍ମ ଛୁଟିରେ ତାଙ୍କୁ ବଦଳି କରାଯାଉ । କାରଣ ତାଙ୍କ ପୁଅର ପଢାର ସୁବିଧା ପାଇଁ ସେ କଟକ ବଦଳି ଚାହୁଁଥିଲେ । ପୁଣି ଆଉ ଏକ ଅନୁରୋଧ କରିଥିଲେ ଯେ, ମାନସିଂହ କଲେଜ ଛାଡି ଆସିଲା ପରେ ତାଙ୍କର ପରବର୍ତ୍ତୀ ଅଫିସର ଯାଇ ଜଏନ୍ କରିବେ । ସେତେବେଳେ କଟକ ସମ୍ବଲପୁର ମଧ୍ୟରେ ଗମନାଗମନର ଭଲ ସୁବିଧା ନଥିଲା । ମହାନଦୀରେ ପୋଲ ହୋଇ ନଥିବାରୁ ବର୍ଷାଦିନେ କଟକକୁ ସିଧା ସଳଖ କୌଣସି ରାସ୍ତା ନଥାଏ । ଭଉଦିନିଆ ରାସ୍ତାରେ ସମସ୍ତ ପ୍ରକାର ସୁବିଧା ଥିବାରୁ ମାନସିଂହ

ଗ୍ରୀଷ୍ମ ଛୁଟିରେ ବଦଳି ପାଇଁ ଶୁଣୁଥିଲେ । ସେ କିପରି ଦୟନୀୟ ଭାବରେ ସମ୍ବଲପୁରରୁ ଚାଲିଗଲେ ତାହା ମାନସିଂହଙ୍କ ନିଜ ଭାଷାରେ ଏହିପରି——"ଗ୍ରୀଷ୍ମାବକାଶ ସରିଲା- କିନ୍ତୁ ମୋର ଟ୍ରାନ୍ସଫର ବିଷୟରେ କୌଣସି ସିଦ୍ଧାନ୍ତ ମୁଁ ଜାଣି ପାରିଲି ନାହିଁ । ଘୋର ଅପ୍ରତ୍ୟାଶିତ ଭାବରେ ମୁଁ କଟକରୁ ଫେରି କଲେଜରେ ଜଏନ୍ କରିବାର ବୋଧହୁଏ ଦେଢମାସ ଭିତରେ ହଠାତ୍ ମୋର ଟ୍ରାନ୍ସଫର ଅର୍ଡର ଆସିଲା । ଡି॰ପି॰ଆଇ॰ ବଳଭଦ୍ର ପ୍ରସାଦ ତାଙ୍କର ଭଦ୍ରଜନୋଚିତ ଦତ୍ତ-ବଚନ ଅକାତରେ ଭାଙ୍ଗି ବଲାଙ୍ଗିର କଲେଜ ପ୍ରିନ୍ସିପାଲଙ୍କୁ, ମୋ ଠାରୁ ଚାର୍ଜ ନେଇ ଯିବାକୁ ସମ୍ବଲପୁର ପଠାଇଦେଲେ । ସେ ଯାଇଁ ସମ୍ବଲପୁରରେ ସାଙ୍ଗେ ସାଙ୍ଗେ ହାଜର, ଚାର୍ଜ ନେବା ପାଇଁ ।"36)

ସମ୍ବଲପୁରର କେତେକ ବନ୍ଧୁ ମାନସିଂହଙ୍କୁ ଛୁଟିରେ ରହିଯିବାକୁ ଓ ଚାର୍ଜ ନ ଦେବାକୁ ଉପଦେଶ ଦେଲେ । କିନ୍ତୁ ସେ ସବୁକୁ କର୍ଣ୍ଣପାତ ନକରି ମାନସିଂହ ବିନା ଦ୍ୱିଧାରେ ସମ୍ବଲପୁର ଛାଡିବାର ଆୟୋଜନ କଲେ । ସପ୍ତାହକ ପରେ ମାନସିଂହ ତାଙ୍କର ଆଠବର୍ଷର କର୍ମସ୍ଥଳୀ ତାଙ୍କର ପ୍ରିୟ ଅନୁଷ୍ଠାନରୁ ସାଶ୍ରୁ ନେତ୍ରରେ ବିଦାୟ ନେଇ ଚାଲି ଆସିଲେ । ତାଙ୍କ ପ୍ରାଣର ଅକୁହା ବେଦନା ଆଖିବାଟ ଦେଇ ଝରି ଆସିଲା । "ମୋ ମର୍ମର ହାହାକାର ଓ ନୟନର ଅବାରିତ ଅଶ୍ରୁଧାରା ର ସମବେଦନାରେ ଯେପରି ପ୍ରକୃତି ସେ ଦିନ ନିଜକୁ ମେଘ ଗମ୍ଭୀର କରି ଅଜସ୍ର ଅସାରରେ ତାର ପ୍ରତିବାଦ ଜଣାଉଥାଏ । ଫେରନ୍ତି ଯାତ୍ରା ପଥରେ ବର୍ଷା ଓ ତୋଫାନ ଖାଇ ଖାଇ, ନିରବଚ୍ଛିନ୍ନ ଘୋର ଅସାର ତଳେ ହିଁ ମହାନଦୀ ପାର ହୋଇ, କଟକରେ ଆସି ଏକ ବନ୍ଧୁଙ୍କ ବାରଣ୍ଡାରେ ପିଲାପିଲିଙ୍କି ଧରି ବାସହରାପରି ଠିଆ ହେଲି, ଆଶ୍ରୟ ଭିକ୍ଷାକରି, ଏ ଦେଶର ସର୍କାରଙ୍କ ଠାରୁ ମେହେର କଲେଜରେ ଆନ୍ତରିକ ଶ୍ରମର ପରମ ପୁରସ୍କାର ସ୍ୱରୂପ ।"(37)

ପ୍ରୌଢ-ସାମାଜିକ-ଶିକ୍ଷା-ଅଫିସର ॥

ଓଡିଶାର ରାଜନୈତିକ ଜଳବାୟୁର ପରିବର୍ତ୍ତନ ସଂଗେ ସଂଗେ ଶିକ୍ଷା ଶାସନଗତ ପରିବର୍ତ୍ତନ କିପରି ହୁଏ ତାର ସୂଚନା 'ଶିକ୍ଷାବିତ୍' ଗାଥାରେ ଡଃ ମାନସିଂହ ବର୍ଣ୍ଣନା କରିଛନ୍ତି । ସମସାମୟିକ ପରିବେଶ ଓ ପବନକୁ ଲକ୍ଷ୍ୟକରି ଚୁଡା ଧରିବାର ଯୋଗ୍ୟତା ମାନସିଂହଙ୍କର ଅବଶ୍ୟ ନ ଥିଲା । ଯେଉଁ ପଦବୀରେ ତାଙ୍କୁ ଅଧିକୃତ କରା ଯାଉଥିଲା, ସେଥିରେ ସେ ମନପ୍ରାଣ ଦେଇ ଲାଗି ଯାଉଥିଲେ । ଗଂଗାଧର ମେହେର କଲେଜରୁ ମାନସିଂହଙ୍କୁ ଏକ ନିଷ୍କ୍ରମଣ ପଦବୀ ଦେଇ, ପ୍ରୌଢ-ସାମାଜିକ-ଶିକ୍ଷା-ଅଫିସର ଭାବରେ ପ୍ରେରଣ କରାଗଲା ।

## ॥ ମାନସିଂହଙ୍କ ବିଚାରଧାରା ॥

ଏହାର ଦଶବର୍ଷ ଆଗରୁ ମାନସିଂହ ପ୍ରଥମେ ୧୯୪୬–୪୭ ରେ ଓଡ଼ିଶାର ପ୍ରଥମ ସାମାଜିକ–ଶିକ୍ଷା–ଅଫିସର ଭାବରେ ମାତ୍ର ଚାରି ମାସ ପାଇଁ ସେହି ବିଭାଗରେ ନିଯୁକ୍ତି ପାଇଥିଲେ । ସେତେବେଳେ ଏ ବିଭାଗ ନୂଆ ଖୋଲିଥାଏ, ସେ ସଂପର୍କରେ ମାନସିଂହ କହନ୍ତି:—"ସେତେବେଳେ ଅଫିସ, ଅଫିସର ଓ ଡିପାର୍ଟମେଣ୍ଟ ହିଁ ଥିଲି ମୁଁ ଜଣେ ଲୋକ । ତତ୍‌କାଳୀନ ଡି.ପି.ଆଇ. ଜଣେ ବଡ଼ ସାହେବ ଥିଲେ । ସୁଦୂର କଳ୍ପନାରେ ବି ତାଙ୍କୁ ଏଡୁକେଶନିଷ୍ଟ ବା ଶିକ୍ଷାବିତ୍ କୁହାଯାଇ ନପାରେ । ତାଙ୍କ ଅଧୀନରେ ଗୋଟିଏ ପୁରା ନୂଆ ଡିପାର୍ଟମେଣ୍ଟ ହେଲା, ତେଣୁ ଏ ଦିଗରେ କଣ କରାଯିବ, କାହିଁକି ଏହା ସୃଷ୍ଟି ହେବା, ସେହି ଲକ୍ଷ୍ୟରେ କି କି ପନ୍ଥା ଅବଲମ୍ବନ କରାଯିବ, ଏ ସବୁ ସେ ଦିନେ ହେଲେ ଚାକି କଥା ଭାଷା ହୋଇ ନଥିଲେ । କରେ କ'ଣ ? ତେଣୁ ନିଜେ ନିଜେ ସେ ସଂପୃକ୍ତ ସାହିତ୍ୟ ଖୋଜା ଖୋଜିକରି ପଢ଼ିବାରେ ଲାଗିଲି । ସେତେବେଳେ ଅଫିସରେ ବସି ମୁଁ କେବଳ ଏଇ ବହି ହିଁ ପଢୁଥାଏ । ପଢୁ ପଢୁ ମାସକ ଭିତରେ ମୋର ଗୋଟିଏ ସ୍ପଷ୍ଟ ଧାରଣା ହେବା ଯେ ଆଡଲ୍ଟ ଏଜୁକେଶନ କ'ଣ ? ଅନ୍ୟାନ୍ୟ ସଭ୍ୟଦେଶ ମାନଙ୍କରେ ଏହା କେବେ ଓ କାହିଁକି ଜନ୍ମ ନେଲା ଓ କି କି' ଆକାର ନେଇ ଏହା ସେ ଦେଶ ମାନଙ୍କରେ ବଂଚି ରହିଛି । ଅଫିସର ଭାବରେ ମୁଁ ମୋର ପ୍ରଥମ କର୍ତ୍ତବ୍ୟ ସ୍ୱରୂପ ମୁଁ ସେ ସମୟର ଦୈନିକ 'ସମାଜ'ରେ ପ୍ରୌଢ଼–ଶିକ୍ଷା ଉପରେ ଯେତେଦୂର ମନେ ପଡ଼ୁଛି ତିନୋଟି ପ୍ରବନ୍ଧ ଲେଖିଲି । ଏଇ ଲେଖା ଗୁଡ଼ିକ ସେତେବେଳେ ଦେଶରେ ନୂତନ ସଚେତନତା ଆଣିଥିଲା ମୁଁ ଜାଣେ ।"(୩୫)

ଦଶ ବର୍ଷ ପରେ ମାନସିଂହ ପୁଣି ସେହି ବିଭାଗରେ ପୁନର୍ନିଯୁକ୍ତି ପାଇ ଦେଖିଲେ ଯେ, ସେଥିରେ ଉନ୍ନତି ହେବାତ ଦୂରର କଥା, ସାମାନ୍ୟ ଚଳନ୍ତି କାମ ମଧ୍ୟ ହୋଇନାହିଁ । ଡିପାର୍ଟମେଣ୍ଟ ଦଶବର୍ଷ ଧରି ଚାଲିଥିବେ ମଧ୍ୟ ଏ ସବୁର କୌଣସି ଉତ୍ତର ପାଇଲରେ ନାହିଁ । ନୈଶ୍ୟ ବିଦ୍ୟାଳୟ ମାନଙ୍କରେ କେବଳ ସ୍ଲେଟ–ବଣ୍ଟନ ତାଲିକାହିଁ ସେତେବେଳ ଯାଏ ପ୍ରୌଢ଼–ଶିକ୍ଷା ଆଂଦୋଳନର ପ୍ରଧାନ କାମ ଥିଲା ।

ଦ୍ୱିତୀୟ ଥର ମାନସିଂହ ଏହି ବିଭାଗରେ ମାତ୍ର ନଅମାସ କାର୍ଯ୍ୟ କରିଥିଲେ । ଗଂଗାଧର ମେହେର କଲେଜରୁ ଆସିଲା ପରେ ମାନସିଂହଙ୍କୁ ଡି.ପି.ଆଇ.ଅଫିସରେ ତାଙ୍କ ପୂର୍ବ ପଦବୀ ଠାରୁ ଏକ ସାଧାରଣ ଅବସ୍ଥାରେ ତାଙ୍କ ଜୁନିଅର ମାନଙ୍କର ନିମ୍ନ ସ୍ତରରେ ରଖାଗଲା । ଏତେ ମନସ୍ତାପ ତଥା ଚକ୍ରାନ୍ତରେ ମଧ୍ୟ ସେ ସେହି ବିଭାଗରେ କିଛି ନୂତନତ୍ୱ ଆଣିବାକୁ ଚେଷ୍ଟା କରିଥିଲେ । ଏଇ ନଅ ମାସ ମଧ୍ୟରୁ ଶେଷ ଦୁଇମାସ ତାଙ୍କୁ ନାନା ମନସ୍ତାପ ମଧ୍ୟରେ ଗତି କରିବାକୁ ପଡ଼ିଥିଲା । ତଥାପି ଏଇ ସ୍ୱଳ୍ପ ସମୟ ମଧ୍ୟରେ ସେ ଯାହା କରିଥିଲେ "ତାହାର ଏକମାତ୍ର ଲକ୍ଷ୍ୟ ଥିଲା ଓଡ଼ିଆ ଜାତିର ଜ୍ଞାନ ଓ ସାଂସ୍କୃତିକ ଉନ୍ନତି । ତାହା କେବଳ ତାତ୍‌କାଳୀକ ନୁହେଁ, ସେ ସମସ୍ତର ସ୍ଥାୟୀ ମୂଲ୍ୟ ରହିଛି ।"(୩୨) ସେ ସମୟରେ ଯାହା ପଦକ୍ଷେପ ନିଆ ଯାଇଥିଲା, ତାହା ହେଲା:—— (କ) ଜାତି ଗଠନ ସୂଚକ ସଂଗୀତ ରଚନା କରାଯାଇ ରେକର୍ଡ କରାଯାଇଥିଲା । (ଖ) ପଣ୍ଡିଚେରୀ ଅରବିନ୍ଦ ଆଶ୍ରମ ତିଆରି ଅସାଧାରଣ ଶୈକ୍ଷିକ ମୂଲ୍ୟ ଥିବା ଫିଲ୍ମ ସବୁ ଅଣାଯାଇଥିଲା ଓ ପ୍ରଦର୍ଶିତ ହେଉଥିଲା । (ଗ) ପ୍ରତ୍ୟକ୍ଷ ଭାବରେ ସମାଜ ଉନ୍ନୟନ ପାଇଁ

॥ ମାନସିଂହଙ୍କ ବିଗ୍ରହଧାରା ॥

କାବ୍ୟ ନାଟକ, ଉପନ୍ୟାସର ଶ୍ରେଷ୍ଠ ଲେଖକ ମାନଙ୍କୁ ପ୍ରଥମ ଥର ପାଇଁ ପୁରସ୍କାର ଦିଆଯାଇଥିଲା ।
(ଘ) ଭାରତ ସରକାରଙ୍କ ନିର୍ଦ୍ଦେଶରେ ନବ–ସାକ୍ଷର ଜନତା ପାଇଁ ନୂତନ ସାହିତ୍ୟ କିପରି ସୃଷ୍ଟି ହେବ, ସେ ଉଦ୍ଦେଶ୍ୟରେ ଦୁଇମାସ ବ୍ୟାପୀ ଏକ 'ସାହିତ୍ୟିକ କର୍ମ ମନ୍ଦିର'(ଲିଟେରେରୀ ଓ୍ୱାର୍କସପ୍) ପ୍ରଥମଥର କରି ପରିଚାଳିତ କରାଯାଇଥିଲା ଓ ଏହାର ଫଳ ସ୍ୱରୂପ ଛଅ ଖଣ୍ଡି ନୂତନ ସାମାଜିକ ଶିକ୍ଷା ପୁସ୍ତକ ପ୍ରକାଶ କରାଯାଇଥିବା ।
(ଙ) ପ୍ରକୃଷ୍ଟ ସାମାଜିକ ସାହିତ୍ୟ ଭାବରେ ଏହି ଡିପାର୍ଟମେଣ୍ଟ ପକ୍ଷରୁ ବାରଟି ପୁସ୍ତକ ଏଇ ସ୍ୱଳ୍ପକାଳ ମଧ୍ୟରେ ପ୍ରକାଶ କରାଯାଇଥିଲା । ସେ ଗୁଡିକ ହେଲା :—1, ସାମାଜିକ ଶିକ୍ଷାର ନକ୍ସା ,2–ଜାପାନର କୃଷି ଓ ଶିଳ୍ପ, 3–ଗାନ୍ଧି ତର୍ପଣ, 4–ପଲ୍ଲୀ କବିତା, 5–ସରସ ଗୀତ, 6–ସରସ ଛାନ୍ଦ, 7–ମାନକୋଷ(ନମୁନା), 8–ଗଣତନ୍ତ୍ରର ଆଦର୍ଶ–ପୁରୁଜରତ୍ନାଣ୍ଡ, 9–ବସିବା ଠଉଁ କାଳିବା ଭଲ, 10– ଗୃଷ ଯା'ର ଜମି ତାର, 11–କନ୍ଧ ପରଜା ସ୍ତୋତ୍ର ଓ ସଂଗୀତ, 12–ଓଡିଶାର ଶିଳ୍ପକଳା ,(40)

ନିଜସ୍ୱ ମତର ଉପସ୍ଥାପନ ଓ ସ୍ୱାଧୀନ ଚେତନା ମାନସିଂହଙ୍କ ପୂର୍ବ ଚାକିରି ଜୀବନରେ ଯେପରି ତାଙ୍କୁ ନାନା ପ୍ରକାର ଅସୁବିଧାରେ ପକାଇଥିଲା, ପ୍ରୌଢ–ସାମାଜିକ–ଶିକ୍ଷା–ଅଫିସର ଭାବରେ ଦ୍ୱିତୀୟଥର ଅବସ୍ଥାପିତ ହେଲା ପରେ ମଧ୍ୟ ସେ ସେହି ଅବସ୍ଥାର ସମ୍ମୁଖୀନ ହେଲେ । ମାନସିଂହ ସମସାମୟିକ ପରିସ୍ଥିତି ବା ଲୋକ ଚରିତ୍ରକୁ ଅନୁଧ୍ୟାନ ନକରି ଆଦର୍ଶର ମୋହରେ ଯାହାକୁ ଉପଯୁକ୍ତ ବୋଲି ବିବେଚନା କରୁଥିଲେ, ସେହି କାମ ସବୁ କରୁଥିଲେ । ଏଣୁ କର୍ମମୟ ଜୀବନହିଁ ତାଙ୍କର ଜଞ୍ଜାଳମୟ ଜୀବନ ହୋଇଯାଇଥିଲା ।

ପ୍ରୌଢ–ଶିକ୍ଷା ଅଫିସର ଭାବରେ ନବ ସାକ୍ଷରଙ୍କ ପାଇଁ କେତେକ ବହି ନିର୍ବାଚନକରିବାର ଦାୟିତ୍ୱ ମାନସିଂହଙ୍କୁ ଦିଆଗଲା । ପୁସ୍ତକ ନିର୍ବାଚନ କମିଟିରେ ଡଃ ମାୟାଧର ମାନସିଂହ, ଶ୍ରୀ ବିଧୁଭୂଷଣ ଦାସ, ଡଃ ରାଧାନାଥ ରଥ ଓ ଶ୍ରୀ ପ୍ରାଣବନ୍ଧୁ କର ରହିଥିଲେ । ନିୟମ ଦୃଷ୍ଟିରୁ ଉତ୍ତମ ବହି ବାଛିବା ପାଇଁ ମାନସିଂହ ନିର୍ଦ୍ଦେଶ ଦେବା ବେଳେ ତାହା ପୂର୍ବ ପରମ୍ପରାର ପରିପନ୍ଥି ହେଲା । ଅର୍ଥାତ ଗତାନୁଗତିକ ଭାବରେ ଯେଉଁ ଲେଖକ ବା ପ୍ରକାଶକ ମାନଙ୍କର ବହି ବଛା ଯାଉଥିଲା, ସେମାନେ ଏଥର ବାଦ ପଡିଗଲେ । ସେତେବେଳେ ଅବଶ୍ୟ ପରମ୍ପରା କଥା ଉଠିଥିଲା, ମାତ୍ର ମାନସିଂହ କମିଟିକୁ ଯୋର ଦେଇ କହିଲେ—"ସେମାନଙ୍କୁ ଅଣା ଯାଇଛି ଲେଖା ବାଛିବାକୁ, ଲେଖକ ବା ପ୍ରକାଶକ ବା ଦୈନିକ କାଗଜର ସମ୍ପାଦକ–ସହ ସମ୍ପାଦକ ବାଛିବାକୁ ନୁହେଁ । ସେମାନେ ଯେଉଁ କାମପାଇଁ ଆସିଛନ୍ତି ଖାରା ଭାବରେ ସେଇ କାମ କରିଯାଆନ୍ତୁ । ଯଦି ସମାଲୋଚନା ହୁଏ, ମୁଁ ତାର ଉତ୍ତର ଦେବି । ପାଠକେ! ଓଡିଶା ଦେଶ ବୋଲି ମୋତେ ଉତ୍ତର ରକ୍ତାଶ୍ରୁ ସହିତ ଦେବାକୁ ପଡିଲା । କାରଣ ମୁଁ ଭଲ ବହି ବାଛିବାକୁ ବସି, ଯୁକ୍ତିଯୁକ୍ତ ଭାବରେ କେତେକ ପ୍ରଭାବଶାଳୀ ବହିବାଲଙ୍କୁ ଭୁଲିଗଲି ।"(41)

ଏକ ଚକ୍ରାନ୍ତର ଶିକାର ହୋଇ ମାନସିଂହ ତା ପରେ ସେ ପଦବୀରୁ ତଡା ଖାଇଲେ ଓ କିଛି ଦିନ ଛୁଟିରେ ରହିଲେ । ତତ୍କାଳୀନ ଶିକ୍ଷାମନ୍ତ୍ରୀ ଲିଙ୍ଗରାଜ ପାଣିଗ୍ରାହୀ ଓ ଅନ୍ୟମାନଙ୍କ କୋପ ଦୃଷ୍ଟିରେ ମାନସିଂହ

ପଦଚ୍ୟୁତ ହୋଇ ତାଙ୍କର ଜଣେ ଜୁନିଅରଙ୍କ ଅଧୀନରେ ବାରିପଦା କଲେଜକୁ ଲେକ୍‌ଚରର ହୋଇ ବଦଳି ହେବେ । ବଦଳି ଆଦେଶ ପାଳିତ ହେବା ପୂର୍ବରୁ ଡଃ ମାନସିଂହ ଶିକ୍ଷାମନ୍ତ୍ରୀ ଲିଂଗରାଜ ପାଣିଗ୍ରାହୀଙ୍କୁ ସାକ୍ଷାତ କରିଥିଲେ । ସାକ୍ଷାତର ବିବରଣୀ ବ୍ୟାପକ ଭାବରେ ମାନସିଂହ ତାଙ୍କର 'ଶିକ୍ଷାବିତ୍‌ର ଗାଥା'ରେ ବର୍ଣ୍ଣନା କରିଛନ୍ତି । ସାକ୍ଷାତର ଶେଷ ମୁହୂର୍ତ୍ତରେ କଥିତ ମାନସିଂହଙ୍କର ଉକ୍ତିରୁ ଜଣେ ଶିକ୍ଷାବିତ୍‌ଙ୍କର ନିର୍ଯାତନାର ସ୍ୱରୂପ ତଥା ମାନସିଂହଙ୍କ ଜୀବନର ଶୋକୋଚ୍ଛ୍ୱାସ ଭାବ ବର୍ଣ୍ଣିତ ।"ଶେଷ ବାକ୍ୟରେ ମୁଁ ମନ୍ତ୍ରୀ ଲିଂଗରାଜ ପାଣିଗ୍ରାହୀଙ୍କୁ ଏଇ କଥା କହି(କୋପାମୀକେ) ବିଦାୟ ନେଲି—

'ଦେଖନ୍ତୁ ମହାଶୟ, ଆପଣ ଗୋଟିଏ ହାଇକୋର୍ଟର ଏକ୍‌ସ-ଚିଫ୍-ଜଷ୍ଟିସ୍ ଓ ବର୍ତ୍ତମାନ ଏକ ରାଜ୍ୟର ଶିକ୍ଷାମନ୍ତ୍ରୀ । ଆପଣ ମୋ ଦେଶର ଶିକ୍ଷା ଓ ସଂସ୍କୃତିର ଗାର୍ଡିୟାନ(ଅଭିଭାବକ) ଓ କଷ୍ଟୋଡିଆନ(ରକ୍ଷକ) ବର୍ତ୍ତମାନ ଆପଣଙ୍କ ଠାରୁ ନ୍ୟାୟ ବିଚାର ହିଁ ଆଶାକରେ । ମୋର ଅପରାଧ ସାମାନ୍ୟ ବୋଲି ଆପଣ ସ୍ୱୀକାର କରୁଛନ୍ତି, ଅଥଚ ତାକୁଇ ନେଇ ଏପରି ହୁଲ୍ଲା କରାଯାଉଛି ଯେପରି କି ମୁଁ କିଛି ଗୋଟାଏ ମାରାତ୍ମକ ଅପରାଧ କରିପକାଉଛି । ଗତ ଚାରିମାସ ହେଲା ମହାଶୟ ଏଇ ଅପପ୍ରଚାର ଯୋଗୁ ମୁଁ ଲୁହ ନ କାନ୍ଦି ରକ୍ତ ହିଁ କାନ୍ଦିଛି । ଆପଣ ଅଧୁନା କ୍ଷମତାପନ୍ନ, ତେଣୁ ମତେ ଦଣ୍ଡ ଦେଇପାରନ୍ତି । କିନ୍ତୁ ଏ ଜଗତରେ ଯଦି ଈଶ୍ୱର ବୋଲି ଜଣେ କିଏ ଥାଏ ଏବଂ ଏ ସୃଷ୍ଟି ଯଦି ନୀତିତନ୍ତ୍ର ଉପରେ ପ୍ରତିଷ୍ଠିତ ଥାଏ, ତା ହେଲେ ମୋର ଦୃଢ ବିଶ୍ୱାସ, କେହି ଲୋକ କେବେ ହେଲେ ଓ କେଉଁଠାରେ ହେଲେ ମୋର ନିରପରାଧ ଅଶ୍ରୁର ଉତ୍ତର ଦେବ ।"(42)

ଉପର୍ଯ୍ୟୁକ୍ତ ବାକ୍ୟରୁ ମାନସିଂହଙ୍କର ସେତେବେଳର ଅସହାୟ ଭାବକୁ ଅନୁମାନ କରାଯାଇ ପାରେ । ତଥାପି ମନ୍ତ୍ରୀ କୌଣସି ପ୍ରତିକାର ନକରି ବାରିପଦା କଲେଜରେ ଜଏନ୍ କରି ସରକାରୀ ଆଦେଶକୁ ସମ୍ମାନ କରିବାକୁ ଉପଦେଶ ଦେଲେ ।

ଓଡିଆ ଏନ୍‌ସାଇକ୍ଲୋପେଡିଆ ର ମୁଖ୍ୟ ସଂକଳକ ॥

ଏନ୍‌ସାଇକ୍ଲୋପେଡିଆ ବା ଜ୍ଞାନକୋଷ ପ୍ରତ୍ୟେକ ଭାଷାର ଏକ ସମ୍ମାନ ଜନକ ସ୍ଥାନ ଦାବିକରେ । ବିଶ୍ୱର ସକଳ ଜ୍ଞାନ ସଂପଦକୁ ଗୋଟିଏ ସେଟ୍ ଗ୍ରନ୍ଥରେ ଦୃଷ୍ଟିପାତ କରିବା କେବଳ ଜ୍ଞାନକୋଷ ଦ୍ୱାରାହିଁ ସମ୍ଭବ ହୋଇଥାଏ । ଡଃ ମାୟାଧର ମାନସିଂହ ଏହିଭଳି ଏକ ସ୍ୱପ୍ନ ଦେଖି ତାକୁ କାମରେ ଲଗାଇବା ପାଇଁ ପ୍ରଚେଷ୍ଟା କରିଥିଲେ । କିନ୍ତୁ ତାଙ୍କ ଜୀବନର ଅନ୍ୟାନ୍ୟ କର୍ମପରି, ଏହା ପୂର୍ଣ୍ଣାଂଗ ଲାଭ କରିବା ପୂର୍ବରୁ ତାଙ୍କୁ ବିଦାୟ ନେବାକୁ ହେଲା ।

ଡଃ ମାନସିଂହ ।୨୪୨ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ ବୈଠକରେ ଓଡିଆ ଭାଷାରେ ଏକ ପୂର୍ଣ୍ଣାଂଗ ଜ୍ଞାନକୋଷ ସଂକଳନର ପ୍ରସ୍ତାବ ଦେଇଥିଲେ । ଏହି ପ୍ରସ୍ତାବ ପରେ ଉତ୍କଳ ବିଶ୍ୱବିଦ୍ୟାଳୟର ଓଡିଆ

ସାହିତ୍ୟ ଉନ୍ନୟନ କମିଟି ଆଗରେ ମଧ୍ୟ ଉପସ୍ଥାପିତ ହୋଇଥିଲା । ଏହା ପରେ ପରେ ଡଃ ମାନସିଂହ ତା–7·2·51 ରିଖ ରେ ଓଡ଼ିଶାର ଜ୍ଞାନୀ, ସାହିତ୍ୟିକ, ଲେଖକ, ସାମ୍ବାଦିକ ତଥା ଅଧ୍ୟାପକ ମାନଙ୍କ ନିକଟକୁ ଓଡ଼ିଆରେ ଏକ ଜ୍ଞାନକୋଷ ପ୍ରଣୟନ କ୍ଷେତ୍ରରେ ସମସ୍ତଙ୍କ ସମବେତ ଚେଷ୍ଟାପାଇଁ ଏକ ଆବେଦନ ପଠାଇଥିଲେ । ଏ ସମ୍ପର୍କରେ ସେ ସମସ୍ତଙ୍କ ଠାରୁ ପୂର୍ଣ୍ଣପ୍ରାଣରେ ସାହାଯ୍ୟ ମିଳିବ ନାହିଁ, ସେ କଥା ମାନସିଂହ ଭଲଭାବରେ ଜାଣିଥିଲେ । ସେ ଲେଖିଛନ୍ତି—

"ଓଡ଼ିଶାର ପ୍ରାୟ 60 ଜଣ ବିଭିନ୍ନ କ୍ଷେତ୍ରରେ ପରିଚିତ ବ୍ୟକ୍ତିଙ୍କ ନିକଟକୁ ଏହି ଆବେଦନ କଲା ବେଳେ ମୁଁ ନୈରାଶ୍ୟ ଓ ନିରୁତ୍ସାହ ପାଇଁ ପ୍ରସ୍ତୁତ ହୋଇ ରହିଥିଲି । କିନ୍ତୁ ଯେପରି ଭାବରେ ଆବେଦନର ଅନୁକୂଳ ପ୍ରତିକ୍ରିୟା ଆମ୍ଭମାନଙ୍କ ନିକଟରେ ପହଁଚିବାରୁ, ସେଥିରେ ଆଉ ନୈରାଶ୍ୟର ଅବକାଶ ରହିଲା ନାହିଁ ।"(43)

1951 ମସିହା ଫେବୃୟାରୀରେ ଜ୍ଞାନକୋଷର ଯୋଜନା ଆରମ୍ଭ ହୋଇଥିଲା । ଏହାର ନମୁନା ଖଣ୍ଡକ ପରୀକ୍ଷା ମୂଳକ ଭାବରେ ଡଃ ମାନସିଂହ ନିଜ ବ୍ୟୟରେ ଛପାଇବା ପାଇଁ 1954 ଫେବୃୟାରୀରେ ପ୍ରେସକୁ ପଠାଇଲେ । ଏହି ଜ୍ଞାନକୋଷ ରପରିକଳ୍ପନା ତଥା ପ୍ରାରମ୍ଭିକ ଉଦ୍ୟମ, ଡଃ ମାନସିଂହ ସମ୍ବଲପୁର ଗଂଗାଧର ମେହେର କଲେଜରେ ହିଁ ଆରମ୍ଭ କରି, 1955 ମସିହାରେ ଓଡ଼ିଆ ଜ୍ଞାନକୋଷ ପ୍ରଥମ(ନମୁନା) ଖଣ୍ଡ ପ୍ରକାଶ କଲେ । ଏହା ମାତ୍ର 'ଅ' ଅକ୍ଷରର 'ଅ' ଠାରୁ 'ଅକ୍ଷୌହିଣୀ' ପର୍ଯ୍ୟନ୍ତ, 55 ଟି ପ୍ରବନ୍ଧ, 106 ପୃଷ୍ଠାରେ ପ୍ରକାଶିତ ହୋଇଥିଲା ।

ପରେ ଉତ୍କଳ ବିଶ୍ୱବିଦ୍ୟାଳୟ ଡଃ ମାନସିଂହଙ୍କୁ ତେଲଗୁ ଓ ତାମିଲ 'ଜ୍ଞାନ–କୋଷ'ର କାର୍ଯ୍ୟ ପର୍ଯ୍ୟବେକ୍ଷଣ କରିବା ପାଇଁ, ମାଡ୍ରାସ୍ ବିଶ୍ୱବିଦ୍ୟାଳୟକୁ ପଠାଇଥିଲେ । ସେଠାରେ ପର୍ଯ୍ୟବେକ୍ଷଣ ସମାପ୍ତ କରି ତା· 14·2·56 ରେ ଡଃ ମାନସିଂହ ବିଶ୍ୱବିଦ୍ୟାଳୟ ସିଣ୍ଡିକେଟ ଆଗରେ ପ୍ରସ୍ତାବକୁ ଉପସ୍ଥାପିତ କଲେ । ସେହି ପ୍ରସ୍ତାବକୁ ଭିତ୍ତିକରି ଏକ ଯୋଜନା ବହୁ ଆଲୋଚନା ପରେ ତା–28·6·1956 ରେ ସିନେଟ୍‌ରେ ଅନୁମୋଦନ ଲାଭ କଲା ।

1957 ନଭେମ୍ବର ମାସ ଶେଷକୁ ଡଃ ମାୟାଧର ମାନସିଂହ ଉତ୍କଳ ବିଶ୍ୱ ବିଦ୍ୟାଳୟରେ ଜ୍ଞାନକୋଷ ବିଭାଗ ର ମୁଖ୍ୟରୂପେ ଯୋଗ ଦେଲେ ଓ ଜ୍ଞାନକୋଷ ବିଭାଗର କାର୍ଯ୍ୟ 1958 ମସିହାରେ ଆରମ୍ଭ ହେଲା । ଉତ୍କଳ ବିଶ୍ୱବିଦ୍ୟାଳୟର 1958–59 ବାର୍ଷିକ ବିବରଣୀରୁ ଜଣାଯାଏ ଯେ, ବୃହତ୍ ଜ୍ଞାନକୋଷ ର କାର୍ଯ୍ୟ ପ୍ରାୟ ଚତୁର୍ଥ ସୋପାନରେ ପହଁଚିଯାଇଥିଲା ଓ 1961–62 ରେ ଏହାର ପ୍ରଥମଭାଗ ଆମ୍ଭ ପ୍ରକାଶ ଲାଭ କରିବାର ଆଶା କରାଯାଉଥିଲା ।

ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଡଃ ହରେକୃଷ୍ଣ ମହତାବ ତା–16·2·1959 ରେ ଗୋଟିଏ ଚିଠିରେ ପ୍ରସ୍ତାବ ଦେଲେ, ଯେ ବୃହତ ଜ୍ଞାନକୋଷ ପ୍ରଣୟନ ପୂର୍ବରୁ ସର୍ବସାଧାରଣଙ୍କ ପାଇଁ ଜ୍ଞାନକୋଷର ଏକ ସଂକ୍ଷିପ୍ତ ସଂସ୍କରଣ ପ୍ରକାଶ ପାଇବା ଉଚିତ । ସେହି ଲକ୍ଷ୍ୟକୁ ଆଖିଆଗରେ ରଖି ବୃହତ ଜ୍ଞାନକୋଷର ପ୍ରଣୟନ ସଂଗେ ସଂଗେ ସଂକ୍ଷିପ୍ତ ଜ୍ଞାନକୋଷ ପ୍ରକାଶନର ଚେଷ୍ଟା ହେଲା । ସେହି କ୍ରମରେ ତା–2·1·1963 ରେ ଜ୍ଞାନକୋଷ(ସଂକ୍ଷିପ୍ତ)

ର ପ୍ରଥମ ଖଣ୍ଡ (ଅ—ଔ),ତା—1·10·1963 ରେ ଦ୍ୱିତୀୟ ଖଣ୍ଡ(କ—ଠ),ତା—1·12·1964 ରେ ତୃତୀୟ ଖଣ୍ଡ(ଡ—ଭ) ଓ ତା—1·11·1965 ରେ ସଂକ୍ଷିପ୍ତ ଜ୍ଞାନକୋଷର ଶେଷ ଖଣ୍ଡ(ମ—କ୍ଷ) ପ୍ରକାଶିତ ହେଲା । କିନ୍ତୁ ଦୁଃଖର କଥା କେତେକ ରାଜନୈତିକ ରୋଷର ଶିକାର ହୋଇ ତା—27·8·1965 ରେ ଡଃ ମାୟାଧର ମାନସିଂହଙ୍କୁ ଏହି ଅନୁଷ୍ଠାନରୁ ଚଡି ଦିଆଗଲା । ମାନସିଂହଙ୍କ ସ୍ୱପ୍ନର ବୃହତ ଓଡିଆ ଜ୍ଞାନକୋଷ,କାର୍ଯ୍ୟକ୍ରମ କ୍ରମେ ନିଷ୍କ୍ରିୟ ହୋଇ ବର୍ତ୍ତମାନ ଉତ୍କଳ ବିଶ୍ୱବିଦ୍ୟାଳୟର ପୋକଖିଆ ଧୂଳିଗଦା ମଧ୍ୟରେ ସମାଧି ଲାଭ କରିଛି ।

'ଓଡିଆ ଏନ୍‌ସାଇକ୍ଲୋପେଡିଆର ଜନ୍ମ ଓ ମୃତ୍ୟୁ' ପ୍ରବନ୍ଧରେ ମାନସିଂହଙ୍କ ମନର ବେଦନାକୁ ଲକ୍ଷ୍ୟ କରାଯାଇ ପାରେ—" ସକଳ ମିଥ୍ୟା କୁତ୍ସା ସତ୍ତ୍ୱେ ଓଡିଆ ଭାଷାରେ ଏନ୍‌ସାଇକ୍ଲୋପେଡିଆର ସଂପାଦନାର ଅନ୍ତତଃ ମୂଳପତ୍ତନ ଏ ଲେଖକ ପକାଇ ପାରିଛି ବୋଲି କୁହାଯାଇ ପାରେ । ପୁରା ସୌଧଟି ଠିଆ କରାଇ ଦିବାର ସ୍ୱପ୍ନ ଥିଲା । ଏଥିପାଇଁ ଲେଖକ ଅନରାରୀ ସର୍ଭିସ(ବିନାଦରମା ସେବା) ମଧ୍ୟ ପାଇଛି । କିନ୍ତୁ ଓଡିଆ ଭାଷାର ଶୁଭାନୁଧ୍ୟାୟୀ ବନ୍ଧୁଗଣ ଗଭୀର—ମାନସିକ—ତତ୍ତ୍ୱାବଳୀ ଓଡିଆ ପ୍ରବାଦ 'ଘଇତା ପଚ୍ଛେ ମରୁ ସଉତୁଣୀ ରାଣ୍ଡ ହେଉ' ନୀତିରେ କାମ କରି ଏ ବିଭାଗକୁ ମାରି ଦେବାରେ ହିଁ ଯେପରି ଆତ୍ମ ସନ୍ତୋଷ ଲାଭ କଲେ । ଯେଉଁମାନେ ଜୀବନରେ ଗୋଟାଏ ବହି ଖଣ୍ଡେ ଲେଖିନାହାନ୍ତି,ଏନ୍‌ସାଇକ୍ଲୋପେଡିଆର ମୃତ୍ୟୁ ତାଙ୍କୁ ବାଧିବ କିପରି ? 'ବନ୍ଧ୍ୟା କିଂ ବିଜାନାତି ଗୁର୍ବୀଂ ପ୍ରସବ ବେଦନା ? "(44)

ଜୀବନର ମେଲାଣି ଦରଜାରେ ଠିଆ ହୋଇ ମାନସିଂହଙ୍କର ଯେଉଁ ମର୍ମଫଟା ବାଣୀ ସ୍ଫୁରିତ ହୋଇଥିବା ତାର ସମାଧାନ ଏବେ ବି ହୋଇନାହିଁ । ତାଙ୍କରି ବାଣୀକୁ ଉଦ୍ଧାର କରି ତାଙ୍କ ଜୀବନର ବେଦନାକୁ ପ୍ରକାଶ କରାଯାଇ ପାରେ—"ଜନକ ଓ ପାଳକ ଭାବରେ ଲେଖକର ଏଇ ପ୍ରୋଜେକ୍ଟ ପ୍ରତି ଗଭୀର ବେଦନା ଯେ ସ୍ୱାଭାବିକ, ଏହା କାହାରି ସ୍ୱୀକାର କରିବାରେ ବୋଧହୁଏ କଷ୍ଟ ହେବ ନାହିଁ । କିନ୍ତୁ ସେ ଆଜି ତାର ନିଜ—ସୃଷ୍ଟ ଡିପାର୍ଟମେଣ୍ଟ ପ୍ରତି ଏକ ଅବାଞ୍ଛିତ ବାହାର ବ୍ୟକ୍ତି ମାତ୍ର । ଏହାହିଁ ଏ ଦେଶର ବୁଦ୍ଧିଜୀବୀର ପରମ ପୁରସ୍କାର । ତେବେ ଜନ୍ମ ଦେଇଥିବା ପିଲାଟିକୁ ମରିଯାଉଥିବାର ଦେଖି କେଉଁ ପିତା ସ୍ଥିର ହେବ ? ତେଣୁ ଅତ୍ୟନ୍ତ ସ୍ୱାଭାବିକ ଭାବରେହିଁ, ପୁନର୍ଜୀବିତ କରିବା ପାଇଁ,ଚାନ୍‌ସେଲର,ଭାଇସ୍—ଚାନ୍‌ସେଲର,ସାଂସ୍କୃତିକ ମନ୍ତ୍ରୀ,ଡିରେକ୍ଟର ଅଫ କଲ୍‌ଚରାଲ ଆଫେୟାର୍ସ ଇତ୍ୟାଦି ସଂପୃକ୍ତ ସମସ୍ତଙ୍କୁ ଆପିଲ୍ କରି ଆସିଛି । କିଛି କାହିଁ ନହେବାରୁ,ଶେଷରେ ସବୁକଥା ପ୍ରକାଶ୍ୟରେ ଦେଶ ବାସୀଙ୍କୁ ଜଣାଇ ଦେବାହିଁ ଉଚିତ ମନେ କଲି । କାରଣ ବିଦାୟ ଘଡି ଯେ ନିକଟ ହୋଇ ଆସୁଛି । ଏହା ମାନି ଚଳିବାହିଁ ବୋଧହୁଏ ବୁଦ୍ଧିମାନର କାମହେବ । ବିଦାୟ ପୂର୍ବରୁ ହିସାବ ନିକାଶ ସାରିଥିବା କଥା ।"(45)

ଦେଶବାସୀଙ୍କ ନିକଟରେ ଏକଥା ପ୍ରକାଶ ହେବା ପୂର୍ବରୁ 1973 ମସିହା କୁମାର ପୂର୍ଣ୍ଣିମା ଦିନ ରାତିରେ ମାନସିଂହ ତାଙ୍କର ପୂର୍ବ ଯୋଜନା ଅନୁସାରେ ସେ ପୁରକୁ ବିଦାୟ ନେଇଗଲେ । ତାଙ୍କ ମୃତ୍ୟୁର ଛଅ ବର୍ଷ ପରେ ଏ ଲେଖାଟି ଆତ୍ମ ପ୍ରକାଶ କଲା । କିନ୍ତୁ ତାଙ୍କ ମୃତ୍ୟୁର ପନ୍ଦର ବର୍ଷ ପରେ ମଧ୍ୟ ଏ ଜାତି ତାଙ୍କ ଆଶାକୁ

।। ମାନସିଂହଙ୍କ ବିଗ୍ଭରଧାରା ।।

ଫଳବତୀ କରିବା ପାଇଁ ସାମାନ୍ୟ ଚେଷ୍ଟା ବି କରିନି । 'ଓଡିଶା ପୂଜ୍ୟପୂଜା ସଂସଦ' ର 'ମାନସିଂହ ସ୍ମରିକା' ପ୍ରକାଶିତ ନ ହୋଇଥିଲେ, ମାନସିଂହଙ୍କର ଏହି ଲେଖାଟି ପ୍ରକାଶିତ ହେବାକୁ ହୁଏତ ଆଉରି କେତେ ଦିନ ଅପେକ୍ଷା କରିବାକୁ ପଡିଥାନ୍ତା । କାରଣ ମାନସିଂହଙ୍କ ଜୀବିତା-ବସ୍ଥାରେ ଲେଖାଟି କେତେକ ପତ୍ରିକାକୁ ଯାଇ ଫେରି ଆସିଥିଲା, ଲେଖାଟି ସଂଗ୍ରହ ସମୟରେ ଏ ସମସ୍ତ ସୂଚନା ମିଳିଥିଲା ।

ଏଠାରେ ପ୍ରସଂଗକ୍ରମେ ଉଲ୍ଲେଖ କରାଯାଇ ପାରେ ଯେ, ପଦ୍ମଶ୍ରୀ ବିନୋଦ କାନୁନ୍‌ଗୋଙ୍କର 'ଜ୍ଞାନମଣ୍ଡଳ' ବର୍ତ୍ତମାନ ଓଡିଆ ଜ୍ଞାନକୋଷର ଅଭାବକୁ ସଂପୂର୍ଣ୍ଣ ଭାବରେ ପୂରଣ କରିବାର ଆଶା ପ୍ରକଟିତ କରି ପାରୁଛି । କିନ୍ତୁ 'ଜ୍ଞାନକୋଷ' ଓ 'ଜ୍ଞାନମଣ୍ଡଳ' ପରସ୍ପରର ପରିପୂରକ ନୁହେଁ । 'ଜ୍ଞାନମଣ୍ଡଳ' ପଦ୍ମଶ୍ରୀ ବିନୋଦ କାନୁନ୍‌ଗୋଙ୍କର ଏକ ସୁଖପାଠ୍ୟ ଓଡିଆ ଏନ୍‌ସାଇକ୍ଲୋପେଡିଆ, ଏହା ତାଙ୍କର ଏକକ ଉଦ୍ୟମର ଏକ ଲୋକପ୍ରିୟ ଗ୍ରନ୍ଥମାଳା; ମାତ୍ର 'ଜ୍ଞାନକୋଷ' ବିଭିନ୍ନ କ୍ଷେତ୍ରରେ ସିଦ୍ଧି ଲାଭ କରିଥିବା ଅଭିଜ୍ଞ ପଣ୍ଡିତ ମଣ୍ଡଳୀର ମିଳିତ କର୍ମ ଯୋଜନାର ଫଳ ।

ମାନସିଂହ ସରକାରୀ କର୍ମରୁ ଅବସର ନେବା ପରେ ମଧ୍ୟ, ଜୀବନର ନାନା ବିବଦମାନ ପରିବେଶରେ ସକ୍ରିୟ ହୋଇଛନ୍ତି । ତାଙ୍କ ରଚିତ ଓଡିଆ ସାହିତ୍ୟର ଇତିହାସ(ଇଂରାଜୀ ଓ ଓଡିଆ) ଏକ ପ୍ରଚଣ୍ଡ ସାହିତ୍ୟିକ ଝଡ ସୃଷ୍ଟି କରିଥିଲା । କବି ମାନସିଂହଙ୍କର କବିତାର ଧାରା ଶେଷ ବେଳକୁ ପ୍ରାଣହୀନ ହୋଇପଡ଼ିଥିଲେ ହେଁ, ଏହି ସମୟରେ ମାନସିଂହଙ୍କ ଲେଖନୀରୁ ନାନା ପ୍ରକାର ଚିନ୍ତାମୂଳକ, ଦାର୍ଶନିକ ତଥା ବୌଦ୍ଧିକ ସୃଷ୍ଟି ଜନ୍ମଲାଭ କରି ଆସିଛି । ମାନସିଂହଙ୍କର ବୌଦ୍ଧିକ ଲେଖାର ଧାରା ଜୀବନର ଶେଷ ଆଲୋକ ପର୍ଯ୍ୟନ୍ତ ମଧ୍ୟ ଗତିଶୀଳ ଥିଲା, ପ୍ରସଂଗକ୍ରମେ ପରେ ଆଲୋଚିତ ହେବ ।

ସଂକ୍ଷେପରେ ଡକ୍ଟର ମାୟାଧର ମାନସିଂହଙ୍କର ଜୀବନୀ ବର୍ଣ୍ଣନା କରାଗଲା । ପରବର୍ତ୍ତି ଅଧ୍ୟାୟରେ ବିଗ୍ଭର କରାଯିବ ଯେ, ଝଡ ଝଞ୍ଜା ହିଁ ମାନସିଂହଙ୍କ ସାହିତ୍ୟକୁ ନିୟନ୍ତ୍ରିତ କରିଛି । ତାଙ୍କ ଜୀବନ ତଥା ସାହିତ୍ୟକୁ ତୁଳନାତ୍ମକ ଭାବରେ ବିଶ୍ଳେଷଣ କଲେ ଦେଖାଯାଏ ଯେ, ଯେତେବେଳେ ସେ ଜୀବନରେ ଦାରୁଣ ଧକ୍କା ଖାଇଛନ୍ତି, ସେତେବେଳେ ତାଙ୍କ ଲେଖନୀ ଅଧିକ ଗତିଶୀଳ ହୋଇ ଉଠିଛି । ଐତିହାସିକ ସମାଲୋଚନା ପଦ୍ଧତିରେ ସ୍ରଷ୍ଟାଙ୍କ ସୃଷ୍ଟିକୁ ବିଗ୍ଭର କରିବା ପାଇଁ ସ୍ରଷ୍ଟାର ଜୀବନୀର ଅଧ୍ୟୟନ ଏକାନ୍ତ ଆବଶ୍ୟକ । ମାନସିଂହଙ୍କ ଘଟଣା ବହୁଳ ଜୀବନର ଏହା କେବଳ ସୂଚନା ମାତ୍ର । ପରବର୍ତ୍ତୀ ଅଧ୍ୟାୟମାନଙ୍କରେ ତାଙ୍କ ବିଗ୍ଭରଧାରାର ସ୍ୱରୂପ ନିର୍ଣ୍ଣୟ କଲାବେଳେ ପ୍ରସଂଗକ୍ରମେ ପାରିପାର୍ଶ୍ୱିକ ପରିବେଶର ସୂଚନା ପ୍ରଦାନ କରାଯିବ । ଏହାର ପର ଅଧ୍ୟାୟରେ ମାନସିଂହଙ୍କ ବିଗ୍ଭରଧାରାର ଉତ୍ସ ନିର୍ଣ୍ଣୟ କରାଯିବା ସମୟରେ ମାନସିଂହଙ୍କ ସୃଷ୍ଟିର କାଳାନୁ-କ୍ରମିକ, ବିଷୟାନୁସାରୀ ପ୍ରଦାନ କରାଯାଉଅଛି ।

---

## ।। ମାନସିଂହଙ୍କ ବିଗ୍ରହଧାରା ।।

### ପ୍ରଥମ ଅଧ୍ୟାୟର ସୂଚନା


1.–ଡଃ.ଜେ.ଭି.ବୋଲ୍ଟନ, ଦେଶ,କାଳ,ପାତ୍ର ଓ ମନୀଷୀ ଫକୀରମୋହନ(1976) ପୃ–7,
2.– ଦାଶ,ଗଗନେନ୍ଦ୍ରନାଥ,ଓଡିଆ ଭାଷା ଚର୍ଚ୍ଚାର ପରମ୍ପରା(1983) ପୃ–ପରିଶିଷ୍ଟ 5–୭,
3.– ମାନସିଂହ,ମାୟାଧର,–ଓଡିଆ ଜାତିର ବୈଶିଷ୍ଟ୍ୟ(ମା.ଗ୍ର.3)(1973) ପୃ–535,
4.–ମାନସିଂହ,ମାୟାଧର,–ବ୍ରଜ ମାଧୁରୀ,ମୁଖବନ୍ଧ–(1962) ପୃ–1,
5.– ତତ୍ରୈବ ପୃ–2–3,
6.– ତତ୍ରୈବ ପୃ. 4,
7.– ତତ୍ରୈବ ପୃ. 19,
8.– ମାନସିଂହ,ମାୟାଧର, ଶିକ୍ଷାବିତ୍ର ଗାଥା (1965) ପୃ.–17–18,
9.– ମୋ ସଂଗୃହିତ ଏକ ସାକ୍ଷାତକାର
10.– "ହେ ସମ ବୟସି,ତୁମର ମୋର ଯେ ପୀରତୀ
ନିଷ୍ଠୁର କେତେ ବୋଲୁଛନ୍ତି ପାପ କୀରତି !
ମାନସିଂହ,ମାୟାଧର । ଧୂପ'(1931) ପୃ. 7,
11.– ମାନସିଂହ,ମାୟାଧର । ଶିକ୍ଷାବିତ୍ର ଗାଥା (1965) ପୃ.1,
12.– ତତ୍ରୈବ ପୃ.2,
13.– ତତ୍ରୈବ ପୃ. 18–19,
14.– ଦାଶ,କୁଞ୍ଜବିହାରୀ,ମାନସିଂହଙ୍କ ଜୀବନୀ ଓ ଜୀବନ(ମାନସିଂହ ପରିକ୍ରମା–1979) ପୃ.243–44,
15.– ମାନସିଂହ,ମାୟାଧର । ଶିକ୍ଷାବିତ୍ର ଗାଥା(1965) ପୃ.26,
16.– ତତ୍ରୈବ ପୃ.26,28,
17.– ତତ୍ରୈବ ପୃ. 34–35,
18.– ତତ୍ରୈବ ପୃ. 35,
19.– ତତ୍ରୈବ ପୃ.39,
20.– ତତ୍ରୈବ ପୃ. 44–45,
21.– ତତ୍ରୈବ ପୃ. 56,
22.– ତତ୍ରୈବ ପୃ. 51–52,

## ।। ମାନସିଂହଙ୍କ ବିଗ୍ରଧାରା ।।


23.— ଦାଶ, କୁଞ୍ଜବିହାରୀ । ମାନସିଂହଙ୍କ ଜୀବନୀ ଓ ଜୀବନ(ମାନସିଂହ ପରିକ୍ରମା–1979)ପୃ.246,

24.— ତତ୍ରୈବ ପୃ.247,

25.— ମାନସିଂହ ,ମାୟାଧର । ଶିକ୍ଷାବିତ୍ର ଗାଥା(1965) ପୃ. 58–59,

26.— ତତ୍ରୈବ ପୃ. 104,

27.— ତତ୍ରୈବ ପୃ. 106,

28.— ତତ୍ରୈବ ପୃ. 109,

29.— ତତ୍ରୈବ ପୃ. 133–34,

30.— ତତ୍ରୈବ ପୃ. 134,

31.— ତତ୍ରୈବ ପୃ. 135,

32.— ଦାଶ, କୁଞ୍ଜବିହାରୀ । ମାନସିଂହଙ୍କ ଜୀବନୀ ଓ ଜୀବନ(ମାନସିଂହ ପରିକ୍ରମା–1979) ପୃ.248,

33.— ମିଶ୍ର, ଗୋଦାବରୀଶ । ସିଂହଭୂମିର ଜାଗରଣ(ଅର୍ଦ୍ଧ ଶତାବ୍ଦୀର ଓଡିଶା ଓ ତହିଁରେ ମୋ ସ୍ଥାନ–1971) ପୃ.197,

34.—ମାନସିଂହ, ମାୟାଧର । ଶିକ୍ଷାବିତ୍ର ଗାଥା(1965) ପୃ.241,

35.— ତତ୍ରୈବ ପୃ. 246,

36.— ତତ୍ରୈବ ପୃ. 264,

37.— ତତ୍ରୈବ ପୃ. 265,

38.— ତତ୍ରୈବ ପୃ. 267,

39.— ତତ୍ରୈବ ପୃ. 278,

40.— ତତ୍ରୈବ ପୃ. 274,

41.— ତତ୍ରୈବ ପୃ. 297,

42.— ତତ୍ରୈବ ପୃ. 312–13,

43.—ମାନସିଂହ, ମାୟାଧର । ମୁଖବନ୍ଧ,(ଓଡିଆ ଜ୍ଞାନକୋଷ, ପ୍ରଥମ(ନମୁନା)ଖଣ୍ଡ) 1955,

44.— ମାନସିଂହ, ମାୟାଧର । ଓଡିଆ ଏନ୍‌ସାଇକ୍ଲୋପେଡିଆର ଜନ୍ମ ଓ ମୃତ୍ୟୁ(ମାନସିଂହ ପରିକ୍ରମା–1979) ପୃ.22,

45.— ତତ୍ରୈବ ପୃ.28,


---

# ମାନସିଂହଙ୍କ ବିଚାରଧାରା

# ଦ୍ୱିତୀୟ ଅଧ୍ୟାୟ

(କ) ବିଚାରଧାରାର ଉତ୍ସ

(ଖ) ସୃଷ୍ଟି ବିଚାର ବିମର୍ଶର ପୂର୍ବାଧ୍ୟାୟ

ଦ୍ୱିତୀୟ ଅଧ୍ୟାୟ

---

## ଏକ ବି ଗ୍ଭ ର ଧା ରା ର ଉ ସ୍ର ।।

---

ସୃଷ୍ଟିରେ ହିଁ ସ୍ରଷ୍ଟାମାନସ ପ୍ରତିଫଳିତ । ସ୍ରଷ୍ଟା ଅଜ୍ଞାତସାରରେ ନିଜକୁ ନିଜର ସୃଷ୍ଟି ମଧ୍ୟରେ ରୂପାୟିତ କରାଇଥାଏ । ସମୟେ ସମୟେ ସ୍ରଷ୍ଟା ଜ୍ଞାତସାରରେ ସୃଷ୍ଟି ମଧ୍ୟରେ ଆତ୍ମ ପ୍ରକାଶ କରେ, ମାତ୍ର ସେତେବେଳେ ସୃଷ୍ଟି ତାର ସ୍ୱାଭାବିକତା ହରାଇ, ଦ୍ୱିତୀୟ ଶ୍ରେଣୀର ସୃଷ୍ଟି ଭାବରେ ପ୍ରକାଶିତ ହୁଏ । ସାଧାରଣ ମଣିଷ ପରି ସ୍ରଷ୍ଟା ନିଜର ମୌଳିକ ସୃଷ୍ଟି ସଂଗେ ସଂଗେ ନିଜର ଆନୁଷଙ୍ଗିକ ସୃଷ୍ଟିରେ ମଧ୍ୟ ନିଜର ବିଗ୍ଭରଧାରାକୁ ବ୍ୟକ୍ତ କରିଥାଏ । ନିମ୍ନରେ ଡକ୍ଟର ମାୟାଧର ମାନସିଂହଙ୍କର ବିବିଧ ସୃଷ୍ଟି-ସଂପଦର ଏକ ସୂଚନା ପ୍ରଦତ୍ତ ହେଲା । ଅନ୍ୟ ଭାଷାରେ କହିବାକୁ ଗଲେ, କେଉଁ କେଉଁ ବିଷୟ ଉପରେ ଆଧାର କରି ପ୍ରସ୍ତୁତ ଚର୍ଚ୍ଚା ନିବଂଧଟି ରଚିତ ,ଏହା ତାର ଏକ ତାଲିକା ।

ମାନସିଂହଙ୍କ ଲେଖନୀ ଛାତ୍ରାବସ୍ଥାରୁ ଅନ୍ତିମ ବିଦାୟ ପର୍ଯ୍ୟନ୍ତ ଗତିଶୀଳ ହୋଇଥିଲା । ପ୍ରକାଶନ ଦୃଷ୍ଟିରୁ ବିଗ୍ଭର କଲେ ତାଙ୍କର ସୃଷ୍ଟି ଅର୍ଦ୍ଧ-ଶତାବ୍ଦୀ(1923-1973)ପର୍ଯ୍ୟନ୍ତ ସଜାଗ ହୋଇ ରହିଥିଲା । ଏହି ଅର୍ଦ୍ଧ-ଶତାବ୍ଦୀ ମଧ୍ୟରେ ସାହିତ୍ୟର ବିଭିନ୍ନ ବିଭାଗ ଉପରେ ସେ ଲେଖନୀ ଗ୍ଭଳନା କରିବାକୁ ପ୍ରଚେଷ୍ଟା କରିଛନ୍ତି । ଅଧିକାଂଶ ବିଭାଗରେ ସଫଳତା ଲାଭ କଲେ ମଧ୍ୟ, ଅଳ୍ପ କେତେକ ବିଭାଗରେ ସେ ଆଶାନୁରୂପ ସଫଳତା ଲାଭ କରିପାରି ନାହାନ୍ତି । ସୃଷ୍ଟିର ମୂଲ୍ୟାୟନର ସୁବିଧା ପାଇଁ ତାଙ୍କର ସମଗ୍ର ଓଡିଆ ରଚନାକୁ ନିମ୍ନୋକ୍ତ ପ୍ରକାର ବିଭାଗୀକରଣ କରାଯାଇଅଛି :—

(1) କବିତା, (2) ଗୀତିନାଟ୍ୟ ଓ ନାଟକ, (3) ଗଳ୍ପ ଓ ଉପନ୍ୟାସ, (4)କାବ୍ୟ ଓ ମହାକାବ୍ୟ, (5) ପ୍ରବଂଧ ଓ ସମାଲୋଚନା, (6) ସଂପାଦକୀୟ ଓ ମୁଖବଂଧ, (7)ଭାଷଣ ଓ ଚିଠିପତ୍ର, (8) ଜୀବନୀ ଓ ଆତ୍ମଜୀବନୀ, (9) ଭ୍ରମଣ କାହାଣୀ, (10) ଅନୁବାଦ, (11) ପାଠ୍ୟ ପୁସ୍ତକ ଓ ଶିଶୁ ସାହିତ୍ୟ, (12) ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ ।।

## ।। ମାନସିଂହଙ୍କ ବିଗ୍ରହଧାରା ।।

ଏହି ବିଭାଗୀକରଣ ପରେ ବିଗ୍ରହଧାରାର ଉତ୍ସକୁ ଆହୁରି ସ୍ପଷ୍ଟ କରିବା ପାଇଁ ସୃଷ୍ଟି ସମ୍ପଦର ଏକ କାଳାନୁକ୍ରମିକ ବିବରଣୀ ପ୍ରଦାନ କରାଯାଉଛି । ଏହି ବିବରଣୀ ସାହାଯ୍ୟରେ ତାଙ୍କ ସୃଷ୍ଟି ସମ୍ପଦର କ୍ରମୋନ୍ନତି ତଥା ଉତ୍ଥାନ ପତନର ଚିତ୍ର ମିଳିପାରିବ । ସ୍ଥୂଳ ଭାବରେ ମାନସିଂହଙ୍କ କବିତା କହିଲେ, ମାନସିଂହ ଗ୍ରନ୍ଥାବଳୀ ପ୍ରଥମ ଖଣ୍ଡରେ ପ୍ରକାଶିତ କବିତାକୁ ବୁଝାଏ । ଏଠାରେ ଉଲ୍ଲେଖ କରାଯାଇ ପାରେ ଯେ, ଗ୍ରନ୍ଥାବଳୀରେ ପ୍ରକାଶ ପୂର୍ବରୁ, କବିତା ଗୁଡିକ ବିଭିନ୍ନ ପତ୍ରପତ୍ରିକା, ସଂକଳନରେ ନାନା ପରିବର୍ତ୍ତନ ମଧ୍ୟରେ ପ୍ରକାଶ ଲାଭ କରିଛି । ଏପରିକି ମାନସିଂହ ଗ୍ରନ୍ଥାବଳୀ ଦ୍ୱିତୀୟ ଖଣ୍ଡରେ କାବ୍ୟ ରୂପରେ ପ୍ରକାଶିତ ତଥା ନାଟକ ମଧ୍ୟରେ ସଂଯୋଜିତ କେତେକ ଲେଖା ପୂର୍ବରୁ ବିଭିନ୍ନ ପତ୍ର–ପତ୍ରିକାରେ କବିତା ଭାବରେ ପ୍ରକାଶିତ ହୋଇଥିଲା ।

ଡକ୍ଟର ନଟବର ସାମନ୍ତରାୟ, କବି ମାନସିଂହଙ୍କ ସନ୍ଦର ବର୍ଷ ରଚନାର କାଳ ନିର୍ଣ୍ଣୟ କରି ଏକ ପଥ ପରିଷ୍କାର କରିଦେଇଛନ୍ତି । ମାତ୍ର ସେ ଯେଉଁ ତାଲିକା ପ୍ରଦାନ କରିଛନ୍ତି, ତାହା ମାନସିଂହଙ୍କ ସୃଷ୍ଟିର ଏକ ପୂର୍ଣ୍ଣାଙ୍ଗ ତାଲିକା ନୁହେଁ; ତାଙ୍କ ତାଲିକାରେ କଥିତ ସମୟ ମଧ୍ୟରେ ବି କେତେକ ସୃଷ୍ଟିର କାଳ ନିରୂପଣ ବାଦ ପଡିଅଛି । ଏ ସଂଗ୍ରହରେ ଯଥା ସମ୍ଭବ ସମସ୍ତ ଲେଖାର ତାଲିକା ପ୍ରଦାନ କରିବା ପାଇଁ ଯତ୍ପରୋନାସ୍ତି ଚେଷ୍ଟା କରାଯାଇଅଛି ।

ବିଭିନ୍ନ ସମୟରେ ରଚିତ, ପତ୍ରପତ୍ରିକା ବା ପୁସ୍ତକାକାରରେ ପ୍ରକାଶିତ ଲେଖାର ବିବରଣୀ

| କ୍ର.ସଂ. | ଲେଖାର ନାମ | ରଚନା କାଳ | ପ୍ରକାଶନ ସମୟ/ପୁସ୍ତକ ବା ପତ୍ରିକା ନାମ |
|---|---|---|---|
| 1: | ଆଗମନ | 1923 | 1960, ସେ ଦିନର କବିତା |
| 2: | କବିର ନିମନ୍ତ୍ରଣ, | 1923 | ଫେବୃ. 1927, ଉତ୍କଳ, 30/11, |
| 3: | ମା'ଓଡିଶା, | 1925–26 | 1960, ସେଦିନ, |
| 4: | କୋଣାର୍କ | | 1926, ଜୁନ, ବାରୁଣୀ, |
| 5 | ବାରବାଟୀ | | 1926, ନଭେ. ଉତ୍କଳ, 30/8, |
| 6: | ଜୀବନ ସ୍ପନ୍ଦନ | | 1927, ଜାନୁ. ଉତ୍କଳ, 30/10, |
| 7: | ପୁଷ୍ପର ସ୍ୱପ୍ନ | 1927 | 1960, ସେଦିନ. |
| 8: | ନିକ୍ୱଣ(1) | 20.3.1927, | 1960, '' |
| 9: | ନିକ୍ୱଣ(7) | 21.3.27, | 1960, '' |
| 10: | ନିକ୍ୱଣ(8) | 23.3.27, | 1960, '' |
| 11: | ନିକ୍ୱଣ(9) | 24.3.1927, | 1960, '' |

॥ ମାନସିଂହଙ୍କ ବିଗ୍ରହଧାରା ॥

| କ୍ର.ସଂ. | ଲେଖା | ରଚନା ସମୟ | ପ୍ରକାଶନ ସମୟ/ପୁସ୍ତକ/ପତ୍ରିକାର ନାମ |
|---|---|---|---|
| 12: | ନିକ୍ୱଣ(10) | 25.3.27, | 1960, ସେ ଦିନର କବିତା, |
| 13: | ନିକ୍ୱଣ(11) | 25.3.27, | 1960, '' |
| 14: | ନିକ୍ୱଣ(12) | 26.3.27, | 1960, '' |
| 15: | ନିକ୍ୱଣ(13) | 27.3.27, | 1960, '' |
| 16: | ନିକ୍ୱଣ(14) | 27.3.27, | 1960, '' |
| 17: | ନିକ୍ୱଣ(15) | 28.3.27, | 1960, '' |
| 18: | ନିକ୍ୱଣ(16) | 28.3.27, | 1960, '' |
| 19: | ନିକ୍ୱଣ(2) | 29.3.27, | 1960, '' |
| 20: | ନିକ୍ୱଣ(3) | 29.3.27, | 1960, '' |
| 21: | ପ୍ରାବଟ ସମ୍ଭାଷଣ | | 1927, ଅଗ, ଉତ୍କଳ, 31/5, |
| 22: | ବଂଶୀତାନ | | 1927, ସେପ୍ଟେ, ରେଭେନ୍ସାନିଆନ୍ |
| 23: | ଅନୂଢା, | | 1927, ନଭେ, ଉତ୍କଳ, 31/8, |
| 24: | ରତି, | 1928, | 1960, ସେଦିନ, |
| 25: | ଅର୍ଜୁନ ଓ ଉର୍ବଶୀ, | 1928, | 1960, '' |
| 26: | ପ୍ରକ୍ଷିପ୍ତ ପୁଷ୍ପ, | 1928, | 1960, '' |
| 27: | ଉନ୍ମନ, | 1928, | 1960, '' |
| 28: | ତରୁଣ କବିର ଆଶା, | | 1928, ଏପ୍ରି., ଉତ୍କଳ, 32/1, |
| 29: | ଗୋପ ତର୍ପଣ, | | 1928, ଜୁନ, ଉତ୍କଳ.32/3, |
| 30: | ରୂପସୀର ପୂଜା | | 1928, ଅଗ. ସହକାର, 8/12, |
| 31: | ଉପେକ୍ଷିତା, (1) | | 1928, ଅଗ. ସହକାର, 8/12, |
| 32: | ଉପେକ୍ଷିତା(2) | | 1928, ସେପ୍ଟେ. ସହକାର, 9/1, |
| 33: | ଉପେକ୍ଷିତା(3) | | 1928, ଅକ୍ଟୋ. ସହକାର, 9/2, |
| 34: | ନିର୍ଦ୍ଦିଷ୍ଟ ଭଗବାନ, | | 1928, ନଭେ. ଉତ୍କଳ.32/8, |
| 35: | ପ୍ରଣୟୀ, | | 1929, ଜାନୁ. ଉତ୍କଳ.32/10, |
| 36: | ପ୍ରେମର ପରିମାପ, | | 1929, ମାର୍ଚ୍ଚ, ଉତ୍କଳ.32/12, |

॥ ମାନସିଂହଙ୍କ ବିଗ୍ୱରଧାରା ॥

| | | | |
|---|---|---|---|
| 37: | ସାଧବଝିଅ, | | 1929, ମଇ, ଉଷା•32/2, |
| 38: | ପଲ୍ଲୀପ୍ରିୟା, | | 1929, ଅଗ• ସହକାର, 10/4, |
| 39: | ଦକ୍ଷିଣା ପ୍ରତି, | | 1929, ଅଗ• ଉଷା•33/5, |
| 40: | ମହାନଦୀରେ ଜ୍ୟୋତ୍ସ୍ନାବିହାର, | | 1929, ଅକ୍ଟୋ• ଉଷା•33/7, |
| 41: | ରେଙ୍ଗୁନ୍‌ଚିଠି, | | 1929, ଅକ୍ଟୋ•ରେଭେନ୍‌ସାହିଆନ୍, |
| 42: | ଯଥାସ୍ଥାନ, | | 1929, ନଭେ• ଉଷା• 33/8, |
| 43: | କୁଳଟା ରାଧା, | | 1929, ଡିସେ• ସହକାର 10/9, |
| 44: | ପଲ୍ଲୀ ସ୍ନାନଘାଟ, | 1929–30, | 1960, ସେବିକ• |
| 45: | ଶୁଭଦୃଷ୍ଟି, | | 1930, ନଭେ–ଡିସେ• ସହକାର, 11/8, 9, |
| 46: | ମାଟିର ସତୀତ୍ୱ, | 1930–31, | 1960, ସେବିକ, |
| 47: | ଭାରତ ଗୀତି, | 1930–31, | 1960, " |
| 48: | ସଂଧ୍ୟା, | 1930, | 1960, " |
| 49: | ଉତ୍କଳ ଯୌବନ, | 1930–31 | 1960, " |
| 50: | ପାପ ଓ ପ୍ରେମ, | | 1931, ଜୁନ, ଧୂପ• |
| 51: | ଗୋପନ କଥା, | | " |
| 52: | ମିଳନପଥ, | | " |
| 53: | ଅପ୍ରତ୍ୟୟ, | | " |
| 54: | ଦେଖା ହେଲା କିପାଁ, | | " |
| 55: | ଅନ୍ତର ଆନନ୍ଦ, | | " |
| 56: | ପ୍ରଣୟ ବ୍ୟଥା, | | " |
| 57: | ପ୍ରଣୟ ସାଧନା, | | " |
| 58: | ପ୍ରିୟାର ସାଧନା, | | " |
| 59: | ବନ୍ଦିନୀ ପ୍ରିୟା, | | " |
| 60: | ଆଷାଢ ଅଭିସାର | | " |
| 61: | ଏଇ ସହକାର ତଳେ, | | " |
| 62: | ବିରହୀ, | | " |
| 63: | ବସନ୍ତ ବିରହୀ, | | " |

॥ ମାନସିଂହଙ୍କ ବିଚାରଧାରା ॥

64: ବିରହ, 65:ବରଷା ବିରହ,66:ମୌନ ବିଦାୟ,67:ମନେ କି ଥାଏ,?, 68:ପ୍ରଣୟ ଗର୍ବ, 69:ରାସପଲ୍ଲୀ, 70: ଜଣେ ମତେ ଭଲ ପାଏ, 71: ସ୍ମୃତି, 72: ପାଶୋର ପ୍ରଣୟ, 73:ଭଲପାଅ, 74: ଦୂରେ ରହ,75: ପ୍ରେମର ଭାଷା, 76: ଶଙ୍କିତ ସ୍ନେହ, 77: ପ୍ରେମ ଓ ଜରା, 78:ପ୍ରେମ ଓ ମୃତ୍ୟୁ, କବିତା ଗୁଡିକ ପ୍ରଥମ ଥର ପାଇଁ 1931 ରେ 'ଧୂପ' ପ୍ରଥମ ସଂସ୍କରଣରେ ପ୍ରକାଶ ପାଇଥିଲା ।

| କ୍ର.ସଂ. | ଲେଖା | ରଚନା କାଳ | ପ୍ରକାଶ କାଳ |
|---|---|---|---|
| 79: | ବିକ୍ରମ ସମ୍ବର୍ଦ୍ଧନା | | 1931,ଆଷାଢ,ଉସା.35/3, |
| 80: | ଗୋପ ପ୍ରୟାଣ, | | 15.7.1931,ସମାଜ ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟା |
| 81: | ମାଳୁଣୀ, | | 1931,ଅକ୍ଟୋ. ସହକାର,12/7, |
| 82: | ସାଧବପୁଅ, | | 1931,ନଭେ. ସହକାର,12/8, |
| 83: | ଗୀତ ଗୋବିନ୍ଦ(ଅନୁବାଦ,ଗୀତ) | 1931-32, | 1960,ସେବିକ. |
| 84: | ଟୀର୍ଥଧୂଳୀ, | 1931-32, | 1960, '' |
| 85: | ଗୁଣୁନ କିଆଁ, | 1931-32, | 1960, '' |
| 86: | ସଂଗୁର ଭିକ୍ଷା, | 1931-32, | 1960, '' |
| 87: | ରୂପ ଦେବତା | | 1932,ମାର୍ଚ୍ଚ,ସହକାର,12/12, |
| 88: | ବର୍ଷା ସଂଧ୍ୟା,(ଶ୍ରୀମତୀ ହେମଲତାଙ୍କ ନାମରେ) | | 1932,ମାର୍ଚ୍ଚ,ସହକାର,12/12, |
| 89: | ଗୃହମାୟା(ଘରପଣା) | | 1932,ଅକ୍ଟୋ. ସହକାର,13/7, |

90, ଜୟେ ପରାଜୟେ,91,ଜାଣେ ଜାଣେ,92,ଆକର୍ଷଣ,
93: ପ୍ରେମିକର ଅଧିକାର, କବିତା ଗୁଡିକ... 1932,ଡିସେ.ସହକାର,13/9,
94: ଇରାନୀ କିଶୋରୀ, 1928 ପୂର୍ବରୁ 1935,ହେମପୁଷ୍ପ,
95: ବସନ୍ତୋତ୍ସବ,96,ଘନ ଶର୍ବରୀ,97,କଣ୍ଟ୍ରାଚ,98,ବୀଣାଭିକ୍ଷା,
99: ଧରଣୀ ବାସ,100,ତୁମର ପ୍ରୟୋଜନ-. 101,ହଂସହତ୍ୟା,-
କବିତା ଗୁଡିକ 1932 ମଧ୍ୟରେ ରଚିତ ଓ ହେମପୁଷ୍ପ-1935 ରେ ପ୍ରକାଶିତ ।

| | | | |
|---|---|---|---|
| 102: | ନବ ବଧୂର ବିରହ | 1932-33 | 1960, ସେବିକ. |
| 103: | ସୌନ୍ଦର୍ଯ୍ୟ ଓ ସଂସାର, | 1932 | 1960, '' |
| 104: | ଗାନ୍ଧିଜୀ, | 1932 | 1948,ବାପୁତର୍ପଣ, |

105: ଶେଷକଥା,106,ଉଦାସୀ ପାନ୍ଥ,107,ବିଶ୍ୱ ଦେବାଳୟ,ରଚନା-1933,ପ୍ରକାଶ-1947,

॥ ମାନସିଂହଙ୍କ ବିଗ୍ରହଧାରା ॥

108, କଳ୍ପଲତା, 109, ପୌରୋହିତ୍ୟ, 110, ଅଙ୍ଗୀକାର, 111, ବିଦାୟ, 112, ଚିଲିକା, 113, ଗତିପଥ,
114, ଯୁଗଳ ଜୀବନ, 115, ସରମ, 116, ରୂପାଲୋକ, 117, ସୋହାଗ, 118, ନାରୀ, 119, ସାଧନା,
120, ଦାନ ପ୍ରତିଦାନ, 121, ବିଦ୍ରୋହ, 122, ଯୋଗ୍ୟତା, 123, ଅଭିମାନ, 124, ମୃତ୍ୟୁଭୟ, 125, ଭୋଗ ଓ ତ୍ୟାଗ,
126, ଭକ୍ତି, 127, ପ୍ରାର୍ଥନା, 128, ଜିଜ୍ଞାସା, 129, ଗୋପବନ୍ଧୁ, 130, ଚନ୍ଦ୍ରଶେଖର, 131, ଅପରାଧ,
132, ଭଗିନୀ, 133, ଭଗିନୀ, କବିତା ଗୁଡିକ 1933 ମସିହା ହେମଶସ୍ୟ ରେ ପ୍ରକାଶିତ
ପ୍ରକାଶକ ପ୍ରଗତି ସଂଘ କଟକ,

134: ପ୍ରେମ ଓ ସିଦ୍ଧି, 1933, ସହକାର, ଅଗଷ୍ଟ, 14/5,
135: ରାଧାନାଥ, 1933 1933,
136: ଭୁଲିଯାଅ ଇତିହାସ, 1933, 1960, ସେବିକ·
137: ଆର୍ଯ୍ୟ ମଧୁସୂଦନ, 1934, ଜାନୁୟାରୀ, ସହକାର, 14/10,
138: ଆତ୍ମପର, ଜ··· ଜୁନ୍, 1934, ନବଭାରତ 1/1,
139: ଦେବପୂଜା, ଅକ୍ଟୋ· 1934, ନବଭାରତ, 1/5,
140: ରିକ୍ସାବାଲା, 141, ମଜଦୂର, 142, କୃଷକ, 143, ବଢେଇ, 144, କିରାଣୀ,
145, କଳାସେବକ, 146, ସ୍କୁଲମାଷ୍ଟର, 147, କବି କହେ, —ରଚନା—1934—35, ପ୍ରକାଶ—1960, ସେବିକ·
148: କୋଣାର୍କର ଲାସ୍ୟଲୀଳା, ଅଗ—ସେପ୍ଟେ· 1935, ସହକାର,
150: ତୀର୍ଥଯାତ୍ରା, ନଭେ· 1935, ନବଭାରତ, 2/6, 7,
151: ବିରହୀ ଘନ, 152, ଜ୍ୟୋତ୍ସ୍ନାମୟୀ, 153, ଇତସ୍ତତଃ, 154, ବୈଠିକ, 155, ଭଗ୍ନ ମନୋରଥ,
156, ଭଗିନୀ, ଗୀତା 157, ଗୀତାର୍ପଣ, 158, ବିରହୀ ଗାଥା, 159, ମିଳନ ମାଧୁରୀ,
160, ଅତୃପ୍ତ ଭୋଗ, 161, ମନୋରଥ, 162, ପ୍ରିୟଚକ୍ଷୁ, 163, ନିତ୍ୟବସନ୍ତ, 164, ପ୍ରଥମ ଓ ପ୍ରଧାନ,
165, ଅପେକ୍ଷା, 166, କରଞ୍ଜିଆ, 167, କଥୟନ୍ତି, 168, ସର୍ବମୟ, 169, କବିର ପୁରସ୍କାର,
170, ସ୍ୱର୍ଣ୍ଣଯୁଗ, 171, ସୁଖଦୁଃଖ, 172, ପ୍ରାଣପକ୍ଷୀ, 173, ବିଶ୍ୱରୂପ,
174, ମୂକଦେବତା, 175, ଆଲୋକମାଗେ, 176, ଆହୁତି, 177, ତୁମର ପ୍ରୟୋଜନ,
178, ଦୁର୍ବାର ଆରାଧନା, 179, ଦୁର୍ବଳ ସୈନିକ, 180, ତୀର୍ଥଧୂଳି, 181, ଅର୍ଘ୍ୟପୂଜା,
182, ଦ୍ୱନ୍ଦ୍ୱ, କବିତା ଗୁଡିକ ପ୍ରଥମ 1935 ର ହେମପୁଷ୍ପରେ ପ୍ରକାଶିତ ।
183: ନାପିତୁଣୀର ଗାନ୍ଧି ପୂଜା, ଫେବ୍ରୁ· 1936, ନବଭାରତ, 2/9,
184: କବିଲକ୍ଷ୍ମୀ, ଜୁନ୍, 1936, ନବଭାରତ, 2/12,

॥ ମାନସିଂହଙ୍କ ବିଗ୍ରହଧାରା ॥

185: ବିଲ ଲକ୍ଷ୍ମୀ, ସେପ୍ଟେ• 1936, ଆଧୁନିକ, 1/5,
186: ବିରହ ପ୍ରଦୀପ, ଅକ୍ଟୋ• 1936, " 1/6,
187: ବୁଢ଼ା ଦଲେଇ, ଜୁନ, 1937, ନବଭାରତ, 4/1,
188: ଉତ୍କଳ ବନ୍ଦନା, ଅଗଷ୍ଟ, 1937, ବିଚ୍ଛିନ୍ନ, 1/1,
189: ଗାଂଧୀ, 1938,
190: ବାପୁଜୀ, ଜୁଲାଇ, 1938, ନବଭାରତ, 5/2,
191: ବିଶୃଂଖଳ ସୃଷ୍ଟି, ଅଗଷ୍ଟ, 1938, ବିଚ୍ଛିନ୍ନ, 2/1,
192: ପ୍ରଣୟ ନିଆଁ, 1939,
193: ଉପେକ୍ଷିତା, 13•2•1939,
194, ରବୀନ୍ଦ୍ରନାଥ, 195, ଗାଂଧୀ ଜୟନ୍ତୀ—1940,
196: ସମରବିମୁଖ, ଜାନୁ• 1940, ନବଭାରତ, 6/8,
197: ବୋଇତ ବନ୍ଦାଣ, ଜୁନ, 1940, ଆରତି, 1/3,
198: ତିରସ୍କାରିଣୀ, ଜୁଲାଇ, 1940, ଆରତି, 1/4,
199: ଦାନ, ଅଗଷ୍ଟ, 1940, ଆରତି, 1/5,
200: ନାୟିକା ପ୍ରତି (ଜେମା କାବ୍ୟରେ ପ୍ରକାଶିତ) ଅକ୍ଟୋ• 1940, ଆରତି, 1/6,
201: ଜେମା କାବ୍ୟର ଅଂଶ, ନଭେ• 1940, ଆରତି, 1/7,
202, ଆତତାୟୀ, ନଭେ• 1941, ସହକାର,
203, ରିକ୍ତତାର ଗୌରବ ଜାନୁ• 1942, ଉତ୍କଳ ପ୍ରଦୀପ,
204: ପଲ୍ଲୀସଂଧ୍ୟା, 1932, ଏପ୍ରିଲ, 1942, ଉତ୍କଳ ପ୍ରଦୀପ,
205: ନର ଚିରନ୍ତନ, 1942,
206: ଭଗବତୀ ସ୍ତୁତି (ବଂଧୁବିୟୋଗ) 1943,
207: ନଷ୍ଟପଲ୍ଲୀ, 1943,
208: ଶେଲି ମୃତ୍ୟୁ, ସେପ୍ଟେ—ଡିସେ, 1943, ଉତ୍କଳ ପ୍ରଦୀପ,
209: ମାଳାଗ୍ରହଣ ଅକ୍ଟୋ• 1943,
210: ନଷ୍ଟନୀଡ (କବିତା) ଡିସେ• 1944,

॥ ମାନସିଂହଙ୍କ ବିଗ୍ରହଧାରା ॥

211 ଜ୍ୟୋତ୍ସ୍ନାଭୋଗ, 212, ଯୋଗ୍ୟହେବି, 213, ଶ୍ରାବଣ ଅଭିସାର,
214, ନିତ୍ୟ ସ୍ୱୟଂବର, 215, ନବ ଜନନୀ, 216, ନାରୀର ଅଧିକାର, ପ୍ରେମଶସ୍ୟ(1945) ରେ ପ୍ରକାଶିତ ।
217: ଭିଖାରୀ, ଭାଦ୍ରବ, 1945, ଖଣ୍ଡ, 1/3,

| ଲେଖା | ରଚନା କାଳ/ସ୍ଥାନ | | ପ୍ରକାଶନ |
|---|---|---|---|
| 218: ଅକିଞ୍ଚନର ତିତିକ୍ଷା, | 19.11.1945, | ଆଠମଲ୍ଲିକ, | 1946, ଅକ୍ଷତ, |
| 219: ଅପର୍ଣ୍ଣ ପ୍ରେମ, | 23.11.1945, | ରେଢାଖୋଲ, | " |
| 220: ଦୁର୍ବଳର ଦଣ୍ଡ, | " | " | " |
| 221: ଉତ୍‌ଥାନ ପତନ, | 25.11.1945, | ରେଢାଖୋଲ, | " |
| 222: ଅଧଃପତନ, | 26.11.1945, | " | " |
| 223: ରୂପଭିକ୍ଷା, | " | " | " |
| 224: ଉଚ୍ଛୃଙ୍ଖଳ, | 28.11.1945, | " | " |
| 225: ଈଶ୍ୱର ସାଧାରଣ, | 2.1.1946, | ସମ୍ବଲପୁର | " |
| 226: ଉତ୍ପିଡିତ ଈଶ୍ୱର, | 5.1.1946, | " | " |
| 227: ଭ୍ରାନ୍ତିମୟ ଜୀବନ, | " | " | " |
| 228: ସାମାନ୍ୟ ସତ୍ୟ | 6.1.1946, | " | " |
| 229: ଅଙ୍କୁର ହିସାବ, | 7.1.1946, | " | " |
| 230: ଏକ ଓ ବହୁ, | 8.1.1946, | " | " |
| 231: ଅଶ୍ରୁ ମୁକ୍ତା | 18.1.1946, | ଖଣ୍ଡପଡା, | " |
| 232: ନୂତନ ଓ ପୁରାତନ, | " | " | " |
| 233: ବିଭୂ ଓ ପ୍ରକୃତି(1) | " | " | " |
| 234: ଗୁପ୍ତ ପ୍ରଣୟ, | 19.1.1946, | " | " |
| 235: ଅନଭିଳଷିତ, | 20.1.1946, | " | " |
| 236: ଦର୍ଶନ ଗୌରବ, | " | " | " |
| 237: ତୁମରି ଅହଙ୍କାର, | 21.1.1946, | " | " |
| 238: ସର୍ବ ସମର୍ପଣ, | " | " | " |
| 239: ନିର୍ବୋଧର ଅଧିକାର, | 22.1.1946, | ଦଶପଲ୍ଲା, | " |
| 240: କ୍ଷୁଦ୍ର ପ୍ରୀତି, | 23.1.1946, | ଖଣ୍ଡପଡା, | " |

॥ ମାନସିଂହଙ୍କ ବିଗ୍ଗୁରଧାରା ॥

288: ଅଗଷ୍ଟ ସନ୍ଦର ଅଗଷ୍ଟ, 1948,

289, ମହାଯାତ୍ରା, 290, ନାହାନ୍ତି ଗାନ୍ଧିଜୀ, 291, ନିର୍ମମ ଭଗବାନ, 292, ଦିଅଛାତି ତାରେ,

293, ଭାରତ ପୁତ୍ର, 294, ଆସିବ ଫେରି ହେ ଶିଘ୍ର, 295, ଯେବେହେ ଆସିବ ଫେରି,

296, ତାହାରେ ସ୍ମର ରାଉ, କବିତା ଗୁଡିକ, ବାପୁତର୍ପଣ, 1948 ରେ ପ୍ରକାଶିତ

| ଲେଖା | ରଚନା କାଳ | ପ୍ରକାଶନ |
|---|---|---|
| 297: କପୋତ କପୋତୀ, | 23.2.1949, ବାଟଗାଁ, ବାଲେଶ୍ୱର, | ସିନ୍ଧୁ ଓ ବିନ୍ଦୁ, |
| 298: ନ ହେବି ବୁଦ୍ଧ, ନହେବି ଗାନ୍ଧି, ନହେବି, ଶଙ୍କର, | 24.2.1949, ବାଟଗାଁ, ବାଲେଶ୍ୱର, | |
| 299: ଜୀବଯଜ୍ଞ, | 16.3.1949, | ଡଗର, 12/15, 16, 17, 18, |
| 300 ଜୀବ ଅକୃତଜ୍ଞ, | 8.4.1949, ବାରିପଦା | |
| 301: ସଙ୍କଳ୍ପ, | 15.8.1949, | |
| 302: ପ୍ରାଣରେ ବାପୁଜୀ, | | 1.10.1949, ଡଗର, ଗାନ୍ଧି ଜୟନ୍ତୀ ସଂଖ୍ୟା, |
| 303: ଫେରାଇ ଦିଅ, | | 1950, |
| 304: ସମାଧି, | | ଏପ୍ରିଲ, 1950, |
| 305: ବୁଦ୍ଧଂ ଶରଣଂ ଗଚ୍ଛାମି, | 1951, | |
| 306: ମାୟାବାଦ, | | ନଭେ. 1951, ଝଙ୍କାର, 3/8, |
| 307: ସନାତନ, | | ଅପ୍ରେଲ, 1952, ଝଙ୍କାର, 4/1, |
| 308: ସ୍ୱରାଜ୍ୟାଶ୍ରମ(1) | | ଅଗଷ୍ଟ, 1952, ଝଙ୍କାର, 4/5, |
| 309: " (2) | | ସେପ୍ଟେ. 1952, " 4/6, |
| 310: " (3) | | ଅକ୍ଟୋ. 1952, " 4/7, |
| 311: ଘେନ ଆଶ୍ଳେଷ ନୋହୁ ସ୍ୱଜନ, | | ଫେବ୍ରୁ. 1953, |
| 312: କରିନି ଯା ଯଥେଷ୍ଟ ଆଦର, | | ଏପ୍ରିଲ 1953, |
| 313: ପ୍ରାଦେଶିକ, | | ମେ' 1953, ଝଙ୍କାର 5/2, |
| 314: ପରୋପକାର ବିରାଟ ପ୍ରବଞ୍ଚନା, | | ଜୁନ୍, 1953, |
| 315: ନମସ୍କାର, | | ଅକ୍ଟୋ. 1953, ଝଙ୍କାର, 5/6, |
| 316: ବି.ବର୍ମା, | | ଝଙ୍କାର, 5/10, |
| 317: କିଛି ପ୍ରଶ୍ନ ନାହିଁ, | | ମାର୍ଚ୍ଚ–ଏପ୍ରିଲ, 1954, |

241: କିଛି ପ୍ରଶ୍ନ ନାହିଁ, 25·1·1946 ସମ୍ବଲପୁର, ଝଙ୍କାର 7/12, ମୀନ 1361,
242: କବି ଗୌରବ, 26·1·1946, 1946, ଅକ୍ଷତ,
243: ଜନତା ବୈରାଗ୍ୟ 30·1·1946, ଖଡଗପୁର ଷ୍ଟେସନ, ''
244: ଲୁଣର ଆନନ୍ଦ, 31·1·1946, ଗୋବିନ୍ଦପୁର ବାମଣ୍ଡା 1956, ଲୁଣ,
245: ଲୁଣ ବହନ '' '' 1946, ଅକ୍ଷତ,
246: ପାନ୍ଥଗାଥା, 3·2·1946, ସମ୍ବଲପୁର, ''
247: ନିର୍ବିକାର, '' '' ''
248: ଜନ୍ମ ଜନ୍ମାନ୍ତର, 26·2·1946, ଦଶପଲ୍ଲା ଶଂଖ, 1/8, ମାଘ, 1946,
249: ତୃତୀୟ ନେତ୍ର, 2·3·1946, ସମ୍ବଲପୁର 1946, ଅକ୍ଷତ,
250: ପ୍ରଶ୍ନୋତ୍ତର, 14·5·1946,
251: ମୋ ଧନରେ ଆଷାଢ, 1946, ଶଂଖ 2/1,
252: ଅଭିମାନ, 253, ସ୍ୱର୍ଗଚ୍ୟୁତି, 254, ଶିଶୁର ଦାନ, 255, ରୂପାନ୍ତର,
256, ସହଜ ପଥ, 1946 ଅକ୍ଷତ ରେ ପ୍ରକାଶିତ ।
257: ଦହନ କର ଅନ୍ତରେ ମୋ ସ୍ୱର୍ଣ୍ଣ ଯଦି ଥାଏ, ରଚନା–21·6·1947,
258: ଦୂର ଓ ନିକଟ, ଜୁଲାଇ, 1947, ନବଭାରତ(ନୂତନ) 1/10
259: ସାଗରର ବ୍ୟଥା, 260, ହେ ମୋର ପରମ, 261, ପ୍ରତ୍ୟାବୃତ୍ତା, 262, ନାରୀ,
263, ମହାଦାନ, 264 ପଜନ ପୁଷ୍ପ(ଅନୁବାଦ), 265, ବିଶ୍ୱ ଦେବାଳୟ, 266, ଧ୍ରୁବତାରା,
267, ଉପସ୍ଥିତ, 268, ବିଦେଶଯାତ୍ରା, 269, ହୃତସ୍ୱପ୍ନର ପତ୍ର, 270, କ୍ଷମାକର,
271, ମରମେ ତୁମର, 272, ଯାଉଛି ସେ, କବିତା ଗୁଡିକ 1947 ହେମପୁଷ୍ପରେ ପ୍ରକାଶିତ ।
273: କୁଟୀର ଚିରନ୍ତନ, 274, ସ୍ୱଭାବ କବି ଗୋପାଳକୃଷ୍ଣ, 275, ରବୀନ୍ଦ୍ରନାଥ,
276, ତଅପୋଇ ବିଳାପ, 277, ହେ ବନ୍ଧୁ, 278, ସାଆନ୍ତ ମା, 279, ଉତିଷ୍ଠ ଉତ୍କଳ,
280, ହେ ନଟ କୁମାର, 281, ସ୍ୱାଗତ ବିନୋବା, କବିତା ଗୁଡିକ 1947 ମାଟିବାଣୀରେ ପ୍ରକାଶିତ ।
282, ବନ୍ଧନ, 283, କୃତାର୍ଥ, 284, ଦୁର୍ବାର ଆରାଧନା, 285, ଦୁର୍ବଳ ସୈନିକ, କବିତା 1947, ଜୀବନଚିତାରେ ପ୍ରକାଶିତ,
286: ଦୀପ ନିର୍ବାପିତ, ଜାନୁୟାରୀ, 1948, ସହକାର, 26/9,
287: ବିଳପୁଛୁ କାହିଁପାଇଁ, ଫେବୃ·1948, ନବଭାରତ, ମକର,

## ।। ମାନସିଂହଙ୍କ ବିଗ୍ରହଧାରା ।।

| ଲେଖା | ରଚନା କାଳ, | | ପ୍ରକାଶନ, ପତ୍ରପତ୍ରିକା/ପୁସ୍ତକ, |
|---|---|---|---|
| 318: ସମଦୁଃଖୀ ପ୍ରାଣୀ | | | ଏପ୍ରିଲ, 1954, ଝଙ୍କାର, 6/1, |
| 319: ଦୁଃଖୀ, | 15.6.1954, | କଟକ, | |
| 320: ଶ୍ରୀକୃଷ୍ଣ, | | | ସେପ୍ଟେ. 1954, ଝଙ୍କାର 6/6, |
| 321: ବିଭୁ ଓ ପ୍ରକୃତି, (4) | 17.9.1954, | | କ୍ରୁଶ, 1956, |
| 322: ବିଭୁ ଓ ପ୍ରକୃତି, (2) | 18.9.1954, | | '' |
| 323: ବିଭୁ ଓ ପ୍ରକୃତି, (3) | 19.9.1954, | | '' |
| 324: ବିଭୁ ଓ ପ୍ରକୃତି, (5), | '' | | '' |
| 325: ହାତୀବାଡି, | | | ଡିସେ. 1954, ଝଙ୍କାର 6/9, |
| 326: ରୂପଚଣ୍ଡୀ, | | | ଜାନୁ. 1954, ଝଙ୍କାର, 6/10, |
| 327: ଜୀବନଭୋଗ, | 9.3.55, | ସମ୍ବଲପୁର, | କ୍ରୁଶ, 1956, |
| 328: ସୁମେଧାର ବିବାହ, | | | ମାର୍ଚ୍ଚ, 1955, |
| 329: ଶୁଦ୍ଧ ସଂସ୍କାର, | 22.2.1955, | ସମ୍ବଲପୁର, | କ୍ରୁଶ, 1956, |
| 330: କାହାଲାଗି, | 20.8.1955, | '' | '' |
| 331: ମୋ କ୍ରୁଶ, | 21.8.1955, | '' | '' |
| 332: ଅନୁତାପ କ୍ରୁଶ, | 22.8.1955, | '' | '' |
| 333: କ୍ରୁଶ କୋଟି କୋଟି | 24.8.55, | '' | '' |
| 334: କର୍ମଚକ୍ର, | 27.8.1955, | '' | '' |
| 335: ଐଶ୍ୱର୍ଯ୍ୟମୟ, | 11.9.1955, | '' | '' |
| 336: ତମଲାଗି, | 15.9.1955, | '' | '' |
| 337: ଅମୃତଭଣ୍ଡ ଲୋଡାନାହିଁ, | 22.9.1955, | '' | '' |
| 338: ଅନୁରାଲୋକ | 10.10.1955 | '' | '' |
| 339: ବିଶ୍ୱ ଆକର୍ଷଣ, | 3.10. 1955, | '' | '' |
| 340: ଏକ ଶାନ୍ତ ବିନ୍ଦୁ, | 3.10.1955, | '' | '' |
| 341: ଆକାଙ୍କ୍ଷିତ ଶୂନତା, | 3.10.1955, | '' | '' |
| 342: ବିଶ୍ୱପ୍ରାଣ, | 4.10.1955, | '' | '' |
| 343: ପ୍ରଷ୍ଟାର ଯାଦୁ, | 10.10. 1955, | '' | '' |

॥ ମାନସିଂହଙ୍କ ବିଚାରଧାରା ॥

ଲେଖା, ରଚନା ସମୟ, ପ୍ରକାଶନ, ପତ୍ରିକା/ପୁସ୍ତକ,

344: ଚିର ଅନ୍ୱେଷଣ, 12.11.1955, ସମ୍ବଲପୁର, କୃଶ, 1956,
345: ନୂତନ ପ୍ରଶ୍ନ, 18.11.1955, '' ''
346: ତଥ୍ୟାନୁ ସନ୍ଧାନ, '' '' ''
347: କେବଳ ପ୍ରୀତି, '' '' ''
348: ସୁଖ ଓ ସୌନ୍ଦର୍ଯ୍ୟ, '' '' ''
349: ପ୍ରଶ୍ନକାରୀ ପ୍ରାଣୀ, '' '' ''
350: ଉଦ୍‌ଗମନ, 28.11.1955, '' ''
351: ବିରାଟର ଆକର୍ଷଣ, 28.11.1955 '' '' ''
352: ମାତା ଓ ଶିଶୁ, 29.11.1955, '' ''
353: ଅନ୍ତର ଆରାଧନା, 7.12.1955, '' ''
354: ପୂର୍ଣ୍ଣ ସ୍ପର୍ଶ, 11.12.1955, '' ''
355: ପୂର୍ଣ୍ଣତା ପ୍ରାପ୍ତି, 12.12.1955, '' ''
356: ମାତାର ଦୁଃଖ, 14.12.1955, '' ''
357: ଜଣକର ଉପକାର '' '' ''
358: ଜନ୍ମେ ଜନ୍ମାନ୍ତର, 16.12.1955, '' ''
359: ଅନ୍ୟାୟ ସୃଷ୍ଟି '' '' ''
360: ପର୍ବତ ବିରାଟ ଅଛି ଲୁଚି ସଂଗୋପନେ, 16.12.1955, '' ''
361: ନିଷ୍ଫଳର ଦୁଃଖ, 18.12.1955, ସମ୍ବଲପୁର, ''
362: ମୋ ପ୍ରାଣେ ଧ୍ୱନିତ, '' '' ''
363: ଆପେକ୍ଷିକ ଦୃଷ୍ଟି, '' '' ''
364: ବନ୍ୟା ଓ ଗୋପବନ୍ଧୁ, 1955, — — ସ୍ୱରାଜ୍ୟାଶ୍ରମ,
365: ଜନନୀ ସଂଘ, 4.1.1956, ସମ୍ବଲପୁର, କୃଶ, 1956,
366: ଅନ୍ୟୋନ୍ୟ ସଂହାର, 5.1.1956, '' ''
367: ଜୀବ ହଂସ ଆସୁସରେ ଖେଳେ, '' '' ''
368: ବୈଚିତ୍ର୍ୟ ସମାଚାର 11.1.1956, '' ''
369: ରସାଳ ଦୁଃଖ, '' '' ''

॥ ମାନସିଂହଙ୍କ ବିପ୍ଳବଧାରା ॥

| | ଲେଖା, | ରଚନା ସମୟ, | | ପ୍ରକାଶନ, ପତ୍ରିକା/ପୁସ୍ତକ, |
|---|---|---|---|---|
| 370: | ପ୍ରତ୍ୟକ୍ଷ ଦେବତା, | 11·1·1956, | ସମ୍ବଲପୁର, | କୃଶ, 1956, |
| 371: | ଚବିଶ ଜାନୁୟାରୀ | 25·1·1956, | ସର୍ବଭାରତୀୟ କବି ସମ୍ମିଳନୀରେ ପଠିତ, | |
| 372: | ପ୍ରକୃତ ପୂଜା, | 4·2·1956, | ସମ୍ବଲପୁର, | କୃଶ, 1956, |
| 373: | ସିଏ କଲା ତୁମର ପ୍ରସ୍ତର, | '' | '' | '' |
| 374: | ଭବିଷ୍ୟତ ଭାରତବର୍ଷ, | 5·2·1956, | '' | '' |
| 375: | ମାତୃଦ୍ରୋହୀ | '' | '' | '' |
| 376: | କସ୍ତୁରୀ ମୃଗ, | 21·2·1956, | '' | '' |
| 377: | ଚଳେ ଚଳେ, | '' | '' | '' |
| 378: | ହୋମାଗ୍ନି, | 22·2·1956, | '' | '' |
| 379: | ପରିବର୍ତ୍ତିତ | '' | '' | '' |
| 380: | ବିକାଶର ଅଂଗ, | 25·2·1956, | '' | '' |
| 381: | ନିର୍ଜ୍ଜେଇ ବୋହିବା, | '' | '' | '' |
| 382: | ଅଗ୍ରଣୀ ଭାରତ, | 27·2·1956, | '' | '' |
| 383: | ଏକାନ୍ତ ଏକାକୀ | 29·2·1956, | '' | '' |
| 384: | ସଂଗ୍ରାମର କୃଶ, | '' | '' | '' |
| 385: | ଜୀବନ୍ ତାରକା, | 1·3·1956, | '' | '' |
| 386: | ମାନବିକ ଇଂରେଜ, | '' | '' | '' |
| 387: | ନିର୍ଦ୍ଦୟ ବ୍ରାହ୍ମଣ, | '' | '' | '' |
| 388: | କୃଶ ପ୍ରତ୍ୟେକର, | 6·3·1956, | '' | '' |
| 389: | ଗାଏ ସେହି ମହାଗାନ, | '' | '' | '' |
| 390: | ରହ ଭାରତୀୟ, | '' | '' | '' |
| 391: | ଚଳାଅ ସଂଗ୍ରାମ, | '' | '' | '' |
| 392: | ଆନନ୍ଦମୟ ସୃଷ୍ଟି, | 7·3·1956, | '' | '' |
| 393: | ଦୁଃଖଜୟ, | '' | '' | '' |
| 394: | ବରେଣ୍ୟ ସେ ସଂଗ୍ରାମୀର ଦଳ, | 8·3·1956, | '' | '' |
| 395: | ଅଜନ୍ତା, | '' | '' | '' |

।। ମାନସିଂହଙ୍କ ବିଗ୍ରଧାରା ।।।

ଲେଖା ରଚନା ସମୟ, ପ୍ରକାଶନ, ପତ୍ରିକା/ପୁସ୍ତକ,

396: ଏଲିଫାଣ୍ଟା, ଏପ୍ରିଲ, 1956, ଝଙ୍କାର, 8/1,

397: ହେ ଗୋଦାବରୀଶ, ଅଗଷ୍ଟ, 6, 1956, ପ୍ରଜାତନ୍ତ୍ର,

398: ନାଶ ଓ ସୃଷ୍ଟି, 31.11.1956, ସମ୍ବଲପୁର, କୃଶ, 1956,

399: ରବୀନ୍ଦ୍ରନାଥ, ଜୁନ୍ 1956, ମାଟିବାଣୀ,

400: ଜୀବହଂସ, 401, ଅଭିମାନ, କୃଶ, 1956 ରେ ପ୍ରକାଶିତ ।

402: କବି ଲକ୍ଷ୍ମୀକାନ୍ତ, ଫେବ୍ରୁ. 1957,

403: ଗୋଦାବରୀଶ, 1957,

404: ଅପେକ୍ଷମାଣ, ମାର୍ଚ୍ଚ–ଏପ୍ରିଲ, ଡଗର, 20/10, 11,

405: ପତିତପାବନ ବୁଦ୍ଧ, ଏପ୍ରିଲ, 1957, ଝଙ୍କାର, 9/1,

406: ନିନ୍ଦା ? ଫେବ୍ରୁ. 1958

407: ଶ୍ରୀଯୁକ୍ତ ରାଜ କିଶୋର ଓ ବସନ୍ତକୁମାରୀ ସେପ୍ଟେ. 1958,

408: କଟକ ମ୍ୟୁନିସି୍ ପାଲିଟି୍ ଚେୟାରମ୍ୟାନଙ୍କ ପ୍ରତି, ନଭେ. 1958, ଡଗର, 22/5,

409: ନିନ୍ଦା କେ କରେ, ଫେବ୍ରୁ. 1959, ଡଗର 22/8,

410: ଧରାବତରଣ, ଜାନୁ. 1959, ଝଙ୍କାର, 10/10,

411: ମୁମୂର୍ଷୁ କୋଣାର୍କ ଏପ୍ରିଲ, 1960, ଝଙ୍କାର, 12/1,

412: ଆପଣାର · ହୋଇ କେବେ ଆସିବନି ଥରେ, ରଚନା– 1.6.1960,

413: ତାରତୀର୍ଥ, (ନୂତନ ପଥିକ, ଜୁଲାଇ, 1961, ଆସନ୍ତାକାଲି, 11/7,

414: ବେଦାନ୍ତ, '' ''

415: ଗୁନ୍ଦେଜ, '' ''

416: ରୂପକଥା, '' ''

417: ଅହଲ୍ୟା ପ୍ରଧାନ, '' ''

418: ନବ ପ୍ରେୟସୀ, ଅଗଷ୍ଟ, 1962, ଡଗର/2, 3,

419: ନେଫା ଯିବି ଦିଅ ଛାଡି, ଡିସେ. 1962, ନବଜୀବନ, 7/9,

420: ପଳାତକ ହେ ମୋର ଯୌବନ, 421: ହେ ଅତୀତ ଧୂଳେ ଘୁଞ୍ଚିଯାଅ,

422, ଜୀବନ ପଥିକ, 423, ଅପାର ନିର୍ବାଣ, 424, ସମର୍ପଣ, 425, ଅନ୍ୱେଷୀ,

426, ରାଜ ଦର୍ଶନ, 427, ଅତି ଆପଣାର, 428, ଦୂରଗୀ, 429, ଆଶୀର୍ବାଦ,

430, ମୁଁ ଅଛି, ମୁଁ ଅଛି, 431, ନିଃସହାୟ, 432, ଅନାବଶ୍ୟକ ମଧ୍ୟସ୍ଥ, 433, ଦୁର୍ବଳ,

434, କୃପାଣ୍ଣ, 435, ବିଶ୍ୱ ମିଳନ, 436, ସପ୍ତଶଯ୍ୟାରେ ନିଶୀଥ, 437, ବିଅହେ ଉତ୍ତର,

॥ ମାନସିଂହଙ୍କ ବିଗ୍ରହଧାରା ॥

438, ଦହନ ସୁଖ, 439, ସୁମେଧାର ବିବାହ, 440, ମିଳିବ କି ନାହିଁ, 441, ତଟୀପ୍ରାନ୍ତି,
442, ଭେଟିବି, 443, ଜୀବ ଗୋପୀ, 444, ସ୍କୁଲକ, 445, ଲାଭାବାଭ, 446, ମହାପଥର ଯାତ୍ରୀ,
447, ଆନନ୍ଦେ ଗୀତ ଗାଅ, 448, ଅର୍ଦ୍ଧ ଶତାବ୍ଦୀ, 449, ନବ ମାନବ, 450, ଆଶ୍ଳେଷ,
451, ସିନ୍ଧୁ ଓ ବିନ୍ଦୁ, କବିତା ଗୁଡିକ ସିନ୍ଧୁ ଓ ବିନ୍ଦୁ ସଂକଳନରେ ପ୍ରକାଶିତ ।
452: କବିର ପୁରସ୍କାର, ଅକ୍ଟୋବର, 1964, କଳିଙ୍ଗ,
453: ଶାସ୍ତ୍ରୀ ଶ୍ରଦ୍ଧାଞ୍ଜଳି, 11·1·1967, ସମାଜ,
454: ମୋ ଷଟ୍ କୁସୁମ, ଏପ୍ରିଲ, 1972, ଝଙ୍କାର, ବିଷୁବ,
455: ନିତ୍ୟ ବିହ୍ୱସ୍ତ୍ରୀ(ମାତାବର ଚ୍ଛନ୍ଦ) ଏପ୍ରିଲ, 1972, ନବରବି, 2/10,
456: ଯେବେହେ ଆସିବ ଫେରି, ଅକ୍ଟୋବର, 1972, ଆସନ୍ତାକାଲି, ପ୍ରଜାତନ୍ତ୍ର ସଂଖ୍ୟା,
457: ହିସାବ ନିକାଶ, ଏପ୍ରିଲ, 1942, ସହକାର, 23/1, ବୈଶାଖ, 1349,
458: ବିଭୂତି ଭୂଷଣ ତ୍ରିପାଠୀଙ୍କୁ କବିତାରେ ପତ୍ର, 7·10 1964, ମାନସିଂହ ସ୍ମରଣିକା, 1973,
459: ଡଃ କୁଞ୍ଜବିହାରୀ ଦାଶଙ୍କୁ କବିତାରେ ଚିଠି, 30·4·1973, ମୋ କାହାଣୀ ପୃ· 392,
460: ଡଃ କୁଞ୍ଜବିହାରୀଙ୍କୁ ଅନ୍ୟ ଏକ କବିତା ଚିଠି, 17·5·1973, ବୁଦ୍ଧ ପୂର୍ଣ୍ଣିମା, ମୋ କାହାଣୀ,
461, ମନ୍ତ୍ରୀର ବେଳ କାହିଁ, 462, ମୋ ପିଲାଙ୍କ ଭବିଷ୍ୟତ, 463, ମନ୍ତ୍ରୀ ବିଶ୍ୱନାଥ ନନ୍ଦ,

464, ମାଟିଆ ବୁରୁଜରେ ଓଡିଆଙ୍କ ଐତିହାସିକ କୀର୍ତ୍ତି, 465, ଯଦୁସ୍ୱାମୀଙ୍କ ଗାଥା,
466, ଭୂଲ ଓ ଭିଲେନୀ, 467, ନିଗ୍ରୋ ଓ ଗାଉନ, 468, ଆତ୍ମାବତରଣ ।
କବିତା ଗୁଡିକ ସ୍ୱରାଜ୍ୟାମେ କବିତା ସଂକଳନରେ ପ୍ରକାଶିତ ।
469: କିଶୋର କବିତା, କବିତା ସଂକଳନ, ମାନସିଂହଙ୍କର ବିଭିନ୍ନ ପାଠ୍ୟ ପୁସ୍ତକରେ ପ୍ରକାଶିତ ଶିଶୁ ଓ କିଶୋର ଉପଯୋଗୀ କବିତା,
470: ଗୀତରେଣୁ, ବିଭିନ୍ନ ସମୟରେ ମାନସିଂହଙ୍କ ରଚିତ ଗୀତି କବିତା ର ସଂକଳନ ।

ବିଭିନ୍ନ ପାଠାଗାର ଓ ଡଃ ମାନସିଂହଙ୍କ ଓଡ଼ିଆ ସାହିତ୍ୟ ବାସଭବନରୁ ସଂଗୃହିତ କବିତା ଗୁଡିକର ଏହା ଏକ ତାଲିକା । ଏହି ଲେଖାଗୁଡିକ ସାହାଯ୍ୟରେ ଚର୍ଚ୍ଚା ନିବନ୍ଧଟି ପ୍ରସ୍ତୁତ କରାଯାଇଅଛି । ମାନସିଂହ ସାହିତ୍ୟ ଅନୁଶୀଳନ ପାଇଁ ଅନ୍ୟତ୍ର ପ୍ରକାଶିତ ବିଭିନ୍ନ କବିତାକୁ ସଂଯୋଗ କରାଯାଇ ପାରେ ।

॥ ମାନସିଂହଙ୍କ ବିସ୍ତରଧାରା ॥

ମାନସିଂହଙ୍କ ଗୀତିନାଟ୍ୟ ଓ ନାଟକ ଗୁଡିକ ନିମ୍ନ କ୍ରମରେ ପ୍ରକାଶ ପାଇଥିଲା ।

| ଲେଖା | ରଚନା କାଳ, | ପ୍ରକାଶନ ସମୟ, |
|---|---|---|
| 471: ରାଜକବି(ଗୀତିନାଟ୍ୟ | 1925, | 1928, |
| 472: ପୁଷ୍ପିତା(ନାଟିକା) | | ଅଗଷ୍ଟ, 1930, ସହକାର, 11/4, |
| 473: ପୂଜାରିଣୀ(ନାଟିକା) | | 1932, ପ୍ରଥମ ସଂସ୍କରଣ, |
| 474: ନଷ୍ଟନୀଡ(ସାମାଜିକ ନାଟକ) | | ଅକ୍ଟୋବର, 1937, ବିଚିତ୍ରା, 1/2, ରେ କିଛି ଅଂଶ ପ୍ରକାଶିତ, ପ୍ରଥମ ପ୍ରକାଶ, 1937, |
| 475: ବାରବାଟୀ(ନାଟକ) | | 1.11.1951 ରେ ଦ୍ୱିତୀୟ ସଂସ୍କରଣ ପ୍ରକାଶିତ, |
| 476: ବୁଦ୍ଧ(ନାଟକ) | | ଏପ୍ରିଲ୍, ମେ, ଜୁନ୍, ଅଗଷ୍ଟ, ଡିସେମ୍ବର, 1950ରେ ଫେବୃୟାରୀ, ଏପ୍ରିଲ, 1951, ଝଙ୍କାର'ରେ ଧାରା ବାହିକ ଭାବରେ ପ୍ରକାଶିତ । ତା.୨.11.1951 ରେ ରେଭେନ୍‌ସା ମେହେର କଲେଜରେ, ପ୍ରଥମ ଅଭିନୀତ । |
| 477: ଦୁର୍ଭିକ୍ଷ(ନାଟିକା) | | 1955, |
| 478: ବୁଦ୍ଧଦୂତୀ(କାବ୍ୟ ନାଟିକା) | | ଝଙ୍କାର ୧୦/୧ ଡିସେମ୍ବର ୫୮. ସଂ. |
| 479: ଶାସନ ଚକ୍ର(ଏକାଙ୍କିକା) | | 1951, |
| 480: ପୁଷ୍ପାଭିନୟ, (କାବ୍ୟନାଟିକା) | | |

କବିତା ଲେଖା ସଂଗେ ସଂଗେ ମାନସିଂହ ଆଦ୍ୟ ଜୀବନରେ ଗଳ୍ପ ଲେଖିବାକୁ ଚେଷ୍ଟା କରିଥିଲେ । ତାଙ୍କର କେତେକ ଗଳ୍ପ ଲେଖକ ଦୁଃଶାସନ ନାୟକ ଖୋର୍ଦ୍ଧା ଛଦ୍ମ ନାମରେ ଓ ଗୋଟିଏ ଗଳ୍ପ ଶ୍ରୀ ମାନସିଂହ ନାମରେ ପ୍ରକାଶିତ । ମାନସିଂହ ମଧ୍ୟ ଗୋଟିଏ ଉପନ୍ୟାସ ରଚନା କରିଥିଲେ ।ନିମ୍ନରେ ତାଲିକା ପ୍ରଦତ୍ତ ହେଲା ।

481: ନଷ୍ଟବାସନା, (ଗଳ୍ପ) ମାର୍ଗଶିର, ପୌଷ, 1332, ସାଲ(1925), ସହକାର, 5/3, 4,
'' ଅବଶିଷ୍ଟାଂଶ ଚୈତ୍ର, 1332, (1926) ସହକାର, 5/7,
482: ଜନ୍ମଭୂମି(ଗଳ୍ପ) ଦୁଃଶାସନ ନାୟକ ଖୋର୍ଦ୍ଧ, ଚୈତ୍ର, 1332(1926) ସହକାର, 5/7,
483: ଅଭିଶାପ(ଗଳ୍ପ) ଅପରାର୍ଦ୍ଧ, ଶ୍ରୀମାନସିଂହ, ଭାଦ୍ର, 1332(1926) ସହକାର, 5/12,
484: ଟ୍ୟାକୁପୁରୀ(ଗଳ୍ପ) ଅକ୍ଟୋବର, 1924, ସହକାର, 5/12,
485: ଅନ୍ୱେଷଣ(ଉପନ୍ୟାସ) 1957, ପ୍ରଥମ ପ୍ରକାଶ,

॥ ମାନସିଂହଙ୍କ ବିଗ୍ରହଧାରା ॥

ମାନସିଂହଙ୍କର ଅଧିକାଂଶ କାବ୍ୟ, ବିଭିନ୍ନ ସମୟରେ କବିତା ଆକାରରେ ପତ୍ରପତ୍ରିକାରେ ପ୍ରକାଶିତ ହୋଇଥିଲା । କବିତା ତାଲିକାରେ ସେ ସମସ୍ତ ର ସୂଚନା ପ୍ରଦାନ କରାଯାଇଛି । ବର୍ତ୍ତମାନ କାବ୍ୟର କାଳାନୁକ୍ରମିକ ତାଲିକା ଉଲ୍ଲେଖ କରାଗଲା ।

486: ଉପେକ୍ଷିତା(କାବ୍ୟ) 1960 ମସିହାରେ ସେ ଦିନର କବିତାରେ ପୁସ୍ତକ ରୂପରେ ପ୍ରକାଶିତ ହେବା ପୂର୍ବରୁ ନିମ୍ନ କ୍ରମରେ ପ୍ରକାଶିତ ହୋଇଥିଲା ।

(କ) ଅଗଷ୍ଟ, 1924, ସହକାର, 8/12,

(ଖ) ସେପ୍ଟେମ୍ବର, 1924, ସହକାର, 9/1

(ଗ) ଅକ୍ଟୋବର, 1924, ସହକାର, 9/2,

487: ନିର୍ବାଣ(କାବ୍ୟ) 1960 ମସିହାର ସେ ଦିନର କବିତା ପୁସ୍ତକରେ ପ୍ରକାଶିତ ହେବା ପୂର୍ବରୁ ଏହାର ବିଭିନ୍ନ ଅଂଶ, 1927 ମସିହାରେ ରଚନା କରା ଯାଇଥିଲା, କ୍ରମ ସଂଖ୍ୟା—3 ରୁ 20, ରେ ସୂଚନା ପ୍ରଦତ୍ତ ।

488: ଶୁଭଦୃଷ୍ଟି(କାବ୍ୟ), ଏହି କାବ୍ୟର ବିଭିନ୍ନ ଅଂଶ, 1930, 1935, 1935, 1942, ରେ ପ୍ରକାଶିତ ।

489: ହେମା(କାବ୍ୟ), ପୂର୍ବରୁ କେତେକ ଅଂଶ କବିତା ଆକାରରେ ବିଭିନ୍ନ ସମୟରେ ପ୍ରକାଶିତ ହୋଇଥିଲା । 1.1.1947 ରେ ପ୍ରଥମ ପୁସ୍ତକ ରୂପରେ ଓ, 1.1.51 ରେ ଦ୍ୱିତୀୟ ସଂସ୍କରଣ

490: ସାଧବ ଝିଅ(କୋଷଳି) କାବ୍ୟ ରୂପରେ ପ୍ରକାଶ ପୂର୍ବରୁ, କବିତା ଆକାରରେ, (1929, 1931, 1931, ଓ 1943 ରେ) ବିଭିନ୍ନ ଅଂଶ ପ୍ରକାଶିତ । କବିତା ଅଂଶରେ ସୂଚନା ପ୍ରଦତ୍ତ ।

491: କମଳାୟନ (ମହାକାବ୍ୟ), 1947, ପ୍ରକାଶିତ,

492: ମାନସିଂହ ଚୟନ, ପ୍ରଥମ ଖଣ୍ଡ, 1955, ପ୍ରଥମ ସଂସ୍କରଣ,

493: " ଦ୍ୱିତୀୟ ଖଣ୍ଡ, " "

494: ମାନସିଂହ ଗ୍ରନ୍ଥାବଳୀ, ପ୍ରଥମ ଖଣ୍ଡ, 1962, ( କବିତା)

495: ମାନସିଂହ ଗ୍ରନ୍ଥାବଳୀ, ଦ୍ୱିତୀୟ ଖଣ୍ଡ, 1964, (କାବ୍ୟ ଓ ନାଟକ ନାଟିକା )

ମାନସିଂହଙ୍କ ଗଦ୍ୟ ରଚନା ବିଶେଷତଃ, ପ୍ରବନ୍ଧ ଓ ସମାଲୋଚନା, ଚିନ୍ତା ନାୟକ ମାନସିଂହଙ୍କର ପ୍ରକୃତ ପରିଚୟ ପ୍ରଦାନ କରିଥାଏ । ଖ୍ରୀ: 1930 ରୁ 1973 ପର୍ଯ୍ୟନ୍ତ ତାଙ୍କର ପ୍ରବନ୍ଧ ଓ ସମାଲୋଚନାର ଧାରା ଅବାରିତ ଭାବରେ ଗତିକରି ଚାଲିଥିଲା । ଆଲୋଚନାର ସୁବିଧା ପାଇଁ, ପ୍ରବନ୍ଧ ଓ ଆଲୋଚନାର ଏକ ତାଲିକା ପ୍ରଦାନ କରାଗଲା ।

## ॥ ମାନସିଂହଙ୍କ ବିଗ୍ଚରଧାରା ॥

### ପ୍ରବନ୍ଧ ଓ ସମାଲୋଚନା 1

492: ପ୍ରାଚୀନ ଓଡିଆ କାବ୍ୟ । ଅଗଷ୍ଟ, 1932, ସହକାର, 13/5, ଭାଦ୍ର, 1339,

493: ରବୀନ୍ଦ୍ରନାଥଙ୍କ କବିତା, ଜାନୁ. 1933, ସହକାର, 13/10, ମାଘ, 1340,

494: ସଉଧର୍ମ, ଫେବ୍ରୁ. 1933, ସହକାର, 13/11, 1340 ସାଲ,

495: ରାଧାନାଥ ଓ ମଧୁସୂଦନ, ମାର୍ଚ୍ଚ, 1933, ଯୁଗବୀଣା, 1/3,

496: କବି ଓ ଅଭିଜାତ, ବୈଶାଖ, 1340, ରସଚକ୍ର, 1/3,

497: ଗୋପାଳକୃଷ୍ଣ ପଦ୍ୟାବଳୀ, (1) ଜ୍ୟେଷ୍ଠ, 1340, 1933) ରସଚକ୍ର, 1/4,
(2)ଆଷାଢ, 1340, (1933), ରସଚକ୍ର, 1/5,
(3) ଶ୍ରାବଣ, 1340, (1933), ରସଚକ୍ର 1/6,

498: ରାଧାନାଥ, (1)ଫାଲ୍‌ଗୁନ, 1340, (1933), ରସଚକ୍ର, 1/1,
(2)ଚୈତ୍ର, 1340(1933), ରସଚକ୍ର, 1/2,

499: ପଲ୍ଲୀକବି ନନ୍ଦକିଶୋର, ମେ, 1935, ସହକାର, 16/2,

500: କୋଣାର୍କ(ପ୍ରବନ୍ଧ), ଜୁଲାଇ, 1935, ସହକାର, 16/4,

501: ଉତ୍କଳ ଗାଉଁଲୀ ଗୀତର ପରିଚୟ, ଜୁଲାଇ, 1935, ନବଭାରତ, 2/2,

502: ନବ ସାହିତ୍ୟର ପ୍ରତିଷ୍ଠା, ସେପ୍ଟେମ୍ବର, 1936, କନ୍ୟା, 1340, ନବଭାରତ, 3/4,

503: ଓଡିଆରେ ଲେଖିବି କାହିଁକି? ଅକ୍ଟୋବର, 1936, ନବଭାରତ, 3/5, ତୁଳ, 1343,

504: ୟୁରୋପରେ ଭାରତୀୟ ଚିନ୍ତାଧାରା, ଏପ୍ରିଲ, 1940, ଆରତି, 1/1, ବୈଶାଖ, 1347,

505: ଶ୍ରୀକୃଷ୍ଣ ଓ କଲେଜ ଛାତ୍ର, ଜୁନ, 1940, ଆରତି, 1/3, ଆଷାଢ, 1347,

506: ସ୍ୱର୍ଗୀୟା କୁନ୍ତଳାକୁମାରୀ, ଅଗଷ୍ଟ, 1940, ଭାଦ୍ର, 1347, ଆରତି, 1/5,

507: ମେହେରଙ୍କ ମହତ୍ତ୍ୱ, ଆଷାଢ, 1946, ଶଙ୍ଖ, 2/1,

508: ଆମର ଦୈନନ୍ଦିନ ଜୀବନରେ ବାପୁଜୀ, ଡିସେ. 1947, କାର୍ତ୍ତିକ, ମାର୍ଗଶିର, 1355, ନବଭାରତ, 2/7, 8,

509: ଗାନ୍ଧିଜୀ ଓ ସାହିତ୍ୟ, ଫେବ୍ରୁୟାରୀ–ମାର୍ଚ୍ଚ, 1948, ଉଦୟ, 1/2,

510: କବି ଓ କବିତା(ପ୍ରବନ୍ଧ ସଂକଳନ) 1948,

511: ଜୀବନ ପଥ(ପ୍ରବନ୍ଧ ସଂକଳନ) 17.10.1948,

512: ମୁଁ କାହିଁକି ଲେଖେ ? 1–7–1950, ଡଗର, 14/1, ପୃ–12–14, 17,

513 ଯୌନ ଓ ଯବନିକା(ପ୍ରତିବାଦ ପ୍ରବନ୍ଧ), ନଭେମ୍ବର, 1950, ଝଙ୍କାର, 2/8,

॥ ମାନସିଂହଙ୍କ ବିଗ୍ରହଧାରା ॥

514: ଏକମାତ୍ର ମନୁଷ୍ୟଧର୍ମ ବୌଦ୍ଧଧର୍ମ(1) ମାର୍ଚ୍ଚ, 1951, ଝଙ୍କାର, 2/12,
515: ଏକମାତ୍ର ମନୁଷ୍ୟଧର୍ମ ବୌଦ୍ଧଧର୍ମ, (2) ସେପ୍ଟେମ୍ବର, 1951, ଝଙ୍କାର, 3/6,
516: ଓଡିଆ ସମାଜ ଓ ସାହିତ୍ୟ, (ପ୍ରବନ୍ଧ ସଙ୍କଳନ) 1951, ପ୍ରଥମ ମୁଦ୍ରଣ,
517: ଓଡିଶାର ଗାଉଁଲି ଗୀତ, 1951,
518: ଭାଷାତତ୍ତ୍ୱର ଅପପ୍ରଗ୍ରହ, ଜାନୁୟାରୀ, 1954, ଝଙ୍କାର, 5/10,
519: ପୁନର୍ବସତିର ସ୍ୱରୂପ, 19.11.1955, ସମାଜ,
520: ବୁଦ୍ଧ ଓ ବୁଦ୍ଧବାଣୀ, 24.5.1956, ସମାଜ,
521: ଆମେ କାହିଁକି ଏପରି ଦୀନହୀନ ଭାବେ, 19.11.1956,
522: ଉତ୍କଳର ସ୍ମରଣ କବି ଗୋଦାବରୀଶ, ଅଗଷ୍ଟ, 1956, ଝଙ୍କାର, 8/5,
523: ଉତ୍କଳର ଜଣେ ଅଜ୍ଞାତ କବି, ସେପ୍ଟେମ୍ବର, 1956,
524: ଓଡିଆ ସାହିତ୍ୟ ପରିଚୟ, 24.12.1957,
525: ମାଟିର ମହାକବି ସାରଳା ଦାସ, 1958,
526: ସାହିତ୍ୟରେ ନୂତନ ଭାବଧାରା, ଜାନୁୟାରୀ, 1958, ଝଙ୍କାର, 9/10,
527: ଓଡିଶୀ ନୃତ୍ୟର ସମ୍ମାନ, 24.4.1958, ପ୍ରଜାତନ୍ତ୍ର,
528: ରାମାୟଣ ଓ ବାଲ୍ମୀକି, ବନଫୁଲ,
529: ଏହି କି ଆମର ସାହିତ୍ୟ ଚର୍ଚ୍ଚା ?
530: ଛାତ୍ର ବିଶୃଙ୍ଖଳା ଦଣ୍ଡିତ ହେଉ,
531: ଓଡିଆ ଜାତିର ପ୍ରସ୍ତୁର କାବ୍ୟମାଳା,
532: ଓଡିଆ ଭାଷା ଓ ସାହିତ୍ୟ, ଜୁନ, 1959, ଝଙ୍କାର, 11/3, ପୃ.359-367,
533: ସ୍ୱର୍ଗତ କବି ପଦ୍ମଚରଣ ପଟ୍ଟନାୟକ, ଫେବୃ. 1960, ଆସନ୍ତାକାଲି, 10/2,
534: କଟକ ଓ ଓଡିଶାର ସଂସ୍କୃତି, 25.11.1960,
535: ବାପୁଜୀଙ୍କ ଦାନ, 2.10.1960,
536: ଯୋଗୀ ମେ' 1962, ଝଙ୍କାର, 13/2,
537: ବୁଦ୍ଧ ପଥ —ସତ୍ୟଜନର ପଥ, 29.4.1961, କଳିଙ୍ଗ,
538: ରବୀନ୍ଦ୍ର ଜନ୍ମ ଶତବାର୍ଷିକ ଉପଲକ୍ଷେ—ରବୀନ୍ଦ୍ରନାଥ' (ପ୍ରବନ୍ଧ) 6.5.1961, କଟକ,
539: ନୂତନ କବିତାର ତନୁତ୍ୟାଗ, ଜୁଲାଇ, 1961, ଆସନ୍ତାକାଲି, 11/7,

॥ ମାନସିଂହଙ୍କ ବିଗ୍ଧରଧାରା ॥

540: ଓଡ଼ିଆ ସାହିତ୍ୟର ଉନ୍ନୟନ ଯୋଜନା, 1961, ନବଜୀବନ, –/6/6 ପୃ·325–334,
541: ଓଡ଼ିଆ ସାହିତ୍ୟକୁ ରାଧାନାଥଙ୍କ ଦାନ, ଏପ୍ରିଲ, 1961, ଡଗର, 24/10, ରାଧାନାଥ ବିଶେଷାଙ୍କ,
542: ରାଧାନାଥଙ୍କ ପ୍ରତି ଶ୍ରଦ୍ଧା ନିବେଦନ, ଅଗ–ସେପ୍ଟେ· 1961, ଡଗର, 25/2, 3,
543: ଅହିତାଗ୍ନିକା, ମହିୟସୀ ନାରୀ, ସଂ–ଶ୍ରୀମତୀ ହେମଲତା ମାନସିଂହ,
544: ଓଡ଼ିଆ ପଲ୍ଲୀକବିତାର ହୁଲ୍ଲୀଷକ ମାର୍ଚ୍ଚ–ଏପ୍ରିଲ, 1962, ନବଜୀବନ, 6/12, ପୃ·732, –?,
545: ବୁଦ୍ଧ–ଦୃଷ୍ଟି 20·5·1962, କଳିଙ୍ଗ,
546: ତରୁଣ ଗବେଷକ, ଚିତ୍ତରଞ୍ଜନ, -ଝଙ୍କାର, 7/3, ପୃ· 273–77,
547: ମାନବିକତାର କବି ମେହେର, ଅଗଷ୍ଟ, 1962, ନବଜୀବନ, 7/5, 273–34ପୃ·
548: ପଣ୍ଡା ଓ ମେହେର, ଅକ୍ଟୋବର, 1962, ତୁଳା, 1370, ଝଙ୍କାର, 14/7,
549: ଜାତୀୟ ସାହିତ୍ୟର ଇତିହାସ, ଜାନୁୟାରୀ, 1963, ନବଜୀବନ, 7/10,
550: ଗୀତା ଓ ଆମର ଦୈନନ୍ଦିନ ଜୀବନ ଫେବ୍ରୁ–ଏପ୍ରିଲ, 1963, ନବଜୀବନ 7/11, 12,
551: ସର୍ବଲୋକ ମହେଶ୍ୱରମ୍, ଜୁନ୍–ଅଗଷ୍ଟ, 1963, ନବଜୀବନ 8/3, 4,
552: ସନ୍ନ୍ୟାସୀ ଓ ସଂସାର, ଜୁଲାଇ, 1964, ସମାଜ, ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟା।
553: ଓଡ଼ିଶାରେ ବୌଦ୍ଧ ଧର୍ମର ପ୍ରଭାବ, 23·5·1967, ସମାଜ,
554: ଗର୍କୀଙ୍କ ଗ୍ରନ୍ଥ ପଠନରେ, ଜୁଲାଇ, 1968, ଝଙ୍କାର, 20/4,
555: ଓଡ଼ିଶା ଓ ଜଗନ୍ନାଥ, ଜୁଲାଇ, 1969, ଉତ୍କଳ ପ୍ରସଙ୍ଗ
556: ବୁଦ୍ଧ ଓ ମାନବିକ ଐକ୍ୟ, 25·5·1970, ସମାଜ,
557: ବଡ ରୋଗର ଛୋଟ ଚିକିତ୍ସା, 26·7·1970, ସମାଜ,
558: ସ୍ୱ–ରାଜ୍ୟ, ଶୁ–ରାଜ୍ୟ ଓ ସୁ–ରାଜ୍ୟ, 15·8·1970, ସମାଜ,
559: ଚଲାବାଟର କଥା (ଗାନ୍ଧୀ ଶତବାର୍ଷିକ) ଜୁଲାଇ, 1970, ସମାଜ, ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟା,
560: ଆମର ଇତିହାସ ଓ ଅଗ୍ରଗତି, ଫେବୃୟାରୀ, 1972, ଝଙ୍କାର 23/11,
561: ଭାରତରେ କର୍ତ୍ତବ୍ୟବୋଧ, ମେ' 1972, ନବରବି, 2/11,
562: ଇଂଗ୍ ଭାରତୀୟ ସାହିତ୍ୟ, ଅକ୍ଟୋବର, 1972, ନବରବି, 3/4,
563: ଯେଉଁମାନେ ଗାନ୍ଧୀଙ୍କୁ ମହାତ୍ମା କଲେ(1) ଅକ୍ଟୋବର, 1972, ନବରବି, ଆଲୋକ, 1/2,
564: ଜୀବନର ଚରମ ପ୍ରଶଂସନୀୟତା କେଉଁଠି ? ନଭେମ୍ବର, 1972, ନବରବି, 3/5,
565: ଯେଉଁମାନେ ଗାନ୍ଧୀଙ୍କୁ ମହାତ୍ମା କଲେ(2) ନଭେମ୍ବର, 1972, ଆଲୋକ, 1/3,
566: ଶାନ୍ତି ଓ ସଭ୍ୟତାର ଶ୍ରେଷ୍ଠ ଦୂତ ଗୌତମ ବୁଦ୍ଧ, 8·11·1972, ସମାଜ,

॥ ମାନସିଂହଙ୍କ ବିଗ୍ରହଧାରା ॥

567: ଓଡିଆମାନେ ପଛୁଆ ଓ ଦରିଦ୍ର କାହିଁକି ? ଡିସେମ୍ବର, 1972, ନବରବି,3/6,
568: ଯେଉଁମାନେ ଗାନ୍ଧୀଙ୍କୁ ମହାତ୍ମା କଲେ(3) ଆଲୋକ,2/1,
569: ଯେଉଁମାନେ ଗାନ୍ଧୀଙ୍କୁ ମହାତ୍ମା କଲେ(4) ଆଲୋକ,2/2,
570: ଆମ ଗଣତନ୍ତ୍ରର ଭବିଷ୍ୟତ(1) ଜାନୁୟାରୀ, 1973, ନବରବି, 3/7,
571: ଯେଉଁମାନେ ଗାନ୍ଧୀଙ୍କୁ ମହାତ୍ମା କଲେ(5) 1973, ଆଲୋକ, 2/3,
572: ଆମ ଗଣତନ୍ତ୍ରର ଭବିଷ୍ୟତ(2) ମାର୍ଚ୍ଚ, 1973, ନବରବି, 3/9,
573: ପାଉଣ୍ଡ ଚେନ୍ଦା ଏବଂ ଗ୍ରେଟ୍ରେଣ୍ଡ, ଏପ୍ରିଲ, 1973, ନବରବି, 3/10,
574: ସେ ଦେଶର ନାରୀ ଓ ଏ ଦେଶର ପୁରୁଷ, ଜୁନ୍, 1973, ନବରବି, 3/12,
575: ଶ୍ରୀଅରବିନ୍ଦ ଓ ମୁଁ, ଅଗଷ୍ଟ, 1973, ନବରବି, 4/2,
576: ଏହିକି ଗୁରୁଜନର ଗୁରୁତ୍ୱ, 23.10.1973,
577: ମୁଁ ତାଙ୍କୁ କେବଳ ଦୂରରୁ ଜାଣିଥିଲି, 1973, ଉତ୍କଳ ସାହିତ୍ୟ, ନୂତନ ପର୍ଯ୍ୟ, 1/1,
578: ମଲ୍ଲ, ମୋଜେସ୍ ଓ ମଧୁସୂଦନ, ଅଗଷ୍ଟ, 1974, ନବରବି, 5/2,
579: ଓଡିଆ ଜ୍ଞାନକୋଷର ଜନ୍ମ ଓ ମୃତ୍ୟୁ, ମେ' 1979, ମାସିଂହ ପରିକ୍ରମା, ପୂଜ୍ୟପୂଜା ସଂସଦ, ଓଡିଶା,
580: ବିପ୍ଳବ ମିଳନ ଓ ଲେଖକ ସମ୍ମେଳନ, 1979, ମାନସିଂହ ପରିକ୍ରମା, ଓଡିଶା ପୂଜ୍ୟପୂଜା ସଂସଦ,
581: ଭଗବତୀ ସ୍ତୁତି, 1943: ସହକାର, 23/11,
582: ଓଡିଆ ସାହିତ୍ୟରେ ରୋମାଣ୍ଟିସିଜମ୍, ଓଡିଆ ସମାଜ ଓ ସାହିତ୍ୟ,
583: ଓଡିଆ ସାହିତ୍ୟରେ ନୂତନତ୍ୱ, 1941,
584: ଓଡିଶାର ସାମାଜିକ ଜୀବନ, ଓଡିଆ ସାହିତ୍ୟ ଓ ସମାଜ,
585: ଓଡିଆ କୃଷ୍ଟି, 1941, ସହକାର, 22/2,
586: ଜୀବଧର୍ମ୍ମ ଓଡିଆ ସାହିତ୍ୟ ଓ ସମାଜ,
587: ପ୍ରତ୍ୟକ୍ଷ ଅନୁଭବର କବି ସାରଳା ଦାସ,
588: ଓଡିଶାର ପ୍ରାକୃତିକ ସଂପଦ,
589: ମହାର୍ଘ ଜୀବନ ଓ ସରକାରଙ୍କ କର୍ତ୍ତବ୍ୟ, ପ୍ରଜାତନ୍ତ୍ର,
590: ଉତ୍କଳୀୟ ସାହିତ୍ୟ ଚର୍ଚ୍ଚା,
591: ଆମ ମାନଙ୍କ ଅଧଃପତନ, ଅଗଷ୍ଟ ପନ୍ଦର, ଶୁକ୍ରବାର,
592: ଉତ୍କଳୀୟ ପ୍ରସ୍ତର କାବ୍ୟମାଳା,

॥ ମାନସିଂହଙ୍କ ବିସ୍ତୃଧାରା ॥

593: କଷ୍ଟ କଳୁଷର ପ୍ରତିକ୍ରିୟା,
594: ଏକ ଓ ବିଶାଳ ଉତ୍କଳ,
595: ଆମ ମନ୍ଦିର ଓ ଆମେରିକା, ପ୍ରଜାତନ୍ତ୍ର,
596: ସର୍ବ ଭାରତୀୟ ନାଟକ ଓ ରଙ୍ଗମଞ୍ଚ, ଏପ୍ରିଲ 13, ପ୍ରଜାତନ୍ତ୍ର, ବିଷୁବ ବିଶେଷାଙ୍କ,
597: ସର୍ବୋଦୟ କାହିଁକି ?
598: ବ୍ୟାସଦେବ ଓ ଭାରତୀୟ ସଂସ୍କୃତି, ବନଫୁଲ,

*. ଲେଖା ତାଲିକାର କେତେକ ଲେଖାରେ ସମୟ ବା ପ୍ରକାଶନ ପତ୍ର ପତ୍ରିକା ସୂଚନା ଦିଆଯାଇ ନାହିଁ। ଡକ୍ଟର ମାୟାଧର ମାନସିଂହଙ୍କ ଯୋରିଆ ସାହି କଟକସ୍ଥ ବାସ ଭବନ ରୁ ମାନସିଂହଙ୍କର ବ୍ୟକ୍ତିଗତ ସାଇତରୁ ଲେଖା ସଂଗ୍ରହ ସମୟରେ, କେତେକ ଲେଖା ପାଣ୍ଡୁଲିପି ଆକାରରେ ଓ କେତେକ ପ୍ରକାଶିତ ଲେଖାର କାଳ ଚିହ୍ନିତ ହୋଇ ନଥିବାର ଦେଖିବାକୁ ମିଳିଥିଲା । ସେ ସଂପର୍କରେ ଅଧିକ ଅନୁସନ୍ଧାନ ବିଧେୟ ।

## ସଂପାଦକୀୟ ଓ ମୁଖବନ୍ଧ

ଡଃ ମାନସିଂହ ବିଭିନ୍ନ ପତ୍ର ପତ୍ରିକା ସହିତ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ସଂପୃକ୍ତ ଥିଲେ । ବିଭିନ୍ନ ପୁସ୍ତକର ମୁଖବନ୍ଧ, କବିପରିଚିତି ବା ମନ୍ତବ୍ୟ ମଧ୍ୟ ଲେଖିଥିଲେ । ଏହି ପର୍ଯ୍ୟାୟରେ ତାର ଏକ ତାଲିକା ପ୍ରଦାନ କରାଯାଉଅଛି । ଭବିଷ୍ୟତରେ ଏ ଅଂଶରେ ଅଧିକ ସଂଗ୍ରହ କରାଯାଇ ପାରେ ।

599: ଆରତି ପତ୍ରିକା ସଂପାଦକୀୟ, 1/1 ଠାରୁ 1/6, ପର୍ଯ୍ୟନ୍ତ
600: ଆରତି( ସଂପାଦକୀୟ) ଆରତି, 1/1, 1940,
601: ସଂସ୍କୃତି ସଂସ୍କାର(ଟିପ୍ପଣୀ) ମେ', 1940 ଆରତି, 1/2,
602: ଜୋଚ୍ଛନା (ପୁସ୍ତକ ସମୀକ୍ଷା ଭଦ୍ରା ଅମାବାସ୍ୟା, 1347, ଆରତି, 1/3,
603: ଗାନ୍ଧି ଜୟନ୍ତି ଓ ରବୀନ୍ଦ୍ରନାଥ(ଟିପ୍ପଣୀ) ସେପ୍ଟେମ୍ବର, 1940, ଆରତି, 1/6,
604: ଶଙ୍ଖ ପତ୍ରିକା(ସଂପାଦକୀୟ) ଆଷାଢ, 1945, ଶଙ୍ଖ, 1/1,
605: ଉତ୍କଳ ବିଶ୍ୱବିଦ୍ୟାଳୟର ଅଲୌକିକ ଓ ଅନ୍ୟାୟ ସିଦ୍ଧାନ୍ତ, (ସଂପାଦକୀୟ) ଶଙ୍ଖ, 1/3, (1945)
606: ଶଙ୍ଖ ପତ୍ରିକା(ସଂପାଦକୀୟ) ଶଙ୍ଖ, 1/4, (1945)
607: ଓଡିଆ ସାହିତ୍ୟରେ ନୂଆ ପୁରୁଣା(ସଂପାଦକୀୟ), ଶଙ୍ଖ, 1/5, (1945),
608: କଳିଙ୍ଗ ଐତିହାସିକ ସଂଘ(ସଂପାଦକୀୟ) ପୌଷ, 1945, ଶଙ୍ଖ, 1/7,

॥ ମାନସିଂହଙ୍କ ବିସ୍ତୃତଧାରା ॥

609: ନୀଳକଣ୍ଠ ଓ କୋଣାର୍କେ( ପଣ୍ଡିତ ନୀଳକଣ୍ଠଙ୍କ କୋଣାର୍କେ କାବ୍ୟର ମୁଖବନ୍ଧ)
610: ଶଂଖ (ସମ୍ପାଦକୀୟ) ଶଂଖ, 1/9, 1/10, 1/11, 12,
611: ଓଡିଆ ଶିଳ୍ପୀ ଉପେନ୍ଦ୍ର ମହାରଥୀ, ଓଡିଆ ଟାଇପ୍ ରାଇଟର ର ଉଦ୍ଭାବକ ଗଂଗନାଥ ମହାପାତ୍ର, ଶିଳ୍ପୀ ମୁରଲୀଧର ଟାଲ୍ଲୀ, (ସମ୍ପାଦକୀୟ) ମାଘ, 1946, ଶଂଖ,
612: ମଶାଣି ର ଫୁଲ, ମନର ମଣିଷ, ଓ ଲବଂଗଲତା ଦେବୀଙ୍କ ବହିର(ପୁସ୍ତକ ସମୀକ୍ଷା) ଆଷାଢ, 1946, ଶଂଖ, 2/1,
613: କବି ନବୀନ ଚନ୍ଦ୍ର, ଫକୀରମୋହନ, ଓଡିଶା ଆସେମ୍ବ୍ଲିରେ ଓଡିଆ ଭାଷା, ଲେଖକ ସହଯୋଗ ସମିତି(ସମ୍ପାଦକୀୟ) 1946, ଶଂଖ, 2/1,
614: ଯୌନ ଓ ଯବନିକା ର ଆଲୋଚନା(ସମ୍ପାଦକୀୟ) ଡିସେମ୍ବର, 1950, ଝଂକାର 2/1,
615: ଓଡିଆ ବିଶ୍ୱକୋଷ ନେଇ ଧଳଙ୍କୁ ଏକ ଚିଠି (ସମ୍ପାଦକୀୟ), ଅଗଷ୍ଟ, 1953, ଝଙ୍କାର, 5/5,
616: ନାଟକ ବିଗ୍ରହ(ଲେ-ସର୍ବେଶ୍ୱର ଦାସ) ବହିର ମୁଖବନ୍ଧ, ତା- 2.9.55,
617: ଚିଲିକା, (ଲେ-ରାଧାଚରଣ ପଣ୍ଡା, 1977) ବହିର ପରିଚୟ, 1955,
618: ମୂଲ୍ୟାଙ୍କନ(ପୁସ୍ତକ ସମୀକ୍ଷା) ଏପ୍ରିଲ, 1956, ସମାବେଶ,
619: ସଂକଳନ, ଏପ୍ରିଲ, 1956, ସମାବେଶ,
620: ବ୍ୟାସକବି ଫକୀରମୋହନ(ଲେ-ନଟବର ସାମନ୍ତରାୟ) ପୁସ୍ତକ ସମ୍ପର୍କରେ ଅଭିମତ, ତା-11.6.1957,
621: ଉତ୍ସ(କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ କବିତା ପୁସ୍ତକ ସମ୍ପର୍କରେ) ମନ୍ତବ୍ୟ, 9.4.1959, ସମାଜ
622: ଜୁଆର ଯେଉଁଠି ଉଠେ(ଲେ-ମନୋରମା ମହାପାତ୍ର-1960)ପୁସ୍ତକର ଭୂମିକା, 24.9.1960
623: ଆଗ୍ନେୟଙ୍କ ନବାସ୍ଥର୍ଯ୍ୟ (ଐତିହାସିକ ପରମାନନ୍ଦ ଆଗ୍ନେୟଙ୍କ ପୁସ୍ତକ ପରିଚୟ) ନବଜୀବନ, 8/2, ମେ'ଜୁନ-63,
624: ନିର୍ବାପିତ ଆଗ୍ନେୟଗିରି(ବ୍ରଜମୋହନ ପଣ୍ଡାଙ୍କ ପୁସ୍ତକ ସମ୍ପର୍କରେ)ନବଜୀବନ 8/2, ମେ-ଜୁନ, 63,
625: ତ୍ରିପାଠୀଙ୍କ ନବକାବ୍ୟ(କବି କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ ପୁସ୍ତକ ସମ୍ପର୍କରେ ଅଭିମତ)ନବଜୀବନ, 1963, ମେ-ଜୁନ,
626: ଭାରତୀୟ ସଂଗୀତ(ଲେ-ନୀଳମାଧବ ପାଣିଗ୍ରାହୀ-1965)ବହିର ପରିଚୟ ଓ ପ୍ରରୋଚନା ।
627: ବାଳକୃଷ୍ଣ କର(ଅଭିମତ) 1966, ସାହିତ୍ୟିକ ବାଳକୃଷ୍ଣ,
628: ଜିରାଣୀର ବିନମ୍ର ବାଣୀ(ଜାପାନ ଜାତକ-1966, ଲେ-ଶ୍ରୀ ରାଧାନାଥ ରଥ, ଯୁଗଯନ୍ତ୍ରାଳୟ)ର ମୁଖବନ୍ଧ, 27.7.63,
629: ଉର୍ଜ୍ଜନା(ସତ୍ସଂଗ ଓଡିଆ ମୁଖପତ୍ର) ସମ୍ପାଦକୀୟ, ଟିପ୍ପଣୀ ଇତ୍ୟାଦି, ଜାନୁୟାରୀ-1967 ରୁ 1968, ଜାନୁୟାରୀ,
630: ସେତୁ(ଗଳ୍ପ ବିଷୟ) ଫେବ୍ରୁୟାରୀ-1972, ଝଙ୍କାର 23/11,

॥ ମାନସିଂହଙ୍କ ବିଗ୍ରହଧାରା ॥

631: ଫକୀର ମୋହନ ସମୀକ୍ଷା(ସମୀକ୍ଷା)

632: ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀ –ମୁଖବନ୍ଧ,

633: ଓମାର ରୁବାଇ ମୁଖବନ୍ଧ,ଅନୁବାଦ–ଜାନକୀବଲ୍ଲଭ ମହାନ୍ତି । 21·11· 1961,

634: କଷଟିପଥର(ଆହୁତି,କବିତାପୁସ୍ତକ–କୃଷ୍ଣଚନ୍ଦ୍ର ତ୍ରିପାଠୀ) ଅଭିମତ– 1969,

**ଭାଷଣ ଓ ଚିଠିପତ୍ର**

ଡଃ ମାନସିଂହ ବିଭିନ୍ନ ସଭା ସମିତିରେ ସଭାପତି ଅଭିଭାଷଣ ନିମନ୍ତେ ଉତ୍ତମ ଭାବରେ ପ୍ରସ୍ତୁତ ହୋଇ ଯାଉଥିଲେ । ସଭାରେ ପ୍ରଦତ୍ତ ଭାଷଣ ବିଭିନ୍ନ ପ୍ରବନ୍ଧ ଆକାରରେ ମୁଦ୍ରିତ ଓ କେତେବେଳେ ପ୍ରବନ୍ଧର ସାରାଂଶ ମୁଦ୍ରିତ ଅବସ୍ଥାରେ ପ୍ରକାଶିତ ହୋଇଥିଲା । ସେ ଗୁଡ଼ିକ ମଧ୍ୟରୁ କେତେକର ତାଲିକା ଉଲ୍ଲେଖ କରାଗଲା ।

635: ପୁଷ୍ପିତା ଲେଖକର କୈଫିୟତ(ଚିଠି) ସେପ୍ଟେମ୍ବର–1930,ସହକାର, 11/6,ଆଶ୍ୱିନ,1337,

636: ଫକୀରମୋହନଙ୍କ ଅଂଶ କର୍ଣ୍ଣେ(ଚିଠି) 1932,ସହକାର, 13/5, ପୃ·473,

637: ମାନସିଂହଙ୍କ ଏକ ଚିଠି, 1340,ପୌଷ,ସହକାର, 13/9, ପୃ–354–55,

638: କୁନ୍ତଳା କୁମାରୀ(ଭାଷଣ) 24·8·1940 ରେ ନବଯୁଗ ସାହିତ୍ୟ ପରିଷଦରେ ଭାଷଣ, ଅଗଷ୍ଟ, 1940, ଆରତି, 1/5,

639: ଓଡ଼ିଆ ସାହିତ୍ୟର ନୂତନତ୍ୱ(ଭାଷଣ) 1941,ପାରଳା ମହାରଜା କଲେଜ ଓଡ଼ିଆ ସାହିତ୍ୟ ସମାଜରେ ଭାଷଣ ।

640: ଓଡ଼ିଆ ଜାତିର ବୈଶିଷ୍ଟ୍ୟ(ଭାଷଣ), 1942,କଲିକତା ପ୍ରବାସୀ ଉତ୍କଳ ସାହିତ୍ୟ ସମ୍ମିଳନୀରେ ସଭାପତି ଭାଷଣ

641: ରବୀନ୍ଦ୍ର ପୂଜା, 1943,ସମ୍ବଲପୁରରେ ରବୀନ୍ଦ୍ର ବାର୍ଷିକୋତ୍ସବରେ ଭାଷଣ ।

642: ସାହିତ୍ୟର ସାଧନା(ଭାଷଣ) ମେ, 1950 ବିଷୁବ ମିଳନର ପ୍ରଥମ ଅଧିବେଶନରେ ସଭାପତି ରୂପେ ଭାଷଣ, ଝଙ୍କାର, 2/2, ପରେ ନଭେ·1973,

643: ବାଲେଶ୍ୱର ସାହିତ୍ୟ ସମ୍ମିଳନୀରେ ସଭାପତିଙ୍କ ଅଭିଭାଷଣ(2) ଅଗଷ୍ଟ, 1950,ସିଂହ, 1356, ନବଭାରତ, 2/10, ପୃ· 360–64,

644: ଦେଶ ଓ ରବୀନ୍ଦ୍ରନାଥ(ଭାଷଣ, 4·5·1950,ସତ୍ୟବାଦୀ ନବ ପର୍ଯ୍ୟାୟ, 1/3,

645: ସଂପାଦକୀୟ ସମ୍ବନ୍ଧରେ ମୁଖ୍ୟ ସଂପାଦକ ଡଃ ମହତାବଙ୍କୁ ମାନସିଂହଙ୍କ ପତ୍ର, 1950,ଡିସେମ୍ବର, ଝଙ୍କାର,

646: ନଟବର ସାମନ୍ତରାୟଙ୍କୁ ଏକ ପତ୍ର, 11·11·1955, (ବ୍ୟାସକବି ଫକୀରମୋହନ–ପୁସ୍ତକ ସଂପର୍କରେ)

647: ମୋର ନମସ୍କାର(ଚିଠି), 1956,ଉତ୍କଳ ସାହିତ୍ୟ ନୂଆ ପସ୍ତ,

648: ଓଡ଼ିଆ ସାହିତ୍ୟ ସମାଲୋଚନାର ଉତ୍ତର 24·12·1957,

649: ଗୁରୁଚନ୍ଦ୍ରଙ୍କ ପାଇଁ ମାନସିଂହଙ୍କ ଶୋକବାର୍ତ୍ତା, ଚତୁରଙ୍ଗ, 1/10,

651: ଶ୍ରୀମତୀ ମାଳତୀ ଦେବୀଙ୍କୁ ଏକ ଖୋଲା ଉତ୍ତର, (ପ୍ରବନ୍ଧ ଭଳି ଏକ ଚିଠି),

652: ଓଡ଼ିଶାରେ ଦୁଃସ୍ଥ ବୁଦ୍ଧିଜୀବୀର ଅପମୃତ୍ୟୁ(ଚିଠି) 29·6·61, ସମାଜ,

653: ଡଃ ଅସିତ ଚକ୍ରବର୍ତ୍ତୀଙ୍କୁ ପତ୍ର(ପତ୍ର ଭାରତୀ ସମ୍ପର୍କରେ ଅଭିମତ) 4·9·1964,

654: ସମାଲୋଚନାର ଧାରା(ଡଃ ନିତ୍ୟାନନ୍ଦ ଶତପଥୀଙ୍କୁ ପତ୍ର,) ମାନସିଂହଙ୍କ ଗୀତିନାଟ୍ୟର କେତୋଟି ଚରିତ୍ର—ଡ଼େ·ନିତ୍ୟାନନ୍ଦ ଶତପଥୀଙ୍କ ପ୍ରବନ୍ଧରେ ଏକ ଦୀର୍ଘ ପତ୍ର, ବନଫୁଲ ଦ୍ୱିତୀୟ ବର୍ଷ ପ୍ରଥମ ସଂଖ୍ୟା, 1968,

655: ନବପତ୍ରକୁ ଶୁଭେଚ୍ଛା(ଚିଠି) 27·11·1967,

656: ହୀରାଖଣ୍ଡ ମୋହନ—ବ୍ରଜମୋହନଙ୍କ ସ୍ମରଣେ, ଉତ୍କଳ ସାହିତ୍ୟ ସମାଜରେ 20·12·1972ରେ ଭାଷଣ,

657: ରକ୍ତାକ୍ତ ଅଶ୍ରୁ, (ଚିଠି) 1973, ଉତ୍କଳ ସାହିତ୍ୟ

658: ଡଃ କୁଞ୍ଜବିହାରୀ ଦାଶଙ୍କୁ ପତ୍ର, 8·6·1973,

ଜୀବନୀ ଓ ଆତ୍ମଜୀବନୀ

659: ଆଦର୍ଶ ଜୀବନୀ ମାଳା ନୂତନ ସଂସ୍କରଣ, 1954, ଓଡ଼ିଶା ପବ୍ଲିଶିଂ ହାଉସ କଟକ,

660: ଶାରଦା ଦେବୀ (ଜୀବନୀ) ଏପ୍ରିଲ, 1954, ଝଙ୍କାର, 6/1, ପୃ·152–154,

661: ଜୀବନୀ ଓ ପ୍ରବନ୍ଧ, 1956, ଦ୍ୱିତୀୟ ସଂସ୍କରଣ, ପ୍ରଥମ ମୁଦ୍ରଣ,

662: ସାଧକ ଆର୍ତ୍ତବଲ୍ଲଭ, ଆର୍ତ୍ତବଲ୍ଲଭ ସ୍ମରଣିକା

663: ଶିକ୍ଷାବିତ୍‌ର ଗାଥା 1965, ପୁନିଆଁ, ଓଡ଼ିଶା ବୁକ୍‌ଷ୍ଟୋର, କଟକ–2,

664: ସ୍ୱର୍ଗତ ଆଇଜାକ୍ ସାନ୍ତ୍ୱ, 15·2·1972, ସମାଜ,

665: ସରସ୍ୱତୀ ଫକୀରମୋହନ, 15·12·1972, ଗ୍ରନ୍ଥ ମନ୍ଦିର, କଟକ,

666: ବିଦ୍ୟୁତ ପ୍ରଭା (ଜୀବନୀ) 1973, ନଭେମ୍ବର, ନବରବି,

ଭ୍ରମଣ କାହାଣୀ:

667: ପଶ୍ଚିମ ପଥିକ, ଜାନୁୟାରୀ, 1934, ନବଭାରତ, 4/8 ରୁ କ୍ରମଶଃ ପ୍ରକାଶିତ ।

॥ ମାନସିଂହଙ୍କ ବିଗ୍ରହଧାରା ॥

## ପାଠ୍ୟ ପୁସ୍ତକ ଓ ଶିଶୁ ସାହିତ୍ୟ

668: ସାହିତ୍ୟ ପ୍ରଭା(ପାଠ୍ୟ ପୁସ୍ତକ) 1947, ପ୍ର•କଟକ ଟ୍ରେଡ଼ିଂ କମ୍ପାନୀ,

669: ଗଳ୍ପ ମଞ୍ଜରୀ (ପାଠ୍ୟ ପୁସ୍ତକ), 1, 2, 3, 1947,

670: ନାଗରିକ ପାଠମାଳା (ପାଠ୍ୟପୁସ୍ତକ), ପ୍ର• ଓଡ଼ିଶା ପବ୍ଲିସିଂ ହାଉସ କଟକ, ପରିମାର୍ଜିତ ସଂସ୍କରଣ, 1953,

671: ତ୍ୟାଗ ଓ ଚିଲିକା(2) ଗଦ୍ୟ ସଂଗ୍ରହ ସଂ—ଶିବ ପ୍ରସାଦ ଦାଶ, 1950,

672: ଆଦର୍ଶ ଜୀବନୀ ମାଳା(ପାଠ୍ୟ ପୁସ୍ତକ) ନୂତନ ସଂସ୍କରଣ, 1954, ଓଡ଼ିଶା ପବ୍ଲିସିଂ ହାଉସ ।।।

## ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ:

673: ଶିକ୍ଷାର ମୌଳିକ ତତ୍ତ୍ୱ ଓ ଭାରତ ପ୍ରତି ତା'ର ପ୍ରୟୋଗ(1) ଶଙ୍ଖ, 1/1, ଆଷାଢ଼, 1945, ପୃ•45–51,

674: ଶିକ୍ଷାର ମୌଳିକ ତତ୍ତ୍ୱ ଓ ଭାରତ ପ୍ରତି ତାର ପ୍ରୟୋଗ(2) ଶଙ୍ଖ, 1/2, ଶ୍ରାବଣ, 1945, ପୃ•105–112,

675: ଶିକ୍ଷାର ମୌଳିକ ଲକ୍ଷ୍ୟ ଓ ଭାରତ ପ୍ରତି ତାର ପ୍ରୟୋଗ(3)
ପ୍ରାଚୀନ ଭାରତରେ ଶିକ୍ଷା (ବିଜ୍ଞାନ) ଶଙ୍ଖ 1/3, ଭାଦ୍ରବ, 1945, ପୃ•178–185, 182•

676: ଶିକ୍ଷାର ମୌଳିକ ଲକ୍ଷ୍ୟ ଓ ଭାରତ ପ୍ରତି ତାର ପ୍ରୟୋଗ(4),
ଭାରତ ବର୍ଷର ଶିକ୍ଷା ଯୋଜନା ଶଙ୍ଖ, 1/4, 1945, ପୃ•276–285,

677: ରାଷ୍ଟ୍ରୀୟ ଶିକ୍ଷା ଯୋଜନା, ଝଙ୍କାର, 4/7, ଅକ୍ଟୋବର 1952, ପୃ• 760–764•

678: ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ, 15•5•1953, ପ୍ରଥମ ସଂସ୍କରଣ,

679 ଓଡ଼ିଶାରେ ସାମାଜିକ ଶିକ୍ଷା, 23•9•1957, ପ୍ରଜାତନ୍ତ୍ର,

680: ସାମାଜିକ ଶିକ୍ଷାର ପ୍ରକୃତି 20•5•1957, ସମାଜ,

681: ଆଦର୍ଶ ହାଇସ୍କୁଲ, ଜୁଲାଇ, 1958, ଡଗର 22/1,

682: ବିଦ୍ୟାର୍ଥୀ ଓ ବିଦ୍ୟାଳୟର ଆଦର୍ଶ, ସେପ୍ଟେମ୍ବର, 1958, ଡଗର, 22/2, 3,

683: ବେସିକ୍ ଓ ସାଧାରଣ ଶିକ୍ଷା ବ୍ୟବସ୍ଥାର ସଂସ୍କାର, ଅଗଷ୍ଟ, 1959, ନବଜୀବନ, 4/4, ପୃ•241–50,

684: ଶିକ୍ଷାର କି'କଣ' ଓ କାହିଁକି, 8•9•1960,

685: ଜାତି ଓ ବିଶ୍ୱବିଦ୍ୟାଳୟ, 15•12•1961, ପ୍ରଜାତନ୍ତ୍ର,

686: ସାହିତ୍ୟ ଓ ବିଶ୍ୱବିଦ୍ୟାଳୟ, ନବଜୀବନ, 6/10, ଜାନୁ–ଫେବୃ• 1962, ପୃ–597,

687: ବିଶ୍ୱବିଦ୍ୟାଳୟ ବ୍ୟକ୍ତିତ୍ୱ ନବଜୀବନ, 6/10, ଜାନୁ–ଫେବୃ• 1962,

688: ଓଡ଼ିଆ ଓ ଶସ୍ତା ଡିପ୍ଲୋମା, ନବଜୀବନ, 6/10, ଜାନୁୟାରୀ–ଫେବ୍ରୁୟାରୀ–1962,

689: ରାମମୋହନଙ୍କ ସତର୍କବାଣୀ, ନବଜୀବନ, 6/10, ଜାନୁ–ଫେବ୍ରୁ. 1962,

690: ଭାରତୀୟ ଭାଷାର ଏମ୍.ଏ. ଉପାଧି, ନବଜୀବନ, 6/10, ଜାନୁ–ଫେବ୍ରୁ. 1962,

691: ପାଠ୍ୟ ବିଷୟରେ ସହଜାତ ମୂଲ୍ୟ, ନବଜୀବନ, 6/10, ଜାନୁ–ଫେବ୍ରୁ. 1962,

692: ଓଡ଼ିଆ ଏମ୍.ଏ. ସିଲାବସ୍, ନବଜୀବନ, 6/11, ଫେବ୍ରୁ–ମାର୍ଚ୍ଚ, 1962,

693: ମୋ ଭାଷା ଓ ସାହିତ୍ୟର ଅପମାନ, ନବଜୀବନ, 6/11, ଫେବ୍ରୁ– ମାର୍ଚ୍ଚ, 1962,

694: ଇଂରାଜୀ ଏମ୍.ଏ ରଦାୟିତ୍ୱ, ନବଜୀବନ, 6/11, ଫେବ୍ରୁ.–ମାର୍ଚ୍ଚ, 1962,

695: ମାଷ୍ଟର ଅବ୍ ଲିଟେରେଚର ଡିଗ୍ରୀ, ନବଜୀବନ, 6/11, ଫେବ୍ରୁ.–ମାର୍ଚ୍ଚ, 1962,

696: ଶିକ୍ଷା, ଶିକ୍ଷକ, ଶିକ୍ଷାୟତନ, (ପ୍ରବନ୍ଧ) 1966,

697: ବିକେନ୍ଦ୍ରୀକୃତ ବିଶ୍ୱବିଦ୍ୟାଳୟ ଓ ଓଡ଼ିଶାରେ ତାର ଯୋଜନା, 15.8.1962, କଳିଙ୍ଗ,

698: ରାଷ୍ଟ୍ରାୟତ ପାଠ୍ୟ ପୁସ୍ତକାବଳୀର ମାରାତ୍ମକତା (1), ସ୍ୱରାଜ୍ୟ, ମେ'6, 1971,

699: ରାଷ୍ଟ୍ରାୟତ ପାଠ୍ୟ ପୁସ୍ତକାବଳୀର ମାରାତ୍ମକତା(2), ସ୍ୱରାଜ୍ୟ, 15.5.1971,

700: ପ୍ରଚଳିତ ଶିକ୍ଷା ବ୍ୟବସ୍ଥା କି'ସର୍ତ୍ତରେ ତ୍ରୁଟି ପୂର୍ଣ୍ଣ, ଜୁଲାଇ, 1962, ନବରବି,

701: ପାଠ୍ୟ ପୁସ୍ତକାବଳୀର ଜାତୀୟକରଣ ନା ଅପ୍ରଧାନୀକରଣ ।

<u>ଅନୁବାଦ:</u>

702: ଗ୍ରାମୋନ୍ନତିର ରୋମାଞ୍ଚକର କାହାଣୀ, 1956, ନିଉ ଷ୍ଟୁଡେଣ୍ଟସ ଷ୍ଟୋର୍ସ, କଟକ,

703: ଅଥେଲୋ, (ସେକ୍ସପିଅର) 1959, ପ୍ରଥମ ସଂସ୍କରଣ, 1967, ଦ୍ୱିତୀୟ ସଂସ୍କରଣ, ସାହିତ୍ୟ ଏକାଡେମୀ

704: ଗୁରୁ ଗୋବିନ୍ଦ ସିଂହ, 1966, ଗୁରୁ ଗୋବିନ୍ଦ ସିଂହ ଫାଉଣ୍ଡେସନ, ଚଣ୍ଡିଗଡ, ପଞ୍ଜାବ,

705: ଗୁରୁ ନାନକ ବାଣୀ, ମାର୍ଚ୍ଚ, 1973, ନ୍ୟାସନାଲ ବୁକ୍ ଟ୍ରଷ୍ଟ ଅଫ ଇଣ୍ଡିଆ, ଦିଲ୍ଲୀ,

706: ସାର୍ବଜନୀନ ଗୀତା (1) 13.1.1963, ପ୍ର.ଜେ.ମହାପାତ୍ର ଏଣ୍ଡ କୋ, କଟକ,

707: ସାର୍ବଜନୀନ ଗୀତା(2) 1981, ପ୍ର–ଜେ.ମହାପାତ୍ର ଏଣ୍ଡ କୋ. କଟକ,

708: ସାର୍ବଜନୀନ ଗୀତା(3) 1981, ପ୍ରକାଶକ, ଜେ.ମହାପାତ୍ର ଏଣ୍ଡ କୋ:, କଟକ

709: ମହତ ବାଣୀ, 23.11.1966, ପ୍ର. ଜେ.ମହାପାତ୍ର ଏଣ୍ଡ କୋ.

710: ଧମ୍ମପଦ ଟୀକା, (ଅପ୍ରକାଶିତ)

711: ଶ୍ରୀମଦ୍ ଭାଗବତ ଟୀକା, (ଅପ୍ରକାଶିତ)

॥ ମାନସିଂହଙ୍କ ବିଚ୍ଚାରଧାରା ॥

**ବିବିଧ:**

712: ପ୍ରଣୟୀ ଗୋପବନ୍ଧୁ, (ପ୍ରବନ୍ଧ) କବି ଓ କବିତା,
713: ମାନବ ଗୋପବନ୍ଧୁ, (ପ୍ରବନ୍ଧ) କବି ଓ କବିତା,
714: ସେକ୍ସପିଅର, (ଆଲୋଚନା) କବି ଓ କବିତା,
715: କବି ଓ ଲେଖକର ଲକ୍ଷ୍ୟ, (ଆଲୋଚନା) କବି ଓ କବିତା,
716: ଓଡିଆ ସାହିତ୍ୟର ଇତିହାସ; 1967, ପ୍ରକାଶକ, ଗ୍ରନ୍ଥ ମନ୍ଦିର, କଟକ,
717: ଗୀତା ମାହାତ୍ମ୍ୟ, (ଆଲୋଚନା) 1969, ଜେ· ମହାପାତ୍ର ଏଣ୍ଡ କୋ, କଟକ,
718: ସଂକ୍ଷିପ୍ତ ଓଡିଆ ଜ୍ଞାନକୋଷ, 1, 2, 3, ସଂପାଦନା, ପ୍ରକାଶକ, ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର ॥।

ମାନସିଂହଙ୍କ ସମସ୍ତ ଓଡିଆ ରଚନାର କାଳାନୁକ୍ରମିକ ବିବରଣୀ ପ୍ରଦାନ କରିବାର ଲକ୍ଷ୍ୟ, କେବଳ ବର୍ତ୍ତମାନର ଏହି ଚର୍ଚ୍ଚା ନିବନ୍ଧ ନୁହେଁ, ଭବିଷ୍ୟତର ଗବେଷଣା ପାଇଁ ଏହା ଏକ ପଥ ଉନ୍ମୋଚନ କରିପାରିବ । କାରଣ ମାନସିଂହଙ୍କ ସାହିତ୍ୟର ଚର୍ଚ୍ଚା ନିମିତ୍ତ, ତାଙ୍କର ସମସ୍ତ କୃତି ବା ଲେଖାର ତାଲିକା ଓଡିଶାର ବା ଓଡିଶା ବାହାରେ କୌଣସି ସର୍ବ ସାଧାରଣ ପାଠାଗାରରେ ବର୍ତ୍ତମାନ ପର୍ଯ୍ୟନ୍ତ ମିଳିବା ସମ୍ଭବ ହୋଇପାରି ନାହିଁ । ଏପରିକି ଡକ୍ଟର ମାୟାଧର ମାନସିଂହଙ୍କ କଟକ ଥୋରିଆ ସାହିସ୍ଥ ବାସ ଭବନରେ ମଧ୍ୟ ସମସ୍ତ ଲେଖା ବା ଲେଖାର ତାଲିକା ସଂପୂର୍ଣ୍ଣ ଭାବରେ ମିଳିବା ସମ୍ଭବ ହୋଇନାହିଁ ।

ଡଃ ମାନସିଂହଙ୍କର ଅନେକ ଲେଖା, ପତ୍ରପତ୍ରିକା, ବିଭିନ୍ନ ସଂକଳନ ତଥା ପୁସ୍ତକ ରୂପରେ ପ୍ରକାଶିତ ହେବା ସମୟରେ ନାନା ପରିବର୍ତ୍ତିତ ରୂପ ନେଇ ଆତ୍ମ ପ୍ରକାଶ କରିଛି । ପ୍ରଦତ୍ତ ତାଲିକାରେ ଉଭୟ ଲେଖାକୁ ସୂଚୀତ କରାଯାଇଛି । ଶିକ୍ଷା ସମ୍ବନ୍ଧରେ ମାନସିଂହଙ୍କ ଲେଖା 1945 ମସିହାରେ, ଶଂଖ ପତ୍ରିକାରେ ପ୍ରକାଶିତ ହୋଇଛି; ମାତ୍ର ସେହି ସମାନ ଶିରୋନାମାର ଲେଖା ଶିକ୍ଷା ଶିକ୍ଷକ ଓ ଶିକ୍ଷାୟତନରେ ଅନେକ ପରିବର୍ତ୍ତିତ ରୂପ ନେଇଛି । ସେହିପରି ନବଜୀବନ ରେ ପ୍ରକାଶିତ ଲେଖା, 'ଶିକ୍ଷାବିଚିତ୍ର ଗାଥା'ରେ ସମାନ ଶିରୋନାମାରେ ଥିଲେ ମଧ୍ୟ, ତାହା ମଧ୍ୟରେ ଅନେକ ପରିବର୍ତ୍ତନ ହୋଇଛି । ବିଚ୍ଚାରଧାରାର ନିର୍ଣ୍ଣୟ ପାଇଁ ଏ କ୍ଷେତ୍ରରେ ଉଭୟ ଲେଖାର ଉପଯୋଗିତା ରହିଛି । ସେ ଦୃଷ୍ଟିରୁ ଏ ଦୀର୍ଘ ତାଲିକା ପ୍ରଦାନର ଉପଯୋଗିତା ଯଥାର୍ଥ ବୋଲି ଅନୁଭୂତ ହେଉଛି ।

ଶେଷରେ ଏତିକି କୁହାଯାଇ ପାରେଯେ, ଦୈନିକ ପତ୍ରିକା ବା ଅନ୍ୟ ପତ୍ରପତ୍ରିକାରେ ଆଉ କେତେକ ଲେଖା ଥାଇପାରେ, ଭବିଷ୍ୟତରେ ଆହୁରି ଅନୁସନ୍ଧାନ କରି ସମସ୍ତ ଲେଖା ସଂଗ୍ରହ ପାଇଁ ଚେଷ୍ଟା କରାଯାଇ ପାରେ । ବିଜ୍ଞ ତଥା ପ୍ରବୀଣ ଗବେଷକ ମାନେ ଏହି ତାଲିକା ପ୍ରୟୋଗରେ କିଛି ନୂତନ ପଦ୍ଧତି ପ୍ରୟୋଗ କରି ପାରନ୍ତି ।

---

## ଦୁଇ   ମାନସିଂହଙ୍କ ସୃଷ୍ଟି ବିସ୍ତ୍ରବିମର୍ଶର ପୂର୍ବାଧ୍ୟାୟ

ମାନସିଂହଙ୍କ ସୃଷ୍ଟି ସଂପର୍କରେ ବିସ୍ତୃତ ବିବେଚନାକୁ ମୁଖ୍ୟତଃ ତିନିଗୋଟି ପର୍ଯ୍ୟାୟରେ ଭାଗ କରାଯାଇପାରେ ।

ଆଦି ପର୍ଯ୍ୟାୟ————ଖ୍ରୀ: 1930—1956.

ଦ୍ୱିତୀୟ ପର୍ଯ୍ୟାୟ————ଖ୍ରୀ: 1957—1973.

ତୃତୀୟ ପର୍ଯ୍ୟାୟ————ଖ୍ରୀ: 1973—1987.

### ଆଦି ପର୍ଯ୍ୟାୟ

ଆଦି ପର୍ଯ୍ୟାୟରେ କବି ମାନସିଂହଙ୍କ ସୃଷ୍ଟି ସଂପର୍କୀୟ ଆଲୋଚନା, ମୁଖ୍ୟତଃ ସୃଷ୍ଟି ସଂପଦର ସମୀକ୍ଷାମୂଳକ ଆଲୋଚନା ଓ ବିବାଦ ବିସମ୍ବାଦର ଚର୍ଚ୍ଚା । ଏହି ସମୟ ମଧ୍ୟରେ ମାନସିଂହଙ୍କର ସୃଷ୍ଟି ସଂପର୍କରେ କୌଣସି ବୌଦ୍ଧିକ ଚର୍ଚ୍ଚା ବା ବିଧିବଦ୍ଧ ମୂଲ୍ୟାୟନ କରାଯାଇନାହିଁ । କଥିତ ସମୟର ଆଲୋଚନାକୁ ମୁଖ୍ୟତଃ ଦୁଇଟି ଉପବିଭାଗରେ ଭାଗ କରାଯାଇ ପାରେ —

(କ) ମାନସିଂହଙ୍କ କବିତା, କାବ୍ୟ ନାଟିକା, ନାଟକ, ପ୍ରବନ୍ଧାଦିର ସମୀକ୍ଷା, ତଥା ପରିଚୟ ମୂଳକ ଆଲୋଚନା ।

(ଖ) କୌଣସି ମତାମତ ବା ସିଦ୍ଧାନ୍ତ ସଂପର୍କରେ ମାନସିଂହ ଓ ଅନ୍ୟ ଲେଖକ ମାନଙ୍କର ମତାଲୋଚନା ।

ପ୍ରଥମ ପର୍ଯ୍ୟାୟର ପ୍ରଥମ ଭାଗ ସଂପର୍କରେ, ଧୂପ, (1) ହେମଶସ୍ୟ, (2) ରବୀନ୍ଦ୍ରନାଥଙ୍କ କବିତା(3), ପ୍ରାଚୀନ ଓଡ଼ିଆ କାବ୍ୟ(4), ପୂଜାରିଣୀ(5), ପରଧର୍ମ(6), ରାଧାନାଥ ଓ ମଧୁସୂଦନ(7), ହେମଶସ୍ୟ(ପୁସ୍ତକ)(8) ନରଚିରନ୍ତନ(9), ଆତତାୟୀ(10), ମାଳାଗ୍ରହଣ(11), ପ୍ରେମଶସ୍ୟ(12), ନଷ୍ଟନୀଡ(13), ବାପୁତର୍ପଣ(14), ଜୀବନୀ ଓ ପ୍ରବନ୍ଧ, ହେମପୁଷ୍ପ, କବି ଓ କବିତା, ଜୀବନଚିତା(15), କମଳାୟନ, ମାଟିବାଣୀ, ଜେମା(16)ଜୀବନ ପଥ, ନଷ୍ଟନୀଡ(17), ବୁଦ୍ଧ(ନାଟକ)(18), ଦୁର୍ଭିକ୍ଷ(19), ମେଘର ପ୍ରଦୀପ(20), ସଂପର୍କରେ ଯେଉଁ ଆଲୋଚନା ମାନ କରାଯାଇଛି, ତାହା ମୁଖ୍ୟତଃ ସମୀକ୍ଷାମୂଳକ ଆଲୋଚନା । ଏହି ଶ୍ରେଣୀର ଆଲୋଚନା ମାନସିଂହଙ୍କ ଲେଖା ପ୍ରକାଶ ପରେ ପରିଚୟମୂଳକ ଶୈଳୀରେ ଲେଖା ହୋଇଅଛି । କବି ବୈକୁଣ୍ଠନାଥ ପଟ୍ଟନାୟକଙ୍କ ଆଲୋଚିତ

ପୂଜାରିଣୀ ଓ ହେମଶସ୍ୟ ପୁସ୍ତକ ସମୀକ୍ଷାକୁ ଛାଡିଦେଲେ ଅନ୍ୟାନ୍ୟ ସମସ୍ତ ଆଲୋଚନା ସଂକ୍ଷିପ୍ତ ତଥା ବିବରଣୀ ମୂଳକ । କେତେକ କ୍ଷେତ୍ରରେ ପୁସ୍ତକ ବା କବିତାଟିର ପ୍ରଶଂସା କରାଯାଇଥିଲାବେଳେ, କେତେକ ସମୀକ୍ଷାରେ କେବଳ ନିନ୍ଦାଗାନ କରାଯାଇଅଛି । ଏହି ପର୍ଯ୍ୟାୟରେ ତାତ୍ତ୍ୱିକ ଆଲୋଚନା ପାଇଁ କୌଣସି କ୍ଷେତ୍ରରେ ପ୍ରୟାସ କରାଯାଇ ନାହିଁ ।

ପ୍ରଥମ ପର୍ଯ୍ୟାୟର ଦ୍ୱିତୀୟ ପ୍ରକାର ଆଲୋଚନାରେ ବିଶ୍ଳେଷଣର ସ୍ତର ପୂର୍ବ ଅପେକ୍ଷା ସାମାନ୍ୟ ବ୍ୟାପକତର । ମାତ୍ର ସାହିତ୍ୟିକ ଦୃଷ୍ଟିକୋଣରୁ ନିରପେକ୍ଷ ଭାବରେ ମୂଲ୍ୟାୟନ କରିବାର ଚେଷ୍ଟା ହୋଇନାହିଁ । ଏହି ଶ୍ରେଣୀର ଆଲୋଚନା ମୁଖ୍ୟତଃ ବିବାଦାତ୍ମକ ବା ବିତର୍କମୂଳକ । 'ପୁଷ୍ପିତା' 'ନାଟିକାର ସାର୍ଥକତା'(21)ରେ ଶ୍ରୀ ହରିଶ୍ଚନ୍ଦ୍ର ବଡାଳ ଏକ ଦୀର୍ଘ ଆଲୋଚନା କରିଥିଲେ । ଏଥିରେ 'ପୁଷ୍ପିତା' ନାଟିକାର ପରିଚୟ ଓ ନାଟିକାରେ ଦେଖାଦେଇଥିବା ପ୍ରେମଚିତ୍ରର ନିନ୍ଦାଗାନ କରାଯାଇଅଛି । ନାଟିକାର କଥାବସ୍ତୁର ଅସଂଗତି, ଅନ୍ତର୍ନିହିତ ଗୂଢାଂଶ, ରଚନାର ପ୍ରେରଣା କ୍ରମରେ ବ୍ୟାପକ ଆଲୋଚନା ହୋଇଥିଲେ ହେଁ ଏହାକୁ ସଂପୂର୍ଣ୍ଣ ଭାବରେ ସାହିତ୍ୟିକ ଆଲୋଚନାର ମର୍ଯ୍ୟାଦା ଦିଆଯାଇ ପାରିବ ନାହିଁ । ପୁନଶ୍ଚ 'ତରୁଣ କବିର ଆଶା'ରେ ଥିବା ସବୁ କିଶୋରୀର ଚିବୁକ ଧରି , ବୁଲନ୍ତି ମୁଁ ଆହା ରସିକ ସବି' ସଦୃଶ କେତେକ ପଦକୁ ନେଇ କବିଙ୍କୁ ତୀବ୍ର ସମାଲୋଚନା କରାଯାଇଅଛି ।(22) ଏଥିରେ ନାଟିକାର କେବଳ ଦୋଷ ଦର୍ଶା ଯାଇଥିବାରୁ, ନାଟିକାରେ ସାହିତ୍ୟିକ ମୂଲ୍ୟ ନିରୂପଣର ଅବସର ଆସିନାହିଁ । ଏହି ଲେଖା ପ୍ରକାଶ ପରେ ମାନସିଂହ 'ପୁଷ୍ପିତା ଲେଖକର କୈଫିୟତ'(23) ବୋଲି ଗୋଟିଏ ଦୀର୍ଘ ପତ୍ର ପ୍ରକାଶ କରିଛନ୍ତି ।

ମାନସିଂହଙ୍କର ଆଉଏକ ଚିଠି 'ଫକୀରମୋହନଙ୍କ ଅଙ୍ଗବର୍ଣ୍ଣନ'(24) ତାଙ୍କୁ ପୁଣି ଏକ ବିବାଦ ଭିତରକୁ ଟାଣି ନେଲା । ମାନସିଂହଙ୍କର ସେ ସମୟର ଯୁକ୍ତି ଗୁରୁତ୍ୱପୂର୍ଣ୍ଣ ତଥା ପ୍ରଣିଧାନ ଯୋଗ୍ୟ ତଥାପି ତାଙ୍କର ବିପକ୍ଷବାଦୀ ମାନଙ୍କୁ ଏହା ନିନ୍ଦାଗାନର ଖୋରାକ ଯୋଗାଇଛି ।

'ପୁଷ୍ପିତା' ନାଟିକାର ବିସମ୍ବାଦ ପରେ,'ପରଧର୍ମ' ପ୍ରବନ୍ଧ(25) ମାନସିଂହଙ୍କ ପାଇଁ ପୁଣି ଏକ ସାହିତ୍ୟିକ ଝଡ ଆରମ୍ଭ କରିଥିଲା । ଏହି ବିବାଦ ସଂପର୍କରେ ଅନୁସନ୍ଧାନ କଲେ ଜଣାଯାଏ ଯେ, 'ସହକାର'ର ସଂପାଦକ–'ଓଡିଆ ଭାଷାରେ ବଂଗଳା ପ୍ରଭାବ'– ବିଷୟରେ ସଂପାଦକୀୟ ମନ୍ତବ୍ୟ ଲେଖିବାରୁ ମାନସିଂହ 'ସଂପାଦକଙ୍କୁ ପତ୍ର'(26) ସ୍ତମ୍ଭରେ ଏକ ଚିଠି ଲେଖି ସଂପାଦକଙ୍କ ମତକୁ ଆନ୍ତରିକ ସମର୍ଥନ ଜଣାଇଲେ । ଏହି ପତ୍ରରେ ବଂଗ ପ୍ରଭାବର କାରଣକୁ ଉଲ୍ଲେଖ କରି ପ୍ରତିବାଦୀ ମାନଙ୍କର ଅଭିଯୋଗ ବିଷୟରେ ସୂଚନା ଦେଲେ । ତା ପରେ ସହକାରରେ 'ପରଧର୍ମ'ପ୍ରବନ୍ଧ ପ୍ରକାଶିତ ହେଲା । ଏହି 'ପରଧର୍ମ'ପ୍ରବନ୍ଧ ପ୍ରକାଶିତ ହେବା ପରେ, ନବୀନ ଲେଖକ ମାନଙ୍କ ତରଫରୁ ଏକ ମିଳିତ ଆକ୍ରମଣ କରାଗଲା ଓ ପତ୍ରପତ୍ରିକାରେ ପ୍ରତିବାଦ ଲେଖା ପ୍ରକାଶ ପାଇଲା ।(27) ଏହି

॥ ମାନସିଂହଙ୍କ ବିଗ୍ରହଧାରା ॥

ଲେଖକ ମାନଙ୍କ ମଧ୍ୟରୁ ଶ୍ରୀ ଷଡଙ୍ଗୀ, ସଚ୍ଚିଦାନନ୍ଦ ରାଉତରାୟ ଓ ଦିଗମ୍ବର ଭୂୟାଁ ପ୍ରମୁଖ ମାନସିଂହଙ୍କ ପ୍ରବନ୍ଧର ପ୍ରତିବାଦ କରି ଚିଠି ପ୍ରେରଣ କରିଚ୍ଛନ୍ତି, କିନ୍ତୁ ପତିବାଦୀ ମାନେ ନିଜର ଦୋଷ ସ୍ୱୀକାର କରିବାକୁ ପ୍ରସ୍ତୁତ ହୋଇ ନାହାନ୍ତି । ମାନସିଂହଙ୍କ ଚିଠି(26)ରେ ଅବଶ୍ୟ ସେ ନିଜେ ବଙ୍ଗ ପ୍ରଭାବରେ ପ୍ରଭାବିତ ଓ ରବୀନ୍ଦ୍ରନାଥ ଟାଙ୍କର ଆଦର୍ଶ ଭାବରେ ଅଙ୍ଗୀକାର କରିଥିଲେ ହେଁ, ପତିବାଦୀ ମାନେ ମାନସିଂହଙ୍କ ପୂର୍ବବର୍ତ୍ତୀ ଲେଖାର ଉଦାହରଣ ଦେଇ ତାଙ୍କ ପ୍ରେମ ବର୍ଣ୍ଣନାର ନିନ୍ଦା କରିଥିଲେ ।

ମାନସିଂହଙ୍କ 'ହିସାବ ନିକାଶ' ନାମକ କବିତା(24)ର ପ୍ରତିବାଦରେ ଶ୍ରୀ ବୈକୁଣ୍ଠ ନାଥ ଦାସ 'ହିସାବ ନିକାଶର ନିଶାପ' କବିତା ସହକାରରେ ଲେଖିଥିଲେ(24) ଏହି ଉଭୟ ଲେଖାର ସମୀକ୍ଷା(23) 'ଡଗର'ରେ କରାଯାଇଥିଲା ।

ମାନସିଂହଙ୍କ କର୍ମ କ୍ଷେତ୍ରର ମର୍ଯ୍ୟାଦା ପରିବର୍ତ୍ତନ ସଂଗେ ସଂଗେ ତାଙ୍କ ସଂପର୍କରେ ଦେଖା ଦେଇଥିବା ସାହିତ୍ୟିକ ବିସମ୍ବାଦର ମଧ୍ୟ ପରିବର୍ତ୍ତନ ହୋଇଛି । ଏହି ସମୟରେ ଅଧ୍ୟାପକ ରାଜକିଶୋର ରାୟଙ୍କର 'କବି ମାନସିଂହ ଓ ମେଡିଓଭାଲିଜମ୍'(29), 'ବୁଦ୍ଧ' ନାଟକର ରଚନା ପୃଷ୍ଠପଟ୍ଟରେ ମାନସିଂହଙ୍କର ପ୍ରବନ୍ଧ 'ବୌଦ୍ଧଧର୍ମ ଏକମାତ୍ର ମନୁଷ୍ୟ ଧର୍ମ'ର ପ୍ରତିବାଦରେ ଶ୍ରୀ ବୃନ୍ଦାବନ ନାଥଶର୍ମାଙ୍କର 'ବୌଦ୍ଧଧର୍ମ କି ଏକମାତ୍ର ମନୁଷ୍ୟ ଧର୍ମ'(30) ପ୍ରକାଶ ପାଇଲା । ପୁନଶ୍ଚ ମାନସିଂହ 'ଭାଷାତତ୍ତ୍ୱର ଅପପ୍ରୟୋଗ' ସଂପର୍କରେ ଲେଖିଥିବା ପ୍ରବନ୍ଧର ପ୍ରତିବାଦରେ ଅଧ୍ୟାପକ ଗୋଲୋକ ବିହାରୀ ଧଳ(31) ଦୁଇଟି ଦୀର୍ଘ ଆଲୋଚନା ପ୍ରକାଶ କରିଥିଲେ । ପ୍ରୋକ୍ତ ଆଲୋଚନା ମାନସିଂହଙ୍କ ସଂପର୍କରେ ହୋଇଥିଲେ ମଧ୍ୟ ମାନସିଂହଙ୍କ ସାହିତ୍ୟ ସୃଷ୍ଟି ବା ବିଗ୍ରହ ବିମର୍ଶ ସଂପର୍କରେ କୌଣସି ଆଲୋକ ପାତ କରୁନାହିଁ । ବରଂ ସତୁରାନନ୍ଦ 'କବି ଲଢେଇ' କ୍ରମରେ ମାନସିଂହଙ୍କୁ ତାଙ୍କ ସୃଷ୍ଟି ମଧ୍ୟରେ ଦଣ୍ଡାୟମାନ କରି କବିଙ୍କର ବୈଶିଷ୍ଟ୍ୟ ଉପସ୍ଥାପନ କରିଛନ୍ତି ।(32) ଏହି ସମୟରେ କବି ମାନସିଂହ ତଥା ତାଙ୍କ କବିତାର ଯେତେ ପରିମାଣରେ ସମାରୋଚି ବା ଲାଳିକା କରାଯାଇଛି, ସମସାମୟିକ କବି ବା ପୂର୍ବବର୍ତ୍ତୀ କୌଣସି କବିଙ୍କ ପ୍ରତି ଏପରି ପ୍ରୟୋଗ କରାଯାଇନାହିଁ ।(32) ଏହା ତାଙ୍କର ଲୋକ ପ୍ରିୟତାର ସୂଚନା ପ୍ରଦାନ କରିଥାଏ । ମାତ୍ର ସୃଷ୍ଟି ସମ୍ଭାର ବିଗ୍ରହ ବିବେଚନାର ଗଭୀରତା ଏଠାରେ ମିଳିବା କଷ୍ଟ ।

ଏଠାରେ ଉଲ୍ଲେଖ କରାଯାଇ ପାରେ ଯେ, ମାନସିଂହଙ୍କ ସୃଷ୍ଟି ବିଗ୍ରହ ବିମର୍ଶର ଦ୍ୱିତୀୟ ପର୍ଯ୍ୟାୟର ସୂଚନା 1956 ମସିହା ବେଳକୁ ଦେଖା ଦେଇଛି । ଏହି ବର୍ଷ 'ମୋର ପ୍ରିୟ ଲେଖକ' କ୍ରମରେ ଚତୁର୍ଥ ଲେଖକ ଭାବରେ କବି ମାନସିଂହଙ୍କ ସଂପର୍କରେ ମହାପାତ୍ର ନୀଳମଣି ସାହୁ ଆଲୋଚନା କରିଛନ୍ତି । ଅଧ୍ୟାପକ ପ୍ରାଣବନ୍ଧୁ କର 'ବୁଦ୍ଧ' ନାଟକ ସଂପର୍କରେ ଆଲୋଚନା କରି—'ଓଡିଆ ନାଟକ ଓ ଉପନ୍ୟାସରେ ବୁଦ୍ଧ ଓ ବୌଦ୍ଧ ଧର୍ମର ପ୍ରଭାବ' (34) ଲେଖିଛନ୍ତି । ଏହି ଦୁଇଟି ଆଲୋଚନାକୁ ମାନସିଂହ ସୃଷ୍ଟି ବିଗ୍ରହ ବିମର୍ଶର ଦ୍ୱିତୀୟ ଅଧ୍ୟାୟର ପୂର୍ବାଭାସ ଭାବରେ ବିବେଚନା କରାଯାଇପାରେ ।

॥ ମାନସିଂହଙ୍କ ବିଗ୍ରହଧାରା ॥

ଏହି ପର୍ଯ୍ୟାୟକୁ ସମୂହ ଭାବରେ ବିଗ୍ରହ କଲେ ଜଣାଯାଏ ଯେ, ମାନସିଂହଙ୍କ ସୃଷ୍ଟି ସମ୍ଭାରର ଲୋକପ୍ରିୟତା ପ୍ରମାଣିତ ହୋଇଥିଲେ ହେଁ, ଏହି ସମୟରେ ତାଙ୍କ ସୃଷ୍ଟିକୁ ଗଭୀର ଭାବରେ ଆଲୋଚନା କରିବାକୁ ପ୍ରୟାସ ହୋଇନାହିଁ । କଥିତ ପର୍ଯ୍ୟାୟରେ ତାଙ୍କ ସଂପର୍କରେ ବିଭିନ୍ନ ସମୟରେ ଯେଉଁ ବିତର୍କର ସୂଚନାମିଳେ, ତାହା ମୁଖ୍ୟତଃ ତାଙ୍କ ବ୍ୟକ୍ତିଗତ ଜୀବନର ପ୍ରତିକ୍ରିୟାର ସାହିତ୍ୟିକ ଦ୍ୱନ୍ଦ୍ୱ । ଅନ୍ୟ ଭାଷାରେ କହିବାକୁ ଗଲେ, ତାଙ୍କ ଜୀବନର ବୈଷମ୍ୟ ଜନିତ ବିସମ୍ବାଦର ଘଟଣା କେବଳ ଏହି ଅଂଶରେ ଆଲୋଚିତ ହୋଇଛି । ଅଧ୍ୟାପକ ରାଜ କିଶୋର ରାୟ, ମହାପାତ୍ର ନୀଳମଣି ସାହୁ ଓ ଅଧ୍ୟାପକ ପ୍ରାଣବନ୍ଧୁ କର ଏହି ପର୍ଯ୍ୟାୟରେ ମାନସିଂହଙ୍କ ସୃଷ୍ଟି ସମ୍ଭାର ଉପରେ ଆଲୋଚନାର ଯେଉଁ ପୃଷ୍ଠପୀଠିକା ପ୍ରସ୍ତୁତ କରିଥିଲେ, ପରବର୍ତ୍ତୀ ପର୍ଯ୍ୟାୟରେ ତାର ଫଳଶ୍ରୁତି ଦେଖିବାକୁ ମିଳିଥାଏ । ମୋଟ ଉପରେ କହିବାକୁ ଗଲେ ମାନସିଂହଙ୍କୁ ପଚାଶ ବର୍ଷ ପୂର୍ଣ୍ଣ ହେବା ପର୍ଯ୍ୟନ୍ତ ତାଙ୍କ ସୃଷ୍ଟିର ଗଭୀର ତଥା ତାତ୍ତ୍ୱିକ ବିଗ୍ରହ ହୋଇନାହିଁ ।

## ସୃଷ୍ଟି ବିଗ୍ରହ ବିମର୍ଶର ଦ୍ୱିତୀୟ ପର୍ଯ୍ୟାୟ

କବି ମାନସିଂହଙ୍କ ସୃଷ୍ଟି ବିଗ୍ରହ ବିମର୍ଶର ଦ୍ୱିତୀୟ ପର୍ଯ୍ୟାୟକୁ ୧୨57 ମସିହାରୁ ୧୨73 ପର୍ଯ୍ୟନ୍ତ ପରିସରଭୁକ୍ତ କରାଯାଇ ପାରେ । ଏହି ପର୍ଯ୍ୟାୟରେ ମୁଖ୍ୟତଃ ତିନୋଟି ଦୃଷ୍ଟିକୋଣରୁ ମାନସିଂହଙ୍କ ସୃଷ୍ଟିକୁ ବିଗ୍ରହ କରାଯାଇଅଛି ।

(କ) କାବ୍ୟ ପ୍ରତିଭାର ବିଧିବଦ୍ଧ ମୂଲ୍ୟାୟନ ।

(ଖ) ଆଦି ଅଧ୍ୟାୟର ସଂପ୍ରସାରଣ ।

(ଗ) ସାଧାରଣ ଐତିହାସିକ ଆଲୋଚନା କ୍ରମରେ ମାନସିଂହଙ୍କ ସ୍ଥାନ ।

ଖ୍ରୀ: ୧୨57 କୁ ଏକ ସୀମାରେଖା ଧରିବାର କାରଣ ହେଉଛି ଯେ, ଏହି ସମୟରୁ ମାନସିଂହଙ୍କ କାବ୍ୟ-କବିତା ତଥା ସୃଷ୍ଟି-ସମ୍ଭାର ଉପରେ ବିଧିବଦ୍ଧ ଆଲୋଚନା ଆରମ୍ଭ ହେଲା । ଖ୍ରୀ: ୧୨73 ରେ ଡଃ ମାନସିଂହଙ୍କ ସ୍ୱର୍ଗାରୋହଣ ପର୍ଯ୍ୟନ୍ତ ଏହିଧାରାର ସଂପ୍ରସାରଣ ହୋଇଥିବାରୁ, ଏହି ସମୟ ସୀମାକୁ ଦ୍ୱିତୀୟ ପର୍ଯ୍ୟାୟର ଅନ୍ତର୍ଭୁକ୍ତ କରାଯାଇଅଛି ।

ଖ୍ରୀ: ୧୨57 ରୁ ୧୨73 ମଧ୍ୟରେ ମାନସିଂହଙ୍କ ସୃଷ୍ଟିର ବିଧିବଦ୍ଧ ଆଲୋଚନା କରିଥିବା ସମୀକ୍ଷକ ମାନେ ହେଲେ, ଅଧ୍ୟାପକ ଶ୍ରୀ ଚିନ୍ତାମଣି ବେହେରା, ଅଧ୍ୟାପକ ନଟବର ସାମନ୍ତରାୟ, ଅଧ୍ୟାପକ ଦାଶରଥି ଦାସ, ଅଧ୍ୟାପକ ତାରିଣୀ ଚରଣ ଦାସ ଓ ଅଧ୍ୟାପକ ନିତ୍ୟାନନ୍ଦ ଶତପଥୀ । ମାନସିଂହ ସାହିତ୍ୟର ଯଥାର୍ଥ ମୂଲ୍ୟାୟନ ସଂପୃକ୍ତ ସମୟରୁ ଆରମ୍ଭ କରାଯାଇଅଛି ।

ଏହି ସମୟରେ ଆଦି ପର୍ଯ୍ୟାୟର ମଧ୍ୟ ସଂପ୍ରସାରଣ ହୋଇଛି । ଅର୍ଥାତ ୧୨57 ପୂର୍ବରୁ ମାନସିଂହଙ୍କ ସାହିତ୍ୟ ତଥା ପୁସ୍ତକ ସଂପର୍କରେ କେବଳ ପୁସ୍ତକ ସମୀକ୍ଷା ତଥା ନାନା ବାଦ ବିସମ୍ବାଦ ସୃଷ୍ଟିଥିଲା ।

॥ ମାନସିଂହଙ୍କ ବିଗ୍ରହଧାରା ॥

କଥିତ ସମୟରେ ଯେ ଧାରା ଅପରିବର୍ତ୍ତିତ ରହିବା ସଂଗେ ସଂଗେ କେତେକ କ୍ଷେତ୍ରରେ ସେ ବିସମ୍ବାଦ ତୀବ୍ର ହୋଇଛି ।

ପୁନଶ୍ଚ ଏହି ସମୟସୀମା ମଧ୍ୟରେ ଐତିହାସିକ ଆଲୋଚନା କ୍ରମରେ ମାନସିଂହ ସାହିତ୍ୟ ଆଲୋଚିତ ହୋଇଥିବାର ଲକ୍ଷ୍ୟ କରାଯାଇଥାଏ । ଆଧୁନିକ ସାହିତ୍ୟ ଆଲୋଚନା କ୍ରମରେ ବିଭିନ୍ନ ଆଲୋଚକ ମାନସିଂହ ସାହିତ୍ୟକୁ ଆଲୋଚନା ପରିସର ଭୁକ୍ତ କରାଇ ତୁଳନାତ୍ମକ ରୀତିରେ ଏହାର ମୂଲ୍ୟାୟନ କରିଛନ୍ତି । ଏହି ସମୟ ମଧ୍ୟରେ ଏହା ଏତେ ବ୍ୟାପକ ନ ହେଲେ ହେଁ, ପରବର୍ତ୍ତୀ ପର୍ଯ୍ୟାୟରେ ଦେଖା ଦେଇଥିବା ଧାରାର ଆଭାସ ଏହି ସମୟରୁ ମିଳିଥିଲା ।

ମାନସିଂହଙ୍କ ସଂପର୍କରେ ପ୍ରଥମ ଉଚ୍ଚକୋଟୀର୍ଣ୍ଣ ସାହିତ୍ୟିକ ଆଲୋଚନା ଅଧ୍ୟାପକ ଚିନ୍ତାମଣି ବେହେରା ଆରମ୍ଭ କରିଥିଲେ । 'କବି ମାନସିଂହଙ୍କ କାବ୍ୟ ପ୍ରତିଭା'(35) ନାମରେ 'ଡଗର'ରେ ପ୍ରକାଶିତ ଆଲୋଚନା ହିଁ ମାନସିଂହଙ୍କ କାବ୍ୟ କବିତା ସଂପର୍କରେ ପ୍ରଥମ ବ୍ୟାପକ ଆଲୋଚନା—ଏହି ଆଲୋଚନାରେ ଅଧ୍ୟାପକ ବେହେରା ମାନସିଂହଙ୍କ ସୃଷ୍ଟିର ପୃଷ୍ଠଭୂମି ଉପରେ ଲେଖିଛନ୍ତି: " କବି ମାନସିଂହଙ୍କ ସୃଷ୍ଟି ସୌଧ ମୂଳରେ ରହିଛି, ସ୍ୱ ଦେଶୀ ଓ ବିଦେଶୀ, ଜାତୀୟ ଓ ବିଜାତୀୟ, ବହୁ ବିଭିନ୍ନ ପ୍ରତିଭାଶାଳୀ ସ୍ରଷ୍ଟାଙ୍କର ଶିଳ୍ପ ସାଧନାର ଐତିହ୍ୟ, କିନ୍ତୁ ଏହି ଐତିହ୍ୟକୁ ମୂଳଧନ ବା ପାଥେୟ କରି ଉଚ୍ଚକୋଟୀର ପ୍ରତିଭା ନିଜ ନିଜ ଭାବ ଐଶ୍ୱର୍ଯ୍ୟର ବିକାଶ ବା ଅଭିବୃଦ୍ଧି ସାଧନା କଲାଭଳି ଗୃହୀତ ପରମ୍ପରା ଉପରେ ବହୁ ନୂତନ ଓ ବିଚିତ୍ର ସରଣୀ ନିର୍ମାତାର ସୌଭାଗ୍ୟ ଅର୍ଜନ କରିଛନ୍ତି କବି ମାନସିଂହ"(36) ଶ୍ରୀ ବେହେରା ମାନସିଂହଙ୍କ ପ୍ରେମ କବିତାର ବୈଶିଷ୍ଟ୍ୟ ଆଲୋଚନା ପ୍ରସଂଗରେ ତାଙ୍କ କବିତାର ବିବର୍ତ୍ତନ ଦର୍ଶାଇଛନ୍ତି । ମାନସିଂହଙ୍କ କାବ୍ୟ କବିତାକୁ ବିଭିନ୍ନ ଦୃଷ୍ଟିକୋଣରୁ ବିଗ୍ରହ କରି ଶେଷରେ ଲେଖିଛନ୍ତି:— "ମାନସିଂହଙ୍କ ସୃଷ୍ଟି ସମ୍ଭାରହିଁ ଓଡିଆ ରୋମାଣ୍ଟିକ କାବ୍ୟ କବିତାର ସିଦ୍ଧି ସାଫଲ୍ୟର ଶେଷ ସ୍ୱର୍ଣ୍ଣ ଯୁଗ କହିଲେ ଅତ୍ୟୁକ୍ତି ହେ ବାର ସମ୍ଭାବନା ନାହିଁ ।"(36)

ମାନସିଂହଙ୍କ ଲିଖିତ ଓଡିଆ ସାହିତ୍ୟର ଇତିହାସ'ର ଓଡିଆ ସଂସ୍କରଣରେ ଅଧ୍ୟାପକ ଚିନ୍ତାମଣି ବେହେରା 'ଓଡିଆ ସାହିତ୍ୟରେ ମାନସିଂହ' ନାମରେ ଏକ ପ୍ରବନ୍ଧ ଲେଖିଛନ୍ତି ।(37) ଏହି ଆଲୋଚନାରେ ସଂକ୍ଷେପରେ ସେ ମାନସିଂହ ସାହିତ୍ୟକୁ ଭାଗଭାଗ କରି ଆଲୋଚନା କରିଛନ୍ତି । ମାନସିଂହଙ୍କ ସମଗ୍ର ସୃଷ୍ଟିକୁ ବିଭିନ୍ନ ଦିଗରୁ ଦେଖିବାରେ ଅଧ୍ୟାପକ ବେହେରା ହେଉଛନ୍ତି, ପ୍ରଥମ ଆଲୋଚକ । ଅଧ୍ୟାପକ ନଟବର ସାମନ୍ତରାୟ 'କବି ମାନସିଂହଙ୍କ ସଂଦର ବର୍ଷ ରଚନାର କାଳ ନିରୂପଣ' କରି (38) ମାନସିଂହ ସାହିତ୍ୟ ଆଲୋଚନାର ପଥ ପରିଷ୍କାର କରି ଦେଇଛନ୍ତି ।- ଖ୍ରୀ: 1925 ରୁ 1940 ପର୍ଯ୍ୟନ୍ତ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ଲେଖାର ତାଲିକା ପ୍ରଦାନ ହିଁ ଏହି ଲେଖାର ବୈଶିଷ୍ଟ୍ୟ । ମାତ୍ର ଏହା ମାନସିଂହଙ୍କ ରଚନାର ପୂର୍ଣ୍ଣାଙ୍ଗ ତାଲିକା ନୁହେଁ ବା କଥିତ ସମୟର ସମଗ୍ର ରଚନା ଏହି ତାଲିକାରେ ପ୍ରଦତ୍ତ ହୋଇ ନାହିଁ ।

ଅଧ୍ୟାପକ ଦାଶରଥି ଦାସ, 'ରବୀନ୍ଦ୍ରନାଥ ଓ କବି ମାନସିଂହଙ୍କ ମର୍ଯ୍ୟପ୍ରୀତି' (39) ପ୍ରବନ୍ଧରେ

॥ ମାନସିଂହଙ୍କ ବିଗ୍ରହଧାରା ॥

ଉଭୟ କବିଙ୍କ ମର୍ତ୍ତ୍ୟପ୍ରୀତିର ତୁଳନାତ୍ମକ ଆଲୋଚନା କରିଛନ୍ତି । ଦୀର୍ଘ ଆଲୋଚନାରେ ବହୁଳ ଉଦାହରଣ ପ୍ରଦାନ କରି ରବୀନ୍ଦ୍ରଙ୍କ ମର୍ତ୍ତ୍ୟପ୍ରୀତିର ପ୍ରଭାବ କିପରି ମାନସିଂହଙ୍କ ଉପରେ ପଡ଼ିଛି ତାର ତୁଳନା କରିଛନ୍ତି । "ମାନସିଂହଙ୍କ ମର୍ତ୍ତ୍ୟପ୍ରୀତିର ଅନ୍ୟତମ ବଳିଷ୍ଠ ଉତ୍ସ ହେଉଛି ରବୀନ୍ଦ୍ର ଭାବ-କଳ୍ପନା । ତେବେ ସେହି ଭାବ-କଳ୍ପନା ତାଙ୍କ କବିତାର ଭାବ ଓ ପାରିପାର୍ଶ୍ୱିକ ପରିମଣ୍ଡଳରେ ଏପରି ସଞ୍ଚାରିତ ହୋଇଛି ଯେ, ସବୁଠି ତାକୁ ନୂତନ ଆଶ୍ରୟରୁ ସ୍ୱତନ୍ତ୍ର କରି ଦେଖିହୁଏ ନାହିଁ ।"(40) ଶ୍ରୀ ଦାଶରଥି ଦାସଙ୍କର ଅନ୍ୟଏକ ଆଲୋଚନା 'ରୂପ ଓ ସୌନ୍ଦର୍ଯ୍ୟର କବି ମାନସିଂହ'(41) ଏହି ଦୀର୍ଘ ପ୍ରବନ୍ଧରେ ଆଲୋଚକ କବି ମାନସିଂହଙ୍କର କାବ୍ୟ ତଥା କବିତାରେ ରୂପ ତଥା ସୌନ୍ଦର୍ଯ୍ୟର ବିଶ୍ଳେଷଣ କରିଛନ୍ତି । ସେ ବହୁ ଉଦାହରଣ ମଧ୍ୟରେ କବିଙ୍କ ନାରୀ ପ୍ରୀତିରୁ ନିସର୍ଗପ୍ରୀତି ପର୍ଯ୍ୟନ୍ତ ବିଭିନ୍ନ ସ୍ତରର ଚିତ୍ର ପ୍ରଦାନ କରିଛନ୍ତି ।

ମାନସିଂହଙ୍କ କବିତାର ଅନ୍ୟତମ ଆଲୋଚକ ଶ୍ରୀ ତାରିଣୀ ଚରଣ ଦାସ । ଅଧ୍ୟାପକ ଦାସ 'ଡଗର ' ପତ୍ରିକାରେ(42) ମାନସିଂହଙ୍କ କବିତା 'ଧୂପ' ସମ୍ପର୍କରେ ଏକ ଦୀର୍ଘ ଆଲୋଚନା କରିଛନ୍ତି । ଉକ୍ତ ଆଲୋଚନାରେ ଶ୍ରୀ ଦାସ 'ଧୂପ'ର କବିତା ଗୁଡ଼ିକୁ ବିଶ୍ଳେଷଣ କରି ମାନସିଂହଙ୍କ ପ୍ରେମ କବିତାକୁ ବିଭିନ୍ନ ଦୃଷ୍ଟିରୁ ବିଗ୍ରହ କରିଛନ୍ତି । 'ଧୂପ'କୁ ବିଶ୍ଳେଷଣ କରି ଅଧ୍ୟାପକ ଦାସ ପ୍ରେମ ସମ୍ପର୍କରେ ନିମ୍ନ ଲିଖିତ ପ୍ରବୃତ୍ତିର ସନ୍ଧାନ ପାଇଥିଲେ । ଯଥା— (କ) ତରୁଣ ପ୍ରେମିକର ସ୍ୱଚ୍ଛନ୍ଦ ପ୍ରେମାଭିଳାଷ, ଉଚ୍ଛ୍ୱାସ ଓ ପରିକଳ୍ପନା । (ଖ) ପ୍ରଣୟର ନୂତନ ପରିଭାଷା ଓ ଆତ୍ମ ସଚେଇ । (ଗ) ପ୍ରେମର ପ୍ରବୃତ୍ତି ଓ ଗତିବିଧି । (ଘ) ପ୍ରଣୟ ଜନୀତ ଦୈନ୍ୟ ଓ ମିମିଳିଷା । (ଙ) ପ୍ରେମର ସାରଲ୍ୟ ଓ ଅର୍ପଣ ବୃତ୍ତି । (ଚ) ପ୍ରକୃତିର ଉଦ୍ଦିପନା ଓ ପ୍ରେମୀର ମନୋଦଶା

ଏହି ଆଲୋଚନା ପର୍ଯ୍ୟାୟରେ ଅଧ୍ୟାପକ ନିତ୍ୟାନନ୍ଦ ଶତପଥୀଙ୍କର 'ଗୀତିନାଟ୍ୟର କେତୋଟି ଚରିତ୍ର'(43) ଆଲୋଚନାଟି ବରଂ ଅନେକ ଦୃଷ୍ଟିରୁ ନୂତନତା ଆଣି ପାରିଛି । ଅଧ୍ୟାପକ ଶତପଥୀ ମାନସିଂହଙ୍କ ଗୀତିନାଟ୍ୟରେ କବି ରବୀନ୍ଦ୍ରନାଥଙ୍କ ପ୍ରଭାବ ବିଷୟରେ ଏକ ତୁଳନାତ୍ମକ ତାତ୍ତ୍ୱିକ ଆଲୋଚନା କରିଛନ୍ତି । ଏହି ଆଲୋଚନାଟି ଅନୁସନ୍ଧାନାତ୍ମକ ହେବା ସଂଗେ ସଂଗେ, ଏହା ସେତେବେଳେ କବି ମାନସିଂହଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ଶ୍ରୀ ଶତପଥୀ ମାନସିଂହଙ୍କ ରଚିତ ଗୀତିନାଟ୍ୟର ଚରିତ୍ର ମାନଙ୍କ ଉପରେ କବି ରବୀନ୍ଦ୍ରନାଥଙ୍କ ପ୍ରଭାବ ସଂପର୍କରେ ସୂଚନା ଦେଇଥିଲେ । କିନ୍ତୁ ଏହି ଆଲୋଚନାର ପ୍ରତିକ୍ରିୟାରେ କବି ମାନସିଂହ ଅଧ୍ୟାପକ ଶତପଥୀଙ୍କୁ ଏକ ଦୀର୍ଘ ପତ୍ର ଲେଖିଥିଲେ ଓ ଏପରି ପ୍ରଭାବ ତାଙ୍କ ଉପରେ କିଛି ନାହିଁ ବୋଲି ମତବ୍ୟକ୍ତ କରିଥିଲେ ପରେ ଏହି ପତ୍ର 'ବନଫୁଲ' ପତ୍ରିକାରେ ପ୍ରକାଶିତ ହୋଇଥିଲା ।(43)

## ଆଦି ଅଧ୍ୟାୟର ସଂପ୍ରସାରଣ

ପ୍ରଥମ ପର୍ଯ୍ୟାୟ ଆଲୋଚନା କ୍ରମରେ ମୁଖ୍ୟତଃ ଦୁଇଟି ଦିଗରେ ମାନସିଂହ ସାହିତ୍ୟ

ଆଲୋଚିତ ହୋଇଥିଲା । ଏ ପର୍ଯ୍ୟାୟରେ ମଧ୍ୟ ସେ ଧାରା ଗତିଶୀଳ ରହିଛି । ପ୍ରଥମରେ ମାନସିଂହଙ୍କ ପ୍ରକାଶିତ ଗ୍ରନ୍ଥର ସମୀକ୍ଷା ତଥା ପରିଚୟମୂଳକ ଆଲୋଚନା, ଦ୍ୱିତୀୟରେ ବ୍ୟକ୍ତିଗତ ତଥା ସାହିତ୍ୟିକ ବିସମ୍ବାଦ । କଥିତ ସମୟ ସୀମା ମଧ୍ୟରେ 'କ୍ରୁଶ' ଓ 'ସେ ଦିନର କବିତା' ବ୍ୟତୀତ ଅନ୍ୟ ସମସ୍ତ ପୁସ୍ତକ ସମୀକ୍ଷା ତାଙ୍କ ରଚିତ 'ଓଡିଆ ସାହିତ୍ୟର ଇତିହାସକୁ' କେନ୍ଦ୍ରକରି ସଂଗଠିତ । ଶ୍ରୀ ସୁରେନ୍ଦ୍ର ପ୍ରସାଦ ମହାନ୍ତି 'କ୍ରୁଶ' ଗ୍ରନ୍ଥ(44) ସମୀକ୍ଷା କରିଛନ୍ତି । 1962 ମସିହାରେ ଜାତୀୟ ସାହିତ୍ୟ ଏକାଡେମୀ କର୍ତ୍ତୃକ ପ୍ରକାଶିତ ତାଙ୍କର ଓଡିଆ ସାହିତ୍ୟର ଇତିହାସ (ଇଂରାଜୀ) ଓ 1967 ମସିହାରେ ଗ୍ରନ୍ଥ ମନ୍ଦିର ଦ୍ୱାରା ପ୍ରକାଶିତ ଓଡିଆ ସାହିତ୍ୟର ଇତିହାସ(ଓଡିଆ), ସମସାମୟିକ ସାହିତ୍ୟିକ ଜଳବାୟୁକୁ ସରଗରମ କରିଦେଇଥିଲା । ଓଡିଆ ସାହିତ୍ୟର ଇତିହାସ ଗ୍ରନ୍ଥ ପାଇଁ ଏହି ଦଶନ୍ଧିରେ ଅନେକ ସମୀକ୍ଷା ମୂଳକ ଆଲୋଚନା ହୋଇ ଯାଇଛି । ସେ ଗୁଡିକ ହେଲା:—(45)

(କ) ଶରତ କୁମାର ମହାନ୍ତିଙ୍କର, 'ସମସାମୟିକ ଓଡିଆ ସାହିତ୍ୟ ପ୍ରତି ଅବିଚାର'

(ଖ) ଜାନକୀ ବଲ୍ଲଭ ମହାନ୍ତି(ଭରଦ୍ୱାଜ)ଙ୍କର–'ତ୍ରୁଟିପୂର୍ଣ୍ଣ ଓଡିଆ ସାହିତ୍ୟର ଇତିହାସ'

(ଗ) ଡକ୍ଟର ମାନସିଂହଙ୍କ ଭୁଲ ।

(ଘ) ଓଡିଆ ସାହିତ୍ୟର ଇତିହାସ ସମ୍ବାଦ,

(ଙ) ମାନସିଂହଙ୍କ ଓଡିଆ ସାହିତ୍ୟର ଇତିହାସ ।

(ଚ) ଓଡିଆ ସାହିତ୍ୟର ଧର୍ଷଣ ।

(ଛ) ଏ ବ୍ରିଫ୍ ରି–ଭିୟୁ ଅଫ୍ ହିଷ୍ଟ୍ରି ଅଫ୍ ଓଡିଆ ଲିଟେରେଚର ।

ଏହି ଶ୍ରେଣୀର ଆଲୋଚନାରେ ମୁଖ୍ୟତଃ ମାନସିଂହଙ୍କ ପୁସ୍ତକର ନିନ୍ଦାଗାନ କରାଯାଇଅଛି । ଅବଶ୍ୟ ଇଂସିତ 'ଓଡିଆ ସାହିତ୍ୟର ଇତିହାସ'ରେ କେତେକ ପ୍ରମାଦ ରହି ଯାଇଥିଲା, ମାତ୍ର ସେଥିରେ ଥିବା ଭଲ ଅଂଶକୁ ଏହି ଆଲୋଚକ ମାନେ ଆଦୌ ଆଲୋଚନାର ପରିସର ଭୁକ୍ତ କରି ନାହାନ୍ତି । ଏହି ପର୍ଯ୍ୟାୟରେ 'ଓଡିଆ ସାହିତ୍ୟର ଇତିହାସ' ରଚନା ପୂର୍ବରୁ 'କଣ୍ଟେମ୍ପରାରୀ ଇଣ୍ଡିଆନ ଲିଟିରେଚର'ରେ ଓଡିଆ ସାହିତ୍ୟ ସମ୍ପର୍କରେ ଏକ ଲେଖା ଏକ ବିବାଦ ଆରମ୍ଭ କରିଥିଲା । ସେ ଲେଖାର ପ୍ରତିବାଦରେ ଶ୍ରୀ ଗୁରୁଚରଣ ପଟ୍ଟନାୟକ ଧାରାବାହିକ ଭାବରେ ଆଲୋଚନା ଆରମ୍ଭ କରିଥିଲେ ।(46) ପୁନଶ୍ଚ ଡଃ ମାନସିଂହଙ୍କର 'ଶିକ୍ଷାବିତ୍‌ର ଗାଥା'ର ବିଭିନ୍ନ ଅଂଶ ଧାରା ବାହିକ ଭାବରେ 'ନବଜୀବନ'ରେ ପ୍ରକାଶିତ ହେବା ସମୟରେ ପୁଣି ଏକ ସାହିତ୍ୟିକ ବିବାଦ ଆରମ୍ଭ ହେଲା । ଡଃ ମାନସିଂହଙ୍କ ସ୍ପଷ୍ଟ ବାଦିତା ଓ କେତେକ କ୍ଷେତ୍ରରେ ଏକଦେଶଦର୍ଶିତା ଏହି ବିବାଦର କାରଣ ବୋଲି ପ୍ରତୀୟମାନ ହୁଏ । କେତେକ ଓଡିଆ ଅଧ୍ୟାପକଙ୍କ ଦୋଷ ଯୋଗୁ ସମସ୍ତ ଓଡିଆ ଅଧ୍ୟାପକଙ୍କୁ ନିନ୍ଦା କରିବା ମାନସିଂହଙ୍କର ଏକ ଗୁରୁତର ତ୍ରୁଟି । ଓଡିଆ ବିଭାଗରେ ଯେପରି ଅଧ୍ୟାପକର ଗୁଣ ନଥିବା କେତେକ ଅଯୋଗ୍ୟ ଅଧ୍ୟାପକ ଅଛନ୍ତି ସେହିପରି ଅନ୍ୟାନ୍ୟ

ବିଭାଗରେ ମଧ୍ୟ ଅନେକ ଅନେକ ଅଛନ୍ତି । ଏହି ସମୟରେ ମାନସିଂହଙ୍କ ବେଖାର ପ୍ରତିବାଦରେ,ଶ୍ରୀ ଭାବଗ୍ରାହୀ ମିଶ୍ର,ଶ୍ରୀ ଭରତ କୁମାର ମହାନ୍ତି,ଅଧ୍ୟାପକ ଗୋଲୋକ ବିହାରୀ ଧଳ,ଅଧ୍ୟାପକ ଜାନକୀ ବଲ୍ଲଭ ମହାନ୍ତି(ଭରଦ୍ୱାଜ)(47) ପ୍ରମୁଖ ଆଲୋଚନା କରିଛନ୍ତି । ସେ ସମୟରେ'ନବଜୀବନ'ର ସଂପାଦକ ଶ୍ରୀ ଚିନ୍ତାମଣି ମିଶ୍ର ହିଁ କେବଳ 'ଶିକ୍ଷାବିତ୍ର ଗାଥା'ର ଦୋଷ ଗୁଣକୁ ବିଗ୍ରହ କରି ମାନସିଂହଙ୍କ ସପକ୍ଷରେ ପ୍ରତିବାଦୀ ମାନଙ୍କୁ ଉତ୍ତର ପ୍ରଦାନ କରିଥିଲେ ।(43) ଡଃ ମାନସିଂହ ।973•ଏପ୍ରିଲରେ 'ପାଇକଖେଦା ଏକ ଗୁଳେଞ୍ଜ' ନାମରେ ଯେଉଁ ପ୍ରବନ୍ଧ ଲେଖିଥିଲେ,ଡକ୍ଟର କୁଞ୍ଜବିହାରୀ ଦାଶ 'ନବରବି'ରେ 'ପାଇକଖେଦା ଏକ ଜବାବ୍' ଶିରୋନାମାରେ ତାହାର ଉତ୍ତର ପ୍ରଦାନ କରିଥିଲେ । ଏହାପରେ ଡଃ ମାନସିଂହ,ଡଃ ଦାଶଙ୍କୁ ବ୍ୟକ୍ତିଗତ ଭାବରେ ଯେଉଁ ଚିଠି ଲେଖିଥିଲେ, ତାହା 'ମୋ କାହାଣୀ'ରେ ପ୍ରକାଶିତ ହୋଇଛି । (49)

## ସାଧାରଣ ଐତିହାସିକ ଆଲୋଚନା କ୍ରମରେ ମାନସିଂହଙ୍କ ସ୍ଥାନ:

ଖ୍ରୀ: ।956 ର ପରବର୍ତ୍ତୀ କାଳରେ ଡଃ ମାନସିଂହଙ୍କ ସାହିତ୍ୟ ଐତିହାସିକ ଆଲୋଚନା କ୍ରମରେ ସ୍ଥାନ ପାଇବାକୁ ଲାଗିଲା । ଅବଶ୍ୟ ଆଧୁନିକ ଓଡିଆ ସାହିତ୍ୟର ଆଲୋଚନା ସମୟରେ ମାନସିଂହଙ୍କ ସୃଷ୍ଟି ଆଲୋଚନାର ପରିସର ଭୁକ୍ତ ହେବା ଯଥାର୍ଥ,ମାତ୍ର କଥିତ ସମୟ ପୂର୍ବରୁ ସମସାମୟିକ ସାହିତ୍ୟ ସଂପର୍କରେ ଆଲୋଚନା କ୍ୱଚିତ୍ ଦେଖା ଦେଉଥିଲା । ଯାହା ହେଉ ଏହି ଆଲୋଚନା ପର୍ଯ୍ୟାୟରେ ଯେଉଁ ପ୍ରମୁଖ ଆଲୋଚକମାନେ ଦୃଷ୍ଟି ପଥାରୁଢ ହୁଅନ୍ତି,ସେମାନେ ହେଲେ:— ଶ୍ରୀ ଭାବଗ୍ରାହୀ ମିଶ୍ର,ଅଧ୍ୟାପକ ନଟବର ସାମନ୍ତରାୟ,ଅଧ୍ୟାପକ ଶ୍ରୀ ନିତ୍ୟାନନ୍ଦ ଶତପଥୀ ଓ ଶ୍ରୀ ପ୍ରମୋଦ କୁମାର ମହାନ୍ତି । ଶ୍ରୀ ଭାବଗ୍ରାହୀ ମିଶ୍ର ଐତିହାସିକ ଆଲୋଚନା କ୍ରମରେ ପ୍ରଥମେ ମାନସିଂହଙ୍କ ସାହିତ୍ୟ ସଂପର୍କରେ ଆଲୋଚନା ଆରମ୍ଭ କରନ୍ତି । 'ଚତୁର୍ଦ୍ଦଶ ପଦୀ କବିତା ଓ ଓଡିଆ ସାହିତ୍ୟରେ ଏହାର ଧାରା'(50) ରେ ମଧୁସୂଦନଙ୍କ ଠାରୁ ମାନସିଂହଙ୍କ ପର୍ଯ୍ୟନ୍ତ ଲିଖିତ ସନେଟ ଗୁଡିକର ସେ ଆଲୋଚନା କରିଛନ୍ତି । ଏଥିରେ'କୁଶ' ସହିତ ଅନ୍ୟାନ୍ୟ ସନେଟର ଆଲୋଚନା କରାଯାଇଅଛି । ଏହାପରେ ଅଧ୍ୟାପକ ନଟବର ସାମନ୍ତରାୟ ତାଙ୍କର 'ଆଧୁନିକ ଓଡିଆ ସାହିତ୍ୟର ଦିଗ୍ଦର୍ଶନ' ପୁସ୍ତକରେ ସବୁଜ ପରେ ମାନସିଂହଙ୍କ ସଂପର୍କରେ ଏକ ସ୍ୱତନ୍ତ୍ର ଅଧ୍ୟାୟରେ ଆଲୋଚନା କରିଛନ୍ତି । ଏ ଆଲୋଚନା ଏତେ ଗଭୀର ନ ହେଲେ ହେଁ ଐତିହାସିକ ଆଲୋଚନା ପର୍ଯ୍ୟାୟରେ ମାନସିଂହଙ୍କ ପାଇଁ ଏକ ସ୍ୱତନ୍ତ୍ର ଅଧ୍ୟାୟ ସଂଯୋଗ କରିବାରେ ଅଧ୍ୟାପକ ସାମନ୍ତରାୟଙ୍କ ଭୂମିକା ଉଲ୍ଲେଖ ଯୋଗ୍ୟ ।(51) ଅଧ୍ୟାପକ ନିତ୍ୟାନନ୍ଦ ଶତପଥୀ ଆଧୁନିକ ଓଡିଆ ସାହିତ୍ୟ ଆଲୋଚନା କ୍ରମରେ ମାନସିଂହଙ୍କ ସଂପର୍କରେ ଐତିହାସିକ ଆଲୋଚନା କରିଛନ୍ତି । ଶ୍ରୀ ଶତପଥୀଙ୍କର 'ରବୀନ୍ଦ୍ରନାଥଙ୍କ ଅତୀନ୍ଦ୍ରିୟବାଦ ଓ ଓଡିଆ ସାହିତ୍ୟରେ ତାର ସଂକ୍ରମଣ'(52) ଶ୍ରୀ ପ୍ରମୋଦକୁମାର ମହାନ୍ତିଙ୍କର 'ଅନାସକ୍ତ କୋଣାର୍କ ଓ ତାହାର ଆସକ୍ତ କବି କେତେଜଣ'(53)ରେ ମାନସିଂହଙ୍କ ସାହିତ୍ୟ ସଂପର୍କରେ ଆଲୋଚନା କରିଛନ୍ତି ।

## ଦ୍ୱିତୀୟ ପର୍ଯ୍ୟାୟର ସମୀକ୍ଷା:

ଏହି ଦ୍ୱିତୀୟ ପର୍ଯ୍ୟାୟ(1957–73)ମଧ୍ୟରେ ମାନସିଂହଙ୍କ ବ୍ୟକ୍ତିଗତ ଜୀବନ ନାନା ଝଡ ଝଞ୍ଜା ମଧ୍ୟରେ ଅତିବାହିତ ହୋଇ ଯାଇଛି ଓ ସେହି ଝଡ ଝଞ୍ଜାର କାରଣ ସ୍ୱରୂପ ତାଙ୍କର ସାହିତ୍ୟିକ ବିସମ୍ବାଦକୁ ଉଲ୍ଲେଖ କରାଯାଇ ପାରେ । ତତ୍ପର ମାନସିଂହ ସାହିତ୍ୟ ସୃଷ୍ଟିର ବିଭିନ୍ନ ଧାରାକୁ ଅତିକ୍ରମ କରି ଏହି ସମୟରେ ବୌଦ୍ଧିକ ସ୍ତରକୁ ଉନ୍ନୀତ ହୋଇଯାଇଥିଲେ । ଏହି ସମୟରେ ତାଙ୍କର ମୌଳିକ ସୃଷ୍ଟି ଅପେକ୍ଷା ପ୍ରବନ୍ଧ ଓ ଆଲୋଚନା ଅଧିକ ସମୃଦ୍ଧ । ଓଡିଆ ଓ ଇଂରାଜୀ ଭାଷାରେ ଲିଖିତ ବିଭିନ୍ନ ଆଲୋଚନା ତଥା ଗଦ୍ୟ ରଚନା ତାଙ୍କୁ ସାହିତ୍ୟିକ ବିବାଦ ମଧ୍ୟକୁ ଟାଣି ନେଇଯାଇଥିଲା । 'କଣ୍ଟେମ୍ପରାରୀ ଇଣ୍ଡିଆନ ଲିଟରେଚର', ହିଷ୍ଟ୍ରି ଅଫ୍ ଓଡିଆ ଲିଟେରେଚର୍' ତଥା 'ଶିକ୍ଷାବିତ୍ର ଗାଥା'ରେ ତାଙ୍କର ଓଡିଆ ସାହିତ୍ୟ ତଥା ସାହିତ୍ୟିକଙ୍କ ସଂପର୍କରେ ମତାମତ ତାଙ୍କୁ ଜୀବନର ଅନ୍ତିମ ମୁହୂର୍ତ୍ତ ପର୍ଯ୍ୟନ୍ତ ବ୍ୟଥିତ କରି ରଖିଥିଲା । ବୟସାଧିକ୍ୟ ତଥା ତାଙ୍କ ରଚନାର ସମୀକ୍ଷାତ୍ମକ ଆଲୋଚନା ଓ ତାଙ୍କ ସଂପର୍କୀୟ ବିବାଦ ହିଁ ମାନସିଂହଙ୍କୁ ନାନା ବୌଦ୍ଧିକ ରଚନା ଲେଖିବା ପାଇଁ ପ୍ରେରଣା ପ୍ରଦାନ କରିଥାଇ ପାରେ ।

## ମାନସିଂହଙ୍କ ସୃଷ୍ଟି ବିଗ୍ରହ ବିମର୍ଶର ତୃତୀୟ ପର୍ଯ୍ୟାୟ:

ଖ୍ରୀ: 1973 ମସିହା କୁମାର ପୂର୍ଣ୍ଣିମା ରାତିରେ ସ୍ରଷ୍ଟା ମାନସିଂହଙ୍କର କର୍ମମୟ ଜୀବନର ଅବସାନ ପରେ ମାନସିଂହଙ୍କ ସୃଷ୍ଟି, ଜୀବନୀ ତଥା ସାହିତ୍ୟ ସଂପର୍କରେ ବ୍ୟାପକ ଆଲୋଚନା କରାଯାଇଥିଲା । ସେହି ଆଲୋଚନାର ଧାରାକୁ ମୁଖ୍ୟତଃ ପାଞ୍ଚଗୋଟି ଉପ ବିଭାଗରେ ବିଭକ୍ତ କରାଯାଉଅଛି । ——

(କ) ସ୍ମୃତି ଚାରଣ ।

(ଖ) ପ୍ରତିଭାର ମୂଲ୍ୟାୟନ ।

(ଗ) ଐତିହାସିକ ଆଲୋଚନା କ୍ରମରେ ମାନସିଂହଙ୍କ ସୃଷ୍ଟି ମୂଲ୍ୟାୟନ ।

(ଘ) ମାନସିଂହ ସ୍ମାରକୀ ପ୍ରବନ୍ଧ ପ୍ରତିଯୋଗିତାରେ ସୃଷ୍ଟି ସଂପର୍କୀୟ ନିବନ୍ଧ ।

(ଙ) ମାନସିଂହଙ୍କ ସଂପର୍କରେ ଗବେଷଣା ନିବନ୍ଧ ।

ତା–11.10.1973 ରେ ମାନସିଂହଙ୍କର୍ ସ୍ୱର୍ଗାରୋହଣ ହେଲା । ତାଙ୍କର ଏକାଦଶାହ ଉପଲକ୍ଷେ ମାତ୍ର ସ୍ୱଳ୍ପ ସମୟ ମଧ୍ୟରେ ଭୁବନେଶ୍ୱର୍ 'ଏକାମ୍ର ଥିଏଟର୍ସ'ଆନୁକୂଲ୍ୟରେ ଏକ ବିରାଟ କଳେବର ନେଇ ମାନସିଂହ ସ୍ମରଣିକା ପ୍ରକାଶିତ ହେଲା । ଏତେ ସ୍ୱଳ୍ପ ସମୟ ମଧ୍ୟରେ ଓଡିଶାରେ କୌଣସି କବି ବା ବ୍ୟକ୍ତି ବିଶେଷଙ୍କ ସଂପର୍କରେ ସ୍ମରଣିକା ଗ୍ରନ୍ଥ ପ୍ରକାଶ ପାଇନାହିଁ । ସେ ଦୃଷ୍ଟିରୁ ବିଚାର କଲେ ମାନସିଂହଙ୍କ ଲୋକପ୍ରିୟତା ଅନୁଭବ କରିହୁଏ । ଅଧ୍ୟାପକ ଦୁର୍ଗାଚରଣ କୁଅଁର, ଶ୍ରୀ ରମେଶ ଧଳ ଓ ଶ୍ରୀ ନଗେନ୍ଦ୍ରମୋହନ ମହାନ୍ତିଙ୍କ ପରିଚାଳନାରେ ପ୍ରକାଶିତ ଏହି

## ॥ ମାନସିଂହଙ୍କ ବିଗ୍ରହଧାରା ॥

ସ୍ମରଣିକାରେ ଓଡିଶାର ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜ୍ଜନ କରିଥିବା ବାଇଶ ଜଣ କବି ମାନସିଂହଙ୍କ ଉଦ୍ଦେଶ୍ୟରେ କବିତା ଲେଖି ସ୍ମୃତି ସ୍ମରଣ କରିଛନ୍ତି । ଚଉବିଶ ଜଣ ଗଦ୍ୟ ଆକାରରେ ଲେଖି ମାନସିଂହଙ୍କର ଗୁଣଗାନ କରିଛନ୍ତି । ଡଃ ନଟବର ସାମନ୍ତରାୟଙ୍କ 'କବି ମାନସିଂହଙ୍କ ଫନ୍ଦର ବର୍ଷ ରଚନାର କାଳ ନିର୍ଣ୍ଣୟ'କୁ ଛାଡିଦେଲେ ପ୍ରାୟ ସମସ୍ତ ଲେଖା ମାନସିଂହଙ୍କ ଗୁଣଗାନ ତଥା ସ୍ମୃତି ସ୍ମରଣ ଉଦ୍ଦେଶ୍ୟରେ ଲିଖିତ ।

ଏହି ସ୍ମରଣିକାରେ ଡକ୍ଟର ହରେକୃଷ୍ଣ ମହତାବ, କବିଚନ୍ଦ୍ର କାଳିଚରଣ ପଟ୍ଟନାୟକ , କାଳିନ୍ଦୀ ଚରଣ ପାଣିଗ୍ରାହୀ, ଡକ୍ଟର କୁଞ୍ଜବିହାରୀ ଦାଶ, ନୀଳମଣି ସେନାପତି, ଡଃ ବୈଦ୍ୟନାଥ ମିଶ୍ର, ପ୍ରଫେସର ମୋହନ ବିହାରୀ ଧଳ, ଡଃ ସଦାଶିବ ମିଶ୍ର, ପ୍ରକାଶକ ଶ୍ରୀ ଶ୍ରୀଧର ମହାପାତ୍ର, ପ୍ରହର୍ଷ ମିଶ୍ର, ବିଭୂତିଭୂଷଣ ତ୍ରିପାଠୀ, ଡଃ ବିଶ୍ୱନାଥ ସାହୁ, ଶ୍ରୀମତୀ ମଞ୍ଜରୀ ପଟ୍ଟନାୟକ, ଶ୍ରୀରବି ରାୟ, ମହାପାତ୍ର ନୀଳମଣି ସାହୁ, ଶ୍ରୀ ନିତ୍ୟାନନ୍ଦ ମହାପାତ୍ର, ଅଧ୍ୟାପକ ବେଣୁଧର ରାଉତ, ଶ୍ରୀ ଅଖିଳ ମୋହନ ପଟ୍ଟନାୟକ, ଡଃ ଜାନକୀବଲ୍ଲଭ ମହାନ୍ତି, ଶ୍ରୀମତୀ ମନୋରମା ମହାପାତ୍ର, ଡକ୍ଟର ଦାମୋଦର ଲେଙ୍କା, ଶ୍ରୀ ଗୋପୀନାଥ ମହାନ୍ତି, ଶ୍ରୀ ରାଜକିଶୋର ରାୟ, ଶ୍ରୀ ରାଜେନ୍ଦ୍ର ବର୍ମା, ଶ୍ରୀମତୀ ବସନ୍ତ ଲତା ଦେବୀ, ବିଦୂଷୀ, ଶ୍ରୀରମେଶ ଧଳ, ଶ୍ରୀ ସୀତା କାନ୍ତ ମହାପାତ୍ର, ପ୍ରମୁଖ ମହାନ୍ ଲେଖକ ତଥା ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରିଥିବା ଲେଖକମାନେ ମାନସିଂହଙ୍କର ସ୍ମୃତି ସ୍ମରଣ କରିଥିଲେ ।

କବି ରାଧାମୋହନ ଗଡନାୟକ, ସଚ୍ଚିଦାନନ୍ଦ ରାଉତରାୟ, ପ୍ରବୋଧ କୁମାର ମିଶ୍ର, ଶ୍ରୀମତୀ ତୁଳସୀ ଦାସ, ନାଟ୍ୟକାର କମଳଲୋଚନ ମହାନ୍ତି, ଅଧ୍ୟାପକ ବିନୋଦ ରାଉତରାୟ ପ୍ରମୁଖ ବାଇଶ ଜଣ କବିତା ଲେଖି ମାନସିଂହଙ୍କ ସ୍ମୃତି ସ୍ମରଣ କରିଥିଲେ । ଏହି ସ୍ମରଣିକାରେ କବି ସଚ୍ଚିଦାନନ୍ଦ ରାଉତରାୟ, ଅଧ୍ୟାପକ ଦୁର୍ଗାଚରଣ କୁଅଁର, ଅଧ୍ୟାପକ ବିଭୂତି ପଟ୍ଟନାୟକ, ଶ୍ରୀ ଉଦୟନାଥ ଷଡଙ୍ଗୀ, ଶ୍ରୀ ଅଚ୍ୟୁତାନନ୍ଦ କର ଓ ସୁରେନ୍ଦ୍ର ଶର୍ମା ପ୍ରମୁଖ ଆଲୋଚକ ମାନେ କବି ମାନସିଂହଙ୍କ ସ୍ମୃତି ସ୍ମରଣ ସଂଗେ ସଂଗେ ମାନସିଂହ ସାହିତ୍ୟ ସମ୍ପର୍କରେ ସାମାନ୍ୟ ଅଥଚ ସଂକେତାତ୍ମକ ଭାବରେ ଆଲୋଚନା କରିଥିଲେ । ମାନସିଂହ ସାହିତ୍ୟର ପୃଷ୍ଠଭୂମି ପାଇଁ ଏହି ସ୍ମରଣିକାଟି ଅତୀବ ମୂଲ୍ୟବାନ

ଏହି ପୁସ୍ତକ ସମେତ ସେ ସମୟରେ ଓଡିଶାର ପ୍ରାୟ ସମସ୍ତ ପତ୍ର ପତ୍ରିକା କବି ମାନସିଂହଙ୍କ ସ୍ମୃତି ଉଦ୍ଦେଶ୍ୟରେ ଲେଖା ପ୍ରକାଶ କରିଥିଲେ । ଓଡିଶାର ପ୍ରତିଷ୍ଠିତ ଲେଖକମାନେ କବି ମାନସିଂହଙ୍କ ଜୀବନୀ ଓ ପ୍ରତିଭା ସମ୍ପର୍କରେ ବିପୁଳ ଆଲୋଚନା କରିଥିଲେ । ଖ୍ରୀ: 1973 ମସିହାର ନଭେମ୍ବର ସଂଖ୍ୟା, ଝଙ୍କାର, ନବରବି, ସପ୍ତର୍ଷି, ଆଲୋକ, ଅଧୁନା, ଉତ୍କଳସାହିତ୍ୟ, ପ୍ରଭୃତି ପତ୍ରିକାରେ ମାନସିଂହଙ୍କ ଉଦ୍ଦେଶ୍ୟରେ ସଂପାଦକୀୟ ଅଗ୍ରଲେଖା ସହିତ ବ୍ୟାପକ ଭାବରେ କବିଙ୍କ ଗୁଣଗାନ କରାଯାଇଥିଲା । ଏହାପରେ 1974 ମସିହାରେ ଉତ୍କଳ ସାହିତ୍ୟ(ନୂତନ ପର୍ଯ୍ୟାୟ) କବି ମାୟାଧର ମାନସିଂହଙ୍କର ସ୍ମୃତି ସ୍ମରଣ ଉଦ୍ଦେଶ୍ୟରେ 'ଉତ୍କଳ ସାହିତ୍ୟ'ର ଏକ ସ୍ୱତନ୍ତ୍ର ସଂଖ୍ୟା ପ୍ରକାଶ କରିଥିଲେ ।

॥ ମାନସିଂହଙ୍କ ବିଗ୍ରହଧାରା ॥

1974 ର କେତେକ ପତ୍ରିକା ମଧ୍ୟ ମାନସିଂହଙ୍କୁ ଶୋକାଞ୍ଜଳି ଦେଇ ସମ୍ପାଦକୀୟ ଲେଖିଥିବାର ଦେଖାଯାଏ । (56)

କବିପତ୍ନୀ ଶ୍ରୀମତୀ ହେମଲତା ମାନସିଂହଙ୍କର ଏକ ସ୍ମୃତି ସ୍ମରଣ ମୂଳକ ଲେଖା, 'ପ୍ରିୟ ପରମ' ପ୍ରକାଶିତ ହେଲାପରେ, ମାନସିଂହଙ୍କ ବ୍ୟକ୍ତିଗତ ଜୀବନ ସମ୍ପର୍କରେ ଅନେକ ତଥ୍ୟ ଲୋକ ଲୋଚନକୁ ଆସିଥିଲା ।(57) ଏଠାରେ ଉଲ୍ଲେଖ କରାଯାଇ ପାରେ ଯେ, ମାନସିଂହଙ୍କ ସ୍ୱର୍ଗାରୋହଣ ପରେ ପରେ ଯେତେ ଲେଖା ସ୍ମୃତି ସ୍ମରଣ ଉଦ୍ଦେଶ୍ୟରେ ପ୍ରକାଶିତ ହୋଇଛି, ସେଥିରେ ମାନସିଂହଙ୍କର ଉଦାର ବ୍ୟକ୍ତିତ୍ୱ, ଆଦର୍ଶ ଶିକ୍ଷାବିତ୍ ତଥା ଶିକ୍ଷା ପ୍ରଶାସକର ମହାନ୍ ଦୃଷ୍ଟାନ୍ତ ସହିତ ତାଙ୍କ କାଳଜୟୀ ସାହିତ୍ୟର ସୂଚନା ପ୍ରଦାନ କରାଯାଇଅଛି ।

ପ୍ରତିଭାର ମୂଲ୍ୟାୟନ:

କବି ମାନସିଂହଙ୍କର ଅକାଳ ବିୟୋଗ ହେବା ସମୟରେ, ତାଙ୍କର ଗୁଣ ଗ୍ରାହକ ତଥା ନିନ୍ଦୁକ ମାନେ ମାନସିଂହ ପ୍ରତିଭାର ଯଶଗାନରେ ଯେପରି ଶତଜିହ୍ୱ ହୋଇ ପଡିଲେ, ସେଥିରୁ ମାନସିଂହଙ୍କ ବ୍ୟକ୍ତିତ୍ୱ ସମ୍ପର୍କରେ ଆକଳନ କରିହୁଏ । ଜୀବିତାବସ୍ଥାରେ ମାନସିଂହ ଅନେକ ମାନସିକ ନିର୍ଯ୍ୟାତନର ଶରବ୍ୟ ହୋଇଛନ୍ତି । ଏପରିକି ତାଙ୍କ ଜୀବନର ଶେଷ ଦଶକ ନାନା ଅଶାନ୍ତି ମଧ୍ୟରେ ଅତିବାହିତ ହୋଇ ଯାଇଛି । ତଥାପି ସେହି କଷଟିରୁ ମାନସିଂହ ସାହିତ୍ୟର ପରଖ ହୋଇ ପାରିଛି ।

ଖ୍ରୀ: 1973 ମସିହା ନଭେମ୍ବର ମାସରେ ଅଧ୍ୟାପକ ଚିନ୍ତାମଣି ବେହେରା, ଡକ୍ଟର ସଦାଶିବ ମିଶ୍ର, କବି ସଚ୍ଚିଦାନନ୍ଦ ରାଉତରାୟ, ଅଧ୍ୟାପକ ବାଳକୃଷ୍ଣ ଶତପଥୀ, ପ୍ରଫେସର ଗୋଲୋକ ବିହାରୀ ଧଳ, ଅଧ୍ୟାପକ ବିଭୂତି ପଟ୍ଟନାୟକ ।(58) ସ୍ମୃତି ସ୍ମରଣ ସଂଗେ ସଂଗେ ମାନସିଂହ ସାହିତ୍ୟର ମୂଲ୍ୟାୟନ କରି ଆଲୋଚନାମାନ ପ୍ରକାଶ କରିଥିଲେ । ଡିସେମ୍ବର ମାସରେ ଶ୍ରୀମତୀ ଆଶା ମିଶ୍ର ଓ ଅଧ୍ୟାପକ ନିଶାମଣି ମିଶ୍ର(59) ଙ୍କାର ପୃଷ୍ଠାରେ 'ସାଧବ ଝିଅ' ଓ 'ଜେମା' କାବ୍ୟ ସମ୍ପର୍କରେ ଆଲୋଚନା କରିଥିଲେ । ଉପର୍ଯ୍ୟୁକ୍ତ ଲେଖା ଗୁଡିକ ମଧ୍ୟରୁ ଅଧିକାଂଶ ଆବେଗମୟ ରୀତିରେ ଆଲୋଚନା କରାଯାଇ କବିଙ୍କ ଉଦ୍ଦେଶ୍ୟରେ ସ୍ମୃତି ସ୍ମରଣ ମାତ୍ର ହୋଇଛି । ଏହି ଲେଖା ମାନଙ୍କରେ ମାନସିଂହଙ୍କ ବିଗ୍ରହଧାରା ସଂପର୍କୀୟ ଆଲୋଚନାର ଅବକାଶ ନାହିଁ । ପୁନଶ୍ଚ ଏହି ପ୍ରବାହର ଧାରା ଆହୁରି ବର୍ଷେ ପର୍ଯ୍ୟନ୍ତ ପ୍ରବାହିତ ହୋଇଛି । କବି ଆନନ୍ଦ ବର୍ମା, 'ଉତ୍କଳ ସାହିତ୍ୟ'ର ନୂତନ ପ୍ରସ୍ଥ ସମ୍ପାଦନା କରି ମାନସିଂହଙ୍କ ସ୍ମୃତି ଉଦ୍ଦେଶ୍ୟରେ ଗୋଟିଏ ସ୍ୱତନ୍ତ୍ର ସଂଖ୍ୟା ପ୍ରକାଶ କଲେ । ଏହି ସଂଖ୍ୟାଟି ପୂର୍ବବର୍ତ୍ତୀ ଧାରାର ଏକ ସମ୍ପ୍ରସାରଣ ମାତ୍ର । ଏହି ସଂଖ୍ୟାରେ ଶ୍ରୀ ଚଣ୍ଡୀଚରଣ ରାଉତରାୟ, ମହେଶଚନ୍ଦ୍ର ମହାପାତ୍ର, ଡଃ ଗୋପାଳଚନ୍ଦ୍ର ମିଶ୍ର ଶ୍ରୀ ରାଧାଶ୍ୟାମ ବେହୁରା ଓ ଶ୍ରୀ ବିକ୍ରମକେଶରୀ ବର୍ମା (60) ପ୍ରମୁଖ ଆଲୋଚକ ମାନେ ସ୍ମୃତି ସ୍ମରଣ ସଂଗେ ସଂଗେ ପ୍ରତିଭା ମୂଲ୍ୟାୟନର ଚେଷ୍ଟା କରିଥିଲେ । ଏହି ଆଲୋଚନା ଗୁଡିକ ଅଧିକାଂଶ ସଂକ୍ଷିପ୍ତ ଓ ଏଥିରେ ଯେତେ ପରିମାଣରେ ବ୍ୟାପ୍ତି ଅଛି, ସେହି ଅନୁପାତରେ ଗଭୀରତା ନାହିଁ ଆଲୋଚନା ଗୁଡିକ ଭାବ ପ୍ରବଣତାର ସ୍ରୋତରେ ଭାସିଗଲା ଭଳି ମନେହୁଏ ।

॥ ମାନସିଂହଙ୍କ ବିଗ୍ରହଧାରା ॥

ଡକ୍ଟର ଖଗେଶ୍ୱର ମହାପାତ୍ରଙ୍କ ଆଲୋଚନା 'ମାନସିଂହଙ୍କ ସୌନ୍ଦର୍ଯ୍ୟ ଚେତନାରେ ନାରୀ'(61) ସଂକ୍ଷିପ୍ତ ହେଲେ ହେଁ, ବହୁ ପରିମାଣରେ ତଥ୍ୟ ଭିତ୍ତିକ । ଖ୍ରୀ: 1977 ମସିହାରେ ଅଧ୍ୟାପକ ବିଭୂଦତ୍ତ ମିଶ୍ର(62) ମାୟାଧର ମାନସିଂହଙ୍କ ସଂପର୍କରେ ଏକ ଆଲୋଚନା ପ୍ରକାଶ କଲେ, ସପ୍ତର୍ଷିରେ ପ୍ରଜ୍ଞାପାରମିତା ମହାନ୍ତି 'ମାନସିଂହଙ୍କ କାବ୍ୟ କବିତାରେ ପ୍ରେମ' ଲେଖା ପ୍ରକାଶ କଲେ (62) ଏହି ଲେଖା ମଧ୍ୟ ପୂର୍ବ ଧାରାର ପୁନରୁକ୍ତି ମାତ୍ର । ଖ୍ରୀ: 1978 ରେ ଅଧ୍ୟାପକ ରାଧାଶ୍ୟାମ ବେହୁରାଙ୍କ ସଂପାଦନାରେ ଡଃ ମାନସିଂହଙ୍କ ସଂପର୍କରେ ଗୋଟିଏ ଆଲୋଚନା ସଂକଳନ ପ୍ରକାଶ ପାଇଲା । ଏହି ସଂକଳନର ଅଧିକାଂଶ ଲେଖା ପୂର୍ବରୁ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇଥିଲା(ପୂର୍ବରୁ ସୂଚନାରେ ପ୍ରଦର୍ଶିତ ହୋଇଛି) ତଥାପି ଅଧ୍ୟାପକ ପଠାଣି ପଟ୍ଟନାୟକ, ଅଧ୍ୟାପକ ଦାଶରଥି ଦାସ, ଅଧ୍ୟାପକ ଚିନ୍ତାମଣି ବେହେରା, ଶ୍ରୀ ବସନ୍ତକୁମାର ସାମଲ, ଅଧ୍ୟାପକ ସଚ୍ଚିଦାନନ୍ଦ ମିଶ୍ର, ଅଧ୍ୟାପକ ବନମାଳୀ ମିଶ୍ର, ଶ୍ରୀ ମହେଶ୍ୱର ନାୟକ, ଅଧ୍ୟାପକ ରାଧାଶ୍ୟାମ ବେହୁରା, ଶ୍ରୀ ଗଂଗାଧର ଗୁରୁ, ଶ୍ରୀ ମନୀନ୍ଦ୍ର ମହାନ୍ତି, ଅଧ୍ୟାପକ ନାରାୟଣ ଶତପଥୀ ତଥା ସ୍ୱର୍ଗତ ଗୋଲୋକ ବିହାରୀ ଧଳଙ୍କ(63) ଆଲୋଚନା ଅନେକ ସ୍ଥଳରେ ମାନସିଂହଙ୍କ ପ୍ରତିଭା ବିକାଶ ସଂପର୍କୀୟ ଆଲୋଚନାରେ ସାହାଯ୍ୟ କରେ ।

ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କ ସଂପାଦନାରେ,'ଓଡିଶା ପୂଜ୍ୟପୂଜା ସଂସଦ' ଆନୁକୁଲ୍ୟରେ ପ୍ରକାଶିତ 'ମାନସିଂହ ପରିକ୍ରମା'ହିଁ ମାନସିଂହଙ୍କ ସାହିତ୍ୟ ତଥା ପ୍ରତିଭା ସଂପର୍କରେ ମୂଲ୍ୟାୟନ ମୂଳକ ପୁସ୍ତକ(64) ଏହି ସଂକଳନରେ ମାନସିଂହଙ୍କ କବିତା, ସାହିତ୍ୟର ଇତିହାସ, ଗୀତିନାଟ୍ୟ, କାବ୍ୟ, ଜୀବନୀ ତଥା ଆତ୍ମଜୀବନୀ, ପ୍ରବନ୍ଧର ଆଲୋଚନା ସଂଗେ ସଂଗେ, ମାନସିଂହଙ୍କ ପ୍ରଣୟ ଚେତନା, ରୋମାଣ୍ଟିକ ଭାବ, ଜାତୀୟ ଚେତନା ପ୍ରଭୃତି ଦିଗ ପ୍ରତି ଆଲୋକପାତ କରାଯାଇ ଅଛି । ସର୍ବୋପରି ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କର 'ସବୁଜ ସମସାମୟିକ ଏକକ କବି ଡକ୍ଟର ମାନସିଂହ' ଆଲୋଚନାଟି କବି ମାନସିଂହଙ୍କ କାବ୍ୟ ଆଲୋଚନା ଉପରେ ଏକ ପୂର୍ଣ୍ଣାଙ୍ଗ ଦୃଷ୍ଟିପାତ ।

"ମାନସିଂହ ମାନସ, ପ୍ରଥମ ଖଣ୍ଡ"(65) ମାନସିଂହଙ୍କ ସାହିତ୍ୟ ଉପରେ ପ୍ରଥମ ଏକକ ଆଲୋଚନା ଗ୍ରନ୍ଥ । ଏହି ପୁସ୍ତକରେ ମାନସିଂହଙ୍କ ସାହିତ୍ୟର କେତୋଟି ବିଭାଗ ଉପରେ ବ୍ୟାପକ ଆଲୋଚନା କରାଯାଇଅଛି । 'ମାନସିଂହଙ୍କ କବିତାରେ ପ୍ରଣୟ ଚେତନା', 'ନାଟ୍ୟକାର ମାନସିଂହଙ୍କ ନାଟ୍ୟ ମାନସ', 'ମାନସିଂହ ସାହିତ୍ୟରେ ଜାତୀୟ ଚେତନା', 'ମାନସିଂହଙ୍କ ରସଚେତନା' ତଥା 'ଅନ୍ୱେଷଣ ଉପନ୍ୟାସରେ ମାନସିଂହ ମାନସ' ପରି ପାଞ୍ଚଗୋଟି ଦୀର୍ଘ ଆଲୋଚନା ସ୍ଥାନିତ ହୋଇଅଛି ।

ଅଧ୍ୟାପକ ଡକ୍ଟର କିଶୋରଚନ୍ଦ୍ର ମିଶ୍ରଙ୍କର 'ମାନସିଂହ ସାହିତ୍ୟରେ ଉପମା ଅଧ୍ୟୟନ' ଏକ ଦୀର୍ଘ ଆଲୋଚନା । ଏହି ଆଲୋଚନାରେ ଡଃ ମିଶ୍ର ମାନସିଂହଙ୍କ ସମସ୍ତ କବିତା ତଥା କାବ୍ୟରୁ ଉପମା ସଂଗ୍ରହ କରି ବିଭିନ୍ନ ପର୍ଯ୍ୟାୟରେ ଆଲୋଚନା କରିଛନ୍ତି । ଏହି ଆଲୋଚନା ଗୁଡିକ 'ଡଗର', ବାସନ୍ତିକା, ପ୍ରଗତି ଉତ୍କଳ ସଂଘ ସ୍ମରଣୀ ତଥା ଉତ୍କଳ ଗୌରବ'ରେ ପ୍ରକାଶିତ ହୋଇଅଛି ।(66) ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି 'ଆବର୍ତ୍ତ'ରେ ମାନସିଂହଙ୍କ କାବ୍ୟ ପ୍ରତିଭା ସଂପର୍କରେ ଆଲୋଚନା କରିଛନ୍ତି ।(67)

॥ ମାନସିଂହଙ୍କ ବିଗ୍ରହଧାରା ।।।

**ଐତିହାସିକ ଆଲୋଚନାରେ**

ଖ୍ରୀ: 1973 ମସିହା ପରେ ପରେ ଐତିହାସିକ ଆଲୋଚନା କ୍ରମରେ ମାନସିଂହଙ୍କର ସାହିତ୍ୟ ଓ ଜୀବନ ସମ୍ପର୍କରେ ଓଡିଆ ସାହିତ୍ୟର ଇତିହାସ ଓ ଅନ୍ୟାନ୍ୟ ଆଲୋଚନା ତଥା ନିବନ୍ଧ ଗ୍ରନ୍ଥରେ ସତ୍ୟବାଦୀ ପରବର୍ତ୍ତୀ ସାହିତ୍ୟର ଆଲୋଚନା କ୍ରମରେ ସ୍ଥାନିତ କରାଯାଇଅଛି । ଡଃ କୁଞ୍ଜବିହାରୀ ଦାଶଙ୍କ ଜୀବନୀ 'ମୋ କାହାଣୀ' (68) ଶ୍ରୀ ସୁରେନ୍ଦ୍ର ମହାନ୍ତିଙ୍କର 'ଓଡିଆ ସାହିତ୍ୟର କ୍ରମବିକାଶ'(69) ଡକ୍ଟର ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟଙ୍କର ଓଡିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ'(70) ପ୍ରଭୃତି ବିଭିନ୍ନ ପୁସ୍ତକରେ ଆଧୁନିକ ଓଡିଆ ସାହିତ୍ୟ ଆଲୋଚନା କ୍ରମରେ ମାନସିଂହଙ୍କ ପ୍ରସଂଗରେ ଆଲୋକପାତ କରାଯାଇଅଛି ।

ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କର ଗବେଷଣା ନିବନ୍ଧ "ସବୁଜରୁ ସାମ୍ପ୍ରତିକ'(71)ରେ ସବୁଜ ସମସାମୟିକ ଏକକ କବି ବୃନ୍ଦ ଆଲୋଚନା ପ୍ରସଂଗରେ, ଡଃ ମାୟାଧର ମାନସିଂହ, ଗୀତିକବି ରାଧାମୋହନ ଗଡନାୟକ ଓ ମାନବବାଦୀ ଦରଦୀ କବି କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ ପ୍ରସଂଗରେ ଆଲୋଚନା କରିଛନ୍ତି । କବି ମାନସିଂହଙ୍କ ସମ୍ପର୍କରେ ଦୀର୍ଘ ଆଲୋଚନା କରି ସେ ମାନସିଂହଙ୍କ କାବ୍ୟ କବିତାର ବ୍ୟାପକ ବିଶ୍ଳେଷଣ କରିଛନ୍ତି । 'ପଲ୍ଲୀଜୀବନାଲେଖ୍ୟ, ସେ ଦିନର କବିତା ଓ ବାସ୍ତବ ବାଦୀ ଦୃଷ୍ଟି ଭଙ୍ଗୀ, ମାନସିଂହଙ୍କ ପ୍ରେମ କବିତାର ସ୍ୱରୂପ, ଆଧିଭୌତିକ ଚେତନା, ଆଦି ଦୃଷ୍ଟିକୋଣରୁ ମାନସିଂହଙ୍କ କାବ୍ୟ କବିତାକୁ ସୂକ୍ଷ୍ମ ଦୃଷ୍ଟିକୋଣରୁ ବିଗ୍ରହ କରିଛନ୍ତି । ଐତିହାସିକ ଆଲୋଚନା କ୍ରମରେ ଡଃ ଶତପଥୀଙ୍କ ଆଲୋଚନା ସ୍ୱତନ୍ତ୍ର ସମ୍ମାନର ଅପେକ୍ଷା ରଖେ । ଏହି ଆଲୋଚନା ପର୍ଯ୍ୟାୟରେ ଅଧ୍ୟାପକ ଚିନ୍ତାମଣି ବେହେରା(72) ଅଧ୍ୟାପକ ଦାଶରଥି ଦାସ(73), ଡକ୍ଟର ହେମନ୍ତ କୁମାର ଦାସ(74)ତଥା ଡକ୍ଟର ପ୍ରତିଭା ଶତପଥୀ(75) ପ୍ରମୁଖଙ୍କ ଆଲୋଚନାରେ କିଛି ନୂତନତ୍ୱର ସ୍ୱର ଦେଖିବାକୁ ମିଳେ ।

**ମାନସିଂହ ସ୍ମାରକୀ ପ୍ରବନ୍ଧ ପ୍ରତିଯୋଗିତା :**

ଖ୍ରୀ: 1974 ମସିହାରୁ ପ୍ରଫେସର ଡକ୍ଟର ସୂର୍ଯ୍ୟକାନ୍ତ ଦାସଙ୍କ ତତ୍ତ୍ୱାବଧାନରେ ମାନସିଂହ ସାହିତ୍ୟର ବିଭିନ୍ନ ବିଭାବ ଉପରେ ଗବେଷଣାତ୍ମକ ପ୍ରବନ୍ଧ ପ୍ରତିଯୋଗିତା ବିଶ୍ୱବିଦ୍ୟାଳୟ ତଥା ମହାବିଦ୍ୟାଳୟର ଛାତ୍ରଛାତ୍ରୀଙ୍କ ମଧ୍ୟରେ ଅନୁଷ୍ଠିତ ହେଉଅଛି । ମାନସିଂହଙ୍କ ଆମେରିକୀୟ ବନ୍ଧୁ ଡଃ ଭିକ୍ଟର ରାଲ୍ଫ ଦମ୍ପତିଙ୍କ ପ୍ରଦତ୍ତ ଅର୍ଥରେ ଏହି ପ୍ରତିଯୋଗିତା ହେଉଅଛି । ଏହା ଦ୍ୱାରା ଛାତ୍ର ଛାତ୍ରୀଙ୍କ ମଧ୍ୟରେ ମାନସିଂହ ସାହିତ୍ୟ ଆଲୋଚନାର କ୍ଷେତ୍ର ଜାଗ୍ରତ ହୋଇ ପାରିଛି । ଏ ପ୍ରତିଯୋଗିତାର ପୁରସ୍କୃତ ପ୍ରବନ୍ଧ ଗୁଡିକର ସଂକଳନ ପ୍ରକାଶିତ ହେଲେ, ମାନସିଂହ ସାହିତ୍ୟ ଚର୍ଚ୍ଚା ସମ୍ପର୍କରେ ଅନେକ ବିକାଶ ହୋଇ ପାରନ୍ତା । ଅବଶ୍ୟ ଏ ଆଲୋଚନା ଗୁଡିକରେ ବ୍ୟାପ୍ତି ଅପେକ୍ଷା ଗଭୀରତା ଅନେକ କମ୍ ତଥାପି ଏହା ମଧ୍ୟରେ ଅନେକ ସମ୍ଭାବନା ଲୁଚି ରହିଛି ।

## ଗବେଷଣା ନିବନ୍ଧ :

ମାନସିଂହଙ୍କ ସାହିତ୍ୟକୃତି ସମ୍ପର୍କରେ ଏ ପର୍ଯ୍ୟନ୍ତ ଚାରିଗୋଟି ଚର୍ଚ୍ଚା ନିବନ୍ଧ ଓଡିଶାର ଦୁଇଟି ବିଶ୍ୱବିଦ୍ୟାଳୟରେ ଉପସ୍ଥାପିତ ହୋଇଥିବାର ଜଣାଯାଏ । ସେଥି ମଧ୍ୟରୁ ଗୋଟିଏ– ମାନସିଂହଙ୍କ ସାହିତ୍ୟକୃତିର ସାମଗ୍ରିକ ମୂଲ୍ୟାୟନ ହେଲାବେଳେ, ଅନ୍ୟ ଗୋଟିଏ ମାନସିଂହଙ୍କ କାବ୍ୟ କବିତାରେ ପ୍ରକାଶିତ ଏକ ନିର୍ଦ୍ଦିଷ୍ଟ ଭାବଚେତନାର ବିଶ୍ଳେଷଣ । ଅବଶିଷ୍ଟ ଦୁଇଟି ନିବନ୍ଧ ମାନସିଂହଙ୍କ କାବ୍ୟ କବିତା ଉପରେ ଆଧାରିତ । (77)

ଡକ୍ଟର ରାଧାଶ୍ୟାମ ବେହୁରା ତାଙ୍କର "ଓଡିଆ ସାହିତ୍ୟକୁ ମାୟାଧର ମାନସିଂହଙ୍କ ଅବଦାନ" ନିବନ୍ଧରେ ମାନସିଂହଙ୍କ ସାହିତ୍ୟ କୃତିର ବିଭିନ୍ନ ଦିଗ ଉପରେ ବିଶ୍ଳେଷଣ କରି ତାହାର ଐତିହାସିକ ତାତ୍ପର୍ଯ୍ୟ ଉପସ୍ଥାପନ କରିବାକୁ ଚେଷ୍ଟା କରିଛନ୍ତି । ଏହା ମାନସିଂହଙ୍କ ସମ୍ପର୍କରେ ଏକ ଐତିହାସିକ ଆଲୋଚନା ମାତ୍ର । ମାନସିଂହଙ୍କର କବିତା, ଖଣ୍ଡକାବ୍ୟ, ମହାକାବ୍ୟ ଡକ୍ଟର ବେହୁରାଙ୍କର ମୁଖ୍ୟ ଆଲୋଚନାର ବିଷୟ ହେଲେ ହେଁ, ମାନସିଂହ ସାହିତ୍ୟର ଅନ୍ୟାନ୍ୟ ରୂପ ବିଭବକୁ ସେ ସ୍ପର୍ଶ କରିଛନ୍ତି । ଏହା ମାନସିଂହଙ୍କର ସ୍ରଷ୍ଟାମନ, ସାହିତ୍ୟକୃତି ତଥା ସାହିତ୍ୟିକ ବିଭବର ଏକ ସାମଗ୍ରିକ ମୂଲ୍ୟାୟନ । ମୋର ନିବନ୍ଧ ମାନସିଂହଙ୍କର ସାହିତ୍ୟକୃତି ଉପରେ ଆଧାରିତ ହେଲେହେଁ ତାର ସାର୍ବିକ ବିଗ୍ରହ ନୁହେଁ, ଏକ ନିର୍ଦ୍ଦିଷ୍ଟ ଦିଗର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ ।

ଡଃ କୁଞ୍ଜବିହାରୀ ଧଳ ଓ ଡଃ ମନୋରମା ମହାପାତ୍ର, ଉଭୟଙ୍କର ବିମୃଶ୍ୟ ବିଷୟ, ମାନସିଂହଙ୍କର କାବ୍ୟ–କବିତା । ଗୀତିକବି, ଖଣ୍ଡକାବ୍ୟର କବି, ମହାକାବ୍ୟ ତଥା ଗୀତିନାଟ୍ୟର କବି ମାନସିଂହ, ଏମାନଙ୍କର ଆଲୋଚନାର ବିଷୟ । ଏ ଦୁହିଁଙ୍କର ଆଲୋଚନାରଧାରା ଡକ୍ଟର ବେହୁରାଙ୍କ ଧାରାଠାରୁ ଖୁବ୍ ଗୋଟାଏ ଦୂରବର୍ତ୍ତୀ ନୁହେଁ । ତିନୋଟି ଯାକ ଚର୍ଚ୍ଚା–ନିବନ୍ଧ ପ୍ରାୟତଃ ଏକ ଧରଣର । ଚତୁର୍ଥ ଚର୍ଚ୍ଚା ନିବନ୍ଧ ଡଃ ସଂଯୁକ୍ତା ମିଶ୍ରଙ୍କର "କବି ମାନସିଂହଙ୍କ କାବ୍ୟ–କବିତାରେ ଜାତୀୟ ଚେତନା" ଏହି ଆଲୋଚକ କୌଣସି ସୂତ୍ରରୁ ଉକ୍ତ ନିବନ୍ଧକୁ ପଢିବାର ସୁଯୋଗ ପାଇନାହିଁ ।

ମାନସିଂହଙ୍କ ସମ୍ପର୍କରେ ଏ ପର୍ଯ୍ୟନ୍ତ ଚାରିଗୋଟି ପ୍ରବନ୍ଧ ଉପସ୍ଥାପିତ ହୋଇଥିଲେ ବି, ଚର୍ଚ୍ଚା ଏ ପର୍ଯ୍ୟନ୍ତ ଏକ ସ୍ଥାଣୁ ଅବସ୍ଥାକୁ ଆସିନାହିଁ ବା ତାହା ଏକ ଅଣକର୍ଷିତ ଭୂମି ହୋଇନାହିଁ । ମାନସିଂହଙ୍କ ସାହିତ୍ୟକୃତିର ମୁଖ୍ୟଭାଗ ତାଙ୍କର ଗଦ୍ୟ ରଚନା, ବୈଚିତ୍ର୍ୟ ଓ ନୂତନତ୍ୱ ଦୃଷ୍ଟିରୁ ଓଡିଆ ସାହିତ୍ୟରେ ତାହାମଧ୍ୟ ଅଁ ନବ । ମାନସିଂହଙ୍କ ସମ୍ପର୍କରେ ହୋଇଥିବା ଆଲୋଚନା ମୁଖ୍ୟତଃ କାବ୍ୟକବିତା କୈନ୍ଦ୍ରିକ ହୋଇଥିବାରୁ, ଏହି ଗଦ୍ୟ ରଚନାର ପରିଧି ଅତିକ୍ରମ କରିବା ପାଇଁ ଆଲୋଚକମାନେ ଇଚ୍ଛା କରି ନାହାନ୍ତି । ମୋର ଗବେଷଣା ନିବନ୍ଧ ମାନସିଂହଙ୍କ ସାହିତ୍ୟକୃତିର ସାମଗ୍ରିକ ମୂଲ୍ୟାୟନ ନୁହେଁ; ତାର ନିର୍ଯ୍ୟାସର ଏକ ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ । ମାନସିଂହଙ୍କ ବିଗ୍ରହଧାରାରେ କାବ୍ୟକାର ମାନସିଂହ ଗୌଣ ନୁହନ୍ତି କିନ୍ତୁ ଗଦ୍ୟଶିଳ୍ପୀ ମାନସିଂହହିଁ ନାୟକ ଭୂମିକାରେ ଅବତୀର୍ଣ୍ଣ ।

---

## ଦ୍ୱିତୀୟ ଅଧ୍ୟାୟର ସୂଚନା:

1:- 'ଧୂପ' ସମୀକ୍ଷା, ସହକାର, 12/3, ଆଷାଢ, 1338,
ଧୂପ' ଦ୍ୱିତୀୟ ସଂସ୍କରଣ ସମୀକ୍ଷା, ଡଗର, 1·8·1949·

2: 'ହେମଶସ୍ୟ(କବିତା) ସମୀକ୍ଷା ରସଚକ୍ର, 1/1, 1340,

3: 'ରବୀନ୍ଦ୍ରନାଥଙ୍କ କବିତା'-ସମୀକ୍ଷା ରସଚକ୍ର, 1/2, ଚୈତ୍ର, 1340,

4: ପ୍ରାଚୀନ ଓଡିଆ କାବ୍ୟ(ପ୍ରବନ୍ଧ) ସମୀକ୍ଷା ରସଚକ୍ର 1/2, ଚୈତ୍ର, 1340,

5: ପଟ୍ଟନାୟକ, ଶ୍ରୀବୈକୁଣ୍ଠନାଥ, ପୂଜାରିଣୀ(ପୁସ୍ତକ ସମୀକ୍ଷା), ରସଚକ୍ର, 1/2, ଚୈତ୍ର, 1340,

6: ଷଡଙ୍ଗୀ, ଶ୍ରୀଚତୁର୍ଭୁଜ, ପରଧର୍ମ(ପ୍ରବନ୍ଧ ସମୀକ୍ଷା) ରସଚକ୍ର, 1/3, ବୈଶାଖ, 1340,

7: ରାଧାନାଥ ଓ ମଧୁସୂଦନ, (ପ୍ରବନ୍ଧ ସମୀକ୍ଷା) ରସଚକ୍ର, 1/3, ବୈଶାଖ, 1340,

8: ପଟ୍ଟନାୟକ, ଶ୍ରୀବୈକୁଣ୍ଠନାଥ, ହେମଶସ୍ୟ(ପୁସ୍ତକ ସମୀକ୍ଷା), ରସଚକ୍ର, 1/4, ଜ୍ୟେଷ୍ଠ, 1340,

9: ନରଚିରନ୍ତନ(କବିତା ସମୀକ୍ଷା) ଡଗର, 4/5, -1942·

10: ଆତତାୟୀ(କବିତା ସମୀକ୍ଷା) ଡଗର5/19 ସଂଖ୍ୟା, 1·3·1942·

11: ମାଳାଗ୍ରହଣ(କବିତା ସମୀକ୍ଷା) ଡଗର 7/12 ସଂଖ୍ୟା, 16·11·1943·

12: ପ୍ରେମଶସ୍ୟ(କାବ୍ୟ ସମୀକ୍ଷା) ଡଗର 9/12, 13 , 1·12·1945,

13: ନଷ୍ଟନୀଡ (କବିତା ସମୀକ୍ଷା) ଡଗର 8/20, 16·3·1945,

14: ବାପୁତର୍ପଣ(କବିତା ସମୀକ୍ଷା) ଡଗର 1·8·1948,

15: ଜୀବନୀ ଓ ପ୍ରବନ୍ଧ, ହେମପୁଷ୍ପ, କବିଓ କବିତା, ଜୀବନଚିତା(ସମୀକ୍ଷା), ଡଗର, 1·10·1949,

16· କମଳାୟନ, ମାଟିବାଣୀ, ଜେମା(ସମୀକ୍ଷା) ଡଗର, 16·10 ·1949,

17: ଜୀବନପଥ, ନଷ୍ଟନୀଡ(ସମୀକ୍ଷା) ଡଗର 16·12·1949·

18: ବୁଦ୍ଧ' (ନାଟକ ସମୀକ୍ଷା) ଝଙ୍କାର, 3/12, ଫେବୃୟାରୀ, ପୃ·961,

19: ଦୁର୍ଭିକ୍ଷ' (ନାଟିକା ସମୀକ୍ଷା) ଉତ୍କଳ ସାହିତ୍ୟ, ନୂତନ ପର୍ଯ୍ୟାୟ, 2/10, 11, ଶେଷ ପୃଷ୍ଠା,

20: ମେହେର ପ୍ରଦୀପ, (ସମୀକ୍ଷା) ଡଗର, 19/5, ନଭେମ୍ବର 1955,

21: ବତାଲ, ଶ୍ରୀ ହରୀଶ୍ଚନ୍ଦ୍ର-'ପୁଷ୍ପିତା ନାଟିକାର ସାର୍ଥକତା' (ସମାଲୋଚନା)
ସହକାର, 11/5, ଭାଦ୍ରବ, 1337 ସାଲ, 1930 ମସିହା, ପୃ·233-42·

॥ ମାନସିଂହଙ୍କ ବିଗ୍ରହଧାରା ॥

22: 'ତରୁଣ କବିର ଆଶା'ରେ ଥିଲା

" ସବୁ କିଶୋରୀର ଚିବୁକ ଧରି,
ବୁଲନ୍ତି ମୁଁ ଆହା ରସିକ ପରି,
ବୋଲନ୍ତି ସବୁରି ବାନ୍ଧବ ମୁହିଁ,
ଜାଣ ସୁମୁହିଁ "

'ଉତ୍କଳ ସାହିତ୍ୟ, 32/1, ଏପ୍ରିଲ, 1928 ରେ ପ୍ରକାଶିତ ଉପର୍ଯ୍ୟୁକ୍ତ ପଦଟି ପରେ 'ଧୂପ'ର ଅନ୍ୟାନ୍ୟ ସଂସ୍କରଣରେ ଉଠାଇ ଦିଆଯାଇଛି ।

ସେହିପରି 'ପୁଷ୍ପିତା'ର ଦୁଇଟି 'ପଦ ଯଥା:-

"ସଂଧ୍ୟାରେ ଯେବେ ନବ ତରୁଣୀ,
ନ ଖୋଜେ ଅପଥେ, ପ୍ରିୟ ସରଣୀ
ଯଉବନ ତେବେ କିପାଁ ପାଇ ହେ,
ଉପଭୋଗ ପାଇଁ ବେଳ କାହିଁ ହେ, ?

ଆହୁରି——

ଘର ଛାଡି କୁଳଝିଅ ଜନପଥେ ଘୁରିବ,
ଗୁରୁ କ୍ଷେତ ସ୍ଥଲ-ଲଘୁ ପଦ ଛୁଇଁ ପୁରିବ

'ପୁଷ୍ପିତା'ନାଟିକା- ସହକାର 11/4, ଶ୍ରାବଣ, 1337·ରେ ପ୍ରକାଶିତ, ପରବର୍ତ୍ତୀ ସଂସ୍କରଣ ଗୁଡିକରେ ଏ ପଦର କେତେକ ପରିବର୍ତ୍ତନ ହୋଇଛି ।

23: ମାନସିଂହ, ମାୟାଧର ।'ପୁଷ୍ପିତା ଲେଖକର କୈଫିୟତ, ସହକାର, 11/6, ସେପ୍ଟେମ୍ବର, 1930·

24: ସହକାର, 13/5, ଚିଠିପତ୍ର, ପ·473, ଭାଦ୍ରବ, 1337 ସାଲ ।

25: ସହକାର, 13/11, ଫେବ୍ରୁୟାରୀ-1933,

26: ସହକାର, 13/9, ପୌଷ, 1340, ପ·854-55·

27: ଷଡଙ୍ଗୀ, ଷଡଭୁଜ । ରସଚକ୍ର, 1/3, ବୈଶାଖ, 1340 ର କଷଟି ସ୍ତମ୍ଭରେ ଏକ ଦୀର୍ଘ ପତ୍ରରେ ସମାଲୋଚନା ।

(ଖ) ଉତ୍କଳ ଦୀପିକା 1933, ସଂପାଦକୀୟ,

(ଗ) ରାଉତରାୟ, ସଚ୍ଚିଦାନନ୍ଦ । 'ସ୍ୱ-ଧର୍ମ, ପରଧର୍ମ', ସହକାର, ଚିଠିପତ୍ର ସ୍ତମ୍ଭରେ, ପ· 1159-61,

(ଘ) ଭୂୟାଁ, ଶ୍ରୀଦିଗମ୍ବର ।'ସ୍ୱ-ଧର୍ମ ଓ ପରଧର୍ମ' ସହକାର, 13/12, ଚିଠିପତ୍ର କ୍ରମରେ ॥

॥ ମାନସିଂହଙ୍କ ବିଗ୍ରହଧାରା ॥

28: (କ) ମାନସିଂହ, ମାୟାଧର,'ହିସାବ ନିକାଶ(କବିତା), ସହକାର, 23/1, ବୈଶାଖ, 1349, ଏପ୍ରିଲ, 1942.

(ଖ)ଦାସ, ଶ୍ରୀବୈକୁଣ୍ଠନାଥ,'ହିସାବ ନିକାଶ ନିଶାପ(କବିତା), ସହକାର, 23/3, ଆଷାଢ଼, 1349, ଜୁନ, 1942,

(ଗ) ଉଭୟ ଲେଖାର ସମୀକ୍ଷା—ଡଗର' 6/9, 1.10.1942,

29: ରାୟ, ରାଜକିଶୋର ।'କବି ମାନସିଂହ ଓ ମେଟିଓରାଲିଜମ୍'ନବଭାରତ(ନୂତନ), 2/11, ସେପ୍ଟେ.1950, ପ.413.

30: ଶର୍ମା, ବୃନ୍ଦାବନ ନାଥ ।'ବୌଦ୍ଧ ଧର୍ମ କି ମନୁଷ୍ୟର ଏକମାତ୍ର ଧର୍ମ ?', ଝଙ୍କାର, 3/2, ମଇ, 1951, ପ.127.

31: ଧଳ, ଗୋଲୋକବିହାରୀ ।'ଭାଷାତତ୍ତ୍ୱର ଅପପ୍ରଶ୍ନର ଉତ୍ତର(1), ଡଗର, , ଜୁଲାଇ, 1955. 19/1,

(ଖ) ଭାଷାତତ୍ତ୍ୱର ଅପ ପ୍ରଶ୍ନର ଉତ୍ତର(2), ଡଗର' 19/2, ଅଗଷ୍ଟ 1955,

32: (କ) ପତ୍ରାନନ୍ଦ— 'କବି ଲଢେଇ'(ମାନସିଂହଙ୍କ କବିତାର ପ୍ୟାରୋଡି), ଡଗର, 10/23, ତା—1.6.1947,

(ଖ) ସିଂହଦେବ, ବ୍ରଜେନ୍ଦ୍ରନାରାୟଣ—ଭାଦରସ୍ମୃତି(ଏଇ ସହକାର ତଳେର ବ୍ୟଙ୍ଗାନୁ-କରଣ)

ଚତୁରଙ୍ଗ, 2/5, ତା—18.6.1947, ପ.233.

(ଗ) ଦାଶ, ଶିବବ୍ରତ—କଲେଜ ଝିଅ—(ସାଧବଝିଅ ର ବ୍ୟଙ୍ଗାନୁ କରଣ), ଡଗର, 11/46, 47, ତା—2.8.48,

(ଘ) ବହିଦାର, ବିପର୍ଥୀ—ମାୟାଧର,'ବ୍ୟଙ୍ଗ କବିତା, ଡଗର, 13/8, 16.11.1949,

(ଙ) ସାହୁ, ମହାପାତ୍ର ନୀଳମଣି—'ବିରହୀ'(ପ୍ରିୟା ପ୍ରିୟା କବିତାର ବ୍ୟଙ୍ଗାନୁ କରଣ), ଡଗର, 13/8, 16.11.49,

(ଚ) ବଳ, କୃଷ୍ଣଚନ୍ଦ୍ର—ହାଇରେ ହତାଶ ପ୍ରେମିକ ଆଶା(ତରୁଣ କବିର ଆଶାର ବ୍ୟଙ୍ଗାନୁ-କରଣ)

ଡଗର, 13/27, ତା—16.5.1950,

(ଛ)'ଏଇ ସହକାର ତଳେ'(ବ୍ୟଙ୍ଗଚିତ୍ର ଓ ଶ୍ରଦ୍ଧାଞ୍ଜଳି), ଡଗର, 14/1, ତା—1.6.1950,

(ଜ) ମହାନ୍ତି, ଜାନକୀବଲ୍ଲଭ—'ବାହୁ ହେବ କିପାଁ'(ଦେଖା ହେଲ କିପାଁର ବ୍ୟଙ୍ଗାନୁ-କରଣ )

ଡଗର, 18/9, ମାର୍ଚ୍ଚ, 1955.

33: ସାହୁ, ମହାପାତ୍ର ନୀଳମଣି । 'ମୋର ପ୍ରିୟ ଲେଖକ(4)—କବି ମାନସିଂହ', ଡଗର, 24/4, ଅକ୍ଟୋବର—1956,

34: କର, ପ୍ରଣବନ୍ଧୁ ।'ଓଡିଆ ନାଟକ ଓ ଉପନ୍ୟାସକୁ ବୁଦ୍ଧ ଓ ବୌଦ୍ଧ ଧର୍ମର ପ୍ରଭାବ'

ଉତ୍କଳ ସାହିତ୍ୟ(ନୂଆ ପ୍ରସ୍ଥ) 3/7, 1956, ପ.315—319,

35: ବେହେରା, ଚିନ୍ତାମଣି ।'କବି ମାନସିଂହଙ୍କ କାବ୍ୟ ପ୍ରତିଭା'(ପ୍ରବନ୍ଧ),

(କ) ଡଗର 21/4,5, ଅକ୍ଟୋବର—ନଭେମ୍ବର, 1957, ପ.13—18,

(ଖ) କାବ୍ୟ ଓ କଳାକାର, ପ୍ରଥମ ସଂସ୍କରଣ(ଆଲୋକ ସାହିତ୍ୟ ପ୍ରତିଷ୍ଠାନ) ପ.106—126,

(ଗ) କାବ୍ୟ ଓ କଳାକାର, ଦ୍ୱିତୀୟ ସଂସ୍କରଣ (ଜଗନ୍ନାଥ ରଥ) ପ. 117—147,

36: କାବ୍ୟ ଓ କଳାକାର (ଦ୍ୱିତୀୟ ସଂସ୍କରଣ) ପ. 121, ଓ ପ. 147,

॥ ମାନସିଂହଙ୍କ ବିଗ୍ରହଧାରା ॥

37: ବେହେରା,ଶ୍ରଚିନ୍ତାମଣି ।'ଓଡିଆ ସାହିତ୍ୟରେ ମାୟାଧର ମାନସିଂହ'(ପ୍ରବନ୍ଧ)
ଓଡିଆ ସାହିତ୍ୟର ଇତିହାସ(ମାନସିଂହ–1967) ପରିଶିଷ୍ଟ– ୧·

38: ସାମନ୍ତରାୟ,(ଡଃ)ନଟବର । 'କବି ମାନସିଂହଙ୍କ ପନ୍ଦରବର୍ଷ ରଚନାର କାଳ ନିରୂପଣ'
(କ) ଡଗର 21/7,1958 ପୃ·16–23,
(ଖ) ମାନସିଂହ ସ୍ମରଣିକା,—ଅକ୍ଟୋବର–1973,ଏକାମ୍ରଥିଏଟର୍ସ–ପୃ42–56·
(ଗ) ମାନସିଂହ:ଷଷ୍ଟି ସମୀକ୍ଷା,(1978) ସଂକଳକ ,ବେହୁରା,(ଅଧ୍ୟାପକ) ରାଧାଶ୍ୟାମ ।ପୃ·13,

39: ଦାସ,(ଅଧ୍ୟାପକ) ଦାଶରଥି ।'ରବୀନ୍ଦ୍ରନାଥ ଓ କବି ମାନସିଂହଙ୍କ ମର୍ତ୍ତପ୍ରୀତି'(ପ୍ରବନ୍ଧ)
(କ) ଡଗର,25/1,ଜୁଲାଇ–1961,ପୃ–19–24,
(ଖ) କାବ୍ୟ ସମ୍ବାଦ,(ଦ୍ୱିତୀୟ ସଂସ୍କରଣ–1943) ପୃ·318–345,

40: କାବ୍ୟ ସମ୍ବାଦ, ପୃ·331,

41: ଦାସ,(ଅଧ୍ୟାପକ) ଦାଶରଥି ।'ରୂପ ଓ ସୌନ୍ଦର୍ଯ୍ୟର କବି ମାନସିଂହ'(ସମାଲୋଚନା)
ସାହିତ୍ୟ ସଂସ୍ଥାନ(ପ୍ରଥମ ପ୍ରକାଶ 14·11·1975) ପୃ· ୫୨–126,
ଏହା ପୁସ୍ତକ ଆକାରରେ ପ୍ରକାଶ ପୂର୍ବରୁ କବି ମାନସିଂହ ଏହି ଆଲୋଚନାଟି ପଢି ନିଜ ମନ୍ତବ୍ୟ ଦେଇଥିଲେ ।

42: ଦାସ,(ଅଧ୍ୟାପକ) ତାରିଣୀଚରଣ ।'ମାନସିଂହଙ୍କ କବିତା'ଧୂପ''(ଆଲୋଚନା)
(କ) ଡଗର,21/1,ଜୁଲାଇ,1962,ପୃ·12–16,
(ଖ) ନୂତନ ସମୀକ୍ଷା,(1966) ପ୍ରକାଶକ–ଜଗନ୍ନାଥ ରଥ,ପୃ·16–33,

43: ଶତପଥୀ, (ଡଃ) ନିତ୍ୟାନନ୍ଦ ।'ଗୀତିନାଟ୍ୟର କେତୋଟି ଚରିତ୍ର'(ସମାଲୋଚନା)
(କ) ଝଙ୍କାର,20/6,(1968) ପୃ·944–949,
(ଖ) ଆଧୁନିକ ଓଡିଆ ସାହିତ୍ୟ(ସେପ୍ଟେମ୍ବର,1977) ବିଦ୍ୟାପୁରୀ,ପୃ·39–50,
(ଗ) ସମାଲୋଚନାର ଧାରା'–ଅଧ୍ୟାପକ ଶତପଥୀଙ୍କୁ,ପୂର୍ବୋକ୍ତ ଲେଖା ସଂପର୍କରେ ମାନସିଂହଙ୍କ
ଲିଖିତ ପତ୍ର– ଏ ପତ୍ର ବନଫୁଲ, ଦ୍ୱିତୀୟ ବର୍ଷ ପଂଚମ ସଂଖ୍ୟା,ପୃ·4–୫,

44: ମହାନ୍ତି,(ଅଧ୍ୟାପକ) ହୃଦେନ୍ଦ୍ର ପ୍ରସାଦ ।'ଛୁଣ'ସମୀକ୍ଷା,ଡଗର,22/6,ଡିସେମ୍ବର–1958,

45: (କ) ମହାନ୍ତି,ଶରତକୁମାର,'ସମସାମୟିକ ଓଡିଆ ସାହିତ୍ୟ ପ୍ରତି ଅବିଗ୍ରହ',ନବଜୀବନ,7/11,12,ଏପ୍ରିଲ–63,
(ଖ) ମହାନ୍ତି,ଜାନକୀବଲ୍ଲଭ(ଭରଦ୍ୱାଜ),'ତ୍ରୁଟିପୂର୍ଣ୍ଣ ଓଡିଆ ସାହିତ୍ୟର ଇତିହାସ'
ଝଙ୍କାର,15/12,ମାର୍ଚ୍ଚ–1964,ମୀନ–1371,ପୃ·1131–37,

॥ ମାନସିଂହଙ୍କ ବିଗ୍ରହଧାରା ॥

(ଗ) ଡଃ ମାନସିଂହଙ୍କ ଭୁଲ, ସାହିତ୍ୟ ସମାଗ୍ର, 2/8, ଜାନୁୟାରୀ, 1964, ପୃ•65,
(ଘ) ଓଡିଆ ସାହିତ୍ୟର ଇତିହାସ ସମ୍ବାଦ, କୋଣାର୍କ, 3/1, 2, (1964) ପୃ•167,
(ଙ) ଜଣେ ଓଡିଆ ଅଧ୍ୟାପକ–ମାନସିଂହଙ୍କ ଓଡିଆ ସାହିତ୍ୟର ଇତିହାସ'
ଡଗର, 27/11, 12– 28/3, 4, – 28/5, 6, (1964)
(ଚ) ସିଂହ, ରବୀନ୍ଦ୍ରନାଥ । 'ଓଡିଆ ସାହିତ୍ୟର ଧର୍ଷଣ' (ପ୍ରଥମ ସଂସ୍କରଣ–1969)
(ଛ) ତ୍ରିପାଠୀ, (ଡଃ) କୁଞ୍ଜବିହାରୀ । 'ଏ ବ୍ରିଫ୍ ରି–ଭିୟୁ ଅଫ୍ ହିଷ୍ଟ୍ରି ଅଫ୍ ଓଡିଆ ଲିଟିରେଚର'

46: ପଟ୍ଟନାୟକ, ଶ୍ରୀଗୁରୁଚରଣ ।
(କ) 'ସାହିତ୍ୟ ସମାଲୋଚନାର ଉତ୍ତର,' ଡଗର, 22/2, 3, ସେପ୍ଟେ•1953•
(ଖ) 'ସାହିତ୍ୟ ସମାଲୋଚନାର ଉତ୍ତର,' ଡଗର, 22/4, ଅକ୍ଟୋବର– 1958,
(ଗ) 'ସାହିତ୍ୟ ସମାଲୋଚନାର ସମସ୍ୟା,' ଡଗର, 22/6, ଡିସେମ୍ବର, 1958,
(ଘ) 'ଓଡିଆ ସାହିତ୍ୟର ମତିଗତି,' ନବଯୁଗ ଗ୍ରନ୍ଥାଳୟ, ବଜକବାଟି ରୋଡ, କଟକ ।

47: (କ) ମିଶ୍ର, ଶ୍ରୀ ଭାବଗ୍ରାହୀ, ଡଃ ମାନସିଂହଙ୍କୁ ଉତ୍ତର(2), ଦିଗନ୍ତ, ଅଗଷ୍ଟ, 1962,
(ଖ) ମହାନ୍ତି, ଶ୍ରୀ ଶରତ କୁମାର । 'ଆମ ସାହିତ୍ୟ ଓ ବିଶ୍ୱବିଦ୍ୟାଳୟ', ନବଜୀବନ, 6/11, ଫେବ୍ରୁ•1962, ପୃ•7(5
(ଗ) ଧଳ, (ଅଧ୍ୟାପକ) ଗୋଲୋକ ବିହାରୀ ।'ଓଡିଆ ଏମ୍•ଏ•'
ନବଜୀବନ, 7/9, ଡିସେମ୍ବର–ଜାନୁୟାରୀ, 1962–63, ପୃ•561–66,
(ଘ) ଡଃ ମାନସିଂହଙ୍କ ଭୁଲ(1), କଳିଙ୍ଗ ଜାନୁୟାରୀ– 1964,

48: ମିଶ୍ର, ଶ୍ରୀ ଚିନ୍ତାମଣି, 'ଶିକ୍ଷାବିତ୍‌ର ଗାଥା'(ନବଜୀବନ ସମ୍ପାଦକୀୟ– ସମ୍ବାଦ ଓ ସଂକେତ ସ୍ତମ୍ଭରେ ପ୍ରତିବାଦୀ ମାନଙ୍କ ପାଇଁ ଏକ ବ୍ୟାପକ ଆଲୋଚନା କରିଛନ୍ତି), ନବଜୀବନ, 6/12, ମାର୍ଚ୍ଚ–ଏପ୍ରିଲ, 1962, ପୃ•818–21,

49: ଦାଶ, (ଡଃ) କୁଞ୍ଜବିହାରୀ ।
(କ) 'ପାଇକ ଖେଦା –ଏକ ଜବାବ' ନବରବି, 3/12, ଜୁନ୍–1973,
(ଖ) ' ମୋ 'କାହାଣୀ' — ପୃ•392,

50: ମିଶ୍ର, (ଅଧ୍ୟାପକ) ଭାବଗ୍ରାହୀ–'ଚତୁର୍ଦ୍ଦଶ ପଦୀ କବିତା ଓ ଓଡିଆ ସାହିତ୍ୟରେ ଏହାର ଧାରା
(ମଧୁସୂଦନ–ମାନସିଂହ) (କ) ଡଗର, 23/1, ଜୁଲାଇ–1959,
(ଖ) ସାହିତ୍ୟ ଦୃଷ୍ଟି–(ପ୍ରଥମ ପ୍ରକାଶ, ଅକ୍ଷୟ ତୃତୀୟା–1970) ପୃ• 45–51,

51: ସାମନ୍ତରାୟ, (ଅଧ୍ୟାପକ) ନଟବର । ଆଧୁନିକ ଓଡିଆ ସାହିତ୍ୟର ବିଗ୍ଦର୍ଶନ, (1959)

52: ଶତପଥୀ, ଅଧ୍ୟାପକ ନିତ୍ୟାନନ୍ଦ ।'ରବୀନ୍ଦ୍ରନାଥଙ୍କ ଅତୀନ୍ଦ୍ରିୟବାଦ ଓ ଓଡିଆ ସାହିତ୍ୟରେ ତାର ସଂକ୍ରମଣ'
'ଡଗର' 25/8, 9, ଫେବ୍ରୁୟାରୀ–ମାର୍ଚ୍ଚ, 1962•

॥ ମାନସିଂହଙ୍କ ବିଗ୍ରହଧାରା ॥

53: ମହାନ୍ତି, ପ୍ରମୋଦ କୁମାର ।'ଅନାସକ୍ତ କୋଣାର୍କ ଓ ତାହାର ଆସକ୍ତ କବି କେତେଜଣ' ଝଙ୍କାର, 20/3, ଜୁନ୍–1968, ପୃ.339–48,

54: ମାନସିଂହ ସ୍ମରଣିକା, (ଅକ୍ଟୋବର–1973) ଏକାମ୍ର ଥିଏଟର୍ସ ଭୁବନେଶ୍ୱର, ଡିମାଇ–184,

55: ଉତ୍କଳ ସାହିତ୍ୟ'(ନୂତନ ଗ୍ରନ୍ଥ) ସମ୍ପାଦକ ଜ୍ଞାନୀନ୍ଦ୍ର ବର୍ମା 1/2, (1974)

56: ସମ୍ପାଦକୀୟ ଅଗ୍ରଲେଖା–'ଡଃ ମାୟାଧର ମାନସିଂହ'– ମାନସ' 2/2, ଡିସେମ୍ବର–1974,

57: ମାନସିଂହ, (ଶ୍ରୀମତୀ) ହେମଲତା ।'ପ୍ରିୟ ପରମ'(ସ୍ମୃତିଚାରଣ), ମାନସିଂହ ପରିକ୍ରମା(1979)ପୃ.154–71.

58: (କ) ବେହେରା, (ଅଧ୍ୟାପକ) ଚିନ୍ତାମଣି । 'ଦୀପଦାନ' (ପ୍ରବନ୍ଧ)

(1) ମାନସିଂହଙ୍କ ଶୋକ ସଭାରେ ପଠିତ ।

(2) ଝଙ୍କାର, 25/8, ନଭେମ୍ବର, 1973.

(3) କୋଣାର୍କ, 27 ସଂଖ୍ୟା, 1974.

(4) ବିଦଗ୍ଧ ପାଠକ(ପ୍ରଥମ ପ୍ରକାଶ–1975)

(ଖ) ମିଶ୍ର, (ଡଃ) ସଦାଶିବ ।'ମାନସିଂହ ପ୍ରତିଭା'(ପ୍ରବନ୍ଧ)

(1) ଝଙ୍କାର, 25/8, ନଭେମ୍ବର, 1973,

(2) ମାନସିଂହ ସ୍ମରଣିକା(1973), ପୃ.118–20,

(ଗ) ରାଉତରାୟ, ସଚ୍ଚିଦାନନ୍ଦ ।'କବି ମାୟାଧର ମାନସିଂହ–ଏକ ସ୍ୱପ୍ନ ପ୍ରୟାଣ'(ପ୍ରବନ୍ଧ)

(1) ଝଙ୍କାର, 25/8, ନଭେମ୍ବର, 1973, ପୃ. 779–782,

(2) ମାନସିଂହ ସ୍ମରଣିକା, ଅକ୍ଟୋବର–1973, ପୃ.13–17,

(3) ମାନସିଂହ ପରିକ୍ରମା(1979) ପୃ. 145–49.

(ଘ) ଶତପଥୀ, (ଡଃ) ବାଳକୃଷ୍ଣ । 'ମାନସିଂହଙ୍କ କବିତାରେ ବେଦନାବୋଧ'(ପ୍ରବନ୍ଧ)

(1) ସପ୍ତର୍ଷି, 2/11, (1973)

(2)ମାନସିଂହ ସୃଷ୍ଟି ସମୀକ୍ଷା(1978) ପୃ. 106–131.

(3) ଆଧୁନିକ ଓଡିଆ କାବ୍ୟ କବିତାର ଅନ୍ତସ୍ୱର ଓ ଅଭିବ୍ୟକ୍ତି(1983) ପୃ.103–129.

(ଙ)ଧଳ, ଗୋଲକବିହାରୀ ।'ମାନସିଂହ ଓ ଓଡିଆ ସାହିତ୍ୟ'ନବରବି, 4/5, ନଭେ.1973, ପୃ.13–18.

(ଚ)ପଟ୍ଟନାୟକ, (ଅଧ୍ୟାପକ)ବିଭୂତି । 'ମାନସିଂହ'(ପ୍ରବନ୍ଧ)ନବରବି, 4/5, ନଭେ.1973, ପୃ.19–28,

59: (କ) ମିଶ୍ର, (ଶ୍ରୀମତୀ) ଆଶା ।'ସାଧବ ଝିଅ–ଏକ ରସିକର ଦୃଷ୍ଟିପାତ'(ପ୍ରବନ୍ଧ)

(1) ଝଙ୍କାର, 25/9, ଡିସେମ୍ବର, 1973, ପୃ.866–872.

(2) ମାନସିଂହ ସୃଷ୍ଟି ସମୀକ୍ଷା(1978) ପୃ.179–90.

(ଖ) ମିଶ୍ର, (ଅଧ୍ୟାପକ) ନିଶାମଣି ।'ଜେମା କାବ୍ୟ–ଏକ ଅଧ୍ୟୟନ'(ପ୍ରବନ୍ଧ)

(1) ଝଙ୍କାର, 25/9, ଡିସେମ୍ବର, 1973·

(2) ମାନସିଂହ ସୃଷ୍ଟି ସମୀକ୍ଷା, (1978) ପୃ· 170–178·

60: ଉତ୍କଳ ସାହିତ୍ୟ(ନୂତନ ଗ୍ରନ୍ଥ), ସମ୍ପାଦକ ଜ୍ଞାନୀନ୍ଦ୍ର ବର୍ମା । (1974)(4)

(କ) ବର୍ମା, ଜ୍ଞାନୀନ୍ଦ୍ର– କବିସ୍ମୃତି' ପୃ· 3–5,

(ଖ)ରାଉତରାୟ, ଚଣ୍ଡୀଚରଣ । 'ପ୍ରେମର ଋଷଭ କାବ୍ୟ–ପୂଜା'

(ଗ)ମହାପାତ୍ର, ମହେଶଚନ୍ଦ୍ର ।'ଓଡ଼ିଆ ସାହିତ୍ୟରେ ମାନସିଂହଙ୍କ ଆବିର୍ଭାବ' ଉତ୍କଳ ସାହିତ୍ୟ, ପୃ·5–8,

(2)ମାନସିଂହ:ସୃଷ୍ଟି ଓ ସମୀକ୍ଷା, (1978) 9–12,

(ଘ) ମିଶ୍ର, (ଡଃ) ଗୋପାଳଚନ୍ଦ୍ର, 'ମାନସିଂହଙ୍କ କବିତାର ବୈଚିତ୍ର୍ୟ' ପୃ–14–20,

(ଙ) ବେହୁରା, ରାଧାଶ୍ୟାମ ।'ମାଟିର କବି ମାନସିଂହ' ପୃ· 21–23,

(ଚ) ବର୍ମା, ବିକ୍ରମ କେଶରୀ ।'ଉତ୍କଳ ସାହିତ୍ୟରେ ଜେମା ଓ ନନ୍ଦିକା' ପୃ·24–26,

61: ମହାପାତ୍ର,(ଡଃ) ଖଗେଶ୍ୱର ।'ମାନସିଂହଙ୍କ ସୌନ୍ଦର୍ଯ୍ୟ ଚେତନାରେ ନାରୀ'(ପ୍ରବନ୍ଧ)

(କ) ଝଙ୍କାର 28/1, ବିଷୁବ, 1975, ପୃ·48–51,

(ଖ) ମାନସିଂହ:ସୃଷ୍ଟି ସମୀକ୍ଷା(1978) ପୃ· 150–155,

62: (କ) ମିଶ୍ର, (ଅଧ୍ୟାପକ) ବିଭୂଦତ୍ତ ।'ବ୍ୟକ୍ତି ବିଚିତ୍ରା(1):ମାୟାଧର ମାନସିଂହ,

ବାଇଶ ପାହାଚ 1/4,5, ଜାନୁୟାରୀ 1976, ପୃ· 43,

(ଖ) ମହାନ୍ତି, ପ୍ରଜ୍ଞାପାରମିତା ।'ମାନସିଂହଙ୍କ କାବ୍ୟ କବିତାରେ ପ୍ରେମ' ସପ୍ତର୍ଷି, 5/4,

63: ବେହୁରା, ଅଧ୍ୟାପକ ରାଧାଶ୍ୟାମ, ସଙ୍କଳକ–'ମାନସିଂହ:ସୃଷ୍ଟି ସମୀକ୍ଷା'(1978)

(1) ପଟ୍ଟନାୟକ, (ଅଧ୍ୟାପକ) ପରାଣି, 'ମାନସିଂହଙ୍କ କାବ୍ୟ ପ୍ରତିଭାର ଆଦ୍ୟ ଉନ୍ମେଷ'

(2) ଦାସ, (ଅଧ୍ୟାପକ) ଦାଶରଥି–'ନିସର୍ଗର ଉଦ୍‌ଗାତା ମାନସିଂହ'

(3) ବେହେରା, (ଅଧ୍ୟାପକ)ଚିନ୍ତାମଣି, –'ମାନସିଂହ ପ୍ରତିଭାର ଛନ୍ଦଧ୍ୱନୁ'

(4) ସାମଲ, ବସନ୍ତକୁମାର–'ମାନସିଂହଙ୍କ କବିତାରେ ଇନ୍ଦ୍ରିୟ ଓ ଅତୀନ୍ଦ୍ରିୟ'

(5) ମିଶ୍ର, ଅଧ୍ୟାପକ ସଚ୍ଚିଦାନନ୍ଦ–'ମାନସିଂହଙ୍କ କବିତାରେ ପରମ୍ପରା ଓ ନୂତନତା'

(6) ମିଶ୍ର, (ଅଧ୍ୟାପକ) ବନମାଳୀ–'ପ୍ରେମ କବିତାର ପରମ୍ପରାରେ କବି ମାନସିଂହ'

(7) ନାୟକ, ଶ୍ରୀ ମହେଶ୍ୱର–'ହେମଶସ୍ୟ ଓ ହେମଶସ୍ୟର କବି'

(8)ବେହୁରା, (ଅଧ୍ୟାପକ) ରାଧାଶ୍ୟାମ, –'ମାନସିଂହଙ୍କ ଜୀବନଚିତା ରେ ଜୀବନଗାଥା'

(୨) ଗୁରୁ,ଶ୍ରୀ ଗଂଗାଧର—'ଦୁର୍ଭିକ୍ଷରେ କବି ଧର୍ମର ସାର୍ଥକତା'
(10) ମହାନ୍ତି,ଶ୍ରୀ ମନୀନ୍ଦ୍ର—'ମାନସିଂହ ସାହିତ୍ୟର ଏକ ଅନାଲୋଚିତ ଦିଗ—ଶିଶୁ ସାହିତ୍ୟ'
(11) ଶତପଥୀ,ନାରାୟଣ—'ନାଟ୍ୟକାର ଭୂମିକାରୁ କବି ମାନସିଂହ—ଏକ ଦୃଷ୍ଟିପାତ'
(12) ଧଳ,(ପ୍ରଫେସର) ଗୋଲୋକ ବିହାରୀ—'ଶିକ୍ଷାବିତ୍ ମାନସିଂହ'

64: ଶତପଥୀ,(ଡଃ) ନିତ୍ୟାନନ୍ଦ—'ମାନସିଂହ ପରିକ୍ରମା'(1979) ସଂପାଦନା:
ଓଡିଶା ପୂଜ୍ୟପୂଜା ସଂସଦ ଆନୁକୂଲ୍ୟରେ ପ୍ରକାଶିତ ।
(1)ଦାଶ,(ଅଧ୍ୟାପକ) କୁମୁଦଚନ୍ଦ୍ର ।—'ମାନସିଂହଙ୍କ ଓଡିଆ ସାହିତ୍ୟର ଇତିହାସ'
(2)ନାୟକ,(ଅଧ୍ୟାପକ) ରାଘବାନନ୍ଦ—'ମାନସିଂହଙ୍କ କବିତାରେ ଶାଶ୍ୱତ ପ୍ରଣୟ ଚେତନା'
(3)ଶତପଥି,(ଅଧ୍ୟାପିକା) ପ୍ରତିଭା—'ରୋମାଣ୍ଟିକ କବି ମାନସିଂହ'
(4) ମହାନ୍ତି,ଶ୍ରୀ ଶ୍ରୀଚରଣ—'ମାନସିଂହଙ୍କ ସାହିତ୍ୟରେ ଜାତୀୟ ଚେତନା'
(5) ଚୌଧୁରୀ,ଶ୍ରୀ ବିଜୟକୁମାର—'ଓଡିଆ ଗୀତିନାଟ୍ୟ ଓ କବି ମାନସିଂହ'
(6) ଜେନା,ଶ୍ରୀକୁଳମଣି—'ପରମ୍ପରାର ଆଲୋକରେ ମାନସିଂହ ସାହିତ୍ୟ'
(7) ସାହୁ,(ଡକ୍ଟର) କୃଷ୍ଣଚରଣ—'ଓଡିଆ ସାହିତ୍ୟର ଇତିହାସ ଓ ଡଃ ମାଯାଧର ମାନସିଂହ'
(8) ପଟ୍ଟନାୟକ,ଶ୍ରୀକଇଳାଶ—'ମାନସିଂହଙ୍କ କାବ୍ୟ ସାହିତ୍ୟ—ଏକ ରସବାଦୀ ଅଧ୍ୟୟନ'
(୨)ନନ୍ଦ,(ଅଧ୍ୟାପକ) ସଦାଶିବ—'ଜୀବନୀ ସାହିତ୍ୟ ଓ ଜୀବନୀକାର ମାନସିଂହ'
(10) ଶତପଥୀ,(ଡକ୍ଟର) ନିତ୍ୟାନନ୍ଦ—'ସବୁଜ ସମସାମୟିକ ଏକକ କବି ଡଃ ମାନସିଂହ'

65: ମହାନ୍ତି,(ଅଧ୍ୟାପକ) ଶ୍ରୀଚରଣ—'ମାନସିଂହ ମାନସ'(ପ୍ରଥମ ଖଣ୍ଡ) ପ୍ରଥମ ପ୍ରକାଶ,1୨୫3,ବସନ୍ତ ପଞ୍ଚମୀ

66: ମିଶ୍ର,(ଡଃ) କିଶୋର ଚନ୍ଦ୍ର—'ମାନସିଂହଙ୍କ କାବ୍ୟ କବିତାରେ ଉପମା'
(1) ଉତ୍କଳ ଦିବସ ସ୍ମାରକୀ,—17ଶ ଅର୍ଘ୍ୟ,1.4.1984,ପୃ—11.19,
(2) ବାସନ୍ତିକା ସପ୍ତମ ଅର୍ଘ୍ୟ, 1୨84,ପୃ.26—32,
(3) ଡଗର,47/2. ଅଗଷ୍ଟ,1983,ପୃ.4—7,
(4) ବାସନ୍ତିକା,ଅଷ୍ଟମ ଅର୍ଘ୍ୟ,1୨85,
(5) ଉତ୍କଳ ଦିବସ ସ୍ମାରକୀ 18ଶ ଅର୍ଘ୍ୟ 1.4.1985,ପୃ.21—32,
(6) ଉତ୍କଳ ଗୌରବ 1୨ଶ ଅର୍ଘ୍ୟ,1.4.1986, ପୃ.16—34,

॥ ମାନସିଂହଙ୍କ ବିଗ୍ରହଧାରା ॥

67: ମହାନ୍ତି, (ଡଃ) ଜାନକୀବଲ୍ଲଭ(ଭରଦ୍ୱାଜ)–'ମାନସିଂହଙ୍କ କାବ୍ୟପ୍ରତିଭା'–ଆବର୍ତ୍ତ'(ପୂଜାସଂଖ୍ୟା)
ତୃତୀୟ ବର୍ଷ, ଅକ୍ଟୋବର–ନଭେ· ୧୨୫୬·ପୃ–45–50·

68: ଦାଶ, (ଡଃ) କୁଞ୍ଜବିହାରୀ– 'ମୋ କାହାଣୀ', ଜୁଲାଇ–1976· ପୃ–391, 392, 402, 429,
471, 487,

69: ମହାନ୍ତି, ସୁରେନ୍ଦ୍ର–'ଓଡିଆ ସାହିତ୍ୟର କ୍ରମବିକାଶ'(୧୨୭୫), ଅଗ୍ରଦୂତ, କଟକ–2·

70: ଆଚାର୍ଯ୍ୟ, (ଡଃ) ବୃନ୍ଦାବନଚନ୍ଦ୍ର, – ଓଡିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ'

71: ଶତପଥୀ, (ଡଃ) ନିତ୍ୟାନନ୍ଦ, –'ସବୁଜରୁ ସାମ୍ପ୍ରତିକ', ଗ୍ରନ୍ଥ ମନ୍ଦିର, ବିନୋଦ ବିହାରୀ, କଟକ–2,

72: ବେହେରା, (ଅଧ୍ୟାପକ)ଚିନ୍ତାମଣି,

(କ) ବିଦଗ୍ଧ ପାଠକ, (୧୨75) ପ୍ରକାଶକ–ଜଗନ୍ନାଥ ରଥ, କଟକ,

(1) ଓଡିଆ କାବ୍ୟ କବିତାର କ୍ରମ ପରିଣାମ ।

(2) ମୋ ଦୃଷ୍ଟିରେ ଗୀତା ।

(ଖ) କଳାଦୃଷ୍ଟି–(୧୨୫୧) ବୁକ୍ସ ଏଣ୍ଡ ବୁକ୍ସ, କଟକ–2,

(1) ବିଂଶ ଶତକର ଓଡିଆ କାବ୍ୟଧାରା ।

73: ଦାସ, (ଅଧ୍ୟାପକ) ଦାଶରଥି,

(କ) କାବ୍ୟ ସମ୍ବାଦ, (ଦ୍ୱିତୀୟ ସଂସ୍କରଣ) ୧୨୫3, ଫ୍ରେଣ୍ଡସ ପବ୍ଲିଶର୍ସ, କଟକ–2,

(ଖ) ସାହିତ୍ୟ ସନ୍ଧାନ, (୧୨75) ଅଗ୍ରଦୂତ, କଟକ–2,

(ଗ) ବିବିଧ ଆଲୋଚନା, (୧୨୫୧, ଡିସେମ୍ବର) ଅଗ୍ରଦୂତ, କଟକ–2,

74: ଦାସ, (ଡଃ) ହେମନ୍ତକୁମାର,

(କ) ଓଡିଆ ନାଟକର ବିକାଶଧାରା, (ଦ୍ୱିତୀୟ ଖଣ୍ଡ, ପୂର୍ବ–ମଧ୍ୟ ପର୍ବ) ୧୨୫୦,
ସାଥି ମହଲ, କଟକ–2,

75: ଶତପଥୀ, (ଡକ୍ଟର) ପ୍ରତିଭା– କଳ୍ପନାର ଅଭିଷେକ, 'ରୋମାଣ୍ଟିକ କବି ମାନସିଂହ' ପୃ·271,
ପ୍ରକାଶକ–ଓଡିଶା ବୁକ୍‌ଷ୍ଟୋର, କଟକ–2, (ଡିସେମ୍ବର–୧୨୫2)

76: ମାନସିଂହ ସ୍ମାରକୀ ପ୍ରବନ୍ଧ ପ୍ରତିଯୋଗିତାରେ ନିମ୍ନଲିଖିତ ବିଷୟ ଉପରେ ପ୍ରବନ୍ଧ ଲେଖି ବିଭିନ୍ନ ଛାତ୍ରଛାତ୍ରୀ
ମାନେ ପୁରସ୍କୃତ ହୋଇଥିଲେ ।

1974–ଓଡିଆ ସାହିତ୍ୟରେ ଯୁଗସ୍ରଷ୍ଟା ମାନସିଂହ, (1)ସନ୍ତୋଷ ସାହୁ(ବାଣୀବିହାର), (2)ପ୍ରଦୀପ୍ତ ରାୟ(ଭଦ୍ରକ କଲେଜ)
(3) ପରମେଶ୍ୱର ମିଶ୍ର, (ଗଙ୍ଗାଧର ମେହେର କଲେଜ, ସମ୍ବଲପୁର)

## ।। ମାନସିଂହଙ୍କ ବିଶ୍ବରଧାରା ।।

1975–ମାନସିଂହଙ୍କ ସାହିତ୍ୟରେ ଜାତୀୟ ଚେତନା–(1) ଶ୍ରୀଚରଣ ମହାନ୍ତି(ଶାନ୍ତିନିକେତନ),(2) ରାମକଲ୍ୟାଣ ନାୟକ(ରେଭେନ୍‌ସା),(3) ମନୋରଞ୍ଜନ ପଟ୍ଟନାୟକ(ରାଜେନ୍ଦ୍ର କଲେଜ)–1976– ମାନସିଂହଙ୍କ ପ୍ରେମ କବିତାର ବିଭବ ଓ ବୈଶିଷ୍ଟ୍ୟ–(1)ସୁରେଶ ଚନ୍ଦ୍ର ପଣ୍ଡା(ବାଣୀବିହାର),(2) ଶ୍ରୀଚରଣ ମହାନ୍ତି(ଶାନ୍ତିନିକେତନ) (3)କ୍ଷୀତିଶଚନ୍ଦ୍ର ଦାସ(ବାଣୀବିହାର),—1977–'ଓଡିଆ ଗୀତିନାଟ୍ୟ ଓ କବି ମାନସିଂହ'–ରବୀନ୍ଦ୍ର ସାମଲ (ଶାନ୍ତିନିକେତନ),(2) ମଥୁରାନାଥ ହୋତା(ଶାନ୍ତିନିକେତନ),(3) ସିଦ୍ଧାର୍ଥ ପ୍ରଧାନ(ବିଜେବି,କଲେଜ)

1978– ମାନସିଂହ ସାହିତ୍ୟରେ ରସ'(1) ଶ୍ରୀଚରଣ ମହାନ୍ତି(ଶାନ୍ତିନିକେତନ),(2)କଇଳାଶ ପଟ୍ଟନାୟକ(ଶାନ୍ତିନିକେତନ) (3) କୁମାରୀ ନନ୍ଦିରା ରାୟ ଚୂଡାମଣି,(କେନ୍ଦୁଝର କଲେଜ),1979–'ମାନସିଂହଙ୍କ କାବ୍ୟରେ ଆଧି–ଭୌତିକ ଚେତନା,(1) କଇଳାଶ ପଟ୍ଟନାୟକ(ଶାନ୍ତିନିକେତନ),(2)ଶରତକୁମାର ନାୟକ(ଭଦ୍ରକ କଲେଜ) (3) କ୍ଷୀରୋଦ କୁମାର ମିଶ୍ର(ଶାନ୍ତିନିକେତନ),1980–'ମାନସିଂହଙ୍କ କାବ୍ୟବାଣୀ ଓ ଜୀବନବାଣୀ'–(1) ସନ୍ତୋଷ କୁମାର ରଥ(ଶାନ୍ତିନିକେତନ)(2) ଜଗନ୍ମୋହନ ସାହୁ,(ଶାନ୍ତିନିକେତନ),(3) କୃଷ୍ଣଚନ୍ଦ୍ର ଷଡଙ୍ଗୀ(ବାଣୀବିହାର),1981–'ଓଡିଆ ପ୍ରବନ୍ଧ ସାହିତ୍ୟକୁ ମାନସିଂହଙ୍କ ଅବଦାନ'(1) ମନୋରଞ୍ଜନ ପ୍ରଧାନ(ଶାନ୍ତିନିକେତନ),(2) କୁମାରୀ ଉଷାରାଣୀ ମଦୁଆଳ,ରାଧାନାଥ ଟ୍ରେନିଂ କଲେଜ),(3)ଗୋପାଳ କୃଷ୍ଣ ଦାସ(ଶାନ୍ତିନିକେତନ), 1982,– 'ମାନସିଂହ ସୃଷ୍ଟି ସ୍ୱାତନ୍ତ୍ର୍ୟ'–(1) ହିମାଂଶୁ ଶେଖର ପଟ୍ଟନାୟକ, (ଶାନ୍ତିନିକେତନ),(2) ଧରଣୀଧର ବେହେରା(ଶାନ୍ତିନିକେତନ),(3) କୁମାରୀ ସୁଭଦ୍ରା ସେନାପତି, (ଦୀନକୃଷ୍ଣ କଲେଜ,ଜଳେଶ୍ୱର),1983–'ମାନବାତ୍ମାର କବି ମାନସିଂହ'–(1)ଶଶଲେନ୍ଦ୍ର ଜେନା(ଶାନ୍ତିନିକେତନ) (2) ପ୍ରଦୀପ କୁମାର ଦାସ(ରେଭେନ୍‌ସା କଲେଜ),(3) ଅଜୟକୁମାର ଷଡଙ୍ଗୀ,(ଶାନ୍ତିନିକେତନ)

1984–'ଜାତି ଓ ପ୍ରୀତିର କବି ମାନସିଂହ'–(1) ସତ୍ୟ ଷଡଙ୍ଗୀ(ଶାନ୍ତିନିକେତନ),(2)ଅର୍ଜୁନ କର(ଶାନ୍ତିନିକେତନ) (3) କୁମାରୀ ସବିତା ବେହେରା(ଅନୁଗୁଳ କଲେଜ),1985–'ମାନସିଂହଙ୍କ ବ୍ୟକ୍ତିବିଶ୍ୱ ଓ ବହିର୍ବିଶ୍ୱ' (1) ସୃଷ୍ଟିଧର ପଣ୍ଡା(ଶାନ୍ତିନିକେତନ),(2)ଆଶିଷ କୁମାର ରାଉତ(ଶାନ୍ତିନିକେତନ),(3)ସଞ୍ଜୟ କୁମାର ଷଡଙ୍ଗୀ(ବାଣୀବିହାର),1986–'ମାନସିଂହଙ୍କ କାବ୍ୟନାଟିକା–ସୃଷ୍ଟି ଓ ସଂକେତ'(1) ଆଶିଷ କୁମାର ରାଉତ, (ଶାନ୍ତିନିକେତନ),(2) କୁମାରୀ ଶାଶ୍ୱତୀ ସୌମ୍ୟା ସାହୁ(ରମାଦେବୀ ମହିଳା କଲେଜ)(3)ପୀତବାସ ପ୍ରଧାନ, (ଶାନ୍ତିନିକେତନ),1987–

77: ରାଧାଶ୍ୟାମ ବେହୁରା,ସମ୍ବଲପୁର ବିଶ୍ୱବିଦ୍ୟାଳୟ ରୁ,'ଓଡିଆ ସାହିତ୍ୟକୁ ମାୟାଧର ମାନସିଂହଙ୍କ ଅବଦାନ' କୁଞ୍ଜବିହାରୀ ଧଳ,(1983), ରୁ 'ମାନସିଂହଙ୍କ କାବ୍ୟ କବିତା:ଏକ ଅଧ୍ୟୟନ' ମନୋରମା ମହାପାତ୍ର,(1986)ଉତ୍କଳ ବିଶ୍ୱବିଦ୍ୟାଳୟ'ରୁ'ଓଃ ମାୟାଧର ମାନସିଂହଙ୍କ କାବ୍ୟକବିତା:ଏକ ଅଧ୍ୟୟନ' ସଂଯୁକ୍ତା ମିଶ୍ର,(1987),ଉତ୍କଳ ବିଶ୍ୱବିଦ୍ୟାଳୟ ରୁ 'ମାନସିଂହଙ୍କ କାବ୍ୟକବିତାରେ ଜାତୀୟ ଚେତନା'

* ଏଷଣା' ପର୍ଯ୍ୟବେଶ ଖଣ୍ଡ– ପୃ– 100 ରୁ 112,

ତୃତୀୟ ଅଧ୍ୟାୟ

## ମାନସିଂହଙ୍କ ବିଚାରଧାରାର ପୃଷ୍ଠପୀଠିକା

### ମାନସିଂହଙ୍କ ଆବିର୍ଭାବ ଓ ବ୍ୟକ୍ତିତ୍ୱ ବିକାଶର କାଳ

#### ଆବିର୍ଭାବର ପ୍ରାକ୍‌କାଳ:————

ଭାରତର ସାଂସ୍କୃତିକ ପରମ୍ପରା ଖୁବ୍ ପୁରାତନ । ଇଂରେଜ ଆଗମନ ପୂର୍ବରୁ ସମଗ୍ର ଭାରତବର୍ଷ କୌଣସି ସମୟରେ ଏକ ଶାସନାଧୀନ ନଥିଲେ ହେଁ, ସାଂସ୍କୃତିକ ସ୍ତରରେ ଏହାର ଐକ୍ୟ ସ୍ଥାପିତ ହୋଇଥିଲା । ଏହାର ଧର୍ମୀୟଧାରା ଅତ୍ୟନ୍ତ ପୁରାତନ ହୋଇଥିବାରୁ କାଳକ୍ରମେ ଏହା ମଧ୍ୟରେ ନାନା ପରିବର୍ତ୍ତନ ପ୍ରବେଶ କରିବା ସଙ୍ଗେ ସଙ୍ଗେ ଅନେକ କୁସଂସ୍କାର ପ୍ରବେଶ କରିଥିଲା । ଅବଶ୍ୟ ବିଭିନ୍ନ ସମୟରେ ସଂସ୍କାରକ ମାନଙ୍କର ଆବିର୍ଭାବ ଭାରତୀୟ ଚେତନାର ଧାରାକୁ ସୁସଂଗଠିତ କରିବା ପାଇଁ ଚେଷ୍ଟା କରିଥିଲେ ହେଁ, କୌଣସି ବଳିଷ୍ଠ ନେତୃତ୍ୱର ଅଭାବରୁ ଏହି ସାଂସ୍କୃତିକ ଧାରା ଅନେକ ସ୍ଥଳରେ ବିଭ୍ରାନ୍ତିକର ରୂପ ନେଇଥିଲା । କେତେକ ଧର୍ମୀୟ ଗୁରୁଙ୍କର ଭୁଲ ବୁଝାମଣା ଯୋଗୁଁ ଦେଶର ଆଭ୍ୟନ୍ତରୀଣ ଏକତା କ୍ଷୁଣ୍ଣ ହୋଇଥିଲା । ବିଭିନ୍ନ ପର୍ଯ୍ୟାୟରେ ବୈଦେଶିକ ଶକ୍ତି ମାନଙ୍କର ଆକ୍ରମଣ ତଥା ଶାସନରେ ପ୍ରାକ୍–ଊନବିଂଶ ଶତାବ୍ଦୀର ଭାରତ ଏବଂ ଓଡିଶା ସାମାଜିକ ତଥା ସାଂସ୍କୃତିକ ସ୍ତରରେ ହାହାକାର କରି ଉଠୁଥିଲା । କେତେକ ସ୍ଥଳରେ ସ୍ୱଦେଶୀ ଶାସକ ମାନଙ୍କର ଅତ୍ୟାଚାର ତଥା ତ୍ରୁଟିପୂର୍ଣ୍ଣ ଶାସନ ନୀତି, ଲୋକ ମାନଙ୍କୁ ଅତିଷ୍ଠ କରି ପକାଇଥିଲା । ସେହି କାରଣରୁ ଅଷ୍ଟାଦଶ ଶତାବ୍ଦୀର ବିଭିନ୍ନ ସମୟରେ ଇଷ୍ଟଇଣ୍ଡିଆ କମ୍ପାନୀକୁ ଭାରତର ଅଧିକାଂଶ ଅଞ୍ଚଳକୁ ନିଜର ଶାସନ ପରିସରଭୁକ୍ତ କରିବା ସଙ୍ଗେ ସଙ୍ଗେ, ଖ୍ରୀ: ୧୮୦୩ ରେ ଓଡିଶା ଅଧିକାର କରିବାକୁ ବିଶେଷ କଷ୍ଟ ସାଧ୍ୟ ହୋଇ ନଥିଲା ।

ସେ ସମୟରେ ଆର୍ଥନୀତିକ କାରଣରୁ ରାଜା ମହାରାଜାଙ୍କୁ ଛାଡିଦେଲେ ଆଉ ଦୁଇଟି ଶ୍ରେଣୀର ଲୋକ ଥିଲେ । ଦଳେ ମଧ୍ୟବିତ୍ତ ବର୍ଗ, ଅନ୍ୟଟି ଆର୍ଥନୀତିକ ଦୁର୍ବଳ ଶ୍ରେଣୀ । ସାମାଜିକ ସ୍ତରରେ ସେହିପରି

ବ୍ରାହ୍ମଣମାନଙ୍କ ବ୍ୟତୀତ, ଦଳେ ସବର୍ଣ୍ଣ ଓ ଅନ୍ୟ ଦଳେ ଅସବର୍ଣ୍ଣ । ଅସବର୍ଣ୍ଣ ମାନଙ୍କ ମଧ୍ୟରୁ ପ୍ରାୟତଃ ସମସ୍ତେ ଆର୍ଥନୀତିକ ଦୁର୍ବଳ ଶ୍ରେଣୀରେ ଥିଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଏହି ଦୁର୍ବଳତାକୁ ଚିନ୍ତା ତଥା ଚେତନାରେ ବିଧି ନିର୍ଦ୍ଦିଷ୍ଟ ବୋଲି ଗ୍ରହଣ କରି ନେଇଥିଲେ । ଖ୍ରୀଷ୍ଟୀୟ ମିଶନାରୀ ମାନଙ୍କର ଅକୁଣ୍ଠ ସେବା ଭେଦଭାବ ବର୍ଜିତ ବ୍ୟବହାର, ଆର୍ଥନୀତିକ ତଥା ସାମାଜିକ ଦୁର୍ବଳ ଶ୍ରେଣୀର ଲୋକମାନଙ୍କୁ ଖ୍ରୀଷ୍ଟ ଧର୍ମ ପ୍ରତି ଆକୃଷ୍ଟ କଲା ଏବଂ ସଂପୃକ୍ତ ଦୁର୍ବଳ ଶ୍ରେଣୀର ହିନ୍ଦୁମାନଙ୍କ ମଧ୍ୟରୁ ଅଧିକାଂଶ ଖ୍ରୀଷ୍ଟଧର୍ମ ଗ୍ରହଣ କରି ନେଇଥିଲେ ।

ପୁନଶ୍ଚ ଇଂରେଜମାନେ ଶାସନ ପରିଚାଳନା ପାଇଁ ଯେଉଁ ଦେଶୀୟ ଲୋକମାନଙ୍କୁ ଶାସନ କ୍ଷେତ୍ରରେ ଗ୍ରହଣ କରିନେଲେ, ସେମାନେ ତଥା ସେମାନଙ୍କର ପିଲାମାନେ ଇଂରାଜୀ ଶିକ୍ଷା ଗ୍ରହଣ କରିନେଲେ । ମଧ୍ୟବିତ୍ତ ଶ୍ରେଣୀର କେତେକ ଲୋକ ଚାକି ରୀ ଲୋଭରେ ମଧ୍ୟ ଇଂରାଜୀ ଶିକ୍ଷା ଗ୍ରହଣ କଲେ । ଫଳରେ ଏହି ଚାକିରୀ କରୁଥିବା ଲୋକମାନେ ଏକ ନୂତନ ମଧ୍ୟବିତ୍ତ ଶ୍ରେଣୀ ସୃଷ୍ଟି କଲେ । ଭବିଷ୍ୟତରେ ଭାରତର ସାମାଜିକ–ସାଂସ୍କୃତିକ ତଥା ଶାସନଗତ ଯେଉଁ ପରିବର୍ତ୍ତନ ହେଲା, ସେଥିରେ ଏହି ମଧ୍ୟବିତ୍ତ ଶ୍ରେଣୀର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ଏହି ମଧ୍ୟବିତ୍ତ ଶ୍ରେଣୀ ବିଭିନ୍ନ ସମୟରେ ସୁବିଧାବାଦୀ ଭୂମିକା ଗ୍ରହଣ କରିଛି । ଆର୍ଥନୀତିକ ତଥା ସାମାଜିକ ଦୁର୍ବଳଶ୍ରେଣୀ ବ୍ୟତୀତ ଏହି ମଧ୍ୟବିତ୍ତ ଶ୍ରେଣୀରୁ କେତେକ ଊନବିଂଶ ଶତାବ୍ଦୀର ଆଦ୍ୟ ଭାଗରେ ସୁବିଧା ହାସଲ ପାଇଁ ଖ୍ରୀଷ୍ଟଧର୍ମ ପ୍ରତି ଆକୃଷ୍ଟ ହୋଇ, ଖ୍ରୀଷ୍ଟଧର୍ମ ଗ୍ରହଣ କଲେ । ଏମାନଙ୍କ ମଧ୍ୟରୁ କେତେକ ହିନ୍ଦୁ ସାମାଜିକ ଚଳଣୀରେ ଅତିଷ୍ଠ ହୋଇ ଓ ଅନ୍ୟ କେତେକ ପରିସ୍ଥିତିରୁ ସୁବିଧା ହାସଲ ପାଇଁ ଖ୍ରୀଷ୍ଟଧର୍ମ ଗ୍ରହଣ କଲେ ।

ଏହି କ୍ରିୟାର ପ୍ରତିକ୍ରିୟାରେ ରାଜା ରାମମୋହନ ରାୟ ଖ୍ରୀଷ୍ଟ ଧର୍ମର ସମାନ୍ତରାଳ ଏକ ଭାରତୀୟ ଧର୍ମ, ବ୍ରହ୍ମଧର୍ମ ପ୍ରତିଷ୍ଠା କଲେ । ବ୍ରହ୍ମଧର୍ମ ଆଚରଣ ତଥା କ୍ରିୟାରେ ଭାରତୀୟ ହେଲେ ମଧ୍ୟ ଚିନ୍ତା ତଥା ଚେତନାରେ ଖ୍ରୀଷ୍ଟଧର୍ମର ସମାନ ଥିବାରୁ ଅବସ୍ଥା ଚକ୍ରରେ ଖ୍ରୀଷ୍ଟଧର୍ମ ପ୍ରତି ଆକୃଷ୍ଟ ହେଉଥିବା ମଧ୍ୟବିତ୍ତ ଶ୍ରେଣୀ ବ୍ରାହ୍ମଧର୍ମ ପ୍ରତି ଦୃଷ୍ଟି ଫେରାଇଲେ । ଏହିମାନେ ହିଁ ଆନ୍ତରିକ ଭାବରେ ଆଧୁନିକ ଶିକ୍ଷାପ୍ରତି ଆକୃଷ୍ଟ ହେଲେ । ଅବଶ୍ୟ ମ୍ୟାକଲେଙ୍କ ଶିକ୍ଷା–ନୀତି ଇଂରେଜୀ ଶିକ୍ଷା ପାଇଁ ଅନେକ ସ୍ଥଳରେ ଦାୟୀ, ମାତ୍ର ସାମାଜିକ ତଥା ସାଂସ୍କୃତିକ ଦିଗରୁ ଉପର୍ଯ୍ୟୁକ୍ତ ଆଲୋଚନା କରାଯାଇଅଛି । ଡକ୍ଟର ନରେନ୍ଦ୍ରନାଥ ସିଂହଙ୍କ ମତରେ:—"ଇଂରେଜମାନଙ୍କ ସଂସର୍ଗରେ ଆସିବା ପରେ ପ୍ରଥମେ ଆମ ଦେଶରେ ଏକ ପ୍ରକାର ଗୌଣ ମନୋଭାବର ଉଦୟ ହୋଇଥିଲା । ସେଥିରୁ ଦେଶବାସୀଙ୍କ ମନକୁ ମୁକ୍ତ କରିବା ଜାତୀୟବାଦୀ ମାନଙ୍କର ପ୍ରଥମ କାର୍ଯ୍ୟ ହୋଇଥିଲା । ସେଥିଲାଗି ପାଶ୍ଚାତ୍ୟମାନଙ୍କଠାରୁ ପାରମ୍ପରିକ ଭାବରେ ଆମେ କେଉଁ ପରିମାଣରେ ସ୍ୱତନ୍ତ୍ର ତାହା ଦେଖାଇବାକୁ ଉଦ୍ୟମ ହେଲା । ଆମ ଚିନ୍ତାନାୟକ ମାନେ ଆମର ଗୌରବାବହ ଅତୀତ ଉପରେ ଦୃଷ୍ଟି ପକାଇଲେ । ମାତ୍ର ଅତୀତ ବହୁ ପ୍ରକାର ଦର୍ଶନ ପରମ୍ପରା ପୁଷ୍ଟ ଧାର୍ମିକ ଚିନ୍ତାରେ ଆଚ୍ଛନ୍ନ ଥିଲା । ଏଇ ଧାର୍ମିକ ଚିନ୍ତାକୁ ଆଧୁନିକ ଯୁଗର ବୈଜ୍ଞାନିକ ଚିନ୍ତା ସହିତ ଖାପ ଖୁଆଇବାର

ଚେଷ୍ଟା ହେଲା"(1)"ଏହି ସମୟରେ ଭାରତୀୟ ଚିନ୍ତାଜଗତରେ ଯେଉଁ ଶୂନ୍ୟତା ସୃଷ୍ଟି ହୋଇଥିଲା–ତାହା ହିନ୍ଦୁମାନେ ଉପନିଷଦର ଦର୍ଶନଦୃଷ୍ଟି, ପ୍ରାଚୀନ ଭାରତର ଗୌରବମୟ ଇତିହାସ ଓ ତାହାର ପୁନଃ ପ୍ରତିଷ୍ଠା ଭାବନାରେ ପୂର୍ଣ୍ଣକରି ଦେଇଥିଲେ ।"(2)

ଏହି ପ୍ରକାର ସାମାଜିକ ଆନ୍ଦୋଳନକୁ ନେତୃତ୍ୱ ଦେଇଥିବା ରାଜା ରାମମୋହନ ରାୟ, ମହର୍ଷି ଦେବେନ୍ଦ୍ରନାଥ ଠାକୁର, କେଶବ ଚନ୍ଦ୍ର ସେନ, ହିନ୍ଦୁ ସନାତନ ଧର୍ମର ବ୍ୟାଖ୍ୟାକାର ସ୍ୱାମୀ ବିବେକାନନ୍ଦ ତଥା ଆର୍ଯ୍ୟସମାଜର ପ୍ରତିଷ୍ଠାତା ସ୍ୱାମୀ ଦୟାନନ୍ଦ ସରସ୍ୱତୀ ପ୍ରମୁଖ ଚିନ୍ତାନାୟକ ମାନେ ମାନସିଂହଙ୍କ ଚିନ୍ତା ଚେତନାରେ ପ୍ରଭାବ ପକାଇଛନ୍ତି । ଊନବିଂଶ ଶତକରେ ହିନ୍ଦୁ ପରମ୍ପରା ଉପର୍ଯ୍ୟୁକ୍ତ ସଂସ୍କାରକ ମାନଙ୍କର ଚେଷ୍ଟାରେ ନୂତନରୂପ ଧାରଣ କରିବାକୁ ଚେଷ୍ଟା କଲା । ଏହି ମହାପୁରୁଷମାନେ ହିନ୍ଦୁ ପରମ୍ପରାର ତ୍ରୁଟି ବିଚ୍ୟୁତିକୁ ବାଦ ଦେଇ, ନୂତନ ଆଲୋକର ସନ୍ଧାନ ଦେବାପାଇଁ ଚେଷ୍ଟା କଲେ, ଫଳରେ ନବମଧ୍ୟବିତ୍ତ ଗୋଷ୍ଠୀ ତଥା ଆଧୁନିକ ଶିକ୍ଷିତ ମାନେ ଏହି ଉଦାରପନ୍ଥୀ ଧାରା ପ୍ରତି ଆଗ୍ରହପୋଷଣ କରିଥିଲେ ।

## ଜାତୀୟ ଚେତନାର ବିକାଶ କାଳ :

ଊନବିଂଶ ଶତାବ୍ଦୀର ଶେଷଭାଗ ତଥା ବିଂଶ ଶତାବ୍ଦୀର ପ୍ରଥମଭାଗ ହେଉଛି, ଭାରତୀୟ ଜାତୀୟ ଚେତନାର ବିକାଶ କାଳ । ରାଜନୈତିକ ଦୃଷ୍ଟିକୋଣରୁ ବିଗ୍ରହକଲେ, ଖ୍ରୀ: ୧୮୮୫ ରେ ଭାରତୀୟ ଜାତୀୟ କଂଗ୍ରେସ ପ୍ରତିଷ୍ଠା ଠାରୁ ଖ୍ରୀ: ୧୨୨୦–୨୧ ରେ ମହାତ୍ମାଗାନ୍ଧିଙ୍କର ଅସହଯୋଗ ଆନ୍ଦୋଳନ ପର୍ଯ୍ୟନ୍ତ ସମୟକୁ ଭାରତୀୟ ରାଜନୀତିରେ ଜାତୀୟ ଚେତନାର ଅଭ୍ୟୁଦୟ କାଳ ଭାବରେ ଗ୍ରହଣ କରାଯାଏ । ସର୍ବଭାରତୀୟ ସ୍ତରରେ ଇଂରେଜ ସରକାରଙ୍କ ବିରୋଧ କରି, ସାଧାରଣ ଜନତା ମଧ୍ୟରେ ଯେପରି ଜନ ଜାଗରଣ ଦେଖା ଦେଇଥିଲା, ଓଡିଶାରେ ମଧ୍ୟ ତାହାର ପ୍ରଭାବ ପଡିଥିଲା ।

ଜାତୀୟ କଂଗ୍ରେସର ବିଭିନ୍ନ ଅଧିବେଶନରେ ଓଡିଶାର ପ୍ରତିନିଧି ମାନେ ଯୋଗଦେଇ ଆସୁଥିଲେ । ସେମାନେ ଅଧିବେଶନରୁ ଫେରିଲାପରେ ଜାତୀୟ କଂଗ୍ରେସ ବାର୍ଷିକ ଅଧିବେଶନରେ ପ୍ରସ୍ତାବିତ କଂଗ୍ରେସର ଉଦ୍ଦେଶ୍ୟ ଓ କାର୍ଯ୍ୟକୁ ସାଧାରଣରେ ବୁଝାଇବାକୁ ଚେଷ୍ଟା କରୁଥିଲେ । ସେ ସମୟରେ ବଙ୍ଗ, ବିହାର ଓ ଓଡିଶା ମିଶିକରି ଥିବାରୁ କଂଗ୍ରେସକୁ ପ୍ରତିନିଧି ପଠାଇବା ଓ ନେତୃତ୍ୱ ନେବାରେ କ୍ରମେ ବଙ୍ଗାଳୀ ପ୍ରଭାବ ବୃଦ୍ଧି ପାଇବାରୁ 'ଉତ୍କଳ ସଭା' କ୍ରମେ ଜନ ସମର୍ଥନ ହରାଇବା ପରି ଲକ୍ଷ୍ୟ କରାଗଲା । ଏହି ସମୟରେ ମଧୁବାବୁଙ୍କ ନେତୃତ୍ୱରେ ସାଂଗଠନିକ ଶକ୍ତିଦ୍ୱାରା ବଙ୍ଗାଳୀ ପ୍ରଭାବ ମୁକ୍ତ ହୋଇ ଓଡିଶାରେ ଜାତୀୟ କଂଗ୍ରେସ ଗଠନ ଓ ପ୍ରଗ୍ରର କାର୍ଯ୍ୟ କରାଗଲା । ମିଷ୍ଟର ଦାସ, ଗୌରୀଶଙ୍କର, ଗୋକୁଳାନନ୍ଦ ଚୌଧୁରୀ, କୁମାର ପଦ୍ମନାଭ ନାରାୟଣ ଦେବ, ଶ୍ୟାମସୁନ୍ଦର ରାଜଗୁରୁ ପ୍ରମୁଖ ନେତା ମାନେ ସେ ସମୟର କଂଗ୍ରେସର ବିଭିନ୍ନ ଅଧିବେଶନରେ ଓଡିଶାରୁ ପ୍ରତିନିଧିତ୍ୱ କରିଥିଲେ । ଜାତୀୟ କଂଗ୍ରେସର

ମାଡ୍ରାଜ ଅଧିବେଶନରେ ଗଞ୍ଜାମକୁ ଓଡିଶାକୁ ଫେରାଇ ଦେବା ବିରୋଧରେ ଯେତେବେଳେ ତେଲୁଗୁ ମାନଙ୍କ ପ୍ରସ୍ତାବ ଆଗତ ଓ ଗୃହୀତ ହେଲା, ସେତେବେଳେ ମଧୁବାବୁ ଜାତୀୟ କଂଗ୍ରେସରୁ ଓହରି ଆସି, ଉତ୍କଳ ସମ୍ମିଳନୀ ଗଠନର ପରିକଳ୍ପନା କଲେ ।(3)

ଖ୍ରୀ: ୧୨୦୫ ମସିହାର ବଙ୍ଗଭଙ୍ଗ ଆନ୍ଦୋଳନ ପରବର୍ତ୍ତୀ ସମୟରେ ସ୍ୱଦେଶୀ ଆନ୍ଦୋଳନ ସହିତ ସାମିଲ ହୋଇଯିବାରୁ, ଏହା ଭାରତ ସାରା ବ୍ୟାପି ଗଲା । ଲାଲା ଲଜପତ୍ ରାୟ୍, ବାଲ୍ ଗଙ୍ଗାଧର ତିଳକ, ବିପିନ୍ ଚନ୍ଦ୍ର ପାଲ ତଥା ସୁରେନ୍ଦ୍ରନାଥ ବାନାର୍ଜି ପ୍ରମୁଖ ନେତାମାନେ ସ୍ୱଦେଶୀ- ଆନ୍ଦୋଳନକୁ ଚଳାଇ ନେଲେ । ଏହି ଆନ୍ଦୋଳନ ସର୍ବତ୍ର ପ୍ରତିଧ୍ୱନିତ ହୋଇ ଉଠିଲା । ମାୟାଧର ମାନସିଂହଙ୍କ ଜନ୍ମ ୧୨୦୫ ମସିହାରେ ହୋଇଥିଲେ ମଧ୍ୟ ସ୍ୱଦେଶୀ ଆନ୍ଦୋଳନର ପ୍ରଭାବ ଓ ପ୍ରତିକ୍ରିୟା ତାଙ୍କର ଛାତ୍ର ଜୀବନରୁ କର୍ମମୟ ଜୀବନ ଓ ସାହିତ୍ୟ ସୃଷ୍ଟି ପ୍ରକ୍ରିୟାରେ ବେଶ ପ୍ରଭାବ ପକାଇ ପାରିଛି ।

## ଉତ୍କଳ ସମ୍ମିଳନୀ :

ଜାତୀୟ କଂଗ୍ରେସର ଓଡିଶା ଶାଖାରେ କ୍ରମଶଃ ବଙ୍ଗାଳୀ ପ୍ରଭାବ ଓ ଗଞ୍ଜାମକୁ ତେଲୁଗୁ ଅଞ୍ଚଳରେ ମିଶାଇବାର ସିଦ୍ଧାନ୍ତର ପ୍ରତିକ୍ରିୟାରୁ ଓଡିଶାରେ 'ଉତ୍କଳ ସମ୍ମିଳନୀ'ର ପ୍ରତିଷ୍ଠା ହେଲା । ଅବଶ୍ୟ ସ୍ୱତନ୍ତ୍ର ଓଡିଶା ଗଠନ ପାଇଁ, ଏହାର ବହୁ ପୂର୍ବରୁ ଚେଷ୍ଟା ହୋଇ ଆସୁଥିଲା, ମାତ୍ର ସେ ଆନ୍ଦୋଳନ ସର୍ବଭାରତୀୟ ଆନ୍ଦୋଳନ ସହିତ ମିଶିକରି ଗତି କରୁଥିଲା ।"ଖ୍ରୀ: ୧୨୦୩ ଅପ୍ରେଲ ଦୁଇ ତାରିଖରେ'ଉତ୍କଳ ସଭା'ର ଏକ ଅଧିବେଶନରେ ପ୍ରସ୍ତାବ ଗ୍ରହଣ କରାଗଲା ଯେ, ବିଜୟ ନଗରର ଓଡିଆ ଅଞ୍ଚଳ, ଗଞ୍ଜାମ, ସମ୍ବଲପୁର, ଛୋଟନାଗପୁର, ଫୁଲଝର ଓ ମେଦିନିପୁର ସମେତ ସମଗ୍ର ବିଚ୍ଛିନ୍ନାଞ୍ଚଳ ଏକତ୍ରୀକରଣ ଲାଗି ଭାଇସରାୟଙ୍କ ନିକଟରେ ଆବେଦନ କରାଯାଉ । ଯଦି ଓଡିଆ ଅଂଚଳ ଏକତ୍ରୀକରଣରେ କୌଣସି ଅସୁବିଧା ଥାଏ, ତେବେ ଆସାମ ପରି ଓଡିଆ ଭାଷାଭାଷୀ ଅଂଚଳକୁ ମଧ୍ୟ ସ୍ୱତନ୍ତ୍ର ଡିଭିଜନ ରୂପେ ଗଠନ କରି ଜଣେ ଚିଫ୍ କମିଶନରଙ୍କ ଶାସନାଧୀନରେ ରଖାଯାଉ । ଯଦି ତାହା ମଧ୍ୟ ନ ହୁଏ, ତେବେ ସବୁ ଓଡିଆ ଅଂଚଳ ଏକାଠି କରି ବଂଗ ପ୍ରଦେଶ ସହିତ ରଖାଯାଉ । ଗୋକୁଳାନନ୍ଦ ଚୌଧୁରୀ ପଣ୍ଡିତ ଗୋପବନ୍ଧୁ ଓଡିଆ ଅଂଚଳ ମାନ ବଂଗଳା ସହିତ ନରହି ମଧ୍ୟପ୍ରଦେଶ ସହିତ ରହୁ ବୋଲି ଯୁକ୍ତି କଲେ । ସେହି ସମୟରେ କଲିକୋଟ ରାଜାଙ୍କ ଅଧିନାୟକତ୍ୱରେ ଏକ ବଡ ରାଜନୀତିକ ସମ୍ମିଳନୀ ଗଞ୍ଜାମରେ ଅନୁଷ୍ଠିତ ହେଲା । ନୀଳମଣି ବିଦ୍ୟାରତ୍ନ ସେତେବେଳେ ଥିଲେ ଖଲିକୋଟରୁ ପ୍ରକାଶିତ ହେଉଥିବା 'ପ୍ରଜାବନ୍ଧୁ'ର ସମ୍ପାଦକ । ଏ ସମ୍ମିଳନୀର ସଫଳତା ଓ ଓଡିଆ ଅଂଚଳ ମିଶ୍ରଣଲାଗି ଗଞ୍ଜାମବାସୀଙ୍କର ପ୍ରବଳ ଆଗ୍ରହ ଏବଂ ଉତ୍ତେଜନା ବାସ୍ତବରେ ଏଥିରେ ଯୋଗଦେଇଥିବା ତୁଙ୍ଗନେତା ମାନଙ୍କୁ ପ୍ରଭାବିତ କରିଥିଲା । ମଧୁବାବୁ ଏହି ସମ୍ମିଳନୀର ସଫଳତାରେ ଅଭିଭୂତ

ହୋଇ ପଡିଲେ । 'ଗଂଜାମ ସମ୍ମିଳନୀ' ହିଁ ଓଡିଆ ଆନ୍ଦୋଳନକୁ ବ୍ୟାପକ ଭିତ୍ତିରେ ପ୍ରତିଷ୍ଠା କରିବା ପାଇଁ ମଧୁବାବୁଙ୍କୁ ପ୍ରତ୍ୟକ୍ଷ ଓ ପରୋକ୍ଷ ପ୍ରେରଣା ପ୍ରଦାନ କରିଥିଲା । ଫଳରେ ଉତ୍କଳ ସମ୍ମିଳନୀର ଜନ୍ମ ସମ୍ଭବ ହୋଇ ପାରିଥିଲା । ବାସ୍ତବରେ 'ଉତ୍କଳ ସମ୍ମିଳନୀ'ହିଁ ଓଡିଶାରେ ଜନ ଜାଗରଣର ସ୍ୱପ୍ନ ଓ ସମ୍ଭାବନାର ପ୍ରତୀକ ।" (4)

ପରବର୍ତ୍ତୀ ସମୟରେ ଏହି ଉତ୍କଳ ସମ୍ମିଳନୀ ଓଡିଆ ଆନ୍ଦୋଳନକୁ ଚଳାଇ କିପରି ସ୍ୱତନ୍ତ୍ର ଓଡିଶା ପ୍ରତିଷ୍ଠା କରାଇ ପାରିଥିଲା, ତାହା ପ୍ରଥମ ଅଧ୍ୟାୟରେ ଆଲୋଚିତ ହୋଇଅଛି । ଏହି ସମ୍ମିଳନୀର ପୁରୀ ଅଧିବେଶନ ମାନସିଂହଙ୍କୁ କିପରି ପ୍ରଭାବିତ କରିଥିଲା, ତାହାମଧ୍ୟ ପୂର୍ବରୁ ସୂଚୀତ ହୋଇଛି । ମାନସିଂହଙ୍କର ସାଆନ୍ତବାପା ଅଗାଧୁ ନାୟକ, ପୁରୀରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀରେ ପାରିକୁଦର ଜଣେ ପ୍ରତିନିଧି ଭାବରେ ଯୋଗ ଦେବା ସମୟରେ ବାଳକ ମାନସିଂହଙ୍କୁ ଅଧିବେଶନ ଦେଖାଇବା ପାଇଁ ସାଙ୍ଗରେ ନେଇ ଯାଇଥିଲେ ଓ ସେହିଠାରେ ଏଗାର ବାର ବର୍ଷର ବାଳକ ପ୍ରାଣରେ, ଯେଉଁ ପରିବର୍ତ୍ତନ ତଥା ଭାବାବେଗ ଦେଖା ଦେଇଥିଲା, ତାହା ପୂର୍ବରୁ ଆଲୋଚିତ ହୋଇଅଛି । ଏହି ପୃଷ୍ଠଭୂମିର ପ୍ରତିଫଳନ ପରବର୍ତ୍ତୀ କାଳରେ ଆମେ ମାନସିଂହଙ୍କ ବ୍ୟକ୍ତିତ୍ୱ ତଥା ସାହିତ୍ୟରେ ଦେଖିବାକୁ ପାଉଁ ।

## ମାନସିଂହଙ୍କ ବ୍ୟକ୍ତିତ୍ୱ ବିକାଶର କାଳ: ଏକ ଆଦର୍ଶବାଦର କାଳ ॥

ମାନସିଂହଙ୍କ ବ୍ୟକ୍ତିତ୍ୱ ବିକାଶର କାଳ, ଭାରତୀୟ ସମାଜ ଜୀବନରେ ବିଶେଷତଃ ଓଡିଶାର ଜନ ଜୀବନରେ ଏକ ଆଦର୍ଶବାଦର କାଳ । ଏହି ସମୟରେ ଓଡିଶାର ଜନ ଜୀବନରେ ନବ ଜାଗରଣର ସୂତ୍ରପାତ ହୋଇଥିଲା । ଭାରତୀୟ ନବଜାଗରଣ ସଂପର୍କରେ ଡକ୍ଟର ନରେନ୍ଦ୍ରନାଥ ମିଶ୍ର ଲେଖିଛନ୍ତି:—"ଆଧୁନିକ ଭାରତୀୟ ଚିନ୍ତାଧାରା ଓ ଇଉରୋପର ପୁନର୍ଜାଗରଣ ପରବର୍ତ୍ତୀ ଚିନ୍ତାଧାରାର ମୌଳିକ ପ୍ରେରଣା, ଆଦର୍ଶ ଏକ ଓ ଅଭିନ୍ନ । ସ୍ୱରୂପରେ ସାମଂଜସ୍ୟ ପ୍ରଚୁର । ତଥାପି ଏହାର ଆହରଣ ଭୂମି ଓ କ୍ରମବିକାଶର ସୋପାନରେ ଯଥେଷ୍ଟ ଭିନ୍ନତା ପରିଲକ୍ଷିତ ହୋଇଥାଏ । ଯେଉଁ ଇଉରୋପୀୟ ଭାବଧାରା ଷୋଡଶ ଶତକରୁ ଆରମ୍ଭ କରି ବିଂଶ ଶତକ ପର୍ଯ୍ୟନ୍ତ ଦୀର୍ଘ ଚାରିଶହ ବର୍ଷର ବହୁ ସାଧନା, ନବନବ ଉଦ୍ଭାବନ ଓ ଆବିଷ୍କାର ଫଳରେ ସମ୍ଭବ ହୋଇଥିଲା, ତାହାର ସାରାଂଶ ଭାରତବର୍ଷର ଅଗ୍ରଗାମୀ ଶିକ୍ଷିତ ସମାଜ ଗୋଟିଏ ଶତାବ୍ଦୀ ବା ତାହାଠାରୁ ଆହୁରି ଊଣାକାଳ ମଧ୍ୟରେ ଗ୍ରହଣ କରିଥିଲେ ଇଉରୋପର ବୈଜ୍ଞାନିକ ଚିନ୍ତାନାୟକ ମାନଙ୍କୁ ଯେପରି ପ୍ରାଣ ପଣକରି ଯୁଗଯୁଗର ଜମାଟ ଅନ୍ଧକାର, କୁସଂସ୍କାର, ଗୀର୍ଜାର ନିର୍ମମ ଶାସନ ଓ ଦମନର ସମ୍ମୁଖୀନ ହେବାକୁ ହୋଇଥିଲା, ଆମ ଦେଶର ଏହି ନବ ଭାବଧାରାର ଧାରକ ଓ ପୋଷକମାନଙ୍କୁ ସେପରି ପ୍ରତିକୂଳ ଶକ୍ତି ବିରୋଧରେ ଆସିବାକୁ ପଡି ନଥିଲା । ଖୁବ୍ ବେଶି ହେଲେ

॥ ମାନସିଂହଙ୍କ ବିଶ୍ବରଧାରା ॥

ପ୍ରାଚୀନ ସମାଜର ବନ୍ଧନ ଗ୍ରାମରେ ଦୃଢ଼ ଥିଲା । ମାତ୍ର ନବ ଶିକ୍ଷିତଗଣ ସହରରେ ଠୁଳ ହେଉଥିଲେ । ସେଠାରେ କୁସଂସ୍କାରଗ୍ରସ୍ତ ସମାଜର କୌଣସି ବନ୍ଧନ ନଥିଲା । ଇଂରେଜ ଆଇନ୍ ସେମାନଙ୍କୁ ଆଗ୍ରହ ବିଷୟରେ ପୂର୍ଣ୍ଣ ସ୍ୱାଧୀନତା ଦେଇଥିଲା ।"(୨) ଭାରତର ଅନ୍ୟାନ୍ୟ କେତେକ ଅଞ୍ଚଳରେ ଊନବିଂଶ ଶତକରେ ନବଜାଗରଣ ଆସିଯାଇଥିଲେ ହେଁ ଓଡ଼ିଶାରେ ଏହି ଜାଗରଣର ପ୍ରଭାବ,ବିଶେଷତଃ ବିଂଶ ଶତକର କିଛି ପୂର୍ବରୁ ଓ ବିଂଶ ଶତକର ଆଦ୍ୟ ଭାଗରେ ପ୍ରତିଫଳିତ ହେଲା । ଉତ୍କଳ ଗୌରବ ମଧୁସୂଦନ,କର୍ମବୀର ଗୌରୀଶଙ୍କର,ବାଗ୍ମୀ ବିଶ୍ୱନାଥ କର,ଗୋପାଳଚନ୍ଦ୍ର ପ୍ରହରାଜ,ଭିକାରୀଚରଣ ପଟ୍ଟନାୟକ ଓ.ସତ୍ୟବାଦୀର ବରେଣ୍ୟ ସାଧକଗଣ ଏହି ଆନ୍ଦୋଳନର ପ୍ରମୁଖ ନେତା ଥିଲେ । ଏମାନଙ୍କ ସହଯୋଗୀ ଓ ସମାନ୍ତରାଳ ଭାବରେ ଅନେକ ବରେଣ୍ୟ ସାଧକ ଉତ୍କଳରେ ନବଜାଗରଣ ଆଣିବାରେ ପ୍ରୟାସ କରିଥିଲେ ।

ପୂର୍ବରୁ ସୂଚନା ଦିଆଯାଇଛି ଯେ,ଏହି ଜାଗରଣ କାଳରେ ଗୋଟିଏ ମଧ୍ୟବିତ୍ତ ଗୋଷ୍ଠୀ ନେତୃତ୍ୱ ଦେଉଥିଲେ । ଏହି ମଧ୍ୟବିତ୍ତ ଗୋଷ୍ଠୀ ଦୁଇଟି ବର୍ଗରେ ବିଭକ୍ତ ହୋଇଥିଲେ । ଗୋଟିଏ ଗୋଷ୍ଠୀ ଉଚ୍ଚଶିକ୍ଷା ଲାଭକରି ସରକାରୀ ସଂସ୍ଥାରେ ଚାକିରୀ କରି ନେତୃତ୍ୱ ନେବା ସଂଗେ ସଂଗେ ନିଜର ସ୍ୱାର୍ଥ ହାସଲପାଇଁ,ଅଧିକ ଉଚ୍ଚବିତ୍ତ ବର୍ଗକୁ ସନ୍ତୁଷ୍ଟ ରଖିବା ପାଇଁ ଚେଷ୍ଟା କରୁଥିଲେ । ସ୍ୱାର୍ଥ ସେମାନଙ୍କ ନିକଟରେ ମୁଖ୍ୟ ଥିଲା । ସେମାନେ ଯେଉଁମାନଙ୍କୁ ନେତୃତ୍ୱ ଦେବାର ଛଳନା କରୁଥିଲେ,ସମୟେ ସମୟରେ ସେହି ମାନଙ୍କୁହିଁ ଶୋଷଣ କରୁଥିଲେ । ସୁବିଧାକ୍ରମେ ସେହି ମାନେ ହିଁ ଜମିଦାରୀ କିଣି,ଶାସନ କରୁଥିଲେ । ଆଉ ଏକ ମଧ୍ୟବିତ୍ତ ଶ୍ରେଣୀର ଲୋକମାନେ ଆଦର୍ଶବାଦର ମୋହରେ ନେତୃତ୍ୱ ପାଇଁ ଆଗ୍ରହୀ ଥିଲେ । ଏମାନଙ୍କର ନେତୃତ୍ୱ ଓ ଆଦର୍ଶ ମୁଖ୍ୟତଃ ଅନ୍ୟର ଦୃଷ୍ଟି ଆକର୍ଷଣ ପାଇଁ ଅଭିପ୍ରେତ ଥିଲା ।

ବିଂଶ ଶତକର ଆଦ୍ୟଭାଗରେ ଭାରତୀୟ ମଧ୍ୟବିତ୍ତ ଗୋଷ୍ଠୀରେ ଦୁଇଟି ଭାବଧାରାର ପ୍ରମୁଖ ବିକାଶ ଘଟିଥିଲା ।————

(କ) ନିଜ ଭିତରେ ଐତିହ୍ୟର ଆବିଷ୍କାର ଓ ସେହି ଐତିହ୍ୟ ଭିତରେ ବର୍ତ୍ତମାନ ଓ ଭବିଷ୍ୟତକୁ ପୁନର୍ଜୀବିତ କରିବାକୁ ଚେଷ୍ଟା ।

(ଖ) ଅତୀତର ଶୃଂଖଳକୁ ଯୋପାଡି ଦେଇ ଉଭରୋପର ଉଦାରତନ୍ତ୍ରୀ ଭାବଧାରା ହେତୁ ଭବିଷ୍ୟତର ନିର୍ମାଣ ।

ଏହି ଉଭୟଧାରାର ଶେଷ ପରିଣତି ଥିଲା ରୋମାଣ୍ଟିକ । ଏହି ଉଭୟଧାରାକୁ ନବ ମଧ୍ୟବିତ୍ତ ଗୋଷ୍ଠୀ ଗ୍ରହଣ କରି ନେଇଥିଲେ । ଆଧୁନିକ ଓଡ଼ିଆ ସାହିତ୍ୟ ତଥା ସମାଜ ଜୀବନ ଏକ ରୋମାଣ୍ଟିକ ଭାବ ପ୍ରବଣତା ଭିତରେ ଗଠିତ ହୋଇଥିଲା । ଏହି ଉଭୟଧାରା ମାନସିଂହଙ୍କ ବେଳକୁ ଅତି ଲୋକପ୍ରିୟ ହୋଇ ସାରିଥିଲା ଜାତୀୟ ଆନ୍ଦୋଳନ ଠାରୁ ସମାଜ ସଂସ୍କାର,ଶିକ୍ଷା ସାହିତ୍ୟ ସର୍ବତ୍ର ଏଇ ଦୁଇଟି ଧାରା ଦେଖିବାକୁ ମିଳୁଥିଲା ।"ରୋମାଣ୍ଟିକ ଦୃଷ୍ଟିଭଙ୍ଗୀରେ ରାଧାନାଥଙ୍କ କାବ୍ୟ ଚେତନା ସହିତ ମାନସିଂହଙ୍କ ଚେତନାରେ ଅନେକ ସାମ୍ୟ ଉପଲବ୍ଧ କରାଯିବ । କଳାସୃଷ୍ଟିର

ଉଚ୍ଛ୍ୱସିତ ଆହ୍ୱାନରେ ରାଧାନାଥ ତାଙ୍କ ରୋମାଣ୍ଟିକ୍ ଦୃଷ୍ଟିବଳୟ ମଧ୍ୟରେ ଜାତିର ଗୌରବାବହ ଅତୀତକୁ ରୂପାୟିତ କରିବା ପରିବର୍ତ୍ତେ ବହୁ ବିତର୍କିତ କାହାଣୀକୁ ଅବଲମ୍ବନ କରିଛନ୍ତି; କିନ୍ତୁ କବି ମାନସିଂହ ରାଧାନାଥୀ କାବ୍ୟଚେତନାର ଦୃଷ୍ଟ ପ୍ରତିବାଦଭାବେ ଆତ୍ମପ୍ରକାଶ କରିଥିବା ସତ୍ୟବାଦୀଯୁଗର କାବ୍ୟ ଆଭିମୁଖ୍ୟ ପ୍ରତି ଅତ୍ୟନ୍ତ ସଚେତନ ଥିବା ମନେ ହୁଏ । ତେଣୁ ପ୍ରଥମରୁହିଁ ତାଙ୍କ କାବ୍ୟଚେତନାରେ ରାଧାନାଥୀ ରୂପପ୍ରାଣତା ଓ ସତ୍ୟବାଦୀର ଉଗ୍ର ଜାତୀୟ–ଆଭିମୁଖ୍ୟ ସମନ୍ୱିତ ହୋଇ ଏକ ଚମତ୍କାର କଳାତ୍ମକ ରୂପ ଗ୍ରହଣକରିଛି ।"(୬)

ବିଂଶ ଶତକର ଆଦ୍ୟଭାଗରେ ନେତୃତ୍ୱ ନେଉଥିବା ଗୋଷ୍ଠୀ ନିକଟରେ ଏହି ଆଦର୍ଶବାଦ ମୁଖ୍ୟ ଥିଲା । ଜାତି ମଧ୍ୟରୁ ଅଜ୍ଞାନ ଅନ୍ଧକାରର ଦୂରୀକରଣ, ଜାତିକୁ ଶୃଙ୍ଖଳମୁକ୍ତ ତଥା ଅତୀତ ଇତିହାସକୁ ସ୍ମରଣ ନେଇ ଓଡିଆ ଭାଷାଭାଷୀ ଅଂଚଳର ଏକତ୍ରୀକରଣରେ ମୋହ ତଥା ଆଦର୍ଶ ଏହି ଗୋଷ୍ଠୀରେ ପ୍ରବଳ ଥିଲା । ଏହି ନିମ୍ନ ମଧ୍ୟବିତ୍ତର ଆଦର୍ଶବୋଧ ବାସ୍ତବ ଜୀବନରେ ବାରମ୍ବାର ବିଡମ୍ବନାର ସମ୍ମୁଖୀନ ହେଲେ ବି ସଚେତନ ଓ ଅର୍ଦ୍ଧଚେତନ ସ୍ତରରେ ସେ ଆଦର୍ଶବାଦର ଭୂମିକାକୁ ଓହ୍ଲେଇ ଆସୁଥିଲେ ବି ବୀର ହେବାର ଏକ ଦୁରନ୍ତ ମନୋବୃତ୍ତି ସେ ଆଦର୍ଶବୋଧ ପ୍ରତି ଅନୁରକ୍ତ କରାଉଥିଲା । ସାଧାରଣତଃ ଯେତେବେଳେ ଏହି ଅନୁରକ୍ତି ପ୍ରୀତିରେ ପରିଣତ ହୁଏ, ତାହା ବ୍ୟକ୍ତିକୁ ରୋମାଣ୍ଟିକ ଅନ୍ୱେଷଣ ଭିତରକୁ ଟାଣିନିଏ । ମାନସିଂହଙ୍କ ବ୍ୟକ୍ତିଗତ ଜୀବନର ଏହିଭଳି ଏକ ଆଦର୍ଶ ପ୍ରବଣ ଭାବ ତାଙ୍କ ବିଗ୍ରହଧାରାର ଉତ୍ସ ରୂପେ କାମ କରିଛି । ତାଙ୍କର ରଚନା, ଚିଠିପତ୍ର ଓ ଅନ୍ୟାନ୍ୟ ସାହିତ୍ୟତଥା ବୌଦ୍ଧିକ କୃତିରେ ଏହି ଭଳି ଏକ ରୋମାଣ୍ଟିକ ଭାବନା ସ୍ପଷ୍ଟ ।

## ସମୟର ମୌଳ ପ୍ରବୃତ୍ତି

ପୂର୍ବରୁ କୁହାଯାଇଛି ଯେ, ମାନସିଂହଙ୍କ ବ୍ୟକ୍ତିତ୍ୱ ବିକାଶର କାଳ—ଏକ ଆଦର୍ଶବାଦର କାଳ । ଏହି ସମୟରେ ଓଡିଆ ଭାଷାଭାଷୀ ଅଂଚଳର ଏକତ୍ରୀକରଣ ନେଇ ସମଗ୍ର ପ୍ରାକୃତିକ ଉତ୍କଳରେ ବ୍ୟାପକ ଜନଜାଗରଣ ଦେଖା ଦେଇଥିଲା ଓ ଏହି ଆନ୍ଦୋଳନକୁ ନେତୃତ୍ୱ ଦେଉଥିବା ବ୍ୟକ୍ତିମାନେ ସମଗ୍ର ତରୁଣ ଯୁବ ସମାଜର ଆଦର୍ଶ ଭାବରେ ଦଣ୍ଡାୟମାନ ହେଉଥିଲେ । ମାନସିଂହଙ୍କ ସମ୍ମୁଖରେ ସେହିମାନେ ହିଁ ଆଦର୍ଶ ଭାବରେ ଦଣ୍ଡାୟମାନ ହେବାର ପ୍ରମାଣ ରହିଛି ।(7)

ସର୍ବଭାରତୀୟ କ୍ଷେତ୍ରରେ ଭାରତୀୟ ସ୍ୱାଧୀନତା ସଂଗ୍ରାମ, ଏହି ସମୟର ବିଶେଷ ଘଟଣା । ମହାତ୍ମାଗାନ୍ଧୀଙ୍କ ଭାରତୀୟ ରାଜନୀତିକୁ ପ୍ରବେଶ କରିବାର ପୂର୍ବ ଓ ପର ସମୟର କାଳ ମଧ୍ୟ ଏକ ଆଦର୍ଶବାଦର କାଳ । ଯୁବ ସମାଜ ବିଶେଷତଃ ଛାତ୍ର ସମାଜ ଉପରେ ଜାତୀୟ ମୁକ୍ତି ଆନ୍ଦୋଳନ ଖୁବ୍ ପ୍ରଭାବ ପକାଉଥିଲା । ନିଜକୁ ପ୍ରକାଶ କରାଇବାର ମନୋଭାବ ଓ ନିଜକୁ ଆଜାଦୀ ଭାବରେ ପରିଚୟ ଦେବାର ମୋହ ଅନେକ ଯୁବ

ପ୍ରାଣରେ ଉଦ୍‌ବେଳିତ ହେଉଥିଲା । ସେମାନଙ୍କ ମଧ୍ୟରୁ ଅନେକ ସ୍କୁଲ କଲେଜ ଛାଡ଼ି ପ୍ରତ୍ୟକ୍ଷ ସଂଗ୍ରାମରେ ଭାଗ ନେଉଥିଲେ ହେଁ, ଅନ୍ୟ କେତେକ ପ୍ରତ୍ୟକ୍ଷ ସଂଗ୍ରାମରେ ଅଂଶ ନ ନେଇ ମଧ୍ୟ ଚିନ୍ତା ତଥା ଚେତନାରେ ଆଜାଦୀ ହୋଇ ପଡ଼ିଥିଲେ । ସେ ଦୃଷ୍ଟିରୁ ଦେଖିଲେ ମାନସିଂହ ପ୍ରତ୍ୟକ୍ଷ ସଂଗ୍ରାମରେ ଭାଗ ନେଇ ନାହାନ୍ତି; ମାତ୍ର ବାପୁଜୀଙ୍କ ବ୍ୟକ୍ତିତ୍ୱ, ଚିନ୍ତାଧାରା ଓ କର୍ମ ତାଙ୍କୁ ଏତେ ମାତ୍ରାରେ ପ୍ରଭାବିତ କରିଥିଲା ଯେ, ମାନସିଂହଙ୍କ ସାହିତ୍ୟରେ ବାପୁଜୀ ଏକ ବଳିଷ୍ଠସ୍ଥାନ ଲାଭ କରିଛନ୍ତି । ସେ ପ୍ରସଂଗ ପରେ ଆଲୋଚିତ ହେବ । ଏ ସଂପର୍କରେ 'କମଳାୟନ' କାବ୍ୟରେ କମଳମୁଖରେ ମାନସିଂହ ସ୍ପଷ୍ଟିକରଣ ଦେଇଛନ୍ତି ।(୪)

ଏହି ସମୟସୀମା ମଧ୍ୟରେ ବିଶ୍ୱ ରାଜନୀତିରେ ମଧ୍ୟ ଏକ ଉଲ୍ଲେଖ ଯୋଗ୍ୟ ଘଟଣା ଘଟିଥିଲା, ତାହା ବିଶ୍ୱଯୁଦ୍ଧ । ଏହି ବିଶ୍ୱ-ଯୁଦ୍ଧ ରାଜନୀତିକ ତଥା ସାମାଜିକ ଜୀବନରେ ବେଶ ପ୍ରଭାବ ପକାଇଥିଲା । ବିଶ୍ୱଯୁଦ୍ଧ ଜନିତ ପ୍ରତିକ୍ରିୟା ସେ ସମୟର ବହୁ ବ୍ୟକ୍ତିଙ୍କ ଚେତନାରେ ପରିବର୍ତ୍ତନ ଆଣିଥିଲା । ବିଂଶ ଶତାବ୍ଦୀର ପ୍ରଥମ ପାଦରେ ନିମ୍ନ ମଧ୍ୟବିତ୍ତର ଅଭ୍ୟୁଦୟ ପୁନର୍ଜାଗରଣବାଦୀ ଧାରାକୁ ଶକ୍ତିଶାଳୀ କରିବାକୁ ଆରମ୍ଭ କଲା । ଏହି ଧାରାରୁ ସ୍ୱାମୀ ଦୟାନନ୍ଦ ସରସ୍ୱତୀ, ସ୍ୱାମୀ ବିବେକାନନ୍ଦ, ଯୋଗୀ ଅରବିନ୍ଦ, ବାଳ ଗଂଗାଧର ତିଳକ ପ୍ରମୁଖଙ୍କର ଆବିର୍ଭାବ ହେଲା । ପ୍ରଥମ ବିଶ୍ୱଯୁଦ୍ଧ ପର୍ଯ୍ୟନ୍ତ ଏହି ଗୋଷ୍ଠୀ ବିଭିନ୍ନ ରୂପରେ ଆତ୍ମ ପ୍ରକାଶ କଲେ ବି, ସାମଗ୍ରିକ ଭାବରେ ଜାତୀୟ ଚିନ୍ତା ଚେତନାକୁ ଆଚ୍ଛନ୍ନ କରିପାରି ନଥିଲେ । ପ୍ରଥମ ବିଶ୍ୱଯୁଦ୍ଧ ପରର ଆର୍ଥନୀତିକ ଓ ସାମାଜିକ ପ୍ରେକ୍ଷାପଟ୍ଟ ବିଭିନ୍ନ ଚିନ୍ତାନାୟକଙ୍କ ଦୃଷ୍ଟିକୋଣରେ ଏକ ସମନ୍ୱୟ ସ୍ଥାପନ କଲା । ଗାନ୍ଧୀ ଅରବିନ୍ଦ ଓ ରବୀନ୍ଦ୍ରନାଥ ଏହି ଚିନ୍ତା ସମନ୍ୱୟର ତିନି ପ୍ରମୂର୍ତ୍ତ ପ୍ରତିନିଧି । ବିଶେଷ କରି ଗାନ୍ଧୀ ଏବଂ ରବୀନ୍ଦ୍ରନାଥ ମାନସିଂହଙ୍କ ଚିନ୍ତା ଏବଂ ଚେତନାକୁ ବହୁଭାବରେ ପ୍ରଭାବିତ କରିଥିଲେ ।

ବିଭିନ୍ନ ଯୁଗରେ ମଣିଷର ଚେତନାରେ ନିଜକୁ ପ୍ରକାଶ କରିବା ବା ପ୍ରତିଷ୍ଠା କରିବାର ଭାବ ବିଦ୍ୟମାନ ଥାଏ । ଅବଶ୍ୟ ସମୟ ଭେଦରେ ଓ ପରିବେଶ ଭେଦରେ ଏହା ଭିନ୍ନ ଭିନ୍ନ ହୋଇଥାଏ । ମାନସିଂହଙ୍କ ଛାତ୍ରାବସ୍ଥାରେ ଓଡ଼ିଶାର ଜନମାନସରେ ନିଜକୁ ପ୍ରକାଶ କରାଇବାର ମାର୍ଗ ଥିଲା, ଶିକ୍ଷକ ହେବା ବା କବି ହେବା । ଗାଁ ଗହଳିରୁ ଯେଉଁମାନେ ସହରକୁ ଆସୁଥିଲେ, ସେମାନଙ୍କ ମୂଳ ଲକ୍ଷ୍ୟ ଲେଖା ଲେଖି କରିବା, ଦ୍ୱିତୀୟ ପ୍ରବୃତ୍ତି ସମାଜ ସେବା କରିବା । ଏହି ସମୟରେ ସମଗ୍ର ଭାରତ ବର୍ଷକୁ ଗୋଟିଏ ଆଦର୍ଶବାଦ ଗ୍ରାସ କରିଥିଲା । ଏହି ଆଦର୍ଶବାଦକୁ ପ୍ରକଟିତ କରାଇବା ପାଇଁ ଶିକ୍ଷକ ଚାକିରୀ ହୁଏତ ଏକ ସହଜ ପନ୍ଥା ଥିଲା । ଶିକ୍ଷକ ଭାବରେ ଆଦର୍ଶକୁ ରୂପାୟନ କରିବା ସେ ସମୟର ଥିଲା ମୌଳ ପ୍ରବୃତ୍ତି । ଅନ୍ୟ କଥାରେ କହିବାକୁ ଗଲେ ସ୍ୱାଧୀନ ଚିନ୍ତା ପ୍ରକାଶ କରିବା ପାଇଁ, କିଛି ନୂତନ ମାର୍ଗ ପ୍ରଦର୍ଶନ ପାଇଁ ଶିକ୍ଷକତା ଶ୍ରେଷ୍ଠବାଟ ଥିଲା । ସେ ସମୟର ମୌଳ ସ୍ୱରକୁ ଅନ୍ତର ମଧ୍ୟରେ ଗ୍ରହଣ କରି, ମାନସିଂହ ମଧ୍ୟ ଚିନ୍ତା କରିଥିଲେ, ଜୀବନରେ ଜଣେ ଶିକ୍ଷକ ହେବା ପାଇଁ ।(୨) କବି ଭାବରେ ପରିଚୟ ଦେଇ ପାରିଲେ ସାମାଜିକ ସମ୍ମାନ

ବୃଷ୍ଟି ପାଉଥିଲା, ଏଣୁ ସେ ସମୟରେ ସଫଳତା ମିଳୁ ବା ନ ମିଳୁ, ସୃଜନୀ ଶକ୍ତି ଥାଉ ବା ନଥାଉ, ଅନେକ ବହୁତ ସମସ୍ତେ କିଛି ରଚନା କରିବା ପାଇଁ ଚେଷ୍ଟା କରିଛନ୍ତି । ଅବଶ୍ୟ କାଳର କଷଟିରେ ସବୁ ଯୁଗର କବି ମାନେ ବାଛି ହେଲା ପରି, ସେ ସମୟର କବିମାନେ ମଧ୍ୟ ଲୁଚି ହୋଇ ଯାଉଛନ୍ତି, ମାତ୍ର ସେ ସମୟର ସ୍ୱର୍ଣ୍ଣ ମାନସିଂହଙ୍କ କବି ପ୍ରତିଭାକୁ ଜାଗ୍ରତ କରିଛି ।

ମାନସିଂହଙ୍କ ବିଗ୍ରହ ପୃଷ୍ଠପୀଠିକାର ତିନୋଟି ପ୍ରମୁଖ ଉତ୍ସ :—

ମାନସିଂହଙ୍କ ବିଗ୍ରହ ପୃଷ୍ଠପୀଠିକାର ତିନୋଟି ପ୍ରମୁଖ ଉତ୍ସ ହେଲେ, ଉତ୍କଳମଣି ଗୋପବନ୍ଧୁ, ବିଶ୍ୱକବି ରବୀନ୍ଦ୍ରନାଥ ଓ ଜାତିର ଜନକ ମହାତ୍ମାଗାନ୍ଧୀ । ପ୍ରଥମାବସ୍ଥାରେ ଏହି ତିନିଜଣ ଯୁଗପୁରୁଷ, ବିଭିନ୍ନ କ୍ଷେତ୍ରରେ ଓ ବିଭିନ୍ନ ମାର୍ଗରେ ମାନସିଂହଙ୍କ ବ୍ୟକ୍ତିତ୍ୱକୁ ପ୍ରଭାବିତ କରିଛନ୍ତି । ନିମ୍ନରେ ବ୍ୟାପକ ଭାବରେ ସେ ସମ୍ପର୍କରେ ଆଲୋଚିତ ହେଉଛି ।

* ଗୋପବନ୍ଧୁ ଓ ସତ୍ୟବାଦୀ ସ୍କୁଲ:———

ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଅସାଧାରଣ ବ୍ୟକ୍ତିତ୍ୱ ଓ କର୍ମଧାରା, ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ, ପଣ୍ଡିତ କୃପାସିନ୍ଧୁଙ୍କ ପରି ଜଣେ ଜଣେ ସିଂହ ସଦୃଶ ବ୍ୟକ୍ତିଙ୍କୁ ଏକତ୍ରିତ କରିପାରିଥିଲା । ସତ୍ୟବାଦୀ ବନ ବିଦ୍ୟାଳୟ ସ୍ଥାପନ ପୂର୍ବରୁ, ସେବା ଓ ସଂଗଠନ ଦ୍ୱାରା ଗୋପବନ୍ଧୁ, ଉତ୍କଳର ସାଧାରଣ ଜନତାଙ୍କ ଠାରୁ ଆରମ୍ଭକରି ନେତୃବୃନ୍ଦଙ୍କ ପର୍ଯ୍ୟନ୍ତ, ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରି ପାରିଥିଲେ । ବନ୍ୟା, ବାତ୍ୟା, ଅନାବୃଷ୍ଟିର ଦେଶ, ଓଡିଶାରେ ପ୍ରକୃତି ଅନେକ ସମୟରେ ଲୋକଙ୍କ ପ୍ରତି କରାଳ ଦୃଷ୍ଟି ପ୍ରଦର୍ଶନ କରେ । ତା ସଂଗେ ସଂଗେ ଇଂରେଜ ସରକାରଙ୍କ ଅମଳରେ ଶାସନ ପରିଚାଳନା କରୁଥିବା ପ୍ରତିବେଶୀ ସ୍ୱଦେଶୀ ଶାସକ ମାନଙ୍କର କ୍ରୁରଦୃଷ୍ଟି, ଓଡିଶାରେ ଅନେକ ନ'ଅଙ୍କ ସୃଷ୍ଟିକରି ଚାଲିଥିଲା । ଦୁର୍ଗତ ଜନତାକୁ ଆହାପଦ କହିବାକୁ ଖୁବ୍ କମ୍ ଲୋକ ବାହାରୁଥିଲେ । ସେହି ଅକାଳ ସମୟରେ, ଗୋପବନ୍ଧୁଙ୍କ ଆବିର୍ଭାବ ଓ ଅକୁଣ୍ଠ ସେବା, ଗୋପବନ୍ଧୁଙ୍କୁ ସାଧାରଣ ମଣିଷରୁ ଦେବତାର ଆସନକୁ ଉନ୍ନୀତ କରି ନେଇଥିଲା । ସେବା ସଂଗଠନ ସଂଗେ ସଂଗେ ସତ୍ୟବାଦୀ ବନବିଦ୍ୟାଳୟ ସ୍ଥାପନ ଓ ଜୀବନ ତିଆରି ବିଦ୍ୟାଳୟ ହିଁ, ଲୋକଙ୍କ ଦୃଷ୍ଟିର କେନ୍ଦ୍ରବିନ୍ଦୁ ହୋଇ ଯାଇଥିଲା । ଅବଶ୍ୟ ସେତେବେଳେ ଦେଶପ୍ରାଣ ମଧୁସୂଦନଙ୍କ ପ୍ରଭାବ କମ୍ ନଥିଲା, ମାତ୍ର ପାଠ ପଢି କାଳିଆ ଘୋଡାରେ ଚଢି ମଧୁବାରିଷ୍ଟର ସଂଗେ ଲଢ଼ିବା, ସମସ୍ତଙ୍କ ପାଇଁ ସହଜ ସାଧ୍ୟ ନ ଥିଲା । ମିଷ୍ଟର ଦାସଙ୍କ ଉଜ୍ଜ୍ୱଳ ବ୍ୟକ୍ତିତ୍ୱର ସୀମା ସ୍ପର୍ଶ କରିବା ମଧ୍ୟ ସାଧାରଣ ଲୋକଙ୍କର ପାଇଁ ସୁବିଧାପ୍ରଦ ନଥିଲା । ଅନ୍ୟ ପକ୍ଷରେ ଗୋପବନ୍ଧୁଙ୍କ ପରି ସେବା ମାଧ୍ୟମରେ, ଉଚ୍ଚ ଆସନ ଲାଭ କରିବା ବରଂ ସାଧାରଣ ଲୋକଙ୍କ ଆଖିରେ ଆଶୁ ସମାଧାନର ବାଟ ଭାବରେ ଦେଖା ଯାଉଥିଲା । 'ମିଶୁ ମୋର ଦେହ ଏ ଦେଶ ମାଟିରେ, ଦେଶବାସୀ ଚାଲି ଯାଆନ୍ତୁ ପିଠିରେ' ସୂକ୍ତ ଅଧିକ ଆକର୍ଷଣ ପ୍ରଦ ଥିଲା । ବିଶେଷତଃ ଛାତ୍ର ମାନଙ୍କ ସମ୍ମୁଖରେ ଗୋପବନ୍ଧୁ ସେତେବେଳେ ଏକ ଆଦର୍ଶ ବ୍ୟକ୍ତି

॥ ମାନସିଂହଙ୍କ ବିପ୍ଳବଧାରା ॥

ଭାବରେ ବନ୍ଧାୟମାନ ହୋଇ ପାରିଥିଲେ । ଛାତ୍ର ମାନସିଂହଙ୍କ ଆଗରେ ପ୍ରଥମ ଆଦର୍ଶ ଭାବରେ ଦେଖା ଦେଇଥିଲେ, ପଣ୍ଡିତ ଗୋପବନ୍ଧୁ ଦାସ ଓ ସତ୍ୟବାଦୀର ବରେଣ୍ୟ ଶିକ୍ଷକ ବୃନ୍ଦ । ଏମାନେ ସମସ୍ତେ ଥିଲେ ପ୍ରାଣରେ ସେବକ ଓ କର୍ମକ୍ଷେତ୍ରରେ ଶିକ୍ଷକ । କର୍ମକ୍ଷେତ୍ରରେ ଏମାନଙ୍କର ପ୍ରଥମ ସ୍ୱପ୍ନ ଥିଲା ଓଡିଶା ଓ ଦ୍ୱିତୀୟ ସ୍ୱପ୍ନ ଭାରତବର୍ଷ । ସମସ୍ତଙ୍କ ନିକଟରେ ଥିଲା ଲେଖକ ବା କବି ହେବାର ଏକ ପ୍ରଚ୍ଛନ୍ନ ସ୍ୱପ୍ନ । ସେହି ସ୍ୱପ୍ନକୁ ସେମାନେ ସାକାର ମଧ୍ୟ କରିପାରିଥିଲେ । ମାନସିଂହଙ୍କ ପ୍ରାକ୍ କଲେଜ–ଛାତ୍ର ଜୀବନ(୧୨୧୧–୧୨୨୬)ରେ ଏହି ବ୍ୟକ୍ତିଗଣ ହିଁ ତାଙ୍କ ବିପ୍ଳବଧାରା ନିୟନ୍ତ୍ରିତ କରୁଥିଲେ । ସତ୍ୟବାଦୀ ବନ ବିଦ୍ୟାଳୟରେ ଛାତ୍ର ହେବାର ଦୁରନ୍ତ ଆଶା ମାନସିଂହଙ୍କର ସଫଳ ହୋଇପାରି ନଥିଲା, ମାତ୍ର ସେ ଆଦର୍ଶ ତାଙ୍କ ପ୍ରାଣରେ ଅହରହ ଅନୁଭୂତ ହେଉଥିଲା । ଯାହାର ସୂଚନା ଆମେ ତାଙ୍କର ବିଭିନ୍ନ କାଳଜୟୀ କାବ୍ୟ କବିତା, ପ୍ରବନ୍ଧ ଓ ଆଲୋଚନାରେ ଦେଖି ପାରିବା ।

ଖୋର୍ଦ୍ଧା ହାଇସ୍କୁଲର ଛାତ୍ର ଜୀବନ କାଳରେ, ଆଦର୍ଶ ଶିକ୍ଷକ ବାଙ୍କନିଧି ପଟ୍ଟନାୟକଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ, ମାନସିଂହଙ୍କ ଉପରେ ଗଭୀର ପ୍ରଭାବ ପକାଇଥିବାର ଜଣାଯାଏ । ବିପ୍ଳବଧାରାରେ ଗୋପବନ୍ଧୁ ମାନସିଂହଙ୍କ ଆଦ୍ୟ ଜୀବନକୁ ପ୍ରଭାବିତ କଲେ ମଧ୍ୟ, ପାରିବାରିକ ପରିସ୍ଥିତି ତଥା ଶିକ୍ଷକ ବାଙ୍କନିଧି ପଟ୍ଟନାୟକଙ୍କର ଅନୁଶାସନ, ମାନସିଂହଙ୍କୁ ପ୍ରତ୍ୟକ୍ଷ ସେବା ଓ ରାଜନୀତିରେ ଯୋଗଦେବା ପାଇଁ ଆଗୁଆ କରାଇଦେଇନାହିଁ । ଏଠାରେ ପୁନର୍ବାର ଉଲ୍ଲେଖ କରାଯାଇ ପାରେ ଯେ, ଉତ୍କଳ ସମ୍ମିଳନୀର ପୁରୀ ଅଧିବେଶନରେ ପାରିକୁଦର ପ୍ରତିନିଧି ଭାବରେ ଯୋଗ ଦେଇଥିଲେ ହେଁ, ମାନସିଂହଙ୍କ ସାଆନ୍ତ ବାପା ମାନସିଂହଙ୍କ ପ୍ରତି ଭିନ୍ନ ଆଶା ପୋଷଣ କରିଥିଲେ । ପାଠ ପଢା ପରେ ଡେପୁଟି ଚାକିରୀ କରି ପରିବାରର ଆର୍ଥନୀତିକ ସ୍ଥିତିର ପରିବର୍ତ୍ତନ ପାଇଁ ସେ ଆଶାୟୀ ଥିଲେ । ଆଦର୍ଶବାଦର ମୋହ ଓ ଚାକିରୀ କରି ସ୍ୱଚ୍ଛନ୍ଦ ଜୀବନ ଯାପନ ର ମାନସିକ ଦ୍ୱନ୍ଦ୍ୱ ମଧ୍ୟରେ ମାନସିଂହ ମଧ୍ୟ ସଠିକ ଭାବରେ କିଛି ସିଦ୍ଧାନ୍ତ ନେଇ ପାରି ନଥିଲେ । ଗୋପବନ୍ଧୁଙ୍କ ପ୍ରତି ପ୍ରଗାଢ ଅନୁରକ୍ତି ଯୋଗୁ, ଗୋପବନ୍ଧୁଙ୍କ ମହାପ୍ରୟାଣରେ ଲିଖିତ ତଥା ପ୍ରକାଶିତ କବିତା ହିଁ ସେ ଆଶାରେ ପୂର୍ଣ୍ଣଚ୍ଛେଦ ପକାଇଦେଲା । କବି ମାନସିଂହ ସରକାରୀ ଶାସନ ସେବା କ୍ଷେତ୍ରରେ ପ୍ରବେଶ କରି ପାରିଲେ ନାହିଁ ।(୧୦)

ଗୋପବନ୍ଧୁ ତଥା ସତ୍ୟବାଦୀର ବରେଣ୍ୟ ଶିକ୍ଷକବୃନ୍ଦଙ୍କ ବ୍ୟକ୍ତିତ୍ୱ ମାନସିଂହଙ୍କୁ ପ୍ରଭାବିତ କରିଥିଲା; ସେମାନଙ୍କ ସାହିତ୍ୟ ଏକ ପରିବର୍ତ୍ତିତ ରୂପରେ ମାନସିଂହଙ୍କ ଠାରେ ପ୍ରତିଫଳିତ ହେଲା । ଗୋପବନ୍ଧୁଙ୍କ ଉଜ୍ଜ୍ୱଳ ବ୍ୟକ୍ତିତ୍ୱ, ମାନସିଂହଙ୍କର ତରୁଣ ଜୀବନର ଉଦ୍ଦାମତାରେ କେବଳ ନୁହେଁ, ସେ ଶ୍ରଦ୍ଧା ପରବର୍ତ୍ତୀ ଜୀବନରେ ମଧ୍ୟ କୌଣସି ମାତ୍ରରେ କମ୍ ହୋଇ ନଥିଲା । ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱ ସମ୍ପର୍କରେ ମାନସିଂହ ଲେଖିଛନ୍ତି :—" ସେଦିନ କେବଳ ଇଚ୍ଛା କରିଥିଲେ, ଯେଉଁମାନେ ସୁଖ ସୁବିଧା ବହୁଳ, ସେ କାଳର ସରକାରୀ ଚାକିରୀ ପାଇ ମୋଟା ପେନ୍‌ସନ୍‌ରେ ସ୍ୱଚ୍ଛଳ ବାର୍ଦ୍ଧକ୍ୟ ଯାପନ କରିପାରି ଥା'ନ୍ତେ, ସେହି ଉଚ୍ଚଶିକ୍ଷିତ ବିଦ୍ୱାନ ଦଳ, ଗୋପବନ୍ଧୁର ଆହ୍ୱାନରେ ମଧ୍ୟ ଦେଶ ସେବାର ଦାରିଦ୍ର୍ୟ–

॥ ମାନସିଂହଙ୍କ ବିଗ୍ରହଧାରା ॥

ଜଂଜାଳମୟ କଠୋର ଜୀବନକୁ ବରଣ କରିବା ପାଇଁ ଧାଇଁ ଆସିଥିଲେ । ଏ ମାନଂକର ବିଦ୍ୟା ବା ପ୍ରତିଭା ଗୋପବଂଧୁଙ୍କର ଥିବା ବା ନ ଥିବା; କିନ୍ତୁ ଗୋପବଂଧୁଙ୍କ ପ୍ରତି ଏମାନେ ଓ ଓଡ଼ିଶାର କୋଟିଜନ ଆକୃଷ୍ଟ ହେତୁ, ଆଦୌ ଅର୍ଥ ବା କ୍ଷମତା ବା ପ୍ରତିଭା ନୁହେଁ, ତାହାଥିଲା ତାଂକର ବ୍ୟକ୍ତିତ୍ୱ ।"(୧୧) ଗୋପବଂଧୁଙ୍କ ବ୍ୟକ୍ତିତ୍ୱ ଓ ଆଦର୍ଶରେ ଅନୁପ୍ରାଣିତ ହୋଇ ମାନସିଂହଙ୍କର ସାହିତ୍ୟ ବିଭିନ୍ନ ପର୍ଯ୍ୟାୟରେ ଗତିକରି ଚାଲିଛି । ଗୋପବଂଧୁଙ୍କ ବିୟୋଗରେ ମାନସିଂହଙ୍କ ପ୍ରାଣରୁ ଯେଉଁ ମର୍ମସ୍ପର୍ଶୀ କବିତାର ଧାରା ଛୁଟି ଆସିଥିଲା, ଗୋପବଂଧୁଙ୍କ ପ୍ରତି ମାନସିଂହଙ୍କର ଶ୍ରଦ୍ଧାର ସେ ସର୍ବଶ୍ରେଷ୍ଠ ନିଦର୍ଶନ । ସେ 'ଗୋପତର୍ପଣ' କବିତାରେ ଗୋପବଂଧୁଙ୍କୁ, ସତ୍ୟର ପୁରୋହିତ, ଋଷି, ସନ୍ନ୍ୟାସୀ, ପରହିତର ଅବତାର, ଅଖିଳ ପତିତ ଜନର ବଂଧୁ, ମହା ଭିଖାରୀ, ଲକ୍ଷ୍ମୀଛଡାର ବଂଧୁ, ବାବାଜୀ ପ୍ରଭୃତି ନାମରେ ନାମକରଣ କରିଛନ୍ତି । ତାଂକ ମହା ପ୍ରୟାଣକୁ ସନ୍ନ୍ୟାସୀର ତୀର୍ଥାଟନ ସମାପ୍ତି ହୋଇ ଭିକ୍ଷାର ବିତରଣ ଶେଷ ହୋଇଛି ବୋଲି ଉଲ୍ଲେଖ କରିଛନ୍ତି । ପୁନଶ୍ଚ 'ଗୋପ ପ୍ରୟାଣ' କବିତାରେ ସେ ଗୋପବଂଧୁଙ୍କୁ ସର୍ବଶ୍ରେଷ୍ଠ ଆସନରେ ଉପବିଷ୍ଟ କରାଇ, ଲେଖିଛନ୍ତି— —ମହାବୀରଙ୍କ ମହାପ୍ରୟାଣରେ ଆଜି ଗୋଟିଏ ମହାଜାତିର ଗର୍ବ ଭାଜିଗଲା । ଘରେ ଘରେ ଆଜି କ୍ରନ୍ଦନ ରୋଳ ଉଠିବାର କାରଣ, ବିରାଟ ଓଡ଼ିଆ ଜାତିର ମଥାମଣି ଭୂଲୁଣ୍ଠିତ ହୋଇଗଲା । ମର୍ମସ୍ପର୍ଶୀ ଶବ୍ଦ ସଂଯୋଜନାରେ ସେ ଗୋପବଂଧୁଙ୍କୁ, ଜାତିର ରାଜା, କୋଟିଏ ଦରିଦ୍ରମେଳର ଦରିଦ୍ର ନାରାୟଣ, ନିଖିଳ ଓଡ଼ିଆ ଜାତିର ସେନାପତି, ଦେବତା, ଶ୍ରେଷ୍ଠ ପୂଜାହାରୀ, ଭକ୍ତର ରାଜା, ପତିତ ବଂଧୁ ଓ ପୁରୁଷୋତ୍ତମ ଭାବରେ ସମ୍ମାନ କରି କହିଛନ୍ତି:—

"ଯଦିରେ ଓଡ଼ିଆ ପ୍ରିୟଜନ ପାଇଁ ବିଳାପ କରିବା ଜାଣ,

ଅତି ପ୍ରିୟଜନ ବିରହରେ ଆଜି ଫାଟୁ ତୋ ରୁଦ୍ଧ ପ୍ରାଣ ।" ପୁନଶ୍ଚ, ଗୋପବଂଧୁଙ୍କୁ ସମ୍ମୁଖରେ ରଖି ଓ ଆଦର୍ଶ ଭାବରେ ବିଗ୍ରହ କରି 'କମଳାୟନ' କାବ୍ୟ ରଚନା କରିଛନ୍ତି ।

ଗୋପବଂଧୁଙ୍କ ସଂପର୍କରେ 'ପ୍ରଣମ୍ୟ ଗୋପବଂଧୁ' ପ୍ରବଂଧରେ ଲେଖିଛନ୍ତି:—"ବିତ୍ତ–କ୍ଷମତାହୀନ ଗୋପବଂଧୁ, କୋଟି ହୃଦୟର ସମ୍ରାଟ, କାରଣ ଗୋପବଂଧୁଙ୍କ ମୂଲ୍ୟ ହେଉଛି ଖାଣ୍ଟି ଆତ୍ମିକ । ସେଥିରେ ବାହ୍ୟ ପଦ–ପଦାର୍ଥର ସଂପର୍କ ନାହିଁ । ଦରକାର ବି ନାହିଁ । କାରଣ ସ୍ୱୟଂ ଗୋପବଂଧୁ ହିଁ ମହାନ୍ । ସେ ନିଜେ ହିଁ ନିଜର ଅମର ଗାଥା ଓ ଅନଶ୍ୱ କୀର୍ତ୍ତୀ, ସେ ମହାନ୍ କାରଣ ସେ ବ୍ୟକ୍ତି ବିଶେଷ ନ ଥିଲେ । ସେଇଁ ଥିଲେ ସମଗ୍ର ଓଡ଼ିଆ ଜାତି । ସେ ଓ ତାର ଜାତି ଏକୀଭୂତାତ୍ମା । ଜାତି ତେଣୁ କିପରି ତାକୁ ଭୁଲିବ ?"(୧୨) ପୁନଶ୍ଚ ଗୋପବଂଧୁଙ୍କ କବିତ୍ୱ ସଂପର୍କରେ ମାନସିଂହଙ୍କ ବକ୍ତବ୍ୟ ଉଲ୍ଲେଖଯୋଗ୍ୟ :—"ଗୋପବଂଧୁ ଥିଲେ ସେହି ଶ୍ରେଣୀର ଦୁର୍ଲଭ ପରିପୂର୍ଣ୍ଣ କବି, ଯାହାଙ୍କର ଦୈନଂଦିନ ପ୍ରତିଟି କର୍ମ ହିଁ କବିତା; ଯାହାଂକର ଜୀବନଟି ହିଁ ମହାକାବ୍ୟ । ଆମେ ଗୋପବଂଧୁଙ୍କୁ ପୂଜା କଲାବେଳେ ଧରି ନେବାକୁ ହେବଯେ, ଆମେ ପ୍ରକୃତରେ ଏକ ଅସାଧାରଣ କବିକୁ ହିଁ ପୂଜା କରୁଛୁ, ଯିଏ ଏକ ବିରାଟ ଜାତିର ପ୍ରତିଟି ହୃଦୟରେ ମଧୁର ଗୀତିକବିତା ଲେଖିଦେଇ ଯାଇଛି ।"(୧୩) ମାନସିଂହଙ୍କ ମତରେ ମନୁଷ୍ୟ ସମାଜରେ ତିନି ପ୍ରକାର ଲୋକ ଆଦର ସମ୍ମାନ ପାଉଥାନ୍ତି । ସେମାନେ ହେଲେ ସୈନିକ, ଶିକ୍ଷକ ଓ ନଂଦକ ।

ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱ ଭିତରେ ସେହି ତିନି ଶ୍ରେଣୀର ମଧୁର ସମନ୍ୱୟ ଘଟିଥିଲା ବୋଲି ସେ ଦର୍ଶାଉଛନ୍ତି । ମାନସିଂହ ଗୋପବନ୍ଧୁଙ୍କ ଭିତରେ ମାନବିକତା ତଥା ଉନ୍ନତର ଜୀବନର ସନ୍ଧାନ ପାଇ ନିଜେ ସେହି ଭାବଧାରାରେ ନିମଜ୍ଜିତ ହେବାପାଇଁ ଆଶା ପୋଷଣ କରିଛନ୍ତି ।

**ବିଶ୍ୱକବି ରବୀନ୍ଦ୍ରନାଥ:**

କବି ରବୀନ୍ଦ୍ରନାଥ ନୋବେଲ ପୁରସ୍କାର(1913)ପାଇଲା ପରେ ସମଗ୍ର ଭାରତ ବର୍ଷ ବଙ୍ଗଳା ସାହିତ୍ୟ ବିଶେଷତଃ ରବୀନ୍ଦ୍ର ସାହିତ୍ୟ ପ୍ରତି ଦୃଷ୍ଟିପାତ କଲା । ପ୍ରାଚୀନ ଓଡିଆ ସାହିତ୍ୟ ବା ମଧ୍ୟ ଯୁଗୀୟ ଓଡିଆ ସାହିତ୍ୟିକମାନେ ବଙ୍ଗଳା ଆଡକୁ ଢଳି ନଥିଲେ,କାରଣ ସେତେବେଳର ଓଡିଆ ସାହିତ୍ୟ କୌଣସି ଗୁଣରେ ବଙ୍ଗଳା ସାହିତ୍ୟରୁ ଗ୍ରହଣ କରିବାକୁ ଅନୁଭବ କରି ନଥିଲା,ବରଂ ବଙ୍ଗଳାର ପ୍ରାଚୀନ ତଥା ମଧ୍ୟଯୁଗୀୟ କବିମାନେ ଓଡିଆ ସାହିତ୍ୟକୁ ଅନୁକରଣ କରୁଥିଲେ । ଊନବିଂଶ ଶତାବ୍ଦୀରେ ପାଶ୍ଚାତ୍ୟ ସାହିତ୍ୟର ସଂସ୍ପର୍ଶରେ ଆସି ବଙ୍ଗଳା ସାହିତ୍ୟ ପ୍ରଭୂତ ଉନ୍ନତି କଲା । ଆଧୁନିକ ସାହିତ୍ୟରେ ନାନା ଚମକ ଦେଖା ଦେବାରୁ ଓଡିଶାର ସାହିତ୍ୟିକମାନେ ବଙ୍ଗଳା ସାହିତ୍ୟ ପ୍ରତି ଆସକ୍ତ ହେଲେ । ପୁଣି ରବୀନ୍ଦ୍ରନାଥ ନୋବେଲ ପୁରସ୍କାର ଲାଭକଲା ପରେ,ରବୀନ୍ଦ୍ର ଭାରତୀୟ ସାହିତ୍ୟିକ ମାନଙ୍କର ଆଦର୍ଶ ହୋଇ ଉଠିଲେ । ବିଶେଷତଃ ଓଡିଶାର ସବୁଜ କବିମାନେ ମାତ୍ରାତିରିକ୍ତ ଭାବରେ ରବୀନ୍ଦ୍ରସାହିତ୍ୟ ପ୍ରତି ଅନୁରକ୍ତ ହେଲେ । ସବୁଜ କବି, ସବୁଜ ସମସାମୟିକ କବି ତଥା ସବୁଜ ପରବର୍ତ୍ତୀ ଅନେକ କବି,ନିଜସ୍ୱ ହରାଇ ରବୀନ୍ଦ୍ର ସ୍ରୋତରେ ଭାସିଗଲେ । ସେ ସମୟର ଅନ୍ୟ କବିଙ୍କ ପରି ମାନସିଂହ ରବୀନ୍ଦ୍ର କବିତା ପ୍ରତି ଆସକ୍ତ ଥିଲେ ମଧ୍ୟ,ନିଜସ୍ୱଧାରା ଓ ସୃଷ୍ଟି ଚେତନା ସମ୍ପର୍କରେ ସଚେତନ ଥିଲେ ।ମାନସିଂହଙ୍କ ସୃଷ୍ଟି ଅନେକତ୍ର ସବୁଜର ପ୍ରତିକ୍ରିୟାରୁ ଜାତ । ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କ ମତରେ:—"ସବୁଜ ଓ ମାନସିଂହ ଉଭୟେ ରୋମାଣ୍ଟିକ କଳ୍ପନା ବିଳାସୀ ହେଲେ ମଧ୍ୟ,ମାନସିଂହ ସବୁଜଙ୍କ ପରି 'ପରିମହଲର'ପରିକଳ୍ପନା କରି ଜାତୀୟ ଜୀବନର ସମସ୍ୟାକୁ ଉପେକ୍ଷା କରିନାହାନ୍ତି । ସେ ସବୁବେଳେ ଓଡିଆ ଓ ଓଡିଆଣୀଙ୍କ ମୁହଁକୁ ଆଖି ପକେଇଛନ୍ତି"(14)

କବି ମାନସିଂହ ରବୀନ୍ଦ୍ର ସାହିତ୍ୟର ଜଣେ ମୁଗ୍ଧ ପାଠକ । ସତ୍ୟବାଦୀ ଭାବଧାରାରେ ଉଦ୍‌ବୁଦ୍ଧ ମାନସିଂହଙ୍କ ପ୍ରାଣ ରବୀନ୍ଦ୍ର ରଚନାର କେତୋଟି ବିଭାବ ପ୍ରତି ସଚେତନ ଭାବରେ ଆକୃଷ୍ଟ ହୋଇ ପଡିଥିଲେ । ମାନସିଂହଙ୍କ ଦୃଷ୍ଟିରେ ରବୀନ୍ଦ୍ର ରଚନା ଶ୍ରେଷ୍ଠ ଭାବର ଦ୍ୟୋତକ କାରଣ ଏଥିରେ କବିତାର ତିନୋଟି ମହନୀୟ ଗୁଣ ରହିଛି—"ରବୀନ୍ଦ୍ରନାଥଙ୍କ ପ୍ରତ୍ୟେକ କବିତା ସୃଜନ କୌଶଳ ଦିଗରୁ ଏକ ଏକ ମିରାକ୍ଲ ଛଡା ଅନ୍ୟ କିଛି ନୁହେଁ । ତାଙ୍କର ପ୍ରତ୍ୟେକଟି କବିତା ଆମକୁ ପାଠ ବା ଶ୍ରବଣ ମାତ୍ରେ ଏକ ସୂକ୍ଷ୍ମ ଅନୁଭୂତିମୟ ପରମ ମନୋରମ କଳ୍ପଲୋକକୁ ନେଇଯାଏ । ପୁଣି ତାଙ୍କର ପ୍ରତ୍ୟେକ କବିତା ପାଠକକୁ ଯେ ଉର୍ଦ୍ଧ୍ୱଗ କରାଏ,ଏହା ଜଣାକଥା"(15

॥ ମାନସିଂହଙ୍କ ବିଗ୍ରୁହଧାରା ॥

ରବୀନ୍ଦ୍ର ରଚନାର ତିନୋଟି ମୌଳିକ ଧାରା ପ୍ରତି ଅନୁରକ୍ତ ହୋଇ ମାନସିଂହ ଓଡିଶା ମାଟିରେ ତାର ସନ୍ଧାନ କରିଛନ୍ତି ଯଥା— ମଧ୍ୟ ଯୁଗୀୟ ସାହିତ୍ୟ ପ୍ରତି ମମତା, ମର୍ତ୍ତ୍ୟପ୍ରୀତି ଓ ଉଦାର ମାନବ ପ୍ରୀତି । କବି ରବୀନ୍ଦ୍ରନାଥ ଉପନିଷଦ, ମଧ୍ୟଯୁଗୀୟ ବୈଷ୍ଣବ କବିତା ଦ୍ୱାରା ଅନୁପ୍ରେରିତ ହୋଇଥିଲେ । ରବୀନ୍ଦ୍ରନାଥଙ୍କ ଘରେ ପ୍ରତ୍ୟହ ଉପନିଷଦର ଚର୍ଚ୍ଚା ଓ ପାରାୟଣ ଗ୍ଭଲିଥିଲା । ତାଙ୍କ ଘରେ ଏବଂ ବାହାରେ ଚଣ୍ଡିଦାସ, ଜ୍ଞାନଦାସ, ବିଦ୍ୟାପତି, ଜୟଦେବ ଓ ବାଉଲ କବି ମାନଙ୍କର ଉକ୍ତି ଓ ରହସ୍ୟ ମୂଳକ ଗାନର ଚର୍ଚ୍ଚା ହେଉଥିଲା । ତେଣୁ ଉପନିଷଦ ଓ ବୈଷ୍ଣବ କବିତାର ଭାବଧାରାର ଏକ ରୂପଗତ ବିବର୍ତ୍ତନ ହେଉଛି 'ଗୀତାଞ୍ଜଳି' । ସେହିପରି ସମସାମୟିକ ୟୁରୋପର ସାହିତ୍ୟରେ ପ୍ରତିଫଳିତ ମାନବିକତା ଓ ସୌନ୍ଦର୍ଯ୍ୟବାଦ ରବୀନ୍ଦ୍ରନାଥଙ୍କୁ ପ୍ରଭାବିତ କରିଥିଲା । କବି ରବୀନ୍ଦ୍ରନାଥ ମଧ୍ୟଯୁଗୀୟ ବୈଷ୍ଣବ କବିତା ପ୍ରତି ଆକୃଷ୍ଟ ହେଲା ପରି, କବି ମାନସିଂହ ପ୍ରାଚୀନ ଓଡିଆ ସାହିତ୍ୟ ବିଶେଷତଃ କବି ଗୋପାଳକୃଷ୍ଣଙ୍କ ରଚନାରେ ସେ ଭାବର ସନ୍ଧାନ ପାଇଛନ୍ତି । ଏତଦ୍ ବ୍ୟତୀତ ରବୀନ୍ଦ୍ର ସାହିତ୍ୟର ମର୍ତ୍ତ୍ୟପ୍ରୀତି ଓ ଉଦାର ମାନବପ୍ରୀତି କୁ ମାନସିଂହ ଅତ୍ୟନ୍ତ ଆବେଗର ସହିତ ଗ୍ରହଣ କରି ସାହିତ୍ୟରେ ପ୍ରୟୋଗ କରିଛନ୍ତି । ଏ ସମ୍ପର୍କରେ ଅଧ୍ୟାପକ ଦାଶରଥି ଦାସ 'କାବ୍ୟ ସମ୍ବାଦ'ପୁସ୍ତକରେ ଓ ଡକ୍ଟର ନିତ୍ୟାନନ୍ଦ ଶତପଥୀ,'ସବୁଜରୁ ସାମ୍ପ୍ରତିକ' ଚର୍ଚ୍ଚା—ନିବନ୍ଧରେ ବ୍ୟାପକ ଭାବରେ ଆଲୋଚନା କରିଛନ୍ତି ।

ଅଧ୍ୟାପକ ଦାଶରଥି ଦାସଙ୍କ ମତରେ:—"ମାନସିଂହଙ୍କ ମର୍ତ୍ତ୍ୟପ୍ରୀତିର ଅନ୍ୟତମ ବଳିଷ୍ଠ ଉତ୍ସ ହେଉଛି, ରବୀନ୍ଦ୍ର ଭାବ କଳ୍ପନା । ତେବେ ସେହି ଭାବ କଳ୍ପନା, ତାଙ୍କ କବିତାର ଭାବ ଓ ପାରାପାର୍ଶ୍ୱିକ ପରିମଣ୍ଡଳରେ ଏପରି ସଫଳିତ ହେଉଛି ଯେ, ସବୁଠି ତାକୁ ନୂତନ ଆଶ୍ରୟରୁ ସ୍ୱତନ୍ତ୍ର କରି ଦେଖିହୁଏ ନାହିଁ । ପୂର୍ବର ଭାବ କଳ୍ପନାକୁ ଯଥା ସମ୍ଭବ ସେ ନିଜର କରିବାକୁ ଗ୍ଭହିଁଛନ୍ତି । ତେଣୁ ତାଙ୍କର ରଚନାକୁ ମୌଳିକତାର ପ୍ରାପ୍ୟ ଦେବାକୁ ବିଶେଷ କୁଣ୍ଠିତ ହେବାର କିଛି ନାହିଁ ।"(୧୬) ଡକ୍ଟର ନିତ୍ୟାନନ୍ଦ ଶତପଥୀ, 'ସବୁଜରୁ ସାମ୍ପ୍ରତିକ' ଚର୍ଚ୍ଚା ନିବନ୍ଧରେ ମାନସିଂହଙ୍କ ଉପରେ ରବୀନ୍ଦ୍ର ପ୍ରଭାବକୁ ଅଧିକ ସ୍ପଷ୍ଟ ଭାବରେ ଉପସ୍ଥାପନ କରିଛନ୍ତି । ଡକ୍ଟର ଶତପଥୀ ମାନସିଂହଙ୍କ ରଚନାର ତିନିଗୋଟି ମୁଖ୍ୟଧାରା, ରବୀନ୍ଦ୍ର ଚିନ୍ତାଦ୍ୱାରା ପ୍ରଭାବିତ ବୋଲି ବର୍ଣ୍ଣାଉଛନ୍ତି—

(କ) ମାଟିର କ୍ଷୟକ୍ଷତି, ବାଧାବିସ୍ବାଦ, ଜୟପରାଜୟ ମଧ୍ୟରେ ଚରମ ମୁକ୍ତିର ଆସ୍ୱାଦନ,

(ଖ) ଅନ୍ତର ମଧ୍ୟରେ ଦେବତାର ଅନୁଭବ ଓ ଉପାସନା, ତଥା

(ଗ) ସେହି ଅପରୂପକୁ ପ୍ରେମିକ ରୂପରେ ପରିକଳ୍ପନା କରି ଉନ୍ନିଦ୍ର ବାସକ ସଜ୍ଜା ଓ ଅଭିସାର ଆୟୋଜନ' (୮7)

କବି ମାନସିଂହ 'ପରଧର୍ମ୍ମ' ପ୍ରବନ୍ଧରେ ଓଡିଆ ସାହିତ୍ୟରେ ବଙ୍ଗ ପ୍ରଭାବକୁ ସମାଲୋଚନା କଲେ ମଧ୍ୟ, ନିଜେ ରବୀନ୍ଦ୍ରରଚନା ଦ୍ୱାରା ଅନୁପ୍ରାଣିତ ବୋଲି ସ୍ୱୀକାର କରିଛନ୍ତି । କବି ରବୀନ୍ଦ୍ରଙ୍କ ସମ୍ପର୍କରେ ଅନ୍ୟାନ୍ୟ ଆଲୋଚନାରେ

ନିଜର ଗ୍ରାହକତାକୁ ସ୍ୱୀକାର କରିବା ସଂଗେ ସଂଗେ ତାଙ୍କ କାବ୍ୟ ଚେତନା କବି ରବୀନ୍ଦ୍ରନାଥଙ୍କ ଦ୍ୱାରା କିପରି ପ୍ରଭାବିତ ବର୍ଣ୍ଣନା କରିଛନ୍ତି । ମାନସିଂହ କହିଛନ୍ତି:—" କବିର ପ୍ରକୃତ ଆଦର ଓ ସମ୍ମାନ ଏକାନ୍ତ ବ୍ୟକ୍ତିଗତ । ଯେତେ ଅଧିକ ବ୍ୟକ୍ତିଙ୍କ ନିକଟରେ, କୌଣସି ଏକ କବିର ପ୍ରଭାବ ଯେତେ ନିବିଡ଼, ସେ ସେତେ ବଡ଼ । ଆଧୁନିକ ଓ ପ୍ରାଚୀନ ଯୁଗର କ୍ୱଚିତ୍ କବି ଏ ପ୍ରକାର ବିଚାରରେ ମଧ୍ୟ ରବୀନ୍ଦ୍ରନାଥଙ୍କ ମହତ୍ତ୍ୱର ସମକକ୍ଷ ହୋଇପାରିବେ । x x x କାରଣ ସମସାମୟିକତାକୁ ଯଥେଷ୍ଟ ବାଦ ଦେଲେ ମଧ୍ୟ ରବୀନ୍ଦ୍ର ରଚନାରେ ଶାଶ୍ୱତ ଓ ଚିରନ୍ତନର ସୁନ୍ଦର ସ୍ପର୍ଶ ଏପରି ନିବିଡ଼ ଭାବରେ ନିହିତ ଯେ, କୌଣସି କାଳ ତାକୁ ସହଜରେ ଅବହେଳା କରି ନ ପାରେ । ଏକ ବ୍ୟକ୍ତିଗତ ସମ୍ବନ୍ଧରେ ହିଁ ରବୀନ୍ଦ୍ରନାଥ ମୋର ପ୍ରିୟ କବି । କୌଣସି କବି ଯେ ନୋବେଲ ପୁରସ୍କାର ପାଇଛନ୍ତି ବା ଏକ ଦେଶର ବାଣୀର ପ୍ରଚାରକ ବୋଲି ସ୍ୱାଭାବିକ ଭାବରେ ମୋର ପ୍ରିୟ କବି ହେବାର କଥା ନୁହେଁ । କବିର ପ୍ରକୃତ ପୂଜା ସ୍ମୃତି ମନ୍ଦିର ବା ମେଳା ମଉଚ୍ଛବରେ ନୁହେଁ । ତା'ର ସ୍ୱର୍ଣ୍ଣ ଆସନ ତା'ର ପାଠକର ନିଭୃତ ଅନ୍ତରରେ । ସେହି ସମ୍ବନ୍ଧ ଯେଣି ରବୀନ୍ଦ୍ରନାଥ ମୋର ଅତି ପ୍ରିୟ କବି, ଅତିମାନ୍ୟ ଓ ପ୍ରଣମ୍ୟ କବି । ସେ ମୋର ପ୍ରିୟ କାରଣ ସେ ମୋ ନିଜ ଅନ୍ତରର ଅବ୍ୟକ୍ତ ଆଶା, ତୃଷ୍ଣା, ବ୍ୟଥା ବେଦନାକୁ ଏପରି ବ୍ୟକ୍ତ କରିଛନ୍ତି, ଯେପରିକି ମୁଁ ମନେ କରିଥାଏଁ ରବୀନ୍ଦ୍ରନାଥ ମୋରି କଥା ଗୁଡ଼ିକ ଯେପରି ଲେଖିଯାଇଛନ୍ତି । ସେ ପ୍ରିୟ ପୁଣି ସେହି କାରଣରୁ ଯେ, କାବ୍ୟକଳା ଯଦି ସଭ୍ୟ ମନୁଷ୍ୟର ଏକ ଉପଭୋଗ୍ୟ ବସ୍ତୁ ହୁଏ ତେବେ ତାଙ୍କର କବିତା ମୋର ପରମ ଉପଭୋଗ୍ୟ । ମୋର ଲଜ୍ଜା ବା ସଂକୋଚ ନାହିଁ କହିବାରେ ଯେ ସେହି ପରମ ଲାବଣ୍ୟମୟୀ ରୂପସୀକୁ ମୁଁ ମୋର ସର୍ବେନ୍ଦ୍ରିୟ ଦେଇ ଉପଭୋଗ କରିଛି । ସର୍ବୋପରି ସେ ମୋର ମାନ୍ୟ ଓ ପ୍ରଣମ୍ୟ ଏଇଥି ପାଇଁଯେ, କବିତା ରଚନାରେ ସେ ଯେଉଁ ଅଲୌକିକ କଳା କୌଶଳ ଦେଖାଇଛନ୍ତି, ତାହା ଅସାମାନ୍ୟ ଓ ଲୋକୋତ୍ତର, ତାହାର ପ୍ରତ୍ୟେକ ବିନ୍ଦୁରେ ଦୈବତ ଶକ୍ତିର ମୁଦ୍ରାଙ୍କନ ସୁସ୍ପଷ୍ଟ । ସେହି ଲୋକୋତ୍ତର ମାଧୁରିମା ବଳରେ ପୃଥିବୀର କୁତ୍ସିତ ମାଟିରେ ଥାଇ ମଧ୍ୟ ସେ ମତେ ବହୁବାର ନେଇ ଯାଇଛନ୍ତି ଏକ ଅତୀନ୍ଦ୍ରିୟ କଳ୍ପଲୋକକୁ"(୧୪) ଉପର୍ଯ୍ୟୁକ୍ତ ଉକ୍ତିରୁ ମାନସିଂହ ରବୀନ୍ଦ୍ରନାଥଙ୍କ ପ୍ରତି କିପରି ଅନୁରକ୍ତ ଥିଲେ, ତାହାର ସୂଚନା ମିଳେ । ପୁନଶ୍ଚ ବିଭିନ୍ନ ଆଲୋଚନାରେ ସେ ରବୀନ୍ଦ୍ରନାଥଙ୍କୁ 'ମୋର ଗୁରୁଦେବ' ବୋଲି ସମ୍ବୋଧନ କରିଛନ୍ତି ।

ମାନସିଂହଙ୍କର ତିନିଗୋଟି ବଳିଷ୍ଠ ପ୍ରବନ୍ଧ 'ରବୀନ୍ଦ୍ରନାଥ, ରବୀନ୍ଦ୍ରନାଥଙ୍କ କବିତା ଓ ରବୀନ୍ଦ୍ରପୂଜା'ରେ ସେ ରବୀନ୍ଦ୍ରନାଥଙ୍କ ସଂପର୍କରେ ଯେଉଁ ମନ୍ତବ୍ୟ ଦେଇଛନ୍ତି, ସେ ସବୁ ମନ୍ତବ୍ୟ ମାନସିଂହଙ୍କ ପାଇଁ ମଧ୍ୟ ପ୍ରଯୁଜ୍ୟ । ଓଡ଼ିଆ ସାହିତ୍ୟରେ ରବୀନ୍ଦ୍ରରଚନାର ଭାବ ପ୍ରବେଶକୁ ସେ ବିରୋଧ କରୁ ନଥିଲେ, ସେ କହୁଥିଲେ ରବୀନ୍ଦ୍ରଭାବନାକୁ ଓଡ଼ିଶାର ମାଟିରେ, ଓଡ଼ିଶାର ଚଳଣୀ ମଧ୍ୟରେ ପ୍ରକାଶ କରିବାକୁ ଚେଷ୍ଟା କରାଯାଉ । ମାନସିଂହଙ୍କ ଭାଷାରେ— "କୌଣସି ନିର୍ବୋଧ ରବୀନ୍ଦ୍ରନାଥଙ୍କର ବିଶ୍ୱଜନୀନ ଭାବ ସମୂହକୁ ଓଡ଼ିଆ ସାହିତ୍ୟରେ ପ୍ରବେଶ କରିବାରେ ବାଧା ଦେବ ନାହିଁ, କିନ୍ତୁ ଓଡ଼ିଆ ଭାଷାକୁ ବଂଗାଳୀ ବେଶ ଦେଇ ସୁନ୍ଦର କରିବାର ଇତରତା ସହ୍ୟ କରାଯିବ କିପରି ?"(୧୨) ସେ ଦୃଷ୍ଟିରୁ କୁହାଯାଇ ପାରେ ଯେ, ମାନସିଂହଙ୍କ ସୃଷ୍ଟି ପ୍ରେରଣାର ଉତ୍ସ ଭାବରେ ରବୀନ୍ଦ୍ରନାଥଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ ।

॥ ମାନସିଂହଙ୍କ ବିଗ୍ରଧାରା ॥

## ମହାତ୍ମା ଗାନ୍ଧି

ମାନସିଂହଙ୍କର ଆବିର୍ଭାବ ଓ ବ୍ୟକ୍ତିତ୍ୱ ବିକାଶର କାଳ,ଓଡ଼ିଶା ତଥା ଭାରତ ଇତିହାସରେ ଏକ ପରିବର୍ତ୍ତନର ସମୟ । ଏ ସମୟ ବହୁଚରିତ୍ର ଓ ବହୁ ମହାପୁରୁଷଙ୍କ ପଦଧ୍ୱନିରେ ମୁଖରିତ । ଏହି ସମୟରେ ଯୁଗପୁରୁଷ ମହାତ୍ମାଗାନ୍ଧୀଙ୍କର ଆବିର୍ଭାବ ।ପୂର୍ବରୁ ସୂଚନା ଦିଆଯାଇଅଛି ଯେ,ମାନସିଂହ ଗାନ୍ଧିଜୀଙ୍କର ପ୍ରତ୍ୟକ୍ଷ ଆନ୍ଦୋଳନରେ ଭାଗ ନେଇପାରି ନଥିଲେ;ଗାନ୍ଧୀଙ୍କ ଭାବଧାରା ଓ ଆଦର୍ଶ ତାଙ୍କୁ ଏତେ ମାତ୍ରାରେ ପ୍ରଭାବିତ କରି ଦେଇଥିଲା ଯେ, ତାଙ୍କ ରଚନାରେ ଅନେକତ୍ର ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ଗାନ୍ଧୀ ଚିନ୍ତାଧାରାର ସୂଚନା ମିଳେ ।

ଖ୍ରୀ: ୧୯୨୧ ରେ ଭାରତୀୟ ସ୍ୱରାଜ୍ୟ ଆନ୍ଦୋଳନରେ ବାପୁଜୀଙ୍କର ଡାକରା ପ୍ରତ୍ୟେକ ଭାରତୀୟ ପ୍ରାଣରେ ନବ ଉନ୍ମାଦନା ଖେଳାଇ ଦେଲା । ଛାତ୍ର ମାନସିଂହଙ୍କ ଉପରେ ମଧ୍ୟ ଏହାର ପ୍ରଭାବ ପଡ଼ିଥିବ । ମାନସିଂହ ସ୍ୱରାଜ୍ୟ ଆନ୍ଦୋଳନ ପ୍ରତି ଯେତେ ଶ୍ରଦ୍ଧାବାନ ହୋଇ ନାହାନ୍ତି,ବାପୁଜୀଙ୍କ ପ୍ରତି ତାହା ଅପେକ୍ଷା ବହୁଭାବରେ ଆକୃଷ୍ଟ ହୋଇ ପଡ଼ିଛନ୍ତି । ଭାରତୀୟ ମାନଙ୍କ ମଧ୍ୟରେ ଗୋଟିଏ ଗୋଷ୍ଠୀ ଇଂରେଜ ମାନଙ୍କୁ ତଡ଼ି ସ୍ୱରାଜ୍ୟ ହାସଲ ପାଇଁ ଚେଷ୍ଟା କରୁଥିଲା ବେଳେ,ଅନ୍ୟ ଏକ ଗୋଷ୍ଠୀ ଇଂରେଜ ମାନଙ୍କ ବ୍ୟତୀତ ଭାରତ ଶାସନ ଅସମ୍ଭବ ବୋଲି ଭାବୁଥିଲେ । ସେମାନେ ଭାବୁଥିଲେ ଇଂରେଜମାନେ ହିଁ କେବଳ ଶାସନ ଦାୟିତ୍ୱ ତୁଲାଇ ପାରିବେ । ସେମାନେ ଭାରତୀୟ ମାନଙ୍କ ଉପରେ ଶାସନ ଓ ଅନ୍ୟକର୍ମପାଇଁ ଯେତେ ଅନାସ୍ଥାଭାବ ଆଣୁଥିଲେ,ଇଂରେଜମାନଙ୍କ ବ୍ୟକ୍ତିତ୍ୱ ପ୍ରତି ସେମାନେ ସେତେ ଶ୍ରଦ୍ଧାବାନ ହୋଇ ପଡୁଥିଲେ । ମାନସିଂହ ଇଂରାଜୀ ସାହିତ୍ୟ ତଥା ଇଂରେଜ ଲୋକଙ୍କ ପ୍ରତି ଅନେକ ଶ୍ରଦ୍ଧାଶୀଳ ହୋଇଥିଲେ କାରଣ କେତେକ ଭାରତୀୟ ମାନଙ୍କର ସଂକୀର୍ଣ୍ଣ ମନୋଭାବ ଓ ସମାଜସ୍ଥ ବଡ଼ପଣ୍ଡା ମାନଙ୍କର ବିଭେଦ ପୂର୍ଣ୍ଣ ଆଚରଣ ତାଙ୍କୁ ବ୍ୟଥିତ କରିଥିଲା । ତେଣୁ ସେ ତାଙ୍କର ଲେଖାରେ ଅନେକତ୍ର ନିର୍ଦ୍ଦମ୍ଭ ବ୍ରାହ୍ମଣ ଓ ମାନବିକ ଇଂରେଜ ବୋଲି ଉଲ୍ଲେଖ କରିଛନ୍ତି । ତାଙ୍କ ବିଗ୍ରରେ ଇଂରେଜ ଚରିତ୍ରର ଶ୍ରେଷ୍ଠଗୁଣ ସବୁ ମହାତ୍ମା ଗାନ୍ଧୀଙ୍କ ଠାରେ ବିଦ୍ୟମାନ ଥିଲା । ପୁଣି ମଣିଷପ୍ରତି ଉଦାର ମନୋଭାବ ଓ ଭାରତୀୟ ବେଶରେ ଇଂରେଜ ଚରିତ୍ରର ଶୃଙ୍ଖଳା ବାପୁଜୀଙ୍କ ଠାରେ ବିଦ୍ୟମାନ ଥିବାରୁ ମାନସିଂହ ଗାନ୍ଧିଜୀଙ୍କ ପ୍ରତି ଶ୍ରଦ୍ଧାଶୀଳ ଥିବାର ଅନୁମାନ କରାଯାଏ । ଗାନ୍ଧୀ ରଚନା,ଗାନ୍ଧୀ ଚିନ୍ତାଧାରା ଓ ବାପୁଜୀଙ୍କ ଜୀବନଧାରା ମାନସିଂହଙ୍କୁ ପ୍ରାଣଭରି ପ୍ରେରଣା ଯୋଗାଇଛି । ବାପୁଜୀଙ୍କୁ ସେ ବୁଦ୍ଧ,ଖ୍ରୀଷ୍ଟ, ମହମ୍ମଦ,ରସୁଲ ରୂପରେ ଦେଖିଛନ୍ତି । ମାନବବାଦୀ ନୀରୀଶ୍ୱର ଦୃଷ୍ଟିକୋଣରୁ ସେ ଗାନ୍ଧିଙ୍କୁ ବିଗ୍ରର କରିଛନ୍ତି ।'ନପିତୁଣୀର ଗାନ୍ଧୀ ପୂଜା,ଗାନ୍ଧୀ,ବାପୁଜୀ,ଗାନ୍ଧୀଦେଶ,ଦୀପନିର୍ବାପିତ,ନହେବି ବୁଦ୍ଧ,,ନ ହେବି ଗାନ୍ଧୀ,ନହେବି ଶଙ୍କର,ପ୍ରାଣର ବାପୁଜୀ,ସ୍ୱରାଜ୍ୟାଶ୍ରମ,କମଳାୟନ,ଆମର ଦୈନନ୍ଦିନ ଜୀବନରେ ବାପୁଜୀ,ଗାନ୍ଧୀ ଓ ସାହିତ୍ୟ,ବାପୁଜୀଙ୍କ ଦାନ, ଗାନ୍ଧୀଜୀ ଓ ରବୀନ୍ଦ୍ରନାଥ ତଥା ମୃତ୍ୟୁ ର ପ୍ରାକ୍ କାଳରେ ଲିଖିତ ପାଞ୍ଚଗୋଟି ପ୍ରବନ୍ଧ'ସେଇମାନେ ଗାନ୍ଧୀଙ୍କୁ ମହାତ୍ମା କଲେ' ସମେତ ମାନସିଂହଙ୍କର ଅନ୍ୟାନ୍ୟ ବହୁ ରଚନାରେ ମହାତ୍ମାଗାନ୍ଧୀ ସମ୍ମାନଜନକ ସ୍ଥାନ ପାଇଛନ୍ତି ।

## ।।　　　ମାନସିଂହଙ୍କ ବିଗ୍ରହଧାରା　　　।।

ଗାନ୍ଧୀ ଓ ରବୀନ୍ଦ୍ରନାଥ ମାନସିଂହଙ୍କ ଚିନ୍ତାଧାରାକୁ ବହୁଭାବରେ ପ୍ରଭାବିତ କରିଛନ୍ତି । କିନ୍ତୁ ସେମାନଙ୍କ ସଂପର୍କରେ ମାନସିଂହ ଖୁବ୍ ସୁସ୍ପଷ୍ଟଥିଲେ ବୋଲି ମନେହୁଏ ନାହିଁ । ରବୀନ୍ଦ୍ରନାଥଙ୍କ ଧାରାଥିଲା:—'ବ୍ୟକ୍ତିତ୍ୱର ଜାଗରଣ ବ୍ୟତୀତ ମୁକ୍ତି ସମ୍ଭବ ନୁହେଁ । ବ୍ୟକ୍ତିତ୍ୱର ଜାଗରଣ ବୁଦ୍ଧିର ଆଲୋକରେ ପରିଶୀଳିତ ସୃଷ୍ଟିଧର୍ମଦ୍ୱାରା ଉଦ୍‌ବୁଦ୍ଧ ହୁଏ । ମଣିଷର ଆବେଗ ପ୍ରବୃତ୍ତି ସବୁ କିଛି ବୁଦ୍ଧିଦ୍ୱାରା ନିୟନ୍ତ୍ରିତ ହୋଇ ତା'ର ପରିପୂର୍ଣ୍ଣ ମାନବ ରୂପକୁ ପ୍ରକାଶ କରେ । ଏହି ବୁଦ୍ଧିଦୀପ୍ତ ବିବେକବାନ ମଣିଷର ସାମଗ୍ରିକ ବ୍ୟକ୍ତିତ୍ୱକୁ କୌଣସି ବାହ୍ୟ ବଂଧନକୁ ମଧ୍ୟ ରଖି ପାରିବ ନାହିଁ; କାରଣ ସେ ସବୁ ବଂଧନ ମାୟାମାତ୍ର । କିନ୍ତୁ ଆବେଗକୁ ବୁଦ୍ଧିହୀନ ଭାବରେ ପରିଚାଳିତ କଲେ ତାହା ଧ୍ୱଂସ ପଥକୁ ଟାଣି ଆଣେ । କିନ୍ତୁ ମହାତ୍ମା ଗାନ୍ଧୀଙ୍କ ଦୃଷ୍ଟିରେ:— ପରାଧୀନ ଭାରତରେ ଏହି ବ୍ୟକ୍ତିତ୍ୱବୋଧର ଜାଗରଣ ସମ୍ଭବ ନୁହେଁ । ଇଂରେଜ ମାନେ ଯେ ପର୍ଯ୍ୟନ୍ତ ଭାରତକୁ ତାଙ୍କର ବଂଧୁ ଭାବରେ ଦେଖିପାରି ନାହାନ୍ତି, ସେତେଦିନ ପର୍ଯ୍ୟନ୍ତ ଉଭୟ ମଧ୍ୟରେ ବୈଷମ୍ୟ ଓ ତହିଁରୁ ସମୁଦ୍‌ଭବ ସଂଘର୍ଷ ଅନିବାର୍ଯ୍ୟ ।(୨୦) ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ମାମ୍ବାଧର ମାନସିଂହ, ଗୋପ- ବଂଧୁ, ରବୀନ୍ଦ୍ର ଓ ଗାନ୍ଧୀଜୀ ପ୍ରମୁଖ ମହାପୁରୁଷଙ୍କ ଧାରାକୁ ଅନୁସରଣ କରିଥିଲେ ମଧ୍ୟ କଳ୍ପନା ପ୍ରବଣତା ତଥା ବିଭିନ୍ନ ଆଦର୍ଶର ମୋହରେ କୌଣସି ନିର୍ଦ୍ଦିଷ୍ଟ ଧାରାପ୍ରତି ସ୍ଥିରନିଷ୍ଠା ପ୍ରକାଶ କରି ନାହାନ୍ତି । ବରଂ ଜୀବନର ଉତ୍ତରାର୍ଦ୍ଧରେ ଏହି ଭଳି ଏକ ମାନସିକ ଦ୍ୱନ୍ଦ୍ୱମଧ୍ୟରେ ତାଙ୍କ କବିତା ଅଧିକମାତ୍ରାରେ ରହସ୍ୟବାଦୀ ହୋଇପଡିଛି ।

ମାନସିଂହଙ୍କ ବିଲାତଯାତ୍ରା ତାଙ୍କ ବିଗ୍ରହଧାରାରେ ଅନେକ ପରିବର୍ତ୍ତନ ଘଟାଇ ପାରିଛି । ଆଦ୍ୟ ଜୀବନରୁ ବୌଦ୍ଧିକ ସ୍ତରରେ ବଡହେବାର ମୋହ ସହିତ ବିଗ୍ରହଧାରାରେ ସ୍ଥିର ସିଦ୍ଧାନ୍ତର ଅଭାବ ତାଙ୍କୁ ଜୀବନରେ ନାନା ପରୀକ୍ଷା ନିରୀକ୍ଷା ପାଇଁ ଆଗେଇ ନେଇଛି । ତାଙ୍କ ଭିତରେଥିବା କବି ପ୍ରାଣର କଳ୍ପନା ପ୍ରବଣତା, ତାଙ୍କୁ ସ୍ୱପ୍ନ-କଳ୍ପିତ ଏକ ନନ୍ଦନ କାନନର ଚିନ୍ତା ଆଣି ଦେଇଛି । ବାସ୍ତବ ଜୀବନ ଓ ବାସ୍ତବ ସମାଜ ସହିତ ତାଙ୍କର ସଂପର୍କ ତାଳଦେଇ ନ ପାରିବାରୁ ସେ ଅନେକତ୍ର ବେଖାପ ମନେ ହୋଇଛନ୍ତି । ଛାତ୍ରଜୀବନ ତଥା ପ୍ରଥମ ଚାକିରି ଜୀବନରେ ଗୋପବନ୍ଧୁ, ଗାନ୍ଧୀ ଓ ରବୀନ୍ଦ୍ରନାଥଙ୍କ ଭାବଧାରା ସଂଗେ ସଂଗେ ଇଂରାଜୀ ରୋମାଣ୍ଟିକ କବିଙ୍କର ପ୍ରଭାବ ତାଙ୍କୁ ସର୍ବଦା ଏକ ଭିନ୍ନ ଜଗତରେ ଦୋଦୁଲ୍ୟମାନ ଅବସ୍ଥାରେ ରଖି ଆସିଥିଲା । ପୁନଶ୍ଚ ବିଲାତଯାତ୍ରା ଓ ବିଲାତ ଅବସ୍ଥାନ ତାଙ୍କ ଜୀବନରେ ଧର୍ମନିରପେକ୍ଷତା ଓ ଜୀବନପ୍ରତି ଶ୍ରଦ୍ଧାଶୀଳ ଭାବ ଆଡକୁ ଧାବିତ କରାଇଥିଲା ।

ସମୟ ସହିତ ତାଳଦେଇ ଚାଲିବାର ଯୋଗ୍ୟତା ଅଭାବରୁ ମାନସିଂହଙ୍କର ଶିକ୍ଷା ଓ କଳ୍ପନା ହତାଶାରେ ପରିଣତ ହୋଇଛି । ବ୍ୟକ୍ତିଗତ ଜୀବନରେ ହତାଶା, ଚିନ୍ତାଧାରାକୁ ରୂପଦାନ କରିବାରେ ବ୍ୟର୍ଥତା ମଧ୍ୟରେ ସେ ଧର୍ମ ଆଡକୁ ଢଳି ଆସିଛନ୍ତି । ସଂସାରରେ ବଡ ହେବାପାଇଁ ଯେଉଁ ଭାବନା, କିଛି ନୂଆ କାମକରି ନାଁ କମାଇବା ପାଇଁ ଯେଉଁ ଅଭିଳାଷ, ତାଙ୍କ ନିଜସ୍ୱ ଦୃଷ୍ଟିକୋଣରୁ ବ୍ୟର୍ଥ ହୋଇଛି । ମାତ୍ର ସେ ଜୀବନର ଶେଷ ଭାଗ ପର୍ଯ୍ୟନ୍ତ ପ୍ରୟୋଗାତ୍ମକ ଧାରାରେ ଜୀବନ ବିତାଇବାର ଅଭିଳାଷ ତ୍ୟାଗ କରିପାରି ନାହାନ୍ତି । ଅବଶ୍ୟ ମାନସିଂହ ବଡ ହୋଇଛନ୍ତି, ଯଥେଷ୍ଟ ନାମ ଅର୍ଜନ କରିଛନ୍ତି, କବି ତଥା ଶିକ୍ଷାବିତ୍ ଭାବରେ ଓଡିଶାରେ ସେ ସ୍ୱତନ୍ତ୍ର ସମ୍ମାନର ଅଧିକାରୀ ତଥାପି ତାଙ୍କ ନିଜସ୍ୱ ଦୃଷ୍ଟି କୋଣରୁ ସେ ଆଶାନୁରୂପ ହୋଇପାରି ନାହାନ୍ତି ।

## ॥ ମାନସିଂହଙ୍କ ବିଚାରଧାରା ॥

ରହସ୍ୟବାଦୀମାନେ ନାନା ସିଦ୍ଧାନ୍ତ ନିଅନ୍ତି, ମାତ୍ର ତାହା ପ୍ରକାଶ କରିବା ପାଇଁ କୌଣସି ବାଟ ନ ପାଇବାରୁ, ସେହି ବ୍ୟର୍ଥତା ଜନିତ ମାନସିକ ସଂକଟ ମଧ୍ୟରେ ଯାହା ପ୍ରକାଶ କରନ୍ତି, ତାହା ରହସ୍ୟମୟ ହୁଏ । ସେମାନେ କଳ୍ପଲୋକର ସନ୍ଧାନ କରୁକରୁ ବାସ୍ତବତାଠାରୁ ଦୂରେଇ ଯାଆନ୍ତି । ବାସ୍ତବତାରୁ ଦୂରେଇଗଲେ ମଧ୍ୟ ଅତୀତ ଗାଥା, ପ୍ରକୃତି, ଜାତୀୟତା, ପଲ୍ଲୀଜୀବନ ପ୍ରଭୃତିର ନାନା ସ୍ୱପ୍ନସୃଷ୍ଟ ଜଗତମଧ୍ୟରେ ବିଚରଣ କରନ୍ତି । ଅଧିକାଂଶ ରହସ୍ୟବାଦୀ କବିମାନଙ୍କ ପରି ମାନସିଂହଙ୍କ ଉତ୍ତର ଜୀବନର କବିତା ଗୁଡିକ ରହସ୍ୟବାଦୀ ହୋଇ ପଡିନ୍ତି । ହିନ୍ଦୁ ସମାଜର ବୈଷମ୍ୟ ତଥା ବ୍ରାହ୍ମଣ ପୁରୋହିତ ମାନଙ୍କର ଆଚରଣ ଗତ ତ୍ରୁଟିରୁ ସେ ବୌଦ୍ଧଧର୍ମ ପ୍ରତି ଆକୃଷ୍ଟ ହୋଇ ପଡିଥିଲେ । ମାତ୍ର ଜୀବନର ଶେଷ ଦଶକରେ ସର୍ବଧର୍ମ ଶାସ୍ତ୍ରଚର୍ଚ୍ଚା ସହିତ ଶ୍ରୀମଦ୍ ଭଗବଦଗୀତାର ଆଲୋଚନା, ଧମ୍ମପଦ, ଗୁରୁନାନକ ବାଣୀ' ଗୁରୁଗୋବିନ୍ଦ ସିଂହଙ୍କ ଜୀବନୀ ପ୍ରଭୃତିର ଆଲୋଚନା ସହିତ ଅନ୍ୟାନ୍ୟ ମାନବବାଦୀ ଧର୍ମର ଆଲୋଚନାରୁ ପ୍ରତୀୟମାନ ହୁଏ ଯେ, ମାନସିଂହ ଶେଷ ପର୍ଯ୍ୟନ୍ତ ଧର୍ମର ଅସଲ ମାର୍ଗ ଖୋଜିଛନ୍ତି କିନ୍ତୁ କୌଣସି ଠାରେ ସ୍ଥିର ସିଦ୍ଧାନ୍ତ ଗ୍ରହଣ କରି ବସି ପାରି ନାହାନ୍ତି ।

ତାଙ୍କର ମଧ୍ୟ–ଜୀବନର କବିତା ରହସ୍ୟବାଦ ଓ ଶେଷ–ଜୀବନର କବିତା ତେଜ ହୀନ ହୋଇ ଥିଲେ ମଧ୍ୟ, ଜୀବନର ଉତ୍ତରାର୍ଦ୍ଧରେ ରଚିତ ଆଲୋଚନା ଅଧିକ ବଳିଷ୍ଠ ଓ ସେହି ଲେଖାହିଁ ମାନସିଂହଙ୍କ ବୌଦ୍ଧିକ ଚେତନାର ଜ୍ୱଳନ୍ତ ସ୍ୱାକ୍ଷର । ଅନ୍ୟ ଦୃଷ୍ଟିରୁ ବିଚାର କଲେ ମାନସିଂହଙ୍କ ଉତ୍ତର ଜୀବନର କବିତା ବୌଦ୍ଧିକତା ଓ ରହସ୍ୟବାଦର ଜାଲରେ ଛନ୍ଦିହୋଇ ନିଜର ସ୍ୱକୀୟତା ହରାଇଛି ।

ତାଙ୍କର ପ୍ରାଥମିକ ଜୀବନର ଉତ୍କଳୀୟ ପ୍ରୀତି, ମଧ୍ୟ–ଜୀବନରେ ଭାରତୀୟ ଜାତୀୟତା ବାଦ, ଶେଷ ଜୀବନରେ କ୍ରମଶଃ ଭିନ୍ନରୂପ ନେଇଛି । ଜୀବନର ଉତ୍ତରାର୍ଦ୍ଧରେ ମାନସିଂହ ଏ ସମସ୍ତ ସଂକୀର୍ଣ୍ଣତା, ଆଞ୍ଚଳିକତାରୁ ମୁକ୍ତ ହୋଇ ଉଦାର–ମାନବିକ ଆଦର୍ଶରେ ଅନୁପ୍ରାଣିତ ହୋଇଛନ୍ତି । ସେତେବେଳେ କବି ମାନସିଂହ ଜଣେ ଚିନ୍ତା–ନାୟକରେ ପରିଣତ ହୋଇଛନ୍ତି ।

ପରବର୍ତ୍ତୀ ଦୁଇଟି ଭାଗରେ କବି ମାନସିଂହ, ଶିକ୍ଷାବିତ୍ ମାନସିଂହ ତଥା ବୁଦ୍ଧିଜୀବୀ ମାନସିଂହଙ୍କର ସମଗ୍ର ସୃଷ୍ଟିର ନିର୍ଯ୍ୟାସରୁ ତାଙ୍କର ବିଚାରଧାରାର ସନ୍ଧାନ କରାଯାଉଅଛି । ବ୍ୟକ୍ତିର ବିଚାରଧାରା ଅନୁସନ୍ଧାନ କ୍ଷେତ୍ରରେ ସେହି ବ୍ୟକ୍ତିର ସମଗ୍ର ସୃଷ୍ଟି ଅନୁସନ୍ଧାନ ହିଁ ଉପଯୁକ୍ତ ମାର୍ଗ ।

---

॥ ମାନସିଂହଙ୍କ ବିପ୍ଳବଧାରା ॥

## ତୃତୀୟ ଅଧ୍ୟାୟର ସୂଚନା :


1: ମିଶ୍ର, (ଡଃ) ନରେନ୍ଦ୍ରନାଥ–ଆଧୁନିକ ଓଡିଆ କାବ୍ୟଧାରା'(ଆଦିଯୁଗ), (1964) ପୃ–89.

2: ତତ୍ରୈବ, ପୃ– 90.

3: ଆଗ୍ରୱାଲ, (ଅଧ୍ୟାପକ) ବୃନ୍ଦାବନଚନ୍ଦ୍ର, —ସତ୍ୟବାଦୀ ଯୁଗ(1970) ଦ୍ୱିତୀୟ ପ୍ରକାଶ, ପୃ–45.

4: ତତ୍ରୈବ, ପୃ– 48–49,

5: ମିଶ୍ର, (ଡଃ) ନରେନ୍ଦ୍ରନାଥ, –ଆଧୁନିକ ଓଡିଆ କାବ୍ୟଧାରା, ଆଦିଯୁଗ(1964) ପୃ–65,

6: ଶତପଥୀ, (ଡଃ) ନିତ୍ୟାନନ୍ଦ, —ସବୁଜରୁ ସାମ୍ପ୍ରତିକ, (ପ୍ରଥମ ସଂସ୍କରଣ–1979) ପୃ–122.

7: ମାନସିଂହ, (ଡଃ) ମାୟାଧର, –ଶିକ୍ଷାବିତର ଗାଥା, (ପ୍ରଥମ ସଂସ୍କରଣ, 1965), ପୃ–17–18.

8: ମାନସିଂହ ଗ୍ରନ୍ଥାବଳୀ(ଦ୍ୱିତୀୟ ଖଣ୍ଡ–1964) 'କମଳାୟନ କାବ୍ୟ– ପୃ– 232.

9: ମାନସିଂହ, ମାୟାଧର, – ଶିକ୍ଷାବିତର ଗାଥା(1965) ପୃ– 15–16,

10: ତତ୍ରୈବ, ପୃ–8.

11: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ–1973) ମାନବ ଗୋପବନ୍ଧୁ' ପୃ–522.

12: ତତ୍ରୈବ,

13: ତତ୍ରୈବ, 'ପ୍ରେୟସୀ ଗୋପବନ୍ଧୁ' ପୃ— 516,

14: ଶତପଥୀ, (ଡଃ) ନିତ୍ୟାନନ୍ଦ–ସବୁଜରୁ ସାମ୍ପ୍ରତିକ(1979) ପୃ– 123–124,

15: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ–1973)'ରବୀନ୍ଦ୍ରନାଥ'(ପ୍ରବନ୍ଧ) ପୃ–420,

16: ଦାସ, (ଅଧ୍ୟାପକ) ଦାଶରଥି, –'କାବ୍ୟ ସମ୍ବାଦ(ଦ୍ୱିତୀୟ ସଂସ୍କରଣ), ରବୀନ୍ଦ୍ରନାଥ ଓ କବି ମାନସିଂହଙ୍କ ମର୍ମ୍ମ ପ୍ରୀତି' ପୃ– 331,

17: ଶତପଥୀ, (ଡଃ) ନିତ୍ୟାନନ୍ଦ, –'ସବୁଜରୁ ସାମ୍ପ୍ରତିକ'(1979) ପୃ–231,

18: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ–1973), ରବୀନ୍ଦ୍ରନାଥ(ପ୍ରବନ୍ଧ) ପୃ–426,

19: ତତ୍ରୈବ, 'ପରଧର୍ମ (ପ୍ରବନ୍ଧ) ପୃ–594,

20: The Uriting of Gandhi
A selection-Edited by RONALD DUNCAN
FONTANA/COLLINS Published by Faber and Faber (1983)
University Press Oxford.

# ମାନସିଂହଙ୍କ ବିଚାରଧାରା

**( A THESIS PRODUCED UNDER UTKAL UNIVERSITY**
**FOR Ph. D. DEGREE, 1988 )**


**ଅଧ୍ୟାପକ ଶ୍ରୀଚରଣ ମହାନ୍ତି**
ଓଡ଼ିଆ ବିଭାଗ, ସରକାରୀ ମହାବିଦ୍ୟାଳୟ, ରାଉରକେଲା

REGD. No. 85 ARTS, 1977 – 78

ତତ୍ତ୍ୱାବଧାରକ

**ଡ଼କ୍ଟର ନିତ୍ୟାନନ୍ଦ ଶତପଥୀ**
ପ୍ରଫେସର, ସତ୍ୟବାଦୀ ଚେୟାର
ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର

# ମାନସିଂହଙ୍କ ବିଚାରଧାରା

# ଦ୍ୱିତୀୟ ଭାଗ

ମନିଷ,

ପ୍ରକୃତି,

ଭଗବାନ ଓ ଧର୍ମ

# ଦ୍ୱି ତୀ ୟ  ଭା ଗ

ସୃଷ୍ଟିର ଆଦିମ କାଳରୁ ଏ ପର୍ଯ୍ୟନ୍ତ ଜଗତର କବି, ନାଟ୍ୟକାର, ସଂଗୀତଜ୍ଞ, ସ୍ଥପତି, ଚିତ୍ରକର ତଥା ଦାର୍ଶନିକ ପ୍ରଭୃତିଙ୍କର ଚିନ୍ତା ଓ ଅଭିବ୍ୟକ୍ତିର ମୌଳ ଉତ୍ସ ହେଉଛି ମଣିଷ ଓ ତା'ର ସ୍ୱପ୍ନ–ରାଜି । ଜଗତର ସମସ୍ତ ସୃଜନଶୀଳ ସ୍ରଷ୍ଟାଙ୍କର ପ୍ରଥମ ତଥା ସର୍ବଶ୍ରେଷ୍ଠ ଲକ୍ଷ୍ୟ ହେଉଛି ସୌନ୍ଦର୍ଯ୍ୟ ମାଧ୍ୟମରେ ସତ୍ୟର ପ୍ରକାଶ । ଧରଣୀ ବକ୍ଷରେ ବସବାସ କରୁଥିବା ଅସଂଖ୍ୟ ଜୀବ–ଜଗତ ମଧ୍ୟରେ ମଣିଷ ହିଁ ତାର ସର୍ଜନ କ୍ଷମତା, ବିଚାରଶକ୍ତି ଓ ପ୍ରତିଭା ବଳରେ ଅନ୍ୟମାନଙ୍କୁ ଜୟ କରିବାରେ ସମର୍ଥ ହୋଇପାରିଛି । ମଣିଷର ବଞ୍ଚିବାର ଅବବୋଧରୁ ସଂସ୍କୃତିର ସୃଷ୍ଟି ।  ମାନବିକ ମୂଲ୍ୟବୋଧର ବିକାଶ ପାଇଁ ଶିକ୍ଷାର ସେ ଜନ୍ମଦାତା । ଶିକ୍ଷା ତଥା ସଂସ୍କୃତିକୁ ଚିରନ୍ତନ ଓ ଅର୍ଥପୂର୍ଣ୍ଣ କରିବାର ଇଚ୍ଛାରୁ ଏବଂ ନିଜର ଜୀବନକୁ ଅର୍ଥାବହ କରିବା ପାଇଁ କଳା ମାଧ୍ୟମରେ ନିଜର ସ୍ୱପ୍ନ ଓ ସଂଘର୍ଷକୁ ସେ ରୂପବାନ କରିଛି । ମୋଟ ଉପରେ ସଂସ୍କୃତି, ଶିକ୍ଷା ତଥା କଳାହିଁ ମଣିଷର ନିଜସ୍ୱ ସୃଷ୍ଟି । କିନ୍ତୁ ମଣିଷ ନିଜକୁ, ପ୍ରକୃତିକୁ ତଥା ବିଶ୍ୱସ୍ରଷ୍ଟା ବା ଈଶ୍ୱରଙ୍କୁ ତିଆରି କରିବା ପାଇଁ ସମର୍ଥ ହୋଇନାହିଁ । ଏଣୁ ଆଦିମ କାଳରୁ ମଣିଷ, ମଣିଷର ସୃଷ୍ଟି, ସ୍ୱରୂପ, କ୍ରମବିବର୍ତ୍ତନ ସଂପର୍କରେ ନାନା ଦିଗରୁ ବିଚାର ଆଲୋଚନା କରି ଆସିଛି ମାତ୍ର । ଏ ବିଚାର ଆଲୋଚନା ମଧ୍ୟଦେଇ ମଣିଷର ଜୀବନ ଯେପରି ବିବର୍ତ୍ତିତ ହୋଇଛି, ସେ ପ୍ରକୃତିର ମଧ୍ୟ କିଛିଟା ପରିବର୍ତ୍ତନ ସାଧନ କରିଛି । ବିଭିନ୍ନ ପ୍ରାକୃତିକ ପରିବେଶରେ ଓ ବିଭିନ୍ନ ସମୟରେ ମଣିଷ ବିଶ୍ୱ–ଶକ୍ତିକୁ ବିଭିନ୍ନ ରୂପ ନେଇ ଦେଖିବାକୁ ଚେଷ୍ଟା କରିଛି । ତଥାପି ସେ ଚିନ୍ତା ଏବେ ମଧ୍ୟ ରହସ୍ୟମୟ ହୋଇ ରହିଛି । ବ୍ୟାପକ ଅର୍ଥରେ ବିଚାର କଲେ ମଣିଷ ଓ ବିଶ୍ୱ–ସ୍ରଷ୍ଟାହିଁ ଏହି ପ୍ରକୃତିର ଅଂଶ ବିଶେଷ ।

ଜଗତର ଏହି ସତ୍ୟ ଯଥା:—ମଣିଷ, ପ୍ରକୃତି ଓ ଭଗବାନ ଏବଂ ଜଗତର ଏହି ସିଦ୍ଧାନ୍ତ ଯଥା:– ଶିକ୍ଷା, କଳା ଓ ସଂସ୍କୃତିକୁ ବିଭିନ୍ନ ଦୃଷ୍ଟିକୋଣରୁ ବିଚାର ଆଲୋଚନା କରିବା ହିଁ ସୃଜନଶୀଳ ମାନବର ଲକ୍ଷ୍ୟ । ଏହି ସିଦ୍ଧାନ୍ତର ଅନ୍ତିମ ଆଲୋଚନାହିଁ କୌଣସି କବି, ଲେଖକ ବା କଳାକାରଙ୍କର ବିଚାରଧାରା ।

ସ୍ୱର୍ଗତ ମାୟାଧର ମାନସିଂହ ଜଣେ  କେବଳ ପ୍ରମୁଖ କାବ୍ୟ–ସ୍ରଷ୍ଟା ନୁହନ୍ତି, ଜୀବନ ଓ ଜଗତ ସଂପର୍କରେ ତାଙ୍କର ଜିଜ୍ଞାସାବୋଧ ତାଙ୍କ ପ୍ରବନ୍ଧ ମାନଙ୍କରେ ମଧ୍ୟ ଉତ୍କୀର୍ଣ୍ଣ । 'ଧୂପ', ହେମପୁଷ୍ପ, ମାଟିବାଣୀ ତଥା କମଳାୟନ ଓ ପୁଷ୍ପିତା'ରେ ରୋମାଣ୍ଟିକ କବି, ଗୀତା ମହାତ୍ମ୍ୟ, ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ ଆଦି ମୌଳିକ ପ୍ରବନ୍ଧ ଗ୍ରନ୍ଥ ଗୁଡିକରେ ଅନବଦ୍ୟ ଚିନ୍ତାର ସ୍ୱାକ୍ଷର ଛାଡି ଯାଇଛନ୍ତି । ତାଙ୍କର ବିଭିନ୍ନ କବିତା ଭିତରଦେଇ ଆରମ୍ଭ ହୋଇଥିବା ପ୍ରଶ୍ନବାଚୀ, 'ଗୀତା ମହାତ୍ମ୍ୟ' ଆଦିରେ ଯେ ଭଳି ଉତ୍ତରର ସଂଧାନ କରିଛି, ସେପରି ଜୀବନର ଉତ୍ତରଣ ସଂଗେ ସଂଗେ ମାନସିଂହଙ୍କ ବିଚାରଧାରାର ମଧ୍ୟ ଉତ୍ତରଣ ଘଟିଛି । ତାଙ୍କ ବିଚାରଧାରାର ସ୍ୱରୂପ ଏବଂ ବିବର୍ତ୍ତନ, ଜଗତ ଓ ଜୀବନର ମୌଳ ସ୍ୱରୂପ ନେଇ ଯେଉଳି ଭାବରେ ନିଜକୁ ଅଭିବ୍ୟକ୍ତ କରିଛି ତାହା ଏଠାରେ ସୂଚୀତ ।

---

ମାନସିଂହଙ୍କ ବଗୃରଧାର

# ଚତୁର୍ଥ ଅଧ୍ୟାୟ

ମଣିଷ

# ଚ ତୁ ର୍ଥ  ଅ ଧ୍ୟା ୟ

## —: ମ ଣି ଷ :—

ମଣିଷ, ପ୍ରକୃତି ଓ ଭଗବାନ, ବୃହତ୍‌ରେ ଦୃଷ୍ଟିକୋଣରୁ ମଣିଷର ବିଶ୍ୱାସରେ ମୂଳାଧାର ପ୍ରକୃତିର ଏକ ଅଂଶ ଓ ରୂପାନ୍ତର କିନ୍ତୁ ବିବର୍ତ୍ତନର ଏକ ପର୍ଯ୍ୟାୟରେ ପହଁଚିଲା ପରେ ମଣିଷ ପ୍ରକୃତି ଠାରୁ କ୍ରମଶଃ ବିଚ୍ଛିନ୍ନ ହୋଇ ପଡ଼ିଛି ଓ ପ୍ରକୃତି ଠାରୁ ନିଜର ସୀମିତ ସ୍ୱାଧୀନତା ହାସଲ କରିଛି । ରେନେସାଁ ପରବର୍ତ୍ତୀ ୟୁରୋପ ଓ ଊନବିଂଶ ଶତାବ୍ଦୀ ପରେ ଭାରତରେ ସାହିତ୍ୟ, ଦର୍ଶନ, ଧର୍ମ ଆଦି ଶାସ୍ତ୍ରର କୈନ୍ଦ୍ରିକ ବିନ୍ଦୁ ହୋଇଉଠିଛି ମଣିଷ । ମଧ୍ୟଯୁଗରେ ବିଜ୍ଞାନ, ଇତିହାସ ଓ ମଣିଷ ସଂକ୍ରାନ୍ତୀୟ ସମସ୍ତ ଜ୍ଞାନ ଧର୍ମର ଅଧୀନ ଥିଲା । କିନ୍ତୁ ଊନବିଂଶ ଶତାବ୍ଦୀ ପରେ, ଅନ୍ତତଃ ଭାରତୀୟ ଚିନ୍ତାରେ ମଣିଷ କ୍ରମଶଃ ନିଜର ଗୁରୁତ୍ୱକୁ ଜାହିର କରିଛି । ମାନସିଂହଙ୍କ ଭଳି ସଚେତନ ବୁଦ୍ଧିଜୀବୀ ତଥା ସାହିତ୍ୟ ସ୍ରଷ୍ଟା ପ୍ରକୃତି ଓ ଭଗବାନଙ୍କୁ ଅବହେଳା ନ କଲେବି ମଣିଷକୁ ଅସ୍ୱୀକାର କରିବା ପାଇଁ ସମର୍ଥ ହୋଇ ନାହାନ୍ତି ।

ମାନସିଂହଙ୍କ ମଣିଷ ସଂପର୍କୀୟ ଧାରଣାକୁ ବିଶ୍ଳେଷଣ କରିବାକୁ ହେଲେ ତାଙ୍କର ବିଭିନ୍ନ ପୁସ୍ତକରେ ସେ ଦେଇଥିବା ମନ୍ତବ୍ୟକୁ ଅବତାରଣା କରିବାକୁ ପଡିବ । ମାନସିଂହ ମଣିଷର ସଂଜ୍ଞା ଦେବାକୁ ଯାଇ ଲେଖିଛନ୍ତି:— "ବିଧାତା ମନୁଷ୍ୟକୁ ଜନ୍ତୁମାନଙ୍କ ଅପେକ୍ଷା ଏକ ଅଧିକା ବଥା ଦେଇଛନ୍ତି—ତାହା ହେଉଛି ବିବେକ । ବିଶ୍ୱରର ସ୍ତବକ ଧରି ବିବେକ ବସିଛି ଆମ ପ୍ରତ୍ୟେକଙ୍କ ଭିତରେ । ତା' ସ୍ତବକକୁ ଆମେ ଯେତିକି ସମ୍ମାନ ଦେବା, ସେହି ପରିମାଣରେ ଆମେ ଜନ୍ତୁରୁ ହେବା ମନୁଷ୍ୟ । ଯେଉଁ ପରିମାଣରେ ତା'ର ସ୍ତବକକୁ ଖାତିର ନକରି ପ୍ରବୃତ୍ତିର ପ୍ରେରଣାରେ ଭାସିଯିବୁ, ସେହି ପରିମାଣରେ ହେବୁ ମନୁଷରୁ ଜନ୍ତୁ ।"(୧)

ମାନସିଂହଙ୍କ ମତାନୁସାରେ: (କ) ମଣିଷ ପଶୁସ୍ତରର ଏକ ଉତ୍ତରଣ—ତା'ର ବିବେକ ଅଛି, ତା'ର ବିକାଶ ଅଛି ।

(ଖ) ମଣିଷ ବିଭିନ୍ନ ଜାତି, ଧର୍ମ, ସଂପ୍ରଦାୟରେ ବିଭକ୍ତ ହେଲେ ବି, ଭୌଗୋଳିକ ସ୍ଥିତି ମଣିଷ ଠାରୁ ମଣିଷକୁ ବିଚ୍ଛିନ୍ନ କଲେବି ତା'ର ଏକ ସର୍ବ    ମାନବୀୟ କୌଳିନ୍ୟ ରହିଛି ।

(ଗ) କୌଣସି ଏକ ଅଦୃଶ୍ୟ ବିଧାତାଙ୍କର ସମସ୍ତେ ସନ୍ତାନ ସନ୍ତତି । ଗୋଟିଏ ପରିବାର ଭିତରେ ବର୍ତ୍ତମାନ ନିର୍ବିଶେଷରେ ପ୍ରତ୍ୟେକ ସଭ୍ୟର ବଞ୍ଚିବାର ଉପଭୋଗ କରିବାର ସର୍ବନିମ୍ନ ଆବଶ୍ୟକତା ରହିଛି । ପରିବାର ଭିତରେ ଦ୍ୱନ୍ଦ୍ୱ ଥିଲାଭଳି, ଏହି ବୃହତ ମାନବ ପରିବାର ମଧ୍ୟ ଦ୍ୱନ୍ଦ ମୁଖର । ଗୋଟିଏ ପରିବାରରେ ସୁଜନ ଏବଂ ଦୁର୍ଜନ ଏକତ୍ର ସହାବସ୍ଥାନ କଲାଭଳି, ବର୍ତ୍ତମାନ ଭେଦଭାବ ରହିଲା ଭଳି, ମଣିଷ ପରିବାରରେ ମଧ୍ୟ ସେ ବିଭେଦ ରହିଛି ।(2) ଏହି ମାନବ ସମାଜର ସର୍ବଶ୍ରେଷ୍ଠ ଗରିମା ପ୍ରକାଶ ପାଏ ମହାପୁରୁଷଙ୍କ ଜୀବନ ମାଧ୍ୟମରେ । ମାନସିଂହ ତାଙ୍କ ନିଜ ଜୀବନକାଳ ମଧ୍ୟରେ ଆସିଥିବା ବିଭିନ୍ନ ମହାପୁରୁଷଙ୍କୁ ଅତ୍ୟନ୍ତ ଅନ୍ତରଙ୍ଗ ଭାବରେ ଦେଖି ସେମାନଙ୍କ ଜୀବନର ସୁଗୁଣାବଳୀକୁ ମଣିଷ ଜୀବନର ଆଦର୍ଶ ଭାବରେ ଉପସ୍ଥାପିତ କରିଛନ୍ତି ।

ମାନବ ଗୋପବନ୍ଧୁଙ୍କ ସଂପର୍କରେ ଆଲୋଚନା କଲାବେଳେ, ମନୁଷ୍ୟ ସମାଜରେ ତିନି ପ୍ରକାର ମଣିଷକୁ ଆଦର ତଥା ସମ୍ମାନ ପ୍ରଦର୍ଶନ ପାଇଁ ସେ ସୁପାରିଶ କରିଛନ୍ତି ସେମାନେ ହେଲେ: ସୈନିକ, ଶିକ୍ଷକ ଓ ନନ୍ଦକ ।(3) ପୁନଶ୍ଚ ମାନବିକତାର କବି ମେହେରଙ୍କ ସଂପର୍କରେ ଆଲୋଚନା କଲାବେଳେ ସେ 'ସ' ଆଦ୍ୟ ତିନି ପ୍ରକାର ବ୍ୟକ୍ତିଙ୍କୁ ବରେଣ୍ୟ ବ୍ୟକ୍ତିତ୍ୱ ଭାବରେ ବ୍ୟକ୍ତ କରିଛନ୍ତି, ସେମାନେ ହେଲେ: ସ୍ରଷ୍ଟା, ସୈନିକ ଓ ଶିକ୍ଷକ ।(4) ଅବଶ୍ୟ ପୂର୍ବବର୍ତ୍ତୀ ବିଭାଗୀକରଣ ଓ ପରବର୍ତ୍ତୀ ବିଭାଗୀକରଣରେ ଖୁବ୍‌ବେଶୀ ତଫାତ୍ ନାହିଁ । ମାତ୍ର ମାନସିଂହ ଜୀବନର ଉତ୍ତରାର୍ଦ୍ଧରେ ମାନବିକ ଶ୍ରେଷ୍ଠତ୍ୱର ମାନଦଣ୍ଡକୁ ପାଞ୍ଚଗୋଟି ଦୃଷ୍ଟିକୋଣରୁ ବିଗ୍ଭର କରିଥିବାର ଦେଖାଯାଏ । ଯଥା:– (କ) ପ୍ରତିଭା, (ଖ) ସାଧନା, (ଗ) ତ୍ୟାଗ, (ଘ) ଐଶ୍ୱର୍ଯ୍ୟମୟ ବ୍ୟକ୍ତିତ୍ୱ, (ଙ) ସାଧୁତା ।(5)

ଉପର୍ଯ୍ୟୁକ୍ତ ତିନିଶ୍ରେଣୀର ମଣିଷକୁ ଆଦର ତଥା ସମ୍ମାନ କରିବାର କାରଣ ସ୍ୱରୂପ ମାନସିଂହ ଦର୍ଶାଉଛନ୍ତି ଯେ, ସୈନିକ ପୂର୍ବର କ୍ଷତ୍ରିୟ ବା ମଧ୍ୟଯୁଗୀୟ ଇଉରୋପର ନାଇଟ୍ ବା ସାଧାରଣ ବୀରପୁରୁଷ, ଯେଉଁମାନେ କି ଦୁର୍ବଳକୁ, ଦେଶକୁ ଓ ଧର୍ମକୁ ନିଜର ପ୍ରାଣ ବିପନ୍ନ କରି ରକ୍ଷା କରିବାକୁ ଯାଆନ୍ତି । ଏ କାମ କେବଳ ଅସ୍ଥିସ୍ନାୟୁ ବା ମାଂସପେଶୀର ଦୃଢତା ଘେନି ସମ୍ଭବ ହୋଇ ନ ଥାଏ । ପୃଥିବୀରଯିଏ ଯେଉଁଠି ଅନ୍ୟାୟର ପ୍ରତିବାଦରେ ଠିଆହୁଏ, ସେହି ଜାଣ ଏକ ସୈନିକ । ପୃଥିବୀର ସକଳ ଜନନାୟକ ଜଣେଜଣେ ସୈନିକ ।(6) ବୀରର ସଂଜ୍ଞା ପ୍ରକାଶ କରି ମାନସିଂହ କହନ୍ତି:–"ଯେଉଁ ଗୌରବ ମନୁଷ୍ୟର ରକ୍ତରେ ଅଭିଷିକ୍ତ ଏବଂ ଯେଉଁ ଆନନ୍ଦ ମନୁଷ୍ୟର ଦୁଃଖରୁ ଜାତ, ତାହା ଘୃଣ୍ୟ । ଯେ ଖୁବ୍ ହଣାହଣି କରିପାରେ ସେ ଗୋଟିଏ ସିପାହୀ, ସେ ବୀର ନୁହେଁ । ବୀର ବୃଥା ନାଶ କରେ ନାହିଁ; ବରଂ ନିଜେ ନଷ୍ଟ ହୋଇଯାଏ ମାନବର ମଙ୍ଗଳପାଇଁ ।(7) ସେହିପରି ପ୍ରବୃତ୍ତିର ସ୍ରୋତରେ ନିଜକୁ ଉଡାଇ ନେଉଥିବା ମଣିଷକୁ ଟାଣିଆଣି ସଦ୍‌ମାର୍ଗ, ସତଚିନ୍ତା, ସତକର୍ମ କ'ଣ ତାହା ବତେଇ ଦେବାପାଇଁ ଯେଉଁମାନେ ପ୍ରୟାସ କରନ୍ତି, ସେମାନେ ହେଲେ ଶିକ୍ଷକ । ମାନସିଂହଙ୍କ ତୃତୀୟ ପ୍ରକାର ମଣିଷ ହେଲେ ନନ୍ଦକ । ଗାୟକ, ବାଦକ, ନଟ, ଭାଟ,

ପ୍ରଭୃତି ମନୁଷ୍ୟକୁ ପ୍ରତ୍ୟକ୍ଷ ଭାବରେ ଆନନ୍ଦ ପ୍ରଦାନ କରୁଥିବାରୁ ଏ ଶ୍ରେଣୀକୁ ମାନସିଂହ ସମ୍ମାନ ଦିଅନ୍ତି । ତାଙ୍କ ବିଭାଗୀକରଣରେ ସ୍ରଷ୍ଟା ବା କବି ହିଁ ଆନନ୍ଦ ପ୍ରଦାନକାରୀ ନନ୍ଦକ ଶ୍ରେଣୀର । ମାନସିଂହଙ୍କର ଏହି ବିଭାଗୀକରଣ ସଂକୀର୍ଣ୍ଣ ଆର୍ଥିକତାରେ ସୀମାବଦ୍ଧ ନୁହେଁ । ସେ କହନ୍ତି:—"ସାଧୁ ସେ ଯେଉଁ ଜାତିର ହେଉନା କାହିଁକି—ମୋ'ର ଶ୍ରଦ୍ଧା ଭାଜନ । ସ୍ରଷ୍ଟା—ସେ ଯେଉଁ ଜାତିର ହେଉନା କାହିଁକି ମୋ'ର ନମସ୍କରଣୀୟ । ମନୁଷ୍ୟର ଶ୍ରେଷ୍ଠତ୍ୱ ଯେ କେବଳ ସୃଷ୍ଟିରେ ଏ କଥା ଆମେ ବରାବର ଭୁଲିଯାଉ । ମନୁଷ୍ୟ ଓ ଇତର ପ୍ରାଣୀମାନଙ୍କ ମଧ୍ୟରେ ଏଇଠାରେ ପାର୍ଥକ୍ୟ ।"(୯) ମାନସିଂହଙ୍କର ସମଗ୍ର ସୃଷ୍ଟି ଅନୁଧ୍ୟାନ କଲେ, ସେ ମଣିଷର ସ୍ୱରୂପକୁ ମୁଖ୍ୟତଃ ଉପରୋକ୍ତ ତିନୋଟି ଭାବରେ ଚିତ୍ରଣ କରିଥିବାର ଜଣାଯାଏ ।

**ବି ବ ର୍ତ୍ତ ନ :**

ମଣିଷର ସୃଷ୍ଟି ତଥା ବିବର୍ତ୍ତନ ସଂପର୍କରେ ମାନସିଂହଙ୍କ ଧାରଣା ବିଭିନ୍ନ ସମୟରେ ପରିବର୍ତ୍ତିତ ହେଉଥିବାର ଲକ୍ଷ୍ୟ କରାଯାଏ । 'ନଷ୍ଟନୀଡ' ନାଟକରେ ସୃଷ୍ଟିର କଳ୍ପନା ପାଇଁ ପାର୍ଶି ଧର୍ମଗୁରୁ ଜରାଥୁଷ୍ଟଙ୍କ ମତ ଗ୍ରହଣ କରିଛନ୍ତି । ସେ ମତ ଅନୁସାରେ ଏ ସୃଷ୍ଟି ଦୁଇଟି ବିରାଟ ଶକ୍ତିର ରଣକ୍ଷେତ୍ର । ଗୋଟିଏ ଭଗବାନ, ଗୋଟିଏ ସଇତାନ । ଏ ଦୁଇ ଶକ୍ତିର ସଂଗ୍ରାମ ଯୁଗଯୁଗ ଧରି ଚାଲିଛି । 'ଅନ୍ୱେଷଣ' ଉପନ୍ୟାସରେ ମଣିଷର ସୃଷ୍ଟି ସଂପର୍କରେ ମାନସିଂହ ବିସ୍ମୟ ପ୍ରକାଶ କରିଛନ୍ତି । ଆଦିପୁରୁଷ କିଏ, ଏକ ବିରାଟ ପ୍ରଶ୍ନବାଚୀ ମଧ୍ୟରେ ରହିଯାଇଛି । ମାତ୍ର ମଣିଷ ସଭ୍ୟତାର ବିକାଶରେ ମାନସିଂହ ଆଦି ମାନବକୁ କୃଷକ ଗୋଷ୍ଠୀ ବୋଲି ସିଦ୍ଧାନ୍ତ ନେଇଛନ୍ତି । ଅବଶ୍ୟ କୃଷକ ହେବା ପୂର୍ବରୁ ମଣିଷ ସଂସାରରେ ଏକ ଜୀବମାତ୍ର ଥିଲା । ପଶୁମାନଙ୍କ ପରି ଶିକାର କରିବାକୁ ଯାଉଥିଲା । ଶିକାର ପାଇଲେ ବଞ୍ଚୁଥିଲା, ନ ହେଲେ ମରୁଥିଲା । କୃଷିହିଁ ମଣିଷର ଭ୍ରାମ୍ୟମାଣ ଲକ୍ଷ୍ୟହୀନ ଜୀବନକୁ ସ୍ଥିର ପ୍ରତିଷ୍ଠିତ କରି ସଭ୍ୟତାର ଅଗ୍ରଗତିରେ ସାହାଯ୍ୟ କଲା । କୃଷି ସଭ୍ୟତା ସାମାଜିକ ସ୍ତରରେ ପହଞ୍ଚିବା ପରେ ସମାଜରେ ସତ୍ୟ ଓ ଜ୍ଞାନ ଚକ୍ଷୁ କଥେଇ ରଖିବା ପାଇଁ ବ୍ରାହ୍ମଣ, କ୍ଷେତ୍ରକୁ ରକ୍ଷା କରିବା ପାଇଁ କ୍ଷତ୍ରିୟ, ଉତ୍ପନ୍ନ ଦ୍ରବ୍ୟର ବିନିମୟ ପାଇଁ ବୈଶ୍ୟ ଓ ସମାଜ ସେବାକାରୀ ଭାବରେ ଶୂଦ୍ରର ସୃଷ୍ଟି ହେଲା । ବିବର୍ତ୍ତନ ସଂପର୍କୀୟ ଚିନ୍ତାଧାରାର ସ୍ପଷ୍ଟରୂପ ପ୍ରକାଶ ପାଇଛି ମାନସିଂହଙ୍କ ଅନ୍ୟତମ କୃତି 'କମଳାୟନ' କାବ୍ୟରେ । ମାନସିଂହଙ୍କ ମାନସପୁତ୍ର କମଳଲୋଚନ ମହାପାତ୍ରଙ୍କ ଉକ୍ତିରେ ମଣିଷର ସୃଷ୍ଟି ସଂପର୍କରେ ଏକ ତର୍କ ପ୍ରତିଯୋଗିତା କରାଇଛନ୍ତି । ତର୍କପ୍ରତିଯୋଗିତାର ବିଷୟବସ୍ତୁ ଥିଲା: 'ମାନବ ସମାଜପ୍ରତି ଡାରୱିନଙ୍କ ବିବର୍ତ୍ତନ ପ୍ରଯୁଜ୍ୟ କି ନୁହେଁ', ଡାରୱିନ୍‌ଙ୍କ ବିବର୍ତ୍ତନବାଦ ସଂପର୍କରେ ଯୁକ୍ତି ଦେଖାଇବାକୁ ଯାଇ, ବିଭିନ୍ନ କାରଣ ଉପସ୍ଥାପନ ଓ ଅନ୍ତିମ ସିଦ୍ଧାନ୍ତ ମାନସିଂହ ପ୍ରଦାନ କରିଛନ୍ତି । ସୃଷ୍ଟି ସଂପର୍କୀୟ ବିବର୍ତ୍ତନ ପାଇଁ କବି ଜୟଦେବଙ୍କ ଦଶାବତାର, ବାଲ୍ମୀକି ରାମାୟଣ ଅନୁସାରେ ବାନରରୁ ନର ସୃଷ୍ଟିର ଯୁକ୍ତି ମଧ୍ୟ ଆସିଛି । ଭାରତୀୟ ପୁରାଣ ଅନୁସାରେ ବ୍ରହ୍ମାଙ୍କର ବିଭିନ୍ନ ଅଙ୍ଗରୁ ମାନବ ସମାଜ ଜାତବୋଲି ଯୁକ୍ତି ଉପସ୍ଥାପନ କରି ସେ ଯୁକ୍ତିକୁ ଅସ୍ୱୀକାର କରିଛନ୍ତି ।

ଡାରଉଇନ୍ଙ୍କ ମୂଳତତ୍ତ୍ୱ ଅନୁସାରେ ବଞ୍ଚିବା ପାଇଁ ଆବେଷ୍ଟନୀକୁ ସୁହାଇଲା ଭଳି ଜୀବ ନିଜକୁ ନିଜେ ବଦଳାଏ ଓ ଆତ୍ମରକ୍ଷା ପାଇଁ ତା'ର ପରିବର୍ତ୍ତନ କରେ । ସେହି ଅନୁସାରେ ମଣିଷର ମସ୍ତିଷ୍କ ଓ ସଭ୍ୟତା ସୃଷ୍ଟି ହୋଇଛି । ପ୍ରକୃତିରୁ ସୃଷ୍ଟି ହୋଇଥିବା ମଣିଷ ଆଜି ପ୍ରକୃତିର ଶତ୍ରୁ ପାଲଟିଛି । ଏ ପ୍ରକାର ଯୁକ୍ତି ଜଣେ ବିଜ୍ଞାନ ଛାତ୍ର ଦ୍ୱାରା ପ୍ରଦାନ କରାଯାଉଛି । ମାନସିଂହଙ୍କ ମାନସପୁତ୍ର କମଳଲୋଚନ ପୂର୍ବଯୁକ୍ତିକୁ ସମର୍ଥନ କରିବା ସଂଗେ ସଂଗେ ସେଥିରେ କେତେକ ସଂଶୋଧନ ଆଣିଛନ୍ତି । ମାନସିଂହଙ୍କ ଯୁକ୍ତି: ବିଜେତା କ'ଣ ଚିର ଉପାସ୍ୟ ? ସଂଘର୍ଷ କ'ଣ ଜୀବନର ଏକମାତ୍ର ଲକ୍ଷଣ ? ଭୋଗ ବିଳାସ କ'ଣ ମନୁଷ୍ୟର ଶ୍ରେଷ୍ଠ ଆଚରଣ ? ମନୁଷ୍ୟ ସେହି ଗତାନୁଗତିକ ପ୍ରାକୃତିକ କ୍ରିୟା ଉପରେ ନିର୍ଭର କଲେ, ଏ ସୃଷ୍ଟି ଏବେବି ନଥା'ନ୍ତା, କେବଳ ସଂଘର୍ଷ ହିଁ ଲାଗିଥା'ନ୍ତା । ମଣିଷ କେବଳ ପ୍ରକୃତି ସୃଷ୍ଟ ନୁହେଁ, ପ୍ରକୃତି ମଧ୍ୟରେ ପ୍ରଚ୍ଛନ୍ନ ଭାବରେ ଦେବତ୍ୱ ରହିଛି । ପ୍ରକୃତିରେ ବା ମଣିଷ ମଧ୍ୟରେ ଯେତେବେଳେ ସ୍ୱାର୍ଥର ନାଶ ହୋଇ ପରାର୍ଥର ବିକାଶ ହୁଏ, ସେତେବେଳେ ବିବର୍ତ୍ତନରୁ ସୃଷ୍ଟି ଆସେ । ପଶୁତ୍ୱର ଦେବତ୍ୱକୁ କ୍ରମ ଉନ୍ନୟନରେ ସୃଷ୍ଟିର ବିବର୍ତ୍ତନ ସମ୍ଭବ ହୋଇଛି । ପ୍ରାଚୀନ ଭାରତର ମୁନି ଋଷିମାନଙ୍କର ଉଦାହରଣ ଦେଇ ସେ କହିଛନ୍ତି ଯେ ଡାରଉଇନ୍ଙ୍କ ମତଅନୁସାରେ ଭୋଗ ଓ ସଂଘର୍ଷରୁ ସୃଷ୍ଟିର ଉଦ୍ଭବ ସମ୍ଭବ ନୁହେଁ, ପଶୁତ୍ୱର ବିନାଶରେ ଦେବତ୍ୱର ଆବିର୍ଭାବ ହୋଇ ସୃଷ୍ଟି ସମ୍ଭବ ହୋଇଛି । (୨)

**ମଣିଷ ଜୀବନର କ୍ରମବିକାଶ :**

ପ୍ରେମ ଓ ଯୌବନର କବି ଡକ୍ଟର ମାୟାଧର ମାନସିଂହଙ୍କ ସୃଷ୍ଟିରେ ମଣିଷ ଜୀବନର କ୍ରମବିକାଶର ଛବି ବିରଳ । କବି ମାନସିଂହ ପ୍ରାଚୀନ ଓଡିଆ କାବ୍ୟ(ଅଗଷ୍ଟ, ୧୨32)ର ଆଲୋଚନା ସମୟରେ ପ୍ରାଚୀନ କାବ୍ୟ କବିତାକୁ ଯେଉଁ ଦୃଷ୍ଟିରୁ ସମାଲୋଚନା କରିଥିଲେ, ନିଜର ସୃଷ୍ଟିରେ ସେ ସମସ୍ତକୁ ଅତିକ୍ରମ କରିଛନ୍ତି ବୋଲି ମନେହୁଏ ନାହିଁ । ମାନସିଂହ, ଭଞ୍ଜ ଓ ଭଞ୍ଜାନୁଗ ଓଡିଆ କବିମାନଙ୍କର କାବ୍ୟକୁ ଏକ ପ୍ରାସାଦବାସିନୀ ରାଜରାଣୀ ଭାବରେ କଳ୍ପନା କରିଥିଲେ ।"ସେ ପ୍ରାସାଦର ଅଂଗନ କର୍ପୂର ରଜରେ ବିଛୁରିତ, ଟଉାଫଳ ଖୋସା ଚେଟୀ, x x x ବିରହଛୁଡା ସେଠାରେ ବେଦନା ନାହିଁ, ପ୍ରେମାଶ୍ରୁଛୁଡା ସେଠାରେ ଅଶ୍ରୁ ନାହିଁ, କ୍ରୋଧ କେବଳ ଅଭିମାନରେ ପର୍ଯ୍ୟବସିତ"।(୮) ଇତ୍ୟାଦି ଇତ୍ୟାଦି । ମାନସିଂହଙ୍କ କାବ୍ୟ କବିତାରେ ପ୍ରେମର ଯେପରି ବ୍ୟାପକ ବର୍ଣ୍ଣନା ରହିଛି, ସେ ଦୃଷ୍ଟିରୁ ବିଗ୍ଚରକଲେ ମାନସିଂହ ନିଜ ଆଲୋଚନାକୁ ସାର୍ଥକ କରିଥିବାର ଜଣାଯାଏ ନାହିଁ । ଏ ସଂପର୍କରେ ପରେ ଆଲୋଚନା କରାଯାଉଅଛି । ମାତ୍ର ମଣିଷ ଜୀବନର କ୍ରମବିକାଶରେ, ଶୈଶବ, ଯୌବନ, ବାର୍ଦ୍ଧକ୍ୟ କ୍ରମରେ ବିଗ୍ଚର କଲେ, ମାନସିଂହଙ୍କ ସାହିତ୍ୟ ସୃଷ୍ଟିରେ ସେ କ୍ରମର ଚିତ୍ର ବିରଳ ।

ବୈଷ୍ଣବ କବିମାନେ ବାତ୍ସଲ୍ୟ ରସର ଅବତାରଣା ପାଇଁ, ଟାଣି ଓଟାରି ଶ୍ରୀକୃଷ୍ଣଙ୍କର ବାଲ୍ୟଲୀଳା

ବର୍ଣ୍ଣନା କରୁଥିଲେ; ମାତ୍ର 'ଜେମା', 'କମଳାୟନ' ପ୍ରଭୃତି କାବ୍ୟ ଓ କେତେକ କବିତାରେ ବାଲ୍ୟଚିତ୍ର ପ୍ରଦାନର ସୁଯୋଗ ଆସିଥିଲେ ମଧ୍ୟ, ମାନସିଂହ ଶୈଶବାବସ୍ଥା ବର୍ଣ୍ଣନା ପ୍ରତି ଧ୍ୟାନ ଦେଇନାହାନ୍ତି । ବରଂ କାବ୍ୟର ଭିନ୍ନ ପର୍ଯ୍ୟାୟରେ ବାର୍ଦ୍ଧକ୍ୟକୁ କେବଳ ଭୟ କରିନାହାନ୍ତି, ବାର୍ଦ୍ଧକ୍ୟ ନାମ ଶୁଣିବା ପାଇଁ ଅନିଚ୍ଛା ପ୍ରକାଶ କରିଛନ୍ତି । ଏ ସମସ୍ତ ଗତାନୁଗତିକତା ସତ୍ତ୍ୱେ କେତେକ ସ୍ଥାନ ରେ ମାନସିଂହଙ୍କ ଲେଖାରେ ବ୍ୟତିକ୍ରମ ଦେଖିବାକୁ ମିଳେ ।

'ଧୂପ'ର ଉଦ୍ଦାମ ପ୍ରେମ ବର୍ଣ୍ଣନା 'ହେମଶସ୍ୟ'ରେ ଶାନ୍ତ ହୋଇ ଆସିବା ପରେ, ପ୍ରେମିକ କବି ସ୍ୱାମୀ ରୂପରେ ଓ ପରେ ଜନକ ଭାବରେ ପରିବର୍ତ୍ତିତ ହୋଇଛନ୍ତି । 'ନବଜନନୀ'ଓ'ନାରୀର ଅହ୍ୱାନ'ରେ ସନ୍ତାନ ଜନ୍ମ ପରର ଅବସ୍ଥା ତଥା ଶିଶୁ ସମ୍ପର୍କରେ କେବଳ ସୂଚନା ପ୍ରଦାନ କରାଯାଇଛି । କିନ୍ତୁ ପୂର୍ବ-ଗଡ଼ଜାତ ସ୍କୁଲର ଶିକ୍ଷା ପରାମର୍ଶଦାତା ଭାବରେ ସମ୍ବଲପୁରରେ ଅବସ୍ଥାନ କାଳରେ, କବିଙ୍କର ପ୍ରିୟ କନ୍ୟା ପଦ୍ମଶ୍ରୀ ର ଅକାଳ ମୃତ୍ୟୁ କବିଙ୍କୁ ଦାରୁଣ ବ୍ୟଥା ଦେଇଛି । ସେହି ବ୍ୟଥାରୁ ଜନ୍ମ ନେଇଛି କବିଙ୍କ ବ୍ୟଥା ଜର୍ଜର ପ୍ରାଣର ଆଲେଖ୍ୟ କେତୋଟି କାଳଜୟୀ କବିତା 'ମୋ ଧନରେ', 'ଯାଇଛି ସେ', 'ଶିଶୁର ଦାନ', ରୂପାନ୍ତର', । ଏହା ବ୍ୟତୀତ 'ମୁଁ ଅଛି, ମୁଁ ଅଛି', ନିଃସହାୟ'ଓ'କିଶୋର କବିତା' (11) ପୁସ୍ତକର କେତୋଟି କବିତାରେ ଶିଶୁ ସମ୍ପର୍କରେ ସୂଚନା ଥିଲେ ହେଁ; ମୋଟ ଉପରେ ମାନସିଂହ, ମାନବର ଶିଶୁ ତଥା କିଶୋର ସମୟର ସ୍ପଷ୍ଟ ପ୍ରତିଫଳନ ପ୍ରଦାନ କରିବାରେ ସଫଳତା ଲାଭ କରିପାରି ନାହାନ୍ତି ।

ମାନବ ଜୀବନର ପରବର୍ତ୍ତୀ ଅବସ୍ଥା ଯୌବନ । ଏହି ଯୌବନର ଗାଥା ଗାଇବାରେ ମାନସିଂହଙ୍କ କାବ୍ୟ କବିତା ଯେପରି ଉଚ୍ଛ୍ୱଳ, ଯୌବନ ସମ୍ପର୍କରେ ତାଙ୍କ ମତ ସେପରି ପ୍ରଣିଧାନ ଯୋଗ୍ୟ ।: "ଯୌବନ, ଧନୀ-ଦରିଦ୍ର ନିର୍ବିଶେଷରେ ସକଳ କିଶୋର କିଶୋରୀଙ୍କି କରିନିଏ, ରାଜପୁତ୍ର ରାଜକନ୍ୟା-ଅନ୍ତତଃ କିଛିକାଳ ପାଇଁ । ମାଟିର ପୃଥିବୀ ସ୍ୱର୍ଗ ହୋଇ ଉଠେ । ଜୀବନର ପ୍ରଥମ ଓ ପ୍ରଧାନ ଆକର୍ଷଣ ହୁଏ, ଏହି ରାଜପୁତ୍ର ରାଜକନ୍ୟାର ଦଳ ପରସ୍ପରକୁ କିପରି ପାଇବେ । ତା'ନହେଲେ ଏ ଜୀବନ ଯେ ବୃଥା ।"(12)

ଏହି ଉଦ୍ଦାମ ବୟସରେ ମାନସିଂହଙ୍କ ତରୁଣ କବିମନ ସବୁ କିଶୋରୀଙ୍କ ଚିବୁକ ଧରି, ରସିକ ପରି ବୁଲିବାର କଳ୍ପନା କରେ; ଅସରା ସ୍ପନ୍ଦିନୀ ଯାମିନୀରେ ରାଧାର କୋମଳ ଜଘନ ଉପରେ ଜୀବନ ମରଣକୁ ସପନ ପରି ଭୁଲିଯିବାର କାମନା କରେ । ଈରାନୀ-କିଶୋରୀର ଗୁଲ ବଦନକୁ ନ ପାଶୋରିବା ପାଇଁ ପ୍ରାଣ ଅହରହ ବିକଳ ହୋଇ ଉଠେ । ଯୁଗ୍ମବେଣୀର ଶୋଭା, ଦ୍ରାକ୍ଷା ସୁକୋମଳ ଟଳମଳ ଅଧରରୁ ଝରୁଥିବା ବୟସର ବିଷକୁ ପାନ କରିବା ପାଇଁ ମାନସିଂହଙ୍କ କବିପ୍ରାଣ ଚଞ୍ଚଳ ହୋଇ ଉଠିଛି । ଯୁବକର ପ୍ରାଣ ଅସରନ୍ତି ପ୍ରେମର ଭଣ୍ଡାର । ନଷ୍ଟକୁ ପ୍ରାଣ ସମର୍ପଣ କଲେ ସେ ଭଣ୍ଡାର ଶେଷ ହୁଏ ନାହିଁ ।(13) ଏହିପରି ଚିନ୍ତା କରୁଥିବା କବି ପ୍ରାଣ 1933 ମସିହା ବେଳକୁ, ନାରୀ ଓ ପୁରୁଷର ମଧ୍ୟରେ ପ୍ରେମର ବିନିମୟକଥା ଚିନ୍ତା କରିଛି ।"ପ୍ରେମର ବିନିମୟ ହେଲେ, ପୁରୁଷ ଇଚ୍ଛାକରେ, ନାରୀକୁ ରାଣୀକରି ତା'ର ପଦସେବା କରିବ । ନାରୀ ଇଚ୍ଛାକରେ ପୁରୁଷକୁ ଦେବତା କରି ତା'ର ସେବାକାରିଣୀ ଦାସୀ ହେବ ।

ଉଭୟର ଏହି ଅହଂ ବିନାଶରେ, ପ୍ରେମ ପ୍ରତିଷ୍ଠା ଲାଭ କରେ, ଜୀବନ ସୁଖମୟ ହୁଏ । ଏହି ଶାଶ୍ୱତ ଭାବ ମାନବ ହୃଦୟରେ ଥିବାରୁ, ସମାଜ ଟିଷ୍ଠି ପାରିଛି । ଗୃହ ପରିବାରର ପବିତ୍ର ପରିଧି ମଧ୍ୟରେ ମାନବଜାତି ବଢି ଆସିଛି । ଏହି ଭାବର ଅଭାବରୁ ପାଶ୍ଚାତ୍ୟ ଜଗତରେ ଆଜି ବିଭ୍ରାଟ ଘଟୁଛି । ଏ ଦେଶରେ କିନ୍ତୁ ନାରୀ ଓ ପୁରୁଷମାନଙ୍କ ସମ୍ପର୍କ ଏହାହିଁ ଆଦର୍ଶ । ନାରୀ ଗୃହକର୍ମରେ, ସେବାରେ ଦାସୀ, ହୃଦୟରେ ରାଣୀ– ଏହି ମହାଭାବ କି ସୁନ୍ଦର-- ଭାବରେ ବିକଶିତ ହୋଇଛି ।"(14)

ଭାରତୀୟ ଦୃଷ୍ଟିକୋଣରୁ ଏହିଭଳି ଆଦର୍ଶ ଗୃହସ୍ଥ ଜୀବନର ବାଣୀ ପ୍ରଗ୍ଭର କରିଥିବା କବି ମାନସିଂହ ବାର୍ଦ୍ଧକ୍ୟକୁ ପ୍ରବଳ ଭୟ କରିଛନ୍ତି । କବି, ଇରାନୀ–କିଶୋରୀର ଶେଷ ଜୀବନରେ, ଜରାର ନୃତ୍ୟ–ଭୂମି, ଶିଥିଳ–ଚର୍ମ, ପକ୍ୱ–କେଶ କୁ କଳ୍ପନାରେ ମଧ୍ୟ ଦେଖିବାକୁ ସାହସ କରି ନାହାନ୍ତି । ଇରାନୀ–କିଶୋରୀର ଜରା ରୂପକୁ ଦୂରରୁ ଜୁହାର କରି କହିଛନ୍ତି:—

"ତେଣୁ ଗୋ ବିଦେଶିନି,
ଘନ–ନୀଳ–କେଶିନି,
ଧବଳ–କେଶେ ଦେଖା ପାଇଁ ମୋ,
ଟିକେହେଁ ଅଭିଳାଷ ନାହିଁ ଗୋ;
ମୋ' ପାଇଁ ଥାଅ ଚିର କିଶୋରୀ ସୁତଭଳା,
ଅଧରେ ହଳାହଳ, ନୟନେ ବାଣ ଛୁଟା,
ଚରଣେ ଚିରନାଟ,
ମରମେ ପ୍ରୀତି ହାଟ
ଅଙ୍ଗ ପ୍ରତିଲୋମେ କଟାରୀ,
ହେ ସଖି', ମୁଁ ସେ ରୂପ ଭିଖାରୀ ।"(15)

ଜୀବନ ଚକ୍ରର ଅନ୍ତିମ ପର୍ଯ୍ୟାୟରେ ବାର୍ଦ୍ଧକ୍ୟ ଆସିବ, ଦିବା ରାତ୍ରି ଭଳି ଏହା ସତ୍ୟ ହେଲେ ମଧ୍ୟ ଯୌବନର କବି ଯୌବନକୁ ବାର୍ଦ୍ଧକ୍ୟରେ ମଧ୍ୟ ଖୋଜିଛନ୍ତି । ଜୀବନର ଉତ୍ତରାର୍ଦ୍ଧରେ(1962)ମାନସିଂହଙ୍କ ବକ୍ତବ୍ୟ ଏ ଦୃଷ୍ଟିରୁ ଆହୁରି ସ୍ପଷ୍ଟ

"ଫୁଲଟା ସୁଖି ଝଡିଯାଏ, କିନ୍ତୁ ତା' ସମ୍ପର୍କରେ ବଡକଥା ଶୁଖି ଝଡି ଯିବାଟା, ନା' ସେ ଦିନେ ଫୁଟି ଧରଣୀକି ଗନ୍ଧ ଓ ରୂପରେ ମୁହୂର୍ତ୍ତକ ଲାଗି ହସେଇ ଦେଇଥିବାଟା ? ମନୁଷ୍ୟ ଜୀବନରେ ରୂପ ଓ ଯୌବନ କ୍ଷଣସ୍ଥାୟୀ; ଏଥିରେ ଦ୍ୱିମତ ନାହିଁ । କିନ୍ତୁ ଦିନେ ଶୁକ୍ଳ କେଶ, ସ୍ଥବିର ବୃଦ୍ଧ ହେବି ବୋଲି, ଆଜିର ଯୁବକ ଓ ଯୁବତୀଙ୍କୁ ତାଙ୍କ ପ୍ରାଣର ପ୍ରାଚୁର୍ଯ୍ୟ ଉପଭୋଗ କରିବାକୁ ତାଙ୍କୁ ବିରୋଧ କରିବାରେ କିଁ ଯୁକ୍ତି ଅଛି ? ଆଉ ଜୀବନରେ ଶୁକ୍ଳ କେଶ ଓ ସ୍ଥବିରତ୍ୱ ହିଁ ସଜ ଯୌବନର ଅଶ୍ରୁ, ଆନନ୍ଦ ଓ ଆବେଗ ପ୍ରଭୃତି ଅପରାଧ, ଏହା ସତ୍ୟର ଯେପରି ଅପଳାପ, ସେହିପରି କ୍ଷତିକାରକ ।

॥ ମାନସିଂହଙ୍କ ବିଗ୍ଭରଧାରା ॥

ଯେଉଁ ଦେଶରେ ସନ୍ନ୍ୟାସ ଓ ବୈରାଗ୍ୟ ଆଦର୍ଶବୋଲି ଆଜି ଧରା ହେଉଛି, ସେଠି ରାଜଯୋଗ ଓ ଆୟୁର୍ବେଦ ଭିତ' ର ଦେଇ, ଜରା ବିନାଶ କରି ଯୌବନକୁ ଚିରସ୍ଥାୟୀ କରିବାର ପ୍ରଚେଷ୍ଟା କିପରି ଆସିଲା ? କବିତାରେ ଓ କଳାରେ ଠିକ୍ ଏହି ପ୍ରଚେଷ୍ଟା ହିଁ ପ୍ରକାଶ ପାଉଛି । ଆମେ ଦେଖୁ ଯେ ମନୁଷ୍ୟ ବରାବର ଚେଷ୍ଟାକରି ଆସୁଛି, ତା'ର ଚିର ପଳାୟମାନ ଆନନ୍ଦ ମୁହୂର୍ତ୍ତ ଗୁଡିକୁ ସେ ସାହିତ୍ୟ ଓ କଳାରେ କିପରି ବାନ୍ଧି ରଖିବ ।"(16)

କବି ବାର୍ଦ୍ଧକ୍ୟକୁ ଅସ୍ୱୀକାର କରି ନାହାନ୍ତି, ମାତ୍ର ବାର୍ଦ୍ଧକ୍ୟର ସେହି ବେଦନା ଦାୟକ ମୁହୂର୍ତ୍ତକୁ ଚିନ୍ତାକରି ଯୌବନର ସ୍ୱପ୍ନ ଦେଖିଛନ୍ତି । 'ଅନୂଢା' କବିତାରେ କବିଙ୍କ ଗ୍ରାମର କାର୍ଥିନ ଅପାର ଅସହାୟ ନିଃସଙ୍ଗ ଜୀବନ ସମ୍ପର୍କରେ ବର୍ଣ୍ଣନା ରହିଛି । ସେ ସମ୍ପର୍କରେ କବିଙ୍କ ମନରେ ଅନେକ ପ୍ରଶ୍ନବାଚୀ; ନାରୀ ଯୌବନ କାଳରେ ସ୍ୱପ୍ନ ସାଗରରେ ବୁଡି ରହିଥାଏ, ମାତ୍ର—କାର୍ଥିନ ଅପା (?)

"ବୟସର ବିଷ–ତାନ
ନ ଶୁଣିଲ, ଶୋଉ ନିଶା–ଶେଯେ ;
ତରୁଣୀର ନିଶା–ସ୍ୱପ୍ନ
ଭୁଲିଗଲ କ୍ଷୁଦ୍ର ଶିଶୁ ପରି ।"(17) କାର୍ଥିନ ଅପାର ଜୀବନରେ,

ଯୌବନର ଆବେଦନ ବଧୂର ଅଳତା ନାହିଁ, ଶିଶୁର ମାତା ହେବାର ସୌଭାଗ୍ୟ ଆସିନାହିଁ । ଏ ଧରଣୀ କାର୍ଥିନ ଅପା ପାଇଁ ନିରର୍ଥକ । ତଥାପି ସେ ବଞ୍ଚି ରହିଥିଲେ, ସେ କଥା ମାନବପ୍ରେମୀ କବି ପ୍ରାଣକୁ ବ୍ୟଥିତ କରିଥିଲା ।

ଭକ୍ତକବି ମଧୁସୂଦନଙ୍କର ବାର୍ଦ୍ଧକ୍ୟର ସଂଜ୍ଞା:–"ନୁହେଁ ବୃଦ୍ଧ ସେହି ଜନ ଶୁକ୍ଳକେଶ ଅଟେ ଯା'ର ଶିର, ଯୌବନେ ଯେ ଜ୍ଞାନେ ରତ ଦେବେ ତାକୁ ବୋଲନ୍ତି ସ୍ଥବିର ।"(18) ପରି କବି ମାନସିଂହ ବାର୍ଦ୍ଧକ୍ୟର ସ୍ୱରୂପ ସଂପର୍କରେ ଏକ ଚମତ୍କାର ମନ୍ତବ୍ୟ ପ୍ରଦାନ କରିଛନ୍ତି । ତାଙ୍କ ମତରେ:—" ଯୌବନର ଉଦ୍ଦାମତା ପରେ ଏପରି ଗୋଟିଏ ସମୟ ଆସେ, ଯେତେବେଳେ ମନୁଷ୍ୟ ତା'ର ଚାରିପାଖରେ ଘଟଣା ଓ ବସ୍ତୁ ସମ୍ବନ୍ଧରେ ପ୍ରଶ୍ନ କରିବାକୁ ଆରମ୍ଭ କରେ । ଏ ଜୀବନ କ'ଣ ? ଜୀବନର ଉଦ୍ଦେଶ୍ୟ କ'ଣ ? ଏ ସୃଷ୍ଟି କିଏ କଲା ? ମୃତ୍ୟୁ କ'ଣ ? ଏ ସବୁ ପ୍ରଶ୍ନ ପ୍ରତ୍ୟେକ ବୁଦ୍ଧିମାନ ବ୍ୟକ୍ତିର ମନରେ ଉଦିତ ହୁଏ । ଯୌବନ ଆମ୍ଭମାନଙ୍କ ଆଖିରେ ଗୋଟିଏ ମାୟା ଅଞ୍ଜନ ଲଗାଇ ଦିଏ, ତାହାଯୋଗୁ ଏହି ଧୂଳିମୟ କଠିନ ସଂସାର ନାଟ୍ୟଶାଳାପରି ମନୋହର ଦେଖାଯାଏ । ଯୌବନର ଉଚ୍ଛୃଙ୍ଖଳ ଦିନ ଯେତେବେଳେ ଶେଷ ହୋଇଆସେ, ଯେତେବେଳେ ସତ୍ୟ କ୍ରମେ ଅବତୀର୍ଣ୍ଣ ହୁଏ, ସେତେବେଳେ ଉପରର ପ୍ରଶ୍ନ ଗୁଡିକ ସ୍ୱତଃ ମନରେ ଜାଗ୍ରତ ହୁଏ । ଯେଉଁମାନେ ଯୌବନ ପରେ ଏପରି ପ୍ରଶ୍ନସବୁ ନିଜକୁ ପଚାରନ୍ତି ଓ ତାର ଉତ୍ତର ପାଇଁ ବ୍ୟାକୁଳ ହୁଅନ୍ତି, ସେହି ମାନେହିଁ ପ୍ରକୃତ ମନୁଷ୍ୟ । ଏ ମାନଙ୍କ ସଂଖ୍ୟା ସବୁ କାଳରେ ଓ ସବୁ ଦେଶରେ ଅଳ୍ପ ।"(19) ମାନସିଂହଙ୍କ ଜୀବନର ଉତ୍ତରାର୍ଦ୍ଧରେ ଅଧିକାଂଶ ଲେଖା ଦାର୍ଶନିକ ଭାବାପନ୍ନ । ମଣିଷ ଜୀବନଚକ୍ର ସଂପର୍କୀୟ ଚିତ୍ର ଏତେ ବ୍ୟାପକ ନୁହେଁ, ମାତ୍ର ମଣିଷ ସଂପର୍କୀୟ ଚେତନା ଅନେକ ସ୍ପଷ୍ଟ । ପରେ ସେ ସଂପର୍କରେ ଆଲୋଚନା କରାଯାଉଅଛି ।

## ମଣିଷ ସଂପର୍କୀୟ ଚେତନାର ବିକାଶ :—(ଏକ)

ଜୀବ ଜଗତରେ ମଣିଷର ହିଁ ସମାଜ ଓସଂସ୍କୃତି ରହିଚ୍ଛି । ମାନବେତର ପ୍ରାଣୀମାନେ ଗୋଷ୍ଠୀଗତ ଜୀବନଯାପନ କରୁଥିଲେ ହେଁ, ସେମାନଙ୍କର ସାମାଜିକ ତଥା ସାଂସ୍କୃତିକ ଜୀବନ ପରିଲକ୍ଷିତ ହୁଏନାହିଁ । ଖାଦ୍ୟ ଆହରଣ, ଆତ୍ମରକ୍ଷା ବା ଅନ୍ୟକେତେକ ସାଧାରଣ କର୍ମପାଇଁ ମାନବେତର ପ୍ରାଣୀମାନେ ସଂଘବଦ୍ଧ ଭାବରେ ଜୀବନ ଅତିବାହିତ କରନ୍ତି । ମାନବର ଅବସ୍ଥା କିନ୍ତୁ ଭିନ୍ନ । ଗୋଷ୍ଠୀବଦ୍ଧ ଜୀବନରେ ତା'ର କେବଳ ଶାରୀରିକ ଐକ୍ୟ ନ ଥାଏ, ଚେତନା ଜଗତରେ ମଣିଷ ନାନା କ୍ରିୟାକର୍ମ ସଂପାଦନ କରିଥାଏ । ମଣିଷ ସମାଜ ମଧ୍ୟରେ ଦିବ୍ୟଦ୍ରଷ୍ଟା, ସ୍ରଷ୍ଟା ତଥା ଚିନ୍ତାନାୟକମାନେ ମଣିଷ ସଂପର୍କରେ ନାନା ଚେତନାର ପରୀକ୍ଷା ନିରୀକ୍ଷା କରି ମଣିଷ ସମାଜକୁ ମାର୍ଗ ପ୍ରଦର୍ଶନ କରାଇଥା'ନ୍ତି । କବି, ସାହିତ୍ୟିକ ତଥା ଶିକ୍ଷାବିତ୍ ମାନସିଂହଙ୍କ ଚେତନା ର ଧାରା ସଂପର୍କରେ ନିମ୍ନରେ କିଛିଁତ ଆଲୋଚନା କରାଯାଉଅଛି । ଏହିଧାରା ମାନସିଂହଙ୍କ ବିଗ୍ଭରଧାରାକୁ ପୁଷ୍ଟ କରିଅଛି ।

## ସାମାଜିକ ଚେତନା

ସାମାଜିକ ଚେତନା ମଧ୍ୟରେ ସମାଜସ୍ଥ ପୁରୁଷ, ନାରୀ, ପରିବାର, ସାମାଜିକ କର୍ମକାଣ୍ଡ ଏବଂ ସାମାଜିକ ବୈଷମ୍ୟ ସଂପର୍କୀୟ ଧାରଣାକୁ ହିଁ ବୁଝାଇ ଥାଏ ।

ମାନସିଂହ ପାଶ୍ଚାତ୍ୟ ପରିବାରର ଶୃଂଖଳାକୁ ସମ୍ମାନ ପ୍ରଦର୍ଶନ କରୁଥିଲେ ମଧ୍ୟ, ଭାରତୀୟ ସମାଜର ଏକାନ୍ନବର୍ତ୍ତୀ ପରିବାରର ଗୁଣଗାନ କରିଚ୍ଛନ୍ତି । ତାଙ୍କ ମତରେ ଯଦି ଏ ଧରାରେ ସ୍ୱର୍ଗବୋଲି କିଛିଥାଏ, ତେବେ ତାହା ହିଁ ସୁଖୀ ପରିବାର ମଧ୍ୟରେ ସମ୍ଭବ ଏବଂ "ଯଦି ସୁଖମୟ ଗାର୍ହସ୍ଥ୍ୟ ଜୀବନର ଆକାଂକ୍ଷା ଥାଏ, ତେବେ ପ୍ରତ୍ୟେକ ଯୁବକ, ଆଦର୍ଶ ସ୍ୱାମିତ୍ୱ ଓ ପିତୃତ୍ୱ ପାଇଁ ନିଜକୁ ପ୍ରସ୍ତୁତ କରି ରଖିବା ଉଚିତ । ନିଜର ସୁଖପାଇଁ, ବଳିଷ୍ଠ ଓ ନିଷ୍କଳଙ୍କ ବ୍ୟକ୍ତିତ୍ୱପାଇଁ, ଭବିଷ୍ୟତ ସଂଗିନୀର ଶାନ୍ତିପାଇଁ, ପ୍ରତ୍ୟେକ ଯୁବକକୁ ବଳିଷ୍ଠ, ସଂଯତ ଓ ଚରିତ୍ରବାନ ରହିବାକୁଇ ହେବ ।"(20) ଭକ୍ତକବି ମଧୁସୂଦନଙ୍କ ସୁଖୀ ପରିବାରର ସଂଜ୍ଞା ହେଲା, :—"ବୈକୁଣ୍ଠ ସମାନ ଆହା ଅଟେ ସେହି ଘର, ପରସ୍ପର ସ୍ନେହ ଯହି ଥାଏ ନିରନ୍ତର"(21) କବି ମାନସିଂହ ସେହି ମନ୍ତବ୍ୟ ସହିତ ସହମତ ହୋଇ କହନ୍ତି:——

"ସ୍ୱାମୀ-ସ୍ତ୍ରୀ, ବାପ-ପୁଅ, ଭାଇ-ଭାଇ, ଭାଇ-ଭଉଣୀର ସଂପର୍କ ଯେଉଁଠି ମାଧୁର୍ଯ୍ୟମୟ, ସେଇଠି ହିଁ ଧରା ସ୍ୱର୍ଗ ।"(22)

ଆମର ପୁରୁଷ ପ୍ରାଧାନ୍ୟ ପରିବାରରେ, ପୁରୁଷର ପବିତ୍ର ଜୀବନ ହିଁ ପରିବାରରେ ଶାନ୍ତି ଆଣି ପାରିବ, ଆଭ୍ୟନ୍ତରୀଣ ଶାନ୍ତିରକ୍ଷାର ଦାୟିତ୍ୱ ସ୍ତ୍ରୀର । ନାରୀର ସହଯୋଗ ବ୍ୟତୀତ ପୁରୁଷର ଅବସ୍ଥା ଅତ୍ୟନ୍ତ କରୁଣ । ଲେଖକଙ୍କ ମତରେ "ଯେଉଁ ପୁରୁଷକୁ ବାହାର ଜଂଜାଳରୁ ଆସି, ଘରର ଜଂଜାଳରେ ପଶିବାକୁ ହୁଏ, ତା'ର ଦଶା ଜୀବନ୍ତ ମରଣ"(23) ସାମାଜିକ ଶାନ୍ତି ତଥା କଲ୍ୟାଣ ପାଇଁ ଏକପତ୍ନୀବ୍ରତା ଆବଶ୍ୟକ ଜଗତର ଇତିହାସରେ ବହୁପତ୍ନୀକ ସମାଜ ବରାବର, ଏକପତ୍ନୀକ ଜାତିଦ୍ୱାରା ପରାଭୂତ ହୋଇ ଆସିଚ୍ଛି ।

॥ ମାନସିଂହଙ୍କ ବିଗ୍ରହଧାରା ॥

ମାନସିଂହ ନାରୀ ତୁଳନାରେ ପୁରୁଷ ମାନଙ୍କ ସମ୍ପର୍କରେ କମ୍ ମତାମତ ପ୍ରଦାନ କରିଛନ୍ତି । ପୁରୁଷ ସମ୍ପର୍କରେ ତାଙ୍କର ସର୍ବଶେଷ ମନ୍ତବ୍ୟ ହେଲା: -"ଚରିତ୍ରବାନ ବଳିଷ୍ଠ ପୁରୁଷ ନିକଟରେ ନାରୀ ପରିପୂର୍ଣ୍ଣ ଆତ୍ମସମର୍ପଣ କରି ସୁଖପାଏ ।"(24) "ପୁରୁଷର ଅଭିବୃଦ୍ଧି ମୃତ୍ୟୁ ପର୍ଯ୍ୟନ୍ତ । ନାରୀ ଜୀବନର ପ୍ରଥମ ପାଦରେ ତା'ର କ୍ଷିପ୍ର ଅଭିବୃଦ୍ଧି ଘଟିଯାଏ—ଶରୀର ଓ ମନରେ କିନ୍ତୁ ତା'ପରେ ସବୁ ବନ୍ଦ୍ । ପୁରୁଷ ଚିନ୍ତାର ସ୍ତରକୁ ସ୍ତରକୁ ଉଠିଯିବେ, କିନ୍ତୁ ନାରୀ ସାମାନ୍ୟ ସାମାନ୍ୟ କେତୋଟି ଦ୍ରବ୍ୟ ଉପରେ ତା'ର ସମସ୍ତ ଶ୍ରଦ୍ଧା ଓ ଚିନ୍ତା ଢାଳି ପଡି ରହେ ।"(25) ମାନସିଂହ ପରିବାର ସମ୍ପର୍କରେ ତାଙ୍କ ଅନ୍ତରର କଥା ପ୍ରକାଶକରି କହନ୍ତି:-"ଯେଉଁଲୋକ ଜୀବନରେ ଉତ୍ତମ ଜନନୀ, ଉତ୍ତମ ପ୍ରେୟସୀ ପାଇଛନ୍ତି, ଦାରିଦ୍ର୍ୟ ସତ୍ତ୍ୱେ, ତାଙ୍କଠୁ ଅଧିକ ଭାଗ୍ୟବାନ ଲୋକ ଆଉ ନ ଥାଇ ପାରନ୍ତି ।"(26)

ମାନସିଂହଙ୍କ ସାହିତ୍ୟରେ ମଣିଷ ଜୀବନର ଯୌବନ ତଥା ପ୍ରେମ ଯେପରି ପ୍ରାଧାନ୍ୟ ଲାଭ କରିଛି, ପରିବାର ମଧ୍ୟରେ ନାରୀର ଭୂମିକା ସେହିପରି ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଲାଭକରିଛି । ମାତ୍ର ଏଠାରେ ଲକ୍ଷ୍ୟ କରିବାର କଥା ଯେ, ନାରୀ ସମ୍ପର୍କରେ ମାନସିଂହଙ୍କ ଧାରଣା ଶେଷ ଜୀବନରେ ସମାନ ରହିନି ଅର୍ଥାତ ସେ ନାରୀକୁ ଆଦ୍ୟ ଜୀବନ ଓ ମଧ୍ୟ ଜୀବନରେ ଯେଉଁଦୃଷ୍ଟିରେ ଦେଖିଛନ୍ତି; ଉତ୍ତର ଜୀବନରେ ତାଙ୍କର ମନ୍ତବ୍ୟ ଭିନ୍ନ ରୂପ ନେଇଛି । ଏହାର ଅନ୍ତରାଳରେ ତାଙ୍କର ପାରିବାରିକ ଜୀବନର ଛାପ ପଡିଥିବାର ଅନୁମାନ କରାଯାଇପାରେ ।

ମାନସିଂହଙ୍କ ଦୃଷ୍ଟିରେ ନାରୀ ଏକ ଉଦ୍ୟାନ । ଯତ୍ନ ଓ ଇଚ୍ଛାଥିଲେ ସେ ଉଦ୍ୟାନରେ ପ୍ରତ୍ୟହ ନୂତନ ନୂତନ ଫୁଲ ଫୁଟିବାରେ ଅସମ୍ଭବତା କିଛି ନାହିଁ । ଯେଉଁ ନାରୀ ନାରୀତ୍ୱର ଏହି ଗୁହ୍ୟମନ୍ତ୍ର ଆୟତ୍ତ କରି ପାରିଛନ୍ତି, ତାଙ୍କ ନିକଟରେ ଜଣେ ପୁରୁଷ ଏକାନ୍ତ ଅନୁଗତ ହୋଇ ରହିବା ବଡକଥା ନୁହେଁ ।(27) ନାରୀ ପ୍ରକୃତିର ଶ୍ରେଷ୍ଠତମ ବିକାଶ । ଫୁଲର କୋମଳତା ଓ ସୌରଭ ଠାରୁ ଝଡ ଓ ଭୂମିକମ୍ପର ଅକରୁଣ ରୁଦ୍ରତା ପର୍ଯ୍ୟନ୍ତ ପ୍ରକୃତିର ସକଳ ବିଭବ ଯେ ନାରୀ ଠାରେ ସୂକ୍ଷ୍ମଭାବରେ ପୁଞ୍ଜୀଭୂତ ଥିବାର ମନେ ହୁଏ । ସେଇଥି ପାଇଁ ହିଁ ନାରୀ ଏପରି ଲୀଳାମୟୀ । ନାରୀ ସୁନ୍ଦରୀ ହୁଏ ସୃଜନ ପାଇଁ, ପୁଣି ଭୟଙ୍କରୀ ହୁଏ ତା'ର ନିଜସୃଷ୍ଟି, ସଂସାରକୁ ନିୟନ୍ତ୍ରିତ କରିବା ପାଇଁ ।(28)

ପାରିବାରିକ ଜୀବନରେ ନାରୀହିଁ କୁଟୁମ୍ବର କେନ୍ଦ୍ର, ସେହିହିଁ କୁଟୁମ୍ବର ଶାସୟିତ୍ରୀ ଓ ବିନାଶିକା । ସେ ଏକାଧାରାରେ ଘରର ମା', ଶିକ୍ଷୟିତ୍ରୀ, ଧାତ୍ରୀ, ଅର୍ଥମନ୍ତ୍ରୀ ଓ ଖାଦ୍ୟମନ୍ତ୍ରୀ । କୁଟୁମ୍ବ ହିଁ ନାରୀର ସାମ୍ରାଜ୍ୟ । ସେହି ଛୋଟ ସାମ୍ରାଜ୍ୟ ଭିତରୁ ବିରାଟ ଜାତି ଗଢିଉଠିଛି । ଲେଖକ ବିଭିନ୍ନ ସ୍ଥାନରେ, ବିବାହିତ ଜୀବନରେ ଗୃହିଣୀର ପ୍ରାଧାନ୍ୟ ସ୍ୱୀକାର କରିଛନ୍ତି । ବିବାହିତ ଜୀବନର ଶାନ୍ତି ନାରୀ ଉପରେ ସମ୍ପୂର୍ଣ୍ଣ ନିର୍ଭରକରେ ବୋଲି ଲେଖକଙ୍କର ଯୁକ୍ତି । ଘର ହେଉଛି ନାରୀର ସାମ୍ରାଜ୍ୟ । ସେ ସାମ୍ରାଜ୍ୟରେ ସେ ହିଁ ରଜା, ସେହିଁ ମନ୍ତ୍ରୀ, ଅର୍ଥ, ଶିକ୍ଷା, ସ୍ଥାନୀୟ ଶାସନ, ନିୟମ ଶୃଙ୍ଖଳା, ଖାଦ୍ୟ, ବାସ ସବୁ ବିଭାଗର ମନ୍ତ୍ରୀ ସେ । ନାରୀ ଜନ୍ମରୁ ସ୍ୱୟଂସିଦ୍ଧା । ଏଣୁ ତା'ର ପ୍ରକୃତିରେ ପରିବର୍ତ୍ତନ ଆଣିବା କଠିନ ବ୍ୟାପାର ।

॥ ମାନସିଂହଙ୍କ ବିଗ୍ଧରଧାରା ॥

ନାରୀର ସୌନ୍ଦର୍ଯ୍ୟ କେବଳ ରୂପରେ ନୁହେଁ, ଗୁଣରେ ମଧ୍ୟ ମହକି ଉଠେ । ଦାମ୍ପତ୍ୟ ଜୀବନରେ ରୂପ ନଥାଇ ଗୁଣ ଥିଲେ ହିଁ ଜୀବନ ସୁଖମୟ ହୋଇପାରିବ । ଲେଖକଙ୍କ ମତରେ:–"ନବବଧୂର ରୂପ ଥିଲେତ କଥା ନାହିଁ; ତା'ନଥିଲେ ମଧ୍ୟ ସେବା, କର୍ମଠତା, ଚରିତ୍ର, ଘରକରଣା, ସୁଶୀଳ ସ୍ୱଭାବ ପ୍ରଭୃତିରେ ପୁରୁଷର ବହୁଧାବୀ ଚିତ୍ତ କ୍ରମେ ଏକ ପଥରେ ଆଶ୍ରମ୍ଭ ନିଏ"।(29) ଇତିହାସରେ ଯେଉଁନାରୀମାନେ ବରେଣ୍ୟ ହୋଇଛନ୍ତି, ସେମାନେ ହୋଇଛନ୍ତି ଏଇସବୁ ଗୁଣଯୋଗୁ, ରୂପଯୋଗୁ ନୁହେଁ । ପ୍ରତ୍ୟେକ ପ୍ରତିଭାବନ୍ତ ପୁରୁଷ ମଧ୍ୟ ରୂପ ଅପେକ୍ଷା ନାରୀର ଏଇ ଗୁଣ ଗୁଡିକ ପ୍ରତି ଆକୃଷ୍ଟ ହୋଇଥା'ନ୍ତି ।(30)

ମାନସିଂହ, ସ୍କୁଲବାଳ କଲେଜରେ ଅବସ୍ଥାନ କରି ଓ ପାଶ୍ଚାତ୍ୟ ଚଳଣୀ ସଂସ୍ପର୍ଶରେ ଆସି ନାରୀ ସ୍ୱାଧୀନତାକୁ ପ୍ରାଧାନ୍ୟ ଦେଇଛନ୍ତି । ସେ ନାରୀ ମାନଙ୍କୁ ଗୃହ–ବନ୍ଧନରେ ବାନ୍ଧି ରଖିବାର ପକ୍ଷପାତୀ ନୁହନ୍ତି । ସେ ଭାବନ୍ତି, ନାରୀ ସ୍ୱାଧୀନତା ନ ପାଇଲେ ସମାଜର ପୂର୍ଣ୍ଣ ବିକାଶ ସମ୍ଭବ ନୁହେଁ । ତାଙ୍କ ଭାଷାରେ:– "ମାନବିକ ସମାଜ ପ୍ରିୟା ଓ ଜନନୀ ଏଇ ଦୁଇ ବିନ୍ଦୁକୁ କେନ୍ଦ୍ରକରି ଘୂରୁଛି ଏବଂ ସେହିମାନଙ୍କ ସଂପର୍କରେ, ପ୍ରଭାବରେ କୋଟି କୋଟି ଛୋଟ ଗୋଷ୍ଠୀ ଗଢି ଉଠିଛି ଯେଉଁଠି ଅନ୍ତତଃ ମନୁଷ୍ୟ ଜାନୁୟାର ନୁହେଁ ଏବଂ ଯେଉଁଠି କୌଣସି ରାଷ୍ଟ୍ରର ଅତ୍ୟାଚାର୍ ସାମାଜିକ ମାଧୁର୍ଯ୍ୟକୁ ଶୋଷିଦେଇ ପାରିବ ନାହିଁ ।"(31)

ଜୀବନର ଶେଷ ପାହାଚରେ ମାନସିଂହ ନାରୀ ପ୍ରତି ଯେଉଁ ମନ୍ତବ୍ୟ ପ୍ରଦାନ କରିଛନ୍ତି ବୋଧହୁଏ ତାଙ୍କର ଜୀବନର ଏହାହିଁ ନିଚ୍ଛକ ବାଣୀ । 'ଶିକ୍ଷାବିତ୍ର ଗାଥା'ରେ ମେହେର କଲେଜର ବହି କିଣା ସଂପର୍କରେ ମନ୍ତବ୍ୟ ଦେବାକୁ ଯାଇ କହିଛନ୍ତି:—"ପ୍ରତ୍ୟେକ ମୁହୂର୍ତ୍ତରେ ଆମେ ଯାହା କରୁଛୁ, ତାହା ବିଷୟରେ ସଂପୂର୍ଣ୍ଣ ସଂଜ୍ଞ ରହିବା ଉଚିତ, କାରଣ ପ୍ରତ୍ୟେକ ମୁହୂର୍ତ୍ତର କର୍ମ ବା ଚିନ୍ତାରେ ଆମେ ଭବିଷ୍ୟତର ସୁଖ ଦୁଃଖର ବୀଜବପନ କରି ଚାଲିଛୁ ଏବଂ ପାଠକେ, ତୁମଭିତରୁ ଯିଏ ଉଚ୍ଚତର ଓ ପୁଣ୍ୟତର ଜୀବନାଭିଳାଷୀ' Beware of the Women ମନୁଷ୍ୟ ଭିତରେ କାମିନୀ ଓ କାଞ୍ଚନ–ସଂପୃକ୍ତ ଅଶୁଚି ପ୍ରାୟ ସହାବସ୍ଥାନ କରନ୍ତି । ନାରୀର ଧନ ଲିପ୍ସା ତା'ର ସନ୍ତାନ ପିପାସା ଠାରୁ ସାମାନ୍ୟ କମ୍ ମାତ୍ର । x x x ପୁଣି ଏ ସବୁ ଯେ କହୁଛି, ତା' ଜୀବନ, ନାରୀ ଜନର, ବାଞ୍ଛାହିମା ଯୁକ୍ତ ପ୍ରଶ୍ରୟରେ ଉତ୍ଫୁଲ୍ଲିତ ହୋଇଛି । କିନ୍ତୁ ପ୍ରକୃତି ଅପୂର୍ଣ୍ଣ, ଠିକ୍ ସେହି କାରଣରୁ ହିଁ ହୁଏତ ମନୋହର"(32) ଜୀବନର ସନ୍ଧ୍ୟାରେ ଲେଖା ହୋଇଥିବା 'ଗୀତା ମହାତ୍ମ୍ୟ'ରେ ନାରୀ ରଚନାପ୍ରତି ମାନସିଂହଙ୍କର କାବ୍ୟବାଣ ଆହୁରି ନିର୍ମମ । ସେ ଭାବନ୍ତି, ପରିବାର ତଥା ସମାଜମଧ୍ୟରେ ନାନା ଅଶାନ୍ତିର କାରଣ ହିଁ ନାରୀ ।"ତେଣୁ ଜାତି ଜାତିର ଯୁଦ୍ଧ, ଆଉ ପତିପତ୍ନୀର ଦ୍ୱନ୍ଦ୍ୱ ଦୁଇଟି ସଂପୂର୍ଣ୍ଣ ଭିନ୍ନରୀତି ଉପରେ ସମ୍ଭବ ଓ ପରିଚାଳିତ ହେଉଛିବୋଲି ଆମେ ବିଶ୍ୱାସ କରିବା କି ? ଆମେ କ'ଣ କହିପାରିବାକି, ତରବାରୀର ଆଘାତ, ରଣଭୂମିରେ ଆଉ ରାଜପଥରେ ସଂପୂର୍ଣ୍ଣ ଭିନ୍ନ ଅନୁଭୂତି ସୃଷ୍ଟି କରିବ ? ଯେକୌଣସି ସୈନିକ ଓ ସେନାପତି କହିବେ ଯେ ଘରେ ପୋଷା ହୋଇଥିବା ନାରୀ ରସନାର ଆଘାତ ଓ ହଳାହଳର ଜ୍ୱାଳା କୌଣସି ଶତ୍ରୁର ଗୁଳା ବା ତୀରର ଆଘାତ ବା ଜ୍ୱାଳା ଅପେକ୍ଷା ନ୍ୟୁନତର ନୁହେଁ, ବରଂ ତୀବ୍ରତ ଓ ସବୁ ଅବସ୍ଥାରେ ଅଧିକ ମର୍ମବିଦାରକ ।"(33) ମାନସିଂହଙ୍କର ବିଗ୍ଧର ଏଥିରେ ପ୍ରମାଣିତ ।

## ସାମାଜିକ ବୈଷମ୍ୟ ସଂପର୍କରେ ଧାରଣା :-

ସାମାଜିକ ବୈଷମ୍ୟ ସଂପର୍କରେ ମାନସିଂହଙ୍କ ପ୍ରାଣ ସର୍ବଦା ବିଦ୍ରୋହ କରିଆସିଛି । ଧନିକ ଶ୍ରେଣୀ ପ୍ରତି ଘୃଣା ସହିତ ପୁରୋହିତ ସଂପ୍ରଦାୟକୁ ଚରମ ଘୃଣାଭାବ ପ୍ରଦର୍ଶନ କରିଛନ୍ତି । ଭଗବାନଙ୍କ ସଂପର୍କରେ ମାନସିଂହଙ୍କ ଧାରଣା ଯାହା ହେଉନା କାହିଁକି, ଭଗବାନ ଓ ମଣିଷ ମଧ୍ୟରେ ଏକ ଅନାବଶ୍ୟକ ମଧ୍ୟସ୍ଥକୁ ସେ ଅସ୍ୱୀକାର କରିଛନ୍ତି । ଏହି ମଧ୍ୟସ୍ଥ ପୁରୋହିତ, ମୁଲ୍ଲା, ପାଦ୍ରୀ—ଗୋଷ୍ଠୀ ଧର୍ମନାମରେ ସମାଜର ସାଧାରଣ ମଣିଷମାନଙ୍କୁ ଶୋଷଣ କରି ଚାଲିବି । ଯୁଗଯୁଗ ଧରି ଏହି ସାମାଜିକ ଶୋଷଣ ଘୂରି ଆସିଛି । ଗୌତମ ବୁଦ୍ଧଙ୍କ ପରି- ମାନବବାଦୀ ଧର୍ମପ୍ରବକ୍ତାମାନେ ଏହି ଅନ୍ୟାୟର ବିରୋଧ କରି ଆସିଥିଲେ । ସେ ପ୍ରସଂଗ ସ୍ୱତନ୍ତ୍ର ଅଧ୍ୟାୟରେ ଆଲୋଚିତ ହେବ । କବି ରାଧାନାଥ ସାମାଜିକ ବୈଷମ୍ୟ ପ୍ରତି ଶରନିକ୍ଷେପ କରିଥିଲେ । ତାଙ୍କୁ ସମର୍ଥନ କରି ମାନସିଂହ କହନ୍ତି :—"ମନୁଷ୍ୟ ଦ୍ୱାରାରେ ମନୁଷ୍ୟପ୍ରତି ଯେଉଁଠି ଅନ୍ୟାୟ ଓ ଅପମାନ ଘଟିବା ରାଧାନାଥଙ୍କ ଆଖିରେ ପଡିଛି, ସେ ସେଠି ହାତ ପକାଉଛନ୍ତି ତାଙ୍କ ତୂଣୀରରେ ଏବଂ ଅକୁଣ୍ଠିତ ଭାବରେ ଫିଙ୍ଗିଛନ୍ତି ତୀକ୍ଷ୍ଣଶର ମୂଢ ଅନ୍ୟାୟକାରୀ ଓ ଅତ୍ୟାଚାରୀ ପ୍ରତି । ଏହି ପ୍ରକୃତ ପ୍ରତିଭାର ଲକ୍ଷଣ । ପ୍ରକୃତ ପ୍ରତିଭା ଜାଣେ ନାହିଁ, ସାମୟିକ କ୍ଷମତାବାନର ମନଜାଣି କଥା କହିବା ବା ଅନ୍ୟାୟକୁ ମୁଣ୍ଡପାତି ମାନିନେବା । ସମଗ୍ର ବିଶ୍ୱ—ସାହିତ୍ୟରେ ଏ କାମସବୁ ମନ୍ଦକବି ବା ସାହିତ୍ୟିକ ଯଶପ୍ରାର୍ଥୀ ଷଡଯନ୍ତ୍ରକାରୀ ଦଳର, ଯେଉଁମାନେ ପ୍ରକୃତ ପ୍ରତିଭାବାନ ଲୋକର ପଛେପଛେ ଦେଖା ଦେଇଥା'ନ୍ତି ଯୁଗେଯୁଗେ ପ୍ରତି ଦେଶ ଓ ଭାଷାରେ ।" (34) ମାଟିର ମହାକବି ସାରଳା ଦାସ, ତାଙ୍କ ସୃଷ୍ଟିରେ ଅବହେଳିତ ଜନତା ପ୍ରତି କରୁଣା, ସମବେଦନା, ସଂଗେସଂଗେ ବିରାଟ ଆଦିବାସୀ ଜନତା ପ୍ରତି ସମ୍ମାନ ତଥା ଗୌରବ ପ୍ରଦର୍ଶନ କରିଥିବାରୁ, ମାନସିଂହ ଶୂଦ୍ରକବି ସାରଳା ଦାସଙ୍କ ପାଦରେ ପ୍ରଣତି ଢାଳିଛନ୍ତି ।

ମାନସିଂହଙ୍କର ଜ୍ଞାନ ପ୍ରତି ଅନାଦର ନାହିଁ; ଜ୍ଞାନ ଓ ପାଣ୍ଡିତ୍ୟ ବ୍ୟାଜରେ ମଣିଷ ଯେତେବେଳେ ଅନାଦୃତ ତଥା ଅତ୍ୟାଚାରିତ ହୋଇଛି, ସେତେବେଳେ ସେ ପ୍ରତିବାଦ କରିଛନ୍ତି । ମହାଭାରତ ତଥା ବୌଦ୍ଧ ଯୁଗରେ ପଣ୍ଡିତମାନେ ଜ୍ଞାନର ଗଭୀର ତତ୍ତ୍ୱନେଇ ବ୍ୟସ୍ତ ଥିଲାବେଳେ, ଭାରତର ସାଧାରଣ ମନୁଷ୍ୟ ପ୍ରଥମେ ଅବହେଳିତ ହୋଇଛି । ତାଙ୍କ ମତରେ:—"ବ୍ରାହ୍ମଣ ବେଦାଧ୍ୟୟନ କରି କ୍ଷତ୍ରିୟ ବ୍ରାହ୍ମଣଙ୍କୁ ତକାଇ ବ୍ୟୟବହୁଳ ଯଜ୍ଞକରାଇ ସନ୍ତୁଷ୍ଟ ରହିଲା । ପଣ୍ଡିତ ଜନମାନେ ତତ୍ତ୍ୱନେଇ ବିତଣ୍ଡା କଲେ । କିନ୍ତୁ ଭାରତର ସାଧାରଣ ନିରକ୍ଷର ଅଜ୍ଞ ମନୁଷ୍ୟର ଧର୍ମଜୀବନ ପାଇଁ କେହି ଭାବୁଥିଲେ କି ? ଭାରତବର୍ଷର ମାଟିରେ ତତ୍ତ୍ୱ ଜିଜ୍ଞାସାର ସମସ୍ତ ଧ୍ୱନି ଭିତରେ ଆମେ କେବଳ ଦୁଇଟି ବିରାଟ ପୁରୁଷଙ୍କୁ ଆମପରି ସାଧାରଣ ମନୁଷ୍ୟପାଇଁ ଚିନ୍ତାକରିବାର ଦେଖୁ, ସେ ଦୁହେଁ ହେଉଛନ୍ତି, ଶାକ୍ୟ ଗୌତମ ଓ ଯାଦବ ଶ୍ରୀକୃଷ୍ଣ ।"(35) ଲେଖକ ଅନୁଭବ କରିଛନ୍ତି ଯେ "ସାଧାରଣ ମନୁଷ୍ୟ ଶକ୍ତି ବା ପାଓ୍ୱାର ର ଉପାସକ, ମୁଧର ବା ପ୍ରତିଭାର ନୁହେଁ । ସବୁଦେଶ ସମାଜ ଓ କାଳରେ ସେଥିପାଇଁ ଜନତା ମୁଣ୍ଡନୁଆଁଏ ଧନ, କ୍ଷମତା ଓ ଶାରୀରିକ ବଳ

ନିକଟରେ । ଧନ ଶାସନଦଣ୍ଡ ଓ ଦୈବସାମର୍ଥ୍ୟ,ଏ ପ୍ରତ୍ୟେକଟି ଶକ୍ତିର ଦ୍ୟୋତକ ।"(36) ଏଇଥିପାଇଁ ଭାରତୀୟ ହିନ୍ଦୁମାନେ ଯୁଗଯୁଗଧରି ସମାଜର ଗୋଟିଏ ବର୍ଗକୁ ଦଳିତ ଅବସ୍ଥାରେ ରଖି ଆସିଥିଲେ, ଯେଉଁମାନଙ୍କୁ ବାପୁଜୀ ସେ ଅନ୍ଧକାର ଅବସ୍ଥାରୁ ଉଦ୍ଧାର କଲେ । ମାନସିଂହଙ୍କ ପ୍ରାଣ ଏଥିପାଇଁ ବାପୁଜୀଙ୍କ ପାଦରେ ପ୍ରଣତି ଢାଳିଥାଏ ।

<u>ଆର୍ଥନୀତିକ ଚେତନା :—</u>

ମାନବବାଦୀ କବି ମାନସିଂହଙ୍କର ହୃଦୟ ସମାଜରେ ରହିଥିବା ଆର୍ଥନୀତିକ ବୈଷମ୍ୟ ଯୋଗୁ ବ୍ୟଥିତ ହୋଇଛି । ମାତ୍ର ସାମ୍ୟବାଦୀ କବିଙ୍କ ପରି ସେ ମାରିଦେବି,ହାଣିଦେବି,ବୋଲି ସ୍ୱର ଉଠାଇନାହାନ୍ତି । ବାପୁଜୀଙ୍କ ପ୍ରବର୍ତ୍ତିତ ସାମ୍ୟବାଦର ସେ ଥିଲେ ଉପାସକ । କମ୍ୟୁନିଷ୍ଟମାନଙ୍କୁ ସେ ଘୃଣ୍ୟ ଭାବରେ ଦେଖିଛନ୍ତି । ତାଙ୍କ ମତରେ:—"ଅଷ୍ଟାଦଶ ଶତାବ୍ଦୀରେ ଫରାସୀ ରାଷ୍ଟ୍ରବିପ୍ଳବ ପରେ ମାନବବାଦ ସମଗ୍ର ଇଉରୋପୀୟ ଚିନ୍ତାକୁ ଆକ୍ରାନ୍ତ କଲା । ଏଇ ମାନବବାଦର ଚରମ ପରିଣତି କମ୍ୟୁନିଜମ୍ ।" ମାତ୍ର ମାନସିଂହ କହନ୍ତି:—"ମୋ ନିଜ ବ୍ୟକ୍ତିତ୍ୱରେ ମନୁଷ୍ୟର ବ୍ୟକ୍ତିଗତ ସ୍ୱାଧୀନତା ଅପହାରକ କମ୍ୟୁନିଜମ୍ ପ୍ରତିଧ୍ୱନି ସୃଷ୍ଟି କରିପାରିନାହିଁ ।"(37) କାରଣ କମ୍ୟୁନିଷ୍ଟମାନେ ସମଗ୍ର ଜଗତବାସୀଙ୍କୁ ବୁର୍ଜୁଆ ଓ ପ୍ରୋଲିଟରିଏଟ ଏହିପରି ଦୁଇଭାଗରେ ବିଭକ୍ତ କରି,ଏହି ଦୁଇଦଳର ସଂଘର୍ଷ ଉପରେ ଭବିଷ୍ୟତ ପୃଥିବୀର ଭାଗ୍ୟ ନିୟନ୍ତ୍ରିତ ହେବବୋଲି ଆଶା କରିଛନ୍ତି । ପ୍ରୋଲିଟେରିଏଟ୍ ସେହି,ଯେଉଁମାନେ ବାମକରି ପୋଷି ହୁଅନ୍ତି,ବୁର୍ଜୁଆ ବିନା ଶ୍ରମରେ ବା ଅନ୍ୟ ଶ୍ରମଉପରେ ଆରାମରେ ଦିନ କାଟନ୍ତି । ସଂଘର୍ଷ ସୃଷ୍ଟି କରିବା ଯଦି ଉଦ୍ଦେଶ୍ୟ ହୁଏ,ତେବେ ମନୁଷ୍ୟ ଜାତିକୁ ନାନାଭାଗରେ ବିଭକ୍ତ କରାଯାଇପାରେ । ଏବେତ ଧଳା—କଳାର ଭେଦ, ତା'ଉପରେ ଧର୍ମର ଭେଦ,ତା ଉପରେ ଆସିଲା ନାସନାଲିଜମ୍ ବା ଜାତୀୟତାର ଭେଦ । ଏ ସବୁ ଭେଦ ଯୋଗୁ ମାନବ ଇତିହାସର ପୃଷ୍ଠା ରକ୍ତରଞ୍ଜିତ ହୋଇଆସିଛି । ତେବେ ଏଇ କମ୍ୟୁନିଜମ୍ର ଭେଦ ଓ ତତ୍‌ଜନିତ କଳ୍ପିତ ସଂଘର୍ଷ ଉପରେ କମ୍ୟୁନିଷ୍ଟ ପ୍ରତିଷ୍ଠିତ । ତା'ର କୌଣସି ଗଭୀର ଅର୍ଥ ଥିଲାପରି ବୋଧ ହେଉନାହିଁ । କ୍ରେମ୍ଲିନ୍‌ର ବିଳାସଭୋଗୀ ଷ୍ଟାଲିନ୍ ଆଜି ବୁର୍ଜୁଆ ନା ପ୍ରୋଲିଟେରିଏଟ୍ ? ଜଗତରେ ଅଧିକାଂଶ ଲୋକଙ୍କ ପ୍ରାଥମିକ ଜୀବନ ପ୍ରୋଲିଟେରିଏଟ୍ ଓ ପରଜୀବନ ବୁର୍ଜୁଆ । କୃଷୀ ବୟସଥିଲାଯାଏ କଠିନ ପରିଶ୍ରମ କରେ ତା'ପରେ ବୃଦ୍ଧ ବୟସରେ,ସେ ଘରେ ବସେ । ତାର ପୁଅମାନେ ତାକୁ ପୋଷନ୍ତି,ବୋହୂମାନେ ତାର ସେବାକରନ୍ତି । ବର୍ତ୍ତମାନ ବୁଢାଚାଷୀ ହେଲା ବୁର୍ଜୁଆ,ତାର ପୁଅମାନେ ହେଲେ ପ୍ରୋଲିଟେରିଏଟ୍ ।"(38)

ମାନସିଂହ କମ୍ୟୁନିଷ୍ଟମାନଙ୍କର ଅମାନବୀୟ ସଂଘର୍ଷପ୍ରତି ବିଦ୍ୱେଷଭାବ ଦେଖାଇଥିଲେ ମଧ୍ୟ,ସାମାଜିକ ଅର୍ଥନୈତିକ ଅସମତା ପାଇଁ ବ୍ୟଥିତ ହୋଇଛନ୍ତି । ସେହି ବେଦନାରୁ ଜନ୍ମଲାଭ କରିଛି,ମାନସିଂହଙ୍କର କେତେକ ବିଶିଷ୍ଟ କବିତା । 'ମାଟିର ସତୀତ୍ୱ' କବିତାରେ ଭୂ–ରାଜସ୍ୱ ଦେଇ ନ ପାରୁଥିବା କୃଷକର ଦୟନୀୟ ଅବସ୍ଥା ଓ ଅତ୍ୟାଚାରୀ ମଦ୍ୟପ ରାଜାର ଚିତ୍ର,ରେଙ୍ଗୁନ୍ ଚିଠି', 'ଘରପଶା' ଆଦି କବିତାରେ ପଲ୍ଲୀଯୁବକର ଅଭାବ ତଥା ସାହୁକାରର

ଶୋଷଣରେ ଯୁବକମାନେ କିପରି ଜନ୍ମଭୂମିଛାଡି କରୁଣ ଜୀବନଯାପନ କରୁଛନ୍ତି, ସେ ଚିତ୍ର ବର୍ଣ୍ଣିତ । ସେହିପରି 'କିଳଲକ୍ଷ୍ମୀ' 'ଯଦୁସ୍ୱାଇଁର ଗାଥା' ଓ 'ଅନ୍ୱେଷଣ' ଉପନ୍ୟାସରେ ଦରିଦ୍ରକୃଷକର ଦୁଃଖ ବର୍ଣ୍ଣନା କରିଛନ୍ତି । 'ଚଳିଆ ଜୀବର ବିଳାପ'ରୁ କୃଷକ ସଂପର୍କରେ କେତେକ ମର୍ମସ୍ପର୍ଶୀ ଚିତ୍ର ଉଦାହରଣ ଭାବରେ ନିଆଯାଇ ପାରେ:——

"ଧରା ତଳେ ଛୁର ପରିହାସ /କାଟି ଶସ୍ୟ, ରହେ ଉପବାସ ।

ସକଳେ ଯେ ଯୋଗାଏ ଭୋଜନ / ନିଜ ଥାଳେ ନାହିଁ ତା'ର ଅନ୍ନ ।"(39) ଏହା ସଂଗେ ସଂଗେ ଧନୀ ଜମିଦାର ଓ ବିଳାସୀ ଲୋକଙ୍କ ପ୍ରତି ମାନସିଂହଙ୍କର ତୀବ୍ର ଘୃଣାଭାବ ରହିଥିବାର ଦେଖାଯାଏ । 'ସାଧବଝିଅ'କାବ୍ୟ, 'ମାଟିର ସତୀତ୍ୱ', କିଳଲକ୍ଷ୍ମୀ' କବିତା ଓ ଅନ୍ୱେଷଣ, ଉପନ୍ୟାସରେ ମାନସିଂହଙ୍କର ଏ ପ୍ରବାଳ ରୋଷ ପ୍ରତିଫଳିତ । ମାତ୍ର ମାନସିଂହ ଏହି ଅର୍ଥନୈତିକ ବୈଷମ୍ୟ ଗୁଡିକର ସମାଧାନର ସୂତ୍ର ପ୍ରଦାନ କରିଥିବାର ଜଣାଯାଏ ନାହିଁ । କେବଳ ଗାନ୍ଧୀବାଦକୁ ସେ ସମର୍ଥନ କରିଛନ୍ତି ।

ସନ 1933 ମସିହା ବେଳକୁ ମାନସିଂହ, 'ଚଳିଆ ଜୀବର ବିଳାପ' କ୍ରମରେ, ରିକ୍ସାବାଲା, ମଜଦୂର, କୃଷକ, ବଢେଇ, କିରାଣୀ, କଳାକାର କ୍ରମରେ କେତେକ କବିତା ଓ ଏହାର ପ୍ରତିକାର ପାଇଁ 'କବି କହେ' ତଥା 'ଭୁଲିଯାଅ ଇତିହାସ' ନାମରେ କବିତା ଲେଖିଥିଲେ । ଏହି ସମୟରେ ମାନସିଂହଙ୍କର ବନ୍ଧୁ ଭଗବତୀଚରଣ ପାଣିଗ୍ରାହୀଙ୍କର ସାମୟିକ ପ୍ରଭାବ ମାନସିଂହଙ୍କ ଉପରେ ପଡିଥିବାର ଲକ୍ଷ୍ୟ କରାଯାଏ । ତେବେ ଏ ପ୍ରଭାବ ଥିବା ଅତ୍ୟନ୍ତ ଗୌଣ ଓ କ୍ଷଣସ୍ଥାୟୀ ।

**ମଣିଷ ସଂପର୍କୀୟ ଚେତନା——(ଦୁଇ)**

କବି ମାନସିଂହ ମୂଳତଃ ଜଣେ ରୋମାଣ୍ଟିକ କବି । ତାଙ୍କର ଲେଖା ଓ ବ୍ୟକ୍ତିତ୍ୱ ରୋମାଣ୍ଟିକ ଭାବଧାରାଦ୍ୱାରା ଅନୁପ୍ରେରିତ, ପରେ ପରେ ବ୍ରିଟିଶ ଉଦାରତନ୍ତ୍ରୀ ଚେତନାଦ୍ୱାରା ସେ ଉଦବୁଦ୍ଧ ହୋଇଥିଲେ । ଏଣୁ ତାଙ୍କର ମଣିଷ ସଂପର୍କୀୟ ଚେତନାରେ ଉଭୟ ଧାରାର ପ୍ରତିଫଳନ ବିଶେଷ ଭାବରେ ଦେଖାଯାଏ । ରୋମାଣ୍ଟିକ କବି ମାନଙ୍କର ଚେତନାରେ ଦେଖାଯାଉଥିବା ପ୍ରକୃତିପ୍ରୀତି, ସୁଦୂରମୋହ ତଥା ବୀରଭାବ ମାନସିଂହଙ୍କ ଲେଖାରେ ପ୍ରତିଫଳିତ । ଏହି ଅଂଶରେ କବି ମାନସିଂହଙ୍କର ବୀରଭାବ ସଂପର୍କୀୟ କେତେକ ଭାବନାର ସଂକ୍ଷିପ୍ତ ଆଲୋଚନା କରାଯାଉଅଛି ।

ଗତାନୁଗତିକତାରୁ କିଛି ନୂଆ କରିବା ବୀରଭାବର ଏକତମ ଲକ୍ଷଣ । ମାନସିଂହ କହନ୍ତି:—— "ମନୁଷ୍ୟ ପାରିପାର୍ଶ୍ୱିକତାର କ୍ରୀଡନକ ମାତ୍ର ହେବା ବିଧାତାର ନିର୍ଦ୍ଦେଶ ନୁହେଁ । ପାରିପାର୍ଶ୍ୱିକତାକୁ ଜୟକରି ସତ୍ୟ ଓ ସ୍ୱାତନ୍ତ୍ର୍ୟର ଆବିଷ୍କାର ପଥରେ ଅବାଧ ଅଗ୍ରସର ହେବାହିଁ, ମନୁଷ୍ୟପ୍ରତି ପ୍ରକୃତିର ପ୍ରଚ୍ଛନ୍ନ ନିର୍ଦ୍ଦେଶ"(40) ବାହାର ଦୁନିଆଁରେ ବୀରତ୍ୱ ପ୍ରଦର୍ଶନ କେବଳ ମାନସିଂହଙ୍କର ଲକ୍ଷ୍ୟ ନୁହେଁ, ଆଭ୍ୟନ୍ତରିଣ ବୀରତ୍ୱ ପ୍ରଦର୍ଶନହିଁ ତାଙ୍କ ଚେତନାର ଅନ୍ୟତମ ଲକ୍ଷ୍ୟ । "ବାହାରର ଅଭାବ ଅସୁବିଧା, ପରାଭବ ଓ ଦୁର୍ଭାଗ୍ୟ ସହିତ ଲଢିବା ସଂଗେ ସଂଗେ ମନୁଷ୍ୟକୁ

ଭିତରର ଏକ ଲଢେଇରେ ସଦା ଜାଗ୍ରତ ସୈନିକ ହେବା ମଧ୍ୟ ବିଧାତାର ନିଗୂଢନିର୍ଦ୍ଦେଶ । ବସ୍ତୁତଃ ବାହାରସଂଗ୍ରାମ, ଭିତର ସଂଗ୍ରାମର ପ୍ରତିବିମ୍ବ ମାତ୍ର । ଯିଏ ଭିତରଯୁଦ୍ଧରେ ଜୟୀ, ତାହାପାଇଁ ବାହାରର ଯୁଦ୍ଧ ଜିତିବା କଠିନ ନୁହେଁ । ବାହାରର ସଂଗ୍ରାମରେ ବହୁ ବିଜୟ ହାସଲ କରିଥିଲେ ହେଁ, ଯିଏ ଭିତର ଲଢେଇରେ କ୍ଷତବିକ୍ଷତ ଓ ପଙ୍ଗୁ ତା ଜୀବନରେ ସାଫଲ୍ୟ ଥାଇପାରେ, କିନ୍ତୁ ନାହିଁ ଶାନ୍ତି, ନାହିଁ ସୁଖ । ସେଥିପାଇଁ ଜଗତର ଧର୍ମାଗ୍ରଣୀ ଓ ଦାର୍ଶନିକମାନେ, ମନୁଷ୍ୟକୁ ସର୍ବାଦୌ ନିଜ ଭିତରର ଶତ୍ରୁମାନଙ୍କୁ ନିପାତ କରିବାକୁ ବରାବର ଉପଦେଶ ଦେଇଆସିଛନ୍ତି । ଏଇ ଶତ୍ରୁମାନଙ୍କୁ ବଶୀଭୂତ ନ କଲାଯାଏ, ମନୁଷ୍ୟର ଆତ୍ମଶକ୍ତିର ପୂର୍ଣ୍ଣବିକାଶ ଅସମ୍ଭବ ଏବଂ ଛିନ୍ନଭିନ୍ନ ରହିବାକୁ ରହିବ ।"(41)

ମଣିଷ ନିଜ ଭିତରର ଶତ୍ରୁମାନଙ୍କୁ ନିପାତ କରିପାରିଲା ପରେ, ନିଜଭିତରେ ଆବଦ୍ଧ ରହିବାରେ ସନ୍ତୁଷ୍ଟ ନୁହେଁ । ସେ ନିଜକୁ ବିଶ୍ୱବକ୍ଷରେ ସର୍ପିରିତ କରିବାକୁ ଚାହେଁ । ନିଜକୁ ପୃଥିବୀ ବକ୍ଷରେ ପ୍ରସାରିତ କରିବା ସହ ବିଶ୍ୱର ସତ୍-ଚିତ୍-ଆନନ୍ଦକୁ ଆତ୍ମସ୍ଥ କରିବାକୁ ଚାହେଁ । ଆନନ୍ଦକୁ ଆତ୍ମସ୍ଥ କରିବାର ଅନ୍ୟନାମ ପ୍ରେମ । ମାନସିଂହଙ୍କ ଦୃଷ୍ଟିରେ ପ୍ରେମ ଜୀବନର ସାରବସ୍ତୁ । ଜୀବନ ଜଗତର ଯାହା ନିୟାମକ, ତାହା ଚକ୍ଷୁହୀନ ନୁହେଁ, ଅନ୍ଧନୁହେଁ, ଚକ୍ଷୁଷ୍ମାନ ।

"ଅନ୍ଧହେବ ପ୍ରେମ କିପାଁ ? ପ୍ରେମ ଚକ୍ଷୁଷ୍ମାନ !
ଯେ ପ୍ରେମ ଆତ୍ମାର ଅଟେ ନିବିଡ଼ ସନ୍ଧାନ
ଅନ୍ୱେଷଣ ହୁଏ ତାର, ତୃତୀୟ ଚକ୍ଷୁର
ଅଦୃଶ୍ୟ ରହସ୍ୟାଲୋକେ; ପ୍ରକୃତ ପ୍ରଣୟ
ଦିବ୍ୟଚକ୍ଷୁ ଜ୍ୟୋତିର୍ମୟ, ରହସ୍ୟ-ଆବୃତ,
ଇତରହିଁ ଅନ୍ଧବୋଲି ବୋଲିଥାନ୍ତି ତାକୁ ।"(42)

ପ୍ରେମ ତ ଅନ୍ଧନୁହେଁ, ପ୍ରେମମଧ୍ୟ କେବଳ ଦୈହିକ ମିଳନରେ ସୀମାବଦ୍ଧ ନୁହେଁ । ମାନସିଂହଙ୍କ ଦୃଷ୍ଟିରେ ଦୈହିକଭୋଗର ଅନ୍ୱେଷଣ ପ୍ରେମନୁହେଁ, ଏକ ଆତ୍ମା ସହ ଅନ୍ୟଏକ ଆତ୍ମାର ବନ୍ଧନହିଁ ପ୍ରେମ । ଦୁଇଟି ପ୍ରାଣର ପୂର୍ଣ୍ଣ ଆତ୍ମ ସମର୍ପଣ ତଥା ପାରସ୍ପରିକ ଆତ୍ମ ନିମଜ୍ଜନ ମଧ୍ୟରେ ହିଁ ପ୍ରେମର ସାର୍ଥକତା ।

ପ୍ରେମଭାବ ଜୀବନଜଗତର ଆଦିମ ପ୍ରବୃତ୍ତି । ମାନବର ଏହି ସହଜାତ ଭାବକୁ କବି, କଳାକାର ଓ ସ୍ରଷ୍ଟାମାନେ ନିଜସ୍ୱ ଦୃଷ୍ଟିକୋଣରୁ ଚିତ୍ରିତ କରିଥାନ୍ତି । "ଦୈହିକମିଳନ ପ୍ରେମର ଗୌଣ ପରିଣତି ମାତ୍ର । ଶରୀର ଦୁଃଖ ସୁଖ ମଧ୍ୟଦେଇ, ନବନବ ଅନୁଭୂତି ମଧ୍ୟଦେଇ, ମାନବାତ୍ମାର ଯେଉଁ ଜନ୍ମାନ୍ତର ହୁଏ ତାହାହିଁ ପ୍ରେମ ।(43) ପ୍ରେମ ଭାବର କାବ୍ୟିକ ରୂପାୟନ କ୍ଷେତ୍ରରେ ନିଜର ସିଦ୍ଧି ଅବତାରଣା କରିବାକୁ ଯାଇଁ, ପ୍ରାଚୀନ ଓଡିଆ କବିତାରେ ଏହି ପ୍ରେମଭାବର ଦୁର୍ଲଭତା ପ୍ରସଙ୍ଗ ସେ ଅବତାରଣା କରିଛନ୍ତି । ଦୁଇଟି ନରନାରୀ ମଧ୍ୟରେ ପ୍ରେମଭାବର ଉଦ୍ରେକ ହୁଏ ସେମାନଙ୍କର ପ୍ରାତ୍ୟୁଷିକ ଅସ୍ତିତ୍ୱ ଅବବୋଧରେ । ପ୍ରାଚୀନ ଓଡିଆ କବିଗଣ ମଣିଷର ବ୍ୟକ୍ତିତ୍ୱ ସମ୍ପର୍କରେ ସଚେତନ

ନ ଥିବାରୁ, ପ୍ରେମର ବର୍ଣ୍ଣବୈଚିତ୍ର୍ୟ ରୂପକୁ ସନ୍ଦର୍ଶନ କରିନାହାନ୍ତି । ଭାବ ଜଗତରେ ଏହାର ରୂପବୈଚିତ୍ର୍ୟକୁ ଅନୁଭବ ମଧ୍ୟ କରିନାହାନ୍ତି । ମାନସିଂହଙ୍କ ମତରେ:—"ଆମ ସାହିତ୍ୟରେ ପ୍ରେମ କବିତାର ଅରଣ୍ୟ ରହିଛି । କିନ୍ତୁ ସେଥିରେ ବିଚିତ୍ରତା ନାହିଁ । ସେ ଜଂଗଲ ଯେପରି ଗୋଟିଏ ଗଛର ଜଂଗଲ, କିନ୍ତୁ ଇଂରେଜୀ ସାହିତ୍ୟ ପ୍ରତ୍ୟେକ କବିର ବ୍ୟକ୍ତିଗତ ବିଭିନ୍ନ ଅଭିଜ୍ଞତାରେ ଶବଳିତ ।"(44) ସେ ସମସ୍ତ ଅଧ୍ୟୟନ କରି ନିଜର ପ୍ରେମ ଅଭିଜ୍ଞତାକୁ ଭାଷାରେ ପ୍ରକାଶ କରିବା ପାଇଁ ମାନସିଂହ ସାହସ କରିଛନ୍ତି । ମାନସିଂହଙ୍କ ପୂର୍ବବର୍ତ୍ତୀ କବିମାନେ ନିଜମନର ପ୍ରେମ ଭାବକୁ ଦେବା–ଦେବୀ, ରାଧାକୃଷ୍ଣ, ରାଜକୁମାର ରାଜକୁମାରୀଙ୍କ ପ୍ରେମ ଭାବରେ ପ୍ରକାଶ କରୁଥିଲେ । ମାନସିଂହ ହିଁ ନିଜର ବ୍ୟକ୍ତିଗତ ପ୍ରେମକୁ ପ୍ରକାଶ କରିବାପାଇଁ ନିଜ କବିତାର ନିଜେ ନାୟକ ସାଜିଛନ୍ତି ।

ଦେହରେ ଦେହ ମିଶିବା ପ୍ରେମ ନୁହେଁ ବରଂ ଏହା କାମ ବୋଲି କୁହାଯାଇ ପାରେ । ପ୍ରେମରେ ସଫଳତା ପାଇଁ ଉଚ୍ଚକର ସାଧନା ଆବଶ୍ୟକ । ଆତ୍ମିକ ପ୍ରେମ ସଂପର୍କରେ ମାନସିଂହ କହନ୍ତି :—"ନୈତିକ କବି ଜାଣି ଥିଲେ ଯେ, ପ୍ରେମର ସାଧନାହିଁ ପ୍ରେମର ଶ୍ରେଷ୍ଠାଂଶ । ଏହି ସାଧନାରେ ମାନବିକ ଚରିତ୍ରର ବିକଚ ବିକାଶ ହୁଏ । ଦୈହିକ ସମ୍ଭୋଗ ପ୍ରଣୟର ଅଂଶ ହେଲେହେଁ ତା ଏତେ ସାମାନ୍ୟ ଓ ସାଧାରଣ କ୍ରିୟା ଯେ, ସେଥିରେ ପୌରୁଷ ଓ ନାରୀତ୍ୱର ପରମ ବିକାଶ ହୋଇ ନ ପାରେ । ଦୈହିକ ଭୋଗ ମନୁଷ୍ୟ କାହିଁକି ଜୀବଜନ୍ତୁ କୀଟପତଂଗର ମଧ୍ୟ ସ୍ୱାଭା–ବିକ ଲୀଳା । କିନ୍ତୁ ସତୀଙ୍କର ଶବକୁ ସ୍କନ୍ଧ ଦେଶରେ ମାଳାକରି ବିରହ ବିଳାପରେ ବିଶ୍ୱ–ବାୟୁକୁ ଉଷ୍ଣ କରିବା କେବଳ ଶଂକର ପାରନ୍ତି । ପ୍ରଣୟର ମର୍ଯ୍ୟାଦା ଏହି ସାଧନାରେ–ଚଉଷଠି ବଂଧରେ ନୁହେଁ ।"(45) ପ୍ରେମରେ ଯେଉଁ ପରିପୂର୍ଣ୍ଣ ଆତ୍ମ ସମର୍ପଣ କଥା ମାନସିଂହ କହୁଥିଲେ, ସେ ବିଷୟରେ ପ୍ରଜଳ କରି ମାନସିଂହ କହନ୍ତି :—"ଅହଂ ବିନାଶ ପରେ ପ୍ରେମରେ ପରିପୂର୍ଣ୍ଣ ଆତ୍ମ ସମର୍ପଣ ଆସେ । ଏ ପର୍ଯ୍ୟନ୍ତ ପ୍ରେମିକା ନିଜର ସ୍ୱତନ୍ତ୍ରସତ୍ତା ଅନୁଭବ କରିଥାଏ, ପ୍ରଣୟୀର ଅବହେଳାରେ ଅଭିମାନ କରିଥାଏ, ପ୍ରଣୟୀ ତାର ପଦତଳେ ଅବନତ ହେଉ, ଏ ବାସନା ତାର ଥାଏ । କିନ୍ତୁ ପ୍ରେମର ନିବିଡତା ସଂଗେସଂଗେ କ୍ରମେ ସେ ସବୁ ତିରୋହିତ ହୁଏ । ସେ କ୍ରମେ ନିଜର ସ୍ୱାତନ୍ତ୍ର୍ୟ ପାଶୋରି ,ନିଜର ଦୁଃଖ ସୁଖ ସହିତ ମିଶାଇ ଦିଏ । ପ୍ରଣୟୀର ସୁଖଲାଗି ସେ ନିଜର ଜୀବନ ଉତ୍ସର୍ଗ କରିବାକୁ ଇଚ୍ଛାକରେ । ତା'ଲାଗି ଅପବାଦ ତାହା ତାର ଭୂଷଣ ହୁଏ । ତା ଲାଗି ଯେ କଷ୍ଟ ତାହା ତାକୁ ସୁଖଦ ହୁଏ, ଆଉ ମାନଅଭିମାନ ରହେ ନାହିଁ । ପ୍ରଣୟୀ ତାକୁ ଅବହେଳା କରି, ତାକୁ ପରିତ୍ୟାଗ କରି ଯଦି ସୁଖି ହୋଇପାରେ ତେବେ ସେ ସେହି ବିପଦକୁ ଅକାତରେ ମୁଣ୍ଡାଇ ନିଏ । ଆମଦେଶରେ ପ୍ରେମର ପରିଣତି ଏଇଠାରେ । ପ୍ରେମର ଆଦର୍ଶ ଏହାଠାରୁ ଉଚ୍ଚତର ହୋଇପାରେ ବୋଲି ଆଶା ହୁଏନା ।"(46) ପ୍ରେମର ଉପଘନ ଅବସ୍ଥା ସଂପର୍କରେ ମାନସିଂହ କହନ୍ତି:—"ପ୍ରେମର ବିହ୍ୱଳ ଅବସ୍ଥାର ଏକ ପ୍ରଧାନ ଲକ୍ଷଣ ଏହି ଯେ, ପ୍ରେମିକ ପ୍ରେମିକା ପରସ୍ପର ମୁଖକୁ ଗ୍ଭହିଁ ଚିରକାଳଲାଗି ବସି ରହିବା ପାଇଁ ଏକ ତୀବ୍ର ଆକାଂକ୍ଷା ସେମାନଙ୍କର ଜାତହୁଏ । ଉଭୟେ ଉଭୟଙ୍କୁ ଜଗତରେ ସବୁଠାରୁ ସୁନ୍ଦରତମ ବସ୍ତୁବୋଲି ପ୍ରତୀତ ହୁଅନ୍ତି । ପ୍ରତି ମୁହୂର୍ତ୍ତରେ

ପ୍ରତ୍ୟେକ ବିଷୟରେ ସେମାନେ ପରସ୍ପର ଠାରେ ନୂତନ ସୌନ୍ଦର୍ଯ୍ୟ ଦେଖିବାକୁ ପାଆନ୍ତି । ପ୍ରେମ ଯେଉଁ ମାୟାର ଅଞ୍ଜନ ଉଭୟଙ୍କ ଚକ୍ଷୁରେ ଲଗାଇ ଦେଇଥାଏ, ଯେଥିରେ ଉଭୟେ ଉଭୟର ପ୍ରତ୍ୟେକ କର୍ମରେ ପରିତୋଷ ଲାଭ କରନ୍ତି । ତେଣୁ ଯେପରି ସେ ମୁଖ, ସେ ହସ୍ତ, ସେ ନାସିକା, ସେ ଚକ୍ଷୁ, ସେ ଚଳନ, ଜଗତରେ ସବୁଠୁ ସୁନ୍ଦର, ତା'ର ତୁଳନା ଆଉ ନାହିଁ । ସେ ମୁଖକୁ ଅନାଇ ଅନାଇ, ଆଖି ଫାଟିଯିବ, ତଥାପି ତାର ସୌନ୍ଦର୍ଯ୍ୟ ଭୋଗରେ ଆଖି ଅତୃପ୍ତ ରହିବ । ପ୍ରାଣର ଏହି ପିପାସା, ଏହି ମାୟା, ପ୍ରେମର ପରମ ଉପଭୋଗ୍ୟ ବିଷୟ ।"(47)

କବି ମାନସିଂହ, ପ୍ରେମ ଜଗତରେ ପ୍ରେମିକ ପ୍ରେମିକାକୁ ସର୍ବତ୍ର ରାଜପୁତ୍ର ରାଜକନ୍ୟା ଭାବରେ ବର୍ଣ୍ଣନା କରିଛନ୍ତି । ନିଜର ମନ ନ ହେଲେ ପ୍ରେମ ସାଧନ ସମ୍ଭବ ନୁହେଁ । ଏ ପ୍ରେମରେ ଦେହ ଭୋଗକୁ ଅସ୍ୱୀକାର କରାଯାଇ ନ ପାରେ । ସେ କହନ୍ତି:—"ରାଜପୁତ୍ର ଓ ରାଜକନ୍ୟାଙ୍କର ପରସ୍ପରକୁ ପାଇବାର ଇଚ୍ଛାର ନାମ ପ୍ରେମ । ନୀତିବାଗୀଶମାନେ କହିବେ, ପ୍ରେମବୋଲି କିଛି ନାହିଁ । ସେ କଥାଟା କେବଳ କାମ—ଅର୍ଥାତ ନିଛକ ଯୌନ ଆକର୍ଷଣ। ଅର୍ଥାତ ପରିତ୍ୟଜ୍ୟ ଓ ଘୃଣ୍ୟ ।"(48) କିନ୍ତୁ ମାନସିଂହ କହନ୍ତି କାମ ଘୃଣ୍ୟ ନୁହେଁ ।"—ଯା'ଉପରେ ଜୀବସଂଗ୍ରାମର ସ୍ଥିତି ନିର୍ଭର କରୁଛି, ଯେଉଁଥିରୁ ଆମପରି ଇତର ଜନର କଥା ଛାଡ଼ିଦିଅ, ବୁଦ୍ଧ, ମହମ୍ମଦ, ଆଇନଷ୍ଟାଇନ, ସେକ୍ସପିଅର, କାଳିଦାସ, ଗାନ୍ଧିଜୀ ପ୍ରଭୃତିଙ୍କର ସୃଷ୍ଟି ସମ୍ଭବ ହୋଇଛି, ସେ କ୍ରିୟା ଘୃଣ୍ୟ କିପରି ହେବ ?"(49) ମାତ୍ର ସାଧାରଣ ଜଗତରେ ଅଧିକାଂଶ ସ୍ଥଳରେ ପ୍ରେମ ପରିବର୍ତ୍ତେ ଯେପରି ନିଛକ ଯୌନ ସମ୍ଭୋଗ ଦେଖାଯାଏ, ପ୍ରାଚୀନ କବି ବିଶେଷତଃ ବୈଷ୍ଣବ କବିମାନେ ଦୈହିକ ଓ ଦେହାତୀତ ପ୍ରେମର ସୀମା ଠିକ୍ ରଖିପାରି ନାହାନ୍ତି । ଅତୀନ୍ଦ୍ରିୟକୁ ଇନ୍ଦ୍ରିୟ ଘେରି ରହିଛି । ଆତ୍ମା ସଂଗେ ସଂଗେ ଦେହ ଲାଗି ରହିଛି । ଦେବତା ଦର୍ଶନ କରିବାକୁ ଯାଇ ଦେବଦାସୀର ଦର୍ଶନ ମଧ୍ୟ ମିଳୁଛି । ଅନେକ ସ୍ଥଳରେ ଏପରି ମଧ୍ୟ ହୋଇଛି ଯେ, ଦେବାଦେବୀ ଆଦୌନାହାନ୍ତି, କେବଳ ଦେବଦାସୀର ଦେହଲୀଳା । ମନ୍ଦ କବି ମାନଙ୍କ ହାତରେ ଏହି ପ୍ରେମଲୀଳା ଏକାବେଳେକେ ଅଶ୍ଳୀଳ ହୋଇ ଅପାଠ୍ୟ ହୋଇ ଉଠିଛି ଏବଂ ଜାତିର ନୈତିକତାର ମୂଳରେ ଯୁଗଯୁଗ ଧରି କୁଠାରଘାତ କରି ଆସିଛି ।(50) ମାନସିଂହଙ୍କ ସୃଷ୍ଟିରେ ପ୍ରେମ କବିତା ପ୍ରମୁଖ ସ୍ଥାନ ଅଧିକାର କରିଛି । ତାଙ୍କର ପ୍ରେମଚେତନା ମଧ୍ୟ ବିଭିନ୍ନ ସ୍ତରଦେଇ ଗତି କରିଥିବା ଲକ୍ଷ୍ୟ କରାଯାଏ । ଯଥା:— ରୂପାନ୍ୱେଷଣ ବା ସୌନ୍ଦର୍ଯ୍ୟାନ୍ୱେଷଣ, ତାରୁଣ୍ୟଚିତ୍ତାବେଗ, ପ୍ରାକ୍ ବିବାହ ପ୍ରେମରେ ଦେହବାଦିତା, ବିବାହୋତ୍ତର ଜୀବନରେ ଅତୀନ୍ଦ୍ରିୟ ପ୍ରେମ, ମିଳନାନନ୍ଦ ଓ ବିରହଶୋକୋଚ୍ଛ୍ୱାସ ଏବଂ ଶେଷ ଜୀବନରେ ପ୍ରେମ ଜନୀତ ଅନୁଶୋଚନା ।(51)

ମାନସିଂହଙ୍କ ସୃଷ୍ଟିରୁ ତାଙ୍କ ପ୍ରେମ ସଂପର୍କୀୟ ଧାରଣାକୁ ବିଶ୍ଳେଷଣକଲେ ଜଣାଯାଏ, ମାନସିଂହଙ୍କ ଚେତନାରେ ତିନୋଟି ନାରୀର ପ୍ରେମଗାଥା ବର୍ଣ୍ଣିତ ହୋଇଛି । ଗ୍ରାମ୍ୟ କିଶୋରୀର ସ୍ମୃତି: ଯାହା 'ଅନ୍ୱେଷଣ'ଉପନ୍ୟାସ 'କମଳାୟନ'କାବ୍ୟ, ସେ ଦିନର 'କବିତା'ତଥା'ପଲ୍ଲୀପ୍ରିୟା'ଆଦି କବିତାରେ ରହିଛି । ଦ୍ୱିତୀୟ ପର୍ଯ୍ୟାୟରେ ସମବୟସୀ ପ୍ରେମିକା, ଯାହାଙ୍କ ସହିତ ମାନସିଂହଙ୍କର ଦେହବାଦୀ ପ୍ରେମ ଚେତନାର ବିକାଶ ଓ'ଧୂପ'ର କବିତା ଯାହାଙ୍କର

॥ ମାନସିଂହଙ୍କ ବିଗ୍ରହଧାରା ॥

ମଧୁମୟ ସ୍ମୃତିରେ ସଂଗୀନ ।'ଧୂପ' ଓ ତାହାର ସମସାମୟିକ ଅଧିକାଂଶ କବିତାର କଥାବସ୍ତୁ 1927 ମସିହାର ପୂର୍ବବର୍ତ୍ତୀ ସମୟ । ଯଦିଓ'ଧୂପ' ଗ୍ରନ୍ଥ ଆକାରରେ ପ୍ରକାଶ ପାଏ ପ୍ରଥମେ 1931ରେ । ମାତ୍ର ମାନସିଂହଙ୍କ ସମବୟସ୍କା ନାରୀ ସହିତ ସଖ୍ୟ ଓ ପରେ ବିଚ୍ଛେଦରୁହିଁ ଏହି କବିତା ଧାରାର ସୃଷ୍ଟି । ତେଣୁ ଏ କବିତା ଗୁଡିକ 1927 ରୁ 1929 ମଧ୍ୟରେ ବିଭିନ୍ନ ସମୟରେ ଲେଖାଯାଇଛି ବୋଲି ଅନୁମାନ କରାଯାଇ ପାରେ ।'କମଳାୟନ'କାବ୍ୟରେ ଗ୍ରାମବଧୂ ସରସ୍ୱତୀର ଆଗ୍ରହ ବ୍ୟବହାର,ମାନସିଂହଙ୍କୁ 'ଧୂପ'ର ସମବୟସୀର ସ୍ମୃତି ଆଣି ଦେଇଛି ।

'ଧୂପ' ସଂକଳନରେ ପ୍ରକାଶିତ କେତେକ କବିତା,ସମବୟସୀ ପ୍ରେମିକା ପାଇଁ ଉଦ୍ଦିଷ୍ଟ ନୁହେଁ । 'ପ୍ରେମର ପରିମାପ', 'ଶଂକିତ ସ୍ନେହ', 'ଭଲପାଅ', 'ଦୂରେରହ',ପ୍ରେମରଭାଷା', 'ପ୍ରେମ ଓ ଜରା',କବିତା କବିଙ୍କର ପତ୍ନୀ ଶ୍ରୀମତୀ ହେମଲତାଙ୍କ ଉଦ୍ଦେଶ୍ୟରେ ଲିଖିତ । ମାନସିଂହଙ୍କ ବିବାହ ପୂର୍ବରୁ 'ଧୂପ' ପ୍ରକାଶ ପାଇଥିଲେ ମଧ୍ୟ, ପୁସ୍ତକ ପ୍ରକାଶ ସମୟକୁ ମାୟାଧରଙ୍କର ଶ୍ରୀମତୀ ହେମଲତାଙ୍କ ସହିତ ବିବାହ ସ୍ଥିର ହୋଇ ସାରିଥିଲା ।'ଧୂପ'ର ପ୍ରଥମ ସଂସ୍କରଣ ଶ୍ରୀମତୀ ହେମଲତାଙ୍କୁ ଉତ୍ସର୍ଗ କରାଯାଇଥିଲା । 'ହେମଶସ୍ୟ' ଓ 'ପୁଷ୍ପିତା'ର ନାୟିକା ଶ୍ରୀମତୀ ହେମଲତା । ଶେଷରେ ଏତିକି କୁହାଯାଇ ପାରେଯେ,ମାନସିଂହଙ୍କ ପ୍ରେମ କବିତାରେ ବୈଚିତ୍ର୍ୟ ରହିଛି ମାତ୍ର ତାଙ୍କ ପ୍ରବନ୍ଧ ଆଲୋଚନାରେ ପ୍ରେମ ସଂପର୍କରେବର୍ଣ୍ଣିତ ଆଦର୍ଶ ବା ଐକାନ୍ତିକତା ତାଂକ କବିତାରେ ରକ୍ଷା କରାଯାଇ ପାରିନାହିଁ । ବିଭିନ୍ନ ସମୟରେ ତାଂକ ଜୀବନରେ ଆସିଥିବା ପ୍ରେମିକାଙ୍କୁ ସେ ଅସ୍ୱୀକାର କରିଛନ୍ତି । ତାଂକ କଥିତ ପ୍ରେମିକବୀରର ଏପରି ସ୍ୱଭାବ ହୋଇ ନ ପାରେ । ମହାପାତ୍ର ନୀଳମଣି ସାହୁ କବିଙ୍କ ମୃତ୍ୟୁପରେ ପ୍ରକାଶିତ ସ୍ମରଣିକାରେ କହିଛନ୍ତି ଯେ-(52) ଯେଉଁ ଯତି,ତାଳ ଓ ଅବେଗରେ ମାନସିଂହ ପରକୀୟାକୁ ଉଦ୍ଦପାଇ କବିତା ଲେଖିଛନ୍ତି,ସେହି ଯତି,ତାଳ ଓ ଆବେଗରେ ସ୍ୱକୀୟାକୁ କବିତାରେ ପ୍ରତିଫଳିତ କରାଇଛନ୍ତି । ବସ୍ତୁତଃ ମାନସିଂହ ପ୍ରେମ କବିତାର ସ୍ୱରୂପ ଥିଲା ପ୍ରେମରେ ଆତ୍ୟନ୍ତିକ ଆବେଗ । ସେଇ ଆବେଗର ବଶବର୍ତ୍ତୀ ହୋଇ ସେ କବିତା ରଚନା କରୁଥିଲେ । ନିକଟବର୍ତ୍ତୀ ସ୍ମୃତିହିଁ ଥିଲା ତାଂକ ତାରୁଣ୍ୟ ତରଳ ପ୍ରେମ କବିତାର ବିଷୟବସ୍ତୁ । ତେଣୁ 'ଉରାନୀ କିଶୋରୀ',ଗ୍ରାମର କୌଣସି ଅନୂଢା ସାଥୀ,କୌଣସି ବିବାହିତା ବଧୂ ତାଂକ ପ୍ରେମାସ୍ପଦା କିମ୍ବା ସ୍ୱକୀୟା ପତ୍ନୀ, ସମସ୍ତଙ୍କ ପାଇଁ ତେଣୁ ପ୍ରାଣ ଉଚ୍ଛଳ ଆବେଗରେ ସେ କବିତା ରଚନା କରିଛନ୍ତି । ତେଣୁ ତାଂକ ପ୍ରେମଭାବନା ସ୍ଥିର ନହୋଇ ଥିଲା ଖୁବ୍ ଦୁର୍ବାର ଓ ଚଞ୍ଚଳ,ଏକଥା କୁହାଯାଇ ପାରେ । ପୁଣି ଯେଉଁ ପରକୀୟା ପାଇଁ ଏତେ ସୁନ୍ଦର ପ୍ରେମକବିତା ରଚନାକରି ମାନସିଂହ ବିପୁଳ କବି ପ୍ରଶସ୍ତି ପାଇଲେ ସେହି ପ୍ରେମକୁ ଅସ୍ୱୀକାର କରିବାକୁ ତାଂକୁ ମଧ୍ୟ ମୁହୂର୍ତ୍ତଟିଏ ଲାଗିଲା ନାହିଁ ।'ହିସାବ ନିକାଶ' କବିତାଟି ଏହି ଅନୁଭବର କରୁଣ ଓ ବିମର୍ଷ ସାକ୍ଷୀ ବହନ କରେ ,ବୋଧହୁଏ କବି ମାତେଇ ପ୍ରେମପାଇଁ ଗୋଟିଏ ଡାଳରୁ ଅନ୍ୟ ଡାଳକୁ ଉଡି ଯାଉଥିବା ଦୃଷ୍ଟାନ୍ତ ସଚରାଚର ଯାହା ଲକ୍ଷ୍ୟ କରାଯାଏ ତାହାହିଁ ମାନସିଂହଙ୍କ ପ୍ରେମ ଭାବନାର ଅସ୍ଥିରତାର ସୂଚକ ବୋଲି କହିବାକୁ ହେବ । ତାହା ଯେତିକି ଉଦ୍ଦାମ ସେତିକି ସଂଯତ,ଯେତିକି ଅବାରିତ ସେତିକି ସ୍ଥିର ନିଷ୍ଠିତ-ଏଇ ଦ୍ୱୈତ ଭାବନାର ଏକ ମଧୁର ସମନ୍ୱୟ ।

ସ୍ରଷ୍ଟାବୀର:—

'ଧ୍ୱନ୍ୟାଲୋକ'ରେ ଆନନ୍ଦ ବର୍ଦ୍ଧନ କହିଛନ୍ତି:—'କବି ହେଉଛନ୍ତି ସ୍ୱୟଂ ବ୍ରହ୍ମା ଏବଂ ସମଗ୍ର କାବ୍ୟ ଜଗତ ହିଁ କବିର ସୃଷ୍ଟି । କବି ତାର ରୁଚି ଅନୁଯାୟୀ କାବ୍ୟ ସଂସାରକୁ ପରିବର୍ତ୍ତିତ କରେ ।(53) ମାତ୍ର 'କାବ୍ୟପ୍ରକାଶ' କାର ମମ୍ମଟଙ୍କ ମତାନୁସାରେ:— କବିସୃଷ୍ଟି ବ୍ରହ୍ମା ସୃଷ୍ଟି ଅପେକ୍ଷା ଉତ୍କୃଷ୍ଟତର । ବ୍ରହ୍ମା ସୃଷ୍ଟି ଅପେକ୍ଷା କବି ସୃଷ୍ଟିରେ ସ୍ୱରୋଟି ଅଧିକ ବୈଶିଷ୍ଟ ଦୃଷ୍ଟିଗୋଚର ହୁଏ । ବ୍ରହ୍ମା ସୃଷ୍ଟି 'ନିୟତିକୃତ ନିୟମ ସହିତ' କବି-ସୃଷ୍ଟି 'ନିୟତିକୃତ ନିୟମ ରହିତ' । ବ୍ରହ୍ମାଙ୍କ ସୃଷ୍ଟିରେ ପ୍ରାଣୀକୁ ସୁଖଦୁଃଖର ସମ୍ମୁଖୀନ ହେବାକୁ ହୁଏ କିନ୍ତୁ କାବ୍ୟ ସଂସାରରେ ଦୁଃଖର ଅସ୍ତିତ୍ୱ ନ ଥାଏ । ବ୍ରହ୍ମାଙ୍କ ସୃଷ୍ଟି ଓ ସୃଷ୍ଟିର ପ୍ରତ୍ୟେକ ଅଂଶ ବିଭିନ୍ନ ଉପାଦାନର ଅଧୀନ କିନ୍ତୁ କବି ତାର ସୃଷ୍ଟିପାଇଁ ସ୍ୱ-ପ୍ରତିଭା ବ୍ୟତୀତ ଅନ୍ୟ ପଦାର୍ଥର ସାହାଯ୍ୟ କାମନା କରେ ନାହିଁ । ଅନ୍ୟର ଅଧୀନ ନ ହୋଇଥିବାରୁ ଏହା ଅନନ୍ୟ-ପରତନ୍ତ୍ର । ବ୍ରହ୍ମାଙ୍କ ସୃଷ୍ଟିରେ ଛଅ ଗୋଟି ପ୍ରାକୃତିକ ରସ ଉପଲବ୍ଧ କରାଯାଏ, ମାତ୍ର କବି-ସୃଷ୍ଟ କାବ୍ୟ ଜଗତରେ ଆମ୍ଭେମାନେ ଶୃଙ୍ଗାର କରୁଣାଦି ନଅଗୋଟି ରସ ଉପଲବ୍ଧିର ସୁଯୋଗ ପାଉଥାଉ ।(54)

ଡକ୍ଟର ମାୟାଧର ମାନସିଂହ କବି ସଂପର୍କରେ କହନ୍ତି :—" ମାନବ ଚରିତ୍ର ବିଶ୍ଳେଷଣ କରିବାରେ, ସୃଷ୍ଟିର ତତ୍ତ୍ୱ ଉପଲବ୍ଧି କରିବାରେ, ଯେଉଁମାନଙ୍କର ସହଜ ଦୃଷ୍ଟିଥାଏ ଏବଂ ଏହ ଅନୁଭୂତି ଓ ତତ୍ତ୍ୱଜ୍ଞାନକୁ ଭାଷାରେ ପ୍ରକାଶ କରିବାର କ୍ଷମତା ଯେଉଁମାନଙ୍କର ଥାଏ, ସେହମାନେ କବି । କବିର କାର୍ଯ୍ୟ ଅଗଣିତ ଜନସଂଘର ଶତଶତ ମୂକ ଅନୁଭୂତିକୁ ଭାଷାଦାନ କରିବା । ଯେଉଁକବି ଯେଉଁ ପରିମାଣରେ ମାନବ ଅନୁଭୂତିକୁ ଭାଷାର ଶିଳ୍ପଦେଇ ପ୍ରକାଶ କରି ପାରନ୍ତି, ସେ ସେହି ପରିମାଣରେ ପ୍ରିୟ ଓ ପୂଜ୍ୟ । ଯେଉଁ ସାହିତ୍ୟରେ ମାନବର ବିଚିତ୍ର ଅନୁଭୂତି ଯେଉଁ ପରି-ମାଣରେ ପ୍ରକାଶ ପାଇଛି, ସେ ସାହିତ୍ୟ ସେହି ପରିମାଣରେ ପୂର୍ଣ୍ଣ ।(55) ସ୍ରଷ୍ଟାଙ୍କର ଦିବ୍ୟ ଦୃଷ୍ଟି ସଂପର୍କରେ ମନ୍ତବ୍ୟ ପ୍ରଦାନ କରି ମାନସିଂହ କହନ୍ତି :—"କବି, ଶିଳ୍ପୀ, ଲେଖକ ଓ ସାହିତ୍ୟିକ ମାନଙ୍କରଚିତ୍ତ ସାଧାରଣତଃ ବହିର୍ମୁଖୀ । ପ୍ରତ୍ୟକ୍ଷ ବିଶ୍ୱର ବର୍ଣ୍ଣଗନ୍ଧ, ବିଚିତ୍ରତା ଦେଖି ଦେଖି ସେମାନେ ମୁଗ୍ଧ ହୁଅନ୍ତି ଓ ତାହାହିଁ ସେମାନେ ଚିତ୍ରଣ କରି ଗ୍ଲାନ୍ତି । ବହିର୍ମୁଖିତା ନ ହେଲେ, ଶିଳ୍ପସୃଷ୍ଟି ହୋଇ ପାରିବ ନାହିଁ । କିନ୍ତୁ ଏହି ସ୍ରଷ୍ଟାମାନଙ୍କର ଚିତ୍ତ ମଧ୍ୟ ବୟୋବୃଦ୍ଧି ସଂଗେ ଜୀବନର ଅଭିଜ୍ଞତା ସବୁର ଆସ୍ୱାଦନ ପରେ, ଆସ୍ତେ ଆସ୍ତେ ଅନ୍ତର୍ମୁଖୀ ହୁଏ, ଯେତେବେଳେ କି ସେମାନେ ଅନୁଭବ କରିବାକୁ ଆରମ୍ଭ କରନ୍ତି ଯେ, ଦୃଶ୍ୟମାନ ଜଗତ ସ୍ଥାୟୀନୁହେଁ ବା ସତ୍ୟ ନୁହେଁ । ତାହା କେବଳ ଏକ ଅଦୃଶ୍ୟର ପ୍ରତିଫଳନ ମାତ୍ର ଏବଂ ସେହି ହେତୁରୁ ଦୃଶ୍ୟ ଅପେକ୍ଷା ଅଦୃଶ୍ୟ ମହତ୍ତର ଓ ସେହି ଅଦୃଶ୍ୟକୁ ଜାଣିବାହିଁ ପ୍ରକୃତ ଜ୍ଞାନ ।"(56)

ବ୍ୟକ୍ତି ସମାଜ, ଦୃଶ୍ୟମାନ ତଥା ଅଦୃଶ୍ୟ ଜଗତର ଅନ୍ତରର କଥାକୁ ଶବ୍ଦରୂପ ଦେବାହିଁ କବିର ଲକ୍ଷଣ । ବହୁକଥାକୁ ଅଳ୍ପ ଭାଷାରେ ପ୍ରକାଶକରିବା, ଶବ୍ଦ ଶିଳ୍ପରେ ଦକ୍ଷତା, ଭାଷାର ସଂଯମ ତଥା ଲୋକ ଚରିତ୍ର ଚିତ୍ରଣରେ ଦକ୍ଷତା ମହାକବି ମାନଙ୍କର ଲକ୍ଷଣ । ଏ ସଂପର୍କରେ ମାନସିଂହ ତାଙ୍କର ବିଭିନ୍ନ ପ୍ରବନ୍ଧରେ ଉଲ୍ଲେଖ କରିଛନ୍ତି ।

କବିର ଆଦର୍ଶ ସଂପର୍କରେ ମାନସିଂହ ଲେଖିଛନ୍ତି :—

" କବି ଖାଲି ନ ରଚିବ, ମଦ-ଓଠ-ସୁଧାଦି ସଂଗୀତ,
ବିଦ୍ରୋହୀ ସେ, ଜଗତର ଦୀନ ଦୁସ୍ଥ ଦଳିତର ବନ୍ଧୁ,
ତା'ଲେଖନୀ ଅଗ୍ନି ତେଜେ, ନେବ ବେହ୍ନେ ଭାରା ଜନ ସ୍କନ୍ଧୁ ।
ସ୍ୱାର୍ଥ ହୀନ, ପାପହୀନ, ସତ୍ୟ-ସନ୍ଧ, ଊର୍ଦ୍ଧ୍ୱଗ ଜୀବନ,
ରୂପ ପାୟୀ ପ୍ରେମମୟ, ନରେ-ଜୀବେ-ନିରତ-କରୁଣ ।" (57)

କବି ସତ୍ୟ ଦ୍ରଷ୍ଟା । କବି ବା ସ୍ରଷ୍ଟା ଜଣେ ବୀର । ବୀର ଭାବର ସମର୍ଥକ ମାନସିଂହ କହନ୍ତି:-"କବି ଦୋକ ଦୁର୍ବଳ ଚିତ୍ତ ବା ଭାବ ପ୍ରବଣ ହେବାଟାକୁ ଧରି ନିଆଯାଇଥାଏ । କିନ୍ତୁ ଏହା ଆଉ ଏକ ଘୋର ଅସଂଗତ ଜନ-ବିଶ୍ୱାସ ମାତ୍ର । ସେକ୍ସପିଅର-କାଳିଦାସ-ରବୀନ୍ଦ୍ରନାଥଙ୍କ ପରି ପୃଥିବୀ ବିଖ୍ୟାତ କବିଙ୍କ ଭିତରୁ କେହି ଜଣେ ହେଲେ କୁସଂସ୍କାର ଗ୍ରସ୍ତ ବା ଦୁର୍ବଳ ଚିତ୍ତ ଥିବାର ତ ଜଣାଯାଏ ନାହିଁ, ବରଂ ଏମାନେ ପ୍ରତ୍ୟେକ ମାନବ ଚିନ୍ତାକୁ ନିର୍ଭିକ ଭାବରେ ସଂସ୍କୃତ ଓ ଉଦାରୀଭୂତ ହେବାକୁ ଚେଷ୍ଟା କରି ଯାଇଅଛନ୍ତି, ଦୂରକୁ ଯିବା ଦରକାର ନାହିଁ, ଓଡ଼ିଆ ସାହିତ୍ୟର ବଡ଼ଜେନା ଭୀମାଭୋଇ, ଅରକ୍ଷିତ ଦାସ, ଫକୀରମୋହନ, ରାଧାନାଥ ଓ ମେହେର ପ୍ରଭୃତି ଚିନ୍ତାର ବି ଅନୁତୋଭୟତା ଓ ଉଦାରତା ଦେଖାଉଯାଇ ଅଛନ୍ତି, ପାଠକେ ତାହା ସ୍ମରଣ କରନ୍ତୁ ।"(58) କବିର ହୃଦୟ କୋମଳ ହୋଇପାରେ ମାତ୍ର ତାର ଲକ୍ଷ୍ୟ ଓ ପ୍ରକାଶିତ ବାଣୀ ଦୁର୍ବଳ ହେବା ଉଚିତ ନୁହେଁ । ସତ୍ୟଦ୍ରଷ୍ଟା ରୋମାଣ୍ଟିକ୍ କବି ମାନସିଂହଙ୍କର ବୀର ଭାବର ଉଦାହରଣ ଭାବରେ ଉପରୋକ୍ତ ଅଂଶକୁ ନିଆଯାଇ ପାରେ । ସ୍ରଷ୍ଟାର ଆଦର୍ଶ ସଂପର୍କରେ ଓଡ଼ିଆ ସାହିତ୍ୟର ଇତିହାସ ପୁସ୍ତକରେ ମାନସିଂହ କହିଛନ୍ତି ଯେ ଭାବ ଜଗତରେ ଆମେ ମୌଳିକ ଚିନ୍ତକ ମାନଙ୍କୁ ସାମ୍ମୁଟ କରୁ, ଯେଉଁମାନେ ପୃଥିବୀକୁ ନୂତନ ସତ୍ୟ ପନ୍ଥା ଦେଇଯାଆନ୍ତି । ସାଧାରଣତଃ ସେମାନେ ଦାରିଦ୍ର୍ୟ ଓ ଅବହେଳାରେ ମରନ୍ତି କିନ୍ତୁ ଜାତିର ଇତିହାସ ସେହି ମୌଳିକ ସ୍ରଷ୍ଟାମାନଙ୍କୁ ନେଇ ଗୌରବାନ୍ୱିତ ହୁଏ । ସବୁ ଦେଶରେ ସବୁ କାଳରେ ମୌଳିକ ସ୍ରଷ୍ଟାମାନେ ଅନ୍ୟାୟ ଅତ୍ୟାଚ୍ଛର ବିରୋଧରେ ସଂଗ୍ରାମ କରି ଆସିଛନ୍ତି ।"ଅନ୍ୟାୟୀ, ଅଯୋଗ୍ୟ ଓ ଦାମ୍ଭିକର ପୃଷ୍ଠରେ ବିଧାତାର ପ୍ରକୃଷ୍ଟ ଗ୍ଭବୁକ୍ ହେଉଛି କବିର ଲେଖନୀ । କୌଣସି କାଳେ ବା କୌଣସି ଦେଶରେ ପ୍ରକୃତ କବିର ଲେଖନୀ ତା'ର ଏଇ ବିଧାତା ଦତ୍ତ କର୍ତ୍ତବ୍ୟରେ ଅବହେଳା କରି ନାହିଁ ।"(59)

କବି ବୀର, ସମାଜ ସଂସ୍କାରକ, ମାତ୍ର କଳ୍ପନା ବ୍ୟତୀତ କବିର ସ୍ଥିତି ଅସମ୍ଭବ । ଏହି ଭଙ୍ଗ ଧରଣୀ ପୃଷ୍ଠରେ ଦଣ୍ଡାୟମାନ ହୋଇ ଏକ ମଧୁମୟ କଳ୍ପଲୋକର ସେ ଚିନ୍ତା କରିପାରେ । ମଣିଷହୋଇ ଧରାରେ ସରଗର କଳ୍ପନା କରିପାରେ। କବିର ବି ତେଲଲୁଣର ସଂସାର ଅଛି, ମାତ୍ର ଏହି ଜାଗତିକ ଜଂଜାଳରୁ ମୁକ୍ତି ପାଇଁ କବି ଅହରହ ଏକ କଳ୍ପଲୋକର ସନ୍ଧାନ କରୁଥାଏ । ମାନସିଂହଙ୍କ ଲୋକପ୍ରିୟ କାବ୍ୟ 'ଧୂପ'ର 'ତରୁଣ କବିର ଆଶା'ରେ ଅଛି:-

"ମଣିଷ ହୋଇତା ଏତେ ବିଗ୍ଭର, /ଧରାରେ ସରଗ ସୃଜନା ତା'ର,
ଏ କଳପନାକୁ ପାଏ କି ଭାଷା, /ହାଇରେ ତରୁଣ କବିର ଆଶା ।"(60)

'ନିର୍ବ୍ଵାଣ' କାବ୍ୟରେ କବି ସଂପର୍କରେ ମାନସିଂହ ଏକ ଉଚ୍ଚାଭିଳାଷ ପ୍ରେକ୍ଷଣ କରିଛନ୍ତି । 'ଧୂପ'ର ରଚନା ପୂର୍ବରୁ 'ନିର୍ବ୍ଵାଣ'ରେ ରାଜକୁମାରୀ ଓ କବି ଚରିତ୍ର ମାଧ୍ୟମରେ ନିଜର ଭାବକୁ ପରିବେଷଣ ପାଇଁ କଳ୍ପନା ସୃଷ୍ଟ ଚଳାଇ ଥିଲେ । ସେଠାରେ ପ୍ରେମରେ ଦେହ ବଡନୁହେଁ,ଆତ୍ମାର ପାରସ୍ପରିକ ମିଳନ,କିଛି ଭଲ ପାଇବା,ପ୍ରାଣ ଦିଆନିଆ ଭାବ 'ନିର୍ବ୍ଵାଣ'ରେ ନିହିତ । ପରେ 'ପୁଷ୍ପିତା ଓ 'ଧୂପ'ରେ ସେହି ଧାରାର ପରିପ୍ରକାଶ ।'ନିର୍ବ୍ଵାଣ'ରେ କବିପ୍ରାଣ ତାକ ଦେଇଛି:— "ଆଜିଠାରୁ ଭାଙ୍ଗିଦିଅ ରାଜଜେମା–କବିର ପ୍ରଭେଦ,

ପ୍ରେୟେ ହିଁ ହେବ ଆମ ଏକୀଭୂତ ଜୀବନର ବେଦ ।"(୬୧)

କବି କାବ୍ୟର ଖୋରାକ ପାଇଁ,ବାସ୍ତବ ଜଗତରୁ ସାମୟିକ ଭାବେ କଳ୍ପନା ଜଗତକୁ ଯାଏ । ଏବ ଧୂପର ମାଟିରେ କଳ୍ପନାର ରଂଗଦେଇ ତାକୁ ରଂଗୀନ କରାଏ । ମାତ୍ର ସ୍ଥିତିହୀନ ଭାବରେ କେବଳ କଳ୍ପନା ରାଜ୍ୟରେ ଭାସିଯିବାକୁ କବି ମାନସିଂହ ପସନ୍ଦ କରି ନାହାନ୍ତି । ଯେଉଁମାଟିରେ ସେ ଜନ୍ମ ହୋଇଛନ୍ତି,ସେହି ମାଟିକୁ ଛାଡି କେବଳ କଳ୍ପଲୋକରେ ଭାସିବାକୁ ସେ ଗ୍ଭହିଁନାହାନ୍ତି । ମାନସିଂହଙ୍କ ମୃତ୍ୟୁପରେ କବି ସଚ୍ଚି ରାଉତରାୟ ମାନସିଂହଙ୍କ ମାଟି ପ୍ରୀତିର ସ୍ଵରୂପ ସଂପର୍କରେ ଲେଖିଥିଲେ:—"ଏ କଥା ସତ ଯେ, ଆମ ସମସ୍ତଙ୍କ ଅପେକ୍ଷା,ମାନସିଂହ ଥିଲେ ଅତି ଅଧିକ ମାତ୍ରାରେ ଓଡିଶାର ସ୍ଥାୟୀ ବାସିନ୍ଦା । ତାଙ୍କୁ ମନେହୁଏ ସେ ଯେପରି ଏଠାରେ ପ୍ରାଚୀନତମ ଅଧିବାସୀ– ଆଉ ଆମେ ସମସ୍ତେ ଯେପରି କେଉଁ ପରବର୍ତ୍ତୀ ପର୍ଯ୍ୟାୟର ଲୋକ ଏଠିକି ଆସି ଆସ୍ଥାନ ଜମାଉଛୁ । ପୈତୃକ ଭିଟା ଭୂମିକୁ ଶେଷପର୍ଯ୍ୟନ୍ତ ଏପରି ଜାବୁଡି ଧରି ପଡିରହିବାର ଧୈର୍ଯ୍ୟ ଓ ପ୍ରବୃତ୍ତିରେ ସେ ଥିଲେ ସତରେ ଅଟଳ ଓ ଅପରିବର୍ତ୍ତନୀୟ । ସମୟର କ୍ଷିପ୍ର ପ୍ରଭଞ୍ଜନକୁ ଏଡାଇଦେଇ ମାଟି କାମୁଡି ପଡିରହିବାର ଲୋକ ମୁଁ ମାନସିଂହଙ୍କ ଛଡା ଆଉ କାହାକୁ ଦେଖିନାହିଁ ।"(୬୨)

ଏସଂପର୍କରେ କବି ମାନସିଂହଙ୍କର ନିଜସ୍ଵ ମତ ପ୍ରଣିଧାନ ଯୋଗ୍ୟ:–" ଜଗତରେ ଶ୍ରେଷ୍ଠ କବିଗଣଙ୍କ କାବ୍ୟ କବିତାରେ ଏହାହିଁ ଦେଖିବାକୁ ମିଳେ । ସେମାନଙ୍କ ମୁକୁଟ ଆକାଶ ସ୍ପର୍ଶ କରିଥିଲେ ହେଁ,ସେମାନଙ୍କ ପାଦ ତାଙ୍କ ନିଜ ଦେଶ ମାଟି ଉପରେ । ସେମାନେ ନିଜ ମାଟିରୁ ରସ ସଂଗ୍ରହ କରି,ନିଜର ପ୍ରତିଭା ବଳରେ ତାକୁସବୁ ଦେଶର ସଂପଦ କରି ଯାଇଛନ୍ତି । ସେକ୍‌ସପିୟରଙ୍କ ପରି ଖାଣ୍ଟି ଇଂରାଜ କବି ଦ୍ଵିତୀୟ ଆଉ ନାହିଁ । କାଳିଦାସ ଓ ରବୀନ୍ଦ୍ରନାଥଙ୍କ ପରି ଖାଣ୍ଟି ଭାରତୀୟ କବି ତୃତୀୟ ଆଉ ନାହିଁ । ଏହି ବିଶ୍ଵକବିମାନଙ୍କଠାରେ ଏହା ସମ୍ଭବପର ହେଲା କିପରି ? ଆମ୍ଭମାନଙ୍କର ବୁଝିବା ଉଚିତ ଯେ,ଏହାହିଁ ସୃଷ୍ଟିର ନିୟମ । ଯେଉଁଠାରେ ଜୀବନକ୍ରିୟା ଯେତେ ପରାନପେକ୍ଷୀ ସେଠାରେ ସୃଷ୍ଟିର ବିକାଶ ସେତେ ସୁନ୍ଦର ଓ ସୁସ୍ଥ । ପରାଙ୍ଗଭୋଜୀ ଉଦ୍‌ଭିଦ କେବେହେଲେ ମୃତ୍ତିକାଭୋଜୀ ଉଦ୍‌ଭିଦଠାରୁ ସୁସ୍ଥତର ଓ ସୁନ୍ଦରତର ହେବନାହିଁ । ଆମ୍ଭମାନଙ୍କ ମଧ୍ୟରେ ସେହି ହିଁ ଏକା ନମସ୍ୟ,ଯେ ଆପଣାର ପଥ ଆପେ ଗଢିଛି ।"(୬୩)ମାନସିଂହଙ୍କ ନିଜସ୍ଵ ଦୃଷ୍ଟି ଓ ତାଙ୍କ ସୃଷ୍ଟି ସଂପର୍କୀୟ ବିବେଚନା ବିଷୟରେ କବି ସଚ୍ଚି ରାଉତରାୟଙ୍କ ପୂର୍ବୋକ୍ତ ମନ୍ତବ୍ୟ ହିଁ ମାନସିଂହଙ୍କ ବକ୍ତବ୍ୟ ଓ ବିଗ୍ଭରଧାରାର ସାମ୍ୟ ସଂପର୍କରେ ସୂଚନା ଦିଏ ।

ଅଧ୍ୟାପକ ଚିନ୍ତାମଣି ବେହେରା, ଡକ୍ଟର ମାନସିଂହଙ୍କୁ ଆର୍ତ୍ତମାନବାତ୍ମାର କବିଭାବରେ ଉଲ୍ଲେଖ କରିଛନ୍ତି । ଜଗତର ଦଳିତ ଲାଞ୍ଛିତ ମାନବ ପ୍ରତି, ତାଙ୍କର ସହାନୁଭୂତି ବହୁକବିତା, କାବ୍ୟ, ନାଟକ, ନାଟିକାରେ ପ୍ରକାଶିତ ହୋଇଛି । ମାନସିଂହ ତାଙ୍କ କବିତାରେ ମାନବର ବେଦନା ପ୍ରକାଶ କରିବା ସଂଗେସଂଗେ ଆଶା କରିଛନ୍ତି ଯେ ଏ ସଂସାରର କବିମାନେ ସେହିପରି ମାନବର ବେଦନାକୁ ଅନୁଭବକରି ପ୍ରକାଶ କରନ୍ତୁ । ଯେଉଁ କବିମାନଙ୍କ ରଚନାରେ ମାନବିକ-ତାର ସ୍ୱର ସେ ଦେଖିଛନ୍ତି, ସେହି କବିମାନଙ୍କର ଗୁଣଗାନରେ ଶତମୁଖ ହୋଇ ଉଠିଛନ୍ତି । ତାଙ୍କ ମତରେ କବିମାନେ ମନେ ରଖିବା ଉଚିତ ଯେ, ସେମାନେ ମନୁଷ୍ୟ ଦେହଧରି ଜନ୍ମ ହୋଇଛନ୍ତି ମନୁଷ୍ୟମାନଙ୍କୁ, ସେହି ମନୁଷ୍ୟମାନଙ୍କର ପରିସ୍ଥିତି, ସୁଖ, ଦୁଃଖ, ସ୍ୱପ୍ନ, ଚିନ୍ତାକୁ ଶୁଣାଇବାକୁ । ମନୁଷ୍ୟ ନିଜର ମୁହଁ ଦେଖିବାକୁ ଭଲପାଏ, ନିଜକଥା ନିଜ କାନରେ ଶୁଣିବାକୁ ଭଲପାଏ । କବିମାନେ ସେ କାମ ନିପୁଣ ଭାବରେ ଓ ସୁନ୍ଦର ଭାବରେ କରିପାରନ୍ତି ବୋଲି, ସମାଜରେ କବିମାନଙ୍କର ଏତେ ଆଦର ।(64) ଗୋପବନ୍ଧୁ ମାନସିଂହଙ୍କର ପ୍ରିୟ ତଥା ପୂଜନୀୟ, କାରଣ ଗୋପବନ୍ଧୁ ଜଣେ କବି ଓ ଦଳିତ ଜନତାର ବନ୍ଧୁ । ଗୋପବନ୍ଧୁଙ୍କ କବିତ୍ୱ ସଂପର୍କରେ ମାନସିଂହ କହନ୍ତି:—"ସର୍ବୋପରି ସେ (ଗୋପବନ୍ଧୁ) ମଧ୍ୟଥିଲେ କବି । ଆମପରି ଅକ୍ଷରଗଣି ପଦମିଳାଇ ପଦ୍ୟଲେଖା କବି ସେ ନଥିଲେ । କି କବିଯଶର ପ୍ରାର୍ଥୀ ମଧ୍ୟ ସେ ନଥିଲେ । ସେ କବି ପ୍ରାଣ ନେଇ ଆସିଥିଲେ, ଯାହା ସାମାନ୍ୟତମ ମାନବିକ ଦୁଃଖର ଉତ୍ତାପରେ ଲବଣୀପରି ତରଳି ଯାଉଥିଲା ଓ ସେହି ଦୁଃଖ, ସେହି ବ୍ୟଥା ଓ ସେହି ବ୍ୟର୍ଥତାକୁ ପ୍ରକାଶ କରିବାକୁ ଗଲେ, ତାହା ସେହି ମହାପ୍ରାଣର ପୁଣ୍ୟ କରୁଣ ରସରେ ଅଭିଷିକ୍ତ ହୋଇ ମର୍ମସ୍ପର୍ଶୀ କବିତା ହୋଇ ଉଠୁଥିଲା "(65)ମାନବିକତା ସଂପର୍କରେ ତାଙ୍କର ସ୍ପଷ୍ଟମତ ପ୍ରକାଶ କରି ମାନସିଂହ କହନ୍ତି:—"ମାନବିକତା ଏହା କ'ଣ ଆମ ପ୍ରତ୍ୟେକର ଭିତରେ ନାହିଁ ? ମନୁଷ୍ୟକୁ ମନୁଷ୍ୟପରି ଦେଖିବା, ନିଜ ଦୁଃଖ ଓ ଅନ୍ୟ ମନୁଷ୍ୟର ଦୁଃଖକୁ ସମାନବୋଧ କରିବା; ଧରଣୀର ପରିବ୍ୟାପ୍ତ ମାନବିକ ଦୁଃଖର କିଞ୍ଚିତ ପରିମାଣରେ ହେଲେ ଲୁଚାଇବାର ଚେଷ୍ଟାକରିବା କ'ଣ ଅଧମତମ ଓ ଦୀନତମ ମନୁଷ୍ୟର ସାଧ୍ୟାତୀତ ନୁହେଁ ? "(66)

କବି ରବୀନ୍ଦ୍ରନାଥଙ୍କ ସଂପର୍କରେ ଆଲୋଚନାକରି ମାନସିଂହ କହନ୍ତି ଯେ, ରବୀନ୍ଦ୍ରନାଥ ବିଶ୍ୱକବି ହୋଇଛନ୍ତି କାରଣ, ତାଙ୍କର ଉଦାର କଳ୍ପନାରେ ସାରା ବିଶ୍ୱହିଁ ଥିଲା ତାଙ୍କର ଜନ୍ମଭୂମି ଏବଂ ମନୁଷ୍ୟ ହିଁ ଥିଲା ତାଙ୍କର ବର୍ଣ୍ଣନାର ବିଷୟ । ରବୀନ୍ଦ୍ରନାଥ ମନୁଷ୍ୟର ସୀମା ଭିତରେ ହିଁ ଅସୀମକୁ ଖୋଜିଛନ୍ତି । ମହାକବି ମାନଙ୍କର ବହୁ ଆଦର୍ଶ ଭିତରୁ ମାନସିଂହ ରବୀନ୍ଦ୍ରନାଥଙ୍କ ପାଖରେ ମାନବିକତାର ଏହି ଶ୍ରେଷ୍ଠ ଆଦର୍ଶର ସନ୍ଧାନ ପାଇଥିଲେ । ତାଙ୍କ ମତରେ ମନୁଷ୍ୟର ଦୁଃଖ କବି ବୁଝିବନି ତ, ବୁଝିବ କିଏ ? ମନୁଷ୍ୟ ପ୍ରତି ନିଜ ଦେଶ ବା ପର ଦେଶରେ ଯେଉଁଠି ସାମାନ୍ୟ ବା ବିଶେଷ କିଛି ଅପମାନ ହେଉଥିଲା, ରବୀନ୍ଦ୍ରନାଥଙ୍କ ଆତ୍ମା ବ୍ୟଥିତ ହୋଇ ଉଠୁଥିଲା ଓ ତାଙ୍କର ଲେଖନୀ ଅଗ୍ନି ବର୍ଷଣ କରୁଥିଲା । ମାନସିଂହଙ୍କ ମୌଳିକ ସୃଷ୍ଟିରେ ମଧ୍ୟ ସେହି ଲକ୍ଷଣ ଦେଖାଯାଏ । ମାନସିଂହ କବିତା ମାଧ୍ୟମରେ ନୀତି ପ୍ରଚାର କରିବାକୁ ଚାହିଁ ନାହାନ୍ତି ବା ନିଜେ ନିଜକୁ ଏକ ନିର୍ଦ୍ଦିଷ୍ଟ ସମାଜର ଧ୍ୱଂସର ଗାୟକ ଭାବରେ ଉପସ୍ଥାପିତ କରି ନାହାନ୍ତି; ବରଂ ଆର୍ତ୍ତ ମାନବାତ୍ମାପାଇଁ ଲେଖନୀମାଧ୍ୟମରେ ଅଶ୍ରୁ-ତର୍ପଣ କରିଛନ୍ତି ।

ଅଭାବ ଅନଟନ ଓ ଦୁଃସ୍ଥ ଜୀବନ କବି ଜୀବନର ସହଚର । ପୃଥିବୀର କବି କଳାକାରମାନଙ୍କ ଜୀବନୀ ଅନୁଧ୍ୟାନ କଲେ ଏହା ସ୍ପଷ୍ଟ—ପଲ୍ଲୀକବି ନନ୍ଦକିଶୋର ଗୋଟିଏ କବିତାରେ ଏକଥା ବ୍ୟକ୍ତ କରିଥିଲେ ।(୬୨) ମାତ୍ର ମାନସିଂହ କହନ୍ତି:— ଅଭାବଟା କବି ଜୀବନର ପରଖ । ଦାରିଦ୍ର୍ୟ ପ୍ରତିଭାକୁ ଶାଣିତକରି ସୃଷ୍ଟିକୁ ଜନ୍ମଦିଏ । "ସବୁ ଦେଶରେ ଲେଖକ ଜାତି ଦରିଦ୍ର Suffering is thebadge of our tribe ଲାଞ୍ଛନା ଆମ୍ଭମାନଙ୍କର ଲାଞ୍ଛନ । ଲାଞ୍ଛନା ଓ ଦୁଃଖ, ସାଧନା ଓ ଅନୁଭୂତିର ଜନନୀ ଓ ଧାତ୍ରୀ । ସାଧନା ଓ ଅନୁଭୂତି ସାହିତ୍ୟ ସୃଷ୍ଟିର ମେରୁଦଣ୍ଡ । ଯେଉଁମାନଙ୍କର ଜୀବନରେ ସୃଜନାନନ୍ଦ ଅନୁଭବ କରିବାପାଇଁ ଆଗ୍ରହ ଅଛି, ସେମାନଙ୍କର ଦୁଃଖ ଦାରିଦ୍ର୍ୟରେ ଅଭିଭୂତ ନହୋଇ ସେ ସବୁକୁ ପ୍ରଶାନ୍ତ ଚିତ୍ତରେ ବରଣ କରିନେବା ଉଚିତ । ଅର୍ଜନାନନ୍ଦ ଓ ସୃଜନାନନ୍ଦ ଭିତରେ ଢେର ବ୍ୟବଧାନ । ଅର୍ଜନ ମନୁଷ୍ୟର ଦୈନିକ ଦେହ ପୋଷଣ ଲାଗି । କିନ୍ତୁ କବି ବା ସାହିତ୍ୟିକ ଦୁଃଖ ଦାରିଦ୍ର୍ୟ ଲାଞ୍ଛନାରେ ନିଷ୍ପେଷିତ ହୋଇ, ଲୋକଲୋଚନର ଅନ୍ତରାଳରେ ତଥା ଅଗୋଚରରେ ଯାହା ସୃଜନ କରନ୍ତି, ତାହା କେବଳ ତାଙ୍କୁ ଆନନ୍ଦ ଦିଏନି, ସେଥିପାଇଁ ଜାତି ବା ଭାଷାର ସେ ଗୁଡିକ ପାଇଁ ମଧ୍ୟ ଚିରନ୍ତନ ଆନନ୍ଦ ଆୟୋଜିତ ହୋଇ ଥାଏ ।"(୬୪) ଜଗତର ସମସ୍ତ ସ୍ରଷ୍ଟା ଏହିପରି ଅଭାବ ମଧ୍ୟରେ ସାଧନାକୁ ଅବ୍ୟାହତ ରଖିଥାନ୍ତି । ମାତ୍ର— "ଭାରତବର୍ଷରେ କବି ଓ ସାହିତ୍ୟିକ ଗୋଷ୍ଠୀରେ ଏ ପ୍ରକାର ସାଧନା ଓ ଦୁଃଖବରଣ ସାଧାରଣତଃ ଦେଖାଯାଏ ନାହିଁ । ମୋର ମନେହୁଏ, ଆମର ସାହିତ୍ୟ ଠିକ୍ ସେହି ଅନୁପାତରେ ଅଭାବଗ୍ରସ୍ତ । ଆମର ଧାରଣା ରହିଯାଇଛି ଯେ, କବିମାନେ ରାଜସଭାଦ୍ୱାରା ପ୍ରତିପାଳିତ ଓ ସମ୍ମାନିତ ହୋଇଥାନ୍ତି ଏବଂ ତାହା ନ ହେଲେ କାବ୍ୟ କବିତାର ଜନ୍ମ ଏବଂ ପ୍ରସାରଣ ସମ୍ଭବ ନୁହେଁ । ରାଜଶକ୍ତି ବା ପୁଞ୍ଜିପତିର ବିନାଶ୍ରୟରେ କବିତା ଲତାର ବଢ଼ି ରହିବା ଆଶା କରା ଯାଏ ନାହିଁ ଏ ଦେଶରେ ଏ ଧାରଣାର ମୂଳୋତ୍ପାଟନ କରିବାକୁ ହେବ ।"(୬୨)

କବିତ୍ୱ ଥିଲା ମାନସିଂହଙ୍କର ସହଜାତ । ଔପସର୍ଗିକ ଭାବେ ଯଶପ୍ରାର୍ଥୀ ହୋଇ ସେ କବିତା ରଚନାରେ ହାତ ଦେଇ ନ ଥିଲେ । ତାଙ୍କର ରଚନାବଳୀ ଜୀବନର ଗତିଭଳି ଥିଲା ସ୍ୱତଃସ୍ଫୂର୍ତ୍ତ । ବିଶ୍ୱର ସମସ୍ତ କାବ୍ୟସ୍ରଷ୍ଟାଙ୍କୁ ଏକ ଅଖଣ୍ଡ ପରିବାରର ସଦସ୍ୟରୂପେ ସେ ମନେ କରୁଥିଲେ । ପରିବାରରେ ପାରସ୍ପରିକ ସ୍ନେହ ଓ ଶ୍ରଦ୍ଧା ଯେଉଁଭଳି ଅନ୍ତରଙ୍ଗତାର ଜାଲ ବିସ୍ତାର କରିଥାଏ, ସେହିଭଳି ପରସ୍ପର ପ୍ରତି କର୍ତ୍ତବ୍ୟ ସଚେତନ ମଧ୍ୟ କରିଥାଏ । ଏହି କର୍ତ୍ତବ୍ୟ ସଚେତନତା ମାନସିଂହଙ୍କୁ କବିମାନଙ୍କୁ ସ୍ନେହସିକ୍ତ ଆହ୍ୱାନ କରିବା ପାଇଁ ପ୍ରରୋଚିତ କରିଛି । କବି ଓ ଲେଖକର ଲକ୍ଷ୍ୟ ସମ୍ପର୍କରେ ସେ କହୁଛନ୍ତି:—"ହେ କବି ହେ ଲେଖକ, ତୁମ୍ଭେମାନେ ସ୍ୱଚ୍ଛନ୍ଦରେ ଅଥଚ ସୀମିତ ଓ ଆବେଗପ୍ଲାବିତ ଜୀବନକୁ ଚିରନ୍ତନ ଘୃଣାକରି ଶିଖ । ଏଇ ଅସଂଖ୍ୟ ଦ୍ୱିପଦ ପ୍ରାଣୀମାନଙ୍କ ଭିତରେ ତୁମେଇ ପ୍ରକୃତିର ପ୍ରକୃତ ପ୍ରତିନିଧି, ତୁମେ ଅଗ୍ନିପରି ଦୀପ୍ତ ଓ ପବିତ୍ର, ବାୟୁପରି ବନ୍ଧନ ହୀନ, ରବି କିରଣ ପରି ଉଜ୍ଜ୍ୱଳ, ଅଥଚ ତୁମେଇ ପୁଣି ଆକାଶ ପରି ପ୍ରଶାନ୍ତ ଓ ଜ୍ୟୋତ୍ସ୍ନା ପରି ମୃଦୁ ଓ ମଧୁର । ତୁମେ ଚିରକାଳ ସ୍ୱାଧୀନ, ସ୍ୱତନ୍ତ୍ର, ସ୍ୱୈର ରହିବାକୁ ଚେଷ୍ଟାକର, ଅନ୍ତତଃ ତମର ମାନସ ଲୋକରେ । ପାର୍ଥିବ ଜୀବନ ପାଇଁ ତୁମକୁ ପଦସ୍ଥ ଅଭିଜାତ ବା

ଫୁଙ୍କିପତିର ଦ୍ୱାରସ୍ଥ ହେବାକୁ ପଡିପାରେ । କିନ୍ତୁ ସେ ଜୀବନକୁ ଅଲଗାକରି ରଖ । ତମର ଅନ୍ତର୍ଲୋକ, ଯେଉଁଠି ପ୍ରତିଭାର ହୋମାଗ୍ନି ଜଳୁଛି, ସେଇ ପବିତ୍ର ହବନ ଭୂମିରେ ତମେ, ତମର ସ୍ୱପ୍ନ, ଚିନ୍ତା ଓ ଅଭିଜ୍ଞତା ଛଡ଼ା ଆଉ କାହାର ଆଦେଶ ବା ଅନୁରୋଧକୁ ପଶିବାକୁ ଦିଅନା । ବାହାର ଜଗତ ତୁମର ମୁଖଶାଳୀ ତେଣିଁ ଜଗମୋହନ ପର୍ଯ୍ୟନ୍ତ ଯାଇପାରେ, କିନ୍ତୁ ତମର ଯେ ଗମ୍ଭୀର ଦେଉଳ, ସେଠି କୌଣସି ଅପବିତ୍ର, ସ୍ଥୂଳବୁଦ୍ଧି, ସ୍ଥୂଳଦୃଷ୍ଟି, ପଦଗର୍ବିତ, ଧନ ଗର୍ବିତ, ଅନାକାଙ୍କ୍ଷିତ ଲୋକକୁ ଯିବାକୁ ଦିଅନାହିଁ । ସେଠାରେ ତୁମେରହ ତପୋମଗ୍ନ, ଧ୍ୟାନସ୍ଥ ଓ ଆତ୍ମସ୍ଥ । ସେଇ ଧ୍ୟାନ, ସେହି ତପସ୍ୟାରୁ ଜାତହେବ ତମର କମନୀୟ ସୃଷ୍ଟି, ଯାହାତୁମକୁ ଦେବ ଅମରତ୍ୱ ।"(70)

## କର୍ମବୀର :-

ତତ୍ତ୍ୱର ମାଧ୍ୟମରେ ମାନସିଂହଙ୍କ ବିଶ୍ୱରରେ ପ୍ରେମିକବୀର, ସ୍ରଷ୍ଟାବୀର ପରେ କର୍ମବୀର ର ପ୍ରାଧାନ୍ୟ ଦେଖା ଯାଇଛି । ମାନସିଂହ ଯେଉଁ ମହାପୁରୁଷ ଓ ବ୍ୟକ୍ତି ବିଶେଷଙ୍କୁ ଭଲ ପାଉଛନ୍ତି, ତାହା ସେମାନଙ୍କର କର୍ମନିଷ୍ଠା ଭାବ ଯୋଗୁ । ଭାଗବତରେ ଅଛି:· କର୍ମମୋହର ନିଜଗୁରୁ, ଉଦ୍ଧବ କେତେ ତୁ ପଶ୍ଚୁରୁ' ସେହିପରି ଶ୍ରୀମଦ୍ ଭଗବତଗୀତାର ବାଣୀ—"କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ'(71) ଏବଂ ଉତ୍କଳମଣି ଗୋପବନ୍ଧୁଙ୍କ ବାଣୀ:-"ମାନବ ଜୀବନ ନୁହଁଇ କେବଳ ବର୍ଷ ମାସ, ଦିନ, ଦଣ୍ଡ,

କର୍ମେ ଜୀଏଁ ନର, କର୍ମ ଏକାତାର, ଜୀବନର ମାନଦଣ୍ଡ ।"(72) ମାନସିଂହଙ୍କ ବିଶ୍ୱଧାରାରେ କର୍ମ ତଥା କର୍ମୀର ଆସନ ଉର୍ଦ୍ଧରେ । ତାଙ୍କ ମତରେ:-"କୌଣସି ଲୋକ ପାହାଡଟାକୁ ହାତୁଡି ନେଇ ଦିନଯାକ ପିଟିପାରେ, ତାହାଶ୍ରମମାତ୍ର, କାରଣ ତାହା ଅଫଳପ୍ରସୂ । ସେହି ଶ୍ରମ ପ୍ରୟୋଗ କଲେ, ପାହାଡତଳେ ମାଟିରୁ ସୁନା ଫଳିବ, ତାହା କର୍ମ । ଏହି କର୍ମହିଁ ମନୁଷ୍ୟକୁ ବଞ୍ଚେଇ ରଖିଛି ଓ ତାହାର ସଭ୍ୟତାକୁ ଗଢିଛି ।"(73) ଯାହା ଫଳପ୍ରସୂ ତାହା କର୍ମ । ମାତ୍ର କର୍ମରେ ନିଷ୍ଠା ଓ ଆନ୍ତରିକତାହିଁ ମଣିଷକୁ ମହତ କରେ । ପଦପଦବୀ ଅପେକ୍ଷା କର୍ତ୍ତବ୍ୟ ନିଷ୍ଠା ହିଁ ମଣିଷକୁ ଉର୍ଦ୍ଧ୍ୱତର ସୋପାନରେ ଅଧିରୁଢ଼ କରେ । "ତୃତୀୟ ଶ୍ରେଣୀ କବି ଅପେକ୍ଷା ପ୍ରଥମଶ୍ରେଣୀ ମାର୍କର ମୂଲ୍ୟ ବେଶି, ଅଧମ ହାକିମ ଅପେକ୍ଷା କୁଶଳୀ କିରାଣୀର ମୂଲ୍ୟବେଶି । ଏହାତ ନିତ୍ୟ ଅନୁଭୂତିର ଘଟଣା ।"(74)

ବହୁ ଲୋକଙ୍କର ଧାରଣା ମାନସିକଶ୍ରମ କହିଲେ କିଛିନାହିଁ—ତାହା ଏକ ବିଳାସମାତ୍ର । ସମସ୍ତ କର୍ମ ଶାରୀରିକ କର୍ମରୁ ଉତ୍ପାଦିତ । ମାନସିଂହ କିନ୍ତୁ ମାନସିକ ଓ ଶାରୀରିକ ଶ୍ରମ—ଉଭୟ ପ୍ରକାର ଶ୍ରମକୁ ସ୍ୱୀକାର କରିଛନ୍ତି । ତାଙ୍କ ଦୃଷ୍ଟିରେ ମାନସିକଶ୍ରମର କର୍ମ ହିସାବରେ ମୂଲ୍ୟ ମହତ୍ତର ।"କବି, ଲେଖକ, ଶିଳ୍ପୀର କାର୍ଯ୍ୟକୁ ଯେଉଁମାନେ ଶ୍ରମହୀନ ସ୍ୱପ୍ନର ବିଳାସବୋଲି ମନେ କରନ୍ତି, ସେମାନେ ସୃଷ୍ଟି କ'ଣ ଜାଣନ୍ତି ନାହିଁ । ଅନେକ ତରୁଣ କବି, ଲେଖକ, ଶିଳ୍ପୀର ମଧ୍ୟ ଏହି ଭ୍ରାନ୍ତ ଧାରଣା ଥାଇପାରେ । କଳାରେ ସ୍ୱପ୍ନ ଓ କଳ୍ପନାତ ରହିବାର କଥା । ଯେଉଁ କବି ଓ ଲେଖକର ରଚନା ପଢିଲାବେଳେ ନଦୀସ୍ରୋତର ଅନୁକୂଳ ଗତିରେ ଡଙ୍ଗାରେ ବସି ଭାସିଗଲାପରି ଲାଗେ, ସେହି କବି ଓ ଲେଖକର ମୂଳଖାତା ସବୁ ଯଦିଥାଏ, ତେବେ ଯାଇ ଦେଖ । କେତେ କଟାକଟି, କେତେ ନଷ୍ଟି ଓ ସୃଷ୍ଟି ପରେ ତାଙ୍କର ଶୈଳୀ

ଜନ୍ମଲାଭ କରିଛି ।"(75) ଏଣୁ ଲେଖକଙ୍କ ମତରେ ଶିଳ୍ପୀ ଓ ଲେଖକମାନେ କର୍ମବୀର ଶ୍ରେଣୀର ଅନ୍ତର୍ଗତ ।

ତେବେ ମାନସିଂହଙ୍କ ବିଚାରରେ କୌଣସି କର୍ମ ଅସାଧ୍ୟ ନୁହେଁ । ଅଭ୍ୟାସ ଓ ନିୟମାନୁବର୍ତ୍ତିତା ରକ୍ଷାକଲେ ସମସ୍ତ କର୍ମ ଅଚିରେ ସାଧିତ ହୋଇ ପାରିବ ।" ଯେ ଅଳସ ଓ ଯାର କାମ ବିଶୃଙ୍ଖଳ, ତାକୁ ଛୋଟବଡ ସବୁ ପ୍ରକାର ସିଦ୍ଧି ଅସମ୍ଭବ । କାମରେ ଅଭିନିବେଶ ଓ ଶୃଙ୍ଖଳା ରହିଲେ, କୌଣସି ସିଦ୍ଧିରେ ସନ୍ଦେହ କରିବାର ଅବକାଶ ନାହିଁ । ଜଣେ ଲେଖକ ଦିନରେ ଦୁଇପୃଷ୍ଠା ମାତ୍ର ଲେଖିଲେ ଏକ ବର୍ଷରେ ସାତ ଶତ ପୃଷ୍ଠାର ଏକ ପୁସ୍ତକ ଲେଖି ଦେଇ ପାରେ । ଏକ ଏକ ଅଧ୍ୟାୟ ଲେଖୁ ଲେଖୁ ଦିନେ ଜଣେ ଲେଖକ ଦେଖିବ ଯେ, ସେ ନିଜ ଦେଶର ଇତିହାସ ବା କୌଣସି ବଡଲୋକର ଜୀବନୀ ନେଇ ଏକ ପ୍ରକାଣ୍ଡ ଗ୍ରନ୍ଥ ଲେଖି ପାରିଛି । ପାଦେ ପାଦେ ଚାଲି ଯାତ୍ରୀ ହଜାର ହଜାର କୋଶ ଘୂରି ଆସେ ।"(76)

ମାନସିଂହ କର୍ମବୀରମାନଙ୍କୁ ହିଁ ସମ୍ମାନ ଦେଇ ଆସିଛନ୍ତି । ଯେଉଁମାନେ ମାନବିକ ଚେତନାରେ, ବିଶିଷ୍ଟ କର୍ମରେ ବା ମାନବ ସେବାରେ ଜୀବନ ବିତାଉଛନ୍ତି, ସେହିମାନଙ୍କୁ ମାନସିଂହ ସଶ୍ରଦ୍ଧ ଚିତ୍ତରେ ସ୍ମରଣ କରିଛନ୍ତି ।"ଏଦେଶର ନିଜର ଦୀର୍ଘ ଇତିହାସରେ, ଏହି ପୁରାଣ ପ୍ରସିଦ୍ଧ ଜାତି କେବଳ ସେହିମାନଙ୍କୁ ସର୍ବାଧିକ ସମ୍ମାନ ଦେଇ ଆସିଚି, ଯେଉଁମାନଙ୍କଠାରେ ଜଗତ ଓ ଜୀବନକୁ ସମଗ୍ର ଭାବରେ ଜାଣିବାର ଦୁର୍ବାର ଆଗ୍ରହ ଦେଖା ଦେଇଥିଲା, ଅର୍ଥାତ ଜ୍ଞାନପାଇଁ ହିଁ ଯେ ଜ୍ଞାନର ତପସ୍ୟା କରୁଥିଲେ । ସେହିମାନେ ହେଉଛନ୍ତି, ଉପନିଷଦର କେତେକ ଋଷି, ହେଉଛନ୍ତି ପୁଣି ବୁଦ୍ଧ, କାଳିଦାସ, ରାମମୋହନ ଓ ରବୀନ୍ଦ୍ରନାଥ । ଏ ଯାବତ ଏ ଦିଗରେ ଓଡିଶାରେ କେବଳ ଦୁଇଟି ବରେଣ୍ୟ ଦୃଷ୍ଟାନ୍ତ ଆଖିରେ ପଡୁଚି—ପଠାଣି ସାମନ୍ତ ଓ ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ।"(77)

ଏହି କର୍ମବୀରମାନେ ସାଧନା ବଳରେ ନିଜେ ବଡହେବା ସଙ୍ଗେ ସଙ୍ଗେ ଦେଶ ଓ ଜାତିର ଗୌରବ ବୃଦ୍ଧି କରିଥାନ୍ତି । ଭାରତବର୍ଷରେ ଗାନ୍ଧୀ ରବୀନ୍ଦ୍ରନାଥଙ୍କୁ ଶ୍ରେଷ୍ଠ କର୍ମୀ ସମ୍ମାନ ଦେବା ସଙ୍ଗେ ସଙ୍ଗେ ଓଡିଶାରେ ଯେଉଁମାନେ, କର୍ମବୀର ଭାବରେ ମାନସିଂହଙ୍କର ସମ୍ମାନ ଭାଜନ ହୋଇଥିଲେ, ସେମାନଙ୍କ ବିଷୟରେ ମାନସିଂହ ଲେଖିଛନ୍ତି :—"ଊନବିଂଶ ଶତାବ୍ଦୀର ଶେଷ ଓ ବିଂଶ ଶତାବ୍ଦୀର ପ୍ରଥମ ଭାଗରେ, ଉତ୍କଳ ଦେଶରେ ଏପରି କେତେକ ବ୍ୟକ୍ତି ଅବତୀର୍ଣ୍ଣ ହୋଇଥିଲେ, ଯାହାଙ୍କୁ ଯଥାର୍ଥରେ କୁହାଯିବ ଗୁଣୀ, ମହତ ଓ ପୁରୁଷ ପୁଙ୍ଗବ । ବୌଦ୍ଧିକ ଜଗତରେ ଚନ୍ଦ୍ରଶେଖର, ରାଧାନାଥ, ଫକୀରମୋହନ, ମଧୁସୂଦନ, ନନ୍ଦକିଶୋର, ଗୋପୀନାଥ ନନ୍ଦ ଓ ମେହେରଙ୍କ ସାଥୀକି ରାଜନୀତି ଜଗତରେ ଦେଖା ଦେଇଥିଲେ, ମଧୁସୂଦନ ଓ ଗୋପବନ୍ଧୁ । ପୃଥିବୀର ଯେ କୌଣସି ଦେଶ ଓ ଜାତିରେ ଏ ଜାତି ବରେଣ୍ୟ ବିବେଚିତ ହୋଇଥାନ୍ତେ ଏବଂ ଓଡିଶାର ପ୍ରତିକୂଳ ପରିବେଶରେ ଜାତ ନ ହୋଇ, ଅଗ୍ରଗାମୀ ଦେଶମାନଙ୍କରେ ସମ୍ପନ୍ନ ଓ ଶୁଦ୍ଧ ସମାଜମାନଙ୍କରେ ଅବତୀର୍ଣ୍ଣ ହୋଇଥିଲେ, ଇତିହାସରେ ଗଭୀର ରେଖା ଯେ ସେମାନେ ଛାଡି ଯାଆନ୍ତେ, ଏଥିରେ ସନ୍ଦେହ ନାହିଁ ।(78) ଓଡିଶାର ଏହି ବରେଣ୍ୟ କର୍ମବୀରମାନଙ୍କ ମଧ୍ୟରେ ମାନସିଂହଙ୍କ ଦୃଷ୍ଟିରେ ସବୁଠାରୁ ମତର୍ଣ୍ଣ ବା ଆଧୁନିକ ହେଲେ, ଦୁଇଜଣ କୁଳବୃଦ୍ଧ ମଧୁସୂଦନ ଓ ସରସ୍ୱତୀ

ଫକୀରମୋହନ । ଏଠାରେ ସୂସ୍ପଷ୍ଟ କିଆଯାଇ ପାରେ ଯେ, ଏଇ ଦୁଇଜଣଙ୍କ ଜନ୍ମକ୍ଷେତ୍ର ଓ ପରିବେଶ ଥିଲା ସବୁଠାରୁ ଅଧିକ ମଧ୍ୟଯୁଗୀୟ । ମିଃ ଦାସ ଓଡିଶାପାଇଁ କ'ଣ କରିଥିଲେ ତାହା ଭିନ୍ନଦୃଷ୍ଟିରୁ ଆଲୋଚନା କରାଯାଇପାରେ କିନ୍ତୁ ମାନସିଂହଙ୍କ ଦୃଷ୍ଟିରେ ମଧୁବାବୁ ଯେ ଗତ ଯୁଗର ଶ୍ରେଷ୍ଠ ଓଡିଆ ଓ ଶ୍ରେଷ୍ଠ ଉତ୍କଳମୂର୍ତ୍ତି ଏଥିରେ କାହାର ମତଦ୍ୱୈଧ ନାହିଁ । ଏଠାରେ କର୍ମ ଓ ବ୍ୟକ୍ତିତ୍ୱକୁ ଅଗ୍ରାଧିକାର ଦେଇ ଫକୀରମୋହନଙ୍କ କର୍ମମୟ ଜୀବନର ବର୍ଣ୍ଣନାରେ ମାନସିଂହଙ୍କ ରଚିତ 'ସରସ୍ୱତୀ ଫକୀରମୋହନ'ମୂଳରେ ।

ମାନସିଂହଙ୍କ ଆଦ୍ୟ ଲେଖକ ଜୀବନରେ ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱ ବାସ୍ତୁ ବିସ୍ତାର କରିଥିଲା । ସନ 1920 ପରବର୍ତ୍ତୀ କାଳରେ ଗୋପବନ୍ଧୁ ଥିଲେ ଓଡିଆ ଜନତାର ଆଶା ଆକାଙ୍କ୍ଷାର ପ୍ରତିରୂ । ଦରିଦ୍ର ଜନସାଧାରଣଙ୍କ ଦୃଷ୍ଟିରେ ଗୋପବନ୍ଧୁ ଥିଲେ ମାନବୀୟ ମହତ୍ତ୍ୱର ବାସ୍ତୁପୁରୁଷ । ପ୍ରତ୍ୟକ୍ଷ ଭାବରେ ମାନସିଂହ ଗୋପବନ୍ଧୁଙ୍କ ସାନ୍ନିଧ୍ୟ ଲାଭକରିବା ପୂର୍ବରୁ ତାଙ୍କର(ଗୋପବନ୍ଧୁଙ୍କର)ସେବା, ତ୍ୟାଗ, ମାନବିକତା ଓ ସର୍ବମାନବ କଲ୍ୟାଣ କାମନା, ମାନସିଂହଙ୍କ ତରୁଣ କବିମନରେ ଇନ୍ଦ୍ରଧନୁର ବର୍ଣ୍ଣବିଭାନେଇ ଉଦ୍ଭାସିତ ହୋଇଥିଲା । ବିଭିନ୍ନ କବିତା ଓ ପ୍ରବନ୍ଧରେ ମାନସିଂହଙ୍କର କର୍ମବୀର ଗୋପବନ୍ଧୁଙ୍କ ପ୍ରତି ଶ୍ରଦ୍ଧା ଭକ୍ତିର ନୈବେଦ୍ୟ ଅର୍ପିତ ।

ଗୋପବନ୍ଧୁଙ୍କ ସମ୍ପର୍କରେ ମାନସିଂହଙ୍କ ଉକ୍ତି ଏଠାରେ ପ୍ରଣିଧାନ ଯୋଗ୍ୟ ।"ଏପରି ଦୁଷ୍ପ୍ରାପ୍ୟ ଗୁଣ ମାନଙ୍କର ଏକତ୍ର ସମାବେଶ ଘେନି, ଗୋପବନ୍ଧୁ ଓଡିଆ ଜାତିର ପ୍ରାଣ ପଦ୍ମରେ ଏପରି ଆସନ ଅଧିକାର କରିଛନ୍ତି, ଯାହା ସାଧାରଣ ଜନନାୟକଙ୍କ ଭାଗ୍ୟରେ ଘଟେନା । ଅନ୍ୟନେତାଏ ବଡ ହୋଇ ପାରନ୍ତି, କିନ୍ତୁ ଏପରି ନିଜର, ଏପରି ପ୍ରିୟ, ଏପରି ଘନିଷ୍ଠ ଆପଣାର, ଗୋପବନ୍ଧୁ ପରି କିଏ ହେବ ? ରାଧାନାଥ ଚିଲିକା ସମ୍ପର୍କରେ ଯାହା କହିଥିଲେ 'ଘୁରପ୍ରାୟ ତାଙ୍କୁ ଦୂରୁ କରିଭୀତି, ପଶୀ ପ୍ରାୟ ତୋତେ ସ୍ମୁରୁଥିଲି ନିତି'ତାହା ଆମେ ଗୋପବନ୍ଧୁଙ୍କ ଠାରେ ହିଁ ଆରୋପ କରିପାରୁ ବା ବାପୁଜୀଙ୍କ ଠାରେ । ମନୁଷ୍ୟ ମନୁଷ୍ୟକୁ ବଡ ସମ୍ମାନ ସ୍ନେହଠାରୁ ଅଧିକ ଦେଇ ନପାରେ ।"(79)ଗୋପବନ୍ଧୁ ଯେ ମହାନ୍ ତାହା ତାଙ୍କର ପ୍ରତିଭା ଯୋଗୁ ବା ଜନ୍ମଯୋଗୁ ନୁହେଁ, ତାହାର କାରଣ ଗୋପବନ୍ଧୁ ଥିଲେ ଜଣେ ମନୁଷ୍ୟ । ତାଙ୍କର ବ୍ୟକ୍ତିତ୍ୱର ସକଳ ମହିମାର ଉତ୍ସ ହିଁ ତାଙ୍କର ମାନବିକତା । ଗୋପବନ୍ଧୁ ମନୁଷ୍ୟକୁ ମନୁଷ୍ୟ ପରି ଦେଖି ପାରୁଥିଲେ, ତେଣୁ ସିନା ମନୁଷ୍ୟର ଦୁଃଖ ଦୁର୍ଦ୍ଦଶା ତାଙ୍କ ପ୍ରାଣକୁ ଏପରି ଅଥୟ କରି ପକାଉଥିଲା ।

ମାନସିଂହଙ୍କର ଗୋପବନ୍ଧୁଙ୍କପ୍ରତି ଥିଲା ନୈକଟ୍ୟଭାବ ତଥା ଆତ୍ମୀୟତାର ଶ୍ରେଷ୍ଠ ସ୍ୱାକ୍ଷର'ଗୋପ ତର୍ପଣ' ଓ 'ଗୋପପ୍ରୟାଣ'କବିତା । ନିଜର ମାନସଲୋକରେ ଜୀବନର ମହନୀୟ କର୍ମାବଳୀ ପ୍ରତିଥିବା ଉନ୍ମୁକ୍ତତା ନିମ୍ନଲିଖିତ ପଂକ୍ତିରେ ଉଚ୍ଚାରିତ ।—(80)

ମହାବୀର ମହାପ୍ରୟାଣ ରଚିଲା ଆଜି, /ତା'ମହା ଜାତିର ଗର୍ବ ଗଲାଯେ ଭାଜି ।(କ)
ଘରେ ଘରେ ଉଠେ କ୍ରନ୍ଦନ ରୋଳ ବାଜି, /ବିରାଟ ଓଡିଆ ଜାତି ମଥାମଣି ଭୂତଳେ ଖସିଲା ଆଜି ।(ଖ)
ଧର୍ମ ଭୁଲି ସେ ଦରିଦ୍ର ମୁଖେ ଅନ୍ନ ଦେଇଛୁ ଆଣି, /ସକଳ ଦୁଃଖକୁ ନିଜ ଦୁଃଖ କରି ଚକ୍ଷୁ ଦେଇଛୁ ପାଣି ।(ଗ)
ଧାର୍ମିକ ସବୁ ନିଜ ସୁଖ ଖାଲି ଦେବତାରେ ଅଛୁ ମାଗି, /ପରସୁଖ ପାଇଁ ସେ ଡାକିଛି ତାର ଦେବତା ରାତ୍ରି ଜାଗି ।(ଘ)

## ଚିନ୍ତାନାୟକ ବୀର ବା ଦାର୍ଶନିକ ବୀର :—

ବୟସ ବଢିବା ସଂଗେସଂଗେ କବି ମାନସିଂହ, ଚିନ୍ତାନାୟକ ମାନସିଂହରେ ଆସ୍ତେ ଆସ୍ତେ ରୂପାନ୍ତରିତ ହେବାକୁ ଆରମ୍ଭ କରିଛନ୍ତି । ପ୍ରାଥମିକ ଜୀବନରେ ପ୍ରେମ, ସେବା, ମାନବିକତା ଓ ସୃଷ୍ଟିଶୀଳତା ଆଦି ଗୁଣପ୍ରେରିତ ଥିବା ତାଙ୍କର ଅନ୍ତରଂଗତା କ୍ରମଶଃ ବୁଦ୍ଧିରେ ପରୀକ୍ଷିତ ହେବାକୁ ଆରମ୍ଭ କରିଛି । ମାନସିଂହ ଇଂଲଣ୍ଡରେ ସ୍ନାତକୋତ୍ତର ଅଧ୍ୟୟନ ପରେ ବୁଝି ପାରିଛନ୍ତି, ବୁଦ୍ଧିର ବିକାଶ, ସଭ୍ୟତାର ଅଗ୍ରଗତିର ସୂଚକ । ପ୍ରେମ, ପ୍ରଣୟ, ଦୟା, ଦାକ୍ଷିଣ୍ୟ, ଇତ୍ୟାଦି ମାନବିକ ଗୁଣ, ଏକ ଶୁଦ୍ଧ ଜୀବନ ନିମିତ୍ତ ଯେପରି ଆବଶ୍ୟକ, ଜୀବନର ବିକାଶ ପାଇଁ ଓ ଅଗ୍ରଗତି ପାଇଁ ଚିନ୍ତାର ଭୂମିକା ସେହି ଭଳି ଉଲ୍ଲେଖଯୋଗ୍ୟ । ବୁଦ୍ଧିର ପ୍ରକର୍ଷ, ମାନବିକତାର ଔତ୍କର୍ଷ୍ୟର ନିୟାମକ । ଯାହାମନରେ ଖୋଜିବାର ସ୍ପୃହା ନାହିଁ, ସେ ମଣିଷ ହେଲେ ହେଁ ଜଡ । ବ୍ୟକ୍ତିପ୍ରାଣରେ ଜିଜ୍ଞାସା ସମ୍ପର୍କରେ ମାନସିଂହ କହନ୍ତି:—"ପ୍ରଶ୍ନ ବା ଜିଜ୍ଞାସା ହିଁ ଉନ୍ନତ ମାନବିକତାର ଆଦ୍ୟ ଚିହ୍ନ । ସନ୍ତୋଷ ଜାନ୍ତବ ଧର୍ମ । ଟାଇଚ୍ଛେଳି ପ୍ରଶ୍ନ ପଚାରନ୍ତିନି । ବହୁଯୁଗ ଧରି ଭାରତବର୍ଷ ସେ, ବିଶ୍ୱର ଜ୍ଞାନରାଜ୍ୟକୁ କିଛି ଦେଇପାରିନାହିଁ, ତା'ର କାରଣ, ଭାରତୀୟ ମନରେ ପ୍ରଶ୍ନ ପଚାରିବା ବନ୍ଦ ହୋଇଯାଇଛି । ଆଜି ଭାରତବର୍ଷରେ ଅଧ୍ୟାପକ ଶ୍ରେଣୀର ପ୍ରାଣରେ ମଧ୍ୟ କୌଣସି ପ୍ରଶ୍ନନାହିଁ; କେବଳ ଅର୍ଥ ଓ ପଦପଦବୀର ସମସ୍ୟା ଛୁଡା । ତାହାହିଁ ଆଜି ଆମର ପରମ ଅଧଃପତନ । ଉପନିଷଦ ଯୁଗରେ ଭାରତବର୍ଷର ବୁଦ୍ଧିଜୀବୀ ସ୍ତରରେ, ଏ ବିଶ୍ୱକୁ ଚିହ୍ନିବାକୁ, ତା'ର ଅନ୍ତର୍ନିହିତ ତତ୍ତ୍ୱ ବୁଝିବାକୁ, ଯେଉଁ ଅବାରଣ ପ୍ରଚେଷ୍ଟା ଚାଲିଥିଲା, ସେହି ମହାନ୍ ଜିଜ୍ଞାସା ହିଁ ଭାରତକୁ ମହିମମୟ କରି ଠିଆ କରାଇଛି ।"(୪।) କେବଳ ଭାରତବର୍ଷରେ ନୁହେଁ, ପୃଥିବୀ ଇତିହାସରେ ଯେଉଁଠି ଯେଉଁଠି ତଥାକଥିତ 'ସ୍ୱର୍ଣ୍ଣଯୁଗ' ଦେଖାଦେଇଛି ସେଠି ତାହା ନିଶ୍ଚିତଭାବରେ ସମ୍ଭବ ହୋଇଛି, ମଣିଷ ମନର ଅବାଧ 'ଜିଜ୍ଞାସା' ଫଳରେ । ଗ୍ରୀସ୍‌ର ଏଥେନ୍ସ ନଗରୀ ପରି ବୌଦ୍ଧଯୁଗରେ ଭାରତର ଚିତ୍ତ ବାଧା ବନ୍ଧନହୀନ ଭାବରେ ଜିଜ୍ଞାସା ଓ ଆତ୍ମପ୍ରକାଶରେ ମାତିଉଠିଥିଲା । ତା'ର ଫଳସ୍ୱରୂପ, ସାଁଚି, ବାରହୁତ, ଅଜନ୍ତାର ଅପୂର୍ବ ସୃଷ୍ଟି, ଚରକ ଶୁଶ୍ରୁତଙ୍କର ମୌଳିକ ଚିକିତ୍ସା ବିଜ୍ଞାନ, ଅଶୋକଙ୍କର ଶାନ୍ତିମନ୍ତ୍ର ଶାସିତ ବିରାଟ ସାମ୍ରାଜ୍ୟ ଏବଂ ସମଗ୍ର ଏସିଆ ମହାଦେଶରେ 'ଧର୍ମଂ ଶରଣଂ ଗଚ୍ଛାମି'ମନ୍ତ୍ର ଘୋଷଣା କରିଥିଲା । ମାତ୍ର ଶତଶତ ବର୍ଷଧରି ଓ ଆଜିବି ଭାରତ ଯେ ଏକ ଦରିଦ୍ର ଦୁର୍ବଳ, ଛିନ୍ନବସ୍ତ୍ର-ପରିହିତ, ନିରକ୍ଷର, ଅନଗ୍ରଣାୟୀ, ବ୍ୟାଧିମୟ, ଘୃଣ୍ୟ-ଅପରିଚ୍ଛନ୍ନ, ଭିକ୍ଷୁକର ଜାତିହୋଇ, ବିଶ୍ୱରେ ଦଣ୍ଡାୟମାନ, ତାହା ଏକାନ୍ତରେ ମଣିଷ ମନର ଜିଜ୍ଞାସାର ଅଭାବରୁ ।

ଏଥିପାଇଁ ମାନସିଂହ କ୍ଷୋଭପ୍ରକାଶ କରିଛନ୍ତି ଯେ, ଆଜି ଭାରତ ଜାପାନରୁ ଧାନଗଛ, ମେକ୍ସିକୋରୁ ଗହମଗଛ ଶିକ୍ଷା କରୁଛି । ନ୍ୟାସନାଲ୍ ଲାବୋରଟାରୀର ବୈଜ୍ଞାନିକ, କେବଳ ନିଜ ନିଜ ପକେଟ ପୂର୍ଣ୍ଣକରିବା ଲକ୍ଷ୍ୟରେ ମଥ୍ୟାବିଷ୍କାର ଛାଡି, ପଦପଦବୀର ବଣ୍ଟନ ଲୁଣ୍ଠନରେ ବ୍ୟସ୍ତ । ବୃହତ୍ତମ ଗଣତନ୍ତ୍ର ରାଷ୍ଟ୍ର ଭାରତ, ବିଶ୍ୱ ଅଲମ୍ପିକ୍‌ରେ ଦକ୍ଷିଣ କୋରିଆ ଭଳି ଛୋଟ ଛୋଟ ରାଜ୍ୟ ଡଜନ ଡଜନ ସ୍ୱର୍ଣ୍ଣପଦକ ଜିଣିପାରୁଥିଲେ ହେଁ, ଭାରତ ଗୋଟିଏ ବ୍ରୋଞ୍ଜ୍ ମେଡଲ ପାଇ ହିଁ ବେଶ୍ ଆତ୍ମ ସନ୍ତୁଷ୍ଟ । ମାନସିଂହଙ୍କ ବକ୍ତବ୍ୟ ହେଲା :—"ଜିଜ୍ଞାସା ହିଁ ମନୁଷ୍ୟ ନାମକ ଜୀବର ପରମତମ ଓ ପ୍ରଥମତମ ଲକ୍ଷଣ, ଏଥିରେ ସଂଦେହ ନାହିଁ । ମନୁଷ୍ୟର ଏହି ଜିଜ୍ଞାସାଗୁଣ ଉପରେହିଁ, ମାନବିକ ସଭ୍ୟତା ଦଣ୍ଡାୟମାନ ।

ମ୍ଭାକୁ ଯେଉଁମାନେ ନିଜ ଜାତିଭିତରେ ବଂଚେଇରଖିଛନ୍ତି । କେବଳ ସେଇମାନେ ହିଁ ଏହିଁ ଲୋକରେ ଉପନିବେଶ କରିବେ ଓ ଶୁକ୍ର ମଂଗଳଗ୍ରହକୁ ଯାତାୟତ କରିବେ । ଆମଭଳି ଜିଜ୍ଞାସାହୀନ ଜାତିକୁ ସହସ୍ର ସହସ୍ର କଲେଜ ଓ ବିଶ୍ୱବିଦ୍ୟାଳୟ ଛାନୀକରିବା ଦୂରେଥାଉ, ସାକ୍ଷରମଧ୍ୟ କରିପାରିବନି ଏବଂ ଆମେ କୌଣସି କାଳେ ଏକ ସମୃଦ୍ଧ ସୁଶାସିତ ସୁସମ୍ମାନିତ ଜାତି ହୋଇପାରିବାନି । "(୪2)

ମନୁଷ୍ୟ ବାହ୍ୟଜଗତର ସଂଧାନ ସଂଗେସଂଗେ ଅନ୍ତର୍ଜଗତର ମଧ୍ୟ ଅନୁସଂଧାନ କରିଚାଲେ । ସେହି ଅନ୍ୱେଷଣକୁ କ'ଣ ? ସେହିଶକ୍ତିକୁ ଚିନ୍ତାଶୀଳ ଲୋକମାନେ ବିଭିନ୍ନ ନାମରେ ବିଭିନ୍ନ ରୂପରେ ହିଁ ଚିହ୍ନିତ କରିଥାନ୍ତି । କେତେକ ବ୍ରହ୍ମାଣ୍ଡ ମଧ୍ୟରେ ସେହି ଶକ୍ତିର ସଂଧାନ କଲାବେଳେ, କେତେକ ପିଣ୍ଡ ମଧ୍ୟରେ ହିଁ ସେହି ଶକ୍ତିର ଅଂଶ ବିଶେଷକୁ ଠାବ କରନ୍ତି । ମାନସିଂହଙ୍କ ମତରେ, ମନୁଷ୍ୟ ଈଶ୍ୱରଙ୍କୁ ମାନୁ ବା ନମାନୁ ଯାଏ ଆସେ ନାହିଁ, କିନ୍ତୁ ଯେ କେହି ଜୀବନରେ କୌଣସି କ୍ଷେତ୍ରରେ ସିଦ୍ଧିଲାଭ କରିବାକୁ ଚାହାନ୍ତି, ତାକୁ ଏହି ଆତ୍ମଶକ୍ତିକୁ ସକ୍ରିୟ କରିବାକୁ ହେବ । ଜୀବନର ଲକ୍ଷ୍ୟ ନିର୍ଦ୍ଧିଷ୍ଟକରି ଏକାଗ୍ରଚିତ୍ତ ଓ ଏକାଗ୍ରଚେଷ୍ଟହୋଇ, ସେହି ଲକ୍ଷ୍ୟରେ ନ ପହଁଚିଲା ପର୍ଯ୍ୟନ୍ତ ତାଂକର ବିଶ୍ରାମ ଯେପରି ନରହେ । ଏପରି ଅକ୍ଲାନ୍ତ ସଂଗ୍ରାମରେ ଜୟ ନିଶ୍ଚିତ । ବଡଲୋକର ପୁଅହୋଇ ଜନ୍ମ ହେବାରେ ନୁହେଁ, ଦାରିଦ୍ର୍ୟ ସଂଗେ ଲଢି ବଡଲୋକ ହେବାରେ ମନୁଷ୍ୟର ପ୍ରକୃତ ପୁରୁଷକାର ।(୪3)

କେବଳ ମହାମାନବତ୍ୱ ନୁହେଁ, ପ୍ରକୃତ ମାନବତ୍ୱର ମାପକାଠି ମଧ୍ୟ ସାମାନ୍ୟ, ସାଧାରଣ ପାର୍ଥିବ ସିଦ୍ଧି ତାରେ ନଥାଏ ବା ନରହିବା କଥା । ତାହାଥାଏ କେବଳ ମନୁଷ୍ୟର ଚିନ୍ତାରେ ଊର୍ଦ୍ଧ୍ୱଗତିରେ, କଳ୍ପନାରସୃଷ୍ଟ ସୁଷମାରେ ଅନୁଭୂତିର ଗଭୀରତାରେ ଓ ସହାନୁଭୂତିର ବ୍ୟାପକତାରେ । ବାହାରର ଜୀବନ ଜଣାଗଲେ ମଧ୍ୟ ମହାମାନବ ବା ପ୍ରକୃତ ମାନବର ଜୀବନର ତଳେତଳେ ଏ ପ୍ରକାର ଅପାର୍ଥିବସିଦ୍ଧିର ଏହି ଅକଳ୍ପନୀୟ ଫଲ୍ଗୁଧାରା ପ୍ରବାହିତ ହୋଇଥାଏ ।

ଦାର୍ଶନିକ ବା ଚିନ୍ତାନାୟକ ମଣିଷହିଁ ବିଭିନ୍ନ ସମୟରେ ବିପଥଗାମୀ ମଣିଷକୁ ମାର୍ଗ ପ୍ରଦର୍ଶନ କରାଇଛି । ତାତ୍କାଳିକ ଆନନ୍ଦପାଇଁ ମଣିଷ ବେଳେବେଳେ ପଥ ଭୁଲେ, ଅଜ୍ଞତାବଶରୁ କୁ ମାର୍ଗରେ ଗତିକରେ, ବିଜ୍ଞବ୍ୟକ୍ତିମାନେ, ସମାଜର ଶୁଭଚିନ୍ତକମାନେ ପଥଭୁଲା ମଣିଷକୁ ଆସି ବାଟ ଦେଖାଇଦେଇ ଯାଆନ୍ତି । ମଣିଷ ଭିତରେ ଏହି ମହାମାନବଙ୍କୁ ମାନସିଂହ ଆନ୍ତରିକ ଭାବରେ ଶ୍ରଦ୍ଧା ତଥା ସମ୍ମାନ ପ୍ରଦର୍ଶନ କରିଛନ୍ତି । ମାନସିଂହଙ୍କର ସର୍ବଶ୍ରେଷ୍ଠ ସମ୍ମାନନୀୟ ଚିନ୍ତାନାୟକ ମାନଂକ ମଧ୍ୟରୁ ପ୍ରମୁଖ ହେଲେ ଶ୍ରୀକୃଷ୍ଣ, ବୁଦ୍ଧ ଓ ଗାନ୍ଧୀ ।

ମାନସିଂହ ଶ୍ରୀକୃଷ୍ଣଙ୍କର ଦୁଇଟି ରୂପ ପ୍ରତ୍ୟକ୍ଷ କରିଛନ୍ତି–ମାନବକୃଷ୍ଣ ଓ ଦେବତାକୃଷ୍ଣ । ମାନବକୃଷ୍ଣ ମାନବୀୟ ଗୁଣାବଳୀର ଆକର, ଚିନ୍ତାଜଗତରେ ଜଣେ କ୍ରାନ୍ତିକାରୀ । ଭଗବତ୍‌ଗୀତାର ରଚୟିତା ଓ ନାୟକକୃଷ୍ଣ ଭାରତୀୟ ମନୀଷାକୁ ସଂପୂର୍ଣ୍ଣ ଗ୍ରନ୍ଥରେ ଉତ୍‌କୀର୍ଣ୍ଣ କରିଯାଇଛନ୍ତି । ଚିନ୍ତାନାୟକ ଭାବରେ ଶ୍ରୀକୃଷ୍ଣଙ୍କ ବୈଶିଷ୍ଟ୍ୟ ସଂପର୍କରେ ଆଲୋକପାତ କରିବାକୁ ଯାଇ, ସେ କହି ଅଛନ୍ତି:—"ଆମେ ଜାଣିବାକୁ ପାଉଛୁ ଯେ, ଶ୍ରୀକୃଷ୍ଣ ଆମପରି ଜଣେ ସୁଖଦୁଃଖ ଭୋଗୀ ସାଧାରଣ ମନୁଷ୍ୟ ହିଁ ଥିଲେ ଏବଂ ସେହି କାରଣରୁ ହିଁ ଆମ ଜୀବନର ସମସ୍ୟାମାନଂକ ପ୍ରତି ତାଂକ ଉପଦେଶରୁ ଆମେ ସଂଗତ ଅର୍ଥ ଓ ମୂଲ୍ୟ ଆଶା କରିପାରିବା । ଅଦ୍ଭୁତକର୍ମା କୌଣସି ଅବତାର ସହିତ ଆମପରି ସାଧାରଣ ମନୁଷ୍ୟର

କି ଅର୍ଥ, କି ଅବା ସଂପର୍କ ? ଆମର ପାର୍ଥିବ ମନୁଷ୍ୟ ଜୀବନର ଦୁଃଖ ଦୁର୍ଦ୍ଦଶା–ଜଂଜାଳ, ସେ କିପରି ଜାଣିବେ ମୋ, ସେ ସବୁ ସଂପର୍କରେ ଠିକ୍ ଠିକ୍ ଉପଦେଶ ଦେବେ ।"(୪୪) ଶ୍ରୀକୃଷ୍ଣଙ୍କୁ ମନୁଷ୍ୟବୋଲି କହିବାର ଅନ୍ୟତମ କାରଣ ଭାବରେ ମାନସିଂହ କହନ୍ତି:–"ଶ୍ରୀମଦ୍‌ଭଗବତ ଗୀତା ର ଉପଦେଶ ମଧ୍ୟ ଆମର ସାଧାରଣ ଦୈନନ୍ଦିନ ଜୀବନ ପ୍ରତି ଅସାଧାରଣ ଭାବରେ ଯଥାର୍ଥତା ସଂପନ୍ନ । ପୁଣି ଶ୍ରୀକୃଷ୍ଣଙ୍କୁ ସାଧାରଣ ମନୁଷ୍ୟବୋଲି ନଧରିଲେ ମଧ୍ୟ, ଗୀତାର ବେଦାନ୍ତିକ ଉପଦେଶର ସଂଗତି ଆମେ ପାଇପାରିବା ନାହିଁ; ଯେପରି ବାପୁଜୀ ଓ ରାମକୃଷ୍ଣଙ୍କୁ ସାଧାରଣ ମନୁଷ୍ୟବୋଲି ନ ଧରିଲେ ସେମାନଙ୍କର ବାଣୀ ଓ ବ୍ୟକ୍ତିତ୍ୱର ମହିମାକୁ ଆମେ ଠିକ୍ ବୁଝି ପାରିବା ନାହିଁ ।"(୪୫) ଶ୍ରୀକୃଷ୍ଣ ନିଜେ ଥିବେ ଏକ ଜୀବନ୍ତ ଭଗବତ୍‌ଗୀତା । ସେ ଗୀତାର ବାଣୀ କେବଳ ପ୍ରଚ୍ଚାର କରି ନଥିଲେ, ଗାନ୍ଧିଜୀଙ୍କ ପରି ଗୀତାର ବାଣୀକୁ ସେ ପ୍ରତିଦିନର ଜୀବନରେ ଅଭ୍ୟାସ କରିଥିଲେ ବୋଲି କହିବାକୁ ହେବ ।

ମହାମାନବ ଶ୍ରୀକୃଷ୍ଣଙ୍କ ସଂପର୍କରେ ମାନସିଂହଙ୍କର ସର୍ବଶେଷ ମତହେଲା:–"ବିରାଟ ମହାଭାରତରେ ବର୍ଣ୍ଣିତ ଅଗଣିତ ନାୟକ ନାୟିକାମାନଙ୍କ ମଧ୍ୟରେ ଆମେ କେବଳ ଶ୍ରୀକୃଷ୍ଣଙ୍କୁ ହିଁ ପୂର୍ଣ୍ଣମାନବ ବା ପୁରୁଷୋତ୍ତମ କହି ପାରିବା । ଜଣେଲୋକ ପିଲାଦିନେ ଗାଈ ଚରାଉଥିବା, ନିଜ ଲୋକଙ୍କୁ ମେଳାଇ ସେ ଚୋଟା ବୟସରେ ହିଁ ଏକ ରାଷ୍ଟ୍ରବିପ୍ଳବ ଘଟାଇ ଏକ ବ୍ୟାପକ ସଂପ୍ରଦାୟକୁ ଅତ୍ୟାଚାରରୁ ମୁକ୍ତକଲା । ସେ ଥିଲା ଅସାଧାରଣ ସୁନ୍ଦର ଦେଖିବାକୁ ଓ ଥିଲାମଧ୍ୟ ଅସାଧାରଣ ଶକ୍ତିଶାଳୀ, ଧୁରନ୍ଧର ଯୋଦ୍ଧା ଓ ବୁଦ୍ଧିମାନ ମନୁଷ୍ୟ । ପରେ ସେ ହୋଇଉଠିଲା ଏପରି ଏକ ଓ୍ୱାଇଜମ୍ୟାନ୍ ବା ପ୍ରାଜ୍ଞବ୍ୟକ୍ତି ଯାହାଙ୍କଠାରୁ ଉପଦେଶ ପାଇବାକୁ ବୟସ୍କ ଲୋକେ ମଧ୍ୟ ଦଉଡିଲେ । ବଂଶୀ ଧ୍ୱନିରେ ସେ ତରୁଣ ବୟସରେ ସମସ୍ତଙ୍କୁ ମୁଗ୍ଧ କରିଥିଲେ ଏବଂ ପରେ ସେ ବିଶ୍ୱକୁ ମୁଗ୍ଧକଲେ ନିଜ ବାଣୀ ଓ କାର୍ଯ୍ୟଦ୍ୱାରା । ନିଜର ସ୍ୱକୀୟ ପରିଧାନ ପରିପାଟି ମଧ୍ୟ ତାଙ୍କୁ ସମାଜରେ ବୈଶିଷ୍ଟ୍ୟ ଦେଉଥିଲା । ସେ ରାଜ୍ୟ ସ୍ଥାପନକାରୀ ଏବଂ ଥିଲେ ମଧ୍ୟ ନୂତନ ନର୍ତ୍ତନରୀତି(ଗୁଜୁରାଟର–ଗୁର୍ବା–ନୃତ୍ୟ)ର ପ୍ରବର୍ତ୍ତକ । ସର୍ବୋପରି ସେ ମଧ୍ୟ ହେଲେ ଏକ ନୂତନ ଦର୍ଶନର ପ୍ରତିଷ୍ଠାତା ।"(୪୬)

ଶାକ୍ୟମୁନୀ ଗୌତମ ଭାରତୀୟ ଚିନ୍ତାରାଜ୍ୟର ଦିଗ୍‌ବଳୟକୁ ନିଜର କର୍ମ ଓ ଉପଦେଶ ଦ୍ୱାରା ସଂପ୍ରସାରିତ କରିଥିଲେ । ବ୍ରାହ୍ମଣ୍ୟ ଧର୍ମର ବିଘାତରେ ଜଡୀଭୂତ ମାନବର ଆତ୍ମା ଗୌତମବୁଦ୍ଧଙ୍କ ଧର୍ମୋପଦେଶ ଭିତରେ ନବଜୀବନର ସଂଦେଶ ଆବିଷ୍କାର କରିଥିଲା । ଯଜ୍ଞ, ପୂଜା, ବଳି ଓ ଉପସ୍ଥରର ଅଂଧ ବିଶ୍ୱାସ ଭିତରେ ବଂଧ୍ୟାତ୍ୱପ୍ରାପ୍ତ ଭାରତୀୟ ଜିଜ୍ଞାସା ଗୌତମବୁଦ୍ଧଙ୍କ ବ୍ୟକ୍ତିତ୍ୱ ଭିତରେ ପୂର୍ଣ୍ଣ ଉଦ୍‌ଭାସିତ ଓ ନବସୃଷ୍ଟି ରେ ସମର୍ଥ ହୋଇଥିଲା । ଜୀବନର ଅପରାହ୍ନରେ ମାନସିଂହ ବୌଦ୍ଧଧର୍ମର ବୈପ୍ଲବିକ ସଂଦେଶକୁ ଆତ୍ମସ୍ଥ କରିବାକୁ ଗ୍ରହିଥିଲେ । ନିଜର ଜୀବନଚର୍ଯ୍ୟା ଭିତରଦେଇ ବୌଦ୍ଧଧର୍ମର ହେତୁବାଦୀ ଜିଜ୍ଞାସାର ପୁନରାବିଷ୍କାର ଗ୍ରହିଁଥିଲେ । ତେଣୁ କୃଷ୍ଣ ନୁହନ୍ତି, ବୁଦ୍ଧହିଁ ଥିଲେ ତାଙ୍କର ଆଦର୍ଶ ଚିନ୍ତାନାୟକ । ଭଗବତ୍‌ଗୀତା ନୁହେଁ, 'ଧମ୍ମପଦ' ହିଁ ଥିଲା ତାଙ୍କର ଶ୍ରେଷ୍ଠ ଆଦର୍ଶ । କଷ୍ଟକାଠିନ୍ୟ ଯୁକ୍ତିଶୀଳତା ଭିତରେ 'ଧମ୍ମପଦ'ଜୀବନକୁ ଯେଉଳି ଓ ମହତମାର୍ଗ ପ୍ରଦର୍ଶନ କରିଛି, ଭଗବତ୍‌ଗୀତା ତାହା କରିବାପାଇଁ ସମର୍ଥ ହୋଇନାହିଁ । ତେଣୁ ବୁଦ୍ଧଙ୍କର ଯୁକ୍ତିଶୀଳ ଜିଜ୍ଞାସାପ୍ରବଣ ବ୍ୟକ୍ତିତ୍ୱ ମାନସିଂହଙ୍କ ଭଳି ଭାବପ୍ରବଣ

ବ୍ୟକ୍ତିକୁ ହଠାତ୍ ଅଧିକାର କରି ବସିଛି । ମାନସିଂହଙ୍କ ଭାଷାରେ:—"ବୁଦ୍ଧ ଯେ ମନୁଷ୍ୟର ଧର୍ମପଥକୁ ସକଳ ବାହ୍ୟ ଆଗ୍ରହମୁକ୍ତକରି କଠୋର ଆତ୍ମସାଧନରେ ପର୍ଯ୍ୟବସିତ କଲେ, ତାହା ହୁଏତ ଏକ ପ୍ରତିକ୍ରିୟା, ଯେପରିକି ପରେ କ୍ରୀତଦାସଙ୍କୁ ଜୀବଜନ୍ତୁପରି ବ୍ୟବହାର କରିବାର ଦେଖି ମହାପ୍ରାଣ ଆବ୍ରାହିମ୍ ଲିଙ୍କନ୍ ଦାସପ୍ରଥା ବିରୁଦ୍ଧରେ ସଂଗ୍ରାମ କରିଥିଲେ । ଆମ୍ଭେମାନେ ଦେଖିବା ଯେ ବୁଦ୍ଧବାଣୀର ଲକ୍ଷ୍ୟ ଯାହା ଭଗବତଗୀତାର ଲକ୍ଷ୍ୟ ମଧ୍ୟ ସେହିଯା । । ଦୁଇଟି ଭିତରେ କୌଣସିଟିରେ ପୁରୋହିତ ବା ପୁରୋହିତ ନିର୍ଭର କୌଣସି ପ୍ରକାର ଆଗ୍ରହର ସ୍ଥାନ ନାହିଁ । ତାହା ଏକାନ୍ତରେ ସାଧାରଣ ନରନାରୀର ନିଜସ୍ୱ ସାଧନାର ଫଳ ।"(୫୨)

ଆଧୁନିକ ଯୁଗର ସର୍ବଶ୍ରେଷ୍ଠ ପୁରୁଷ 'ବାପୁଜୀ' ମାନସିଂହଙ୍କ ଦୃଷ୍ଟିରେ ଜଣେ ମହାନ୍ ଚିନ୍ତାନାୟକ । ଗୋଟିଏ ଦିଗରେ ଗାନ୍ଧିଜୀଙ୍କ ମାନବିକ ଭୂମିକା ଓ ଅଧ୍ୟାତ୍ମ ଜିଜ୍ଞାସା । ଅପର ଦିଗରେ ଜୀବନ ଓ ଜଗତପ୍ରତି ତାଙ୍କର ନିଜସ୍ୱ ଦୃଷ୍ଟିକୋଣ କବି, ପ୍ରାବନ୍ଧିକ ଓ ଔପନ୍ୟାସିକ ମାନସିଂହଙ୍କୁ ମନ୍ତ୍ରମୁଗ୍ଧ କରିଛି । ତାଙ୍କର 'ବାପୁ ତର୍ପଣ' କବିତା ଗୁଚ୍ଛରେ ଜନନାୟକ ଗାନ୍ଧୀଙ୍କର ମହାନତା ପ୍ରତିଫଳିତ ହୋଇଥିବା ବେଳେ ପ୍ରବନ୍ଧ ଗୁଡିକରେ ଚିନ୍ତାନାୟକ ଗାନ୍ଧୀ ହି ଅଗ୍ରେ ଉଭା ହୋଇଛନ୍ତି । ତାଙ୍କ ଦୃଷ୍ଟିରୁ କୃଷ୍ଣ ଓ ବୁଦ୍ଧଙ୍କର ଆଧୁନିକ ରୂପାନ୍ତର ଗାନ୍ଧିଜୀ । କୃଷ୍ଣଙ୍କର ସାହସିକତା, ମାନବିକତା ଓ ବୁଦ୍ଧଙ୍କର କରୁଣା, ଜିଜ୍ଞାସାବୋଧ ଏକତ୍ର ଗାନ୍ଧୀ ବ୍ୟକ୍ତିତ୍ୱରେ ସହାବସ୍ଥାନ କରିଛି । ପ୍ରତିକୂଳ ଅବସ୍ଥା ତାଙ୍କଭଳି ମହାପୁରୁଷଙ୍କ ଯାତ୍ରାପଥକୁ ଅବରୋଧ କରିପାରି ନାହିଁ ।"ପ୍ରତିକୂଳ ଅବସ୍ଥାରେ ପ୍ରତିଭା ସମ୍ପନ୍ନଲୋକେ ଯାହା କରି ଥୋଇପାରନ୍ତି, ଅନୁକୂଳ ପରିସ୍ଥିତିରେ ମଧ୍ୟ ଆମପରି ସହସ୍ର ଅଧମ କରିପାରିବେ ନାହିଁ । ଆମପରି ସହସ୍ର ଅଧମ କେବଳ କାଳର ପୁତ୍ତଳିକା । କାଳ ଆମକୁ ଗଢେ ଧ୍ୱଂସଦେଇ ନିଶ୍ଚିହ୍ନ କରିଯାଏ, ପ୍ରତିଭା କିନ୍ତୁ କାଳକୁ ଗଢେ ଓ ତାକୁ ଦେଇଯାଏ ଆମରଣ ସ୍ୱର୍ଣ୍ଣମୁକୁଟ । ଦୃଷ୍ଟାନ୍ତ ସ୍ୱରୂପ, କେବଳ ଗାନ୍ଧିଜୀହିଁ ତାଙ୍କର ସମଗ୍ର ଜୀବନ ଯାତ୍ରାପଥରେ ଗଢିଗଢି ଗ୍ଲିଲେ ତାଙ୍କ ନିଜର କାଳ ଓ ଇତିହାସକୁ, ବାକି ସମସ୍ତ ଭାରତୀୟ ନେତା, ସେହି ଗାନ୍ଧୀ ଗଢା କାଳର ରୂପ-ପ୍ରପଞ୍ଚ ମାତ୍ର ।"(୫୪)

ଚିନ୍ତାନାୟକମାନେ ସେମାନଙ୍କର କର୍ତ୍ତବ୍ୟବୋଧ ତଥା ସମାଜପ୍ରତି ଦିଗ୍‌ଦର୍ଶନ ପ୍ରଦାନ ଯୋଗୁଁ ମଣିଷ ସମାଜରେ ଆଦର୍ଶ ସ୍ଥାନୀୟ ହୋଇଥାନ୍ତି । ଚିନ୍ତାନାୟକଙ୍କ ସମ୍ପର୍କରେ ମାନସିଂହଙ୍କ ଶେଷକଥା ହେଲା :- "ଗାନ୍ଧୀ, ରାମକୃଷ୍ଣ—ଶାରଦାମଣି, ଆମଭାରତୀୟ ସଂସ୍କୃତି ଓ ଜାତୀୟତାର ପ୍ରତୀକ । ଏବର ଦରମା କ୍ଷମତାଦି-ସ୍ୱାର୍ଥ-ପୂରଣ-ସର୍ବସ୍ୱ ସଂଗପାଳପରି ସର୍ବବ୍ୟାପ୍ତ ଇତର ଶ୍ରେଣୀର ମନ୍ତ୍ରୀ—ନେତା—ଏମ୍.ଏଲ୍.ଏ.— ଭାଇସଚାନ୍ସେଲର-ପ୍ରଫେସର—ଆମସଂସ୍କୃତି ଓ ସଭ୍ୟତାର ପ୍ରତୀକ ବା ପ୍ରତିନିଧି ନୋହି ପାରନ୍ତି । ଏମାନେ ବହୁ ସଂଖ୍ୟକ ହେଲେ ମଧ୍ୟ ଏବଂ ଏମାନଙ୍କ ପିଚ୍ଛା ଦେଶ ଓ ଜାତି କୋଟିକୋଟି ମୁଦ୍ରା ଅପବ୍ୟୟ କରିଗ୍ଲିଥିଲେ ମଧ୍ୟ ଏମାନେ ଜାତିର ଆତ୍ମା ଉପରେ କୌଣସି ରେଖାପାତ କରିପାରୁ ନାହାନ୍ତି । କାରଣ ଏମାନେ ଭାରତୀୟ ଦୃଷ୍ଟିକୋଣରୁ 'ଧର୍ମବୋଧ' ବା 'କର୍ତ୍ତବ୍ୟବୋଧ' ବା 'ସଂସ୍କୃତିବୋଧ' ହରାଇବସିଛନ୍ତି ଏବଂ ଗୋଟେଇ ଗ୍ଲିଛନ୍ତି ଏକାନ୍ତ ଅନିତ୍ୟ ଓ ପ୍ରଚୁର ଅନିଷ୍ଟକାରୀ କ୍ଷମତା ଓ ଧନର ବାଲିଘରତା ସବୁକୁ । ଠିକ୍ ଛୋଟ ପିଲାଙ୍କ ପରି ପାଶ୍ଚାତ୍ୟ ସଂସ୍କୃତିର ଅନୁକରଣରେ ।"(୬୨)

<u>ମଣିଷ ସଂପର୍କରେ ଶେଷବାଣୀ</u> :—

ମାନସିଂହ ମଣିଷର ସୁଖ-ଦୁଃଖ ସହିତ ସମଗ୍ର ମାନବ ସମାଜର ଭଲମନ୍ଦକୁ ବିମ୍ବରକୁ ନେଇଥିଲେ, ମଣିଷର ଚାରିତ୍ରିକ ବିକାଶ ନ ହେଲେ, ମଣିଷ ସାମାଜିକ ସ୍ତରରେ ମଧ୍ୟ ଉନ୍ନତ ହୋଇପାରିବ ନାହିଁ । ସେଥିପାଇଁ ମାନସିଂହ କହନ୍ତି:—"ମଣିଷର ବିକାଶ ନିମନ୍ତେ ଯାହାଯାହା ଆବଶ୍ୟକଚରିତ୍ରସେମାନଙ୍କମଧ୍ୟରେ ପ୍ରଥମ ଓ ଶ୍ରେଷ୍ଠ । ବୃକ୍ଷପ୍ରତି ବୃକ୍ଷର ମୂଳଯେପରି, ମନୁଷ୍ୟପ୍ରତି ମନୁଷ୍ୟର ଚରିତ୍ର ସେହିପରି । ମନୁଷ୍ୟର ଶରୀର ଯେପରି ପାଦଦ୍ୱୟ ଉପରେ ନିର୍ଭରକରି ଶକ୍ତିମାନ ହୁଏ ।" ମନୁଷ୍ୟର ବ୍ୟକ୍ତିତ୍ୱ ସେହିପରି ଚରିତ୍ର ଉପରେ ନିର୍ଭରକରି ଶକ୍ତିମାନ ହୁଏ । "(୨୦) ନୀତିଶାସ୍ତ୍ରରେ ଚରିତ୍ର କହିଲେ ଯାହା ବୁଝାଏ, ମାନସିଂହଙ୍କ ବିଚାରରେ ଚରିତ୍ର ତାହାଠାରୁ ଭିନ୍ନ । "ଚରିତ୍ର କହିଲେ ସାଧାରଣତଃ ଇନ୍ଦ୍ରିୟମାନଙ୍କର ସଂଯମ ବୁଝାଯାଏ କିନ୍ତୁ ପ୍ରକୃତରେ ଚରିତ୍ର ଏହାଠାରୁ ଅଧିକ ବ୍ୟାପକ । ଚରିତ୍ରଦ୍ୱାରା ନୈତିକ, ମାନସିକ ଓ ଆଧ୍ୟାତ୍ମିକ ସକଳପ୍ରକାର ଶକ୍ତିର ଉତ୍କର୍ଷ ବୁଝିବାକୁ ହେବ ।"(୨୧)

ଚରିତ୍ର ସଂପର୍କରେ ମାନସିଂହଙ୍କ ବିଚାର ପରି ଜାତୀୟତା ଓ ମାନବିକତା ସଂପର୍କରେ ମାନସିଂହଙ୍କ ବାଣୀହେଲା :—"ମନୁଷ୍ୟକୁ ମନୁଷ୍ୟ ଠାରୁ ଯାହା ଦୂରରେ ରଖେ, ଯାହା ମନୁଷ୍ୟକୁ ତା'ର ପ୍ରତିବେଶୀକୁ ଘୃଣା, ବିଦ୍ୱେଷ, ଅବିଶ୍ୱାସ କରିବାକୁ ଶିଖାଏ, ତାହା ଘୃଣାର ବିଷୟ । ଇଉରୋପୀୟ ନାସନାଲିଜମ୍ ପ୍ରତ୍ୟେକ ଜାତି ଭିତରେ ବୃଥା ଅହଂକର ପୂରେଇ ଜଗତର ବାର୍ତ୍ତମାନିକ ସକଳ ଅନିଷ୍ଟର କାରଣ ହୋଇଅଛି ।"(୨୨) ଏଣୁ ମାନସିଂହଙ୍କ ଦୃଷ୍ଟିରେ ପ୍ରକୃତ ସତ୍ୟ ଏହି ଯେ କୌଣସି ମନୁଷ୍ୟର କୌଣସି ଅନ୍ୟ ମନୁଷ୍ୟ ଉପରେ କର୍ତ୍ତୃତ୍ୱ କରିବାର ନୈସର୍ଗିକ ଅଧିକାର ନାହିଁ । ଏବଂ ଜାତୀୟତାର ଅର୍ଥ ଏହା ନୁହେଁ ଯେ, ଗୋଟିଏ ଜାତି ଅନ୍ୟ ଜାତିଠାରୁ ନିଜକୁ ମହତ୍ତର ମନେକରି ତାକୁ ଅବଜ୍ଞା କରିବ । ଆମ୍ଭମାନଙ୍କ ନିକଟରେ ଜାତୀୟତାର ଅର୍ଥ ଏହି ହେବା ଉଚିତ ଯେ, ଯେହେତୁ ସମଗ୍ର ମାନବ ଜାତିର ସେବା କରିବାର ଶକ୍ତି ଓ ସୁଯୋଗ ବିଧାତା ଆମ୍ଭମାନଙ୍କୁ ଦେଇନାହାନ୍ତି, ତେଣୁ ଗୋଟିଏ ଛୋଟିଆ ଅଂଶକୁ ଆମର ସେବାଦାନ କରି ଆମ ହୃଦୟର ସେବା ତୃଷ୍ଣା ଆମେ ମେଣ୍ଟାଇବା । ଯେଉଁ ଦେଶରେ ମୋର ଜନ୍ମ ଏବଂ ଯେଉଁମାନେ ମୋର ଭାଷା ବୁଝିପାରନ୍ତି, ସେମାନଙ୍କ ପ୍ରତିମୋର ପ୍ରତିବେଶୀଭାବହିଁ ମୋର ଜାତୀୟତା । ଏହି ଦୃଷ୍ଟିକୋଣରୁ ମୁଁ ପ୍ରତ୍ୟେକ ମନୁଷ୍ୟକୁ ପ୍ରଥମେ ମନୁଷ୍ୟ ଭାବରେ ବିଚାର କରିବି । ସେ ଯଦି ଭଲ ମନୁଷ୍ୟ ନୁହେଁ, ସେ ଓଡ଼ିଆ ହୋଇଥିଲେ ମଧ୍ୟ ତାକୁ ଘୃଣା କରିବି ।"(୨୩)

ମାନସିଂହଙ୍କର ମଣିଷ ସଂପର୍କୀୟ ବକ୍ତବ୍ୟକୁ ତିନୋଟି ସ୍ତରରେ ବିଭକ୍ତ କରାଯାଇପାରେ:— (କ) ରୋମାଣ୍ଟିକ୍ ମାନବଦୃଷ୍ଟି, (ଖ) ଉଦାରତନ୍ତ୍ରୀ ମାନବଦୃଷ୍ଟି, (ଗ) ହେତୁବାଦୀ ମାନବଦୃଷ୍ଟି । ମାନସିଂହ ପ୍ରଥମତଃ କବି, ପରେ ବୁଦ୍ଧିଜୀବୀ ଓ ଚିନ୍ତାନାୟକ । ତାଙ୍କର ସମସ୍ତ ବକ୍ତବ୍ୟ ଚିନ୍ତା ଓ ବିଚାରକୁ ସବୁ ସ୍ତରରେ ଏକ କବିସୁଲଭ ଭାବପ୍ରବଣତା ଆବୃତ କରିଥିବାର ଦେଖାଯାଏ । ଯୌବନର ପ୍ରାକ୍କାଳରେ କବି ମାନସିଂହ ମଣିଷକୁ ନେଇ ନାନା ସ୍ୱପ୍ନ ଦେଖିଥିଲେ । ସେ ସ୍ୱପ୍ନ ଭିତରେ ମଣିଷ ଉଭୟ ରହିଲା, ପ୍ରେମିକ କବି, ଦଳିତ ଓ ପତିତ ଜନତାର ମୁକ୍ତିଦାତା ରୂପେ । ସାଧାରଣ ମଣିଷର ବ୍ୟଥାବେଦନା ସଂପର୍କରେ ସେ ଅବହିତ ଥିଲେ । ସାମାଜିକ ମଣିଷର ନାନା ଦ୍ୱନ୍ଦ୍ୱ

ଓ ଯନ୍ତ୍ରଣାକୁ ସେ ବୁଝି ପାରିଥିଲେ । କିନ୍ତୁ ତାଙ୍କର କବିମନ ଏଇ ସମସ୍ତ ବସ୍ତୁନିଷ୍ଠ ଅବସ୍ଥାକୁ ଅତିକ୍ରମି ଯାଇଥିବା । ତାଙ୍କର ମଣିଷ, ପ୍ରେମ କରିଛି, ସ୍ୱପ୍ନ ଦେଖିଛି, ଜୀବନ ନେଇ ରଙ୍ଗୀନ ଅଧ୍ୟାୟରେ ମସଗୁଲ ହୋଇଛି । କିନ୍ତୁ ତା ପାଦ ତଳର ପୃଥିବୀକୁ ଫେରି ସ୍ପର୍ଶିବା ପାଇଁ ସେ ଇଚ୍ଛା କରିନି । ଫଳରେ ଗାନ୍ଧୀ, ଗୋପବନ୍ଧୁ ଭଳି ମହାପୁରୁଷ ତାଙ୍କର ନମସ୍ୟ ହୋଇ ଉଠିଛନ୍ତି । କବି ଓ ଶିଳ୍ପୀଭାବରେ ମାନସିଂହ ନିଜର ଆତ୍ମସତ୍ତାକୁ ପରିପୂର୍ଣ୍ଣଭାବେ ଉପଲବ୍ଧି କରିବାକୁ ଚେଷ୍ଟା କରିଛନ୍ତି । କେତୋଟି ପ୍ରବନ୍ଧରେ କବିମନର ଏହି ସତ୍ତା ସଂପୂର୍ଣ୍ଣ ଭାବରେ ଛାୟାପାତ କରିଛି ।

ମାନସିଂହଙ୍କ ଇଂଲଣ୍ଡ ରହଣୀ ତାଙ୍କର ଚିନ୍ତା ଓ ଚୈତନ୍ୟକୁ ପ୍ରଭାବିତ କରିଛି । ସେ ପ୍ରତ୍ୟକ୍ଷ ଭାବରେ ଅନୁଭବ କରିଛନ୍ତି, ଇଂରେଜ ଜାତି କେବଳ ଶୋଷକ ବା ଶାସିତ ନୁହେଁ, ସେ ମଧ୍ୟ ନାନା ମୂଲ୍ୟବୋଧର ସ୍ରଷ୍ଟା । ଭାରତୀୟମାନଙ୍କର ଦାରିଦ୍ର୍ୟ, ଇଂରେଜମାନଙ୍କର ଶୋଷଣପାଇଁ ନୁହେଁ, ନିଜ ବିଶ୍ୱ-ବୀକ୍ଷା ଜନୀତ ଦୁର୍ବଳତା ପାଇଁ ପରିବେଶ ସହିତ ଖାପ ଖୁଆଇବାରେ ନିଜର ଅପାରଗତା ପାଇଁ, ଭାରତୀୟମାନଙ୍କର ଦାରିଦ୍ର୍ୟ ଓ ନିମ୍ନଗତିପାଇଁ ସେମାନେ ନିଜେ ଦାୟୀ । ଇଂରେଜମାନଙ୍କ ମୁକ୍ତ ଅର୍ଥନୀତି, ଉଦାରତନ୍ତ୍ରୀରାଜନୀତି, ତାଙ୍କମନରେ ଗଭୀର ଛାୟାପାତ କରିଛି । ଜୀବନରେ ପୂର୍ଣ୍ଣ ମର୍ଯ୍ୟାଦାବୋଧ ସ୍ୱାଧୀନତା ଓ ବ୍ୟକ୍ତି ସ୍ୱାଧୀନତାର ମୂଲ୍ୟ ସେ ଅନୁଭବ କରିଛନ୍ତି । ଇଂରେଜଜାତି କେବଳ ଧନରେ ବଡନୁହେଁ, ସେ ମନରେ ବଡ, ଅଭିମାନରେ ବି ସେ ବଡ । ତା'ର ମର୍ଯ୍ୟାଦାବୋଧରୁ ଉଚ୍ଚ ସାହିତ୍ୟକୃତି ଓ ଦର୍ଶନ ଚିନ୍ତା ଉଦ୍ଭାବିତ । ଶ୍ରମ-କୌଶଳ, ଭାରତରେ କର୍ତ୍ତବ୍ୟବୋଧ ଇତ୍ୟାଦି ପ୍ରବନ୍ଧରେ ପାଶ୍ଚାତ୍ୟ ଜୀବନଦର୍ଶନର ପରୋକ୍ଷ ଜୟଗାନ କରିଛନ୍ତି । ମଣିଷପ୍ରତି ଥିବା ତାଙ୍କର ରୋମାଣ୍ଟିକ ଦୃଷ୍ଟିକୋଣ ଏଠି ଭିନ୍ନମୋଡ ନେଇଛି ।

ଜୀବନର ଶେଷ ପର୍ଯ୍ୟାୟ ଆଡକୁ ବ୍ୟକ୍ତି ଜୀବନର ନାନା ସଫଳତା ଓ ବିଫଳତା ମାନସିଂହଙ୍କୁ ମଣିଷ ସଂପର୍କରେ ଗଭୀରଭାବରେ ଚିନ୍ତାକରିବା ପାଇଁ ଉଦ୍‌ବୋଧିତ କରିଛି । ବ୍ୟକ୍ତିଗତ ଜୀବନର ବହୁଦୁଃଖ, ସୁଖ-ଦୁଃଖ ନିର୍ବିଶେଷରେ ପ୍ରଶାନ୍ତଚିତ୍ତ ହେବାପାଇଁ ତାଙ୍କୁ ବାଧ୍ୟ କରିଛି, ବୌଦ୍ଧ ଦର୍ଶନର ଦ୍ୱାରସ୍ଥ କରାଇଛି ।ବୌଦ୍ଧ ଦର୍ଶନର ମୂଳତଃ ତୃଷ୍ଣା, ଜୀବନ ପ୍ରତି କିଛି ପରିମାଣରେ ହେତୁବାଦୀ ଓ ସଂଶୟବାଦୀ ଦୃଷ୍ଟିକୋଣ ।

ବୁଦ୍ଧ ନାଟକ, ଗୀତାମହାତ୍ମ୍ୟ, କମଳାୟନ ଆଦି ପୁସ୍ତକରେ ମଣିଷପ୍ରତି ତାଙ୍କର ସଂହୃତ ଦୃଷ୍ଟିକୋଣ ପ୍ରତିଫଳିତ । ଜୀବନର ବିଭିନ୍ନ ପର୍ଯ୍ୟାୟକୁ ଅନୁଭବ କଲାପରେ ମଣିଷପ୍ରତି ତାଙ୍କର ଦରଦ ଭଲପାଇବା, ତାଚ୍ଛଲ୍ୟ, ଘୃଣା, ଏଇସବୁ ପୁସ୍ତକରେ ଅଭିବ୍ୟକ୍ତ । ଏସବୁ ଭିତରେ ରହିଛି, ମାନସିଂହଙ୍କର ଗୋଟିଏ ନିଜସ୍ୱ ଦୃଷ୍ଟିକୋଣ-ତାହାହେଲା ମଣିଷକୁ ତା'ର ଅର୍ଥନୈତିକ, ସାମାଜିକ ଓ ରାଜନୈତିକ ଅର୍ଥାତ ବସ୍ତୁନିଷ୍ଠ ପରିପ୍ରେକ୍ଷୀରୁ ବିଚ୍ଛିନ୍ନ କରି ବିଚାର କରିବାର ମୋହ । ତାଙ୍କ ନିକଟରେ ସାଂସ୍କୃତିକ ମଣିଷଟି ହିଁ ସତ୍ୟ । ଗାନ୍ଧୀ, ଗୋପବନ୍ଧୁ, ମଧୁସୂଦନ, ଫକୀରମୋହନ, ହିଁ ଦୃଷ୍ଟ ସତ୍ୟ । ସାଧାରଣ ମଣିଷର ଜୀବନଗତ ତାତ୍ପର୍ଯ୍ୟବୋଧକୁ ସେ ପ୍ରାୟତଃ ଉପେକ୍ଷା କରିଅଛନ୍ତି ।ଏହାର କାରଣହେଲା ଜୀବନର ବିଭିନ୍ନ ପର୍ଯ୍ୟାୟରେ ବିଭିନ୍ନ ଦୃଷ୍ଟିକୋଣକୁ ସେ ଗ୍ରହଣ କରିଥିଲେ ବି ଭାବବାଦୀ ଜୀବନ ବୀକ୍ଷାକୁ ପରିହାର କରିପାରି ନାହାନ୍ତି ।

---

## ଚତୁର୍ଥ ଅଧ୍ୟାୟର ସୂଚନା

1: ମାନସିଂହ, ମାୟାଧର–ଜୀବନପଥ(1957), ନିଜଦାୟିତ୍ୱ–ପୃ–82.

2: ମାନସିଂହ ଗ୍ରନ୍ଥାବଳୀ(ପ୍ରଥମ ଖଣ୍ଡ)–1962–ଅକ୍ଷତ, ପାନ୍ଥଗାଥା, ପୃ–296–97,

"ଏ ଧରା ମନୁଷ୍ୟ ଜାତି ଏକ ପିତାଙ୍କର, /କଳାଗୋରା ପୀତ, ରକ୍ତ, ସର୍ବେ ଭାଇଭାଇ,

ପ୍ରଷ୍ଟାଙ୍କର ନଦନଦୀ, ଭୂଧର ସାଗର, /ଦେଇଛୁ କି ଅଂଶୀକୃତ କାହିଁ କାହାପାଇଁ

ସର୍ବେ ନାରୀଗର୍ଭଜାତ, ସମାପ୍ତ ଶ୍ମଶାନେ, /ପୂର୍ବ, ପର ଜଣା ନାହିଁ, ମଧ୍ୟେ ଯେତେ ବଳି,

ଚିରନ୍ତନ ଭାବି ଧରା–ଜୀବନ ଅଜ୍ଞାନେ, /ସତ୍ୟ, ସୁଖ, ଶାଶ୍ୱତକୁ ଦିଅ କିଁପା ବଳି ?

3: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ)–1973, ମାନବ ଗୋପବନ୍ଧୁ, ପୃ–519,

4: ତତ୍ରୈବ, ମାନବିକତାର କବି ମେହେର, ପୃ–499,

5: ମାନସିଂହ, ମାୟାଧର–(1976, ଜୁଲାଇ) ଓଡିଆ ସାହିତ୍ୟର ଇତିହାସ, ପୃ–22,

6: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ)–1973, ମାନବ ଗୋପବନ୍ଧୁ, ପୃ–519,

7: ତତ୍ରୈବ, ଓଡିଆ ଜାତିର ବୈଶିଷ୍ଟ୍ୟ, ପୃ.586,

8: ତତ୍ରୈବ, ପୃ–587,

9: ମାନସିଂହ ଗ୍ରନ୍ଥାବଳୀ(ଦ୍ୱିତୀୟ ଖଣ୍ଡ)–1964, କମଳାୟନ, କଲେଜରେ ବକ୍ତୃତା ପ୍ରତିଯୋଗିତା: ବିବର୍ତ୍ତନବାଦ, ପୃ. ପୃ.187 ରୁ 191

10 ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ)–1973, ପ୍ରାଚୀନ ଓଡିଆ କାବ୍ୟ, ପୃ.573,

11: ମାନସିଂହ ଗ୍ରନ୍ଥାବଳୀ(ପ୍ରଥମ ଖଣ୍ଡ)–1962, ଅକ୍ଷତ, (କ)–ମୋ ଧନରେ, ପୃ–305,

(ଖ)ଯାଇଛି ସେ, ପୃ–307, (ଗ) ଶିଶୁର ଦାନ, ପୃ.308, (ଘ)ରୂପାନ୍ତର, ପୃ–308,

ସିନ୍ଧୁ ଓ ବିନ୍ଦୁ–(ଙ)ମୁଁ ଅଛି, ମୁଁ ଅଛି, ପୃ–531, (ଚ) ନିଃସହାୟ, ପୃ–533,

(ଛ) କିଶୋର କବିତା, ପୃ–641 ରୁ 678,

12 ମାନସିଂହ, (ଡଃ)ମାୟାଧର– ଜୀବନପଥ(1957), ପ୍ରେମ ଓ ବିବାହ, ପୃ–15,

13: (କ)ମାନସିଂହ, ମାୟାଧର–ତରୁଣ କବିର ଆଶା–ଉତ୍କଳ ସାହିତ୍ୟ, 32/1, ଏପ୍ରିଲ, 1928, ବୈଶାଖ, 1335,

"ବୁଲନ୍ତି ପୁଣି ମୁଁ ରସିକ ପରି/ସବୁ କିଶୋରୀର ଚିବୁକ ଧରି, /

ବୋଲନ୍ତି ସବୁରି ବାନ୍ଧବ ମୁହିଁ/ଜାଣେ ପ୍ରମୁହିଁ ।

(ଖ) ମାନସିଂହ ଗ୍ରନ୍ଥାବଳୀ(ପ୍ରଥମ ଖଣ୍ଡ)–1962, ତରୁଣ କବିର ଆଶା(ଧୂପ), ପୃ–72,

"ଅସର ସ୍ପନ୍ଦିନୀ ଯାମିନୀ ତଳେ/ସେ ରାଧା କୋମଳ ଜଘନପରେ/

ଜୀବନ ମରଣ ଯାଆନ୍ତି ଭୁଲି/ ସପନ ପରି ।

(ଗ) ଛରାନୀ କିଶୋରୀ !/ଗୁନ୍ ବଦନ ତବ ନହୁଏ ପାଶୋରି,/ X X X

ଯୁଗ୍ମ ବେଣୀ ଶୋଭା କନକ ଗଳା ବାହି,/ମରଣ ନିଜେ ସହି ରହିବ କ୍ଷଣେ ସ୍ପୃହ,/

ଦ୍ରାକ୍ଷା–ସୁକୋମଳ–/ଅଧର,ଟଳମଳ–/ବୟସ ବିଶେଷ,ଯାର ପାନଗୋ,

ମାନସିଂହ ଗ୍ରନ୍ଥାବଳୀ(ପ୍ରଥମ ଖଣ୍ଡ) ଛରାନୀ କିଶୋରୀ, ପୃ– 133,

(ଘ) ମାନସିଂହ,ମାୟାଧର–ପ୍ରେମର ପରିମାଣ,ଉତ୍କଳ ସାହିତ୍ୟ,32/12,ମାର୍ଚ୍ଚ,1929,ଚୈତ୍ର,1336,

ଧୂପ' ର ପରବର୍ତ୍ତୀ ସଂସ୍କରଣରେ ଏହାର ନାମ 'ପ୍ରେମର ପରିମାଣ'

"ପ୍ରେମ କି ଥରେ ଆସି,ଧରଜେ ହୁଏ ଶେଷ,/ଜଣକୁ ବେଢେ଼ ସଁପି,ନ ରହେ [illegible] ?/

ପ୍ରଥମ ଭେଟ ସାଥେ ସରେ କି ସଂଚୟ,/ଆଉ କି ଥରେ ବୁକୁ ନ ହୁଏ ଉଦମୟ ? ଗ୍ରନ୍ଥାବଳୀ ପୃ–120,

14: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ)–1973,ଗୋପାଳକୃଷ୍ଣ ପଦ୍ୟାବଳୀ(ଆଲୋଚନା) ପୃ–453,

15: ମାନସିଂହ ଗ୍ରନ୍ଥାବଳୀ(ପ୍ରଥମ ଖଣ୍ଡ)–1962, ଛରାନୀ କିଶୋରୀ,ପୃ–136,

16: ତତ୍ରୈବ 'ଧୂପ'ର ଭୂମିକା ,ପୃ–ଦୁଇଅଣା,

17: ତତ୍ରୈବ, ଅନୁଢା, ପୃ–357,

18: ରାଓ,ମଧୁସୂଦନ(ଭକ୍ତକବି)–ମଧୁସୂଦନ ଗ୍ରନ୍ଥାବଳୀ(1965),ଗ୍ରନ୍ଥମନ୍ଦିର,କଟକ,–ନୀତିଚିନ୍ତାମାଳା,ପୃ.119,

19: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ)–1973,ରାଧାନାଥ ଓ ମଧୁସୂଦନ,(ପ୍ରବନ୍ଧ),ପୃ–439–90,

20: ମାନସିଂହ,(ଡଃ) ମାୟାଧର–ଜୀବନପଥ,ପ୍ରେମଓ ବିବାହ(ପ୍ରବନ୍ଧ) ପୃ–23,(1957)

21: ରାଓ,ମଧୁସୂଦନ(ଭକ୍ତକବି)–ମଧୁସୂଦନ ଗ୍ରନ୍ଥାବଳୀ(1965,ଗ୍ରନ୍ଥମନ୍ଦିର,କଟକ),ପରିବାର,ଛାନ୍ଦମାଳା–ପୃ.22,

22: ମାନସିଂହ,ମାୟାଧର(ଡଃ)– ଜୀବନପଥ(1957) ସମାଜ ଓ ରାଷ୍ଟ୍ର ପୃ–13,

23: " " ପ୍ରେମ ଓ ବିବାହ,ପୃ–29,

24: " " ତତ୍ରୈବ ପୃ–23,

25: " " ତତ୍ରୈବ, ପୃ– 30,

26: " " ସମାଜ ଓ ରାଷ୍ଟ୍ର,ପୃ–13,

27: " " ପ୍ରେମ ଓ ବିବାହ ପୃ–22,

28: ମାନସିଂହ,ମାୟାଧର(ଡଃ)–ଅନ୍ୱେଷଣ(ଉପନ୍ୟାସ(1957) ପୃ–123,

29: ମାନସିଂହ,ମାୟାଧର(ଡଃ),ଜୀବନପଥ(1957),ପ୍ରେମ ଓ ବିବାହ,ପୃ–21,

30: " " ତତ୍ରୈବ ପୃ ,21 ରୁ 23

31: " " ସମାଜ ଓ ରାଷ୍ଟ୍ର,ପୃ'–13,

32: ମାନସିଂହ,ମାୟାଧର(ଡଃ),ଶିକ୍ଷାବିତ୍‌ର ଗାଥା(1965) ପୃ.127–28,

33: ମାନସିଂହ, ମାୟାଧର, ଗୀତାମହାତ୍ମ୍ୟ(1969) ପୃ–197,
34: ମାନସିଂହ, ମାୟାଧର(ଡ଼ଃ), ଓଡ଼ିଆ ସାହିତ୍ୟର ଇତିହାସ(1976) ପୃ–255–56,
35: ମାନସିଂହ, ମାୟାଧର(ଡ଼ଃ), ଗୀତାମହାତ୍ମ୍ୟ(1969) ଦେବତା କୃଷ୍ଣ, ପୃ–42–43,
36: " " ଗୀତାର ଛନ୍ଦ, ପୃ–145,
37: ମାନସିଂହ, ଡ଼ଃ ମାୟାଧର–ଶିକ୍ଷାବିତ୍‌ର ଗାଥା(1965), ପୃ–42,
38: ମାନସିଂହ, ମାୟାଧର(ଡ଼ଃ)–ଜୀବନପଥ(1957) ଶ୍ରମକୌଶଳ, ପୃ–54–55,
39: ମାନସିଂହ ଗ୍ରନ୍ଥାବଳୀ(ପ୍ରଥମ ଖଣ୍ଡ)–1962, ମାଟିର ସଙ୍ଗୀତ, ସେ ଦିନର କବିତା– ପୃ–1,
40: ମାନସିଂହ, ମାୟାଧର(ଡ଼ଃ) ଜୀବନପଥ(1957) ନିଜ ଦାୟିତ୍ୱ, ପୃ–80,
41: " ତତ୍ରୈବ, ପୃ–81,
42: ମାନସିଂହ ଗ୍ରନ୍ଥାବଳୀ(ଦ୍ୱିତୀୟ ଖଣ୍ଡ)–1964, କମଳାୟନ(କାବ୍ୟ) ପୃ–354,
43: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ)–1973, ଗୋପାଳକୃଷ୍ଣ ପଦ୍ୟାବଳୀ(ଆଲୋଚନା)– ପୃ–449,
44: ମାନସିଂହ ଗ୍ରନ୍ଥାବଳୀ(ପ୍ରଥମ ଖଣ୍ଡ)–1962, ଧୂପ(କାବ୍ୟ)ର ଭୂମିକା, ପୃ–ତିନିଅଣା
45: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ)–1973, ପ୍ରାଚୀନ ଓଡ଼ିଆ ସାହିତ୍ୟ, ପୃ–526,
46: " ଗୋପାଳକୃଷ୍ଣ ପଦ୍ୟାବଳୀ(ଆଲୋଚନା) ପୃ–453–54,
47: " ତତ୍ରୈବ, ପୃ–452–53,
48: ମାନସିଂହ, (ଡ଼ଃ)ମାୟାଧର–ଜୀବନପଥ(1957), ପ୍ରେମ ଓ ବିବାହ, 16, ପୃ·
49: ତତ୍ରୈବ, ପୃ·16,
50: ମାନସିଂହ, ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ)–1973, ଗୋପାଳକୃଷ୍ଣ ପଦ୍ୟାବଳୀ(ଆଲୋଚନା), ପୃ–442–43,
51: ମହାନ୍ତ, ଶ୍ରୀଚରଣ–ମାନସିଂହ ମାନସ(ପ୍ରଥମ ଭାଗ)–1983, ମାନସିଂହଙ୍କ କବିତାରେ ସୌନ୍ଦର୍ଯ୍ୟ ଚେତନା, ପୃ, 1ରୁ43,
52: ସାହୁ, ମହାପାତ୍ର ନୀଳମଣି, –ମାନସିଂହ ସ୍ମରଣିକା(1973)–ଗୁଣ୍ଡୁମରୀ ଦୁଅନ୍ତି ବିକଳ–ପୃ–65,
53: 'ଅପାରେ କାବ୍ୟ ସଂସାରେ କବିରେବ ପ୍ରଜାପତିଃ
ଯଥାସ୍ମୈ ରୋଚତେ ବିଶ୍ୱଂ ତଥାଦଂପରିବର୍ତ୍ତତେ, – ଧ୍ୱନ୍ୟାଲୋକ, ଆନନ୍ଦବର୍ଦ୍ଧନ/ତୃତୀୟ ଉଲ୍ଲାସ, ଶ୍ଳୋକ–596,
54: 'ନିୟତିକୃତ ନିୟମରହିତାଂହ୍ଲାଦୈକମୟୀମନନ୍ୟ ପରତନ୍ତ୍ରାମ୍,
ନବରସ ରୁଚିରାଂ ନିର୍ମିତାମାଦଧତୀ ଭାରତୀ କବେର୍ଜୟତି ।'କାବ୍ୟପ୍ରକାଶ/ମମ୍ମଟ, 1/1,
55: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ)–1973, ପ୍ରାଚୀନ ଓଡ଼ିଆ କାବ୍ୟ, ପୃ–574,

56: ମାନସିଂହ, (ଡଃ) ମାୟାଧର–ଗୀତାମହାତ୍ମ୍ୟ(1969), ପ୍ରଥମ ଅଧ୍ୟାୟ, ପୃ. 12,

57: ମାନସିଂହ ଗ୍ରନ୍ଥାବଳୀ(ପ୍ରଥମ ଖଣ୍ଡ)–1962, ଶେଲିମୃତ୍ୟୁ(କବିତା) ପୃ–161,

58: ମାନସିଂହ, (ଡଃ) ମାୟାଧର–ଗୀତାମହାତ୍ମ୍ୟ(1969), ଭୂମିକା, ପୃ–4–5,

59: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ)–1973, ଓଡିଆ ସାହିତ୍ୟକୁ ରାଧାନାଥଙ୍କ ଦାନ(ପ୍ରବନ୍ଧ) ପୃ–485,

60: ମାନସିଂହ ଗ୍ରନ୍ଥାବଳୀ(ପ୍ରଥମ ଖଣ୍ଡ)–1962, ତରୁଣ କବିର ଆଶା(ଧୂପ) ପୃ–74,

61: ମାନସିଂହ ଗ୍ରନ୍ଥାବଳୀ(ଦ୍ୱିତୀୟ ଖଣ୍ଡ)–1964, ନିକ୍ୱଣ(କାବ୍ୟ) ପୃ–31,

62: ରାଉତରାୟ, ସଚ୍ଚିଦାନନ୍ଦ–ମାନସିଂହ ସ୍ମରଣିକା(1973)–'କବି ମାୟାଧର ମାନସିଂହ–ଏକ ସ୍ୱପ୍ନ ପ୍ରୟାଣ, ପୃ-13–17,

63: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ)–1973, ସତ୍ଧର୍ମ(ପ୍ରବନ୍ଧ) ପୃ–603–604,

64: " କବି ଓ ଲେଖକର ଲକ୍ଷ୍ୟ, ପୃ–557,

65: " ମାନବ ଗୋପବନ୍ଧୁ, ପୃ–520,

66: " ତତ୍ରୈବ ପୃ–524,

67: ବଳ, ନନ୍ଦକିଶୋର–ନନ୍ଦକିଶୋର ଗ୍ରନ୍ଥାବଳୀ,

"ଏ ଜଗତେ ସଦା ବୀଣାପାଣି ଭକ୍ତଗଣ,/ଦରିଦ୍ରତା ଅନାଦରେ କାଟିବେ ଜୀବନ,/
ଏହି କଥା କବିଭାଲେ ହୋଇଛି ଲିଖିତ,/ ସର୍ବକବି ଜୀବନରେ ଏହା ପ୍ରମାଣିତ ।

68: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଭାଗ)· ପୃ· ଓଡିଆରେ ଲେଖିବି କାହିଁକି ?, ପୃ–607,

69: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ)–1973, କବି ଓ ଲେଖକର ଲକ୍ଷ୍ୟ, ପୃ–556,

70: " ତତ୍ରୈବ, ପୃ–557,

71: କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ ।
ମା କର୍ମଫଳ–ହେତୁର୍–ଭୂର୍ମା ତେ ସଙ୍ଗୋଽସ୍ତ୍ୱକର୍ମଣି ॥ 47 ॥
ଶ୍ରୀମଦ୍‌ଭଗବତଗୀତା,/ସାଂଖ୍ୟ ଯୋଗ,

72: ଦାସ, ଗୋପବନ୍ଧୁ(ଉତ୍କଳମଣି), ଧର୍ମପଦ(ଦ୍ୱାଦଶ ସଂସ୍କରଣ–1967) ପୃ–36,

73: ମାନସିଂହ, (ଡଃ)ମାୟାଧର–ଜୀବନପଥ(1957), କର୍ମକୌଶଳ, ପୃ–45,

74: " ତତ୍ରୈବ ପୃ56,

75: " ତତ୍ରୈବ ପୃ–57–58,

76: " ତତ୍ରୈବ ପୃ–50,

77: ମାନସିଂହ, (ଡଃ)ମାୟାଧର–ଶିକ୍ଷାବିତ୍‌ର ଗାଥା(1965) ପୃ–335,

## ॥ ମାନସିଂହଙ୍କ ବିଗ୍ରହଧାରା ॥

୭୮: ମାନସିଂହ, ମାୟାଧର–ସରସ୍ୱତୀ ଫକୀରମୋହନ(1972) ପୃ–73,

୭୯: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ)–1973, ମାନବ ଗୋପବନ୍ଧୁ, ପୃ–521,

୮୦: ମାନସିଂହ ଗ୍ରନ୍ଥାବଳୀ(ପ୍ରଥମ ଖଣ୍ଡ)–1962,
(କ) ଗୋପପ୍ରାଣ ପୃ–339,
(ଖ) ତତ୍ରୈବ
(ଗ) ତତ୍ରୈବ ପୃ–340,
(ଘ) ତତ୍ରୈବ, ପୃ–343,

୮୧: ମାନସିଂହ ମାୟାଧର, –ଗୀତାମହାତ୍ମ୍ୟ(1969), ଦେବତାକୃଷ୍ଣ, ପୃ– 42,

୮୨: ମାନସିଂହ, ମାୟାଧର–ସରସ୍ୱତୀ ଫକୀରମୋହନ/ ପୃ–293,

୮୩: " ଜୀବନପଥ(1957) ନିଜଦାୟିତ୍ୱ, ପୃ–79,

୮୪: " ଗୀତାମହାତ୍ମ୍ୟ(1969), ପୃ– 11,

୮୫: " ତତ୍ରୈବ, ମନୁଷ୍ୟକୃଷ୍ଣ ପୃ–19,

୮୬: " ତତ୍ରୈବ ପୃ? 25–26,

୮୭: " ତତ୍ରୈବ, ଦେବତା କୃଷ୍ଣ, ପୃ–44,

୮୮: " ସରସ୍ୱତୀ ଫକୀରମୋହନ, ପୃ–55,

୮୯: ମାନସିଂହ, (ଡଃ) ମାୟାଧର– ଭାରତରେ କର୍ତ୍ତବ୍ୟବୋଧ(ପ୍ରବନ୍ଧ), ନବରବି, 2/11, ମଇ, 1972, ପୃ–13,

୯୦: ମାନସିଂହ, (ଡଃ) ମାୟାଧର–ଜୀବନୀ ଓ ପ୍ରବନ୍ଧ(1958) ଚରିତ୍ର ପୃ–42,

୯୧: ତତ୍ରୈବ ପୃ–47–48,

୯୨: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ)–1973, ଓଡିଆ ଜାତିର ବୈଶିଷ୍ଟ୍ୟ, ପୃ–584,

୯୩: ତତ୍ରୈବ ।।।

---

## ପ୍ରଥମ ଅଧ୍ୟାୟ

### —————: ପ୍ରକୃତି :—————

ଚିନ୍ତା ଚେତନା ଓ ସୃଷ୍ଟିର ଏକକ କେନ୍ଦ୍ରରେ ମଣିଷ ସବୁବେଳେ ନିଜକୁ ହିଁ ଅବସ୍ଥାପିତ କରିଛି । ଫଳରେ ବିଶ୍ୱଜଗତ ଠାରୁ ଏକ ବିଚ୍ଛିନ୍ନ ଭାବରେ ବା ଏକକ ସତ୍ତା ଭାବରେ ସେ ନିଜକୁ ଉପସ୍ଥାପିତ କରିବାକୁ ଚେଷ୍ଟା କରିଛି । ବସ୍ତୁନିଷ୍ଠ ଦୃଷ୍ଟିରୁ ବିଗ୍ଚାରକଲେ ଦେଖାଯାଏ, ମଣିଷ ସମେତ ସମଗ୍ର ସୃଷ୍ଟିର ଉତ୍ସ ହେଉଛି ବିଶ୍ୱ–ଜଗତ । ବିକାଶ ଧାରାରେ ବିଶ୍ୱ–ଜଗତର ଅନ୍ୟାନ୍ୟ ଅଂଶଠାରୁ ମଣିଷ ଏକ ଅଧିକ ବିକଶିତ ବିଭାଗ ମାତ୍ର । ଏହି ବିଶ୍ୱଜଗତର ରହସ୍ୟ ସନ୍ଧାନ କବି, ଶିଳ୍ପୀ, ଭାବୁକ ଓ ଦାର୍ଶନିକ ମାନଙ୍କୁ ବାରମ୍ବାର ପ୍ରଲୁବ୍ଧ କରିଛି । ଏହାର ବସ୍ତୁନିଷ୍ଠ ବିଶ୍ଳେଷଣ ଫଳରେ ନାନା ବିଜ୍ଞାନର ଶାଖା–ପ୍ରଶାଖା ବିସ୍ତାରିତ ହୋଇଛି । ଆମ ଭାରତୀୟ ପରମ୍ପରାରେ ଏହି ବିଶ୍ୱ–ଜଗତକୁ କେତେବେଳେ ଦେଖା ହୋଇଛି ସୃଷ୍ଟିର ଆଧାର ପ୍ରକୃତି ରୂପରେ, ପୁଣି କେତେବେଳେ ମାୟା ରୂପରେ ।କେତେବେଳେ ଏହା ନନ୍ଦିତ ତ କେତେବେଳେ ଏହା ନିନ୍ଦିତ । କବିମାନେ ମୁଖ୍ୟତଃ ରୂପ–ରସ–ଗନ୍ଧ ର ପୂଜାରୀ । ଅରୂପ ଅବାଙ୍ମାନସଗୋଚର ଅଲୌକିକ ସତ୍ତା ପ୍ରତି କବିମାନଙ୍କର ଆକର୍ଷଣ ଥିଲେ ବି, ବାସ୍ତବ ଜଗତର ନିବିଡ ଅନୁଭବକୁ ସେ ଅସ୍ୱୀକାର କରିନାହାନ୍ତି । କିନ୍ତୁ ଚିନ୍ତାନାୟକମାନେ ପ୍ରକୃତିର ପରିପୂର୍ଣ୍ଣ ରୂପଦେଖି କେବଳ ମୁଗ୍ଧ ହୁଅନ୍ତି ନାହିଁ ହୁଏତ ତାକୁ ଭାଙ୍ଗି ବିଶ୍ଳେଷଣ କରନ୍ତି । ପ୍ରକୃତି ସମ୍ପର୍କରେ କବିମାନଙ୍କ ଅନୁଭବ ଯେତେ ସ୍ୱଚ୍ଛ, ଦାର୍ଶନିକ ବା ବୈଜ୍ଞାନିକ ମାନଙ୍କର ଦୃଷ୍ଟି ସେତେଟା ସଂହତ ନୁହେଁ । ମାନସିଂହ କବିଭାବରେ ଓ ଜଣେ ବୁଦ୍ଧିଜୀବୀ ଭାବରେ ପ୍ରକୃତିର ବିଭିନ୍ନ ବିଭାବକୁ ଅନୁଭବ କରିଛନ୍ତି ବିଶ୍ଳେଷଣ ବି କରିଛନ୍ତି । ଲୌକିକ ଜୀବନ ଭିତରେ ଲୋକୋତ୍ତର ସତ୍ତା ଉପଲବ୍ଧି କରିବାକୁ ଚେଷ୍ଟା କରି ଛନ୍ତି । ଉପରୋକ୍ତ ବିଶ୍ଳେଷଣରୁ ତାଙ୍କର ଦୃଷ୍ଟିକୋଣ ସ୍ପଷ୍ଟଭାବରେ ଉପସ୍ଥାପିତ କରାଯାଇଛି ।

ପୂର୍ବରୁ ଉଲ୍ଲେଖ କରାଯାଇଅଛି ଯେ, ମଣିଷ ପ୍ରକୃତିର ଏକ ଅଂଶବିଶେଷ ହେଲେ ମଧ୍ୟ, ନିଜର ଚିନ୍ତା ଏବଂ ବିଗ୍ଚାରଶକ୍ତି ବଳରେ, ସେ ଅନ୍ୟମାନଙ୍କ ଠାରୁ ନିଜର ସ୍ୱାତନ୍ତ୍ର୍ୟ ଜାହିର କରିପାରିଛି । ଅନାଦି କାଳରୁ ପ୍ରକୃତି ସହିତ ମଣିଷର ସମ୍ପର୍କ ଗଭୀର । ମଣିଷ ସଭ୍ୟତାର ବିକାଶ ସଂଗେ ସଂଗେ, ସେ ପ୍ରକୃତିକୁ ନାନା ଦୃଷ୍ଟିକୋଣରୁ ଦେଖିବାକୁ ଚେଷ୍ଟାକରିଛି । ଭାରତୀୟ ସାହିତ୍ୟର ଆଦିମତମ ନିଦର୍ଶନ ଋଗ୍‌ବେଦରେ ଅରଣ୍ୟ ପ୍ରକୃତି ଓ ମାନବଜୀବନର ନିବିଡ

ଘନିଷ୍ଠତାର ପରିଚୟ ରହିଛି ।ଉପନିଷଦ ରାମାୟଣ,ମହାଭାରତରେ ମଧ୍ୟ ପ୍ରକୃତି ଓ ମାନବର ସଂପର୍କ ବିଷୟ ବର୍ଣ୍ଣିତ । ପ୍ରାଚୀନ ଭାରତରେ ପ୍ରକୃତିକୁ ତ୍ରିବିଧ ଦୃଷ୍ଟିକୋଣରୁ ବିଗ୍ଭର କରାଯାଇଛି । ଯଥା:–(କ) ସାଧାରଣ ମଣିଷ ଦୃଷ୍ଟିରେ, (ଖ) ରାଜକୀୟ ଦୃଷ୍ଟିରେ, (ଗ) ଧର୍ମୀୟ ଦୃଷ୍ଟିରେ ।

ସାଧାରଣ ମଣିଷ ଦୃଷ୍ଟିରେ, ପ୍ରକୃତି:

ପ୍ରାଚୀନ ଭାରତର ସାଧାରଣ ମଣିଷ ପ୍ରକୃତି ଠାରୁ ନିଜର ବିଚ୍ଛିନ୍ନତା ଅନୁଭବ କରିନାହିଁ । ଜୀବନର ସର୍ବବିଧ ଆବଶ୍ୟକତା ସେ ଲାଭ କରିଛି ପ୍ରକୃତି ଠାରୁ । ତା'ର ହସ–କାନ୍ଦ, ଜନ୍ମ–ମୃତ୍ୟୁ, ସବୁ ଯେପରି ପ୍ରକୃତି ଦ୍ୱାରା ନିୟନ୍ତ୍ରିତ । ଏଣୁ ଲୋକ ସାହିତ୍ୟରେ, ଗଛ କଥା କହେ, ପାହାଡୀ ଝରଣା ନାଚିନାଚି ଗୀତ ଗାଏ । ପାହାଡ ରଜା ତା'ର ସନ୍ତାନମାନଙ୍କପାଇଁ ମନଲାଖି ଖାଇବା ଜିନିଷ ଦିଏ, ଭଲମନ୍ଦ ବିଗ୍ଭରକରେ, ଦୋଷୀକୁ ଦଣ୍ଡ ଦିଏ । ସତଚୁଣୀର ଚନ୍ଦ୍ରରେ ମରିଶୋଇଥିବା ପୁଅଝିଅମାନେ ଆକାଶଛୁଆଁ ଗଛହୋଇ କଥାକହନ୍ତି । ଏହିପରି ଅନେକ ଘଟଣା ରହିଛି । ଆଦିବାସୀମାନଙ୍କର ବିଶ୍ୱାସ ଅନୁସାରେ, ମଣିଷର ମୃତ୍ୟୁହେଲେ ଆତ୍ମାଗଛରେ ଲୁଚିରହେ, ପୁଣି ସୁବିଧା ଦେଖି ମଣିଷ ଗର୍ଭରେ ଆସି ଅବସ୍ଥାନ କରେ । ଯୌନକ୍ରିୟା ଦ୍ୱାରା ଯେ ସନ୍ତାନସନ୍ତତି ଲାଭ କରାଯାଏ, ଏଧାରଣା ଅନେକ ଦିନ ପର୍ଯ୍ୟନ୍ତ ଲୋକମାନଙ୍କର ଚେତନାରେ ସ୍ଥାନପାଇ ନଥିଲା । ଭାରତୀୟ ପରମ୍ପରା ପ୍ରକୃତିର ବ୍ୟାପକ ପ୍ରେକ୍ଷାପଟରେ ମଣିଷ ଓ ତା'ର ସଂପ୍ରସାରିତ ଚେତନାକୁ ଅନ୍ତର୍ଭୁକ୍ତ ଓ ଅନୁଭବ କରିଛି । ସାଧାରଣ ମଣିଷର କଳ୍ପନା ମଧ୍ୟ ପ୍ରକୃତିର ଅଜସ୍ର ରୂପ ବିଭବକୁ ନିଜସ୍ୱ କଳ୍ପମୂର୍ତ୍ତିନେଇ ଦେଖିଛି । ତାର ପ୍ରିୟତମ ପ୍ରକୃତିକୁ ସେ ଭଲ ପାଇଛି, ଯେଉଁଠୁ ଉପକାର ପାଇଛି ବା ଭୟପାଇଛି ତାକୁ ଇଷ୍ଟଦେବତା ଭାବରେ ପୂଜାକରିଛି । ନାରୀ ପ୍ରକୃତିକୁ ଦେଖିଛି, ଆନନ୍ଦ ଅନୁଭବ କରିଛି, ସମୟ ସୁବିଧା ଦେଖି ଗୃହାଙ୍ଗନରେ ପ୍ରକୃତିର ରୂପସଜ୍ଜାକରି ଆନନ୍ଦ ପାଇଛି । ପୁରୁଷ ପ୍ରକୃତିକୁ ଦେଖି ଆନନ୍ଦ ପାଇବା ସଂଗେ ସଂଗେ ନାରୀର ଶରୀରରେ ପ୍ରକୃତିର ପ୍ରତିଫଳନକୁ ଅନୁଭବ କରି ଆନନ୍ଦ ଲାଭକରିଛି । ସାଧାରଣ ମନୁଷ୍ୟର ସୌନ୍ଦର୍ଯ୍ୟଦର୍ଶନ ପରବର୍ତ୍ତୀ ସମୟରେ କାବ୍ୟ–ଆବଶ୍ୟକତାରେ ପରିଣତ ହୋଇଛି । ପ୍ରକୃତି ପ୍ରତି ସାଧାରଣ ମଣିଷର ସଂପର୍କ ଆଜିପର୍ଯ୍ୟନ୍ତ ମଧ୍ୟ ରହିଛି ଅତୁଟ । ଯେଉଁଠାରେ ସଭ୍ୟତାର ରୋଗ ଗ୍ରାସ କରିନି, ସେଠାରେ ମଣିଷ ଓ ପ୍ରକୃତିର ଆଦିମତମ ସଂପର୍କ ଛିନ୍ନ ହୋଇନାହିଁ ।

ରାଜକୀୟ ଦୃଷ୍ଟିକୋଣରୁ ପ୍ରକୃତି:

ମଧ୍ୟଯୁଗୀୟ ଭାରତୀୟ ସାହିତ୍ୟରେ ପ୍ରକୃତିକୁ ଏକ ରାଜକୀୟ ଦୃଷ୍ଟିଭଙ୍ଗୀରୁ ଦେଖା ଯାଇଛି । ରାଜସଭାର ପଣ୍ଡିତ ତଥା କବିମାନଙ୍କ ମଧ୍ୟରୁ ଅଧିକାଂଶଙ୍କର ପ୍ରକୃତି ସହିତ ସିଧାସଳଖ ସଂପର୍କ ନଥିଲା । ପ୍ରକୃତିକୁ ସେମାନେ ବି ଏକ ବିଳାସୀ ଦୃଷ୍ଟିକୋଣରୁ ଦେଖୁଥିବାରୁ ତାହା ନିଜର ସତ୍ତା ବିସ୍ମୃତ ହୋଇ କଳ୍ପନାର ବେହରଣ ସିଂଚିଥିଲା । ନାରୀ ଓ ପ୍ରକୃତି ଭିତରେ ଭେଦରେଖାଥିଲା ଅସ୍ପଷ୍ଟ । ପ୍ରକୃତିର ସୁନ୍ଦରତମ ଅବୟବ ନାରୀ ଦେହ ସହ

ଉପମିତ ହୋଇ ବାରମ୍ବାର ତିରସ୍କୃତ ହେଉଥିଲା । ଏହି ଦୃଷ୍ଟିରେ ପ୍ରକୃତି ନିଜସ୍ୱ ରୂପ ହରେଇ ମାନବିକ ଅନୁଭାବର ପୃଷ୍ଠଭୂମିରେ ପରିଣତ ହୋଇଥିଲା ।

ପ୍ରାଚୀନ ଭାରତରେ ଜନ ସଂପର୍କ ସ୍ଥାପନ ଓ ପ୍ରକୃତି ସହିତ ପରିଚୟ ଏକ ଅନିବାର୍ଯ୍ୟ ଆବଶ୍ୟକତା ଭାବରେ ଗ୍ରହଣ କରାଯାଉଥିଲା । ସେଥିପାଇଁ ରାଜା ମହାରଜାମାନେ ବିଭିନ୍ନ ସମୟରେ ବନ ଗମନ କରୁଥିଲେ । ରାଜା ରାମଚନ୍ଦ୍ର ରାଜଦଣ୍ଡ ଗ୍ରହଣର ଅବ୍ୟବହିତ ପୂର୍ବରୁ ଚଉଦବର୍ଷକାଳ ବଣ ଜଂଗଲରେ ବୁଲି ବନ ପ୍ରକୃତି ସହିତ ନିବିଡ ସଂପର୍କ ସ୍ଥାପନ କରିବା ସଂଗେ ସଂଗେ ରାଜ୍ୟ ଶାସନ ପାଇଁ ବିଭିନ୍ନ ଅଭିଜ୍ଞତା ହାସଲ କରିଥିଲେ । ମହାଭାରତକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ପାଣ୍ଡବମାନେ ମଧ୍ୟ ରାଜ୍ୟଶାସନ ଗ୍ରହଣ ପୂର୍ବରୁ ଦୀର୍ଘକାଳ ବନବାସରେ ପ୍ରାକୃତିକ ପରିବେଶ ସହିତ ଅନ୍ତରଂଗତା ସ୍ଥାପନ କରିଥିଲେ । ପ୍ରାକୃତିକ ପରିବେଶ ତଥା ଜନ ସଂପର୍କ ବିହୀନ କୌରବମାନଙ୍କର ଶାସନର ଅବସାନ ପରେ ପ୍ରକୃତି ସହିତ ଅନୁଭୂତି ସ୍ଥାପନ କରିଥିବା ପାଣ୍ଡବମାନେ ହିଁ ଶାସନ ପରିଚାଳନା କଲେ । ପ୍ରାଚୀନ ଭାରତରେ ଶାସକ ଓ ପ୍ରକୃତି ଭିତରେ ଥିବା ଏହି ଘନିଷ୍ଠ ସଂପର୍କ ପରବର୍ତ୍ତୀ ଯୁଗରେ ଏକ ସୌଖୀନ ପରମ୍ପରାରେ ପରିଣତ ହୋଇଥିଲା । ସେଥିପାଇଁ ରାମାୟଣ ମହାଭାରତଠାରୁ ଆରମ୍ଭ କରି କାଳିଦାସ ଭବଭୂତିଙ୍କ ପର୍ଯ୍ୟନ୍ତ କବିତାରେ ଥିବା ପ୍ରକୃତିର ମାନବୀୟ ଓ ଅନ୍ତରଂଗ ପରିଚୟ ତତ୍ପରବର୍ତ୍ତୀ ଯୁଗରେ ପ୍ରାୟତଃ ପରିତ୍ୟକ୍ତ ହୋଇ ପଡିଥିଲା ।

## ଧର୍ମୀୟ ଦୃଷ୍ଟିକୋଣରୁ ପ୍ରକୃତି :———

ଭାରତୀୟ ମନୀଷା ଆଦିମ ଅବସ୍ଥାରୁ ଧର୍ମୀୟ ଦୃଷ୍ଟିକୋଣରୁ ପ୍ରକୃତିକୁ ଦେଖି ଆସିଛି । ବିଭିନ୍ନ ଦାର୍ଶନିକମାନେ ପ୍ରକୃତିକୁ ନାନା ଦୃଷ୍ଟିରୁ ବିଶ୍ୱସ୍ରଷ୍ଟାଙ୍କର ପରିପ୍ରକାଶ ଭାବରେ ଗ୍ରହଣ କରିଛନ୍ତି । ଅଦ୍ୱୈତବାଦୀମାନେ ପ୍ରକୃତି ଓ ମଣିଷକୁ ସୃଷ୍ଟିକର୍ତ୍ତାଙ୍କର ପ୍ରକାଶ ବା ପ୍ରତିରୂପ ଭାବରେ ଗ୍ରହଣ କରିଛନ୍ତି । ତାଙ୍କ ମତରେ ସୃଷ୍ଟିକର୍ତ୍ତାଙ୍କ ସଂଗରେ ଉଭୟଙ୍କର ଅଭିନ୍ନତା ହିଁ ଉଭୟର ପରସ୍ପର ପ୍ରତି ଆକର୍ଷଣର ମୂଳ କାରଣ । ମନୁଷ୍ୟ ଓ ପ୍ରକୃତି ସ୍ୱରୂପତଃ ଅଭିନ୍ନବୋଲି ସେମାନଙ୍କ ମଧ୍ୟରେ ଏହି ଅନ୍ତରଂଗତା । ଅନ୍ୟମାନଙ୍କ ମତରେ ପ୍ରକୃତି ଭଗବାନଙ୍କର ସୃଷ୍ଟି ବୈଚିତ୍ର୍ୟ ବହନ କରିଛି, ମାତ୍ର ପ୍ରକୃତି ଭଗବାନ ନୁହନ୍ତି, ଏହା ମାୟାର ପ୍ରତିରୂପ ଭାବରେ ବିବେଚିତ ହେଉଛି । ସେମାନେ ରୂପ–ରସ–ଗନ୍ଧ–ସ୍ପର୍ଶ–ଶବ୍ଦମୟ ଜଗତକୁ କେତେବେଳେ ମାୟା ଭାବରେ ଓ କେତେବେଳେ ଭଗବାନଙ୍କ ବିଭିନ୍ନ ରୂପ ଭାବରେ ଦେଖିଆସିଛନ୍ତି । ଭାରତର ମୁନି–ଋଷିମାନେ ଜଗତର ଜଡ ଉଦ୍ଭିଦ ଓ ଚେତନା ମଧ୍ୟରେ ବିଶ୍ୱପ୍ରାଣ ନିରନ୍ତର ସ୍ପନ୍ଦିତ ହେଉଥିବାର ଉପଲବ୍ଧି କରିଛନ୍ତି ।

ପାଶ୍ଚାତ୍ୟ ଦୃଷ୍ଟିକୋଣରୁ ପ୍ରକୃତିକୁ ଭିନ୍ନଦୃଷ୍ଟିରୁ ବିଗ୍ରହ କରାଯାଉଥିଲା । ସେ ସଂପର୍କରେ ମାନସିଂହ କହନ୍ତି :—"ପାଶ୍ଚାତ୍ୟ ଦେଶମାନଙ୍କରେ ମଧ୍ୟ ଭାବୁକମାନେ ପ୍ରକୃତି ପୂଜା ମଧ୍ୟ ଯୁଗରୁ ଅର୍ଥାତ ଚତୁର୍ଥ ଶତାବ୍ଦୀ ଠାରୁ ଭୁଲିଯାଇଥିଲେ । ଫରାସୀ ରାଷ୍ଟ୍ର ବିପ୍ଳବର ପ୍ରାକ୍–କାଳରେ, ଫରାସୀ ମନୀଷୀ ରୁଷୋ ମନୁଷ୍ୟ ଓ ପ୍ରକୃତିର

ସ୍ୱାଭାବିକ ସମ୍ପର୍କକୁ ପୁନରୁଜ୍ଜୀବିତ କରିବାର ପ୍ରଥମ ଚେଷ୍ଟା କଲେ । ଫରାସୀ ଭାବଧାରା କ୍ରମେ ଇଉରୋପର ଅନେକ ସାହିତ୍ୟକୁ ପ୍ରଭାବିତ କଲା । କିନ୍ତୁ ଇଂରାଜୀ ସାହିତ୍ୟରେ ହିଁ ଏହି ଭାବ ପୂର୍ଣ୍ଣ ପ୍ରସ୍ଫୁଟିତ ହୋଇ ଉଠିଲା । ଏହି ସମୟ ର ଇଂରେଜ କବିମାନେ ପ୍ରକୃତିକୁ ଆଶ୍ରୟକରି ଯେଉଁ ରମଣୀୟ କାବ୍ୟ କବିତା ଲେଖିଯାଇଛନ୍ତି, ତାହା ବିଶ୍ୱ ସାହିତ୍ୟରେ ଅତୁଳନୀୟ । ପୁଣି ସେ ସମସ୍ତଙ୍କ ଭିତରେ ଓ୍ୱାର୍ଡସ୍‌ୱାର୍ଥ ପ୍ରକୃତିର ପଟ୍ଟପୁରୋହିତ । ଓ୍ୱାର୍ଡସ୍‌ୱାର୍ଥଙ୍କ ଠାରୁ ଆରମ୍ଭକରି ଟେନିସନ୍‌ଙ୍କ ପର୍ଯ୍ୟନ୍ତ ବିଶିଷ୍ଟ ଇଂରେଜୀ କବିମାନେ ପ୍ରକୃତିକୁ, ନାରୀକୁ ଅର୍ଘ୍ୟ ଦେଲାଭଳି ସେମାନଙ୍କର ଅର୍ଘ୍ୟ ଦେଇଛନ୍ତି ।"(1) ମାତ୍ର ଅଷ୍ଟାଦଶ ଶତାବ୍ଦୀର ଶେଷଭାଗ ଯାଏ ଇଉରୋପୀୟ ସାହିତ୍ୟରେ ପ୍ରକୃତିର ସ୍ଥାନ ନଗଣ୍ୟ ଥିଲା । ସେ ଯାଏ ଇଂରେଜ ଚିନ୍ତାନାୟକ ସବୁ ମଧ୍ୟ ପର୍ବତକୁ ଦେଶର ଏକ କୁତ୍ସିତ ଅଂଗବୋଲି ଭାବୁଥିବେ ।

ଆଧୁନିକ କାଳରେ ଇଂରେଜ କବିମାନେ ପ୍ରକୃତି ପ୍ରତି ଗ୍ରହଣ କରିଥିବା ଦୃଷ୍ଟିକୋଣ ଦ୍ୱାରା ଆଧୁନିକ ଭାରତୀୟ କବିମାନେ ସମ୍ପୂର୍ଣ୍ଣଭାବରେ ପ୍ରଭାବିତ ବୋଲି ଯାହା କୁହାଯାଏ, ମାନସିଂହ ତାହାକୁ ସମ୍ପୂର୍ଣ୍ଣ ଭାବରେ ସ୍ୱୀକାର କରିନାହାନ୍ତି । ତାଙ୍କ ମତରେ :—"ଇଂରେଜ କବିମାନେ ଊନବିଂଶ ଶତାବ୍ଦୀରେ ଯାହାକରି ଜୟଜୟକାର ପାଇଗଲେ ଓ ଆମର ବିସ୍ମୟର କାରଣ ହେଲେ, ବହୁ ଶତାବ୍ଦୀ ତଳେ ଆମର କାଳିଦାସ ଓ ଭବଭୂତି, ବିଶେଷତଃ କାଳିଦାସ ଠିକ୍ ତାହାହିଁ କରିଯାଇଛନ୍ତି । ଊନବିଂଶ ଶତାବ୍ଦୀ ଯାଏ ଇଂରେଜ କବିମାନଙ୍କ ଆଖିରେ ପର୍ବତ କୁତ୍ସିତ ଦେଖାଯାଉ ଥିଲା ଏବଂ ନଗର ସଭ୍ୟତା ଥିଲା ସେ ଜାତିର କବିମାନଙ୍କର ବର୍ଣ୍ଣନୀୟ ବସ୍ତୁ; କିନ୍ତୁ ଆମର ମହାକବିଙ୍କ ଲେଖାରେ ଭାରତବର୍ଷର ବଣ, ପାହାଡ, ନଦନଦୀ, ମେଘ, ମଳୟର କି ମନୋଜ୍ଞ ବର୍ଣ୍ଣନା ଆମେ ନ ପାଉଁ । ତେଣୁ ସମୂହ ଭାବରେ ଦେଖିବାକୁ ଗଲେ ନବଯୁଗର ଭାରତୀୟ ସାହିତ୍ୟର ପ୍ରକୃତି ଚର୍ଚ୍ଚା, ଊନବିଂଶ ଶତାବ୍ଦୀର ଇଂଲିଶ ରୋମାଣ୍ଟିକ୍ ରିଭାଇଭାଲ୍‌ର ବିଶେଷ ଦାନ ବୋଲି ଧରାଯିବା ଉଚିତ ନୁହେଁ । ଆମ ପ୍ରାଚୀନ ସାହିତ୍ୟରେ ଋତୁ ପର୍ଯ୍ୟାୟ ଦେଇ ପ୍ରକୃତିର ବିଚିତ୍ର ବିକାଶର ଚିତ୍ର ପ୍ରଚୁର ଅଛି ଓ ଆମ କବିମାନଙ୍କର ଉପମା ସଂଗ୍ରହ ବିଷୟରେ ପ୍ରକୃତିକି ସୂକ୍ଷ୍ମ ବୁଝିବାର ଅନୁରାଗ ଓ ତୀକ୍ଷ୍ଣ ଦୃଷ୍ଟିଥିଲା । ଅବଶ୍ୟ ଉତ୍କଳର ନଦୀଟିଏ, ବଣଟିଏ, ହ୍ରଦଟିଏ, ପାହାଡଟିକି ନେଇ କାବ୍ୟ ଲେଖା ହୋଇନାହିଁ, କିନ୍ତୁ ନିଚ୍ଛକ ରସଦୃଷ୍ଟିରୁ ଦେଖିଲେ ସେଟା ଯେ ବିଶେଷ ଗୋଟାଏ ସାହିତ୍ୟିକଅଭାବ, ଏହା ତ ମୋର ମନେ ହୁଏନା ।"(2)

ଆଧୁନିକ କାଳରେ ପ୍ରକୃତି ମଧ୍ୟରେ ଯେଉଁ ରହସ୍ୟ ସନ୍ଧାନର ପ୍ରୟାସ, ପ୍ରକୃତିକୁ ଉପଭୋଗ କରିବାର ବାସନା ମଧ୍ୟରେ, ଯେଉଁ ବୈଚିତ୍ର୍ୟର ପରିଚୟ ଆମ୍ଭମାନଙ୍କ ସାହିତ୍ୟରେ ଦେଖାଦେଇଛି ତା'ର ମୂଳଉତ୍ସ ପାଶ୍ଚାତ୍ୟ ସାହିତ୍ୟ । ମନୁଷ୍ୟ ଯେତେଦିନ ପର୍ଯ୍ୟନ୍ତ ପ୍ରକୃତିର କୋଳରେ ବସବାସ କରିଥିଲା, ସେତେଦିନ ସେ ଶିଶୁସୁଲଭ ଢଂଗୀରେ ପ୍ରକୃତିକୁ ଭଲପାଇ ଆସିଥିଲା । ଯେତେଦିନ ପ୍ରକୃତିର ସମସ୍ତ ଅଂଗ ମନୁଷ୍ୟ ର ହାତ ପାଆନ୍ତାରେଥିଲା, ଚକ୍ଷୁ ସମ୍ମୁଖରେ ଥିଲା, ସେତେଦିନ ପ୍ରକୃତିର ନିରାଭରଣ ରୂପ ଦେଖିବାପାଇଁ ମନୁଷ୍ୟ ମନରେ କୌଣସି ବ୍ୟାକୁଳତା ଜନ୍ମି ନ ଥିଲା । ସେ ପ୍ରକୃତିକୁ ରହସ୍ୟମୟ ଭାବରେ ଦେଖିବାକୁ ଚେଷ୍ଟା କରି ନ ଥିଲା । ଯେତେବେଳେ ମନୁଷ୍ୟ ସଭ୍ୟତାର ନୂତନ ନୂତନ ଆବରଣରେ ଢାଙ୍କି ହେବାକୁ ଆରମ୍ଭକରି ପ୍ରକୃତିଠାରୁ ଦୂରେଇ ଆସିଛି, ସେତେବେଳେ ସେ ପ୍ରକୃତିକୁ

ରହସ୍ୟମୟ ଦୃଷ୍ଟିରେ ଦେଖି ଆସିଛି । ପ୍ରକୃତିଠାରୁ ମଣିଷର ବ୍ୟବଧାନ ଯେତେବେଶି ହୋଇଛି, ପ୍ରକୃତିକୁ ଚିହ୍ନିବାରେ, ଉପଲବ୍ଧି କରିବାରେ ଆକାଙ୍କ୍ଷା ମନୁଷ୍ୟମନରେ ସେତେପ୍ରବଳ ହୋଇ ଉଠିଛି । ଆଧୁନିକ ପାଶ୍ଚାତ୍ୟ କବିମାନେ ଯେତେବେଳେ ପ୍ରକୃତିକୁ ଉପଭୋଗ କରିଛନ୍ତି, ସେତେବେଳେ ତାକୁ ନୂତନ ସତ୍ତାରୂପରେ ଦେଖିଛନ୍ତି ।

ମାନବ ସୃଷ୍ଟିର ପ୍ରାରମ୍ଭରୁ ମଣିଷର ସାଥେ ସାଥେ ପ୍ରକୃତି ରହି ଆସିଥିଲା, ଏବେ ମଧ୍ୟ ସେହିପରି ଅଛି । ମଣିଷ ଭିତରେ ଥିବା ସର୍ଜନଶୀଳ ପ୍ରବୃତ୍ତି କ୍ରମେ ପ୍ରକୃତିକୁ ବିଭିନ୍ନ ଉପାୟରେ ଦେଖିବାକୁ ଲାଗିଲା । ନିଜମନର କଳ୍ପନା ଅନୁସାରେ ସେ ପ୍ରକୃତିକୁ ଦେଖିଲା, ମଣିଷମନର କଳ୍ପନା ଅନୁସାରେ ପ୍ରକୃତି ସୁନ୍ଦର ହେଲା । ଆମେ ସାହିତ୍ୟ ଓ କଳାରେ ଯେଉଁ ପ୍ରକୃତିକୁ ଦେଖୁଛୁ, ସେ ହେଉଛି ଆମର କଳ୍ପନା । ହ୍ରଦ, ପାହାଡ, ପର୍ବତ, ନଦନଦୀ, ଝରଣା, ଜ୍ୟୋତ୍ସ୍ନା, ମେଘ, ଅନାଦି କାଳରୁ ପ୍ରକୃତିରେ ରହି ଆସିଥିଲା । କବି ଚିତ୍ରଶିଳ୍ପୀ ଯେତେବେଳେ ପ୍ରକୃତିର ସେହି ମନୋରମ ସୌନ୍ଦର୍ଯ୍ୟକୁ କାବ୍ୟରେ ବା ଚିତ୍ର ମାଧ୍ୟମରେ ଫୁଟାଇବାକୁ ଲାଗିଲେ, ଆମେ ସେତେବେଳେ ନିଜର ଦୃଷ୍ଟି କୁ ସେ ସୌନ୍ଦର୍ଯ୍ୟପ୍ରତି ଫେରାଇନେଲୁ ଓ କବି ବା ଚିତ୍ରଶିଳ୍ପୀର କଳ୍ପଲୋକର ପ୍ରକୃତିକୁ ଦେଖିବାକୁ ଲାଗିଲୁ । ଲୁଣିଆ, କାଦୁଆ ଚିଲିକା ଅନାଦି କାଳରୁ ପଡି ରହିଥିଲା, ମାତ୍ର ରାଧାନାଥଙ୍କ ଲେଖନୀର ଯାଦୁସ୍ପର୍ଶରେ ସେ ଦର୍ଶକମାନଙ୍କ ଦୃଷ୍ଟିରେ "ମରାଳ-ମାଳିନୀ-ନୀଳାମ୍ବୁ-ଚିଲିକା।" ଭାବରେ ପରିଚିତ ହେଲା ।

## ପ୍ରକୃତି ସମ୍ପର୍କୀୟ ଚିନ୍ତାଧାରାର ଉତ୍ସ:

କବି ମାୟାଧର ମାନସିଂହଙ୍କ ଜନ୍ମ, ବାଲ୍ୟକାଳ, ଶିକ୍ଷା ଜୀବନ ତଥା ଚାକିରୀକାଳ ହିଁ ପ୍ରକୃତିର ପରିଭିତରେ ଅତିବାହିତ ହୋଇଛି । ପ୍ରକୃତିକୁ ଦେଖିବାର ଦୃଷ୍ଟିଭଙ୍ଗୀ ତାଙ୍କର ଥିବାରୁ ସେ ମର୍ମେ ମର୍ମେ ପ୍ରକୃତିକୁ ଅନୁଭବ କରି ତାଙ୍କ ସୃଷ୍ଟିରେ ପ୍ରକାଶ କରିଛନ୍ତି । ଡକ୍ଟର ମାନସିଂହଙ୍କ ପ୍ରକୃତି ସମ୍ପର୍କୀୟ ଚିନ୍ତାଧାରାର ଉତ୍ସକୁ ମୁଖ୍ୟତଃ ଚାରିଭାଗରେ ବିଭକ୍ତ କରାଯାଇପାରେ :—(କ) ନିଜ ଜୀବନର ବାସ୍ତବାନୁଭୂତି । (ଖ) ପ୍ରାଚୀନ ଭାରତର କବି, (ଗ) ପାଶ୍ଚାତ୍ୟ ଚିନ୍ତାଧାରା, (ଘ) ବିଶ୍ୱକବି ରବୀନ୍ଦ୍ରନାଥ ॥

### ନିଜଜୀବନର ବାସ୍ତବାନୁଭୂତି:—

ମରାଳ-ମାଳିନୀ-ନୀଳାମ୍ବୁ-ଚିଲିକାର କୋଳରେ କବି ମାନସିଂହଙ୍କର ଜନ୍ମ । ଚିଲିକାର ମନୋରମ ପରିବେଶ ସହିତ ମହୋଦଧି ଓ ପ୍ରାକୃତିକ ଶୋଭାରେ ଭରା କବିଙ୍କ ଗ୍ରାମ ମାନସିଂହଙ୍କୁ ପ୍ରକୃତି ପ୍ରତି ମୁଗ୍ଧ କରିଥିଲା । କବି ଜୀବନର ବିଭିନ୍ନ ପର୍ଯ୍ୟାୟରେ ଘରଠାରୁ ଯେତେଦୂରରେ ଥାଆନ୍ତୁନା କାହିଁକି, ନିଜର ଜନ୍ମମାଟିକୁ ସର୍ବଦା ସ୍ମରଣ କରିଛନ୍ତି । ନିଜ ଜନ୍ମସ୍ଥାନର ପରିବେଶ ସମ୍ପର୍କରେ ମାନସିଂହ ଲେଖିଛନ୍ତି:—"ସମୁଦ୍ରର ବେଳାଭୂମି ତ ମୋର ପିଲାଦିନର ଧୂଳିଶେଯ । କାରଣ ଆମଘର ଠାରୁ ମାତ୍ର ଅର୍ଦ୍ଧକୋଶ ଦୂରରେ ମହୋଦଧିର ଫେନଚୂଡ ସହସ୍ର ଲହଡି, ଅହୋରାତ୍ର ଦିଗନ୍ତ ଲମ୍ବୀ ବେଳାଭୂମିରେ ପଣା ପିଟନ୍ତି । ଦିବସର କୋଳାହଳ, ସନ୍ଧ୍ୟାଗମ ସଂଗେ ସଂଗେ ଶାନ୍ତ ହୁଅନ୍ତେ,

ଆମ ଗ୍ରାମ ବାଣ୍ଡକୁ ମହୋଦଧି ଓ ବେଳାଭୂମିର ପଶବ୍ଦ ବିଶ୍ରମ୍ଭାଳାପ ସାରା ରାତ୍ରି ଶୁଭେ । ବେଳାଭୂମିର ଦୂର୍ଣ୍ଣଶଯ୍ୟା ଉପରେ ଆମ୍ବ ପୋଲାଙ୍ଗ ଝାମୁଁ ପ୍ରଭୃତି ବନସ୍ପତିର ପଚ୍ଛାୟା ଉପବନମାଳାରେ, ଗ୍ରୀଷ୍ମ କାଳର ସ୍ୱିନ୍ନ ଦେହରେ ସୈନ୍ଧବ ବାୟୁର ମଧୁର ସ୍ପର୍ଶ ମୋର ଅତି ପରିଚିତ ଅନୁଭୂତି । "(3)

ବିଲାତ ଯାତ୍ରା ସମୟରେ ମାନସିଂହ ନିଜ ଗ୍ରାମ ନିକଟର ମଧୁର ପରିବେଶକୁ ସ୍ମରଣ କରିଛନ୍ତି । ସେ ଲେଖିଛନ୍ତି :—"ଆମ ଘରତ ସମୁଦ୍ରବେଳାରେ । ଦୀର୍ଘ ସମୁଦ୍ରକୂଳବ୍ୟାପୀ ଝଂଗାବାଲିର ବନମାନଙ୍କରେ ବାଲି ହରିଣ ପଛରେ ଗୋଡାଇବାର, ଗୁଡକଙ୍କର କଣ୍ଟକିତ ଫୁଲ ଉଡେଇ ଖେଳିବାର, କଇଁସାରୀ ଲଟା ଚିଣ୍ଡାଇବାର ଓ ବାଲି ଆଖୁବୋଲି ଗୋଟିଏ ପ୍ରକାର ମୋଟା ଘାସକୁ ଚୋବାଇବାର ବାଲ୍ୟ ଅନୁଭୂତି ମୋର ପ୍ରାଣର ପରମ ସାଇତା ଧନ ।"(4) ପୁଣି କବିଙ୍କର ପୁରୁଣା ଗ୍ରାମତ ଚିଲିକାର ନୀଳ ଜଳରାଶିକୁ ସ୍ପର୍ଶକରି ଦଣ୍ଡାୟମାନ ଥିଲା । ସନ 1943 ମସିହା ବାତ୍ୟା ପର୍ଯ୍ୟନ୍ତ ପୁରୁଣା ଗ୍ରାମରେ କବିଙ୍କର ବାସସ୍ଥାନ ଥିଲା । ସେ ଗ୍ରାମର ପ୍ରାକୃତିକ ପରିବେଶ, ଚିଲିକାର ନୀଳଜଳର ପୃଷ୍ଠପଟରେ ଦଣ୍ଡାୟମାନ ପର୍ବତମାଳା କବିଙ୍କ ବାଲ୍ୟ ଜୀବନରେ ଛାପି ହୋଇଯାଇଥିବ । ଚିଲିକା ମଧ୍ୟସ୍ଥ ପାରିକୁଦ ଗଡରେ ପ୍ରାଥମିକ ଶିକ୍ଷାଲାଭ ଓ ବାଣପୁର ମାଇନର ସ୍କୁଲର ପ୍ରାକୃତିକ ପରିବେଶ କବି ପ୍ରାଣରେ ପ୍ରେରଣା ଯୋଗାଇ ଦେଇଥିବ । ଖୋର୍ଦ୍ଧାର ହାଇସ୍କୁଲ ଜୀବନ ପର୍ଯ୍ୟନ୍ତ କବିଙ୍କ ସମୟ ପ୍ରକୃତିର ଶାନ୍ତକୋଳରେ ହିଁ ବିତିଛି । ଏହି ଅନୁଭୂତିର ଚିତ୍ର କବିଙ୍କର ଜେମା', 'ସାଧବଝିଅ', 'ପୁଷ୍ପିତା' ତଥା କମଳାୟନ'ରେ ପ୍ରତିଫଳିତ ହୋଇଛି । କାବ୍ୟ କବିତାରେ ବର୍ଣ୍ଣିତ ପ୍ରକୃତି ବର୍ଣ୍ଣନାରେ ସାମାନ୍ୟ କାଳ୍ପନିକତା ନାହିଁ । ବାସ୍ତବ ପରିବେଶର ଚିତ୍ର କବିଙ୍କ କାଉଁରୀ ସ୍ପର୍ଶରେ ଯାହା ନବଜନ୍ମ ଲାଭ କରିଛି ।

ପୁନଶ୍ଚ କବିଙ୍କ କର୍ମମୟ ଜୀବନହିଁ କଟିଛି ପ୍ରକୃତି କୋଳରେ—ଭବାନୀପାଟଣା ଓ ଆଠଗଡର ଶିକ୍ଷକତା ସହିତ, ଇଷ୍ଟର୍ଣ୍ଣ ଷ୍ଟେଟ ଏଜେନ୍ସିର ଶିକ୍ଷା ପରାମର୍ଶଦାତା ଭାବରେ ସେ ସମଗ୍ର ପ୍ରାକୃତିକ ଉତ୍କଳର ପ୍ରକୃତି ସହିତ ପରିଚିତ ହୋଇ ପାରିଥିଲେ । ଦକ୍ଷିଣାଞ୍ଚଳ ଓ ଉତ୍ତରାଞ୍ଚଳର ସ୍କୁଲ ଇନ୍ସପେକ୍ଟର ଭାବରେ ସେ ସମଗ୍ର ଓଡିଶାକୁ ଭ୍ରମଣ କରି ତାର ପ୍ରକୃତିକୁ ସନ୍ଦର୍ଶନ କରିବାର ସୁଯୋଗ ଲାଭ କରିଥିଲେ । କବିବର ରାଧାନାଥ ସ୍କୁଲ ଇନ୍ସପେକ୍ଟର ଭାବରେ ସମଗ୍ର ଉତ୍କଳୀୟ ପ୍ରକୃତିକୁ ସନ୍ଦର୍ଶନ କଲାପରି ମାନସିଂହଙ୍କ କର୍ମମୟ ଜୀବନ ହିଁ ତାଙ୍କୁ ପ୍ରକୃତିର ମନୋରମ ଦୃଶ୍ୟ ଦେଖିବା ପାଇଁ ସୁଯୋଗ ଦେଲା ।

ପ୍ରାଚୀନ ଭାରତୀୟ କବିଗଣ:—

ପ୍ରକୃତି ସଂପର୍କୀୟ ଚିନ୍ତାଧାରାର ଦ୍ୱିତୀୟ ଉତ୍ସ ଭାବରେ ପ୍ରାଚୀନ ଭାରତର କବି ଓ ପ୍ରାଚୀନ ଓଡିଆ କବିମାନଙ୍କର ସ୍ଥାନ ସର୍ବାଗ୍ରଣ୍ୟ । ମାନସିଂହ ସଂସ୍କୃତ ସାହିତ୍ୟର ଛାତ୍ରଥିବାରୁ କାଳିଦାସ ଓ ଭବଭୂତିଙ୍କୁ ଜାଣିବାର ସୁଯୋଗ ଲାଭ କରିଥିଲେ । କାଳିଦାସ ଓ ଭବଭୂତିଙ୍କର କାବ୍ୟ ନାଟକ ସହ ସମଗ୍ର ସଂସ୍କୃତ ସାହିତ୍ୟରେ ଥିବା ପ୍ରକୃତିଚିତ୍ର, ମାନସିଂହଙ୍କ ପ୍ରକୃତି ସଂପର୍କୀୟ ପ୍ରତ୍ୟୟ ଓ ରୂପାନ୍ତରକୁ ପ୍ରଭାବିତ କରିଥିଲା ।

ପ୍ରାଚୀନ ଭାରତୀୟ ସାହିତ୍ୟରେ ପ୍ରକୃତି ସଂପର୍କରେ ମାନସିଂହ ଲେଖିଛନ୍ତି:—"ସଂସ୍କୃତ ସାହିତ୍ୟରେ ପ୍ରକୃତିର ଯେପରି ମନୋଜ୍ଞ ଚିତ୍ର ଏବଂ ପ୍ରକୃତି ଓ ମନୁଷ୍ୟ ଭିତରେ ପାରସ୍ପରିକ ମଧୁର ପ୍ରତିକ୍ରିୟା ଦେଖିବାକୁ ମିଳେ, ପୃଥିବୀର କୌଣସି ପ୍ରାଚୀନ ସାହିତ୍ୟରେ ତାହା ଦେଖିବାକୁ ମିଳେନା । ବେଦର ସ୍ତୋତ୍ର ସବୁ ପ୍ରକୃତିକୁ ଆଶ୍ରୟକରି ଲିଖିତ । ଉପନିଷଦର ଅଧିଷ୍ଠାନ ହେଲା ପ୍ରକୃତି କୋଳରେ । ବାଲ୍ମୀକି, ବ୍ୟାସ, ଭାସ, କାଳିଦାସ ଓ ଭବଭୂତିଙ୍କ କାବ୍ୟ କବିତାରେ ପ୍ରକୃତି ଓତପ୍ରୋତ ଭାବରେ ମିଶି ରହିଛି । ଜଗତରେ କେତେକବି କେତେକାବ୍ୟ ଲେଖିଲେଣି, କିନ୍ତୁ ମୌସୁମୀ ମେଘ ଓ ହିମାଳୟ କାହା କାବ୍ୟର ନାୟକ ହୋଇଛି ? ଭାରତର କାଳିଦାସଙ୍କ କାବ୍ୟରେ ।"(5)

ମାନସିଂହଙ୍କର 'ବିରହୀଘନ', ଦକ୍ଷିଣାଟବି', 'ପ୍ରାବୃଟ ସମ୍ଭାଷଣ', ପ୍ରଭୃତି କବିତାରେ ପ୍ରାଚୀନ କବି ମାନଙ୍କର ପ୍ରକୃତି ସଂପର୍କୀୟ ଚେତନାର ନିଚ୍ଛକ ଛାପ ପ୍ରକାଶ ପାଇଛି । ମହତ କବିଙ୍କର ଲେଖନୀ ସ୍ପର୍ଶରେ ସାଧାରଣ ନଦୀ, ପର୍ବତ କିପରି ବିଶିଷ୍ଟ ରୂପ ନେଇ ପାରିଛି । ସେ ସଂପର୍କରେ ମାନସିଂହ ଲେଖିଛନ୍ତି:—"ରାମଗିରି ମଧ୍ୟପ୍ରଦେଶ ର ଗୋଟିଏ କ୍ଷୁଦ୍ର ପର୍ବତ, ଶିପ୍ରାନଦୀ ଗୋଟିଏ କ୍ଷୁଦ୍ର ପୟଃପ୍ରଣାଳୀ ମାତ୍ର । କିନ୍ତୁ ରାମଗିରି ପର୍ବତ ଓ ଶିପ୍ରାନଦୀକୁ ଭାରତରେ ନ ଜାଣେ କିଏ ? ମହାକବି କାଳିଦାସଙ୍କ ଲେଖନୀ ପ୍ରସାଦରୁ ଏମାନେ ଅମରତ୍ୱ ଲାଭ କରିଅଛନ୍ତି ।"(6) କେବଳ ସଂସ୍କୃତ କବିମାନେ ନୁହନ୍ତି, ପ୍ରାଚୀନ ଓଡିଆ କବିମାନେ ପ୍ରକୃତି ବର୍ଣ୍ଣନାରେ ମାନସିଂହଙ୍କ ପ୍ରାଣକୁ ମୁଗ୍ଧ କରି ଛନ୍ତି । ଉପେନ୍ଦ୍ରଭଞ୍ଜଙ୍କ କାବ୍ୟରେ ସେହି ଏକତାଳର ପ୍ରକୃତି ବର୍ଣ୍ଣନା ଥିଲେ ମଧ୍ୟ, ଭଞ୍ଜଙ୍କ ଜୀବନ ଓ ପ୍ରକୃତିପ୍ରେମ, ତାଙ୍କୁ ଏପରି ପ୍ରଭାବିତ କରିଛି ଯେ ଆଦ୍ୟ ଲେଖକ ଜୀବନରେ ଭଞ୍ଜଙ୍କ ଜୀବନୀ ଅବଲମ୍ବନରେ 'ରାଜକବି ଉପେନ୍ଦ୍ର' ନାଟିକା ରଚନା କରିଥିଲେ । ସେହି ନାଟିକାକୁ ଅନୁଧ୍ୟାନ କଲେ, ମାନସିଂହଙ୍କ ପ୍ରାଚୀନ କବି ଓ ପ୍ରକୃତି ସଂପର୍କୀୟ ଚେତନାର ଆଭାସ ସ୍ପଷ୍ଟ ଭାବରେ ମିଳିଥାଏ ।

<u>ପାଶ୍ଚାତ୍ୟ ଚିନ୍ତାଧାରା:—</u>

ମାନସିଂହଙ୍କର ପ୍ରକୃତି ସଂପର୍କୀୟ ଚିନ୍ତାଧାରାକୁ ଇଂରାଜୀ ରୋମାଣ୍ଟିକ କବିମାନଙ୍କର ପ୍ରକୃତି-ପ୍ରତ୍ୟୟ ଗଭୀର ଭାବେ ପ୍ରଭାବିତ କରିଛି । ମାନସିଂହ ଇଂରାଜୀ ସାହିତ୍ୟର ଜଣେ ଛାତ୍ରଥିଲେ ଓ ଇଂରାଜୀ ରୋମାଣ୍ଟିକ କବି ମାନଙ୍କର ଜଣେ ମୁଗ୍ଧ ଅନୁଗତଥିଲେ । ରୋମାଣ୍ଟିକ କବିମାନଙ୍କର ମୂଳଲକ୍ଷ୍ୟ ହେଲା ପ୍ରକୃତିରେ ସୌନ୍ଦର୍ଯ୍ୟ ଓ ରହସ୍ୟ ଉପଲବ୍ଧି । ରୋମାଣ୍ଟିକ୍ କବି ଓ ପ୍ରକୃତି ଚେତନାର ଭିତ୍ତିଭୂମି ସଂପର୍କରେ ମାନସିଂହ ଲେଖିଛନ୍ତି:—"ୟୁରୋପରେ ସଭ୍ୟତା ନାଗରିକୀ ଅର୍ଥାତ ନଗରକେନ୍ଦ୍ରିକ । ଏହି ନାଗରିକ ସଭ୍ୟତା ପୁଣି ପୁସ୍ତକାନ୍ଧ ଖ୍ରୀଷ୍ଟୀୟ ଧର୍ମଯାଜକମାନଙ୍କର ତର୍ଜନୀ ନିର୍ଦ୍ଦେଶରେ ଶତଶତ ବର୍ଷଧରି ନିଜକୁ ଅନ୍ଧକରି ରଖିଥିଲା । ସେ ସଭ୍ୟତା ଦୃଶ୍ୟମାନ ପ୍ରକୃତିରେ କିଛି ସୌନ୍ଦର୍ଯ୍ୟ ଦେଖିପାରୁ ନଥିଲା, ପାର୍ଥୀବ ଜୀବନକୁ ସେ ଦେଖୁଥିଲା ଆଦାମ୍ ଓ ଇଭର ପ୍ରାଥମିକ ପାପର ଅଭିଶପ୍ତ ଫଳବୋଲି । ହେଲ୍ ବା ନରକର ଭୟ ହିଁ ଜୀବନକୁ ନିୟନ୍ତ୍ରିତ କରୁଥିଲା, ପୃଥିବୀ ଥିଲା ଭୂମଧ୍ୟ ସାଗରର ଦୁଇକୂଳରେ ଥିବା କେତୋଟି ମାତ୍ର ଦେଶ, ମାନବ ଜୀବନ ଥିଲା ସଂକୀର୍ଣ୍ଣ, ନିରାନନ୍ଦ । ଷୋଡ଼ଶ ଶତାବ୍ଦୀରେ ତୁର୍କୀମାନଙ୍କ ଅତ୍ୟାଗ୍ରହ ଫଳରେ

ବହୁ ପୁରାତନ ଓ ବିସ୍ମୃତ ଅର୍ଦ୍ଧୀଷ୍ଟୀୟ ଗ୍ରୀକ୍ ସଭ୍ୟତାର ସାହିତ୍ୟ, ଦର୍ଶନ ଓ କବିତା ସହସା ମଧ୍ୟ–ଯୁଗୀୟ ଇଉରୋପର ମନଲୋକରେ ଆପେ ଆପେ ପଶି ଏକ ବିରାଟ ଆଲୋଡନ ସୃଷ୍ଟିକଲା । ଏହାର ନାମ ରେନେସାଁ ବା ନବଜୀବନ।"(7) ଏହି ରେନେସାଁ ହିଁ ପାଶ୍ଚାତ୍ୟ ଜଗତରେ ପ୍ରକୃତି ସଂପର୍କୀୟ ଚିନ୍ତାଧାରାରେ ପରିବର୍ତ୍ତନ ଆଣିଲା ପୁନଶ୍ଚ ମାନସିଂହ କହିଛନ୍ତି:— "ଆମ୍ଭେମାନେ ଆଜି ଯାହାକୁ ଆଧୁନିକ ସଭ୍ୟତା ବୋଲି ଧରିଛୁଁ ତା'ର ଆରମ୍ଭ ପ୍ରକୃତରେ ଏଇଠାରୁ । ଗ୍ରୀକ୍‌ମାନେ ଥିଲେ ରୂପପ୍ରେମୀ ଜାତି, ସେମାନେ ପୃଥିବୀ ଓ ପ୍ରକୃତିକୁ ଗଭୀର ଭାବରେ ଭଲ ପାଉଥିଲେ, ସେମାନଙ୍କର ଚିନ୍ତାଥିଲା ଭିତିହୀନ, କର୍ମଥିଲା ଦ୍ୱନ୍ଦ୍ୱଶୂନ୍ୟ ଓ ସାହସିକ, ସତ୍ୟ ପାଇବାକୁ ସେମାନଙ୍କର ଥିଲା ଅକ୍ଳାନ୍ତ ଚେଷ୍ଟା । ଷୋଡଶ ଶତାବ୍ଦୀରେ ୟୁରୋପ ଏ ପ୍ରକାର ସଭ୍ୟତାର ସଂପର୍କରେ ଆସି, ଫିଂଗିଲା ଧର୍ମାନ୍ଧ ବିଗ୍ରହହୀନ ପୁରୋହିତର ତର୍ଜନୀ–ନିର୍ଦ୍ଦେଶ, ଉଠିଗଲା ନରକର ଭୟ, ଚିନ୍ତା ହେଲା ନିର୍ଭିକ, ସେ ଭଲପାଇବାକୁ ଆରମ୍ଭକଲା ଇହଜୀବନ ଓ ପୃଥିବୀକୁ, ମନୁଷ୍ୟ ଭାବରେ ମନୁଷ୍ୟର ମୂଲ୍ୟ ବଢିଲା, ପୃଥିବୀ ହେଲା କ୍ରମେ ବିସ୍ତୃତ, ଏକ ଦିଗରେ ଆମେରିକା ଓ ଅନ୍ୟ ଦିଗରେ ଭାରତ, ଚୀନ, ଜାପାନ ସଂଗେ ବୋଇତ ଯାତ୍ରାର ଯୋଗରେଖା ପଡିଲା, ମାନବିକ ଜ୍ଞାନ ଓ ଅନୁଭୂତିର ଦିଗ୍‌ବଳୟ କ୍ରମେ ବଢ଼ିବାକୁ ଲାଗିଲା ।"(8)

ଜ୍ଞାନରାଜ୍ୟର ଏହି ନୂତନ ଆଘାତ ହିଁ ଇଉରୋପୀୟ ସମାଜରେ ପ୍ରକୃତି ସଂପର୍କୀୟ ଚିନ୍ତାଧାରାର ପରିବର୍ତ୍ତନ ଆଣିଲା । ଏହି ଆଲୋଡନର ମୁଖ୍ୟ ପରିବର୍ତ୍ତନ ହେଲା, :—"ସୃଷ୍ଟି ଓ ପ୍ରକୃତିରେ ରହସ୍ୟର ସଂଧାନ । ଷୋଡଶ ଶତାବ୍ଦୀ ପରେ ମନୁଷ୍ୟ ପ୍ରକୃତିର ରୂପରେ କେବଳ ମୁଗ୍ଧ ହୋଇନି, ସେହି ରୂପ ତଳେ ସେ ବିବିଧ ଦର୍ଶନର ସଂଧାନ ପାଇଛି । ମନୁଷ୍ୟର କଳ୍ପନା ଜଡ ପ୍ରକୃତିକୁ ଜୀବନ୍ତବୋଲି ଧରି ନେଇଛି । ଫଳରେ ଭୌତିକ ଓ ଆଧିଭୌତିକର ପ୍ରଭେଦ ଲୋପ ପାଇଛି ଏବଂ ସେଥିଯୋଗୁ ଆମେ ଓ୍ୱାର୍ଡସ୍‌ଓ୍ୱାର୍ଥଙ୍କ କବିତାର ପ୍ରକୃତି ଭିତରେ ଅତିପ୍ରାକୃତ ଓ ଶେଲୀ, କଲ୍‌ରିଜ ପ୍ରଭୃତିଙ୍କ କବିତା ଭିତରେ ଅତି ପ୍ରାକୃତ ଆସି ପ୍ରାକୃତ ସହିତ ମିଶିବାର ଦେଖୁଁ । ମନୁଷ୍ୟ ଭାବରେ ମନୁଷ୍ୟର ସମ୍ମାନ ମିଳିଲା, ବିଶେଷତଃ ପ୍ରକୃତିର ସନ୍ନିଧିରେ ଯେଉଁମାନେ ବର୍ତ୍ତନ୍ତି, ସେମାନଙ୍କୁ ସାହିତ୍ୟରେ ସ୍ଥାନ ମିଳିଲା ।"(୨)

ଓଡିଆ ସାହିତ୍ୟ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ, ଇଂରାଜୀ ସାହିତ୍ୟର ଘନିଷ୍ଠ ସଂସ୍ପର୍ଶରେ ଆସିଲା । ରାଧାନାଥ, ମଧୁସୂଦନ ପ୍ରମୁଖ ଓଡିଆ କବିଙ୍କୁ ଇଂରାଜୀ ରୋମାଣ୍ଟିକ୍ କବିତାରେ ଥିବା ମନୁଷ୍ୟ ପ୍ରଧାନ ଭାବଧାରା ଗଭୀର ଭାବରେ ଆଲୋଡିତ କରିଥିଲା । ବିଂଶ ଶତକର ଆଦ୍ୟ ପାଦର କବିଗଣ, ଗୋଟାଏ ଦିଗରେ ରାଧାନାଥ ମଧୁସୂଦନ, ଅପର ଦିଗରେ ପାଶ୍ଚାତ୍ୟ ସାହିତ୍ୟର କ୍ରମପ୍ରବହମାନ ଧାରାର ଏକ ସନ୍ତୁଳିତ ରୂପକୁ ଅନୁଭବ କରି ପାରିଥିଲେ । ପ୍ରକୃତି ସଂପର୍କରେ ଥିବା ରୋମାଣ୍ଟିକ ଓ ନିଓ–ରୋମାଣ୍ଟିକ୍, ଏହି ଉଭୟ ପ୍ରତ୍ୟୟ ମାନସିଂହ ସମେତ ସବୁଜ କବିମାନଙ୍କର ଦୃଷ୍ଟିକୋଣକୁ ସଂଗଠିତ କରିଥିଲା । ରୋମାଣ୍ଟିକ୍ କବିମାନଙ୍କର ପ୍ରକୃତି ପ୍ରେମ, ରାଧାନାଥଙ୍କୁ ବିଶେଷ ପ୍ରଭାବିତ କରିଥିଲା । ମାନସିଂହଙ୍କ ଭାଷାରେ:—"ପ୍ରକୃତି ପ୍ରତି ରାଧାନାଥଙ୍କର ଗଭୀର ଆକର୍ଷଣଯେ ଥିଲା, ଏଥିର ପ୍ରମାଣ ତାଙ୍କର କାବ୍ୟରେ ସର୍ବତ୍ର ସୁସ୍ପଷ୍ଟ । ଓ୍ୱାର୍ଡସ୍‌ଓ୍ୱାର୍ଥଙ୍କ ପରି ପ୍ରକୃତିରୁ ଓ ପ୍ରକୃତିର କାର୍ଯ୍ୟରୁ ସେ ତତ୍ତ୍ୱ ଆବିଷ୍କାର କରି ନାହାନ୍ତି । କିନ୍ତୁ

ଓ୍ୱାଡସ୍ୱର୍ଥଙ୍କ ଦୃଷ୍ଟା ଜଗତର ଅନ୍ୟସକଳ କବି ପ୍ରକୃତିକୁ ଯେପରି ଭାବରେ ଅନୁଭବ କରିଛନ୍ତି ରାଧାନାଥ ସେହିପରି କରିଅଛନ୍ତି । ସେ ପ୍ରକୃତିର ଇନ୍ଦ୍ରିୟ ଗ୍ରାହ୍ୟ ରୂପକୁ ତାଙ୍କର ସମସ୍ତ ଇନ୍ଦ୍ରିୟ ଦ୍ୱାରା ଅନୁଭବ କରିଅଛନ୍ତି । ସେକ୍ସପିଅର ଓ କୀଟସ୍ ଏହିପରି ଭାବରେ ପ୍ରକୃତିର ଉପାସକ ଥିଲେ । ପ୍ରକୃତିର ଇନ୍ଦ୍ରିୟଗ୍ରାହ୍ୟ ଉପାସନାରେ ରାଧାନାଥ, ସେକ୍ସପିଅର ଓ କୀଟସ୍‌ଙ୍କ ସମାନଧର୍ମୀ । ରୂପ ପିପାସୀ କବି ସୃଷ୍ଟିର ରୂପ–ରସ–ବର୍ଣ୍ଣ–ଗନ୍ଧରେ ମୁଗ୍ଧ ହୁଅନ୍ତି । ଏହି ସବୁ ଗୁଣ ନାରୀ ଦେହରେ ଓ ପ୍ରକୃତିରେ ଉଭୟତ୍ର ବିଦ୍ୟମାନ । କେଉଁ କବି ନାରୀ ଠାରେ, କେଉଁ କବି ପ୍ରକୃତିରେ, କେଉଁକବି ଉଭୟରେ ତାଙ୍କର ପିପାସା ନିବାରଣ କରନ୍ତି । ରାଧାନାଥ ନାରୀ ଓ ପ୍ରକୃତି ଉଭୟର ଉପାସକ । ସେ ଦୁହିଁଙ୍କ ରୂପର ମୁଗ୍ଧ ପୂଜାହାରୀ—ବିଶେଷତଃ ପ୍ରକୃତିର ।"(10)

ରାଧାନାଥଙ୍କ ପ୍ରକୃତି ବର୍ଣ୍ଣନା ମାନସିଂହଙ୍କୁ ମୁଗ୍ଧ କଲେବି ତାଙ୍କର ପ୍ରତ୍ୟୟକୁ ପରିବର୍ତ୍ତିତ କରି ପାରିନାହିଁ । ରାଧାନାଥ ନାରୀ ଓ ପ୍ରକୃତିକୁ ସମକାଳରେ ଭଲ ପାଇଛନ୍ତି, କିନ୍ତୁ ମାନସିଂହଙ୍କ ଦୃଷ୍ଟିରେ ନାରୀର ଗୁରୁତ୍ୱ ଅଧିକତର । ନାରୀ ଦେହର ଲାବଣ୍ୟକୁ ସେ ପ୍ରକୃତି ମଧ୍ୟରେ କେତେବେଳେ ସନ୍ଦର୍ଶନ କଲାବେଳେ ଅନ୍ୟକେତେବେଳେ ପ୍ରକୃତି ତାଙ୍କର ନାରୀ ଭାବନାର ପୃଷ୍ଠପୋଷକ ହୋଇଛି । ନିଜର ପ୍ରେୟସୀ ସଙ୍ଗରେ ହେମନ୍ତ ରଜନୀରେ ଜ୍ୟୋତ୍ସ୍ନା–ପାତ ସମୟରେ ସେ ନିଜ ପ୍ରେୟସୀକୁ ପ୍ରକୃତିର ଅଂଶବୋଲି ବର୍ଣ୍ଣନା କରିଛନ୍ତି । ପ୍ରକୃତିର ଭୁବନମନୋହର ରୂପ ସନ୍ଦର୍ଶନରେ ସେ ସର୍ବତ୍ର ନାରୀକୁ ସ୍ମରଣ କରିଛନ୍ତି । ଦିଗନ୍ତ ବିସ୍ତାରୀ ପ୍ରାକୃତିକ ଶୋଭା ବେଳେବେଳେ ତାଙ୍କୁ ପ୍ରକୃତିର ରୂପ ମଧ୍ୟରେ ତଲ୍ଲୀନ କରିଦେଇଛି ।

ଇଂରାଜୀ ରୋମାଣ୍ଟିକ୍ କବିମାନଙ୍କର ପ୍ରତିଫଳନ ମାନସିଂହ ରାଧାନାଥଙ୍କ ସୃଷ୍ଟିରେ ଦେଖିପାରିଥିଲେ । ରାଧାନାଥଙ୍କ ପ୍ରକୃତି ପ୍ରୀତି ସମ୍ପର୍କରେ ମାନସିଂହ କହନ୍ତି:—"ପଣ୍ଡିତ ଗୋପବନ୍ଧୁ ଯେପରି ଓଡିଆ ଜାତିର ଅନ୍ତର ବୁଝିଥିଲେ, ରାଧାନାଥ ସେପରି ଓଡିଆ ଜାତିର ବହିରାବରଣକୁ ବୁଝିପାରିଥିଲେ । ଉତ୍କଳ ଦେଶର ପ୍ରାକୃତିକ ସୌନ୍ଦର୍ଯ୍ୟ କାବ୍ୟ ଓ ଚିତ୍ରରେ ଲିପିବଦ୍ଧ ହୋଇ ରହିବାର ଅବଶ୍ୟ ଯୋଗ୍ୟ । ଆକାଶଚୁମ୍ବୀ ପର୍ବତମାଳା, ଘନ ବନାନୀ, ଅନୁପମ ହ୍ରଦରାଜି, ବିରାଟ ନଦନଦୀ, ଶସ୍ୟଶ୍ୟାମଳ କେଦାରମାଳା ଉତ୍କଳ ଦେଶର ପ୍ରାକୃତିକ ରୂପର ଅଙ୍ଗ । ରୂପ ବୁଭୁକ୍ଷୁ କବି ଓ ଶିଳ୍ପୀମାନଙ୍କର କ୍ଷୁତ୍ ପିପାସା ନିବାରଣ କରିବା ପାଇଁ ଚୁବିଳ ଉତ୍କଳରେ ଯଥେଷ୍ଟ ଉପାଦାନ ରହିଅଛି । କିନ୍ତୁ ଆଶ୍ଚର୍ଯ୍ୟର କଥା ଏହିଯେ, ଏ ଦେଶର ବିଚିତ୍ର ପ୍ରକୃତି, ଏ ଦେଶର ପ୍ରାଚୀନ ସାହିତ୍ୟରେ ଆଦୌ ଛାୟାପାତ କରିନାହିଁ । ଚିଲିକାର ନିରୁପମ ସୁଷମା, କୌଣସି ପ୍ରାଚୀନ ଓଡିଆ କବିଙ୍କୁ ଆକର୍ଷଣ କରିପାରି ନଥିଲା । ମାଲ୍ୟଗିରିର ଉତ୍ତୁଙ୍ଗ ମହିମା କୌଣସି ଓଡିଆ କବିଙ୍କୁ ମୁଗ୍ଧ କରି ନଥିଲା । ବିଭିନ୍ନ ଋତୁରେ ଏ ଦେଶରେ ପ୍ରକୃତିରେ ଯେଉଁ ମହୋତ୍ସବ ସମ୍ପାଦିତ ହୁଏ, ତାହା କୌଣସି ଓଡିଆ କବି ଦେଖିପାରି ନଥିଲେ । ରାଧାନାଥଙ୍କ ଆବିର୍ଭାବ ପର୍ଯ୍ୟନ୍ତ ଓଡିଶାର ସୋଲରୀ–ଭାଲେରୀ, ମହେନ୍ଦ୍ର–ମେଘାସନ–ମଣିନାଗ–ମାଲ୍ୟଗିରି କେବଳ ଶିଳା ସମଷ୍ଟି ଥିଲେ ମାତ୍ର । ଓଡିଶାର ଚିଲିକା–ଅଂଶୁପା,

ସାଳଂବୀ–ବନଶଂଗୀ, ଶାଳିଆ–ମନ୍ଦାକିନୀ କେବଳ ଜଳର ସମଷ୍ଟି ଥିଲେ ମାତ୍ର । ଜାତିର ଜୀବନରେ ଏମାନଙ୍କର ଯେ ମୂଲ୍ୟଅଛି, ତାହା କେହି ଜାଣି ନଥିଲେ । ଆମ୍ଭମାନଙ୍କ ଭୀମକାନ୍ତ ପର୍ବତ ଶ୍ରେଣୀ, ଶାଳ–ସୁଗନ୍ଧ ବିସ୍ତୀର୍ଣ୍ଣ ବନାନୀ, କାନ୍ତ ଟୀରା ଓ ପୁଟନୀରା ନଦନଦୀ ଯୁଗ ଯୁଗ ଧରି ସେମାନଙ୍କ ମୂଲ୍ୟ ଓ ରୂପସମ୍ପତ୍ତି ଏ ଜାତିର ଅବହେଳା ମୌନାବଲମ୍ବନ କରି ସହି ଆସିଥିଲେ । କିନ୍ତୁ ରାଧାନାଥ ଯେତେବେଳେ କାବ୍ୟ ଲେଖିବାକୁ ହାତରେ ଲେଖନୀ ଧରି ବସିଥିବେ ସେ ଦିନ ବୋଧହୁଏ ଉତ୍କଳର ମୌନ ପ୍ରକୃତିରେ ଗୋଟିଏ ନୀରବ ଓ ଅବ୍ୟକ୍ତ ଆନନ୍ଦଧାରା ଖେଳିଯାଇଥିବ । ସେଦିନ ବୋଧହୁଏ ସୋଲେରୀ ଭାଲେରୀକୁ ଓ ମହେନ୍ଦ୍ର ମେଘାସନକୁ ଡାକି କହିଥିବ, 'ଆମର ପ୍ରକୃତ ଗ୍ରାହକ ଏତେଦିନେ ଆସିଲେ ।"(11)

ରାଧାନାଥଙ୍କ ପ୍ରକୃତି ବର୍ଣ୍ଣନାରେ ଚମତ୍କାରତା ସଂପର୍କରେ ପୁନଶ୍ଚ ମାନସିଂହ ଲେଖିଛନ୍ତି:— "ପ୍ରତିଭାର ଦିବ୍ୟାଞ୍ଜନ ଘେନି ରାଧାନାଥ ଅବତୀର୍ଣ୍ଣ ହେଲେ ଏବଂ ଉତ୍କଳ ପ୍ରକୃତିର ଅଜ୍ଞାତରୂପ ନିଜେ ଦେଖି ସମସ୍ତଙ୍କୁ ଦେଖାଇଗଲେ । X X X ରାଧାନାଥ ଯେ କେବଳ ଉତ୍କଳର ପ୍ରକୃତିକୁ ଚିହ୍ନି ପାରିଥିଲେ ତାହାନୁହେଁ, ତାହାକୁ ସେ ଅତୀବ ସୁନ୍ଦର ରୂପେ ଉତ୍କଳୀୟଙ୍କୁ ଚିହ୍ନାଇ ଯାଇଅଛନ୍ତି । ତାଙ୍କର ପ୍ରକୃତି ବର୍ଣ୍ଣନା ଗୁଡିକ ଏତେ ପ୍ରାଞ୍ଜଳ ଓ ମନଶ୍ଚକ୍ଷୁରେ ଏପରି ସ୍ପଷ୍ଟଭାବରେ ପ୍ରତିଭାତ ହୁଅନ୍ତି ଯେ, ଜଣେ ଚିତ୍ରକର ରାଧାନାଥଙ୍କ ବର୍ଣ୍ଣିତ ସ୍ଥାନମାନ ନ ଦେଖି ମଧ୍ୟ ସେମାନଙ୍କର ସୁନ୍ଦର ଚିତ୍ର ଅଙ୍କନ କରିପାରିବେ ।"(12) ରାଧାନାଥଙ୍କ ପ୍ରକୃତି ସନ୍ଦର୍ଶନର ପୃଷ୍ଠଭୂମି ତାଙ୍କର ଭ୍ରାମ୍ୟମାଣ ଶିକ୍ଷା ପରିଦର୍ଶକ ଜୀବନ । ଉତ୍କଳର ବିଚିତ୍ର ପ୍ରକୃତିକୁ ଅବଲୋକନ କରି କାବ୍ୟରୂପ ପ୍ରଦାନ କରିବାରେ ଯାହା ତାଙ୍କୁ ପ୍ରେରଣା ଯୋଗାଇ ଦେଇଥିଲା । ଭାଗ୍ୟବଶତଃ ମାନସିଂହଙ୍କର କର୍ମମୟ ଜୀବନହିଁ ତାଙ୍କୁ ପ୍ରକୃତିର ଜୀବନ୍ତ ରୂପକୁ ଅନୁଭବ କରିବା ପାଇଁ ସୁଯୋଗ ପ୍ରଦାନ କଲା । ମାତ୍ର ମାନସିଂହଙ୍କର ଆଦ୍ୟ ଜୀବନର ସୃଷ୍ଟିରେ ରାଧାନାଥଙ୍କର ପ୍ରଭାବ ବେଶ ପ୍ରତିଫଳିତ ।

ବିଶ୍ୱକବି ରବୀନ୍ଦ୍ରନାଥ:—

ବିଶ୍ୱକବି ରବୀନ୍ଦ୍ରନାଥ ତାଙ୍କର କବିତାରେ ପ୍ରକୃତିକୁ ଏକ ନବଜନ୍ମ ଦେଇଥିଲେ । ସକାଳ, ସନ୍ଧ୍ୟା, ରାତ୍ରିରେ ପ୍ରକୃତିରେ ରୂପ ବୈଚିତ୍ର୍ୟ, ଋତୁସଂହାର ଓ ଗିରିବନ, ନଦୀ କାନ୍ତାର, ରବୀନ୍ଦ୍ର କବିତାରେ ଏକ ନୂତନ ଆଭି–ମୁଖ୍ୟ ନବରୂପ ଓ ଅଭିନବ ମାଧୁର୍ଯ୍ୟବୋଧ ନେଇ ପ୍ରକାଶିତ । ମାନସିଂହଙ୍କ ଛାତ୍ରତ୍ୱ କାଳରେ ରବୀନ୍ଦ୍ରଥିଲେ ସମଗ୍ର ଭାରତୀୟ କବିମାନଙ୍କ ପାଇଁ ଏକ ଅପ୍ରତିରୋଧ୍ୟ ପ୍ରେରଣା–ଉତ୍ସ । ମାନସିଂହ ରବୀନ୍ଦ୍ର କବିତାର ଜଣେ ମୁଗ୍ଧ ପାଠକ । ରବୀନ୍ଦ୍ରନାଥଙ୍କ କବିତାରେ ପ୍ରକୃତି ସହ ଅନ୍ତରଂଗ ଅନୁଭବ ସହ ଶେଲି କୀଟସ୍‌ଙ୍କ ରୂପଦୃଷ୍ଟି ଓ ବୈପ୍ଳବିକ ଚେତନା, ବ୍ଲେକ୍, ଓ୍ୱାର୍ଡସଓ୍ୱାର୍ଥଙ୍କ ଆଧ୍ୟାତ୍ମିକ ଜିଜ୍ଞାସା ଓ କଲେରିଜ୍‌ଙ୍କ ସୁଦୂର ପ୍ରୀତି ଏକତ୍ର ସହାବସ୍ଥାନ କରିଛି । ମାନସିଂହ ସ୍ୱତନ୍ତ୍ର ଭାବରେ ସଂପୃକ୍ତ କବିମାନଙ୍କର କବିତା ସଂପର୍କରେ ଆସିଥିଲେ, ସେମାନଙ୍କୁ ବୁଝିବାରେ ଓ ସେମାନଙ୍କପ୍ରତି ନିଜର

ଦୃଷ୍ଟିକୋଣ ଆରୋପ କରିବାରେ ରବୀନ୍ଦ୍ରନାଥଙ୍କ ପାର୍ଶ୍ୱବର୍ତ୍ତୀ ହୋଇଥିବା ସମ୍ଭବପର ।

ରବୀନ୍ଦ୍ର କବିତାର ବହୁଦିଗ ରହିଛି । ନିଜର ବ୍ୟକ୍ତିଗତ କାରଣରୁ ମାନସିଂହ ସେ ସବୁପ୍ରତି ଆକୃଷ୍ଟ ହୋଇପାରି ନଥିଲେ ବା ପ୍ରାଥମିକ ଜୀବନର କବିତାରେ ସେ ପ୍ରକାର ଅନୁଭବକୁ ରୂପଦାନ କରିବାକୁ ସ୍ପୃହି ନ ଥିଲେ । ଉପନିଷଦର ଗମ୍ଭୀର ଭାବାଦର୍ଶ ଓ ଅରୂପଦୃଷ୍ଟି ଭିତରୁ ରବୀନ୍ଦ୍ରନାଥଙ୍କ ଜୀବନଦେବତାଙ୍କର ଆବିର୍ଭାବ । ସେହି ଜୀବନ ଦେବତା ନିରାମୟ ନିର୍ଗୁଣ ବ୍ରହ୍ମନୁହନ୍ତି । ସେ ହିଁ ରୂପ–ରସ–ଗନ୍ଧ–ସ୍ପର୍ଶର ପୂଜାରୀ । ଜୀବନର ସନ୍ଧାନ ଓ ଐନ୍ଦ୍ରିୟ ଅନୁଭବ ବିନା ସେ ଦେବତା ନିଜକୁ ଅପୂର୍ଣ୍ଣ ମନେ କରନ୍ତି, ସେଇଥିପାଇଁ ସେ ପାନ୍ଥ ଭାବରେ ଘୂରି ବୁଲନ୍ତି ଏଇ ବିଶ୍ୱ ବ୍ରହ୍ମାଣ୍ଡ ମଧ୍ୟରେ । ତେଣୁ ରବୀନ୍ଦ୍ରଙ୍କ ପ୍ରକୃତି ସଗୁଣମୟୀ କିନ୍ତୁ ସେ ରୂପକୁ ଅତିକ୍ରମକରି ଅରୂପର ସନ୍ଧାନ ଦିଏ । ଜୀବନର ଅନ୍ତରାଳରେ ଜୀବନ ଦେବତାର ଆବାହନ ସଂଗୀତ ଗାନ କରେ । ଜୀବନ ପ୍ରତି ଏହି ଆଧ୍ୟାତ୍ମିକ ଦୃଷ୍ଟି ଉତ୍ତର ବୟସ ପର୍ଯ୍ୟନ୍ତ ମାନସିଂହଙ୍କୁ ଆକୃଷ୍ଟ କରି ନଥିଲା । ରୂପ–ରସର ପୂଜାରୀ ମାନସିଂହଙ୍କୁ ରାଧାନାଥଙ୍କ କାବ୍ୟର ସାନ୍ନିଧ୍ୟ ଅଧିକ ଅନ୍ତରଙ୍ଗ ମନେ ହେଉଥିଲା ।

ଜୀବନର ଉତ୍ତର ଭାଗରେ ସେ ଭାରତୀୟ ଦର୍ଶନ ଓ ଧର୍ମଧାରା ସଂପର୍କରେ ଅନୁଶୀଳନ କଲାବେଳେ ତାଙ୍କର ମୌଳିକ ଦୃଷ୍ଟିର ଓଲଟାପଲଟିଆସିଥିଲା । ଜୀବନ ଜଞ୍ଜାଳରେ ମ୍ରିୟମାଣ ମାନସିଂହ ନିଜ ସମସ୍ୟାର ସମାଧାନ ତଥା ମାନସିକ ଶାନ୍ତିପାଇଁ ବିଭିନ୍ନ ଦର୍ଶନ ଆଡକୁ ହାତ ପ୍ରସାରିତ କରିଛନ୍ତି । ଯାହା ଫଳରେ ତାଙ୍କର ଚିନ୍ତା ଓ ଚେତନା କେତେବେଳେ ଅସ୍ପଷ୍ଟ ଓ କେତେବେଳେ ବହୁଧା ବିଭକ୍ତ ।

ରବୀନ୍ଦ୍ରଙ୍କ ପ୍ରକୃତି ସଂପର୍କୀୟ ବର୍ଣ୍ଣନାକୁ ସେ ମୁଗ୍ଧ ଭାବରେ ସ୍ମରଣ କରି ଲେଖିଛନ୍ତି :—

"ରବୀନ୍ଦ୍ରନାଥଙ୍କ କବିତାରେ ଗୋଟିଏ ମଧୁରଭାବ ଏଇ ଯେ,—ଏଇ ସୁନ୍ଦର ବିଶ୍ୱକୁ ଏକ ସୌନ୍ଦର୍ଯ୍ୟ ଦେବତା ରୂପ–ରସ ରେ ଉଦ୍ଭିନ୍ନିତ କରି ରଖିଛନ୍ତି, ସେଇତ ଧରଣୀରେ ଫୁଲ, ଆକାଶରେ ତାରା ଫୁଟାଏ, ଷଡଋତୁ ତାର ଲୀଳା, ଜଗତରେ ଯାହାକିଛି ସୁନ୍ଦର, ତାହା ତାଙ୍କରିକାର୍ଯ୍ୟ । ମନୁଷ୍ୟମଧ୍ୟରେ ଯେ ରୂପର ଆକର୍ଷଣ, ଏ ମଧ୍ୟ ତାରିକାର୍ଯ୍ୟ ।"(13)

ଏ ସମସ୍ତ ଉକ୍ତି ସହିତ ମାନସିଂହଙ୍କ ମନର କଥାକୁ ଉପେକ୍ଷା କରାଯାଇ ନ ପାରେ । ଆଦ୍ୟ ଜୀବନରେ ଶିଶୁ ବୟସରେ ଆମ୍ଭେମାନେ ପ୍ରକୃତିକୁ ଯେପରି ନିଜର କରିପାରୁ, ବୟସ ବୃଦ୍ଧି ସଂଗେ ସଂଗେ ପ୍ରକୃତି ସଂଗରେ ସେ ଆତ୍ମୀୟତା ରହେନାହିଁ । ବୟସ ବଢିବା ସଂଗେ ସଂଗେ ସତ୍ୟପଥରୁ ଓ ପ୍ରକୃତି ଠାରୁ ଆସ୍ଥାଲୋପ ହୋଇ ଆସୁଛି । ଶିଶୁବେଳେ ପ୍ରକୃତି ଥିଲା ଜୀବନ୍ତ । ପ୍ରତ୍ୟହ ପ୍ରାତଃ କାଳରେ କବି ଧରିତ୍ରୀର ମାୟାପୂର୍ଣ୍ଣ କୁହୁକ ରୂପ ଦେଖିବା ପାଇଁ, ମଣିଷର ପିଂଜରା ମଧ୍ୟରୁ ଧାଇଁ ଯାଉଥିଲେ ପ୍ରକୃତି କୋଳକୁ । ଘାସମାଳାରେ ଶିଶିରର ତରଳ ମୌକ୍ତିକ ଶୋଭା ଦେଖି ଶିଶୁ ମନରେ ଉଠୁଥିଲା ଅଫୁରନ୍ତ ଆନନ୍ଦର ଜୁଆର । ମାତ୍ର——

"ଆଜ ଦେଖି ଆଖେ ନାନା ଯାଦୁ ସଞ୍ଚାର,
ସେ ଆନନ୍ଦ ଉଚ୍ଚାଟନ, ତୃପ୍ତି କାହିଁ ଏ ଆହାର ?"(14)

॥ ମାନସିଂହଙ୍କ ବିଗ୍ଚରଧାରା ॥

ବର୍ତ୍ତମାଣ କାଳରେ ବିଭିନ୍ନ ପ୍ରକୃତିଗତ ପ୍ରତ୍ୟେୟକୁ ନିଜର ସାମର୍ଥ୍ୟ ଓ ଆବଶ୍ୟକତା ଅନୁଯାୟୀ ଆମୂର୍ତ୍ତ କରି ମାନସିଂହଙ୍କ ନିଜସ୍ୱ ଦୃଷ୍ଟି ଫୁଟିଛି, ଏହି ଦୃଷ୍ଟି ଓ ବିଗ୍ଚରର ରହିଛି ବିଭିନ୍ନ ପର୍ଯ୍ୟାୟ । ନିମ୍ନରେ ସେ ଗୁଡ଼ିକର ଅବତାରଣା କରାଯାଉଛି ।

ପ୍ରକୃତିର ବାସ୍ତବ ରୂପ:

ପ୍ରକୃତି ପ୍ରଥମେ ଆଖିରେ ଦେଖାଯାଏ ଓ ହୃଦୟରେ ଅନୁଭବ କରାଯାଏ, ତା ପରେ ସେ ସଂପର୍କରେ ବିଗ୍ଚରବୋଧ ଗଢ଼ିଉଠେ । ମାନସିଂହ ପ୍ରକୃତି ସଂପର୍କୀୟ କୌଣସି ଏକ ନିର୍ଦ୍ଦିଷ୍ଟ ଦର୍ଶନ ଚିନ୍ତା କରାଇବା ପୂର୍ବରୁ ନିଜର ଇନ୍ଦ୍ରିୟ ସକଳଦେଇ ପଞ୍ଚ ତନ୍ମାତ୍ରକୁ (ସାଂଖ୍ୟମତରେ ସୂକ୍ଷ୍ମ ଅମିଶ୍ର ପଞ୍ଚଭୂତ—ରୂପ, ରସ, ଗନ୍ଧ, ଶବ୍ଦ ଓ ସ୍ପର୍ଶ) ଉପଭୋଗ କରିଛନ୍ତି । ପ୍ରକୃତି ପ୍ରତି ମାନସିଂହଙ୍କର ଏବଂବିଧ ଆକର୍ଷଣ ବାସ୍ତବ ଅନୁଭବର ବିଷୟ । ମୂଳରୁ କୁହାଯାଇଛି, ମଣିଷ ସହ ପ୍ରକୃତିର ସଂପର୍କ ଘନିଷ୍ଠ ଓ କୌଣସି ଅବସ୍ଥାରେ ମଣିଷର ବିଚ୍ଛିନ୍ନତା ସାର୍ବିକ ନୁହେଁ । ମାନସିଂହଙ୍କ ପକ୍ଷରେ ଏହି ବିଚ୍ଛିନ୍ନତାର ପ୍ରଶ୍ନହିଁ ଆସିନାହିଁ । ଜୀବନର ପ୍ରାରମ୍ଭରୁ ଶେଷ ପର୍ଯ୍ୟନ୍ତ ଯେଉଁ ପରିବେଶରେ ତାଙ୍କର ଜୀବନ କଟିଛି, ସେ ହେଉଛି ବିଶ୍ୱ ଜଗତର ଅପରିବର୍ତ୍ତନୀୟ, ଅଟଳ ବାସ୍ତବ ସ୍ୱରୂପ । ତଥାପି ପ୍ରକୃତି ଯେଉଁଠି ତାର ସ୍ୱଭାବ ସୌନ୍ଦର୍ଯ୍ୟ ନେଇ ତାଙ୍କୁ ଆକୃଷ୍ଟ କରିଛି, ସେଠି ତାର ସେ ବନ୍ଦନା ଗୀତି ଗାଇ ଉଠିଛନ୍ତି । କେତେବେଳେ ତାହା ଗଦ୍ୟରେ ଓ କେତେବେଳେ ପଦ୍ୟରେ ।

ମାନସିଂହ ବିବାହ ପରେ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ ସମୟରେ ଆଗ୍ନେୟରଥ(ରେଳଗାଡ଼ି)ରୁ ଅବତରଣ କରି ପ୍ରେୟସୀ ସହିତ ନିଜ ପ୍ରିୟଭୂମିକୁ ବାହୁଡ଼ିଛନ୍ତି । ନିଜର ଜନ୍ମମାଟିର ପରିଚୟ ଦେଇ କବି କହିଛନ୍ତି :— "ହେ ପ୍ରିୟେ, ଏ ଅଗ୍ନିରଥରୁ ଅବତରଣ ପରେ ଆମେ ସେହିଠାକୁ ଯିବା, ଯେଉଁଦେଶ ମହୋଦଧିର ତଟ ଦେଶରେ ବୃକ୍ଷହୀନ ହେମକାନ୍ତ ସିକତା ବିସ୍ତାରିତ ଭୂମିରେ, ପ୍ରକୃତି ଯେଉଁଠି ଦିଗମ୍ବର ବେଶରେ ଦଣ୍ଡାୟମାନ । ଜଳ କନ୍ୟାଗଣ ନିଶିଥରେ ସିନ୍ଧୁ ସିକତାରେ, କିଆକୁଞ୍ଜରେ ଯେଉଁଠାରେ ଲୁଚକାଳି ଖେଳନ୍ତି, ବର୍ଷାଋତୁର ଆରମ୍ଭରେ ପୁନ୍ନାଗ କୁସମ ଗନ୍ଧରେ ଯେଉଁଠି ବିରହୀ ତରୁଣଙ୍କର ପ୍ରାଣ ଦହି ହୋଇଯାଏ, ଯେଉଁ ଭୂମିର ପାଦତଳରେ କ୍ଷୁବ୍ଧ ପାରାବାର ତାର ଦୀର୍ଘ ଉର୍ମିବାହୁକୁ ଢାଳିଦେଇ ଗୁରୁଗର୍ଜନରେ ଶାଶ୍ୱତିକ ମୃଦଙ୍ଗ ଘୋଷଣା କରେ, ସେହି ଦେଶର କୁରଙ୍ଗୀଗଣ ତୁମଠାରୁ ଚକ୍ଷୁର ଭୁଙ୍ଗୀ ଶିଖିବେ ।"ଏଠାରେ ନିଜର ବାସ୍ତବ ଜୀବନରେ ପ୍ରକୃତିକୁ ନିଜର କରିନେବାର ଚେଷ୍ଟା ପ୍ରତ୍ୟକ୍ଷୀଭୂତ ହୁଏ ।(15)

ବାସ୍ତବ ଜୀବନରେ ପ୍ରାକୃତିକ ପରିବେଶ, କବି ପ୍ରାଣକୁ ମୁଗ୍ଧ କରିଛି । ସେ ବିଭିନ୍ନ ଅବସ୍ଥାରେ ପ୍ରକୃତିର କମନୀୟ ରୂପକୁ ମୁଗ୍ଧ ନେତ୍ରରେ ଦେଖିଛନ୍ତି । ଚିଲିକାର ତଟଦେଶରେ କବିଙ୍କର ଜନ୍ମ ଓ ବାଲ୍ୟଶିକ୍ଷା । ତଥାପି ସେ ଚିଲିକାର ମନୋରମ ବେଶକୁ ଦେଖିବାକୁ ବ୍ୟାକୁଳ ହୋଇଛନ୍ତି । କୌଣସି ଏକ ଚନ୍ଦ୍ରାଲୋକିତ ରଜନୀ, କବି ରମ୍ଭାଠାରୁ ନୌକାରେ ଚିଲିକା ଭ୍ରମଣ ଉଦ୍ଦେଶ୍ୟରେ ବାହାରିଛନ୍ତି । କବିଙ୍କ ବର୍ଣ୍ଣନା ଅନୁସାରେ—ବିମଳଜ୍ୟୋତ୍ସ୍ନା ବ୍ୟାପ୍ୟା ପୃଥିବୀର ସର୍ବାଙ୍ଗରେ ପରିବ୍ୟାପ୍ତ ହୋଇ ଉଠିଲାଣି । ସମସ୍ତ ସୃଷ୍ଟି ତରଳ ରଜତ ପ୍ରବାହରେ ଅଭିଷିକ୍ତ ପରି ଦିଶୁଛି । ଉପରେ ଅନନ୍ତ ଆକାଶ ଜ୍ୟୋତ୍ସ୍ନାରେ ଧବଳ , ତଳେ ଚିଲିକାର ଦିଗନ୍ତ ବିସ୍ତାରୀ ବାରିରାଶି ଜ୍ୟୋତ୍ସ୍ନାରେ

ଧବଳ, ଚତୁର୍ଦ୍ଦିଗର ଗିରିମାଳା ମଧ୍ୟ ଜ୍ୟୋତ୍ସ୍ନାରେ ଧବଳ । ସୃଷ୍ଟିର ଏହି ଶୁକ୍ଳବେଶ ଚକ୍ଷୁଭରି ଦେଖିବାକୁ ଲାଗିବୁ ।(16) କବି ମନ୍ତ୍ରମୁଗ୍ଧପରି ଚିଲିକାର ଶୁକ୍ଳାମ୍ବର ବେଶ ଦେଖିବାରେ ଲାଗିଲେ ।

ଚିଲିକାର କମନୀୟ ବେଶ ଦେଖିଲା ପରେ କବି ବିଭିନ୍ନ ସମୟରେ ଚିଲିକାର ବେଶ କଥା ସ୍ମରଣ କରି ଲେଖିଛନ୍ତି:—"ବେଶ ବିଳାସିନୀ ନାୟିକା ପରି ଚିଲିକାର ଭିନ୍ନ ଭିନ୍ନ ଋତୁରେ ଭିନ୍ନ ଭିନ୍ନ ବେଶ । ଶୀତ ଓ ବସନ୍ତର ଆରମ୍ଭରେ ତାର ବଡସିଂହାର ବେଶ ହୁଏ । ଶୀତର ଆରମ୍ଭରେ ନାନା ଦେଶର ବିହଙ୍ଗ ବିହଙ୍ଗୀମାନଙ୍କର କଳଗୀତିରେ ନୀରାସ୍ତରଣ ମୁଖରିତ ହେବାକୁ ଲାଗେ । ଚିଲିକାର ଦକ୍ଷିଣ କୂଳରେ ଅର୍ଥାତ ପାରିକୁଦ ଓ ମାଲୁଦ ଅଞ୍ଚଳରେ ସମାଗତ ଏହି ଲକ୍ଷ୍ୟ ଲକ୍ଷ୍ୟ ବିହଙ୍ଗମାନଙ୍କର ମେଳନ ଦେଖିବାର ବସ୍ତୁ । ଚିଲିକାର ନୀଳ ଜଳରେ ଏମାନଙ୍କର ଏକୀକୃତ ଶୁକ୍ଳଦେହ ଦୂରକୁ ଗୋଟାଏ ସ୍କନ୍ଧବାରର ଭ୍ରମ ଜନ୍ମାଏ ।"(17)

ଓଡିଶାରେ ପ୍ରକୃତିର ଏ ରୂପରାଶି ଅବହେଳିତ ଅବସ୍ଥାରେ ପଡିଥିବାରୁ ଓଡିଶାର ଲୋକେ ଅବସର ଓ ସୁଯୋଗ ପାଇଲେ ତାଜ ମହଲ ଓ ସିମିଲା ଯାଆନ୍ତି, କିନ୍ତୁ କୋଣାର୍କ ଓ ସାତକୋଶିଆ କିମ୍ବା ଚିଲିକା ଯାଆନ୍ତି ନାହିଁ, ସେଥିପାଇଁ କବିଙ୍କ ପ୍ରାଣ ବ୍ୟଥିତ ହୋଇଛି । ଭିନ୍ନ ଭିନ୍ନ ଋତୁରେ ଚିଲିକାର ପରିବର୍ତ୍ତନ ହେଲାପରି ଦିବସର ବିଭିନ୍ନ ସମୟରେ ଚିଲିକାର ରୂପର ପରିବର୍ତ୍ତନ କବି ଲକ୍ଷ୍ୟ କରିଛନ୍ତି:—" ତାର ବକ୍ଷରେ ଉଷାର ସଂଗମ ଅତ୍ୟନ୍ତ ରମଣୀୟ ସତ୍ୟ, କିନ୍ତୁ ତାହା ଅତ୍ୟନ୍ତ କ୍ଷଣସ୍ଥାୟୀ । ପ୍ରାତଃ ସୂର୍ଯ୍ୟଙ୍କର କୋମଳ କିରଣ ତ୍ୱରିତ ବେଗରେ ପ୍ରଖର ହୋଇଉଠେ ଓ ଚିଲିକାର ଲବଣ ଜଳରେ ସୂର୍ଯ୍ୟଙ୍କର ପ୍ରଖର କିରଣ ଅନେକ ସମୟରେ ଅସହ୍ୟ ବୋଧହୁଏ । ପ୍ରଦୋଷ କାଳରେ ହିଁ ଚିଲିକା ତାର ନେପଥ୍ୟର ଶ୍ରେଷ୍ଠ ସମ୍ଭାର ଲୋକ ନେତ୍ରକୁ ଘେନି ଆସେ । ସୂର୍ଯ୍ୟଙ୍କର ପୂର୍ବେ ଓ ପରେ ବହୁକ୍ଷଣ ଧରି ଏହି ରୂପସଜା ସ୍ଥାୟୀ ରହିବାରୁ ତାହା ଅତ୍ୟନ୍ତ ଉପଭୋଗ୍ୟ ହୁଏ । ଏହି ସମୟରେ ଚିଲିକା ସ୍ୱର୍ଣ୍ଣ ଶାଟୀ ପରିଧାନ କରି ଅସ୍ତଗାମୀ ସୂର୍ଯ୍ୟଙ୍କୁ ଯେପରି ବନ୍ଦାପନା କରେ ।"(18)

ମାନସିଂହ ବିଲାତ ଯାତ୍ରା କଲାବେଳେ, ଜଳପଥରେ ବିଭିନ୍ନ ଦୃଶ୍ୟ ଦେଖି ସୌନ୍ଦର୍ଯ୍ୟ ଉପଭୋଗ କରିଛନ୍ତି । ଲୋହିତ ସାଗର ମଧ୍ୟରେ ଜାହାଜ ଗଲାବେଳେ କବିଙ୍କର ମାନସ ପଟରେ ଭାସିଉଠିଛି ଚିଲିକାର ସ୍ମୃତି । "ସନ୍ଧ୍ୟାର ଅନ୍ଧକାର ମାଡି ଆସୁଥିଲା ବେଳେ, ଦୁଇ କୂଳର କ୍ରମ ଅସ୍ପଷ୍ଟୀଭୂତ ପର୍ବତମାଳା, ଉପରେ ନୀଳ ଆକାଶ ତଳେ ନୀଳ–ଜଳ–ବିତାନ, ଏ ସବୁ ମିଶି ଚିଲିକାରେ ସନ୍ଧ୍ୟାଗମର ଛବି ମନେ ପକାଇ ମୋର ହୃଦୟକୁ ଦେଶର ସ୍ମୃତିରେ ତରଳ କରି ଦେଉଥାଏ ।"(19) ସୁଏଜ କେନାଲରେ ଜାହାଜ ଗଲାବେଳେ ମରୁଭୂମିର ଋକ୍ଷତା ମଧ୍ୟରେ ମାନସିଂହ ଅନୁଭବ କରିଛନ୍ତି ସୌନ୍ଦର୍ଯ୍ୟର ମର୍ଯ୍ୟାଦା । "ଦୁଇପାଖରେ ସ୍ୱର୍ଣ୍ଣ ବାଲୁକାର ବିସ୍ତାର ଭିତରେ ଏକ ନୀଳ ଜଳରେଖା, ଭାରତୀୟ ବରବର୍ଣ୍ଣିନୀମାନଙ୍କର ସ୍ୱର୍ଣ୍ଣ ପୃଷ୍ଠରେ କୃଷ୍ଣବେଣୀର ଦୃଶ୍ୟ ମନେ ପକାଉଥିଲା ।"(20)

ଇଂଲଣ୍ଡ ଅବସ୍ଥାନ କାଳରେ କବି ଇଂଲଣ୍ଡର ପଲ୍ଲୀଶୋଭା, ଶାରଦୀୟ ଶୋଭା ଓ ପଲ୍ଲୀ ଖମାରର ଯେଉଁ ମନୋରମ ଦୃଶ୍ୟ ଦେଖିଛନ୍ତି, 'ପଶ୍ଚିମ ପଥିକ'ରେ ତାର ଜୀବନ୍ତ ବର୍ଣ୍ଣନା ପ୍ରଦାନ କରିଛନ୍ତି ।

## ॥ ମାନସିଂହଙ୍କ ବିଗ୍ରହଧାରା ॥

ମାନସିଂହ ପୂର୍ବ ଗଡଜାତର ଶିକ୍ଷା ପରାମର୍ଶଦାତା ସମୟରେ ଉତ୍କଳୀୟ ପ୍ରାକୃତିକ ସୁଷମାର ଭଣ୍ଡାର ଗଡଜାତ ଅଞ୍ଚଳରେ ବ୍ୟାପକ ଭାବରେ ଭ୍ରମଣ କରିଥିଲେ । ପ୍ରକୃତି କୋଳରେ ଜୀବନର ଯେଉଁ ମଧୁମୟ ସମୟ ସେ ବିତାଇ ପାରିଥିଲେ, ତାହା ତାଙ୍କର ସ୍ମୃତିପଟରେ ଅଲିଭା ରହିଥିଲା । ସେ ସଂପର୍କରେ ମାନସିଂହ ଲେଖିଛନ୍ତି:— "ରାଜ ପ୍ରାସାଦ ମାନଙ୍କର ଆତିଥ୍ୟ, ରାଜପୁରୁଷ ମାନଙ୍କର ଦର୍ଶନ ବା ସାହଚର୍ଯ୍ୟ ଅଥବା ଉଚ୍ଚପଦର ମାନ ଓ ସ୍ୱଚ୍ଛନ୍ଦତା ଏ ସବୁ ମୋ ପକ୍ଷେ ଯେତେ ଆକର୍ଷଣର ବସ୍ତୁ ନଥିଲା, ଥିଲା ଗଡଜାତର ପ୍ରାକୃତିକ ସୁଷମା । ପ୍ରାକୃତିକ ସୌନ୍ଦର୍ଯ୍ୟ ପାଇଁ ଓଡିଶାର ପ୍ରକୃତରେ ଗର୍ବ କରିବାର କଥା । ଏଇ ସୌନ୍ଦର୍ଯ୍ୟ ଓଡିଶାର ଉପକୂଳ ଓ ପାର୍ବତ୍ୟ ଉଭୟ ଅଞ୍ଚଳରେ ବିଭିନ୍ନ ଧାରାରେ ପ୍ରସାରିତ ହୋଇଛି । କିନ୍ତୁ ଗଡଜାତ ମାନଙ୍କରେ ପ୍ରକୃତିର ଯେଉଁ ଆଦିମ, ଅବିନ୍ୟସ୍ତ, ଅବିକୃତ, ମାନବ-କରାସ୍ପର୍ଶିତ ଭୀମକାନ୍ତ ଜାଙ୍ଗଲ ରୂପ ଏ ପର୍ଯ୍ୟନ୍ତ ରହିଛି, ତାହାହିଁ ମନକୁ ବିଶେଷ ଭାବରେ ଉଚ୍ଚାଟିତ କରେ । ଉପକୂଳଭୂମି, ମାନବର ବିଗ୍ରହହୀନ କ୍ରୁର ଖାଦ୍ୟାନ୍ୱେଷୀ ହସ୍ତରେ ଧ୍ୱସ୍ତ କର୍ଷିତ ଓ ବିକାରଗ୍ରସ୍ତ ହୋଇସାରିଛି ।"(21) ସମଗ୍ର ଭାରତରେ ଗଡଜାତ ବିଶେଷତଃ ଓଡିଶାର ଗଡଜାତ ଏତେ ସୁଷମାମୟଯେ, କେଉଁ ବିଶିଷ୍ଟସ୍ଥାନ ମତେ ମୁଗ୍ଧ କରିଛି ବୋଲି ପଚ୍ଚରିଲେ ମୁଁ ହଠାତ ଉତ୍ତର ଦେଇ ପାରେନା । ଅବଶ୍ୟ ଅନୁପମ ସୌନ୍ଦର୍ଯ୍ୟ ଗାମ୍ଭୀର୍ଯ୍ୟମୟ ସାତ କୋଶିଆ ଅଛି । କିନ୍ତୁ ସେତ ସମଗ୍ର ଉତ୍କଳର ଗର୍ବର ବସ୍ତୁ, କେବଳ ଗଡଜାତରେ ନୁହେଁ । ମୁଁ ଯେଉଁ ଆକର୍ଷଣ କଥା କହୁଛି ତାହା ଆକସ୍ମିକ ନୁହେଁ, କେବଳ ବା ଏକାନ୍ତ ନୁହେଁ । ତାହା ସର୍ବାଞ୍ଚଳିକ, ସର୍ବବିଚ୍ଛୁରିତ । ମୋ ଆଖିରେ ତାହାହିଁ ଗଡଜାତ ଅଞ୍ଚଳର ବିଶେଷ ଗର୍ବ ଓ ଆକର୍ଷଣର କଥା । ଯେଉଁଆଡେ ଆଖି ପକାଅ, ପ୍ରକୃତି ତାର ଚିତ୍ରଶାଳା ମେଲି ରଖିଛି । ତାର ସୌନ୍ଦର୍ଯ୍ୟ ଭୋଗପାଇଁ ତୁମକୁ କୌଣସି ବିଶେଷ ଶ୍ରମ ସ୍ୱୀକାର କରିବାକୁ ପଡିବ ନାହିଁ, ବା ବିବିକ୍ତ ସ୍ଥଳକୁ ଯିବାକୁ ହେବ ନାହିଁ । ସେ ଚମପାଇଁ ସର୍ବତ୍ର ସର୍ବାଭରଣ ଭୂଷିତା ଯୁବତୀ ପରି ରହସ୍ୟର ଅବଗୁଣ୍ଠନ ତଳେ ଶ୍ୟାମ-ସ୍ମିତ-ରେଖା ପ୍ରକଟିତ କରି ଦଣ୍ଡାୟମାନ "(22)

ମାନସିଂହ ପ୍ରକୃତିକୁ କେବଳ ସନ୍ଦର୍ଶନ କରିନାହାନ୍ତି ବା ପ୍ରକୃତିକୁ ଉପଭୋଗ କରିନାହାନ୍ତି ବରଂ ପ୍ରକୃତି ଠାରୁ ଅନେକ ପ୍ରେରଣା ଲାଭ କରିଛନ୍ତି । ପ୍ରକୃତି ଠାରୁ ଆତ୍ମୀୟ ସ୍ପର୍ଶ ପାଇଛନ୍ତି ।"ମୁଁ ଗଡଜାତର ବା ଓଡିଶାର ପ୍ରକୃତିକୁ ଏଇପରି ଭାବରେ ଦେଖିଆସିଛି,—ବିଳାସରୂପେ ନୁହେଁ, ଦୈନନ୍ଦିନ ପ୍ରୟୋଜନ ଭାବରେ । ତେଣୁ ସ୍ମୃତିରେ ଜାଗ୍ରତ ରହିଛି, ସାମାନ୍ୟ ସାମାନ୍ୟ ସ୍ଥାନ ବା ଦୃଶ୍ୟ ଯେଉଁଠି ମୁଁ ପ୍ରକୃତିର ଆଡମ୍ବର ନ ଦେଖିଥିଲେ ମଧ୍ୟ, ପାଇଛି ତାର ଘନିଷ୍ଠ ଆତ୍ମୀୟ ସ୍ପର୍ଶ । ସେହି ଆତ୍ମୀୟତା ଯୋଗୁ କାଂକେର ଷ୍ଟେଟରେ କୌଣସି ସ୍କୁଲ ଦେଖିଲା ବେଳେ ଯେତେବେଳେ ଶୁଣିଲି ଯେ, ନିକଟରେ ମହାନଦୀ ବହି ଯାଉଛି, ମୁଁ ଦୌଡିଥିଲି ତାକୁ ଦେଖିବାକୁ । ଦେଖିବାର କିଛି ନାହିଁ । ସେଠି ମହାନଦୀ କ୍ଷୀଣ ଶରୀରା, ତା'ର ସହସ୍ର ସହସ୍ର କ୍ଷୁଦ୍ର ଉପନଦୀ ଭିତରୁ ଗୋଟିଏ ଯେପରି, ଆଉ ଦରିଦ୍ରା ସ୍ତ୍ରୀ ପରି ବେଶଭୂଷଣ ହୀନା । କିନ୍ତୁ ତାକୁଇ ଦେଖି ପ୍ରାଣ ନାଚି ଉଠିଲା । କାରଣ ସେ ଯେ ମୋରି ମହାନଦୀ, ଅତି ପରିଚିତା, ଅତି ଆତ୍ମୀୟା, ଅତି ନିକଟତର, ଅତି ଆପଣାର, ଜୀବନର ଧାରା ।"(23)

|| ମାନସିଂହଙ୍କ ବିଗ୍ରହଧାରା ||

'ମହାନଦୀରେଜ୍ୟୋତ୍ସ୍ନାବିହାର'ଠାରୁ ଆରମ୍ଭକରି,ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ,ମହାନଦୀ ଓ ମହୋଦଧି ମାନସିଂହଙ୍କ ପ୍ରାଣକୁ କୋଳେଇ କାଖେଇ ଧରିଥିଲା । ଏଣୁ କର୍ମକ୍ଷେତ୍ରରେ ଯେଉଁଠି ସୁବିଧା ପାଉଛନ୍ତି ମାନସିଂହ ମହାନଦୀ ଓ ମହୋଦଧିର କୋଳରେ ଶାନ୍ତିର ସନ୍ଧାନ କରିଛନ୍ତି । ସମ୍ବଲପୁରର ମେହେର କଲେଜରେ ଅବସ୍ଥାନ କାଳରେ ବଣଭୋଜି ତଥା ମହାନଦୀ ଜଳରେ ସ୍ନାନ ବିଷୟରେ ସ୍ମରଣ କରି ମାନସିଂହ ଲେଖିଛନ୍ତି :— "ହୀରାକୁଦର ଏକ ନିର୍ଜନ ଅଂଶରେ ଆମେ ସେଥର ଆସ୍ଥାନ ଜମାଇଥାଉ । ପିଲେ ଓ ତତ୍ତ୍ୱାବଧାରକ ଶିକ୍ଷକ ବୃନ୍ଦ ଆଗରୁ ଗୁଳିଯାଇଥାନ୍ତି । ମୁଁ ଗଲାବେଳକୁ ଅପରାହ୍ନ ହୋଇଯାଇଥିଲା । ଯାଇ ଦେଖେ ଅତି ରମଣୀୟ ସ୍ଥାନ । ବାଲୁକା ଶଯ୍ୟା ଉପରେ ଲମ୍ବମାନ ଏକ ଛୋଟ ଅରଣ୍ୟ,ଯାର ଘନ ସୁଶୀତଳ ଛାୟାରେ ଆମର ବସାଉଠାର ବ୍ୟବସ୍ଥା । ନିମ୍ନରେ ବହିଯାଉଛି ମହାନଦୀର ଏକ ଶାଖା । ହେମନ୍ତ କାଳ । ମହାନଦୀର ନୀଳ ନୀର ନୀଳତର ହୋଇ ଉଠିଛି । ପିଲାଏ ଦଳ ଦଳ ହୋଇ ପହଁରୁଛନ୍ତି । କିଛି ସମୟଧରି ଠିଆ ହୋଇ ସେ ସବୁ ଦେଖୁ ଦେଖୁ ଆଉ ଲୋଭ ସମ୍ବରଣ କରି ପାରି ନଥିଲି । ସେତେବେଳେ ଦ୍ୱିତୀୟ ପୁତ୍ର ଲଳିତେନ୍ଦୁ ସେହିଠାରେ ଛାତ୍ର ଥିଲା । ଦୁହେଁ ସକାଳୁ ଘରେ ଗାଧୋଇ ଖାଇ ଯାଇଥିଲୁ, । କିନ୍ତୁ ବର୍ତ୍ତମାନ ଦୁହେଁ,ପୋଷାକ ଖୋଲି ଦେଇ ମହାନଦୀର ନୀଳ ନୀରର ଅପୂର୍ବ ଆକର୍ଷଣରେ ଝାସ ଦେଲୁ । ବୁଡି ପହଁରି,ଭାସି,ବସି,ପ୍ରାୟ ଘଣ୍ଟାଏ ଖଣ୍ଡେ ମହାନଦୀର ସ୍ନେହଶୀତଳ ମାତୃକୋଳରେ ଶିଶୁ ଖାଲି ଜନନୀ ହେହର ସ୍ପର୍ଶରେ ବୁଡି ରହିଲା ପରି ବିଭୋର ହୋଇ ବିହାର କଲୁ । ଏକାବେଳକେ କ୍ଲାନ୍ତ ନହେଲା ଯାଏ ବାପ–ପୁଅ ପାଣିରୁ ଉଠିଲୁ ନାହିଁ"(24)

ପ୍ରକୃତିର ବାସ୍ତବ ରୂପ ମାନସିଂହ ଦେଖିଛନ୍ତି,ଅନୁଭବ କରିଛନ୍ତି । ସେ ଅନୁଭବ କିନ୍ତୁ ପୁରୁଷାୟିତ ଅନୁଭବ । ସେଇଥିପାଇଁ ପ୍ରକୃତି ତାଙ୍କୁ ମନେ ହୋଇଛି ନାରୀର ଅନ୍ୟ ରୂପ ଭଳି । ପ୍ରକୃତି ଭିତରେ କ୍ୱଚିତ୍ ସେ ପୁରୁଷ ଭାବ ଲକ୍ଷ୍ୟ କରିଛନ୍ତି । ଯେତେବେଳେ ବି ସେ ଲକ୍ଷ୍ୟ କରିଛନ୍ତି,ସେତେବେଳେ ପ୍ରକୃତି ତାଙ୍କ ଦୃଷ୍ଟିରେ ଆଉ ପ୍ରକୃତି ହୋଇ ରହିନାହିଁ,ହୁଏତ ସେ ମାନବାୟିତ ଅଥବା ଦେବାୟିତ ହୋଇଛି ।

ପ୍ରକୃତି ଓ ମାନବ.ବ୍ୟକ୍ତିତ୍ୱ:—

ପ୍ରକୃତି ସହ ମଣିଷର ସାଧର୍ମ ଆବିଷ୍କାର କରିଥିବାରୁ ଓ ପ୍ରକୃତି ଭିତରେ ରହସ୍ୟମୟ ଅନ୍ତଃସତ୍ତାର ସ୍ପନ୍ଦନ ଅନୁଭବ କରିଥିବାରୁ,ମାନସିଂହଙ୍କ ଦୃଷ୍ଟିରେ ପ୍ରକୃତି ତା'ର ନିଜସ୍ୱ ରୂପ ଭିତରେ ସୀମାବଦ୍ଧ ହୋଇ ରହିପାରିନାହିଁ । ସ୍ଥାବରରୁ ଜଙ୍ଗମ ଆଡକୁ,ଜଡରୁ ଜୀବନ ଆଡକୁ,ଅଚେତନରୁ ଚେତନ ଆଡକୁ ତାହା କ୍ରମଶଃ ଅଗ୍ରସର ହୋଇଛି । ସମୟ ଆସିଛି,ଯେତେବେଳେ ମାନସିଂହ ମଣିଷ ଓ ପ୍ରକୃତିରେ ଥିବା ଭେଦ ରେଖାଟିକୁ କ୍ରମଶଃ ବିସ୍ମୃତ ହୋଇଯାଇଛନ୍ତି । ପ୍ରକୃତି ମଣିଷ ଭଳି ବ୍ୟବହାର କରିଛି । ମଣିଷ ଭଳି ନିଜର ସୁଖ ଦୁଃଖରେ ଜଡିତ ହୋଇଛି । ପୁଣି କେତେବେଳେ ସାଙ୍ଗସାଥୀ ଭଳି ଅସହାୟ ମଣିଷର ହାତଧରି ବାଟ କଢାଇ ନେଇଛି । ପ୍ରକୃତିର ଏହି ମାନବାୟିତ ରୂପ ତାଙ୍କର କାବ୍ୟା–ଲୋକରେ ଅଧିକସ୍ପଷ୍ଟ । କାବ୍ୟକାର ମାନସିଂହ କାବ୍ୟରଚନାର ଧ୍ୟାନସ୍ଥ ମୁହୂର୍ତ୍ତରେ ପ୍ରକୃତି ଓ ମଣିଷ ଉଭୟଙ୍କୁ ସମୀକୃତ କରିଛନ୍ତି ।

## ॥ ମାନସିଂହଙ୍କ ବିରହଧାରା ॥

ପ୍ରକୃତି ସଂଗରେ ଅନ୍ତରଂଗତା ସଂଗେ ସଂଗେ ପ୍ରକୃତିକୁ ସେ ସୁଖ ଦୁଃଖର ସାଥୀ ଭାବରେ ଗ୍ରହଣ କରି ନେଇଛନ୍ତି । ବିରହୀ ଘନ କବିତାରେ ମାନସିଂହ ନିଜ ଜୀବନର ଛବିକୁ ଦେଖିଛନ୍ତି । ତାଙ୍କ ଦୃଷ୍ଟିରେ ଆକାଶର ବିରାଟ ପ୍ରାନ୍ତରରେ, ଅନ୍ତରରେ ଗଭୀର ବ୍ୟଥା, ରୁଦ୍ଧ ହୃଦୟ ସହ ଆକୁଳ ନିଶ୍ୱାସ ଓ କ୍ଷୁଣ୍ଣ ପ୍ରାଣରେ ଯୁଗ ଯୁଗାନ୍ତରୁ ବିରହୀଘନ କାହାର ଅନ୍ୱେଷଣ କରି ଆସୁଛି । ଏଣୁ ବାରିଦର ବଦନର ଛବି ସଦା ଗମ୍ଭୀର, କପାଳରେ ଲେଖା ହୋଇଛି ବିଷାଦର ରେଖା । ଗଣ୍ଡ ଦେଶରେ ଚିନ୍ତାର କାଳିମା ହୋଇଛି ଅଙ୍କିତ । ଯେପରି ସେହିସ୍ମୃତିର କଶାଘାତରେ ପ୍ରାଣ ବିକଳ ହେଉଛି ଓ ବାରିଦ ପ୍ରେୟସୀର ସ୍ମୃତିକୁ ସ୍ମରଣ କରି ଅବିରତ ରୋଦନ କରୁଅଛି । ବାରିଦର ପ୍ରେମିକା ସମ୍ପର୍କରେ ମାନସିଂହ କହନ୍ତି :—

" କିଏ ସେ ଲାବଣ୍ୟବତୀ ପୁଣ୍ୟବତୀ ଭାଗ୍ୟବତୀ ବାଳା;
ଯାହାପାଇଁ ହୃଦେ ଘନ, ଧରିଅଛୁ ଏ ବରଣମାଳା,
ନୟନର ଚକ୍ଷୁଲୁହେ ଆର୍ଦ୍ରକରି ଆକାଶ ଅବନୀ
ଯୁଗ ଯୁଗଁ ବୁଲୁଥାଅ, କି ବ୍ୟାକୁଳେ ସମସ୍ତ ଧରଣୀ ।
ମନ୍ଦ୍ରନାଦେ ଡାକୁଥାଅ, ଅନ୍ତରୀକ୍ଷ ଯାଉଥାଏ ଭରି
କାହା ନାମ ଧରି ।''(25)

ଭାରତୀୟ ପରମ୍ପରାରେ ନାରୀ ଅସୂର୍ଯ୍ୟଂପଶ୍ୟା । ଅନ୍ତରରେ କୋମଳ ହେଲେ ହିଁ ସେ କୋମଳତା ପ୍ରେମ ନିବେଦନକୁ ସହଜରେ ଗ୍ରହଣ କରେ ନାହିଁ । ଏମିତି କେତେକ ନାରୀ ଅଛନ୍ତି, ଯେଉଁମାନେ ଶାରୀରିକ ଗଠନ ଦୃଷ୍ଟିରୁ ନାରୀ ହେଲେ ବି ମନ ଦୃଷ୍ଟିରୁ ନିଷ୍ଠୁରା, ହୃଦୟହୀନା । ପ୍ରାଣ ତାଙ୍କର ନବନୀତ ଭଳି କୋମଳ ନୁହେଁ । ମମତାର ସ୍ନିଗ୍ଧ ସୌରଭ ବିତରଣ ପାଇଁ ସେ ଅନିଚ୍ଛୁକ । ମେଘର ପ୍ରେମିକା ଏଇଭଳି ଏକ ନିଷ୍ଠୁରା ନାରୀ – ଏହା ତାଙ୍କର ମନେ ହେଉଛି । ନିଜ ଜୀବନର ବିରହ ଭାବକୁ ସେ ମେଘଠାରେ ଆରୋପ କରି ନେଇଛନ୍ତି । ଏହି ଆରୋପଣ ଫଳରେ, ବାରିଦ ତାଙ୍କ ନିକଟରେ ମନେ ହୋଇଛି କରୁଣ ରସର ନାୟକ ରୂପରେ । ନିଜ ସହ ବାରିଦର ତର୍କଣା କରି ସେ କହିଛନ୍ତି:—

"ତୁମପରି ବନ୍ଧୁ ଘନ ଏ ଦୀନର ହଜିଛି ରତନ,
ପୁଣ୍ୟରୁ ତାରାଗୋଟି ହୃଦାକାଶୁ ଲଭିଛି ପତନ,
ଜୀବନ ଲାଗୁଛି ଶୂନ୍ୟ, କ୍ଷୁବ୍ଧପ୍ରାଣ ହାହାକାରମୟ
ପଲକେ ପଲକେ ଛିଣ୍ଡି ବେଦନାରେ ପଡେ ମୋ ହୃଦୟ,
ଆସ ସମ–ଦଶ–ବନ୍ଧୁ, ମିଳାଇବା ଉଭୟେ ଲୋତକ
ଶାନ୍ତି ବିଘେଚକ । "(26)

॥ ମାନସିଂହଙ୍କ ବିଗ୍ରହଧାରା ॥

'ଦକ୍ଷିଣାପ୍ରତି' କବିତାରେ ଦକ୍ଷିଣର ମଳୟ ପବନକୁ ଦୁଃଖ ଜଣାଇ ନିଜର ସୁଖ ଦୁଃଖର ସାଥୀ ଭାବରେ ସେ ଗ୍ରହଣ କରି ନେଇଛନ୍ତି । ଏକ ଚଇତ୍ର ସଞ୍ଜ, ରାତ୍ରି ପ୍ରହରେ ହେଲାଣି । ବାତାୟନ ଖୋଲି ବସି କବି ଆପଣାର ଭାଗ୍ୟକୁ ଚିନ୍ତା କରୁଛନ୍ତି । ସୁଶୀତଳ ଦକ୍ଷିଣା ବାୟୁ ଦେହରେ ଚନ୍ଦନର ସ୍ପର୍ଶ ଦେଇଯାଉଛି । ତୁଷାର ଧବଳ ଜ୍ୟୋତ୍ସ୍ନାରେ ଗଗନ ଧରଣୀ ପ୍ଳାବିତ । ବିରହୀ କବିଙ୍କର ପ୍ରାଣରେ ପ୍ରେୟସୀର ମଧୁର ସ୍ମୃତି ଆସି, ତାଙ୍କୁ ବ୍ୟଥିତ କରୁଛି । ସେ ବ୍ୟଥା ସଂପର୍କରେ କବି ଦକ୍ଷିଣା ପବନକୁ କହିଛନ୍ତି:—

"ଏକ ଦିନେ ସନ୍ଧ୍ୟାକାଳେ ଏ ବ୍ୟଥାର ପ୍ରଥମ ପ୍ରକାଶ,
ତୁମେ ଥିଲ, ଥିଲା ଜ୍ୟୋତ୍ସ୍ନା, ଥିଲା ଘନ ସହକାର ଛାୟା,
ଏକାକୀ ନ ଥିଲି ମୁହିଁ; ଗଣ୍ଡେ ମୋର ଆନର ନିଶ୍ୱାସ
ବାଜୁଥିଲା ଥରି ଥରି, ରକ୍ତେ ସୃଜି ଯାଦୁକରୀ ମାୟା ।"(27)

ପ୍ରକୃତିକୁ ଦୁଃଖ ଜଣାଇ ସମଦୁଃଖ ହୋଇ କବିପ୍ରାଣ ଶାନ୍ତ ହୋଇନାହିଁ ବରଂ ପ୍ରକୃତି ସହିତ ମିଶିଯାଇ ନିଜର ପ୍ରେୟସୀର ସନ୍ଧାନ ପାଇଁ ବା ପ୍ରେୟସୀର ସ୍ପର୍ଶ ଲାଭ ପାଇଁ ଚିନ୍ତା କରିଛନ୍ତି । ଦକ୍ଷିଣାବାୟୁକୁ ଅନୁରୋଧ କରିଛନ୍ତି:—

" ତୁମରି ପରିରେ ମତେ କର ସତେ ଜୀବ, ଦେହ ହୀନ,
କ୍ଷୁଧା ମୋର ଯାଉ ଗୁଳି, ନ ରହୁ ଏ ସୀମା ଶରୀରର,
ବିହଂଗ ପରି ମୁଁ ଦୂର ଦିଗଚକ୍ରେ ହୋଇଯା'ନ୍ତି ଲୀନ
ଇଚ୍ଛା ମତେ ଜାଣୁଥାନ୍ତି ବାର୍ତ୍ତା ମୋର ପ୍ରବାସୀ ପ୍ରିୟାର ।"(28)

ପରବର୍ତ୍ତୀ ସମୟରେ 'ଅତୃପ୍ତଭୋଗ' କବିତାରେ ପ୍ରକୃତି ସହିତ ଏକୀଭୂତ ହେବାପାଇଁ ମାନସିଂହଙ୍କ କାମନା ହୋଇଛି ତୀବ୍ରତର:— " ଆଜି ମୁଁ ସ୍ୱହେଁ ତେଣୁ ମତେ ହେ ଦେବତା,
ମିଳାଅ ପଥେ ଏ ଭୂତରେ ।
ସୀମାକୁ ତେଜି ମୋର ଅସୀମ ମମତା
ବ୍ୟକ୍ତ ହେବ ବହୁ ରୂପରେ ।
ଜ୍ୟୋତ୍ସ୍ନା ମଳୟରେ ମିଶି ମୁଁ ପ୍ରିୟାରେ
ଦେବି ମୋ ଆଶ୍ଳେଷ ଅଗଣ,
ମିଳିଲେ ନୀଳାକାଶେ ତାରାରେ ତାରାରେ
ତୃପ୍ତ ହେବ ଅବଲୋକନ ।"(29)

ପ୍ରକୃତିରେ ବ୍ୟକ୍ତିତ୍ୱ ଆରୋପ କରିବା କାବ୍ୟ କବିତାର ଏକ ପ୍ରାଚୀନ ରୀତି । ଏ ଭଳିକି ମଧ୍ୟ ଯୁଗର କବିତାରେ ପ୍ରକୃତି ବହୁ ସମୟରେ ମାନବାୟିତ ହୋଇଛି । ସମ୍ଭୋଗ ଓ ବିପ୍ରଲମ୍ଭ ଶୃଙ୍ଗାରର ଅନୁଭବ ପ୍ରକୃତି ଭିତରେ କବି ପ୍ରତ୍ୟକ୍ଷ କରିଛନ୍ତି । ମାନସିଂହଙ୍କ ବୈଶିଷ୍ଟ୍ୟହେଲା ପ୍ରକୃତିର ବିଭିନ୍ନବିଭାବରେ ନିର୍ଦ୍ଦିଷ୍ଟ ମୂର୍ତ୍ତି ଓ ସ୍ୱତନ୍ତ୍ରକରି ବ୍ୟକ୍ତିତ୍ୱ ଆରୋପକରିବା ।

**ପ୍ରକୃତି ଓ ମଣିଷ:**

———ପ୍ରାଚ୍ୟ ଦର୍ଶନରେ ମଣିଷ ଓ ପ୍ରକୃତି ଅତୀବ ନିବିଡ ମାତ୍ର; ପାଶ୍ଚାତ୍ୟ ଦର୍ଶନରେ ମଣିଷ ଓ ପ୍ରକୃତିର ସଂପର୍କ ଏତେ ନିବିଡ ନୁହେଁ । ଅନେ୍ୱଷଣ ଉପନ୍ୟାସରେ ମାନସିଂହ କଳାକାର ଶ୍ରୀକଣ୍ଠ ମୁଖରେ ମଣିଷ ଓ ପ୍ରକୃତି ସଂପର୍କରେ ନିଜର ମନର ଭାବ ବ୍ୟକ୍ତ କରିଛନ୍ତି । :—"ପାଶ୍ଚାତ୍ୟ କଳା ଓ ସାହିତ୍ୟରେ ମନୁଷ୍ୟ ଓ ପ୍ରକୃତିକୁ ଦୁଇଟି ପରସ୍ପର ବିରୋଧାତ୍ମକ ବ୍ୟକ୍ତିତ୍ୱ ବୋଲି ଯାହା ଧରି ନିଆଯାଏ, ଶ୍ରୀକଣ୍ଠର ଭାରତୀୟ ଚିତ୍ତ ତାହା ଗ୍ରହଣ କରିନାହିଁ । ସେ ବୁଝେ ଯେ ପ୍ରକୃତି ଓ ମଣିଷ ପରସ୍ପର ପରିପୂରକ । ମନୁଷ୍ୟ, ବିଶେଷତଃ ମନୁଷ୍ୟା ବା ନାରୀ ତା କଳ୍ପନାରେ ପ୍ରକୃତିର ଶ୍ରେଷ୍ଠତମ ବିକାଶ । ଫୁଲର କୋମଳତା ଓ ସୌରଭ ଠାରୁ ଝଡ ଓ ଭୂମିକମ୍ପର ଅକରୁଣ ରୁଦ୍ରତା ପର୍ଯ୍ୟନ୍ତ ପ୍ରକୃତିର ସକଳ ବିଭାବ ସେ ନାରୀ ଠାରେ ସୂକ୍ଷ୍ମ ଆକାରରେ ପୁଞ୍ଜିଭୂତ ଥିବାର ମନେକରେ । ସେଇଥିପାଇଁ ହିଁ ସେ ଭାବେ, ନାରୀ ଏପରି ଲୀଳାମୟୀ । ନାରୀ ସୁନ୍ଦରୀ ହୁଏ ସୃଜନ ପାଇଁ, ପୁଣି ଝଡ ତୋଫାନ ହୁଏ ତାର ନିଜ ସୃଷ୍ଟ ସଂସାରକୁ ନିୟନ୍ତ୍ରିତ କରି ରଖିବା ପାଇଁ ।"(30)

ପ୍ରକୃତି ସହିତ ଅନ୍ତରଂଗତା ସ୍ଥାପନ ମାନସିଂହଙ୍କର ଆନ୍ତରିକ ଇଚ୍ଛା ମାତ୍ର; ଏ ମଣିଷ ପ୍ରକୃତି ଭିତରେ ରହି ପ୍ରକୃତି ଠାରୁ କ୍ରମଶଃ ଦୂରେଇ ଯିବାକୁ ଲାଗୁଛି । ଆଧୁନିକ ସଭ୍ୟତା ଯାନ୍ତ୍ରିକ ଜୀବନ ଓ ମଣିଷର ଆତ୍ମ ବିଶ୍ୱାସରୁ ମଣିଷର ପ୍ରକୃତି ସହିତ ସଂପର୍କ ଶିଥିଳ ହୋଇ ଯାଉଛି । ଏଣୁ ପ୍ରକୃତିର ଆନନ୍ଦ ମହୋତ୍ସବ ଗ୍ୱଲିଥିଲା ବେଳେ ବିଷୟୀ ମଣିଷ ଅବସାଦ ଗ୍ରସ୍ତ ହୋଇ ଜୀବନ ବିତାଇ ଗ୍ୱଲିଛି । ମାନସିଂହଙ୍କ ବର୍ଣ୍ଣନା ଅନୁସାରେ, ମନ୍ଦ ସମୀରଣରେ ବୃକ୍ଷର ଶାଖା ଆନନ୍ଦରେ ଖେଳି ଉଠେ, ସେହି ବୃକ୍ଷ ଶାଖାରେ ଟିକି ଚଢେଇଟିଏ ଆନନ୍ଦରେ ଗୀତ ଗାଇ ଉଡି ଉଡି ଯାଇ ପୁଣି ଫେରି ଆସେ । ବୃକ୍ଷ ତଳରେ ସରୁ ଲତାଟିରେ ରଂଗରଂଗିଲା ଫୁଲଟିଏ ଫୁଟି ହସି ଉଠେ । ସୁକୋମଳ ଶ୍ୟାମ ଦୁର୍ବାଦଳ ରବି କିରଣରେ ପୁଲକିତ ହୁଏ । ଯୁଦ୍ଧ ପିମ୍ପିଲିକା ଦଳ ଧାଡିଧାଡି ହୋଇ ବର୍ଷିବାର ଆନନ୍ଦ ଗ୍ୱଖି ଗ୍ୱଖି ଗ୍ୱଲି ଯାଆନ୍ତି । ମାତ୍ର:—

" କିନ୍ତୁ ସେହି ବୃକ୍ଷ ତଳେ ବୁଦ୍ଧିମନ୍ତ ନର
ବସିଛି ଶିରାଳ ଭାଲେ ଥାପି ଦୁଇ କର
ବିଧାତାର ଏ ବିରାଟ ଆନନ୍ଦ ବଜାରେ
ଜୀବନେ ଉତ୍ସାହ ନାହିଁ କେବଳ ତା'ଠାରେ
ପ୍ରକୃତି ଦେଇଛି ତାରେ ଗ୍ୱତୁରୀ କିଥିଁଚ,
ଅମଳ ଏ ଆନନ୍ଦରୁ ତେଣୁ ବା ବଞ୍ଚିତ ।"(31)

ବିଧାତାଙ୍କର ବୃକ୍ଷ ଛାୟାରେ ବୁଦ୍ଧିବନ୍ତ ନର, ଈଶ୍ୱର ସୃଷ୍ଟିର ବିଗ୍ୱରକ ହୋଇପାରେ, ମାତ୍ର ପ୍ରକୃତିର ଜୀବମାନେ ସୃଷ୍ଟିରୁ ଯେଉଁ ବିମଳ ଆନନ୍ଦ ପାଉଛନ୍ତି, ସେ ଆନନ୍ଦ ମାନବ ଭାଗ୍ୟରେ ନାହିଁ । ଏଠାରେ ଲକ୍ଷ୍ୟ କଲେ ଜଣାଯାଏ ଯେ, ପ୍ରକୃତି ଓ ମଣିଷ ସଂପର୍କକୁ ମାନସିଂହ ପ୍ରାଚ୍ୟ ଦୃଷ୍ଟିକୋଣରୁ ଦେଖିଛନ୍ତି ମାତ୍ର ମଣିଷ ନିଜର ବୌଦ୍ଧିକ ବିକାଶ ଢଂଗେ

ସଂଗେ କ୍ରମଶଃ ପ୍ରକୃତି ଠାରୁ ସଂପର୍କ ଛିନ୍ନ କରି ଅପ୍ରାକୃତିକ ପରିବେଶକୁ ଆଗେଇ ଗ୍ଧଲିଛି । ଶାନ୍ତି ପାଇଁ, ଆନନ୍ଦ ପାଇଁ ପ୍ରକୃତି ସହ ପୁଣି ସେହି ନିବିଡ ସଂପର୍କ ଆବଶ୍ୟକ । ମଣିଷର ପ୍ରକୃତି ତ୍ୟାଗର ଅନ୍ୟତମ କାରଣ ଭାବରେ ମାନସିଂହ ସ୍ୱର୍ଗବାସ କବିତାରେ ଦର୍ଶାଇଛନ୍ତି ଯେ, ମଣିଷ ସ୍ୱର୍ଗରୁ ଚ୍ୟୁତ ହୋଇ ଧରଣୀରେ ବସବାସ କଲା । ଏ ମାଟିର ନାନା ଜଞ୍ଜାଳ ତାକୁ ଘାରି ରହିଲା । ନିସର୍ଗ ଅତିଥି ପ୍ରତି ଧରଣୀ ତାର ନାନା ମାୟାର ଅଂଧକାର ଢାଙ୍କିଦେଲା । "ତଥାପି ଧରଣୀ ତୁମ୍ଭେ ପ୍ରିୟ ଏତେ, ଗୁରୁ ଅକଲ୍ୟାଣେ,

ତୋ ମାଟିରେ ମାନବର ଗୁରୁ ସ୍ନେହ ବିଧାତା ବିଧାନେ ।"(32)

ପ୍ରକୃତି ଓ ଭଗବାନ:–

ପ୍ରକୃତି ସହ ଭଗବାନଙ୍କର ସଂପର୍କ ବିଶ୍ୱ ମନୀଷର ଏକ କୈନ୍ଦ୍ରିକ ଆଲୋଚ୍ୟ ବିଷୟ । ମାନସିଂହଙ୍କ ଦୃଷ୍ଟିରେ ଭଗବାନଙ୍କର ସ୍ୱରୂପନେଇ ବ୍ୟାପକ ଓ ଗଭୀର ବିଶ୍ଳେଷଣ ରହିଛି, ଯାହା ସ୍ୱତନ୍ତ୍ର ବିଗ୍ଧରର ଅପେକ୍ଷା ରଖେ । ଏହି ପରିପ୍ରେକ୍ଷୀରେ ପ୍ରକୃତି ସହ ପୁରୁଷ ବା ଭଗବାନଙ୍କର ଯେଉଁ ସଂପର୍କ ସେ ପ୍ରତ୍ୟକ୍ଷ କରିଛନ୍ତି, ତାହା ଅବତାରଣା କରାଯାଉଅଛି ।

ଭାରତୀୟ ଜୀବନ ଯାତ୍ରାର ଆଦର୍ଶ ବେଦାନ୍ତ ଦର୍ଶନ । ବେଦାନ୍ତ ଦର୍ଶନର ପ୍ରମୁଖତମ ସ୍ୱର ଅଦ୍ୱୈତ ବେଦାନ୍ତରେ ପ୍ରକୃତି ମାୟା ରୂପରେ ସ୍ୱୀକୃତ । ତା ସତ୍ତ୍ୱେ ସାଂଖ୍ୟର ପ୍ରକୃତି ତତ୍ତ୍ୱ ବର୍ଜିତ ହୋଇନାହିଁ, ଏକ ସୋପାନ ରୂପେ ବ୍ୟବହୃତ ହୋଇଛି । ସାଂଖ୍ୟ ଦର୍ଶନ ଅନୁସାରେ ବିଶ୍ୱର ପରିବ୍ୟାପ୍ତ ପ୍ରକାଶ ହିଁ ପ୍ରକୃତି । ଜୀବନର ଭଲମନ୍ଦ ଠାରୁ ଅନୁଭବ ପର୍ଯ୍ୟନ୍ତ ସବୁ କିଛି ପ୍ରକୃତିର ସଂପ୍ରସାରଣ । ପ୍ରକୃତି ବିକାଶର ଏକ ନିର୍ଦ୍ଦିଷ୍ଟ ସ୍ତର ଦେଇ ମଣିଷର ସୃଷ୍ଟି, କିନ୍ତୁ ସ୍ୱୟଂ ନିଜ ଇଚ୍ଛାରେ ସୃଷ୍ଟି କରିପାରେ ନାହିଁ; ତା ଭିତରର ଇଚ୍ଛା ଶକ୍ତିକୁ ଜାଗ୍ରତ କରିବାକୁ ହୁଏ । ଅରୂପ ଚୈତନ୍ୟମୟ ପୁରୁଷଙ୍କ ସଂପର୍କରେ ଆସି ଏହି ଇଚ୍ଛା ଜାଗ୍ରତ ହୋଇଥାଏ । ତେଣୁ ପୁରୁଷ ଅବାଙ୍ମାନସ ଗୋଚର, ଅରୂପ ନିର୍ଗୁଣ, ଅଦୃଷ୍ଟ ସତ୍ତା ହେଲେ ହେଁ, ସୃଷ୍ଟି ଜଗତଠାରୁ ଦୂରେଇ ରହିଲେ ବି ତାଙ୍କର ସଂପର୍କ ବ୍ୟତିରେକେ ସୃଷ୍ଟି ସମ୍ଭବ ହୁଏ ନାହିଁ । ବହୁ ସମୟରେ ସାଂଖ୍ୟର ପୁରୁଷ ସହ ଭଗବାନଙ୍କୁ ସମୀକୃତ କରାଯାଏ । ତେଣୁ ଗୋଟାଏ ପଟେ ସମଗ୍ର ଜଗତକୁ ଭଗବାନଙ୍କର ଲୀଳା କୁହାଗଲା ବେଳେ ଅନ୍ୟପଟେ କୁହାଯାଏ ଜଗତ ମାୟାମାତ୍ର । ପୁଣି କେତେବେଳେ ଜଗତ ଓ ଭଗବାନଙ୍କ ସ୍ୱତନ୍ତ୍ର ସ୍ଥିତିକୁ ସ୍ୱୀକାର କରାଯାଏ ।

ମାନସିଂହ ତତ୍ତ୍ୱ ଦୃଷ୍ଟିରୁ ଯେତେଟା ନୁହେଁ, ସଂସ୍କାର ଓ ଅନୁଭବ ଦୃଷ୍ଟିରୁ ସାଂଖ୍ୟ ଦର୍ଶନର ଅନୁଗାମୀ । ତେଣୁ ତାଙ୍କର ବିଗ୍ଧରଧାରାରେ ପ୍ରକୃତିକୁ ଭଗବାନଙ୍କର ପ୍ରକାଶ ବୋଲି ବେଳେବେଳେ ବିଗ୍ଧର କରାଯାଇଛି ସତ, ତଥାପି ସାଂଖ୍ୟର ପ୍ରକୃତି ପୁରୁଷ ସଂପର୍କ ବହୁ ସମୟରେ ସ୍ପଷ୍ଟ ।

ମାନସିଂହଙ୍କର ଆଧ୍ୟାତ୍ମଜୀବନର ସୃଷ୍ଟି ତଥା ତାଙ୍କର ପ୍ରତିନିଧି ସ୍ଥାନୀୟ ଏକ କବିତା 'ମହାନଦୀରେ ଜ୍ୟୋତ୍ସ୍ନା ବିହାରରେ' ସେ ମହାନଦୀ ବକ୍ଷରେ ବିମଳ ଜ୍ୟୋତ୍ସ୍ନାଲୋକରେ ବିଶ୍ୱ ବିଧାତାଙ୍କର ଉପସ୍ଥିତି ସଂପର୍କରେ

ସଚେତନ ହୋଇ ଲେଖିଛନ୍ତି :—

" ସେ ଯେ ସତ୍ୟ, ଶିବ ସେହି ଏକା ସେ ସୁନ୍ଦର,
ଭୂମା ସେ ରହିଛି ପୂରି ରେଣୁ ରେଣୁ ଭେଦି,
ଅନନ୍ତ ଲୀଳାର ହେତୁ, ଅସୀମ ସୁନ୍ଦର
କ୍ଷଣକେ ସୃଜେ ସେ । ତା'ର ମହାପୂଜାବେଦୀ
ବନ୍ଧୁ ହେ, ପାଇଛି ଆଜି ଏ ଆକାଶ ତଳେ,
ମୋ ଜାତି ଅତୀତ ସାକ୍ଷୀ ଏ ନଦୀ ପୁଳିନେ,
ଜ୍ୟୋତ୍ସ୍ନାର ଏ ମହା ଭୋଜ୍ୟେ, ଏ ଚରଣୀ ପରେ
ଜାନୁପାତି ବନ୍ଧୁ, ତା'ରେ ଘେନ ଏ ଜୀବନେ ।"(33)

ସାଂଖ୍ୟର ପ୍ରକୃତି ପୁରୁଷ ଦର୍ଶନକୁ ସ୍ପର୍ଶ କରି ତାଙ୍କର ଭୂମି ଓ ଭୂମାର ଅଦ୍ୱୈତ ଭାବକଳ୍ପନା ସମ୍ପ୍ରସାରିତ ହୋଇଛି । ବୟସର ବୃଦ୍ଧି ସଂଗେ ସଂଗେ ମାନସିଂହ, ଆମର ଦେବାଦେବୀମାନଙ୍କୁ ପ୍ରକୃତି ବକ୍ଷରେ ହିଁ ଆବିଷ୍କାର କରିଛନ୍ତି । ତାଙ୍କ ଦୃଷ୍ଟିରେ କୃଷ୍ଣଙ୍କ ଭଳି ଦେବତା, ଏକ କବିର କଳ୍ପନା । ଭାରତୀୟ ମନୀଷା ତଥା ବାସ୍ତବ ଜୀବନ ଚର୍ଯ୍ୟା, ପ୍ରକୃତିର ସୁନ୍ଦର ରୂପକୁ ଏକତ୍ର ଗୁମ୍ଫିତ କରି କୃଷ୍ଣଙ୍କର ପରିକଳ୍ପନା କରିଛି । ତେଣୁ କୃଷ୍ଣ ତାଙ୍କ ଦୃଷ୍ଟିରେ ଜଣେ ଅସୀମ ଶକ୍ତି ସମ୍ପନ୍ନ ଅଲୌକିକ ଦେବତା ନୁହନ୍ତି; ପ୍ରକୃତିର ସୌନ୍ଦର୍ଯ୍ୟ ଭିତରୁ ତାଙ୍କର ରୂପ କଳ୍ପନା ପ୍ରକୃତିର ନୀଳିମା, ଆକାଶର ନୀଳିମା ନେଇ କୃଷ୍ଣ ଦେହର କାନ୍ତି । ମେଘ ବିଦ୍ୟୁତ୍‌ବନ୍ତର ଦୀପ୍ତି ତାଙ୍କ ଚନ୍ଦ୍ରିକା ପୁଚ୍ଛରେ ଆଭାସିତ । ତାଙ୍କର ରାସକ୍ରୀଡା, ନକ୍ଷତ୍ର ଗୋପିନୀଙ୍କ ସହ ଏକ ଚିରନ୍ତନ ରାସକ୍ରୀଡା ।

" ଯା' ନୀଳିମା ପରିବ୍ୟାପ୍ତ ମହା ଅନ୍ତରୀକ୍ଷେ,
ଯେ ପୀତ—ଦୁକୂଳପିନ୍ଧେ ଉଷା ପ୍ରଦୋଷରେ,
ଯା'ଶିରେ ଚନ୍ଦ୍ରିକା—ଗୁଚ୍ଛ, ମେଘ, ବିଦ୍ୟୁଦ୍‌ବନ୍ତ ।
ସେ ସୁନ୍ଦର କୃଷ୍ଣ ପଦେ ମୁହିଁ ପୂଜା କରେ ।
ଦେଖିଛି ମୁଁ ରାସ ତା'ର ପୂର୍ଣ୍ଣିମା—ନିଶୀଥେ
ନିର୍ମଳ କର୍ପୂର—କୀର୍ଣ୍ଣ ଯେବେ ନଭାଙ୍ଗନ,
ଜ୍ୟୋତ୍ସ୍ନାର ଉତ୍ତରୀ ଘେନି ନକ୍ଷତ୍ର—ଗୋପିନୀ
ନୃତ୍ୟେ ଘେରିଥାନ୍ତି ତା'ର ନୀଳ ଅପଘନ ।
ସୃଷ୍ଟିର ଯମୁନାକୂଳେ, ପ୍ରେମ—ନୀପ ମୂଳେ
ଅହରହ ବାଜେ ତାର ବଂଶୀ, ଘର—ଛୁଟା,
ସେ ଧ୍ୱନି—ଉନ୍ମାଦେ ଶୂନ୍ୟେ କୋଟି ଧରା—ଶ୍ରେଣୀ
ଧାଉଁଛନ୍ତି, କି ଅଲକ୍ଷ୍ୟେ ଖୋଜିଛନ୍ତି ପରା । "(34)

ନିରୀଶ୍ୱର ବୌଦ୍ଧଧର୍ମରେ ଆସ୍ଥା-ସ୍ଥାପନ କରିଥିବା କବି ମାନସିଂହଙ୍କର ଜୀବନର ଅପରାହ୍ନରେ ଲିଖିତ ଏ କବିତାରେ ପ୍ରାଣର ଶାଶ୍ୱତ ବାଣୀ ପ୍ରକାଶିତ ।

'ରାଜକବି ଉପେନ୍ଦ୍ର' ଗୀତିନାଟ୍ୟରେ କବି ପ୍ରକୃତି ମଧ୍ୟରେ ଭଗବାନଙ୍କର ସ୍ୱରୂପବୁ ଚିନ୍ତା କରିଛନ୍ତି । ଜ୍ୟୋତ୍ସ୍ନାର ମହୋତ୍ସବରେ,କିଆ ଫୁଲର ସୁବାସ ମଧ୍ୟରେ ଦେବତାଙ୍କର ଆବିର୍ଭାବ ହୋଇଛି ।

ରହସ୍ୟବାଦର ଜାଲରେ ଛନ୍ଦି ହୋଇଥିବା କବି ମାନସିଂହ,ତାଙ୍କର 'କୁଶ' ସନେଟ ସଂକଳନରେ ବିନ୍ଦୁ ଓ ପ୍ରକୃତି ସଂପର୍କରେ ପାଞ୍ଚଗୋଟି କବିତାର ସମାହାରରେ ଗୋଟିଏ ସନେଟ ଗୁଚ୍ଛ ଲେଖିଛନ୍ତି । କବିଙ୍କ ଆଦ୍ୟଜୀବନର କବିତାର ଭାବୋଚ୍ଛ୍ୱାସ ବୌଦ୍ଧିକ ବିକାଶର ଜାଲରେ ଛନ୍ଦି ହୋଇଥିଲେ ମଧ୍ୟ ଏ କବିତା ଗୁଚ୍ଛରେ ଈଶ୍ୱର ସଂପର୍କୀୟ ଧାରଣାର ମନୋରମ ଚିତ୍ର ପ୍ରତିଫଳିତ ।

ନିରୋଳ ପରଷ ସଂଧ୍ୟା,ଗହନ ବନାନୀ ଓ ପର୍ବତର ଉଦ୍ଧାଳରେ ସାୟନ୍ତନ ରବି ଖସି ଖସି ଆସୁଛନ୍ତି । ନିର୍ମେଘ ଗଗନରେ ଏକ ସ୍ୱର୍ଣ୍ଣ ବିଥି ହୋଇ ପଡିଛି । ଊର୍ଦ୍ଧ୍ୱ ଦେଶରେ ଅନାବୃତ ଗଗନକୁ ଛାଡିଦେଲେ,ବନାନୀ ଶୋଭା ରେ ଘେରା ଏହି ନିବିଡ ନିଶ୍ଚଳ ପରିବେଶ କବିଙ୍କୁ ଅତୀନ୍ଦ୍ରିୟ ଭାବନାରେ ମଗ୍ନ କରିଦେଇଛି । କବି ସେଠାରେ ଚିନ୍ତା କରିଛନ୍ତି :—

" ଏକ ହେଲେ କବି,ଆଉ ପ୍ରକୃତି ଆକାଶ,
ମନେ ହେଲା ସ୍ଥିତି ମୋର ସେହି ସେ ଈଶ୍ୱର—
ବିରାଟ ବ୍ରହ୍ମାଣ୍ଡମାନେ ଯାହାଙ୍କ ପ୍ରକାଶ,
ଅଛନ୍ତି ସେ ପୁଣି ମୋର ପଦରେଣୁ ତଳେ ।"(35)

ଫାଲ୍ଗୁନର ଏକ ଶାନ୍ତ ପ୍ରଭାତରେ,ଯେତେବେଳେ ବାଳ-ରବି କନକ କିରଣ ବିଥି ଆକାଶକୁ ଉଠୁଥାନ୍ତି, ଛୋଟ ଛୋଟ ଘାସମାନେ ଶିଶିର ବିନ୍ଦୁରେ ବିରାଟ ସୂର୍ଯ୍ୟଙ୍କର ପ୍ରତିଚ୍ଛବି ନିଜ ବକ୍ଷରେ ଧରି ଥରୁଥାନ୍ତି,ଲୋହିତ ପଳାଶର ନବ ବସ୍ତ୍ର ପିନ୍ଧି ନବବଧୂ ପ୍ରାୟ ବୃକ୍ଷଗଣ,ଉଭାହୋଇଥିବା ବେଳେ,ଦକ୍ଷିଣ ଦିଗରୁ ମଳୟ ଆସି ବିଥି ଦେଉଯାଏ । ଗଂଧବହ ଦକ୍ଷିଣା ପବନ ଯେତେବେଳେ କୋକିଳର ଉନ୍ମୁକ୍ତ ଡାକ ଓ ବନ କପୋତୀର ବ୍ୟଥାଭରା କଣ୍ଠ ସଂଗରେ ମାଦକତା ବୋହି ଆଣେ । ସେତେବେଳେ କବି ପ୍ରାଣ କହି ଉଠିଛି:—

" ଭୁବନେଶ୍ୱରହେ ପ୍ରଭୁ,ଯେ ମୋ କ୍ଷୁଦ୍ର ଜୀବନ ଈଶ୍ୱର
ସେ ମୁହୂର୍ତ୍ତେ ତୁମକୁ ହିଁ ଭେ ଟି ହେଲି ମୋହିତ ନିଶ୍ଚଳ ।"(36)

ପଉଷର ଶାନ୍ତ ସଂଧ୍ୟା ବା ଫାଲ୍ଗୁନର ସ୍ୱର୍ଣ୍ଣ ପ୍ରଭାତ କେବଳ ନୁହେଁ,ରୁଦ୍ର ବୈଶାଖର ଉତପ୍ତ ଦିବସରେ, ତୃଷାକୁଳପ୍ରାଣ,ଉଷ୍ଣତାର ଅଭିଶାପରେ ଯେତେବେଳେ ସନ୍ତୁଳି ହେଉଥାଏ,ବୃକ୍ଷବିଟପୀରେ ପକ୍ଷୀ ନୀରବରେ ଆଶ୍ରା ନେଇ ଥାଏ,ଗ୍ରୀଷ୍ମଆଡେ ହା ହୁତାଶ,ଦହନର ଯନ୍ତ୍ରଣାରେ ଜୀବଗଣ ଆକୁଳିତ ପ୍ରାଣରେ ହତୋତ୍ସାହ ହୋଇଥାଏ,ସେତେବେଳେ ମଧ୍ୟ ଅଗଣାରେ କ୍ଷୁଦ୍ର ମଲ୍ଲୀ ଗୁଳ୍ମର ହସ ପ୍ରାଣରେ ଆନନ୍ଦ ଭରିଦିଏ । ତାର ଆଘ୍ରାଣ ସଂଭୋଗର କାମନା ସର୍ଥାର

କରେ । ସେତେବେଳେ କବି ପ୍ରାଣ ପ୍ରକୃତି ମଧ୍ୟରେ ବିଧାତାଙ୍କର ସନ୍ଧାନ ଖୋଜି କହେ:—

"ପ୍ରଳୟେ ସୃଜନକାରୀ, ବିଚିତ୍ର ବିଂଧାଣୀ
ସ୍ରଷ୍ଟାରେ ନମିଲି ଦେଇ ଭକ୍ତିର ପ୍ରଣାମି ।''(୩୭)

ପ୍ରାବୃଟର ଗୁରୁଗମ୍ଭୀର ନିଶା, ମେଘର ଗୁରୁ ଗର୍ଜନ ଓ ବିଦ୍ୟୁତ୍‌ଚମକ ଯେତେବେଳେ ପ୍ରାଣରେ ଶଙ୍କା ଜାଗ୍ରତ କରେ, ଯେଉଁ ପରିବେଶରେ ଆଦିମାନବ ଅନିଶ୍ଚିତ ପ୍ରାଣରେ ଗୁହା ମଧ୍ୟରୁ ସୃଷ୍ଟିର ସଂହାର ଲୀଳା ଦେଖିଥାଏ । ସେହିପରି ପରିବେଶରେ କବି କୁହନ୍ତି:—

"ସୁପ୍ତ ସର୍ବ ପରିବାର, ନୀରବ କୁଟୀର,
ତନ୍ଦ୍ରା ହୀନ ମୁଁ କେବଳ, ମର୍ମେ ପ୍ରକୃତିର
ପ୍ରଳୟ ଏ ଅଭିନୟ ବୁଝୁଛି ଗଭୀର,
ଝଡେ ଶୁଣେ ନଟରାଜ ଚରଣ ମଂଜୀର ''(୩୪)

ସେତେବେଳେ ମଧ୍ୟ ମାନସିଂହ ପ୍ରାଣ ବିଶ୍ୱ ସ୍ରଷ୍ଟାଙ୍କୁ ପ୍ରକୃତିର ରୁଦ୍ର ରୂପରେ ଅନୁଭବ କରୁଥାନ୍ତି ।

ଶାରଦ ପୂର୍ଣ୍ଣିମାରେ ଚନ୍ଦ୍ର ଯେତେବେଳେ, ରୁକ୍ଷ ଧରଣୀରେ ଇନ୍ଦ୍ରଜାଲ ରଚି ସ୍ୱପ୍ନପୁରୀ ରଚନା କରେ, କୁମାରୀ ମାନେ କୃଷ୍ଣ କବରୀରେ ପୁଷ୍ପଦଳ ଖଚିତ କରି ନୃତ୍ୟ ଗୀତରେ ଯେତେବେଳେ ରଜନୀକୁ ମୁଖରିତ କରନ୍ତି, ଜ୍ୟୋତ୍ସ୍ନାର ଶାନ୍ତ ସ୍ପର୍ଶରେ ସାଗର ଉଦ୍‌ବେଳିତ ହୋଇ ଉଠେ, ବଂଶୀର ମଧୁର ନାଦରେ ଗାଈଆଳ ଟୋକା ଚିତ୍ତ ବିନୋଦିତ କରି ଦିଏ, ଗ୍ରାମାଞ୍ଚଳ ଗଭୀର ଆନନ୍ଦର ଦୁଆର ଖୋଲିଯାଏ, ସେତେବେଳରେ କବି ପ୍ରାଣରେ ପ୍ରଶ୍ନ ଉଠେ, ଜୀବନର ରଣ ରକ୍ତରେ ରଂଜିତ, ଏ ରକ୍ଷ ସଂସାରରେ କାହିଁକି ଏ କମନୀୟ ରୂପର ଆୟୋଜନ ? କିଏ, କେବେ, କାହାଠାରେ ଦୀକ୍ଷା କରିଥିଲା ପ୍ରକୃତିର ଏ ଭୁବନ ମୋହନ ରୂପ ସୃଷ୍ଟି କରିବା ପାଇଁ । କବି ଗଦ୍‌ଗଦ୍ ପ୍ରାଣରେ ଜ୍ୟୋତ୍ସ୍ନାସ୍ନାତ ପୌର୍ଣ୍ଣମାସୀର ଶୁଭ୍ରାମ୍ବର ତଳରେ ସେହି ବିଧାତା, ଯେ ନିଜେ ମହାକବି, ଯେ ମହାରୂପକାର ତାଙ୍କରି ପାଦତଳେ ପ୍ରଣତି ଢାଳିଛନ୍ତି ।

## ପ୍ରକୃତି ଧ୍ୱଂସ ଓ ବନମହୋତ୍ସବ

ପ୍ରକୃତି ସହ ଅତ୍ୟଧିକ ଅନ୍ତରଙ୍ଗତା ଫଳରେ, ଉତ୍ତର ଜୀବନରେ ସହରୀ ହୋଇ ବି, ମାନସିଂହ ପ୍ରକୃତିର ଧ୍ୱଂସକୁ ସହି ପାରି ନାହାନ୍ତି । ଯାନ୍ତ୍ରିକ ସଭ୍ୟତାର ବିକାଶ ପାଇଁ ପ୍ରାକୃତିକ ଅବସ୍ଥାର ପରିବର୍ତ୍ତନ ଅନିବାର୍ଯ୍ୟ । ଏହି ଅନିବାର୍ଯ୍ୟ ତାକୁ ଏଡେଇବାକୁ ଚେଷ୍ଟା କଲେ ମଣିଷକୁ ଶତଶତ ବର୍ଷ ପଛକୁ ଫେରି ଯିବାକୁ ପଡିବ । ଅଥଚ ଏକ ସୁଷମ ଓ ସନ୍ତୁଳିତ ପ୍ରାକୃତିକ ଅବସ୍ଥା ଭିତରୁ ମଣିଷ ଓ ମଣିଷ ସଭ୍ୟତାର ଅଭ୍ୟାଗମ । ସେହି ପ୍ରାକୃତିକ ପରିବେଶକୁ ବିନଷ୍ଟ କଲେ ସଭ୍ୟତାର ମୃତ୍ୟୁ ଧୀରେ ଓ ନିଶ୍ଚିତ ପଦକ୍ଷେପରେ ଆଗେଇ ଆସେ । ମାନସିଂହ ତାଙ୍କର ବିଭିନ୍ନ ରଚନାରେ ପ୍ରକୃତିର ନାନା ବିଭବ ଯଥା:—ବନ ଜଂଗଲ, ଜୀବ ଜନ୍ତୁର ଧ୍ୱଂସ ଭିତର ଦେଇ ସଭ୍ୟତାର ସଂକଟ ଲକ୍ଷ୍ୟ କରିଛନ୍ତି ।

॥ ମାନସିଂହଙ୍କ ବିଗ୍ରଧାରା ॥

ନଗର ସଭ୍ୟତାର ସଂକ୍ରମଣରେ ମଣିଷ ପ୍ରକୃତିକୁ ଧ୍ୱଂସ କରି ଗ୍ଲିଛି । ପ୍ରାକୃତିକ ସଂପଦକୁ ନଷ୍ଟକରି ଗ୍ଲିଛି । ଏହା ଦ୍ୱାରା ମଣିଷ ମନରୁ ଶାନ୍ତଭାବ ଦୂରହୋଇ ଉଗ୍ରଭାବ ଆସୁଛି ଓ ଜଗତରୁ ଆନନ୍ଦ ଉଭେଇ ଯିବାରେ ଲାଗିଛି । ଆମେ ପ୍ରକୃତି ଠାରୁ ଯେତେ ଦୂରେଇ ଯାଉଛୁ, ସେତେ ଧ୍ୱଂସ ପଥରେ ଆଗେଇ ଗ୍ଲୁଛୁ । ଆଜିର ବିରାଟ ସାହାରା ମରୁଭୂମି, ଗ୍ରିହଜାର ବର୍ଷତଳେ ଏକ ସବୁଜ ଜଂଗଲ ଓ ପ୍ରାକୃତିକ ଜୀବଜନ୍ତୁରେ ଭରା ଅଞ୍ଚଳ ଥିଲା । ପ୍ରକୃତିକୁ ଧ୍ୱଂସ କରିବାରୁ ତାହା କ୍ରମଶଃ ବୃକ୍ଷ ଶୂନ୍ୟ ହୋଇ ଓ ଏକ ବୃଷ୍ଟିହୀନ ଅଞ୍ଚଳରେ ପରିଣତ ହେଲା । ମଣିଷ ଅବାରିତ ଭାବରେ ପ୍ରକୃତି ଉପରେ ଯେଉଁ ଅତ୍ୟାଗ୍ର ଚଳାଇ ଆସିଛି, ମାନସିଂହଙ୍କ ପ୍ରାଣ ସେଥିରେ ବ୍ୟଥିତ ହୋଇଉଠିଛି । ଓଡିଶା ଗଡଜାତର ଅନୁପମ ଶୋଭା ବର୍ଣ୍ଣନା କରିବା ସମୟରେ, ମାନସିଂହ ଲେଖିଛନ୍ତି:—

" ଅତ୍ୟନ୍ତ ପରିତାପର କଥା ଯେ, ଗଡଜାତର ଏଇ ଅନୁପମ, ଆଦିମ, ଆଳୁଳାୟିତ, ଭୀମକାନ୍ତ, ପାର୍ବତ୍ୟ ସୁଷମା ଆଜି ଧ୍ୱଂସ ହେବା ଉପରେ । ମୁନାଫାଖୋର କଣ୍ଟ୍ରାକ୍ଟର ମାନଙ୍କର ବର୍ବର ଲାଳସାରେ ଗଡଜାତର ମୂଲ୍ୟବାନ ଜଂଗଲ ସଂପଦ ଲୁଟ୍ ହୋଇ ଯାଉଥିବାର କରୁଣ କାହାଣୀ ମୁଁ ଏବେ ବହୁମୁଖରୁ ଶୁଣୁଛି । ଲୋକ ବସତି ବା ଶସ୍ୟକ୍ଷେତ୍ର ରଚନା ଚ୍ଛଳରେ ମାଇଲ ମାଇଲ ଧରି ଜଂଗଲ ସଫା ହୋଇଯାଉଥିବାର ମୁଁ ମଧ୍ୟ ଦେଖିଲିଣି । ଗତ ମହାଯୁଦ୍ଧବେଳେ ବହୁଷ୍ଟେଟରେ ଜଂଗଲ ଏକାବେଳକେ ଶୂନ୍ୟ ହୋଇ ଯାଇଥିଲା ବୋଲି ଶୁଣାଯାଉଥିଲା । ଜାତୀୟ ସରକାର ସେହି କ୍ଷତି ପୂରଣ କରିବାର ସବୁ ପ୍ରକାର ଯୋଜନା କରିବା ଦରକାର । ସେଣେ ପ୍ରକୃତିକୁ ଧ୍ୱଂସକରି ଏଣେ ବନମହୋତ୍ସବ କରିବାର ମିଥ୍ୟାଗ୍ର କରି ଲାଭ କ'ଣ ?"(୩୨) କେବଳ ପ୍ରକୃତିର ବୃକ୍ଷରାଜି ନୁହେଁ, ପ୍ରକୃତିର ଜୀବଜନ୍ତୁମାନଙ୍କୁ ମଧ୍ୟ ମଣିଷ ନିଜର ଲାଳସା ଚରିତାର୍ଥପାଇଁ ଅବାଧରେ ବଧକରି ଗ୍ଲିଛି । ପ୍ରକୃତିର ଶାନ୍ତ ବୁକୁରେ ଅଶାନ୍ତିର ତାଣ୍ଡବ ରଚନା କରି ଗ୍ଲିଛି । ପ୍ରକୃତିର ଏହି ଜୀବବଧର ପ୍ରତିକ୍ରିୟାରେ ମାନସିଂହଙ୍କ ପ୍ରାଣ ଅସ୍ଥିର ହୋଇ ଉଠିଛି ।'ସପ୍ତଶଯ୍ୟାରେ ନିଶୀଥ' କବିତାରେ ମାନସିଂହ ଲେଖିଛନ୍ତି:—

" ବନେ ଚରେ ପ୍ରୀତିମୟୀ ସୁନ୍ଦରୀ ହରିଣୀ,
ସନ୍ତାନର ସ୍ନେହୀ ମାତା, ଚିତ୍ତ ବିନୋଦିନୀ,
ଶୃଂଗବନ୍ତ ଦୃଢାଙ୍ଗ କେ ପୁରୁଷ ମୃଗର,
ନିରୀହା ସେ, ଅହିଂସ ସେ, ବାତ୍ସଲ୍ୟ ଚଞ୍ଚଳ ।
ଏକାଳେ ବାଜେ ତା ବକ୍ଷେ ବ୍ୟାଧର ନାରାଚ,
ଧାମଇ ହରିଣୀ କରି କରୁଣ ଆବାଜ,
ନିରିହ, ନିଷ୍ପାପ ତାର ରକ୍ତ ଯାଏ ବହି,
ନୀରବେ ଦେଖଇ ତାହା ଏ ଜନନୀ ମହୀ;
x x x x

ଛାଡି ପତି–ପୁତ୍ର–କନ୍ୟା ସୁଖର ଜୀବନ
ଦୂରେ ସେ ହରିଣୀ ହୁଏ ଶେଷେ କା ଭୋଜନ ?
ହେ ଈଶ୍ୱର, ଦେବଦେବୀ, ଧର୍ମଧ୍ୱଜୀ ଗଣ,
ହେ ପାଦ୍ରୀ, ହେ ମୁଲ୍ଲା, ଆହେ ବିଶୁଦ୍ଧ ବ୍ରାହ୍ମଣ ,
କହ ମତେ ହରିଣୀର ଉଷ୍ଣ ନେତ୍ର ବାରି,
ତା ନିରୀହ ଶୋଣିତରେ ଘୃଣ୍ୟ ପିଚିକାରି
ତମ ଧର୍ମ, ତମ ମୁକ୍ତି, ତମର ସ୍ୱର୍ଗରେ,
ତମ ଗ୍ରନ୍ଥରେ କି ଅପଳାପ ନାହିଁ କରେ ?"(40)

**ଉତ୍ତର ଜୀବନରେ ପ୍ରକୃତି ପ୍ରତି ଦୃଷ୍ଟି :**

ମଣିଷର ଦୃଷ୍ଟିକୋଣ ଅନୁସାରେ ପ୍ରକୃତିର ପରିବର୍ତ୍ତନ ହୁଏ । ମଣିଷର ବୟସ, ସାମାଜିକ ସ୍ଥିତି, ମାନସିକ ଅବସ୍ଥା ଓ ପ୍ରକୃତି ପ୍ରତି ଦୃଷ୍ଟିର ତାରତମ୍ୟ ଅନୁସାରେ ପ୍ରକୃତି ଅନୁଭବ ଭିନ୍ନ ଭିନ୍ନ ପ୍ରକାର ହୋଇଥାଏ । ସେ ସମ୍ପର୍କରେ ମାନସିଂହ ଲେଖିଛନ୍ତି ଯେ ଶିଶୁ କାଳରେ ସରଳ ମନରେ ପ୍ରକୃତିର ଯେଉଁ ମନୋରମ ଶୋଭା ସେ ଅବଲୋକନ କରିପାରୁଥିଲେ, ବୌଦ୍ଧିକ ବିକାଶ ପରେ ପରେ ତାହାର ଶୋଭା ଯୁକ୍ତିବାଦୀ ମନର ତାଡନାରେ କ୍ରମଶଃ ଅପସରି ଯାଉଛି । ବିବାହ ପୂର୍ବରୁ ସେ ଯେଉଁ ପ୍ରକୃତିକୁ ଦେଖିଥିଲେ, ବିବାହ ପରେ ପରେ ସେ ସବୁର ଯେପରି ପରିବର୍ତ୍ତନ ଘଟି ଯାଉଛି । ନିତି ନିତି ଦେଖା ବନ ପର୍ବତ, ଜଳରାଶି, ବିବାହ ପରେ ନୂତନ ରୂପରେ ଦେଖା ଯାଉଛି । କବି ଭାବୁଛନ୍ତି ଯେ, ନବ ପ୍ରଣୟୀର ଉପସ୍ଥିତିରେ, ପ୍ରକୃତି ଆଜି ନବ ଦୃଷ୍ଟିରେ ପରିଦୃଶ୍ୟମାନ ।

"ନବୀନ ପ୍ରଣୟ,
ନବଦୃଷ୍ଟି ଦିଏ ନେତ୍ରେ; ନିରାନନ୍ଦମୟ
ଧରଣୀ ଲାଗଇ ମତେ, ଆନନ୍ଦ ସଂସାର
ପ୍ରାଣହୀନ ପ୍ରକୃତିରେ ଚୈତନ୍ୟ ସଞ୍ଚାର
ଦେଖୁଛି ପ୍ରଥମ କରି । ତେଣୁ ଏ ଶିଖରୀ,
ଏ ହ୍ରଦ, ଏ ନଦୀ, ବନ, ଦ୍ୱୀପ ଗିରି ଦରୀ,
ବହୁ ପରିଚୟେ ଆଜି ନବ ପରିଚୟ
ଦିଅନ୍ତି ସଖି ଗୋ ମତେ ! ବିବାହ ବିଜୟ
ଅବଜ୍ଞାତ ପ୍ରକୃତିରେ ପ୍ରିୟ କରେ ଆଜି
ଅନୁଭୂତିମୟ କରେ ବନଗିରି ରାଜୀ ।"(41)

॥ ମାନସିଂହଙ୍କ ବିଗ୍ଭରଧାରା ॥

ସଦ୍ୟ ବିବାହିତ ଜୀବନ ଉପଭୋଗ କରିବା ସମୟରେ ମାନସିଂହ, ପ୍ରକୃତି ସଂପର୍କରେ ଯେଉଁ ଧାରଣା ପୋଷଣ କରିଥିଲେ, ବୟସର ପରିବର୍ତ୍ତନ ସଂଗେ ସଂଗେ, ପ୍ରକୃତି ପ୍ରତି ଭିନ୍ନ ଦୃଷ୍ଟି ପ୍ରଦାନ କରିଛନ୍ତି । ବାର୍ଦ୍ଧକ୍ୟରେ ପ୍ରକୃତି ଓ ଜୀବନ ସଂପର୍କରେ ମନ୍ତବ୍ୟ ଦେଇ ସେ ଲେଖିଛନ୍ତି :—"ପ୍ରକୃତି ଆମକୁ ଯେପରି ଗଢିଛି, ସେଥିରେ ଯେପରି ମନେହୁଏ, ସେନ୍ହ ଦେବା ଓ ନେବା, ଜୀବନର ଏକ ପରମ ଆବଶ୍ୟକତା ।X X Xସୃଷ୍ଟିର ପରମ ଲକ୍ଷ୍ୟ ହେବା 'ସଂପ୍ରସାରଣ' ବା ବିବର୍ତ୍ତନ । ପ୍ରକୃତିର ଏହି ପରମତମ ଆଦର୍ଶରେ ଅନୁପ୍ରାଣିତ ହୋଇ ହିଁ, ଅଙ୍କୁରିତ ସାରରେ ହେଉପଛେ, ବୀଜ ନିଜକୁ ଫଟାଇ ଉଦଭିଦ ହୁଏ ଏବଂ ପତ୍ର, ପୁଷ୍ପ, ଫଳରେ ଆପଣାକୁ ସହସ୍ରଧା ବିକଶିତ କରି ତେବେ ଯାଇ ଏ ସୃଷ୍ଟିରୁ ବିଦାୟ ନିଏ । ପ୍ରକୃତି ଓ ଜୀବନର ତଳେ ତଳେ ଗ୍ଭଲିଥିବା ଏଇ ବିବର୍ତ୍ତନ ପ୍ରକ୍ରିୟା ର ପରମତମ, ସୁନ୍ଦରତମ ବିକାଶ ଘଟେ ମନୁଷ୍ୟ ଜୀବନରେ । ଏହି କ୍ରିୟା ଫଳରେ ହିଁ, ମନୁଷ୍ୟ ପ୍ରାଣୀରୁ ରୂପାନ୍ତରିତ ହୁଏ, ଦେବତାରେ ।"(42)

ପ୍ରକୃତିର ଅଭିପ୍ରାୟ ବିକାଶଲାଭ କରିବା । ପରିବର୍ତ୍ତନହିଁ ପ୍ରକୃତିର ମୂଳ ସ୍ୱଭାବ । ଜୀବନର ଅପରାହ୍ନରେ ମାନସିଂହ ପ୍ରକୃତିକୁ ଗଭୀର ଦାର୍ଶନିକ ଦୃଷ୍ଟିରେ ଦେଖିଛନ୍ତି । ତାଙ୍କ ଭାଷାରେ:—"ପ୍ରକୃତିକୁ ଅର୍ଥାତ ଜନ୍ତୁ ବା ପ୍ରାଣୀକୁ ସଂସ୍କାରକଲେହିଁ ନରତ୍ୱର ଉଦ୍‌ଭବହୁଏ । ଗଛ ବା ପଥର କେବଳ ଗଛ ବା ପଥର । ଗଛକୁ କାଟି ଘରକଲେ ସେଥିରେ ମନୁଷ୍ୟତାର ଛାପ ପଡେ । ପଥରକୁ କାଟି ଦେବାଳୟକଲେ, ସେଥିରେ ମନୁଷତ୍ୱ ଓ ଦେବତ୍ୱର ଆବିର୍ଭାବ ହୁଏ । ମନୁଷ୍ୟର ଜନ୍ତୁତ୍ୱକୁ ଭାଙ୍ଗି ପୁନର୍ଗଠିତ କଲେଯାଇଁ, ପ୍ରକୃତ ମନୁଷ୍ୟତ୍ୱର ବିକାଶହୁଏ । ଏହାହିଁ ଈଶ୍ୱରଙ୍କର ନୁହେଁ, ପ୍ରକୃତିର ମଧ୍ୟ ଅଭିପ୍ରାୟପରି ଜଣାଯାଏ । ଏ ପୃଥିବୀ ଗ୍ଭହେଁ ତାକୁ ଯେତିକି ଆଘାତ ଦେବ, ଯେତିକି ଖୋଳିବ, ତାଡିବ ସେ ସେତିକି ଆମକୁ ଶସ୍ୟ, ଫଳ, ଓ ଧନରତ୍ନ ଦେବ । ପ୍ରକୃତିର ନିୟନ୍ତ୍ରଣ ପାଇଁ ମନୁଷ୍ୟର ସାଧନାହିଁ ମନୁଷ୍ୟ ସଭ୍ୟତାର ଇତିହାସ ।"(43) ଏଠାରେ ମାନସିଂହଙ୍କ ଅଭିପ୍ରାୟ, ପ୍ରକୃତି ସାଙ୍ଗରେ ଯେତିକି ସଂପର୍କ ସ୍ଥାପନ କରିବ, ସେତିକି ଉତ୍ତମ ଫଳମିଳିବ । ତାଙ୍କର ଉଦ୍ଦେଶ୍ୟ ନୁହେଁ ପ୍ରକୃତିକୁ ଧ୍ୱଂସ କରିବା, ଉଦ୍ଦେଶ୍ୟ ପ୍ରକୃତି ସହିତ ମିତ୍ରତା ସ୍ଥାପନ କରିବା । ଶେଷ ଜୀବନରେ ଚିନ୍ତାନାୟକ ମାନସିଂହ ପ୍ରକୃତିକୁ ସ୍ଥୂଳ ଅର୍ଥରେ ବୁଝିବା ସଂଗେ ସଂଗେ ସୂକ୍ଷ୍ମ ଅର୍ଥରେ ମଧ୍ୟ ଗ୍ରହଣ କରିଛନ୍ତି । ଭାଗବତ ତତ୍ତ୍ୱ ଅନୁସାରେ ସେ ପିଣ୍ଡ ଓ ବ୍ରହ୍ମାଣ୍ଡ ମଧ୍ୟରେ ଐକ୍ୟ ଥିବାର ଦେଖି ପାରିଛନ୍ତି । ସେ କହନ୍ତି:—"ବାହାରର ପ୍ରକୃତି ଅପେକ୍ଷା, ମନୁଷ୍ୟର ଭିତରର ପ୍ରକୃତି କମ୍ ଜଟିଳ ବା ଦୁର୍ବାର ନୁହେଁ, ବାହାରେ ଖରାବର୍ଷା ଶୀତର ଅତ୍ୟୋଗ୍ର, ଝଡ—ତୋଫାନ ଭୂମିକମ୍ପ, ଜଳପ୍ଲାବନର ବିଭୀଷିକା ପ୍ରତି ଆମ୍ଭେମାନେ ଅତ୍ୟନ୍ତ ଜାଗ୍ରତ । କିନ୍ତୁ ଆମ ଭିତରେ ମଧ୍ୟ ଯେ ପ୍ରକୃତିର ଏ ସମସ୍ତ ଅଭିନୟ ଅହରହ ଗ୍ଭଲିଛି, ଏଥିପାଇଁ ଆମେ କେହି କ୍ୱଚିତ୍ ସଚେତନ । ଆମେ ସବୁବେଳେ କହୁ 'ଓଃ କି ଶୀତ', 'ଓଃ କି ଖରା,' 'ଓଃ କି ବନ୍ୟା ହେଲା', ଓଃ କି ଭୀଷଣ ଭୂକମ୍ପ' କିନ୍ତୁ ଆମ କେବେ କହୁନା 'ଆଃ ମୁଁ କାହିଁକି ରାଗିଲି', 'ଆଃ କାହିଁକି ସେ ଲୋକପତି ଏତେ ନିଷ୍ଠୁର ବ୍ୟବହାର କଲି', 'ଛି ମୁଁ କାହିଁକି ଏ ଲାଳସାକୁ ମୋ ମନକୁ ଆକ୍ରାନ୍ତ କରିବାକୁ ଦେଉଛି', କିନ୍ତୁ ଲୋଭ, ଲାଳସା, ଦ୍ୱେଷ, କ୍ରୋଧ, ପ୍ରଭୃତି ଯେ ବାହାରେ ଘଟୁଥିବା ପ୍ରାକୃତିକ ବିପ୍ଳବ ବା ଅତ୍ୟୋଗ୍ରର ସମାନ୍ତର ଅଭିଜ୍ଞତା, ପ୍ରକୃତି ଭିତରେ ଓ ବାହାରେ ଯେ ଏକା ନିୟମହିଁ କାମ କରୁଛି, ଏହା ଟିକିଏ ଚିନ୍ତା କଲେଇ ଲୋକ ବୁଝି ପାରିବ ।(44)

॥ ମାନସିଂହଙ୍କ ବିଗ୍ରଧାରା ॥

## ପ୍ରଥମ ଅଧ୍ୟାୟର ସୂଚନା


1: ମାନସିଂହ ଗ୍ରନ୍ଥାବଳୀ (ତୃତୀୟ ଖଣ୍ଡ), ରାଧାନାଥ(ପ୍ରବନ୍ଧ) ପୃ- 463,(1973)

2: ,, ,, ନୂତନ ସାହିତ୍ୟର ନୂତନତ୍ୱ(ପ୍ରବନ୍ଧ) ପୃ-628,

3: ମାନସିଂହ, ମାୟାଧର(1940), ପଶ୍ଚିମ ପଥିକ' ପୃ- 6-7,

4: ,, ତତ୍ରୈବ ପୃ.49-50,

5: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ)-1973, ଓଡିଆ ସାହିତ୍ୟରେ ରୋମାଣ୍ଟିସିଜିମ୍(ପ୍ରବନ୍ଧ) ପୃ 620,

6: ,, ରାଧାନାଥ(ପ୍ରବନ୍ଧ) ପୃ-460,

7: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ-1973), ଓଡିଆ ସାହିତ୍ୟରେ ରୋମାଣ୍ଟିସିଜିମ୍(ପ୍ରବନ୍ଧ) ପୃ-619,

8: ତତ୍ରୈବ,

9: ତତ୍ରୈବ, ପୃ.619-620,

10: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ-1973), ରାଧାନାଥ(ପ୍ରବନ୍ଧ), ପୃ- 462,

11: ତତ୍ରୈବ ପୃ. 460,

12: ତତ୍ରୈବ ପୃ.461-62,

13: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ-1973), ରବୀନ୍ଦ୍ରନାଥଙ୍କ କବିତା, (ପ୍ରବନ୍ଧ) ପୃ.431,

14: ମାନସିଂହ ଗ୍ରନ୍ଥାବଳୀ(ପ୍ରଥମ ଖଣ୍ଡ-1962) ସ୍ୱର୍ଗଚ୍ୟୁତି(କବିତା) ପୃ-303,

15: ମାନସିଂହ ଗ୍ରନ୍ଥାବଳୀ(ପ୍ରଥମ ଖଣ୍ଡ-1962), ପ୍ରିୟଭୂମି, ପୃ-140,

ଓହ୍ଲାଇ ଏ ଅଗ୍ନି-ରଥୁ ଯିବ ସେହି ଦେଶେ/ବିସ୍ତୀର୍ଣ୍ଣ, ପ୍ରକୃତି ଯହିଁ ଦିଗମ୍ବର ବେଶେ
ବୃକ୍ଷହୀନ-ହେମକାନ୍ତ-ସିକତା ବିସ୍ତାରେ/ମହୋଦଧି ତଟ-ପ୍ରାନ୍ତେ । ସିନ୍ଧୁ-ସିକତାରେ
କ୍ରୀଡନ୍ତି ନିଶୀଥେ ତହିଁ ଜଳକନ୍ୟାଗଣ/କିଆକୁଞ୍ଜେ ଲୁଚକାଳି, କୋମଳ ଚରଣ
ବୁଡେ ନାହିଁ ବାଲୁକାରେ । ବର୍ଷାରମ୍ଭେ ତହିଁ/ପୁନ୍ନାଗ କୁସୁମ ଗନ୍ଧ ପ୍ରାଣ ବିଏ ଦହି
ବିରହୀ ତରୁଣଙ୍କର । କ୍ଷୁବ୍ଧ ପାରାବାର/ଢାଳେ ଚୂର୍ଣ୍ଣ-ମଣିଚୂଡ ଦୀର୍ଘ-ଊର୍ମିବାର
ସେ ଭୂମିର ପଦତଳେ; ତା' ଗୁରୁ ଗର୍ଜନ/ ରଚେ ତହିଁ ଶାଶ୍ୱତିକ ମୃଦଙ୍ଗ ଘୋଷଣ ।
ସେହି ଭୂମେ ମୋ କୁଟୀର; ସେ ଦେଶ- କୁରଙ୍ଗୀ/ ଗୁଳସଖି, ତୁମ୍ଭଠାରୁ ଶିଖିବେ ଭ୍ରୂଭଙ୍ଗି ॥।

16: ମାନସିଂହ, (ଡଃ)ମାୟାଧର-ଗଦ୍ୟ ସଂଗ୍ରହ(1950)ସଂ-ଶିବ ପ୍ରସାଦ ଦାଶ, ଚିଲିକା(ପ୍ରବନ୍ଧ) ପୃ-35,

17: ତତ୍ରୈବ ପୃ-37,

18: ତତ୍ରୈବ ପୃ-38-39,

॥ ମାନସିଂହଙ୍କ ବିଗ୍ରହଧାରା ॥

19: ମାନସିଂହ, ମାୟାଧର–ପଶ୍ଚିମ ପଥିକ (1940) ପୃ–47,
20: ତତ୍ରୈବ ପୃ–50,
21: ମାନସିଂହ, (ଡଃ) ମାୟାଧର–ଶିକ୍ଷାବିତ୍‌ର ଗାଥା (1965) ସପ୍ତମ ଅଧ୍ୟାୟ ପୃ–67,
22: ତତ୍ରୈବ, ପୃ–67–68,
23: ତତ୍ରୈବ, ପୃ–72,
24: ତତ୍ରୈବ, ପୃ–132,
25: ମାନସିଂହ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ–1962) ବିରହୀ ଘନ (କବିତା) ପୃ–137,
26: ତତ୍ରୈବ, ପୃ·138,
27: ମାନସିଂହ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ–1962) ଦକ୍ଷିଣା ପ୍ରତି (କବିତା) ପୃ–395,
28: ତତ୍ରୈବ, ପୃ396,
29: ତତ୍ରୈବ, ଅତୃପ୍ତ ଭୋଗ (କବିତା) ପୃ–219,
30: ମାନସିଂହ, (ଡଃ) ମାୟାଧର–ଅନ୍ୱେଷଣ (ଉପନ୍ୟାସ)–1957, ପୃ–123,
31: ମାନସିଂହ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ–1962) ଦୁଃଖୀ (କବିତା) ପୃ–529,
32: ତତ୍ରୈବ, ଧରଣୀ–ବାସ (କବିତା) ପୃ–389,
33: ତତ୍ରୈବ, ମହାନଦୀରେ ଜ୍ୟୋତ୍ସ୍ନାବିହାର (କବିତା) ପୃ–317,
34: ତତ୍ରୈବ ଶ୍ରୀକୃଷ୍ଣ (କବିତା) ପୃ–564,
35: ତତ୍ରୈବ ବିଭୂ ଓ ପ୍ରକୃତି (1) କବିତା ପୃ–469,
36: ତତ୍ରୈବ ବିଭୂ ଓ ପ୍ରକୃତି (2) କବିତା ପୃ–469,
37: ତତ୍ରୈବ ବିଭୂ ଓ ପ୍ରକୃତି (3) ପୃ–470,
38: ତତ୍ରୈବ ବିଭୂ ଓ ପ୍ରକୃତି (4) ପୃ–471,
39: ମାନସିଂହ, (ଡଃ) ମାୟାଧର–ଶିକ୍ଷାବିତ୍‌ର ଗାଥା (1965) ପୃ–69,
40: ମାନସିଂହ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ–1962)–ସପ୍ତଶଯ୍ୟାରେ ନିଶୀଥ (କବିତା) ପୃ–544,
41: ତତ୍ରୈବ, ନବଦୃଷ୍ଟି (କବିତା) ପୃ–140,
42: ମାନସିଂହ, (ଡଃ) ମାୟାଧର–ଗୀତାମହାତ୍ମ୍ୟ (1969), ଗୀତା ଓ ଆମର ଦୈନନ୍ଦିନ ଜୀବନ, ପୃ–204,
43: ତତ୍ରୈବ, ପୃ–208,
44: ତତ୍ରୈବ, ପୃ–208,

## ଷଷ୍ଠ ଅଧ୍ୟାୟ

### ——: ଭଗବାନ ଓ ଧର୍ମ :——

ଭାରତୀୟ ଆର୍ଯ୍ୟ ଭାଷା ମାନଙ୍କର ପରିଚିତ ଶବ୍ଦ 'ଧର୍ମ' ଇଂରାଜୀ 'ରିଲିଜିଅନ' ଶବ୍ଦର ସମଗୋତ୍ରୀୟ ଭାବେ ଗୃହୀତ । ଏହି ପ୍ରତ୍ୟେକ ଶବ୍ଦ ଯାହା ଏକ ନିର୍ଦ୍ଦିଷ୍ଟ ବସ୍ତୁକୁ ନ ବୁଝାଇ ମାନବ ଜୀବନର ଚଳଚଞ୍ଚଳ ଅଭୀପ୍ସା, ଇଚ୍ଛା ବା କର୍ତ୍ତବ୍ୟବୋଧକୁ ସୂଚାଇଥାଏ, ସେ ଶବ୍ଦ ପଛଆଡେ ଏକ ଇତିହାସ ଲୁଚି ରହେ । ଇତିହାସ ସଂପନ୍ନ ଶବ୍ଦମାଳାର ଅର୍ଥ ବର୍ଣ୍ଣନାତ୍ମକ ରୀତିରେ ଦିଆଯାଇପାରେ, ତାହାର ସଂଜ୍ଞା ନିରୂପଣ କରାଯାଇପାରେ ନାହିଁ । ଧର୍ମ ଓ ରିଲିଜିଅନ୍' ଉଭୟ ଶବ୍ଦ କ୍ଷେତ୍ରରେ ଏକଥା ସତ୍ୟ । ସଭ୍ୟତାର ବିଭିନ୍ନ ପର୍ଯ୍ୟାୟରେ ଏହି ଉଭୟ ଶବ୍ଦର ଅର୍ଥ କ୍ଷେତ୍ର ବିଭିନ୍ନ ହୋଇ ଆସିଛି । ଉଦାହରଣ ସ୍ୱରୂପ 'ଧର୍ମ' ଶବ୍ଦ ବୁଦ୍ଧଙ୍କ କାଳରୁ ହିଁ ପ୍ରଚଳିତ । ଏକ ଶୃଂଖଳିତ ସଂଯତ ଓ ନୈତିକ ଐହିକ ଜୀବନ ପାଇଁ ବୁଦ୍ଧଦେବ ଯେଉଁ ପ୍ରସ୍ତାବ ଗୁଡିକ ବାଢିଥିଲେ ତାର ନାଁ ଦେଇଥିଲେ 'ସଧର୍ମ' । ଏହି 'ଧର୍ମ'ର ବିଶ୍ୱଜାଗତିକ ଶୃଂଖଳା ବା କସ୍ମିକ ଅର୍ଡର ସହିତ ଏକ ଘନିଷ୍ଠ ସମ୍ବନ୍ଧ ସୂତ୍ର ସେ ଆବିଷ୍କାର କରିଥିଲେ । ବେଦରେ ଏହି 'ଧର୍ମ'ର ସମ ପର୍ଯ୍ୟାୟବାଚକ ଶବ୍ଦ ହେଲା 'ଋତ' । କାଳକ୍ରମେ ଏହି ଋତ ଓ ଧର୍ମ ସମାନ ଅଭିଧା ନେଇ ପ୍ରକାଶିତ ହେଲା । ହିନ୍ଦୁ ଧର୍ମର ବିଭିନ୍ନ ଶାସ୍ତ୍ର ଧର୍ମର ଏହି ଏହି ନୂତନ ଅଭିଧାକୁ କାଳକ୍ରମେ ଆତ୍ମସାତ କରିଥିଲା ।

ଆଜି ଧର୍ମ ବା ରିଲିଜିଅନ କହିଲେ ଯାହା ବୁଝାଯାଏ ତାକୁ ଦୁଇଟି ଭାଗରେ ବିଭାଜନ କରାଯାଏ । ଗୋଟିଏ ହେଲା ଆଦିମ ଧର୍ମ, ଅନ୍ୟଟି ହେଲା ସଂଗଠିତ ଧର୍ମ । ହିନ୍ଦୁ, ବୌଦ୍ଧ, ଇସ୍ଲାମ୍, ଖ୍ରୀଷ୍ଟ ଧର୍ମ ଆଦି ସଂଗଠିତ ଧର୍ମ ରୂପେ ପରିଚିତ ହେଲାବେଳେ, ଆଦିମ ଜନଜାତି ମାନଙ୍କର ଧର୍ମ ଆଦିମ ଧର୍ମ ବା ପ୍ରିମିଟିଭ୍ ଧର୍ମ ଭାବରେ ପରିଚିତ । ପ୍ରତ୍ୟେକ ମଣିଷ ବଞ୍ଚିବାର ଆକାଂକ୍ଷା ଭିତରେ ସମାଜ ଜୀବନର ଆବଶ୍ୟକତା ହେତୁ, ଗୋଷ୍ଠୀ ଜୀବନକୁ ସଂହତ କରିବା ପାଇଁ ଯେଉଁ ଶୃଂଖଳାକୁ ଆବରି ନେଇଥାଏ, ତାହା ଆଦିମ ଧର୍ମର ମୂଳରୂପ । ତା'ର ବିଶ୍ୱାସ କଳ୍ପନା, ଆକାଂକ୍ଷା, ଏହି ଧର୍ମର ବିଭିନ୍ନ ପ୍ରତୀକରେ ରୂପାୟିତ ହୋଇଥାଏ । ପ୍ରତ୍ୟେକ ସଂଗଠିତ ଧର୍ମର ଅଭ୍ୟୁଦୟ ପୂର୍ବରୁ ସେହି ଧର୍ମାନ୍ତର୍ଗତ ମଣିଷମାନେ କୌଣସି ଆଦିମ ଧର୍ମକୁ ଗ୍ରହଣ କରିଥିଲେ । ଆଦିମ ଧର୍ମରେ

କୌଣସି ମେସିଆ, ପୟଗମ୍ବର ବା ଭଗବାନଙ୍କ ଅବତାର ନଥିଲା । ମଣିଷ ତାର ଆବଶ୍ୟକତା ହେତୁ ବିଭିନ୍ନ ପ୍ରାକୃତିକ ଉପାଦାନ ଓ କଳ୍ପିତ ବିଶ୍ୱାସବୋଧକୁ ଅଲୌକିକ ମହିମାରେ ଉଦ୍ଭାସିତ କରିଥାଏ । କାଠ ପଥର ଦେବତାର ମହିମାରେ ମଣ୍ଡିତ ହୋଇଥାଏ । ଆଜି ବିଶ୍ୱରେ ଏହି ଆଦିମ ଧର୍ମାବଲମ୍ବୀଙ୍କ ସଂଖ୍ୟା ଅତି ସ୍ୱଳ୍ପ । ଆଦିମ ଅଧିବାସୀମାନଙ୍କର ଯେ ଭଳି କୌଣସି ରାଷ୍ଟ୍ର ନଥାଏ, ଶୋଷଣ ପାଇଁ ଏକ ଯନ୍ତ୍ର ସୃଷ୍ଟି କରାହୋଇ ନଥାଏ; ସେହିଭଳି ସେ ଧର୍ମର ମଧ୍ୟ କୌଣସି ବିଧି ନିଷେଧ ମଧ୍ୟ ନଥାଏ ବା ସେ ଧର୍ମର ବ୍ୟାପକତା ମଧ୍ୟ ନଥାଏ । ଅର୍ଥାତ୍ ଭେଦରେ, ସମାନ ଭେଦରେ, ତାହା ଭିନ୍ନ ରୂପ ଧରିଥାଏ ।

ପ୍ରତ୍ୟେକ ସଂଗଠିତ ଧର୍ମ କେତେଗୁଡିଏ ମୌଳ ପ୍ରତ୍ୟୟ ଉପରେ ପ୍ରତିଷ୍ଠିତ । ଆଦିମ ଧର୍ମକୁ କୁସଂସ୍କାର ଗ୍ରସ୍ତ ଅବିଶ୍ୱାସ୍ୟ ଇତ୍ୟାଦି ଭାବରେ ଅଭିହିତ କରି ଏହି ସଂଗଠିତ ଧର୍ମ ଗୁଡିକର ଅଭ୍ୟୁଦୟ ହୋଇଥାଏ । ପ୍ରତ୍ୟେକ ସଂଗଠିତ ଧର୍ମରେ ଜଣେ ଜଣେ ପୟଗମ୍ବର, ଭଗବାନପୁତ୍ର ବା ସ୍ୱୟଂ ଭଗବାନ ପ୍ରବର୍ତ୍ତକ ରୂପେ ଅଭିହିତ ହୋଇଥାନ୍ତି, ଯେ ଭଳି ଇସ୍‌ଲାମ୍‌ରେ ମହମ୍ମଦ, ଖ୍ରୀଷ୍ଟଧର୍ମରେ ଯୀଶୁଖ୍ରୀଷ୍ଟ, ବୌଦ୍ଧଧର୍ମରେ ସ୍ୱୟଂ ବୁଦ୍ଧ ଓ ହିନ୍ଦୁ ଧର୍ମରେ ରାମ, କୃଷ୍ଣ ପ୍ରମୁଖ । ଏହି ସଂଗଠିତ ଧର୍ମର ପ୍ରବର୍ତ୍ତକମାନେ ଦାବୀ କରିଥାନ୍ତି ଯେ ସେମାନଙ୍କ ମୁଖ ନିଃସୃତ ବାକ୍ୟ ଗୁଡିକ ତର୍କାତୀତ, ଅନପେକ୍ଷିତ, ସାର୍ବଜନୀନ ଓ ସ୍ୱୟଂସିଦ୍ଧ । ସେମାନେ ସମ୍ପୂର୍ଣ୍ଣ ଜ୍ଞାନର ଅଧିକାରୀ । ଫଳରେ ସେମାନଙ୍କ ବକ୍ତବ୍ୟ ଗୁଡିକ ଅତି ପ୍ରାଚୀନ ହେଲେବି ତାହା ଧର୍ମଅନ୍ତର୍ଗତ ମଣିଷମାନେ ଗ୍ରହଣ କରିବାପାଇଁ ବାଧ୍ୟ । ଦ୍ୱିତୀୟତଃ ପ୍ରତ୍ୟେକ ଧର୍ମର କେନ୍ଦ୍ରରେ ଜଣେ ଜଣେ ଭଗବାନ, ଗଡ୍, ଆଲ୍ଲା ବା ଜିହୋବା ଥାଆନ୍ତି । ସେ ଏହି ସମସ୍ତ ବିଶ୍ୱ ଜଗତର ସ୍ରଷ୍ଟା, ଶାସକ, ନିୟାମକ ।

ବିଗତ ଶତାବ୍ଦୀ ଠାରୁ ଇଉରୋପର ତଥା ଭାରତର ମନୀଷୀମାନଙ୍କ ମଧ୍ୟରେ ଧର୍ମର ସ୍ୱରୂପ ଓ ଭିତ୍ତି ନେଇ ଗବେଷଣାର ଅନ୍ତନାହିଁ । ବିଶ୍ୱର ପ୍ରତ୍ୟେକ ମଣିଷ କୌଣସି ନା କୌଣସି ଧର୍ମଗୋଷ୍ଠୀର ଅନ୍ତର୍ଭୁକ୍ତ ହୋଇଥିବାରୁ ବିଶ୍ୱର ସମାଜ ବିଜ୍ଞାନୀ ଓ ମନୋବିଜ୍ଞାନୀମାନେ ଧର୍ମର ସ୍ୱରୂପ ନେଇ ନାନାପ୍ରକାର ଚର୍ଚ୍ଚା କରିଛନ୍ତି । କାର୍ଲମାର୍କସଙ୍କ ଭଳି ବ୍ୟକ୍ତିମାନେ ଧର୍ମକୁ "ଶୋଷିତ ଓ ଜୀବନର ସୁଖବର୍ଜିତ ମଣିଷର ଦୀର୍ଘଶ୍ୱାସ ଓ ସେହି ଯନ୍ତ୍ରଣାକୁ ଭୁଲିବାର ଅଫିମ ବୋଲି କହିଲାବେଳେ" (।) ଡରଖାମ୍, ୱେବର ପ୍ରମୁଖ ସମାଜ ତତ୍ତ୍ୱବିତ୍‌ମାନେ ଏହାକୁ ସମାଜ ଜୀବନର ସ୍ୱଧର୍ମ ବୋଲି କହିଛନ୍ତି ।

ଡରଖାମ୍ ତାଙ୍କର ଧର୍ମ ସମ୍ପର୍କୀୟ ଆଲୋଚନାରେ ସାଂସ୍କୃତିକ ଓ ସାମାଜିକ ସଂଗଠନ ଭିତରେ ଧର୍ମ କିଭଳି ଗଢିଉଠେ ଓ ଏହି ସଂଗଠିତ ଧର୍ମ ସମାଜ ଓ ସାଂସ୍କୃତିକ ଜୀବନକୁ କିଭଳି ପ୍ରଭାବିତ, ବେଳେବେଳେ ସଂରଚନା କରେ ତାହା ଦର୍ଶାଇଛନ୍ତି । ଧର୍ମର ଜଗତ ସବୁବେଳେ ଅମୁକ୍ତ । ଇହ ଜଗତ ସହିତ ପରଲୌକିକ ଜୀବନର ସେତୁବନ୍ଧ ରଚନା କରୁଥିବାରୁ ଏହାର ପ୍ରତୀକ ଗୁଡିକ ପବିତ୍ର ଓ ତର୍କାତୀତ । ପ୍ରତ୍ୟେକ ଧର୍ମରେ ତେଣୁ ଥାଏ ତିନୋଟି ମୁଖ୍ୟ ଅଂଶ:– (କ) ବିଶ୍ୱାସ ଓ ନିୟମାବଳୀ ସମ୍ପର୍କିତ ପବିତ୍ର ପୁସ୍ତକାବଳୀ, (ଖ) ଧର୍ମ ମନ୍ଦିର, (ଗ) ଧର୍ମନେତା ।(୨)

## ।। ମାନସିଂହଙ୍କ ବିଗ୍ରହଧାରା ।।

ମାନସିଂହଙ୍କ ଜନ୍ମପୂର୍ବ ଭାରତବର୍ଷ ଧର୍ମର ବିଗ୍ରହ ଆଲୋଚନା ଦୃଷ୍ଟିରୁ ଥିଲା ଏକ ଉର୍ବର ଭୂମି । ପ୍ରାଚ୍ୟ ପାଶ୍ଚାତ୍ୟ ସଂଘର୍ଷରୁ ଭାରତରେ ନବ୍ୟ ହିନ୍ଦୁ ଧର୍ମର ଅଭ୍ୟୁଦୟର ତାହାଥିଲା ପ୍ରାରମ୍ଭ ପର୍ବ । ଗୋଟିଏ ଦିଗରେ ରାଜା ରାମମୋହନ ରାୟ, ଦେବେନ୍ଦ୍ରନାଥ ଠାକୁର, କେଶବଚନ୍ଦ୍ର ସେନ, ଅନ୍ୟଦିଗରେ ଦୟାନନ୍ଦ ସରସ୍ୱତୀ ଓ ଆର୍ଯ୍ୟସମାଜ, ପଶ୍ଚିମରେ ହିତବାଦବାଦୀ ଓ ରାଣାଡେ ଏବଂ ପୁଣି ବଙ୍ଗଳାରେ ରାମକୃଷ୍ଣ ପରମହଂସ, ବିବେକାନନ୍ଦ ଭାରତୀୟ ହିନ୍ଦୁମାନଙ୍କର ଜିଜ୍ଞାସାବୋଧକୁ ଗଭୀରତର, ବ୍ୟାପକତର ଓ ବିଜ୍ଞାନର ନବ ଆବିଷ୍କୃତ ବିଗ୍ରହବୋଧ ଭିତ୍ତିରେ ପ୍ରତିଷ୍ଠିତ କରିବାକୁ ଲାଗିଥିଲେ । ସଂଗଠିତ ହିନ୍ଦୁଧର୍ମର ପାଖାପାଖି ମିଶନାରୀମାନଙ୍କର ଧର୍ମପ୍ରଚାର, ମୁସଲମାନମାନଙ୍କର ଓ୍ୱାହବୀ ଆନ୍ଦୋଳନ ଓ ଓଡିଶାର ଜନଜାତି ବର୍ଦ୍ଧିତ ଜନଗଣଙ୍କର ନୂତନ ମହିମାଧର୍ମ ପ୍ରତିଷ୍ଠା ଲାଭ କରିଥିଲା । ଗୋଟାଏ ପଟରେ ଧର୍ମର ଉତ୍ପତ୍ତି, ବିକାଶ, ସ୍ୱରୂପ ଓ ପ୍ରଭାବ ସମ୍ପର୍କରେ ଗବେଷଣା, ଅପର ପକ୍ଷରେ ନୂତନ ଧର୍ମର ଅଭ୍ୟୁଦୟ—ଏହାରି ଭିତରେ ମାନସିଂହଙ୍କର ବୌଦ୍ଧିକ ଜୀବନ ଅତିବାହିତ ହୋଇଥିଲା । ତେଣୁ ମାନସିଂହଙ୍କର ଧର୍ମ ଜିଜ୍ଞାସା ଓ ଭଗବତ ବିଶ୍ୱାସ ଭିତରେ ମୁକ୍ତ ମନୀଷାର ଅଭିବ୍ୟକ୍ତି ଦେଖିବାକୁ ମିଳେ ।

ମାନସିଂହଙ୍କର ସାହିତ୍ୟିକ ଜୀବନ ଜଣେ ରୋମାଣ୍ଟିକ୍ କବିଭାବରେ ଆରମ୍ଭ ହୋଇଥିଲା । ସୁଦୂର ପଲ୍ଲୀର ଅନୁଭୂତି, ନଗର ଜୀବନର ମୁକ୍ତ ଆବହାଓ୍ୱା, ତରୁଣ ବୟସର ସ୍ୱପ୍ନ, ତାଙ୍କର କବିତା ଗୁଡିକୁ ଗତିଶୀଳ ଓ ହୃଦୟଗ୍ରାହୀ କରିଥିଲା । ଜୀବନ ଓ ଜଗତ ସମ୍ପର୍କରେ ତାଙ୍କର ଯେ କୌଣସି ଜିଜ୍ଞାସା ନ ଥିଲା, ତାହାନୁହେଁ ମାତ୍ର ସେ ସବୁ ଅନୁଭୂତିର ଦେହଳୀ ଅତିକ୍ରମ କରି ପ୍ରଜ୍ଞାକେନ୍ଦ୍ରରେ ଅଧିଷ୍ଠିତ ହୋଇ ନଥିଲା । ପରେ ପରେ ତାଙ୍କର ଧର୍ମ ଓ ଭଗବତ ସମ୍ପର୍କୀୟ ବିଶ୍ୱାସ ବିବର୍ତ୍ତିତ ହୋଇଛି । ପ୍ରଥମେ ଗାନ୍ଧୀ ଓ ଗୋପବନ୍ଧୁ ପରେ ୟୁରୋପୀୟ ଜୀବନାଦର୍ଶ ଏବଂ ଶେଷରେ ବୌଦ୍ଧଧର୍ମ ତାଙ୍କର ବିଗ୍ରହଧାରାକୁ ପ୍ରଭାବିତ ଓ ନିୟନ୍ତ୍ରିତ କରିଛି । ଆଲୋଚନାର ସୁବିଧା ପାଇଁ ଡକ୍ଟର ମାୟାଧର ମାନସିଂହଙ୍କ ଧର୍ମ ଓ ଭଗବାନ ସମ୍ପର୍କୀୟ ବିଗ୍ରହଧାରାକୁ ତିନିଗୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଇଅଛି । ପ୍ରଥମ ପର୍ଯ୍ୟାୟ:– ଜୀବନର ଆଦିପର୍ବ– ପ୍ରାକ୍ ବିଲାତ ଯାତ୍ରା ବା ଛାତ୍ରଜୀବନ ଓ ଆଦ୍ୟ ଚାକିରୀଜୀବନ –1937 ମସିହା ପର୍ଯ୍ୟନ୍ତ । ଦ୍ୱିତୀୟ ପର୍ଯ୍ୟାୟ:–ବିଲାତ ରହଣୀ ଓ ପ୍ରତ୍ୟାବର୍ତ୍ତନ, ଭାରତୀୟ ସ୍ୱାଧୀନତା ଆନ୍ଦୋଳନ, ଭାରତର ସ୍ୱାଧୀନତା ପ୍ରାପ୍ତି, ବାପୁଜୀଙ୍କ ପରଲୋକ ଗମନ—1948 ମସିହା ପର୍ଯ୍ୟନ୍ତ ଜୀବନର ମଧ୍ୟପର୍ବ । ତୃତୀୟ ପର୍ଯ୍ୟାୟ:— ଜୀବନର ଅନ୍ତିମ ପର୍ବ—1948 ରୁ 1973 ମସିହା ପର୍ଯ୍ୟନ୍ତ ।

### ଜୀବନର ଆଦିପର୍ବ:—

ମାୟାଧର ମାନସିଂହଙ୍କର ଜନ୍ମ ଓ ବାଲ୍ୟ ଜୀବନ ସମ୍ପୂର୍ଣ୍ଣ ଗ୍ରାମୀଣ ପରିବେଶରେ ଅତି – ବାହିତ ହୋଇଥିଲା । ପାରମ୍ପାରିକ ଧର୍ମ ଓ ଈଶ୍ୱର ଚିନ୍ତାହିଁ ମାନସିଂହଙ୍କ ମାନସ ପଟରେ ଆସନ ଜମାଇ ରହିଥିଲା ।

॥ ମାନସିଂହଙ୍କ ବିଶ୍ୱରଧାରା ॥

କୌଣସି ଶକ୍ତିଶାଳୀ ବହିଃଚିନ୍ତାରାଜ୍ୟକୁ ପ୍ରବେଶ କରିବା ପୂର୍ବରୁ, ମାନସିଂହଙ୍କ ଚିନ୍ତାରାଜ୍ୟରେ ଉତ୍କଳୀୟ ଗ୍ରାମୀଣ ସମାଜରେ ପ୍ରଚଳିତ ଈଶ୍ୱର ସଂପର୍କୀୟ ଧାରଣା ହିଁ ଜାଗ୍ରତ ଥିଲା । କାରଣ 'ମୁଁ କାହିଁକି ଲେଖେ' ଆଲୋଚନାରେ ମାନସିଂହ ତାଙ୍କର ଆଦ୍ୟଜୀବନର ଧର୍ମଧାରଣା ସଂପର୍କରେ ଲେଖିଛନ୍ତି :–" ଏବେ ମୁଁ ବହୁକାଳଧରି ଅପୌତ୍ତଳିକ । ହିନ୍ଦୁ ଦେବାଦେବୀଙ୍କର ପ୍ରତିମାକୁ ମୁଁ ନମସ୍କାର କରେନା । ମୋର ବର୍ତ୍ତମାନ ବଦ୍ଧ ଧାରଣା ଯେ ଏଇ ପୌତ୍ତଳିକତା ଓ ବ୍ରାହ୍ମଣ ନିର୍ଭର ସାମାଜିକ ଜୀବନ ପରିତ୍ୟାଗ ନ କଲେ ସାମଗ୍ରିକ ଭାବରେ ହିନ୍ଦୁ ସମାଜ କେବେ ହେଲେ ସଙ୍ଘ ବା ଉନ୍ନତ ହୋଇପାରିବ ନାହିଁ । କିନ୍ତୁ ସେହି ସୁଦୂର ବାଲ୍ୟ ଜୀବନରେ ମୁଁ ହିନ୍ଦୁ ଦେବାଦେବୀଙ୍କର ଏକାନ୍ତ ଭକ୍ତ ଥିଲି । ଗଣେଶ ଓ ସରସ୍ୱତୀଙ୍କ ସ୍ତୋତ୍ର ମୁଖସ୍ତ କରି ପ୍ରତ୍ୟହ ପାରାୟଣ କରୁଥିଲି; ଯଦିବା ମୋର ଦରଖାସ୍ତ ବରାବର ନାମଞ୍ଜୁର ହେଉଥାଏ ।"(3)

ଧର୍ମ ଓ ଭଗବାନଙ୍କ ସମ୍ବନ୍ଧରେ ଆଲୋଚନା କରିବା ବା ଅନୁଧ୍ୟାନ କରିବା ମାନସିଂହଙ୍କର ଆଦ୍ୟ ଜୀବନରୁ ଅଭ୍ୟାସ ଥିଲା । ଧର୍ମ ଚର୍ଚ୍ଚାର ଦୃଷ୍ଟିକୋଣ ଯାହା ହେଉନା କାହିଁକି, ଧର୍ମ ଓ ଈଶ୍ୱରଙ୍କ ସଂପର୍କରେ ଅବଗତ ହେବାପାଇଁ ତାଙ୍କର ଆଦ୍ୟ ପ୍ରୟାସ ସଂପର୍କରେ ମାନସିଂହ ଲେଖିଛନ୍ତି :—" ଏ କାଳର ସାଧାରଣ ପାଠକ ପାଠିକା ଯେଉଁ ଉତ୍ସାହ ଓ ଅନୁରାଗରେ ଗଳ୍ପ ଉପନ୍ୟାସ ପଢିଥାନ୍ତି ଏହି ଲେଖକ ମିଡିଲ ସ୍କୁଲରେ ଛାତ୍ର ଥିଲାବେଳେ ରୁହିଁ ସେହି ଉତ୍ସାହ ଓ ଅନୁରାଗ ସହିତ ଧର୍ମ ଦର୍ଶନର ପୁସ୍ତକାବଳୀ ପଢି ଆସିଛି ।"(4)

ଦୁଃଖ ଓ ଅଭାବ ଭିତରେ ବଢିଥିବା ବ୍ୟକ୍ତି ସଦାସର୍ବଦା କୌଣସି ଏକ ଅଜଣା ଶକ୍ତିର ଆଶ୍ରୟ ନେବାକୁ ଆଗ୍ରହ ପ୍ରକାଶ କରିଥାଏ, ଏହି ଆଗ୍ରହ ଗତିଶୀଳ ଥାଏ ଯେତେବେଳେ ପର୍ଯ୍ୟନ୍ତ କୌଣସି ପ୍ରତିବନ୍ଧକର ସମ୍ମୁଖୀନ ନ ହୋଇଛି । ପାରିବାରିକ ଜୀବନରେ ପିତୃମାତୃହୀନ ଅବସ୍ଥା ସହିତ ଆର୍ଥିକ ଅଭାବହିଁ ତାଙ୍କୁ ଆତ୍ମାର ସୁଖ ଓ ଆନନ୍ଦର ପ୍ରତିଶ୍ରୁତି ମିଳିବା ନିମନ୍ତେ ଏକ ଅଜ୍ଞାତ ଈଶ୍ୱରଙ୍କର ଅନ୍ୱେଷଣରେ ବ୍ରତୀ କରିଛି । ଏ ସଂପର୍କରେ ମାନସିଂହ କହନ୍ତି :–"ଦୁଃଖ ଅଭାବ ବା ଜୀବନର ଅପୂର୍ଣ୍ଣତାର ତୀବ୍ର ଅନୁଭବ ଭିତରେ ବଢିଗ୍ଭଲିଥିବାରୁ, ଆଲୋକ ଓ ଆନନ୍ଦର ପ୍ରତିଶ୍ରୁତି ପାଇଁ ଯେଉଁ ଅନୁସନ୍ଧାନ, ତାହା ଯେ, ଯେ କୌଣସି ଲୋକର ନିଜ ଧର୍ମରୁହିଁ ଆରମ୍ଭ ହେବ, ଏହା ତ ସ୍ୱାଭାବିକ କଥା । ମନେ ପଡୁଛି ମିଡିଲ ସ୍କୁଲର ଛାତ୍ର ଥିଲାବେଳେ ହିଁ, ସେ କାଳରେ ପରି–ପ୍ରଗ୍ଭରିତ–ମହିମ ଶ୍ରୀମତ ସ୍ୱାମୀ ନିଗମାନନ୍ଦ ସରସ୍ୱତୀଙ୍କର ବଙ୍ଗ–ଭାଷା–ଲିଖିତ ପ୍ରାୟ ସମସ୍ତ ପୁସ୍ତକ, ନିଜ ବ୍ୟୟରେ ସୁଦୂର ଆସାମରୁ ମଗାଇଁ, ଅତ୍ୟନ୍ତ ମନଯୋଗଦେଇ ଏ ଲେଖକ ପଢି ଗ୍ଭଲିଥିଲା । ତା ପରେ ଆସିଲା ରାମକୃଷ୍ଣ ବିବେକାନନ୍ଦଙ୍କ ପ୍ରଭାବ । ମୂଳ ବଂଗଳାରେ ରାମକୃଷ୍ଣ କଥାମୃତ ଏବଂ ବଙ୍ଗଳା ଓ ଇଂରାଜୀରେ ଲିଖିତ ରାମକୃଷ୍ଣ–ବିବେକାନନ୍ଦଙ୍କ ଜୀବନୀକୁ, ଲେଖକ କେତେଥର ଯେ ପୁନରାବୃତ୍ତିର ଦୁଃସହତା ପରିବର୍ତ୍ତରେ ଆନନ୍ଦୋଜ୍ଜ୍ୱଳ ଉତ୍ସାହରେ ପାଠ କରିଛି ତାହା ଅଗଣ୍ୟ କହିଲେ ମଧ୍ୟ ବୋଧହୁଏ ଅତ୍ୟୁକ୍ତି ହେବନାହିଁ ।"(5)

॥ ମାନସିଂହଙ୍କ ବିଗ୍ରହଧାରା ॥

ମାନସିଂହଙ୍କ ପରିବେଶ ଥିଲା ଏକ ବଦ୍ଧ ପରିବେଶ । ପାରମ୍ପାରିକଭାବେ ଯାହା ଚଳି ଆସିଛି, ଯାହା ମହାଜନମାନଙ୍କ ଦ୍ୱାରା ସ୍ୱୀକୃତ ହୋଇ ଆସିଛି ସେ ସବୁକୁ ଗ୍ରହଣ କରିନେବା ଗ୍ରାମୀଣ ଜୀବନର ହେଉଛି ଆଦର୍ଶ । ବାଲ୍ୟକାଳରୁ ମାନସିଂହ କିନ୍ତୁ ଜୀବନକୁ ପ୍ରଶ୍ନହୀନ ଭାବରେ ଦେଖି ନାହାନ୍ତି, ବିଶ୍ୱାସ ଓ ଆଦର୍ଶ ଏଇ ଉଭୟ ଭିତରେ ଥିବା ଦ୍ୱୈତତାର ଅନୁଭବ ତାଙ୍କର ଜିଜ୍ଞାସାବୋଧକୁ କରିଛି ଉନ୍ମେଷିତ । ଜୀବନର ପ୍ରଥମ ପର୍ଯ୍ୟାୟରୁ ଧର୍ମ ଓ ଭଗବାନଙ୍କ ପ୍ରତି ତାଙ୍କର ଦୃଷ୍ଟିକୋଣ ପାରମ୍ପାରିକ ବିଶ୍ୱାସ ଠାରୁ ବିଚ୍ଛିନ୍ନ ନ ହେଲେ ବି ବିଥିତ ଦୂରବର୍ତ୍ତୀ ହୋଇ ପଡିଛି । ପ୍ରକୃତିର ସ୍ୱାଭାବିକ କ୍ରିୟାକୁ ସେ ଧର୍ମ ଭାବରେ ହିଁ ବୁଝିଥିଲେ । ପରଧର୍ମ ପ୍ରବନ୍ଧରେ ସେ ଉଲ୍ଲେଖ କରିଥିଲେ ଯେ, —"ବିଧାତାଙ୍କ ସୃଷ୍ଟିର କୌଶଳ ଏହି ଯେ, ଏହା ଅଲଙ୍ଘ୍ୟ ନିୟମାବଳୀ ଉପରେ ପ୍ରତିଷ୍ଠିତ ଓ ଗ୍ରଥିତ । ବିରାଟ ଜ୍ୟୋତିଷ୍କମାନଙ୍କଠାରୁ ଆରମ୍ଭକରି ନଗଣ୍ୟତମ କୀଟ ପର୍ଯ୍ୟନ୍ତ ସମସ୍ତଙ୍କୁ ଏହି ନିୟମର ଶାସନ ମାନିବାକୁ ହୁଏ । ସୃଷ୍ଟିର ପ୍ରତ୍ୟେକ ଉପାଦାନ ପାଇଁ ତାର ନିଜର ଗୋଟିଏ ସ୍ୱତନ୍ତ୍ର ପରିଧି ଅଛି । ଏହି ପରିଧି ଏହାର ବିକାଶ ପାଇଁ ଯଥେଷ୍ଟ । ଏହି ସୀମା ଲଙ୍ଘନ କଲେ ଏହାର ବିକାଶ ତ ସମ୍ଭବ ନୁହେଁ, ବିନାଶ ନିଶ୍ଚିତ । ନିଜର ସୀମା ମଧ୍ୟରେ ରହି ନିଜକୁ ବିକଶିତ କରିବାର ନାମ ଧର୍ମ ।"(6) ମାନସିଂହଙ୍କ ବିଗ୍ରହରେ ସ୍ୱାତନ୍ତ୍ର୍ୟ ହିଁ ସୃଷ୍ଟିର ଧର୍ମ । ଏହି ଧର୍ମ ହିଁ ଏହି ଧରଣୀକୁ ଧରି ରଖିଛି । ମଣିଷ ନିଜର ସ୍ୱାର୍ଥ ସାଧନ କରିବା ପାଇଁ ଧର୍ମକୁ ନିଜର ସୁବିଧା ଅନୁସାରେ ପ୍ରୟୋଗ କରି ଆସିଅଛି । ସ୍ୱାର୍ଥ ସର୍ବସ୍ୱ ମଣିଷ, ରାମକୃଷ୍ଣ ବିବେକାନନ୍ଦ ଓ ନିଗମାନନ୍ଦଙ୍କ ପରି ସାଧକମାନଙ୍କୁ ଗାଲ ଗଳ୍ପରେ ପରିଣତ କରିଦେଇଛନ୍ତି । ଠାକୁର ରାମକୃଷ୍ଣ ପରମହଂସ ଓ ସ୍ୱାମୀ ବିବେକାନନ୍ଦଙ୍କ ସମ୍ପର୍କରେ ମାନସିଂହ ଲେଖିଛନ୍ତି:—"ଏଠାରେ କହି ରଖେ ଯେ, ବିଶ୍ୱର ସମଗ୍ର ଧର୍ମୀୟ ଇତିହାସରେ ଏହି ଦୁଇଟି ଅତୁଳନୀୟ ଓ ଅ-ପଟାନ୍ତର-ନାସ୍ତି ଗୁରୁ ଶିଷ୍ୟଙ୍କୁ ବଙ୍ଗାଳୀ-ଲେଖକ-ଭାଇମାନେ ଯେପରି ଭାବରେ ଗାଲ-ଗଳ୍ପ-ଖଚିତ ପୁରାଣରେ ପରିଣତ କରି ପାରିଛନ୍ତି, ଏ ଲେଖକର ହେତୁବାଦୀ ଚିତ୍ତ ତାହାକୁ ତ ଗ୍ରହଣ କରିପାରି ନାହିଁ, ବରଂ ଏ ପ୍ରକାର ପ୍ରଚେଷ୍ଟାର ଅନୌଚିତ୍ୟକୁ ଅନ୍ତରର ସହିତ ଘୃଣା କରି ଆସିଛି ।"(7)

ଧର୍ମଚର୍ଚ୍ଚାର ଅଭ୍ୟାସ ମାନସିଂହଙ୍କର ଆଦ୍ୟଜୀବନରୁ ରହିଆସିଛି ବୋଲି ପୂର୍ବରୁ ସୂଚନା ପ୍ରଦାନ କରାଯାଇଛି । ସେ ଖୋର୍ଦ୍ଧା ହାଇସ୍କୁଲରେ ଅଧ୍ୟୟନ କରିବା ସମୟରେ ତାଙ୍କର ଜଣେ ହିତାକାଙ୍କ୍ଷୀ ଶିକ୍ଷକ ମାନସିଂହଙ୍କ ସମେତ କେତେକ ଛାତ୍ରଙ୍କୁ ଗୀତା ପାଠଚକ୍ରରେ ସଂପୃକ୍ତ କରାଇଥିଲେ । ସେତେବେଳେ ସଂସ୍କୃତ ଜ୍ଞାନ ଓ ସ୍ୱତଃସ୍ଫୂର୍ତ୍ତ ଜିଜ୍ଞାସାର ଅଭାବରୁ ସେ ଚର୍ଚ୍ଚା ତାଙ୍କୁ ବିଶେଷ ଆକୃଷ୍ଟ କରି ନଥିଲା । କଲେଜ ଛାତ୍ର ଜୀବନାରମ୍ଭ ଓ ତାପରେ ଆସିଥିବା ମୋହ-ନାଶକ ଅଭିଜ୍ଞତା ସବୁରୁ ଓ ପରେ ମହାତ୍ମାଗାନ୍ଧୀଙ୍କର ଗୀତାପ୍ରତି ଶ୍ରଦ୍ଧାରେ ଅନୁପ୍ରାଣିତ ହୋଇ ସେ ଗୀତା ଚର୍ଚ୍ଚା ଆରମ୍ଭ କରିଥିଲେ ।

ମାନସିଂହଙ୍କର ହାଇସ୍କୁଲ ଜୀବନ ଶେଷ ପର୍ଯ୍ୟନ୍ତ ପାରମ୍ପରିକ ହିନ୍ଦୁଧର୍ମର ଆସ୍ଥର ବ୍ୟବହାର ପ୍ରତି ଆସ୍ଥାଥିଲା; ମାତ୍ର ସେ ହାଇସ୍କୁଲ ଛାଡି ରେଭେନ୍ସା କଲେଜ ଲାଇବ୍ରେରୀ ସହିତ ପରିଚିତ ହେଲାପରେ, ଧର୍ମ

ସଂପର୍କରେ ତାଙ୍କର ଧାରଣାର ବିରାଟ ପରିବର୍ତ୍ତନ ହେଲା । ବିଶ୍ୱାସ ସହିତ ଜ୍ଞାନ ଓ ବୁଦ୍ଧିର ସଂଘର୍ଷ ହେବାବେଳେ ବିଶ୍ୱାସ ଆପେ ଆପେ ଜ୍ଞାନ ନିକଟରେ ପରାଜୟ ବରଣ କରିଥାଏ । ମାନସିଂହ କହନ୍ତି:—"ସେଥିରେ ଏକ ସହଜାତ ହେତୁବାଦ ପ୍ରବଣତା ଅଛି । ଆମେ ସାଧାରଣତଃ ଭୁଲିଯାଉ ଯେ ଆମେ ଆଜି ସଂପୂର୍ଣ୍ଣ ହେତୁବାଦ—ପ୍ରତିଷ୍ଠ ମାନବେତି—ହାସର ଶ୍ରେଷ୍ଠଜ୍ଞାନୋଜ୍ଜ୍ୱଳ ବୈଜ୍ଞାନିକ ଯୁଗରେ ଜନ୍ମ ହୋଇଛେ । ଏ ସେହି ଯୁଗ, ଯେଉଁଠି ମନୁଷ୍ୟ ପୃଥିବୀ ଜୟ କରିପାରିଲା ପରେ ଗ୍ରହ ଉପଗ୍ରହକୁ ଜୟ କରିବାକୁ ଯାଉଛି, କେବଳ ଜ୍ଞାନ ବଳରେ ।"(୪)

କବିତା ରଚନା ଓ ସାହିତ୍ୟ ଚର୍ଚ୍ଚା ମଧ୍ୟଦେଇ, ମାନସିଂହ 'ଉତ୍କଳ ସାହିତ୍ୟ'ର ସମ୍ପାଦକ ବିଶ୍ୱନାଥ କରଙ୍କର ପରିଚୟରେ ଆସନ୍ତି । ବିଶ୍ୱନାଥ କରଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଓ ସମ୍ମାନ ତାଙ୍କୁ ବ୍ରାହ୍ମଧର୍ମ ପ୍ରତି ଆକୃଷ୍ଟ କରିଥିଲା । ସମକାଳରେ ତାଙ୍କର ବନ୍ଧୁଥିଲେ, ପରବର୍ତ୍ତୀକାଳର କମ୍ୟୁନିଷ୍ଟ ନେତା ଭଗବତୀଚରଣ ପାଣିଗ୍ରାହୀ । ଭଗବତୀ ବାବୁ କଲେଜ ଅଧ୍ୟୟନ କାଳରୁ ପାରମ୍ପରିକ ହିନ୍ଦୁ ଧର୍ମର ଜନ୍ମଗତ—ପୌରୋହିତ୍ୟ, ଜାତି—ପ୍ରଥା, ଅସ୍ପୃଶ୍ୟତା ଓ ପୌତ୍ତଳିକତା ପ୍ରଭୃତି ଅଣ—ହେତୁକ ସଂସ୍କାର ପ୍ରତି ବିତସ୍ପୃହ ହୋଇ ବ୍ରାହ୍ମଧର୍ମ ପ୍ରତି ଆକୃଷ୍ଟ ହୋଇଥିଲେ । ସେ ସମୟରେ ଭଗବତୀ ବାବୁ ଓ ମାନସିଂହ ହିନ୍ଦୁଧର୍ମ ତ୍ୟାଗକରି ବ୍ରାହ୍ମଧର୍ମ ଗ୍ରହଣ କରିବା ପାଇଁ ବିଶ୍ୱନାଥ କରଙ୍କ ଠାରୁ ବ୍ରହ୍ମଧର୍ମ ସଂପର୍କରେ ପୁସ୍ତକାଦି ଆଣି ପାଠ କରିଥିଲେ । ମାନସିଂହଙ୍କର ବିଶ୍ୱନାଥ କରଙ୍କ ସହିତ ପରିଚିତି ସାହିତ୍ୟ ଓ ଧର୍ମ ଉଭୟ ଦିଗରୁ ଘଟିଥିଲା । କବି ଜୀବନର ପ୍ରାରମ୍ଭରେ ସେ ନିଜେ ଥିଲେ ରବୀନ୍ଦ୍ର ଭକ୍ତ । ରବୀନ୍ଦ୍ରଙ୍କର ଅପୌତ୍ତଳିକ ଜୀବନଦେବତା ଓ ଧର୍ମ ବିଶ୍ୱାସ ମାନସିଂହଙ୍କର ତରୁଣ ପ୍ରାଣରେ ନୂତନ ଚେତନାର ଇନ୍ଦ୍ରଧନୁ ରଚନା କରିଥିଲା । ତେଣୁ ରବୀନ୍ଦ୍ର, ବିଶ୍ୱନାଥ ଓ ଭଗବତୀ ଏଇ ତିନିଜଣଙ୍କ ପ୍ରଭାବରୁ ହିନ୍ଦୁଧର୍ମ ପ୍ରତି ତାଙ୍କର ଦୃଷ୍ଟିକୋଣ ଜଟିଳ ହୋଇ ପଡିଥିଲା । ପରବର୍ତ୍ତୀ କାଳରେ ଲିଖିତ ତାଙ୍କର 'କମଳାୟନ' କାବ୍ୟରେ ଏହାର ପ୍ରତିକ୍ରିୟା ସ୍ପଷ୍ଟ ।

ଚିନ୍ତାରାଜ୍ୟରେ ପରିବର୍ତ୍ତନ ସଂଗେ ସଂଗେ ସେ ନିଜସ୍ୱ ଦୃଷ୍ଟିକୋଣରୁ ଧର୍ମକୁ ବିଗ୍ରହ କରିଛନ୍ତି । 'କୁଳଟା ରାଧା' କବିତାରେ ସେ ମାନବିକ ଦୃଷ୍ଟିକୋଣରୁ ରାଧାଙ୍କୁ ଅବଲୋକନ କରିଛନ୍ତି । ପ୍ରେମମୟୀ ରାଧା ଜଟିଳା—କୁଟିଳାଙ୍କ ଦୃଷ୍ଟିରେ ଦୋ—ଚାରୁଣୀ ହୋଇପାରନ୍ତି ମାତ୍ର କୃଷ୍ଣଙ୍କ ପ୍ରତି ତାଙ୍କର ଏକନିଷ୍ଠ ପ୍ରେମ ହିଁ କବିଙ୍କୁ ମୁଗ୍ଧ କରିଛି । ଅଗଣିତ ଭକ୍ତଙ୍କ ଦୃଷ୍ଟିକୋଣରୁ ମାନସିଂହଙ୍କ ଦୃଷ୍ଟିକୋଣ ସଂପୂର୍ଣ୍ଣ ଭିନ୍ନ । ସେ ଲେଖିଛନ୍ତି :—

"ଦଳେ ଦଳେ ଗୋପାଳୁଣୀ ଚଳିଲେ ଘରେ
ଟାହୁଲି କହନ୍ତି କେତେ ଏକ ଆନରେ ।
କବି କିନ୍ତୁ ନ ଗୁହିଁଲା ସେ ସତୀ ଜନେ
ପ୍ରଣତି ବିହିଲା ଦୋ—ଚାରିଣୀ ଚରଣେ ।"(୨)

'ଧୂପ'ର 'ପାପ ଓ ପ୍ରେମ' କବିତାରେ କବି ସମାଜପତିମାନଙ୍କ ବିରୋଧରେ ବିଦ୍ରୋହ ଘୋଷଣା କରିଛନ୍ତି । ସମାଜର ବଡପଣ୍ଡାମାନେ ଧର୍ମ, ଈଶ୍ୱର ଓ ନୈତିକତାର ଦୁହିଦେଇ, ମଣିଷର ପ୍ରେମକୁ, ହୃଦୟକୁ, ହତ୍ୟା କରନ୍ତି ।

ସେ ସଂପର୍କରେ ମାନସିଂହଙ୍କ ପ୍ରତିକ୍ରିୟା ଅତ୍ୟନ୍ତ ତୀବ୍ର ।(10) 'ଗୋପପ୍ରୟାଣ'କବିତାରେ ମାନସିଂହଙ୍କର ମତହେଲା– ଧର୍ମର ଯୋତଣୀ କେତେକ ସ୍ୱାର୍ଥପର ସମାଜପତିମାନଙ୍କର ରକ୍ଷା କବଚ ହୋଇଛି । ସେମାନେ ନିଜର ସୁଖ ସୁବିଧା ପାଇଁ ଧର୍ମକୁ ନାନା ଉପାୟରେ ଉପଯୋଗ କରୁଛନ୍ତି । ମାତ୍ର ମାନବର ଅସହାୟ ପ୍ରାଣର ସଖା ଗୋପବନ୍ଧୁ ସେମାନଙ୍କ ପରି ନୁହନ୍ତି । କବି କହିଛନ୍ତି:—

"ଧାର୍ମିକ ସବୁ ନିଜ ସୁଖ ଖାଲି
ଦେବତାରେ ଅଛୁ ମାଗି,
ପରସୁଖ ପାଇଁ ସେ ଡାକିଛି ତାର
ଦେବତା ରାତି ଜାଗି ।(11)

ମାନସିଂହଙ୍କ ଅନ୍ତର ଭିତରେ ପ୍ରାଚ୍ୟ ମନ ଓ ପାଶ୍ଚାତ୍ୟ ଜ୍ଞାନ ମଧ୍ୟରେ ଜୀବନର ଶେଷ ପର୍ଯ୍ୟନ୍ତ ଦ୍ୱନ୍ଦ୍ୱ ଦେଖା ଦେଇଛି । ଦୟାନନ୍ଦ ସରସ୍ୱତୀ,ରାଜା ରାମମୋହନ ରାୟ,ରାମକୃଷ୍ଣ ପରମହଂସ,ସ୍ୱାମୀ ବିବେକାନନ୍ଦ,ଯୋଗୀ ଅରବିନ୍ଦ ପ୍ରମୁଖ ଯୁଗପୁରୁଷମାନେ ଯେଉଁ ଧାରଣା ପ୍ରଦାନ କଲେ ତାଦ୍ୱାରା ମାନସିଂହ ପ୍ରଭାବିତ ହେଲେ ମଧ୍ୟ କବି ସୁଲଭ ଭାବ ପ୍ରବଣତା ମାନସିଂହଙ୍କ ପାଖରେ ଅଗ୍ରାଧିକାର ଲାଭ କରିଛି । ନାନା ଯୁକ୍ତି ମଧ୍ୟରେ ବି ଭାବ ପ୍ରବଣତା ରହି ଯାଇଛି । ଏଣୁ ଜୀବନର ଶେଷ ପର୍ଯ୍ୟନ୍ତ ସେ ଖାଲି ନାନା ପ୍ରଶ୍ନ ଓ ତାର ସମାଧାନ ପାଇଁ ବାଟ ଖୋଜି ସନ୍ତୁଳି ହୋଇଛନ୍ତି । ସାଧାରଣତଃ ଯୌବନାବସ୍ଥାରେ ଚିତ୍ତରେ ଗ୍ରନ୍ଥିଳ୍ୟ ଦେଖାଯାଏ,ଧର୍ମ ବା ଭଗବାନଙ୍କ ସଂପର୍କରେ ନାନା ଚିନ୍ତା ଆସି ପୁଣି ଉଭେଇ ଯାଏ । ଏହି ସମୟରେ ଯୁକ୍ତିବାଦୀ ମନ ନାନା ନୂଆ ଚିନ୍ତାର ଆଶ୍ରୟ କରି ପରୀକ୍ଷା ନିରୀକ୍ଷା କରେ । ଧର୍ମ ଚର୍ଚ୍ଚା କ୍ଷେତ୍ରରେ ଏ ସମୟରେ ଭାବପ୍ରବଣତା ଦେଖା ଦେଇଥାଏ । କିନ୍ତୁ ସାମାଜିକ ପରିବେଶ ଅନୁସାରେ ମାନସିଂହଙ୍କ ମନ,ନିଜର ଅଭାବ,ନିଜର ଦୁର୍ଦ୍ଦଶା ବା ପ୍ରେମ ବ୍ୟାପାରରେ ନିଜକୁ ଦୋଷୀ କରିବାକୁ ଲାଗିଛି;ତେଣୁ ସେ ଭଗବାନଙ୍କ ଉପରେ ଆସ୍ଥା ରଖିଲେ ମଧ୍ୟ,ସବୁବେଳେ ପିତୁଳା ପୂଜାକୁ ଅସ୍ୱୀକାର କରିଛନ୍ତି ।

'ପଙ୍ଗୁର ଭିକ୍ଷା' କବିତାରେ କବିଙ୍କର ଅସହାୟ ଭାବ ସ୍ପଷ୍ଟ ଭାବରେ ପ୍ରତିଫଳିତ ହୋଇଛି । କବି ବିକଳ ଭାବରେ ପ୍ରାଣର ଦେବତାଙ୍କୁ ଆଶାପାଇଁ ନିବେଦନ କରି କହିଛନ୍ତି :—

"ସକଳ ଯେବେ ଯିବେ ହେ ଏକା କରି
ପ୍ରଭୁହେ ଯାଇଁ ଡାକିବି ପାଦ ଧରି
ଦେବକି ନାହିଁ ଚରଣେ ତବ ଥାନ
ହେ ମୋର ପ୍ରଭୁ ବ୍ରହ୍ମାଣ୍ଡ ପାବନ ?"(12)

ମାତ୍ର 'ଶୁଣନା କିଆଁ' କବିତାରେ କବିଙ୍କର ଈଶ୍ୱର ନାମ ଓ ସ୍ଥାନର ଉଲ୍ଲେଖରେ । ତଥାପି କୌଣସି ଏକ ଅଜଣା ଶକ୍ତିର ନିକଟରେ କବି ନିଜର ପ୍ରାଣର ବେଦନାକୁ ଉପସ୍ଥାପନ କରିଛନ୍ତି । ପ୍ରାଣର ବ୍ୟଥିତ ଅଶ୍ରୁପାତରେ ଦୁର୍ବିସହ ଜୀବନର ବେଦନାକୁ ବର୍ଣ୍ଣନା କରି ସେହି ଅନନ୍ତଶକ୍ତି ନିକଟରେ ପ୍ରାଣକୁ ସମର୍ପଣ କରିବାର କାମନା କରି ଲେଖିଛନ୍ତି :—

॥ ମାନସିଂହଙ୍କ ବିଗ୍ରହଧାରା ॥

"ଜୀବନ ଫୁଲ ମୋର
ଚରଣ ତଳ–ଧୂଳିରେ ପଡି
ହେଉହେ ମୁକ୍ତି ଭୋଳ ।
ଏଇ ଚ ଭିକ୍ଷା ହରି
ଶୁଣନ କିଆଁ କହ, କି ଆତଂକେ ଡରି"(13)

'ପ୍ରାର୍ଥନା' କବିତାରେ କବିଙ୍କର ଈଶ୍ୱର ବିଶ୍ୱାସ ସଂପର୍କରେ ସ୍ପଷ୍ଟ କଥା ରହିଛି । କବି କଠୋର ଜୀବନ ରଣରେ ନିତ୍ୟ ପରାହତ । କବି ଦୁର୍ବଳ,ଦରିଦ୍ର ଓ ସର୍ବଦା ଦୁଃଖୀ ହୋଇ ମଧ୍ୟ ଦେବତାଙ୍କର ଅନୁଗ୍ରହ ଜାଣି ନ ପାରିଥିବାରୁ ପ୍ରାୟତଃ ଚିନ୍ତିତ । ପ୍ରତ୍ୟହ ଚୌଦିଗରେ ଜୀବ ଜଗତର ଯେଉଁ ହାହାକାର ଉଠୁଛି,ସେଥିରେ କିଏବା ବିଶ୍ୱାସ କରିବ ଯେ, ଜଣେ ଶିବ ଶୁଭଙ୍କର ସ୍ରଷ୍ଟାଙ୍କର ଉପସ୍ଥିତି ବାସ୍ତବ । ସମୟେ ସମୟେ କବି ଭାବନ୍ତି, ଯେ କେହି ଜଣେ ସ୍ରଷ୍ଟା ଅଛନ୍ତି ଯେ ଏହି ଶୋକ ସନ୍ତପ୍ତ ମନୁଷ୍ୟର କଥାକୁ ବୁଝୁଛନ୍ତି ।(14)

ପୌତ୍ତଳିକତା ସଂପର୍କରେ ଉଲ୍ଲେଖ କରି ମାନସିଂହ କହନ୍ତି:–"ପୌତ୍ତଳିକତା ସାଧାରଣତଃ ଧର୍ମ ଭାବକୁ ସଂକୀର୍ଣ୍ଣ କରେ । ଭଗବାନ ଯେ ସର୍ବବ୍ୟାପୀ,ସବୁ ଦେଶର,ସବୁ କାଳର,ଏହି ଅନନ୍ତ ବିଶ୍ୱକୁ ବ୍ୟାପି ରହି ଅଛନ୍ତି,ଏ ଧାରଣା ପ୍ରତିମା ପୂଜାରୀର ମନକୁ ସହଜରେ ଆସେ ନାହିଁ । ପୁରୋହିତ ଓ ପ୍ରତିମା ପ୍ରପୀଡିତ ଏ ଦେଶରେ, ଏ ବାକ୍ୟର ଦୃଷ୍ଟାନ୍ତ ଖୋଜିବାକୁ ହେବ ନାହିଁ । ରାମାନୁଜୀ,ଶାକ୍ତ,ଶୈବ,ଦ୍ୱୈତ–ଅଦ୍ୱୈତ–ବିଶିଷ୍ଟାଦ୍ୱୈତ–କେତେମତ କେତେପଥ । ଏମାନେ ପ୍ରତ୍ୟେକ ଏକ ଏକ ଈଶ୍ୱର ସୃଷ୍ଟି କରି ଅଛନ୍ତି ଏବଂ ପ୍ରତ୍ୟେକର ଦେବତା ଅନ୍ୟ ଦେବତାର ଶତ୍ରୁ ।"(15) ଏହି ସଂକୀର୍ଣ୍ଣ ପରିଧି ମଧ୍ୟରୁ ବାଦଯାଇ,ଯେଉଁ କେତେଜଣ ଭକ୍ତ ସାଧକ,ଦିବ୍ୟ ଜ୍ଞାନ ଲାଭ କରି ଅଛନ୍ତି ସେମାନଙ୍କୁ ମାନସିଂହ ସଶ୍ରଦ୍ଧ ଚିତ୍ତରେ ସ୍ମରଣ କରିଛନ୍ତି । କବି ଗୋପାଳ କୃଷ୍ଣ ,ମାନସିଂହଙ୍କ ଦୃଷ୍ଟିରେ ଜଣେ ଦିବ୍ୟଦୃଷ୍ଟି ସଂପନ୍ନ ଭକ୍ତ । ଲୌକିକ ପୌତ୍ତଳିକତା ଓ ସଂକୀର୍ଣ୍ଣ ଧର୍ମ ବିଶ୍ୱାସର ଉପରକୁ ଉଠି ସେ କିପରି ବିଶ୍ୱଭାବ ସବୁ ଉପଲବ୍ଧ କରିଅଛନ୍ତି,ତାହା ଜାଣି କବି ଆଶ୍ଚର୍ଯ୍ୟ ହୋଇଛନ୍ତି । କବି ଗୋପାଳକୃଷ୍ଣଙ୍କ ସଂପର୍କରେ ମାନସିଂହ ଯାହା ମନ୍ତବ୍ୟ ଦେଇଛନ୍ତି,ତାହା ମାନସିଂହଙ୍କର ଧର୍ମ ଭାବକୁ ହିଁ ବ୍ୟକ୍ତ କରୁଅଛି । ସେ ପୁନଶ୍ଚ କହିଛନ୍ତି:–"ଈଶ୍ୱର କଳ୍ପନାରେ ବିଶ୍ୱଜନୀନତା,ଭଗବତ ନିବେଦନରେ ଗଭୀର ଅନୁଭୂତି,ଆଶା–ନିରାଶା,ଗର୍ବ–ଆତ୍ମସମର୍ପଣ ପ୍ରଭୃତି ନାନା ଭାବର ଏପରି ପ୍ରାଞ୍ଜଳ ପ୍ରକାଶ ଦେଖିଲେ ନିଃସଂଦେହରେ କୁହାଯାଇ ପାରେ ଯେ,କବି ଆଉ କିଛି ବର୍ଷ ପରେ ଜନ୍ମ ହୋଇ ପାଶ୍ଚାତ୍ୟ ଶିକ୍ଷା ଲାଭ କରିଥିଲେ,ଏ ଦେଶରେ ଦ୍ୱିତୀୟ ଗୀତାଞ୍ଜଳି ଲେଖିପାରିଥାନ୍ତେ ।"(16)

ମାନସିଂହ ସମ୍ୟ ସମୟରେ ଈଶ୍ୱରଙ୍କୁ ସର୍ବଭୂତରେ ପ୍ରତ୍ୟକ୍ଷ କରିବା ପାଇଁ ଚାହିଁଛନ୍ତି; ଯେପରି 'ମହାନଦୀରେ ଜ୍ୟୋତ୍ସ୍ନାବିହାର' କବିତାରେ ବ୍ରାହ୍ମଧର୍ମରେ ଅନୁପ୍ରାଣିତ ହୋଇ ପ୍ରକୃତି ମଧ୍ୟରେ ସତ୍ୟ–ଶିବ–ସୁନ୍ଦରର ସଂଧାନ କରିଛନ୍ତି,ସେହିପରି କେଉଁଠି ଭଗବାନଙ୍କୁ ରକ୍ତମାଂସର ଶରୀର ମଧ୍ୟରେ,ମାନବିକ ପ୍ରବୃତ୍ତି ସମ୍ବଳିତ ଜୀବନ୍ତ ସତ୍ତା ଭାବରେ ଅନୁଭବ କରିଛନ୍ତି । ପ୍ରାଚୀନ ଓଡିଆ ସାହିତ୍ୟ ସଂପର୍କରେ ଚର୍ଚ୍ଚା କରିବାକୁ ଯାଇ ସେ କହନ୍ତି:—

॥ ମାନସିଂହଙ୍କ ବିଗ୍ରହଧାରା ॥

"କିନ୍ତୁ ଭଗବାନଙ୍କ ସଂଗରେ ଭକ୍ତର ଯେ ବ୍ୟକ୍ତିଗତ ସମ୍ବନ୍ଧ, ଯାହା ମାନ, ଅଭିମାନ, କ୍ରୋଧ, ନୈରାଶ୍ୟ ମଧ୍ୟରେ ମନୋହର ଭାବରେ ପ୍ରକାଶ ପାଏ, ତା ଜଗନ୍ନାଥ ଦାସଙ୍କ ଭାଗବତରେ ତ ନାହିଁ, ଓଡିଆ ସାହିତ୍ୟରେ ଅନ୍ୟ କୌଣସି ଠାରେ ଅଛି କି ? କବୀର ଓ ରବୀନ୍ଦ୍ରନାଥଙ୍କ ପଦାବଳୀରେ ଭଗବତ ପ୍ରେମର ଯେ ମଧୁର ଅଭିବ୍ୟକ୍ତି ହୋଇଅଛି, ତା ପ୍ରାଚୀନ ଓଡିଆ ସାହିତ୍ୟରେ କୌଣସିଠାରେ ଅଛି କି ? ବୈଷ୍ଣବ କବିଗଣ ବ୍ୟକ୍ତିଗତ ଅନୁଭୂତିକୁ ରାଧା ଓ କୃଷ୍ଣଙ୍କର ମୁଖରେ ବ୍ୟକ୍ତ କରି ଅଛନ୍ତି । ଏଇ କବିତାର ଅଧିକାଂଶ କେବଳ ଦେବାଦେବୀ ଓ ରାଧାକୃଷ୍ଣଙ୍କର ସ୍ତୁତି-ଅର୍ଥାତ ରୂପ ବର୍ଣ୍ଣନା ଓ ଗୁଣ ବର୍ଣ୍ଣନା ।"(17)

ଭାରତୀୟ ମନୀଷାରେ ଧର୍ମ ଓ ସାହିତ୍ୟ ଘନିଷ୍ଠ ଭାବରେ ସଂପୃକ୍ତ । ମାନସିଂହ ଆଦ୍ୟ ଯୌବନରେ ରବୀନ୍ଦ୍ରନାଥଙ୍କ କବିତାର ଥିଲେ ମୁଗ୍ଧ ପାଠକ । ରବୀନ୍ଦ୍ର କବିତା ମଧ୍ୟଦେଇ, ରବୀନ୍ଦ୍ର ଧର୍ମ ଦର୍ଶନ ସହିତ ତାଙ୍କର ପରିଚିତି । ପାରିବାରିକ ସୂତ୍ରରୁ ବ୍ରାହ୍ମଧର୍ମର ଆଦର୍ଶ ଓ ଉପନିଷଦୀୟ ଭାବାଦର୍ଶ ରବୀନ୍ଦ୍ରମାନସ କ୍ଷେତ୍ରରେ ପ୍ରମୁଖ ସ୍ଥାନ ମାଡିବସିଥିଲା । କିନ୍ତୁ ରବୀନ୍ଦ୍ରଙ୍କୁ ଯାହା ବେଶି ପ୍ରଭାବିତ କରିଥିଲା, ଜୀବନର ଗଭୀରତମ ତାତ୍ପର୍ଯ୍ୟ ଶିଖାଇଥିଲା, ସେ ହେଉଛି ବଂଗଳାର ଲୋକ ଜୀବନ ଓ ଲୋକାୟତ ସଂସ୍କୃତି । ତେଣୁ ବାଉଲ ମାନଙ୍କର ସଂଗୀତ ତାଙ୍କୁ ଗଭୀର ଭାବରେ ଅନୁପ୍ରାଣିତ କରିଥିଲା । ରବୀନ୍ଦ୍ରଙ୍କ ଜୀବନ ଦେବତା ଯେମିତି କୌଣସି ପ୍ରତିମାରେ ଆବଦ୍ଧ ନୁହେଁ, ସେ ଅରୂପ ରତନ । ସହଜରେ ଦେଶରୁ ଦେଶାନ୍ତରକୁ, ନଗରୁ ନଗାନ୍ତରକୁ ସେ ଘୂରିପାରେ, ସେ ସର୍ବବ୍ୟାପୀ, କିନ୍ତୁ ଲୌକିକ ଜୀବନର ପୂର୍ଣ୍ଣ ଅନୁଭବ ବିନା ସେ ଅଲୌକିକତା ପୂର୍ଣ୍ଣତା ଲାଭ କରିପାରେ ନାହିଁ । ସେ କେବଳ ଆଉଲ, ବାଉଲ, ଦରବେଶ ଭଳି ପାନ୍ଥଜନ ମାନଙ୍କର ସଖା ନୁହନ୍ତି, ସ୍ୱୟଂ ପାନ୍ଥ । ଲୋକ ସଂଗ୍ରହାର୍ଥେ ତାଙ୍କ ମନରେ ଗଭୀର ଅତୃପ୍ତି । ତେଣୁ ବାରମ୍ବାର ସେ ପଥିକ ସାଜନ୍ତି, ଗଭୀର ଅତୃପ୍ତି ନେଇ । ମାନସିଂହ ସଚେତନ ଭାବରେ ରବୀନ୍ଦ୍ରନାଥଙ୍କର ଏହି ଧର୍ମାଦର୍ଶକୁ ଓ ଜୀବନ ଦେବତା ତତ୍ତ୍ୱକୁ ଗ୍ରହଣ କରି ନଥିଲେ କିନ୍ତୁ ବ୍ରାହ୍ମଧର୍ମ ପ୍ରତି ଆକର୍ଷଣ, ଏକ ରୋମାଣ୍ଟିକ କବି ପ୍ରାଣର ମୁକ୍ତି ଲାଭ ଜନିତ ଆକାଙ୍କ୍ଷା, ତାଙ୍କୁ ରବୀନ୍ଦ୍ରନାଥଙ୍କର ନିକଟବର୍ତ୍ତୀ କରାଇଥିଲା । ରବୀନ୍ଦ୍ରନାଥ ଯେଉଳି ବୈଷ୍ଣବ କବିମାନଙ୍କର କବିତାର ଅନ୍ତରାଳରେ ଜୀବନର ରସଘନ ରୂପକୁ ପ୍ରତ୍ୟକ୍ଷ କରିପାରିଥିଲେ, ମାନସିଂହ ପୋଲକୃଷ୍ଣଙ୍କ ପଦ୍ୟାବଳୀ ଭିତରେ ତାହାହିଁ ଅନୁଭବ କରିଛନ୍ତି ।

ମାନସିଂହ ତାଙ୍କର ସମକାଳୀନ ଦିବ୍ୟଦ୍ରଷ୍ଟା, ମହାପୁରୁଷମାନଙ୍କଠାରେ ଈଶ୍ୱରଙ୍କ ସ୍ୱରୂପ ଅନୁଭବ କରିଛନ୍ତି । ପୁରାଣର ଚରିତ୍ର ଶ୍ରୀକୃଷ୍ଣ ଓ ଇତିହାସର ଚରିତ୍ର ଗାନ୍ଧୀ ଗୋପବନ୍ଧୁଙ୍କୁ ଈଶ୍ୱରଙ୍କର ଅଂଶ ବିଶେଷ ଭାବରେ ତୁଳନା କରି ମାନସିଂହ କହନ୍ତି:—"ଆମେ ଗାନ୍ଧୀ ଗୋପବନ୍ଧୁଙ୍କୁ ଯେଉଁ ପ୍ରାଣପୂଜା ଦେଉ, ତାହା କେବଳ ଅନୁରାଗିଣୀ ପ୍ରଣୟିନୀର ପ୍ରିୟଜନ ପ୍ରତି ଯେଉଁ ସରାଗ, ସେହି ଶ୍ରେଣୀର ଅନୁଭବ ସିନା; ତାହାରତ ଅନ୍ୟ ପ୍ରକାର ନାହିଁ । ଏଇ ଗାନ୍ଧୀ ଗୋପବନ୍ଧୁଙ୍କ କଥା ଭାବିଲାବେଳେ, ଭାଗବତ ବର୍ଣ୍ଣିତ ରାସଲୀଳାର ବ୍ୟଞ୍ଜନାତ୍ମକ ଅର୍ଥ ଯେପରି ଖୋଲିଯାଏ ଓ ତାହା ସତ୍ୟବୋଲି ପ୍ରତୀତ ହୋଇ ଉଠେ । ଷୋଳ ସହସ୍ର ଗୋପନାରୀ ଏକ ପରମ ସୁନ୍ଦର ସକଳ ଗୁଣ ଭୂଷିତତରୁଣ ପ୍ରତି ଅନୁରାଗ ସଞ୍ଚାର କରିବା ମିଥ୍ୟା ବା ଅବାସ୍ତବ କିପରି ହେବ, ଯେତେବେଳେ ଆମେ ଆଖି ଆଗରେ ଦେଖୁଛୁ, ଜଣେ ଗାନ୍ଧୀ ବା ଜଣେ ଗୋପବନ୍ଧୁଙ୍କ ପ୍ରତି ଲକ୍ଷ ଲକ୍ଷ ଲୋକର ପ୍ରଗାଢ ସପ୍ରେମ ମମତା ।"(18)

॥ ମାନସିଂହଙ୍କ ବିଶ୍ୱରଧାରା ॥

ଭଗବାନଙ୍କ ସ୍ୱରୂପ ସଂପର୍କରେ 'ନିର୍ଦ୍ଦିତ ଭଗବାନ' ଏକ ପ୍ରତିନିଧି ସ୍ଥାନୀୟ କବିତା । ପାରିପାର୍ଶ୍ୱିକ ଅବସ୍ଥା ମଣିଷକୁ ନାନା ପଥର ଯାତ୍ରୀ କରାଏ । ବାଲ୍ୟ କାଳରୁ ଧର୍ମ ଓ ଭଗବାନଙ୍କ ଉପରେ ଆସ୍ଥା ସ୍ଥାପନ କରିଥିବା ବ୍ୟକ୍ତି, ସହଜରେ ପୂର୍ବ ସଂସ୍କାର ତ୍ୟାଗ କରିପାରେ ନାହିଁ । ସେହି ହେତୁ ଏପରି ପରିବେଶ ପହୁଁଚେ, ସେତେବେଳେ ସେ ନିଜର କାର୍ଯ୍ୟକୁ ଅବିଶ୍ୱାସ ଚକ୍ଷୁରେ ଦେଖେ । 'ନିର୍ଦ୍ଦିତ ଭଗବାନ' କବିତା ସେହିପରି ଏକ ଅନୁତପ୍ତ ପ୍ରାଣର ଭାଷା । ଏ କବିତା ପ୍ରଥମେ ଉତ୍କଳ ସାହିତ୍ୟ'ରେ ନଭେମ୍ବର ।୨୨୫ ସଂଖ୍ୟାରେ ପ୍ରକାଶିତ ହୋଇ ଥିଲା । ପରବର୍ତ୍ତୀ ସମୟରେ ମାନସିଂହ ଏହି କବିତାର ଅନେକ ଅଂଶ ପରିବର୍ତ୍ତନ କରିଛନ୍ତି ଓ ମୂଳ କବିତାର ଚବିଶ ଟି ଧାଡିକୁ ମୂଳ କବିତାରୁ ସଂପୂର୍ଣ୍ଣ ବାଦ ଦେଇଛନ୍ତି ।(୧୨·ସୂଚନାରେ ବାଦ ପଡିଥିବା ଅଂଶ ପ୍ରଦାନ କରାଯାଇଅଛି) ମୂଳ କବିତା ଅନୁଧ୍ୟାନ କଲେ ଜଣାଯାଏ ଯେ, ଛାତ୍ର ଜୀବନରେ ସମବୟସୀ ନାରୀ ସହିତ ପ୍ରେମ ଓ ସେ ସଂପର୍କୀୟ ପ୍ରତିକ୍ରିୟାରୁ ଏ କବିତାର ସୃଷ୍ଟି । ପ୍ରୋକ୍ତ ଘଟଣା ପରେ ପରେ ଅମୃତର ସନ୍ତାନ ଭାବରେ ଏ ପଦସ୍ଖଳନକୁ ନେଇ ସେ ଭୀଷଣ ଭାବରେ ପ୍ରତିକ୍ରିୟା ପ୍ରକାଶ କରିଛନ୍ତି । ପୋଟିଏ ସ୍ନେହ କାଙ୍ଗାଳ ପ୍ରାଣଚଞ୍ଚଳ କିଶୋରର କ୍ରିୟାଯେ ଏକ ନର୍କ ପଥର ଯାତ୍ରା ଭାବରେ ପ୍ରମାଣିତ ହେବ, ସେ କଥା ମାନସିଂହ ପୂର୍ବରୁ କଳ୍ପନା କରିପାରି ନଥିଲେ । ଦେବଶିଶୁର ଅପରାଧ ପ୍ରବଣ ମନକୁ ଭଗବାନ ସତର୍କ କରାଇ ଦେବା କଥା । ଏଣୁ କବି ଭଗବାନଙ୍କୁ ନିର୍ଦ୍ଦିତ ଭଗବାନ ବୋଲି ଆହ୍ୱାନ କରିଛନ୍ତି ।

କବିଙ୍କର ଜୀବନର ନାନା ଅବସ୍ଥା ଓ ହେତୁବାଦୀ ଚିନ୍ତାଧାରା ସଂଗରେ ବିଶ୍ୱ ସଂପର୍କରେ ପୂର୍ବ ଧାରଣା ଯେ ଶିଥିଳ ହୋଇ ଯାଇଛି, ସେ କଥା କବି ଅନୁଭବ କରିଛନ୍ତି । 'ହେମଶସ୍ୟ'ର କେତେକ କବିତାରେ ତାହା ସ୍ପଷ୍ଟ । କବିପତ୍ନୀ ଈଶ୍ୱରଙ୍କ ସଂପର୍କରେ ଜିଜ୍ଞାସା କରିବାରୁ, କବି ମାନସିଂହ ଉତ୍ତରରେ କହିଛନ୍ତି:—

"ବାଳୁତ ବୟସେ
ତୁମପରି ଚିତ୍ତ ମୋର ବିଶ୍ୱାସର ରସେ
ରସବନ୍ତ ଥିଲା ସଖି, ଦେବତା ଈଶ୍ୱର
ନଥିଲେ ଦୂରରେ ତେଣୁ । ଆଜି ତର୍କ—ପର
ଯୌବନ କିନ୍ତୁ ଗୋ ସଖି ପୂଜି ଅବିଶ୍ୱାସ
ସେ ଦିନ—ବିଶ୍ୱାସେ କରି ସ୍ନିଗ୍ଧ ପରିହାସ
ବହୁଦୂରେ ରଖିଅଛି ସେ—ଦିନ ଈଶ୍ୱରେ
କବିର କଳ୍ପନା ବୋଲି । ଆଜି ମୁଁ ଚିତ୍ତରେ
ଭାଳେ ଖାଲି ଦୁଇ ମଧ୍ୟେ ସତ୍ୟ, କୁଁ ପଥରେ—
ଏବ—ଅବିଶ୍ୱାସ ଅବା ସେବ—ବିଶ୍ୱାସରେ ।"(୨୦) ଏହି ଭାବଧାରାର ପ୍ରକାଶ 'ବିରାଟ ସ୍ରଷ୍ଟା', 'ସଂଦେହ', 'ଦୁଃଖମୟ ସୃଷ୍ଟି', 'ସୃଷ୍ଟି ଓ ଧ୍ୱଂସ' ତଥା 'ବିଶୁଦ୍ଧ ସଂଦେହ', କବିତାରେ ଦେଖା ଦେଇଛି ।

॥ ମାନସିଂହଙ୍କ ବିଗ୍ରହଧାରା ॥

ମାନସିଂହଙ୍କ ଧର୍ମ ବିଶ୍ୱାସର ବିବର୍ତ୍ତନ ପଥରେ 'ଦେବପୂଜା' ଏକ ପ୍ରତିନିଧି ଶ୍ରେଣୀୟ କବିତା । ସଂପୃକ୍ତ କବିତାରେ,କବି ପିତୁଳା ପୂଜା,ବ୍ରାହ୍ମଣ ପୁରୋହିତମାନଙ୍କର ସାଧାରଣ ମଣିଷ ପ୍ରତି ଘୃଣା ଓ ହେୟ ମନୋଭାବ,ଦେବପୂଜା ନାମରେ ପିତୁଳା ପୂଜାକରି ଜନ ସାଧାରଣଙ୍କୁ ଦେବତାର ଆଶୀର୍ବାଦରୁ ବଞ୍ଚିତ କରିବା କଥା ଏକ ପକ୍ଷରେ ଉଲ୍ଲେଖ କଲାବେଳେ,ଅନ୍ୟ ପକ୍ଷରେ ବର୍ଜିତ ଓ ଅବହେଳିତ ଅସ୍ପୃଶ୍ୟମାନଙ୍କର ପୂଜା ହିଁ ଯେ ଦେବପୂଜା,ଏକଥା ମାନସିଂହ ଅତି ଆବେଗ ଜଡିତ ସ୍ୱରରେ ପ୍ରକାଶ କରିଛନ୍ତି । କବିଙ୍କର ଆତ୍ମବ୍ରାତିଶାଯ୍ୟ କବିତାକୁ ଶେଷ ଆଡକୁ ପ୍ରଗ୍ରହଧର୍ମୀ କରିଦେଇଛି । କବି ସ୍ପଷ୍ଟ କହିଛନ୍ତି:–

" ଏବେ କାଠ ପଥର ନପୂଜି ଆସ ପୂଜ ଜୀବନ୍ତ ଦେବତା,
ଯା'ଆଖିରୁ ଲୁହ ଯିବ ବହି କହିଦେଲେ ପଦେ 'ମଧୁକଥା ।"(21)

ମାନସିଂହଙ୍କର ଗାନ୍ଧୀଙ୍କ ପ୍ରତିଥିଲା ଏକ ସ୍ନେହସିକ୍ତ ଦୃଷ୍ଟିକୋଣ । ବାପୁତର୍ପଣ କବିତା ଓ ବିଭିନ୍ନ ପ୍ରବନ୍ଧ ତଥା ଆଲୋଚନାରେ ତାଙ୍କର ଗାନ୍ଧୀଙ୍କ ପ୍ରତି ଶ୍ରଦ୍ଧା ପ୍ରକାଶିତ ହୋଇଥିଲା । ବ୍ୟକ୍ତିଗତ ଓ ରାଜନୈତିକ ଜୀବନରେ ଧର୍ମକୁ ଉଚ୍ଚ ସ୍ଥାନ ଦେଇଥିଲେ ବି ଓ ଭଗବାନଙ୍କର ପରମ ସେବକ ଭାବରେ ନିଜକୁ ପରିଚିତ କରାଇଥିଲେ ବି ଗାନ୍ଧୀଜୀଙ୍କ ଧର୍ମ ଓ ଭଗବାନ ଉଭୟ ଥିଲେ ଅପାରଂପରିକ ଓ ବ୍ୟକ୍ତିଗତ । ସନ ୧୨୩୩ ମସିହା ବେଳକୁ ଗାନ୍ଧୀଜୀଙ୍କର ହରିଜନ ଆନ୍ଦୋଳନର ଆରମ୍ଭ । ବ୍ରାହ୍ମଣ୍ୟ ଧର୍ମର ଅର୍ଥନୈତିକ ଭିତ୍ତି,ସମାଜର ଏକ ବିଶିଷ୍ଟ ଅଂଶକୁ ଦଳିତ,ଅବହେଳିତ ଓ ନିଷ୍ପେଷିତ କରି ରଖିଥିଲା । ମଣିଷର ସାଧାରଣ ସମ୍ମାନବୋଧ ଓ ଉଚ୍ଚାକାଂକ୍ଷା ସେହି ଅବହେଳିତ ମଣିଷମାନଙ୍କୁ ସ୍ପର୍ଶ କରିପାରି ନଥିଲା । ଗାନ୍ଧିଜୀ ତାଙ୍କର ଅସ୍ପୃଶ୍ୟତା ନିବାରଣ ଆନ୍ଦୋଳନ ମଧ୍ୟଦେଇ ସମାଜର ଅସ୍ପୃଶ୍ୟମାନଙ୍କ ପ୍ରତି, ତଥା ଅସ୍ପୃଶ୍ୟମାନଙ୍କର ନିଜପ୍ରତିଥିବା ଦୃଷ୍ଟିକୋଣକୁ ପରିବର୍ତ୍ତୀତ କରିବାକୁ ଚେଷ୍ଟା କରିଥିଲେ । ତେଣୁ ସେମାନଙ୍କୁ ହରି ଅର୍ଥାତ ଭଗବାନଙ୍କର ନିଜଲୋକ,ହରିଜନ ନାମରେ ଅଭିହିତ କରିଥିଲେ । ଭଗବାନ ଯେପରି ନିଜର ଭଗ ଅର୍ଥାତ ଐଶ୍ୱର୍ଯ୍ୟ ପରିତ୍ୟାଗ କରି ସର୍ବହରା,ଏହି ଶୂଦ୍ର ବା ଅସ୍ପୃଶ୍ୟ ଜନମାନେ ଜଗତର ଉନ୍ନତିପାଇଁ ଆଜି ସମସ୍ତ ତ୍ୟାଗ କରିଛନ୍ତି । ଗାନ୍ଧିଜୀଙ୍କର ଏହି ଅପାରଂପରିକ ଧର୍ମାଦର୍ଶ ଓ ଭଗବତ ବିଶ୍ୱାସ ମାନସିଂହଙ୍କୁ ଗଭୀର ଭାବରେ ଅନୁପ୍ରାଣିତ କରିଥିଲା । । ଦେବପୂଜା କବିତା ସେହି ଅନୁପ୍ରେରଣାର ଫଳ ସ୍ୱରୂପ । କିନ୍ତୁ ଏହି ଅନୁପ୍ରେରିତ ହେବା ମୂଳରେଥିଲା ମାନସିଂହଙ୍କର ଚୈତ୍ତିକ ଗଢଣ । ପରଂପରା ବିରୋଧୀ ଧର୍ମ ଓ ବ୍ୟକ୍ତିଗତ ଭଗବତ ବିଶ୍ୱାସ,ଗାନ୍ଧିଜୀଙ୍କ ଧର୍ମାଦର୍ଶକୁ ଗ୍ରହଣ କରିବା ପାଇଁ ତାଙ୍କର ମନଦ୍ୱାରକୁ ଉନ୍ମୁକ୍ତ ରଖିଥିଲା ।

'ବିଶ୍ୱ ଦେବାଳୟ' କବିତାରେ କବିଙ୍କର ଭଗବତ ଜିଜ୍ଞାସା ଆହୁରି ତୀବ୍ର ଓ ଗଭୀର । 'ଦେବପୂଜା'କବିତା ବକ୍ତବ୍ୟ ଦୃଷ୍ଟିରୁ ଏକ ପ୍ରଧାନ କବିତା ହେଲେ ହେଁ,ଏହାର ପ୍ରଗ୍ରହଧର୍ମୀ ସ୍ୱର ସ୍ପଷ୍ଟ ।'ବିଶ୍ୱଦେବାଳୟ' କବିତାରେ କବିଙ୍କର ଅନୁଭୂତିର ବ୍ୟଞ୍ଜନା ଅଭିବ୍ୟକ୍ତ । ମାନସିଂହ ସମଗ୍ର ବିଶ୍ୱ ଜଗତକୁ ପରମ ପୁରୁଷଙ୍କର ଦେବାଳୟ ବୋଲି ମନେ କରିଛନ୍ତି । ଦେବାଳୟକୁ ଯେପରି ଭକ୍ତ,ଅନୁସନ୍ଧିତ୍ସୁ,ଭୟ,ବିଶ୍ୱାସର ଅର୍ଘ୍ୟଥାଳି ଧରି ଯାଇଥାଏ ।

## ॥ ମାନସିଂହଙ୍କ ବିଶ୍ୱାସଧାରା ॥

କବି ନିଜ କଥିତ ଏହି ଦେବାଳୟରେ ସେହିଭଳି ବିସ୍ମୟ ବିମୁଗ୍ଧତାର ଅର୍ଘ୍ୟଥାଳି ଧରି ଏହି ମନ୍ଦିରରେ ପ୍ରବେଶ କରିଛନ୍ତି । ଏହି ଦେବାଳୟର ପରିଚୟ ଦେଇ ସେ ଲେଖିଛନ୍ତି:—

"ଚରଣ ତଳୁ ଅନ୍ତରୀକ୍ଷ ଭେଦି ମହାବ୍ୟୋମ ସ୍ପର୍ଶେ ସେ ଦେଉଳ,

ଏଇ ଯେ ଘାସେ ପୂଜାର ବେଦୀ ତା'ର ନକ୍ଷତ୍ରରେ ଆଲୋକିତ ତା ଚୂଳ "(22)

ନିଜକୁ ଅଜ୍ଞପାନ୍ଥ ମନେ କରୁଥିବା ମାନସିଂହ, ଅନେକ ଦିନଧରି ସେହି ବିଶ୍ୱଦେବତା ଓ ବିଶ୍ୱଦେବାଳୟକୁ ଅନୁସନ୍ଧାନ କରିମଧ୍ୟ ଅଦେହୀ ଦେବତାଙ୍କର ସନ୍ଧାନ ପାଇପାରି ନାହାନ୍ତି; ତଥାପି ତାଙ୍କର ଅତୃପ୍ତ ପ୍ରାଣରେ ସେହି ଅରୂପ ଦେବତାଙ୍କର ଆକର୍ଷଣ ପ୍ରଶମିତ ହୋଇନାହିଁ । ବିଲାତ ଯାତ୍ରା ପୂର୍ବରୁ ମାନସିଂହଙ୍କର ଈଶ୍ୱର ସମ୍ବନ୍ଧୀୟ ବିଶ୍ୱାସଧାରା ଅନେକ ଗୁଡିଏ କବିତାରେ ପ୍ରକାଶ ପାଇଛି । ଅବବୋଧ ଦୃଷ୍ଟିରୁ ଏହି କବିତା ଗୁଡିକରେ ପୂର୍ବରୁ ଆଲୋଚିତ ଦୁଇଟି କବିତା ଠାରୁ ବିଭିନ୍ନତା ଥିଲେ ବି ପ୍ରତ୍ୟୟଗତ ସ୍ୱାତନ୍ତ୍ର୍ୟ ନାହିଁ । ସେହି କବିତା ଗୁଡିକ ହେଲା 'ଉପହସିତ', 'ବିଶ୍ୱରୂପ', 'ମୁକଦେବତା', ଆଲୋକ ମାଗେ', ଆହୁତି' ଓ 'ତୁମରି ପ୍ରୟୋଜନ' । ବିଶ୍ୱରୂପ' କବିତାରେ ଭଗବାନଙ୍କ ସ୍ୱରୂପ ଓ ପ୍ରକୃତି ସମ୍ପର୍କୀୟ ଅବବୋଧର ଦୁର୍ବଳତା ପାଇଁ ତାଙ୍କ ଭିତରେ ଆଉ ନୈରାଶ୍ୟ ନାହିଁ । ପରମ ପୁରୁଷଙ୍କର ଅନୁଭବ ତାଙ୍କ ମନରେ ଗଭୀର ଆଶାବାଦର ସଞ୍ଚାର କରିଛି । ସେ ଲେଖିଛନ୍ତି:—

" ତାଙ୍କୁ ଖୋଜିବାରେ

ପର୍ବତେ ପଶିବି କିପାଁ ? ମୋର ଗୃହଦ୍ୱାରେ

ଏଧରଣୀ ରନ୍ଧ୍ରେ ରନ୍ଧ୍ରେ, ଅଣୁ ଅଣୁ ଭେଦି

ଅଛନ୍ତି ସେ , ଖିଳ-ବିଶ୍ୱ ତାଙ୍କ ପୂଜା-ବେଦୀ ।''(23) ଉଲ୍ଲିଖିତ ସମସ୍ତ କବିତା ଭିତରେ ତାଙ୍କର ଏକେଶ୍ୱର ବାଦ ପ୍ରକଟିତ । ଧର୍ମାନୁଷ୍ଠାନ ଧର୍ମସ୍ଥଳୀ ପ୍ରତି ଅବିଶ୍ୱାସ, ପୁରୋହିତ ତନ୍ତ୍ର ପ୍ରତି ଗଭୀର ବିଦ୍ୱେଷଭାବ ପ୍ରକାଶିତ । 'ତୀର୍ଥଯାତ୍ରା 'କବିତାଟି ପୁରୋହିତ ତନ୍ତ୍ର ସମ୍ପର୍କରେ ତାଙ୍କର ଗଭୀର ବିଦ୍ୱେଷର ପରିଗ୍ରାହକ । 'ତୀର୍ଥଯାତ୍ରୀ' କବିତାରେ ତୀର୍ଥଯାତ୍ରୀ ମଣିଷ ଅତ୍ୟାଗ୍ରହିତ ଅବସ୍ଥାକୁ କାବ୍ୟରୂପ ଦେଇ ହିନ୍ଦୁ ପୁରୋହିତ ପଣ୍ଡାମାନଙ୍କପ୍ରତି ଘୃଣାଭାବ ପ୍ରକଟ କରାଇଛନ୍ତି । ଭଣ୍ଡ ପଣ୍ଡା ପୁରୋହିତ ଗଣ ସାଧାରଣ ମଣିଷର ବିଶ୍ୱାସକୁ ଯେ କିପରି ପ୍ରତାରଣାରେ ପରିଣତ କରନ୍ତି, ଏ କବିତା ତାର ନମୁନା ।

ବିଭିନ୍ନ ପାରିପାର୍ଶ୍ୱିକ ଅବସ୍ଥା କବିଙ୍କ ମନକୁ ସାକାରବାଦ ଓ ଈଶ୍ୱର ସମ୍ପର୍କୀୟ ବିଶ୍ୱାସ ଠାରୁ ଦୂରେଇ ଦେଇ, ଜୀବନର ଶାନ୍ତିକୁ ହଟାଇ ଦେଇଛି । ସେଇଥିପାଇଁ ସମୟ ସମୟରେ କବି ପ୍ରାଣ ବ୍ୟଥିତ । କବିଙ୍କ ପ୍ରାଣରେ ପ୍ରଶ୍ନ, କୁଆଡେ ଗଲା ସେ ସ୍ୱର୍ଣ୍ଣଯୁଗ, ଯେଉଁଠାରେ ଦେବତା ମଣିଷ ମଧ୍ୟରେଥିଲା ଅଭେଦ ସମ୍ପର୍କ । ଧରଣୀର ଦୁଃଖ ଦୂର କରିବା ପାଇଁ ଦେବତା ଧୂଳିମାଟିର ଧରଣୀକୁ ଅବତରି ଆସୁଥିଲେ । ଆଜି ସେଇ ଆକାଶ ଅଛି, ସେଇ ରବି ଚନ୍ଦ୍ର ତାରା ଅଛନ୍ତି, ସେହି ନଦୀ ଅଛି, ସେହିପରି ଜଳଧାରା ଅଛି, ପୃଥିବୀରେ ସେହିପରି ସୁଖଦୁଃଖ ଅଛି,

॥ ମାନସିଂହଙ୍କ ବିଗ୍ୱରଧାରା ॥

ଭକ୍ତଙ୍କ ମଧ୍ୟରେ ସୁଦାମାର ଦାରିଦ୍ର୍ୟରୁ କୋଟିଗୁଣରେ ବି ଦୁଃଖ ବଢି ଗ୍ଲିଛି । ମାତ୍ର:—

" ଦେବତା କାହିଁଗୋ ତେବେ,
ହାତେ ପୋଛି ଦେଇ— ନାହାନ୍ତି କାହିଁକି
ନର ନେତ୍ରୁ ଲୁହ ଏବେ ?
ତେବେ ମିଛ କବି—କଥା,
ଭଗବାନ ଅବତରି ଆସିବାର
ହରିବାକୁ ନର ବ୍ୟଥା ?" (24)

କିଶୋର କବିତା ଓ ଗୀତରେଣୁ ର ଅଧିକାଂଶ କବିତା ମାନସିଂହଙ୍କ ଆଦ୍ୟ ଶିକ୍ଷକତା କାଳର ସୃଷ୍ଟି । ଶିଶୁ ଦେବତା, ଦୁଃଖ ଦିଅ, ହେ କରୁଣ ପିତା, ଖୋଜରେ ତାରେ, ପରମସଖା, ସେ କିଏ ଗାଏ, ଦରଶନ ଦିଅ, ଭୋଗର ଆଶା, ଦୁଃଖ ଦହନ ଦିଅ, କାହାବେଣୁ ଆସ ଆସ ରଟେ, କ୍ଷମ ହେ ନୟନ ନୀରେ, ମହାଜୀବନ, ଦିନଗଲା ଗ୍ଲି, ପରମ ପ୍ରଣୟ ଧାରା ତଥା ବୁଦ୍ଧବାଣୀ ରେ ଈଶ୍ୱର ସଂପର୍କୀୟ ଚିନ୍ତାଧାରାର ସଂକେତ ରହିଛି ।

କଥିତ ସମୟରେ ମାନସିଂହଙ୍କର ଈଶ୍ୱର ସଂପର୍କୀୟ କବିତାରେ ଆଧ୍ୟାତ୍ମିକତା ଅପେକ୍ଷା ମାନବ ପ୍ରୀତିର ଧାରା ଅଧିକ ମାତ୍ରାରେ ପ୍ରକାଶିତ । କବି ନିଜେ ଦୁଃଖରେ ବଢି ଆସିଥିଲେ ଓ ଏ ଦୁନିଆର ନାନା ଦୁଃଖ ଦେଖି ଦେଖି ତାଙ୍କ ପ୍ରାଣ ବ୍ୟଥିତ । ମହାମାନବ ମହାତ୍ମାଗାନ୍ଧୀ ଓ ଦୁର୍ଗତ ଜନତାର ବନ୍ଧୁ ଗୋପବନ୍ଧୁଙ୍କର ଦରିଦ୍ର ନାରାୟଣ ସେବା ଭାବଦ୍ୱାରା ସେ ଅଧିକ ମାତ୍ରାରେ ଉଦ୍‌ବୁଦ୍ଧ । ଜଗତର ଦୁଃଖ ବର୍ଣ୍ଣନା କରି ସେ ଲେଖିଛନ୍ତି:—

"ଦୁଃଖ ସମୁଦ୍ରରେ
ମୋର—ସ୍ୱାର୍ଥ—ସୁଖ—ବିନ୍ଦୁ ଲୟ ଲଭେ ଧୀରେ,—
ସ୍ରଷ୍ଟା ହେ, କିପାଇଁ ବାଣ୍ଟ ସୁଖ ଏ ବିଧିରେ ?
ଦିଅ ମତେ ଶକ୍ତି ଦିଅ, ଦୀନ—ଦୁଃଖୀ ଜନେ
ସୁଖୀ ମୁଁ କରାଏ ତତ୍ତ୍ୱା, ତିକ୍ତ ଅନଶନେ
ଅମୃତ ମୁଁ ଦିଏ ଆଣି, ବାସ—ବସ୍ତ୍ର ହୀନେ
ପିନ୍ଧାଏ ମୁଁ ଚିନାଂଶୁକ; ଦିଏ ଏକ ଦିନେ
ଜଗତର ଦୁଃଖ ମୁହିଁ ପୋଛିଦେବି କରେ
ଦେଖିବି ଆନନ୍ଦରେଖା ନିଖିଳ—ମୁଖରେ ।"(25)

ମାନସିଂହଙ୍କ ବିଲାତ ଯାତ୍ରାର ପ୍ରାକ୍ କାଳରେ ଧର୍ମ ଓ ଈଶ୍ୱର ସଂପର୍କୀୟ ଅନୁଚିନ୍ତାର କ୍ରମ ପରିବର୍ତ୍ତନ ଦେଖାଯାଇଛି । ହେତୁବାଦୀ ଚିନ୍ତାଧାରା ଦ୍ୱାରା ତାଙ୍କ ମନରେଥିବା ସରଳ ଈଶ୍ୱର ବିଶ୍ୱାସ କ୍ରମେ ଜିଜ୍ଞାସାପୂର୍ଣ୍ଣ

ମନରେ ପରିଣତ ହୋଇଛି । ଜ୍ଞାନର ପରିଧି ସମ୍ପ୍ରସାରିତ ହେବା ସଂଗେ ସଂଗେ, ଧର୍ମ, ଈଶ୍ୱର ଓ ଜଗତ ସମ୍ପର୍କରେ ନାନା ପ୍ରଶ୍ନ କବି ପ୍ରାଣରେ ଉତ୍‌ଥିତ ହୋଇଛି । ଏଠାରେ ଉଲ୍ଲେଖ କରାଯାଇ ପାରେ ଯେ ଏହି ସମୟ ପରେ ପରେ କବି ମାନସିଂହଙ୍କ କବିତାର ସ୍ୱାଭାବିକ ଧାରା କ୍ରମଶଃ ସ୍ୱକୀୟତା ହରାଇ ବୌଦ୍ଧିକତା ଜାଲରେ ବାନ୍ଧିହୋଇ ପଡିଛି । ଏ ପ୍ରସଂଗ ସ୍ୱତନ୍ତ୍ର ବିଗ୍ରହର ଅପେକ୍ଷା ରଖେ ।

<u>ଜୀବନର ମଧ୍ୟପର୍ବ : . . . (୧୯୩୪–୧୯୪୫)</u>

ସନ ୧୯୩୬ ମସିହା ଏପ୍ରିଲ ପହିଲାରେ ଓଡିଶା ଏକ ସ୍ୱତନ୍ତ୍ର ପ୍ରଦେଶରେ ପରିଣତ ହେଲା । ଜୀବନର ଆଦ୍ୟ ପର୍ଯ୍ୟାୟରେ ମାନସିଂହ ଗୋପବନ୍ଧୁ ମଧୁସୂଦନଙ୍କର ଥିଲେ ପରମ ଭକ୍ତ । ରବୀନ୍ଦ୍ରନାଥଙ୍କ କାବ୍ୟ କବିତାର ଥିଲେ ଜଣେ ମରମୀ ପାଠକ । ସନ ୧୯୩୩ ପରେ ବାପୁଜୀଙ୍କର ହରିଜନ ଓ ଗ୍ରାମୋଦ୍ୟୋଗ ଅଭିଯାନ ମାନସିଂହଙ୍କର ମାନବବାଦୀ ଦୃଷ୍ଟିକୋଣକୁ ଉଦ୍ବୁଦ୍ଧ କରିଥିଲା । ଏ ସବୁ ଭିତରେ କିନ୍ତୁ ଏକ ନିର୍ଦ୍ଦିଷ୍ଟ ଯୋଗସୂତ୍ର ବିଲାତ ଯାତ୍ରା ପୂର୍ବରୁ ସେ ଖୋଜି ପାଇ ନଥିଲେ । ସନ ୧୯୩୬ ରେ ଓଡିଶା ସ୍ୱତନ୍ତ୍ର ପ୍ରଦେଶ ହେଲାରୁ, ଉତ୍କଳୀୟ ଜାତୀୟତାର ଆବେଦନ କ୍ରମଶଃ ତାଙ୍କ ପାଇଁ ଶିଥିଳ ହେବାକୁ ଲାଗିଲା । ଦୁଇବର୍ଷ ଇଂଲଣ୍ଡ ରହଣୀ ତାଙ୍କର ମାନବବାଦୀ ଦୃଷ୍ଟିକୋଣକୁ ଉଦାରତନ୍ତ୍ରର ଆଲୋକରେ ଅଭିଷିକ୍ତ କଲା । ତେଣୁ ୧୯୩୭–୩୫ ପରେ ପରେ ଅନ୍ୟାନ୍ୟ କ୍ଷେତ୍ର ଭଳି ଧର୍ମ ଜିଜ୍ଞାସା କ୍ଷେତ୍ରରେ ଏକ ନିର୍ଦ୍ଦିଷ୍ଟ ଦର୍ଶନ ବା ମତବାଦକୁ କ୍ରମଶଃ ଆପଣାର କରିବା ଓ ମାନବବାଦୀ ଧର୍ମ ଜିଜ୍ଞାସାକୁ ଏକ ବୈଜ୍ଞାନିକ ବୁଦ୍ଧିବାଦର ପୃଷ୍ଠଭୂମିରେ ଅବଲୋକନ କରିଥିବାର ଦେଖାଯାଏ । ଆଗରୁ କେତୋଟି କବିତାରେ କବିଙ୍କର ଯେଉଁ ଭାବ ପ୍ରବଣତା, କବିତା ଆକାରରେ ଝରି ପଡିଥିବାର ଦେଖାଯାଏ, ପରବର୍ତ୍ତୀ କାଳରେ ତାହା ନିର୍ମୋହ ଯୁକ୍ତି ଶାଣିତ ପ୍ରବନ୍ଧାକାରରେ ପ୍ରକାଶିତ ହୋଇଥିବାର ଦେଖିବାକୁ ମିଳେ । ତେଣୁ ପ୍ରଥମ ପର୍ବକୁ ତାଙ୍କର ଧର୍ମ ଜିଜ୍ଞାସାର ପୃଷ୍ଠପୀଠିକାର ପର୍ବ କହିଲା ବେଳେ, ବକ୍ଷମାଣ ପର୍ବକୁ ତାର ବିକାଶ ପର୍ବବୋଲି କୁହାଯାଇପାରେ ।

ଗାନ୍ଧିଜୀଙ୍କର ଧର୍ମ ବିଶ୍ୱାସ, ମାନବ ପ୍ରୀତିର ମୂଳରୂପ, ଭାରତୀୟ ପରମ୍ପରାରେ ଖୋଜା ଯାଇ ପାରିଲେ ବି ପାଶ୍ଚାତ୍ୟ ଉଦାରତନ୍ତ୍ର ଭିତରେ ମିଳେ ତାର ଯଥାର୍ଥ ସାର୍ଥକତା । ମାନସିଂହ ସଂପୃକ୍ତ କାଳରେ ଗାନ୍ଧିଙ୍କର ବ୍ୟକ୍ତିତ୍ୱ ପ୍ରତି କେବଳ ଆକୃଷ୍ଟ ହୋଇ ନାହାନ୍ତି, ତାଙ୍କ ଚିନ୍ତାଧାରାର ସାର୍ବଜନୀନ ଆବେଦନ ପ୍ରତି ପ୍ରଲୁବ୍ଧ ହୋଇଛନ୍ତି । ଏହି ପ୍ରଲୋଭନ ପରବର୍ତ୍ତୀ କାଳରେ ତାଙ୍କୁ ବୌଦ୍ଧଧର୍ମ ପ୍ରତି ଆକୃଷ୍ଟ କରିଛି । ଏରିକ୍ ଫ୍ରୋମ୍‌ଙ୍କ ଭଳି ବିଦ୍ୱାନମାନେ କହିଥାନ୍ତି ଯେ, ସବୁ ଧର୍ମ ଉପରେ ବୌଦ୍ଧଧର୍ମ ଅଧିକ ଭାବରେ ଉନ୍ମୁକ୍ତ, ଗଣତାନ୍ତ୍ରିକ ଓ ମାନବବାଦୀ । ସଂପୃକ୍ତ କାଳରେ ମାନସିଂହଙ୍କୁ ବୌଦ୍ଧଧର୍ମର ଏହି ମାନବବାଦୀ ଆବେଦନ ନିଜ ଆଡକୁ ଟାଣି ନେଇଛି । ତେଣୁ ଗୋଟାଏ ପଟେ ଗାନ୍ଧିଜୀଙ୍କ ଆଦର୍ଶବାଦରେ ନିମଜ୍ଜିତ ହେଲାବେଳେ, ବୌଦ୍ଧଧର୍ମ ତାଙ୍କୁ ହାତଠାରି ଡାକିଛି ।

॥ ମାନସିଂହଙ୍କ ବିଗ୍ରହଧାରା ॥

ଅନ୍ୟାନ୍ୟ ଧର୍ମ ଦର୍ଶନକୁ ସେ ଏ ଦୁଇର ମଧ୍ୟ ବିନ୍ଦୁରେ ଛିଡ଼ାହୋଇ ଦୂରରୁ ଦେଖିଛନ୍ତି । ଏହି ଉଭୟ ବୈପ୍ଳବିକ ଧର୍ମ ଓ ବିଶ୍ୱାସବୋଧର ଚଷମାପିନ୍ଧି ଅନ୍ୟାନ୍ୟ ଧର୍ମକୁ ଦେଖିବା ଫଳରେ ସେ ସବୁ ନିଜର ଚେହେରା ହୂରାଇ ଅସ୍ପଷ୍ଟ ସିଲହୁଟ ଛବିଭଳି ଭାସି ଉଠିଛି । ତେଣୁ ଏ ପର୍ଯ୍ୟାୟରେ ମାନସିଂହଙ୍କର ବିଗ୍ରହଧାରାକୁ ମୁଖ୍ୟତଃ ତିନୋଟି ଭାଗରେ ବିଭକ୍ତ କରାଯାଇପାରେ । (କ) ଗାନ୍ଧୀ, (ଖ) ବୁଦ୍ଧ ଓ (ଗ) ସାଧାରଣ ଧର୍ମାଦର୍ଶ ।

ଗାନ୍ଧୀ:.....

ମୋହନଦାସ କରମଚାନ୍ଦ ଗାନ୍ଧୀ ମଣିଷ ଭାବରେ ଜନ୍ମିଥିଲେ, ମହାତ୍ମା ଭାବରେ ପ୍ରସିଦ୍ଧି ଲାଭ କରିଥିଲେ ଓ ଦେବତା ଭାବରେ ପୂଜିତ ହୋଇଥିଲେ । ଗୁଜୁରାଟର ବଣିଆ ପରିବାରରେ ଜନ୍ମଲାଭ କରିଥିବାରୁ ପାରିବାରିକ ସୂତ୍ରରେ ସତ୍ୟ, ଧର୍ମ, ସେବା ତଥା ଅହିଂସାପ୍ରତି ତାଙ୍କର ମନଥିଲା ଉନ୍ମୁଖ । ଜୈନଧର୍ମର ପ୍ରଭାବ ତାଙ୍କୁ ସମଗ୍ର ଜୀବ ଜଗତ ପ୍ରତି ସହନଶୀଳ କରିଥିଲା । ବାରିଷ୍ଟରୀ ଅଧ୍ୟୟନ କରିବା ସମୟରେ ସେ ଇଉରୋପୀୟ ଉଦାରତନ୍ତ୍ରୀ ଚିନ୍ତାଧାରା ଓ ଖ୍ରୀଷ୍ଟଧର୍ମର ମୈତ୍ରୀଭାବ ସଂପର୍କରେ ଆସିଥିଲେ । ଦକ୍ଷିଣ ଆଫ୍ରିକାରେ ରସ୍କିନ୍, ଟଲଷ୍ଟୟଙ୍କ ଚିନ୍ତାଧାରା ତାଙ୍କୁ ନୂତନଭାବେ ଅନୁପ୍ରାଣିତ କରିଥିଲା । ଦକ୍ଷିଣ ଆଫ୍ରିକାର ଦଳିତ ନିଷ୍ପେସିତ ଓ ବର୍ଣ୍ଣବୈଷମ୍ୟ ନୀତିରେ ଦଳିତ ହୋଇଥିବା ଜନତାକୁ ସେ ମୁକ୍ତିର ଆଲୋକ ଦେଖାଇଥିଲେ, ତାଙ୍କର ମୁକ୍ତି ଆନ୍ଦୋଳନ ପଛରେ ଶତ୍ରୁକୁ ବିନାଶ କରିବାର ପୈଶୁନ୍ୟ ସୁଲଭ ଦାମ୍ଭିକତା ନଥିଲା, ଥିଲା ହୃଦୟ ଜୟ କରିବାର ଅଦମ୍ୟ ବାସନା । ତେଣୁ ଭାରତକୁ ଯେତେବେଳେ ଗାନ୍ଧୀ ଆସିଲେ ଚେଷ୍ଟାକୃତ ଭାବେ ଓ ନିଜର କାର୍ଯ୍ୟବିଧି ଦ୍ୱାରା ଆପଣାର ଏକ ଭାବମୂର୍ତ୍ତି ସେ ଜନସାଧାରଣଙ୍କ ଆଗରେ ଛିଡ଼ା କରାଇବାକୁ ଚାହିଁଥିଲେ । ମାନସିଂହଙ୍କ ମନ ଓ ହୃଦୟ ବାପୁଜୀଙ୍କୁ ଜଣେ ସାଧାରଣ ମଣିଷ ଭାବରେ ଗ୍ରହଣ କରିପାରି ନଥିଲା, ତାଙ୍କ ମଧ୍ୟରେ ସେ ଦେବତ୍ୱର ଦ୍ୟୁତି ଅବଲୋକନ କରିଥିଲେ । ଖ୍ରୀଷ୍ଟଧର୍ମର ଭାତୃତ୍ୱବୋଧ, ଜୈନଧର୍ମର ସହନଶୀଳତା ଓ ଜୀବପ୍ରୀତି ତାଙ୍କୁ ଏକ ନୂତନ ଯୀଶୁଖ୍ରୀଷ୍ଟରେ ପରିଣତ କରିଥିଲା । ମାନସିଂହଙ୍କର ଗାନ୍ଧୀଙ୍କ ପ୍ରତି ଶ୍ରଦ୍ଧା ତାଙ୍କର 'ବାପୁତର୍ପଣ' ପୁସ୍ତକ ର ପ୍ରତିଛତ୍ରରେ ଉଦ୍‌ଭାସିତ । 'ବାପୁ ତର୍ପଣ' ଠାରୁ 'ଯେଉଁମାନେ ଗାନ୍ଧୀଙ୍କୁ ମହାତ୍ମା କଲେ' ପର୍ଯ୍ୟନ୍ତ ପ୍ରାୟ ତ୍ରିଶ ବର୍ଷଧରି ଗାନ୍ଧୀଙ୍କ ପ୍ରତି ଥିଲା ତାଙ୍କର ଅନାବିଳ ଶ୍ରଦ୍ଧା ଓ ଭକ୍ତି । ଗାନ୍ଧୀଜୀଙ୍କ ଠାରେ ସେ ବୁଦ୍ଧଙ୍କର ମହନୀୟତା ମଧ୍ୟ ଦେଖିପାରିଥିଲେ । ମାନସିଂହଙ୍କ ଭାଷାରେ:—"ଅନେକ ବିଜ୍ଞ ବୈଦେଶିକ ଗାନ୍ଧୀଙ୍କୁ ଦ୍ୱିତୀୟ ବୁଦ୍ଧ ବା ଖ୍ରୀଷ୍ଟ ବୋଲି କହିଥାନ୍ତି । କାରଣ ତାଙ୍କ ଜୀବନର ମୌଳିକ ତତ୍ତ୍ୱ ଗୁଡିକ ପୂର୍ବବର୍ତ୍ତୀ ମହାପୁରୁଷ ଦ୍ୱୟଙ୍କ ଜୀବନ ଧାରା ସଂଗେ ଅଧିକାଂଶରେ ସମାନ ।"(26)

ବାପୁଜୀଙ୍କର ଈଶ୍ୱର ସଂପର୍କୀୟ ବିଗ୍ରହକୁ ମାନସିଂହ ଆନ୍ତରିକ ସମ୍ମାନ ଜଣାଇଛନ୍ତି । ଜୀବନକୁ ସୁଖ ଶାନ୍ତିରେ ବିତାଇବା ପାଇଁ, ବାପୁଜୀଙ୍କ ପ୍ରଦର୍ଶିତ ମାର୍ଗହିଁ ଉପଯୁକ୍ତ ବୋଲି ଚିନ୍ତା କରି ମାନସିଂହ କହନ୍ତି:—"ବାପୁଜୀଙ୍କ ମତରେ

॥ ମାନସିଂହଙ୍କ ବିଶ୍ୱରଧାରା ॥

ଯଦି ଦୈନନ୍ଦିନ ଜୀବନର ପ୍ରତ୍ୟେକ ଘଟଣାରେ ଈଶ୍ୱର ସହାୟ ନ ହୁଅନ୍ତି, ତେବେ ଈଶ୍ୱରଙ୍କୁ ଉପାସନା କରିବାର ଅର୍ଥନାହିଁ । ବାପୁଜୀ ପ୍ରତ୍ୟେକ ଛୋଟବଡ କର୍ମରେ ହାତଦେବା ଆଗରୁ ଭିତରର 'ବାଣୀ'ର ନିର୍ଦ୍ଦେଶକୁ ଅପେକ୍ଷା କରୁଥିଲେ ।"(27) ପୁଣି ବାପୁଜୀଙ୍କ ବିଷୟରେ ସେ କହନ୍ତି:—"ଇଣ୍ଟିଗ୍ରେସନ ଆଣିପାରିଥିବା ଲୋକକୁହିଁ ଗୀତାରେ କୁହାଯାଇଛି ସ୍ଥିତଧୀ, ସ୍ଥିତପ୍ରଜ୍ଞ । ବାପୁଜୀଙ୍କ ନିକଟକୁ ଯେ କେହି ଆସୁଥିଲେ ସେ ତାଙ୍କର ଏହି ସ୍ଥିତଧୀ ଗୁଣରେ ଅବାକ୍ ହେଉଥିଲେ । ତାଙ୍କର ନଥିଲା ଆକର୍ଷଣ, ନଥିଲା ଘୃଣା, ତାଙ୍କର ନଥିଲେ ଶତ୍ରୁ, ଥିଲେ କେବଳ ମିତ୍ର, ତାଙ୍କର ଦୁଃଖ ବି ନଥିଲା, ସୁଖ ବି ନଥିଲା, ଭଗବାନଙ୍କୁ ସାକ୍ଷୀ ରଖି ସେ କେବଳ ଆଗେଇ ଚାଲିଥିଲେ ସତ୍ୟର ଲକ୍ଷ ପଥରେ ।"(28) ମାନସିଂହ କହନ୍ତି:— ଯଦି ଜୀବନରେ ଆମେ ଶାନ୍ତି ସୁଖ ଓ ପ୍ରକୃତ ବିଜୟ ଚାହୁଁ, ତେବେ ଆମକୁ ବାପୁଜୀଙ୍କ ପରି ଚିତ୍ତକୁ ଇଣ୍ଟିଗ୍ରେଟେଡ୍ ବା ଏକୀଭୂତ କରିବାକୁ ହେବ ।

ମାନସିଂହ ବିଲାତଯାତ୍ରା ପୂର୍ବରୁ ବାପୁଜୀଙ୍କ ସଂପର୍କରେ ଧାରାବାହିକ ଅଧ୍ୟୟନ କରୁଥିଲେ । ପୁଣି ବିଲାତ ଅବସ୍ଥାନ କାଳରେ ବିଭିନ୍ନ ସ୍ଥାନରେ ଗାନ୍ଧୀଙ୍କ ସଂପର୍କରେ ଭାଷଣ ଦେବା କଥା ଆମେ ତାଙ୍କର 'ପଶ୍ଚିମ ପଥିକ' ପୁସ୍ତକରୁ ଜାଣିପାରୁ । ଥରେ ଇଂଲଣ୍ଡରେ ଗାନ୍ଧୀଙ୍କ ସଂପର୍କରେ ଆଲୋଚନା କରୁ କରୁ ଜଣେ ଇଂରେଜ ଭଦ୍ରବ୍ୟକ୍ତିଙ୍କୁ ମାନସିଂହ ପଚାରିଲେ—"ଆଚ୍ଛା କୁହନ୍ତୁ ତ ବର୍ତ୍ତମାନ ଜଗତର ଶ୍ରେଷ୍ଠ ଖ୍ରୀଷ୍ଟିଆନ କିଏ ? ଲୋକଟି ତତ୍‌କ୍ଷଣାତ୍ ଉତ୍ତର ଦେଲା—' ବିନା ଚିନ୍ତାରେ କହିବାକୁ ହେବ ଯେ, ମିଃ ଗାନ୍ଧୀ ଓ ତାଙ୍କ ପଛକୁ ଆଣ୍ଡ୍ରୁଜ 'ମାନସିଂହ କହନ୍ତି ମୋର ତ ଗର୍ବ ଅନୁଭବ କରିବାର କଥା "(29) ଏହି ଉକ୍ତିରୁ ମାନସିଂହଙ୍କର ଗାନ୍ଧୀଜୀଙ୍କ ପ୍ରତି ଶ୍ରଦ୍ଧା ଓ ଧର୍ମ ସଂପର୍କରେ ଉଦାର ଭାବଧାରାର ଚିତ୍ର ସ୍ପଷ୍ଟ ମିଳେ ।

ଗାନ୍ଧୀଜୀଙ୍କ ଧର୍ମଭାବ ଓ ଆଦର୍ଶ ମାନସିଂହଙ୍କୁ ଏପରି ମୁଗ୍ଧ କରିଥିଲାଯେ, ଜୀବନର ହିଁ ଗାନ୍ଧୀଜୀଙ୍କ ସଂପର୍କରେ ବ୍ୟାପକ ଆଲୋଚନା କରିଛନ୍ତି ।'ଯେଉଁମାନେ ଗାନ୍ଧୀଙ୍କୁ ମହାତ୍ମା କଲେ' ନାମକ ଏକ ଧାରାବାହିକ ପ୍ରବନ୍ଧରେ ଗାନ୍ଧୀଜୀଙ୍କ ଧର୍ମ ଦର୍ଶନ ସଂପର୍କରେ ଲେଖିଛନ୍ତି:—"ଈଶ୍ୱର ହୀନ, ଶୀଳହୀନ, ସତ୍ୟହୀନ, ଯାନ୍ତ୍ରିକ, ବୈପଣିକ ଯୁଗରେ ଭାରତ ବର୍ଷରେ ହିନ୍ଦୁ ସାମ୍ରାଜ୍ୟରୁ ଜଣେ ଗାନ୍ଧୀର ଆବିର୍ଭାବ ହୁଅନ୍ତେ ସମଗ୍ର ପ୍ରସନ୍ନ ଖ୍ରୀଷ୍ଟିଆନ ଜଗତ ଆଲୋକିତ ହୋଇଗଲା । ଏହା ଦେଖିଯେ ବାଇବେଲର ଯୀଶୁଖ୍ରୀଷ୍ଟ ଏକାବେଳକେ ଅଳୀକ କଳ୍ପନା ନୋହି ପାରେ, ଆମେ ଆଖି ଆଗରେ ଆମେ ଦେଖିଛୁ, ଯେ ପ୍ରଥମ କ୍ରୁଶବିଦ୍ଧ ଖ୍ରିଷ୍ଟିୟାନ ପରି ଦୁଇ ହଜାର ବର୍ଷ ପରେ ଆଉଏକ ପ୍ରକୃତ ମହୀୟାନ୍ ଖ୍ରିଷ୍ଟିୟାନ ପୃଥିବୀ ମାଟିରେ ଚଲାବୁଲା କରିବାର । ମଣିଷ ଜାତି ଏହି ଦ୍ୱିତୀୟ ଖ୍ରିଷ୍ଟିୟାନକୁ ମଧ୍ୟ ଗୁଳିବିଦ୍ଧ କରି ନ ମାରିବା ଯାଏ, ଶାନ୍ତିରେ ରହି ପାରିଲା ନାହିଁ । ଗାନ୍ଧୀ ବ୍ୟକ୍ତିତ୍ୱର ଏ ପ୍ରକାର ବିଶ୍ୱ ପ୍ରଶଂସ୍ୟ ଅଂଶଟି କିନ୍ତୁ ଗଢାହୋଇଥିଲା, ପ୍ରକୃତରେ ଖ୍ରିଷ୍ଟିୟାନ ଉପାଦାନରେ ।।"(30) ଗାନ୍ଧୀଙ୍କ ଜୀବନ ପରି ଏକ ଶୁଦ୍ଧ ପୂତ ଜୀବନ ପାଇଁ ମାନସିଂହଙ୍କର ପ୍ରାଣ ପଣିଆ ଇଚ୍ଛା ପ୍ରକାଶ କରିଥିଲା । ଗାନ୍ଧୀଜୀଙ୍କ ଜୀବନରେ ଗୀତାର ଭୂମିକା ସଂପର୍କରେ ମାନସିଂହ କହିଥିଲେ:—"ଗାନ୍ଧୀ ନିଜେ କହିଛନ୍ତି ଯେ, ହିନ୍ଦୁ ଧର୍ମଶାସ୍ତ୍ର ଶ୍ରୀମଦ୍‌ଭଗବତ୍ ଗୀତା ତାଙ୍କର

ଆଧ୍ୟାତ୍ମିକ ଜନନୀ ସ୍ୱରୂପା । ଜୀବନର ନାନା ସଙ୍କଟରେ ସେ ଯେତେବେଳେ କୌଣସି ବାଟ ନଦେଖିପାରି ଅସହାୟ ହୋଇ ପଡିଛନ୍ତି, ସେତେବେଳେ ସେ ଭଗବତ୍ ଗୀତାକୁ ମେଲାଇ ଦେଲାମାତ୍ରେ ପାଇଛନ୍ତି ପରବର୍ତ୍ତୀ ପଦକ୍ଷେପ ପାଇଁ ପଥ ଓ ଅଲୋକ ।"(31)

ଉପରୋକ୍ତ ଉଦାହରଣ ଓ ଆଲୋଚନାରୁ ପ୍ରତୀୟମାନ ହୁଏ ଯେ ମାନସିଂହ ଜୀବନରେ ସତ୍ୟର ସନ୍ଧାନ ଓ ଈଶ୍ୱର ପ୍ରାପ୍ତି ନିମିତ୍ତ ବିଭିନ୍ନ ମାର୍ଗ ମଧ୍ୟରୁ ଗାନ୍ଧୀଙ୍କ ପ୍ରଦର୍ଶିତ ମାର୍ଗକୁ ଏକତମ ଆଦର୍ଶ ଭାବରେ ଗ୍ରହଣ କରିଥିଲେ । କାରଣ ଗାନ୍ଧିଜୀଙ୍କ ନିକଟରେ ସେ ଉଦାର ମାନବବାଦୀଧାରା ଓ ସର୍ବଧର୍ମ ସମନ୍ୱୟର ସୂତ୍ରର ସନ୍ଧାନ ପାଇଥିଲେ ।

<u>ଗାନ୍ଧି ହିଁ ଈଶ୍ୱର</u>

ମାନସିଂହ ଗାନ୍ଧିଙ୍କର ଧର୍ମଧାରାରେ କେବଳ ବିଶ୍ୱାସ ସ୍ଥାପନ କରି ନଥିଲେ, ତାଙ୍କ ଦୃଷ୍ଟିରେ ଗାନ୍ଧି ହିଁ ନିଜେ ଈଶ୍ୱରଙ୍କର ଅବତାର । ସାଧାରଣ ମଣିଷ ଠାରୁ ବାପୁଜୀଙ୍କୁ ସେ ଭିନ୍ନ ଦୃଷ୍ଟିରେ ଦେଖୁଥିଲେ । ତେଣୁ ସେ ଲେଖିଛନ୍ତି:—

"ମସ୍ତକେ ମୋର ନିତ୍ୟ ପଡୁ ହେ
ବାବୁଜୀ ତମର ଚରଣ–ଧୂଳି,
ଧନ୍ୟ ହେବ ଏ କ୍ଲିନ୍ନ ଅଙ୍ଗ,
ପୁଣ୍ୟେ ଯିବ ମୋ ପରାଣ ପୂରି ।"(32)

ବାପୁଜୀ ଜଣେ ଯୁଗପୁରୁଷ, ପଯ୍ଗମ୍ବର, ସେ ଯୁଗେ ଯୁଗେ ବୁଦ୍ଧ, ରସୁଲ, ଖ୍ରୀଷ୍ଟ ରୂପରେ ଜନ୍ମଲାଭ କରି ମଣିଷ ମଧ୍ୟରେ ଥିବା ଗ୍ଲାନିକୁ ଦୂର କରି, ମଣିଷ ମନର ଚେତନାକୁ ଜାଗ୍ରତ କରନ୍ତି । ସେ ନୂତନ ଖ୍ରୀଷ୍ଟ, ବ୍ରାହ୍ମଣ, ପୁରୁଷୋତ୍ତମ ତଥା ଭଗୀରଥ ସଦୃଶ୍ୟ । ମାନସିଂହଙ୍କ ଭାଷାରେ :—

"ବୁଦ୍ଧ, ଖ୍ରୀଷ୍ଟ, କୃଷ୍ଣ, ନିମାଇ
ଯୁଗେ ଯୁଗେ ଦେଲେ ଯାଚି ଯେ ଦାନ,
ସେଇ ବିତରଣ ପାଇଁ ତ ହେ ଯୋଗି,
ତମ ଜୀବନର ଏ ଅଭିଯାନ ।"(33)

ମାନସିଂହ 'ବାପୁତର୍ପଣ'ର ବିଭିନ୍ନ କବିତାରେ ବାପୁଜୀଙ୍କୁ ସ୍ୱୟଂ ଈଶ୍ୱରଙ୍କର ଅଂଶ ବିଶେଷ ବା ଦେବତା ଭାବରେ ବର୍ଣ୍ଣନା କରିଛନ୍ତି । ଶ୍ରୀକ୍ଷେତ୍ରରେ ଜଗନ୍ନାଥ କେବଳ ପତିତପାବନ ନାମ ଧାରଣ କରିଛନ୍ତି; ଅଥଚ କାର୍ଯ୍ୟରେ ସେଠାରେ ପତିତମାନଙ୍କର ପ୍ରବେଶର ଅଧିକାର ନାହିଁ । ମାତ୍ର ବାପୁଜୀ ବାସ୍ତବ କ୍ଷେତ୍ରରେ, ଯୁଗ ଯୁଗ ଧରି ଯେଉଁମାନେ ପତିତ ଦଳିତ, ଅପମାନିତ ହୋଇଥିଲେ ସେହି ପତିତମାନଙ୍କୁ ଯୁଗଯୁଗର ଅନ୍ଧକାର ମଧ୍ୟରୁ ମୁକ୍ତି ଦେଲେ । ମାନସିଂହ ଗାନ୍ଧିଙ୍କୁ ସମ୍ବୋଧନ କରି ଲେଖିଛନ୍ତି :—

॥ ମାନସିଂହଙ୍କ ବିଗ୍ରହଧାରା ॥

"ପତିତ–ପାବନ,

ହେ ଦେବତା, ହେ ମହାତ୍ମା, ହେ ଗାନ୍ଧି–ରାଜନ, "(34) ଏବଂ

ପତିତ–ପାବନ ମହା–ମାନବ ଗାନ୍ଧିରେ(35) 'ନାପିତୁଣୀର ଗାନ୍ଧିପୂଜା' ରେ

ଗାନ୍ଧିଙ୍କୁ ସେ ସ୍ୱୟଂ ଦେବତା ଭାବରେ ଉପସ୍ଥାପନ କରି କହିଛନ୍ତି :–

'ହେଉଛନ୍ତି ବୁହାବୁହି ପଚରାପଚରି—

କି ଦେବେ ଗାନ୍ଧିରେ ଭେଟି; ଦରିଦ୍ର ସକଳେ—

ହେଲେ କି ଦେବତା–ଦେଖା ହେବ ରିକ୍ତ–କରେ ?"(36)

'ଗାନ୍ଧିଜୀ' କବିତାରେ ଅନୁରୂପ ଭାବରେ ବାପୁଜୀଙ୍କ ଠାରେ ଦେବତ୍ୱର ଆରୋପ କରି, ଲେଖିଛନ୍ତି :—

'ଦେବତା–ଆତ୍ମା ବହେ ସେ ତାହାର

କ୍ଷୀଣ ମାଟି ଅବୟବେ,

ପଦ୍ମ–ବିକାଶ ହେଣୁ ସିନା ତାର

ଚଲା ପଥେ ସମ୍ଭବେ ?

ବୁଦ୍ଧ, ଖ୍ରୀଷ୍ଟ ଏକା ସେ କରିଲା,

ପତିତକୁ କଲା ଭାଇ,

ସତ୍ୟ ସେ ପୂଜେ, ଶତ୍ରୁ ତାହାର ନାହିଁ ।'(37)

କବି ମାନସିଂହ ବାପୁଜୀଙ୍କ ମହାଯାତ୍ରା ପରବର୍ତ୍ତୀ କବିତାରେ ବାପୁଜୀଙ୍କୁ ଦେବତା, ନାରାୟଣ, ପାପ–ନାଶନ, ପତିତ–ପାବନ, ମୃତ୍ୟୁଞ୍ଜୟୀ, ରସୁଲ, ମେସାୟା ଓ ଅବତାର ଭାବରେ ବିଭିନ୍ନ ସ୍ଥାନରେ ବର୍ଣ୍ଣନା କରିଛନ୍ତି । ମାନସିଂହଙ୍କୁ ବାପୁଜୀ ତାଙ୍କର ଅନୁସୃତ ଧର୍ମଦ୍ୱାରା କେବଳ ଅନୁପ୍ରାଣିତ କରିନାହାନ୍ତି, ବରଂ ବାପୁଜୀ ତାଙ୍କ ଦୃଷ୍ଟିରେ ସ୍ୱୟଂ ଭଗବାନଙ୍କ ଅବତାର । ଗାନ୍ଧିଜୀଙ୍କ ଧର୍ମଧାରା ଉପରେ ମାନସିଂହଙ୍କର ଧାରଣା ପରବର୍ତ୍ତୀ କାଳରେ କିଛିଁତ ପରିବର୍ତ୍ତନ ହୋଇଥିଲେ ମଧ୍ୟ, ହିନ୍ଦୁମାନଙ୍କର ଦେବତା ଓ ଗୀତାର ନାୟକ ତଥା ପ୍ରବକ୍ତା ଶ୍ରୀକୃଷ୍ଣଙ୍କ ସହିତ ଗାନ୍ଧିଜୀଙ୍କୁ ଅବତାର ଭାବରେ ବର୍ଣ୍ଣନା କରିଛନ୍ତି । ବିପ୍ଲବୀ କୃଷ୍ଣଙ୍କୁ ବିପ୍ଲବୀ ମହାତ୍ମା ଗାନ୍ଧିଙ୍କ ସହିତ ତୁଳନା କରି ଲେଖିଛନ୍ତି:–"ଏଇ ଲେଖକର ମତରେ ସମସାମୟିକ କାଳରେ ସାମ୍ରାଜ୍ୟହୀନ କୃଷ୍ଣ ଯେ, ସମ୍ରାଟର ସମ୍ମାନ ପାଉଥିଲେ, ବୋଧହୁଏ ତାର ମୂଳ ପତ୍ତନ ପଡିଥିଲା ମାତ୍ର, ତରୁଣ ବୟସରେ ହିଁ ତାଙ୍କର ଏହି ଅସାଧାରଣ ବିପ୍ଲବାତ୍ମକ ଯାହାକି ଏକଚ୍ଛତ୍ରବାଦୀ–ଶାସକର ପତନ ଘଟାଇ ଏକ ନିର୍ଯାତିତ ପ୍ରଜା–ସଂପ୍ରଦାୟକୁ ମୁକ୍ତି ଦେଇ ପାରିଥି ଲା । ପରବର୍ତ୍ତୀ ମହାତ୍ମାର ମୂଳପତ୍ତନ ଠିକ୍ ଏଇପରି ପଡିଥିଲା ନିର୍ଯାତିତ ଭାରତୀୟମାନଙ୍କପାଇଁ ଦକ୍ଷିଣ ଆଫ୍ରିକାର ନିରୁପଦ୍ରବ ପ୍ରତିରୋଧରେ ।"(38)

॥ ମାନସିଂହଙ୍କ ବିଗ୍ରଧାରା ॥

ଶ୍ରୀକୃଷ୍ଣଙ୍କ ଜୀବନର ତୁଳନା କରି ମହାତ୍ମାଗାନ୍ଧୀଙ୍କ ସମ୍ପର୍କରେ ମାନସିଂହ ଲେଖିଛନ୍ତି:– "ଗାନ୍ଧି ପରି ଶ୍ରୀକୃଷ୍ଣ ମଧ୍ୟ ଏକ ନିଷ୍ଫଳ, ବ୍ୟର୍ଥକାମ, ନିଃସଙ୍ଗ ବ୍ୟକ୍ତିତ୍ୱ ଘେନି ମରିଥିଲେ ବୋଲି ଜଣାଯାଉଛି । ଗଡ୍‌ସେ ହାତରେ ଗାନ୍ଧି ମରିବାର ବହୁପୂର୍ବରୁ 'ମହାତ୍ମା' ମରିସାରିଥିଲେ ଓ ଗାନ୍ଧି ମରିବାର ବହୁପୂର୍ବରୁ ଗାନ୍ଧିବାଦର ମୃତ୍ୟୁ ହୋଇସାରିଥିଲା, ତଥାକଥିତ ଗାନ୍ଧିବାଦୀ କଂଗ୍ରେସୀଙ୍କ କାର୍ଯ୍ୟ କଳାପ ଯୋଗୁ । ସେହିପରି କୃଷ୍ଣଙ୍କ କରୁଣ ମୃତ୍ୟୁ ପୂର୍ବରୁ ତାଙ୍କ ବାଣୀର ଓ ସ୍ୱପ୍ନର ମୃତ୍ୟୁ ସେ ନିଜେ ବୋଧହୁଏ ଦେଖି ଯାଇଥିଲେ । ତାଙ୍କ ଜ୍ଞାତିକୁଟୁମ୍ବ ତାଙ୍କ ନିଜ କଥା ମାନି ନଥିଲେ, ଯେପରି ଗାନ୍ଧିବାଣୀର ଘୋରତମ ହତ୍ୟାକାରୀ ହେଲେ, ଗାନ୍ଧିଙ୍କ ନିକଟ ପାର୍ଶ୍ୱଚର ବୃନ୍ଦ । ପ୍ରାୟ ତିନି ହଜାର ବର୍ଷ ପୂର୍ବେ ଶ୍ରୀକୃଷ୍ଣ ଦ୍ୱାରକାରେ ପ୍ରହିବିଶନ(ନିଶାନିବାରଣ) ଜାରି କରିଥିଲେ । ଦ୍ୱାରକାରେ ମଦ୍ୟପାନ ବନ୍ଦ କରାଇଥିଲେ ହେଁ, ତାଙ୍କ ନିଜ ଲୋକେ ପ୍ରଭାସକୁ ଯାଇ ପ୍ରଚୁର ମଦ ପିଇ, ଶେଷରେ ଧ୍ୱଂସପ୍ରାପ୍ତ ହେଲେ । ଶ୍ରୀକୃଷ୍ଣ ଖୁବ୍ ସମ୍ଭବତଃ ନିର୍ଜନରେ ନିଜ ଜୀବନର ଓ ପ୍ରଗ୍ରରର ଶୋଚନୀୟ ପରିଣତି କଥା ଚିନ୍ତା କରୁ କରୁ ପ୍ରାଣତ୍ୟାଗ କରିଥିଲେ । ଜରା(ବାର୍ଦ୍ଧକ୍ୟ)ର ଶର ଏକ ବ୍ୟଞ୍ଜନାତ୍ମକ ବର୍ଣ୍ଣନା ମାତ୍ର । ବାପୁଜୀଙ୍କ କଥା ନ ଶୁଣି ତାଙ୍କ ଅନୁଚରମାନଙ୍କ ଦ୍ୱାରା ତାଙ୍କ ପ୍ରିୟ ଜନ୍ମଭୂମି ଯେପରି ଦ୍ୱିଖଣ୍ଡିତ କରା ହୋଇଗଲା ଓ ପରେ ପରେ ସାମ୍ପ୍ରଦାୟିକ ହିଂସାରେ ଦେଶ ରକ୍ତାକ୍ତ ହୋଇ ଉଠିଲା, ସେଥିରେ ମହାମାନବ ଗାନ୍ଧି–ମୃତ୍ୟୁର ବହୁ ପୂର୍ବରୁ, ଯେ ଏକ ବହୁଧା–ଉଗ୍ନ, ଅବସାଦ ଗ୍ରସ୍ତ ବ୍ୟକ୍ତି ହୋଇ ପଡିଥିଲେ, ଏହା ସମସ୍ତଙ୍କୁ ଜଣା । ବୋଧହୁଏ ମହାମାନବ କୃଷ୍ଣଙ୍କ ଜୀବନରେ ମଧ୍ୟ ଏହି ବିପର୍ଯ୍ୟୟ ଘଟିଥିଲା ।"(୩୨) ମାନସିଂହ ଦେବତା କୃଷ୍ଣଙ୍କୁ ଯେପରି ଜଣେ ମହାମାନବ ଭାବରେ ଚିନ୍ତା କରୁଥିଲେ, ବାପୁଜୀଙ୍କୁ ମଧ୍ୟ ସେହିପରି ଦେବତାଙ୍କ ଅବତାର ବୋଲି ମନେ କରୁଥିଲେ ।

<u>ବ ଜ</u> :— ମାନସିଂହଙ୍କ ଚିତ୍ତଲୋକରେ ଦଳିତ ପତିତ ଜନ ସାଧାରଣଙ୍କ ପ୍ରତି ସହାନୁଭୂତି, ସତ୍ୟ ଓ ଧର୍ମପାଇଁ ଆତ୍ମତ୍ୟାଗ ଓ ତତ୍‌ସମ୍ପର୍କିତ ଆଦର୍ଶବୋଧ, ଜୀବନ ଓ ଜଗତକୁ ଜିଜ୍ଞାସାର ପୂର୍ଣ୍ଣ ଦୃଷ୍ଟିରେ ଦେଖିବାର ଇଚ୍ଛା ଏକତ୍ର ସହାବସ୍ଥାନ କରିଥିଲା । ତରୁଣ ବୟସର କବିମନ ଏଇ ସମସ୍ତ ଆଦର୍ଶ ଓ ମାନବତାବାଦର ପ୍ରତିମୂର୍ତ୍ତି ଗାନ୍ଧିଙ୍କ ଠାରେ ଲକ୍ଷ୍ୟକରି ତାଙ୍କପ୍ରତି ଭକ୍ତି ବିହ୍ୱଳ ହୋଇଉଠିଥିଲା । ଭଗବାନ ଓ ଗାନ୍ଧି ତାଙ୍କ ଦୃଷ୍ଟିରେ ଏକ ହୋଇଥିଲେ । କିନ୍ତୁ ଧର୍ମ୍ମ ବିଶ୍ୱାସ ଦୃଷ୍ଟିରୁ ସେ କ୍ରମଶଃ ଗାନ୍ଧିଜୀଙ୍କ ଠାରୁ ଦୂରେଇବା ପାଇଁ ବାଧ୍ୟ ହୋଇଥିଲେ । ମାନସିଂହଙ୍କର ପୁରୋହିତତନ୍ତ୍ର ଓ ବାହ୍ମଣ୍ୟ ଧର୍ମ ପ୍ରତି ଆକଣ୍ଠ ଘୃଣା । ଗାନ୍ଧିଜୀ ହରିଜନ ଗିରିଜନମାନଙ୍କର ଉନ୍ନତିପାଇଁ ଆତ୍ମତ୍ୟାଗ କରିବାପାଇଁ ପ୍ରସ୍ତୁତ ଥିଲେ କିନ୍ତୁ ବ୍ରାହ୍ମଣ ସମ୍ପ୍ରଦାୟକୁ ନିନ୍ଦା କରିବାପାଇଁ କିମ୍ବା ସେମାନଙ୍କଠାରୁ ଦୂରେଇ ରହିବା ପାଇଁ ଇଚ୍ଛା ପ୍ରକାଶ କରୁ ନଥିଲେ । ଦ୍ୱିତୀୟତଃ ଗାନ୍ଧି ଥିଲେ ରାଜନୈତିକ ନେତା, ଧର୍ମ ପ୍ରଗ୍ରରକ ନୁହନ୍ତି । ଗାନ୍ଧିଙ୍କର ରାଜନୈତିକ ଅନୁଷ୍ଠାନ କଂଗ୍ରେସ ପ୍ରତି ମାନସିଂହଙ୍କର ବିଶେଷ ଶ୍ରଦ୍ଧା ନଥିଲା । ତୃତୀୟତଃ ଗାନ୍ଧିଙ୍କର ଅତିମାନବୀୟ

ପୁରୁଷାକାରକୁ ଗ୍ରହଣ କରୁଥିଲେ ବି ତାଙ୍କର ହେତୁବାଦୀ ଜିଜ୍ଞାସା ଗାନ୍ଧୀଙ୍କ ପ୍ରଦର୍ଶିତ ପଥକୁ ଅମୋଘ ମାନିବାପାଇଁ ପ୍ରସ୍ତୁତ ନଥିଲେ । ସେଇଥିପାଇଁ ଜୀବନର ଆଦ୍ୟ ଅପରାହ୍ଣରେ ମାନସିଂହ ଗାନ୍ଧୀଜୀଙ୍କୁ ଶ୍ରେଷ୍ଠ ମଣିଷ ଭାବରେ ସ୍ୱୀକୃତି ଦେଇବି କ୍ରମଶଃ ବୌଦ୍ଧଧର୍ମ ଆଡକୁ ଆକର୍ଷିତ ହୋଇଯାଉଥିଲେ । ବ୍ୟକ୍ତିଗତ, ପାରିବାରିକ ତଥା ସାମାଜିକ ଜୀବନର ନାନା ଅଭିଘାତ ଓ ପ୍ରେରଣା ତାଙ୍କୁ ବୌଦ୍ଧଧର୍ମର ଅଗଣା ଭିତରକୁ ନେଇଯାଇଥିଲା । ବୌଦ୍ଧଧର୍ମ ପ୍ରତି ତାଙ୍କର ଆକର୍ଷଣ କିନ୍ତୁ ଆକସ୍ମିକ ନଥିଲା । ତରୁଣ ବୟସରେ ବି ଗୌତମ ବୁଦ୍ଧଙ୍କର ଭାବ ବିପ୍ଳବ ତାଙ୍କ ମନରେ ଗଭୀର ରେଖାପାତ କରିଥିଲା । ବୌଦ୍ଧଧର୍ମାବଲମ୍ବୀ ମାନସିଂହଙ୍କୁ ଜାଣିବାପାଇଁ ଓ ତାଙ୍କର ଭଗବତ୍ ବିଶ୍ୱାସର ସ୍ପଷ୍ଟ ରୂପରେଖ ଜାଣିବା ପାଇଁ ବୁଦ୍ଧ ଓ ବୌଦ୍ଧଧର୍ମ ପ୍ରତି ତାଙ୍କର ଦୃଷ୍ଟିକୋଣ ସଦୃଷ୍ଟାନ୍ତ ଆଲୋଚନାର ଅପେକ୍ଷା ରଖେ ।

'ବୁଦ୍ଧ' ମାନସିଂହଙ୍କର ପ୍ରିୟ କାରଣ "ଘୋର ଅରଣ୍ୟରେ ରାଜପୁତ୍ର ଗୌତମ ସମଗ୍ର ମାନବ ଜାତିର ଦୁଃଖପାଇଁ, ଯାହା ଆବିଷ୍କାର କଲେ, କାଳ ଆଜି ତାକୁ ବିଶ୍ୱ ବ୍ୟାପୀ କରିଛି ।"(40) ଇଂଲଣ୍ଡ ଅବସ୍ଥାନ କାଳରେ ମାନସିଂହ ସାମୟିକ ଭାବରେ ରବିବାର ଦିନ ଚର୍ଚ୍ଚକୁ ଯାଉଥିଲେ । ଥରେ ଚର୍ଚ୍ଚରେ ଜଣେ ବ୍ୟକ୍ତି ସହିତ ଧର୍ମ ଚର୍ଚ୍ଚା କରୁ କରୁ ସେ ଜଗତରେ ଖ୍ରୀଷ୍ଟଙ୍କୁ ଶ୍ରେଷ୍ଠ ସ୍ଥାନ ଦେଲାବେଳେ, ମାନସିଂହ ବୁଦ୍ଧଙ୍କୁ ଶ୍ରେଷ୍ଠସ୍ଥାନ ଦେଇ ଯୁକ୍ତିରେ ସେ ଲୋକକୁ ବୁଦ୍ଧଙ୍କ ସଂପର୍କରେ ସମ୍ୟକ ସୂଚନା ପ୍ରଦାନ କରିଥିଲେ ।

ମାନସିଂହଙ୍କ ଧର୍ମ ଓ ଭଗବାନଙ୍କ ସଂପର୍କରେ 'ଅକ୍ଷତ' କବିତା ପୁସ୍ତକର ଭୂମିକା ବିଶେଷ ପ୍ରଣିଧାନ ଯୋଗ୍ୟ । ମାନସିଂହ ଲେଖିଛନ୍ତି:-"ଏହି ଲେଖକ ଯତି, ଭକ୍ତ ବା ଧାର୍ମିକ ନୁହେଁ । ଧରାତଳର କୋଟି କୋଟି ପଥଯାତ୍ରୀମାନଙ୍କ ମଧ୍ୟରୁ ସେ ଏକ ସାମାନ୍ୟତମ ଯାତ୍ରୀ ମାତ୍ର । ସାଧାରଣ ସହଯାତ୍ରୀମାନଙ୍କ ପରି ତା'ର ଶରୀର ଜୀବନ ସଂଗ୍ରାମର ଅସ୍ତ୍ର କ୍ଷତରେ ବିକଳ, ତାର ଗଣ୍ଡ ଅଶ୍ରୁ-ସ୍ନାତ, ତାର ଅନ୍ତର ଅସନ୍ତୋଷ ଓ ଅଭିମାନରେ ଭରା ।

ନିଜ ଜୀବନର ଓ ସହଯାତ୍ରୀ ଜୀବଗ୍ରାମର ଦୁଃଖ ଦୁର୍ଦ୍ଦଶାର କଥା ଭାବୁଁ ଭାବୁଁ ଲେଖକ, ବେଳେ ବେଳେ ଗୌତମ ବୁଦ୍ଧଙ୍କ ସଂଗେ ନିରୀଶ୍ୱର ହେଲା ବେଳକୁ, ତେଣେ ରାମକୃଷ୍ଣ ପରମହଂସଙ୍କର ଈଶ୍ୱର-କୁଟୁମ୍ବିତା ଦେଖି ସ୍ତବ୍ଧ ହୁଏ । ଏ ରହସ୍ୟର ଠିକ୍ ଉତ୍ତର କିଏ ଦେବ ?"(41)

ଏହି ଦୃଶ୍ୟମାନ ସୃଷ୍ଟିର ରହସ୍ୟ ଭେଦ କରିବାକୁ ସଭ୍ୟତାର ଆରମ୍ଭରୁ ନାନା ଧର୍ମ ନାନା ଦର୍ଶନ, ବିଭିନ୍ନ ମତବାଦ ଦେଇ ମଧ୍ୟ ସଠିକ ଭାବରେ କିଛି ପ୍ରକାଶ କରିପାରି ନାହାନ୍ତି । ବହୁ ସହସ୍ର ବର୍ଷତଳେ ଋକ୍‌ବେଦର ଋଷିଗଣ ମଧ୍ୟ ଏହି ପ୍ରଶ୍ନକୁ ଅସମାଧିତ ଭାବରେ ଛାଡି ଯାଇଛନ୍ତି । ଏହି ଅସମାଧିତ ପ୍ରଶ୍ନ ସଂପର୍କରେ ଅଧିକ ଚର୍ଚ୍ଚାକୁ ମାନସିଂହ ପସନ୍ଦ ନକରି ବର୍ତ୍ତମାନର ମଣିଷର ସୁଖଦୁଃଖ କଥା ଚିନ୍ତା କରିଛନ୍ତି:-"ବୁଦ୍ଧ ଏଥିପାଇଁ ସୃଷ୍ଟି ଓ ସ୍ରଷ୍ଟାର ତତ୍ତ୍ୱ ନେଇ ସମୟ ବୃଥା ନଷ୍ଟ ନ କରି ଆତ୍ମ-କର୍ଷଣ ଦ୍ୱାରା ସଂସାର-ଦୁଃଖରୁ ନିର୍ବାଣ ଲାଭ କରିବାକୁ ଉପଦେଶ ଦେଇଥିଲେ । କିନ୍ତୁ ମନୁଷ୍ୟର ଚିତ୍ତ ଏକ ଅଦୃଶ୍ୟ ଶକ୍ତି ସଂଗେ ନିଜକୁ ସଂପର୍କିତ ରଖି ଏକ ପ୍ରକାର ମାନସିକ ସୁଖ ଆସ୍ୱାଦନ କରିବାକୁ ସ୍ପୃହେଁ । ଫଳରେ ବୁଦ୍ଧଙ୍କର ଶିଷ୍ୟମାନେ ଦିନେ ତାଙ୍କୁଇ ଈଶ୍ୱର ରୂପେ ପୂଜା କରିବାକୁ ଲାଗିଲେ ।"(42)

॥ ମାନସିଂହଙ୍କ ବିଗ୍ରହଧାରା ॥

ମାନସିଂହ ଈଶ୍ୱର ଆରାଧନା ସଂପର୍କରେ କହନ୍ତି ଯେ:—"ଏ ଲେଖକ ଭକ୍ତ ବା ସାଧକ ନୁହେଁ । ସେ ଇହ ଜୀବନର ଦୁଃଖ ସୁଖର ଏକ ଭୋକ୍ତା ମାତ୍ର । ମନୁଷ୍ୟ ନିଜ ଅନ୍ତରର ଦୁଃଖ ସୁଖ ଅନ୍ୟ ଆଗରେ କହି ସୁଖ ପାଏ । ଲେଖକ ଅନ୍ୟଗତି ନ ଦେଖି, ଈଶ୍ୱର ନାମକ ସେହି ଶାଶ୍ୱତ-ରହସ୍ୟମୟ ଅଦୃଷ୍ଟ ପୁରୁଷ ନିକଟରେ ତାହାହିଁ କରିବାକୁ ଯାଉଛି ।"(43) ବୁଦ୍ଧଙ୍କର ନିରୀଶ୍ୱରବାଦୀ ଆତ୍ମ ଜିଜ୍ଞାସା, ପୁରୋହିତ ଶାସନ ବିରୁଦ୍ଧରେ ଧର୍ମଯୁଦ୍ଧ, ମାନସିଂହଙ୍କୁ ତାଙ୍କପ୍ରତି ଆକୃଷ୍ଟ କରିଥିଲା । ତାଙ୍କର ସମ୍ପର୍କୀୟ ଭାଇ ଶିଳ୍ପୀ ଉପେନ୍ଦ୍ର ମହାରଥୀଙ୍କର ବୌଦ୍ଧ ଧର୍ମ ଗ୍ରହଣ, ତାଙ୍କୁ ବୌଦ୍ଧଧର୍ମ ପ୍ରତି ଆକୃଷ୍ଟ କରିଥିଲା ଓ ସେ ନିଜେ ବୌଦ୍ଧଧର୍ମାବଲମ୍ବୀରେ ପରିଣତ ହୋଇଥିଲେ । ବୌଦ୍ଧ ହେଲା ପରେ ବି ସେ ବୌଦ୍ଧମାନଙ୍କର ନାନା କୁସଂସ୍କାର ତଥା ରୀତିନୀତିକୁ ଗ୍ରହଣ କରିପାରି ନଥିଲେ । ନୂତନ ଧର୍ମ ଗ୍ରହଣ କରି ସେହି ଧର୍ମ ଭିତରେ ବିପ୍ଳବର ଧ୍ୱଜା ଉଡାଇଥିଲେ । ମାନସିଂହ ବୌଦ୍ଧଧର୍ମ ଗ୍ରହଣ କରିବାପରେ ବୁଦ୍ଧଙ୍କ ସଂପର୍କରେ କହିଥିଲେ:—"ଭାରତବର୍ଷରେ ପଂକିଳ ଆଗ୍ରହ ବିରୁଦ୍ଧରେ ପ୍ରଥମ ଓ ପ୍ରଧାନ ସଂଗ୍ରାମ ଚଳାଇଲେ ବୁଦ୍ଧ । ବେଦକୁ ସାମାନ୍ୟ ମନୁଷ୍ୟ ରଚିତ ଗ୍ରନ୍ଥ ମାତ୍ର ବୋଲି ମନେ କରିବା, ସର୍ବଜାତିକୁ ସମାନ ମନେ କରିବା, ବହୁ ଯୁଗ ପ୍ରତିଷ୍ଠିତ ଯାଗଯଜ୍ଞର ନିନ୍ଦାବାଦ କରିବା-ତୀକ୍ଷ୍ଣତମ ବିଗ୍ରହ ଓ ଅସାଧାରଣ ସାହସ ବିନା ଅସମ୍ଭବ ।"(44) ଏହି ମହାନ୍ ସାହସିକ ଗୁଣଯୋଗୁ ମାନସିଂହ ବୁଦ୍ଧଙ୍କୁ ଆଦରି ନେଇଥିଲେ । 'ବୁଦ୍ଧଂ ଶରଣଂ ଗଚ୍ଛାମି'କବିତାରେ ନିଜକୁ ଜଣେ ଭିକ୍ଷୁ ଭାବରେ ବୌଦ୍ଧ ବିହାରରେ ପ୍ରବେଶ କରାଇବାର କାମନା କରିଛନ୍ତି । ତଥାଗତ ବୁଦ୍ଧଙ୍କର ଅମୃତୋପମ ବାଣୀ ଅହରହ କବିଙ୍କର କର୍ଣ୍ଣପଟରେ ଅନୁରଣିତ ହେଉଥାଏ ଓ ସେହି ଶାନ୍ତ ଚକ୍ଷୁ ଦିଓଟି ମାନସ ପଟରେ ଭାସି ଉଠୁଥାଏ । ତଥାଗତ ବୁଦ୍ଧ ହିଁ କବିଙ୍କର ପ୍ରାଣର ବେଦନାକୁ ଶୁଣି ପାରିଛନ୍ତି । ବୁଦ୍ଧ, ଧର୍ମ ଓ ସଂଘର ଶରଣ ଯାଚ ତରୁଣ ଭିକ୍ଷୁ ଭାବରେ କବି ସମସ୍ତ ସମର୍ପଣ କରିଦେଇଛନ୍ତି । କବି ଜନଗଣର ମଂଗଳ ସହିତ ନିଜର ନିର୍ବାଣ ଆଶାରେ ବୌଦ୍ଧଧର୍ମ ଗ୍ରହଣ କରିଛନ୍ତି ବୋଲି କହିଛନ୍ତି :—

"ନିର୍ବାଣ ଆଶେ ତରୁଣ ଭିକ୍ଷୁ ରିକ୍ତ, ତିକ୍ତ, ତ୍ୟାଗୀ,
କୁଟୁମ୍ବ-ଜନ ଘର-ସଂପଦ ଛାଡି ମୁଁ ଆସିଛି ମାଗି,
ତମରି କରୁଣା, ତଥାଗତ, ପାରିହେବାକୁ ଏ ସଂସାର,
ବୁଇଟି ବୃଷ୍ଟ ନୟନ ଅଇରି ଆଜି ତା ତପସ୍ୟାର ।
ତୁମେଇ ଶରଣ ତାର,
ହେ ଜୀନ, ବୁଦ୍ଧ, ପରମ ଶୁଦ୍ଧ,
କରୁଣାର ଅକୂପାର ', "(45)

'ବୁଦ୍ଧ'ନାଟକର ମୁଖବନ୍ଧରେ ମାନସିଂହ ଲେଖିଛନ୍ତି"ନିଜ ମନର କ୍ଷୁଧା ମେଣ୍ଟାଇବା ପାଇଁ ମୁଁ ମଝିରେ ମଝିରେ ବିବିଧ ଧର୍ମଶାସ୍ତ୍ର ଆଲୋଚନା କରିଥାଏ । ସମସ୍ତଙ୍କ ଭିତରେ ବୁଦ୍ଧ ଓ ତାଙ୍କର ବାଣୀ ମୋ ଚିତ୍ତକୁ ଅଧିକ ଅଭିଭୂତ କରିବାରୁ ତାଙ୍କର ଜୀବନ ଓ ତତ୍ତ୍ୱ ଅଧିକ ଆଲୋଚନା କଲି ।"(46) ମାନସିଂହ

ବୌଦ୍ଧଧର୍ମ ପ୍ରତି ଆକୃଷ୍ଟ ହେବାର କାରଣ ସ୍ୱରୂପ ଲେଖିଛନ୍ତି ଯେ, :-"ମାନବ ସଭ୍ୟତାର ଦୀର୍ଘ ଇତିହାସରେ କପିଳବାସ୍ତୁର ରାଜପୁତ୍ର ଶାକ୍ୟ ଗୌତମ ହିଁ ମନୁଷ୍ୟକୁ କେବଳ ମନୁଷ୍ୟ ହେବାକୁ ଶିଖାଇ ଯାଇଛନ୍ତି । x x x ବୌଦ୍ଧଧର୍ମ କୌଣସି ଦେବଦୂତ ବା ଅବତାର ଦ୍ୱାରା ପ୍ରଚାରିତ ହୋଇନାହିଁ ଏବଂ ଏହା କୌଣସି କଳ୍ପିତ ଈଶ୍ୱରର କୃପା ବା ସ୍ୱର୍ଗ-ସୁଖର ବର୍ଣ୍ଣନା ଦେଇ ଲୋକଙ୍କୁ ଭୁଲାଇବାର ଚେଷ୍ଟା କରିନାହିଁ । ଏହା ମନୁଷ୍ୟ ପାଇଁ, ଏଇ ପୃଥିବୀସ୍ଥ ମନୁଷ୍ୟ ପାଇଁ, ତାର ପୃଥିବୀସ୍ଥ ଜୀବନକୁ ସୁଖକର, ସହନୀୟ, ମହନୀୟ ଓ ମଧୁର କରିବାକୁ ହିଁ ଜଣେ ମହାନ୍-ମନୁଷ୍ୟ-ପ୍ରବର୍ତ୍ତିତ ଏକ ବଞ୍ଚିବାର ଆଦର୍ଶ । ଏହା ହିଁ ଏକମାତ୍ର ମାନବିକ ଧର୍ମ ।"(47)

ବୌଦ୍ଧଧର୍ମର ବୈଶିଷ୍ଟ୍ୟ ସମ୍ପର୍କରେ ମାନସିଂହ କହିଛନ୍ତି, ଏହା ହିଁ ବିଶ୍ୱର ଏକମାତ୍ର ମାନବବାଦୀ ଧର୍ମ, କାରଣ "ଜଗତର ଶ୍ରେଷ୍ଠମାନବ ବୁଦ୍ଧ, ବାରମ୍ବାର କହିଯାଇଛନ୍ତି ଯେ, ସେ ଜଣେ ସାମାନ୍ୟ ମନୁଷ୍ୟ ଏବଂ ପ୍ରତ୍ୟେକ ମନୁଷ୍ୟର 'ବୁଦ୍ଧ' ହେବାର ଶକ୍ତି ଅଛି, ସମ୍ଭାବନା ମଧ୍ୟ ଅଛି । ସେଥିପାଇଁ ଇତର ସାଧାରଣଙ୍କୁ ସ୍ୱୟଂ ବୁଦ୍ଧଙ୍କ ଚରଣ ତଳରେ ବା ଅନ୍ୟ କୌଣସି କାଳ୍ପନିକ ଦେବତା ବା ଈଶ୍ୱର ନିକଟରେ ଆଶ୍ରୟ ନେବାକୁ ହେବନାହିଁ । ଆଶ୍ରୟ ନେବାକୁ ହେବ ନିଜର ଆତ୍ମପ୍ରତ୍ୟୟ ନିଜର କ୍ରମବିକାଶମାନ ବ୍ୟକ୍ତିତ୍ୱ ଭିତରେ । ବୌଦ୍ଧଧର୍ମ ପାର୍ଥିବ ମନୁଷ୍ୟ ପାଇଁ ସର୍ବଶ୍ରେଷ୍ଠ ପାର୍ଥିବ ଧର୍ମ କେବଳ ନୁହେଁ, ମନୁଷ୍ୟର ବ୍ୟକ୍ତିତ୍ୱ ଓ ବିପୁଳ ସମ୍ଭାବନା, ମନୁଷ୍ୟ ଭାବରେ ମନୁଷ୍ୟ ପ୍ରତି ବିଶ୍ୱାସ, ଅନ୍ୟ କୌଣସି ଧର୍ମରେ ଏତେ ସ୍ପଷ୍ଟ ଭାବରେ ଫୁଟି ନାହିଁ, ଯେପରି ଫୁଟିଛି ବୁଦ୍ଧ ବାଣୀରେ ।"(48)

ଅନ୍ୟାନ୍ୟ ଧର୍ମାନ୍ତରିତ ବ୍ୟକ୍ତିଙ୍କ ଭଳି ମାନସିଂହ ମଧ୍ୟ ତାଙ୍କ ଧର୍ମାନ୍ତରର କାରଣ ପ୍ରଦାନ କରିଛନ୍ତି । ଜନ୍ମ ସୂତ୍ରରେ ସେ ହିନ୍ଦୁ ହେଲେ ବି ହିନ୍ଦୁଧର୍ମ ପ୍ରତି ଅନାକର୍ଷଣ ହିଁ ତାଙ୍କୁ ବୌଦ୍ଧଧର୍ମର ପ୍ରାଙ୍ଗଣକୁ ନେଇ ଆସିଛି । ଏ ସମ୍ପର୍କରେ ସେ କହନ୍ତି :-"ମୋ ମତରେ ଭାରତର ସକଳ ଅପଯଶ, ଅପମୃତ୍ୟୁ, ପରାଜୟ ଓ ଲାଞ୍ଛନା ପାଇଁ ଦାୟୀ ବ୍ରାହ୍ମଣ୍ୟଧର୍ମ । ଏଇ ଧର୍ମ ଏ ଦେଶକୁ ଜାତି ପ୍ରଥାର ଗୋଲକଧନ୍ଦାରେ କେବେହେଲେ ଗୋଟାଏ ବିରାଟ ଏକକ, ଅଖଣ୍ଡ 'ନେଶନ' ଭାବରେ ଗଢିଉଠିବାକୁ ଦେଇନାହିଁ । ଏ ଧର୍ମର ସ୍ୱାର୍ଥପର ପୁରୋହିତଦଳ ଜନସାଧାରଣଙ୍କୁ ଶାସ୍ତ୍ରର ଦୁହାଇ ଦେଇ ଚିରକାଳ ମୂର୍ଖତାର, ଭାଗ୍ୟବାଦିତାର ନୈରାଶ୍ୟମୟ ପଥହୀନ ମରୁଭୂମିରେ ଭ୍ରାମ୍ୟମାଣ କରାଇ ଆସିଛନ୍ତି"(49)'ଅନାବଶ୍ୟକ ମଧ୍ୟସ୍ଥ'କବିତାରେ ପୁରୋହିତ ଦଳର ପ୍ରବଞ୍ଚନାର ଚିତ୍ର ପ୍ରଦାନ କରିଛନ୍ତି ।'କମଳାୟନ'କାବ୍ୟରେ ସ୍ୱାମୀ ମହାନନ୍ଦ, ବିଶ୍ୱମିତ୍ରା ଓ ସେସିଲୋକ ମଧ୍ୟରେ କଥୋପକଥନ ସମୟରେ ସେସିଲୋବ୍ ମୁଖରେ ମାନସିଂହ ନିଜର ମନରଭାବ ପ୍ରକାଶ କରି କହିଛନ୍ତି:—"ସ୍ୱାର୍ଥପର ପୁରୋହିତ ସମ୍ପ୍ରଦାୟ ହାତରେ ସମଗ୍ରମାନବ ଜାତି ଯୁଗଯୁଗ ଧରି ସହି ଆସିଛି ଘୋର ଅଜ୍ଞତାର ଅମାନୁଷ ଅତ୍ୟାଚାର । ଜନତାର ମନରେ ନାନା ମିଥ୍ୟାଆଶା ପୂରାଇ, ନାନା ଉପଚାରରେ ଜନତାର ଚିତ୍ତକୁ ଭୁଲାଇ, ତାର ବୁଦ୍ଧି ବିଚାରକୁ ଅପହରଣ କରି, ମୃତ୍ୟୁ ପରର ନାନା ଭୟ ସାଧାରଣ ଜନତାର ମସ୍ତକରେ ଭରି, ଏଇ ଭାରତପରି ସର୍ବତ୍ର ପୁରୋହିତ ସମ୍ପ୍ରଦାୟ ମଣିଷକୁ ପଶୁପଲପରି ରଖିଥିଲେ ।"(50)

ବୁଦ୍ଧ ହିଁ ଏ ବିଷୟରେ ପ୍ରଥମରେ ପ୍ରତିବାଦ ଆରମ୍ଭ କଲେ । ଏହି ଘୋର ପ୍ରବଞ୍ଚନାମୟ

ମିଥ୍ୟା ଧର୍ମକୁ ପ୍ରଥମେ ସେହି ବୁଦ୍ଧ ହିଁ ପ୍ରତ୍ୟାଖାନ କଲେ । ବୁଦ୍ଧହିଁ ଶିକ୍ଷା ଦେଲେ, ମଣିଷ ନିଜ ସତ୍କର୍ମର ଆଲୋକରେ ଆଲୋକିତ ହୋଇପାରେ । ପଣ୍ଡା ପୁରୋହିତ ପାଦ୍ରୀମାନଙ୍କର ପ୍ରଦର୍ଶିତ ମାର୍ଗ ତାକୁ ଆଲୋକର ସନ୍ଧାନ ଦେଇପାରେ ନାହିଁ । ବୁଦ୍ଧଙ୍କ ଜନ୍ମର ଅଢେଇ ହଜାର ବର୍ଷପରେ ଲେନିନ୍ ଋଷୀୟ ରାଷ୍ଟ୍ର ସଂଘରେ ଶ୍ରମିକ ଓ ବୁଦ୍ଧିଜୀବୀମାନଙ୍କର ଆନ୍ଦୋଳନ ସଂଗଠିତ କରି ଅନୁରୂପ ମୁକ୍ତିର ଆଲୋକ ଦେଖାଇଲେ ।

**ବୌଦ୍ଧ ମାନସିଂହଙ୍କ ଈଶ୍ୱର ବିଶ୍ୱାସ:—**

ବୁଦ୍ଧ, ହିନ୍ଦୁଧର୍ମର ପୌତ୍ତଳିକତା ଓ ଜିଜ୍ଞାସା ରହିତ ଦେବତା ବିଶ୍ୱାସ ବିରୁଦ୍ଧରେ ଅଭିଯାନ କରି ନିଜର ଧର୍ମ ପ୍ରତିଷ୍ଠା କରିଥିଲେ । ପରବର୍ତ୍ତୀ କାଳରେ ବୁଦ୍ଧଙ୍କ ପ୍ରତିଷ୍ଠିତ ବୌଦ୍ଧଧର୍ମ, ବୁଦ୍ଧଙ୍କ ନାମ ପ୍ରଚାର କରିଥିବା ବୌଦ୍ଧଧର୍ମ, ପୌତ୍ତଳିକତା, ବହୁଦେବତା ବାଦ, ପ୍ରଚ୍ଛନ୍ନ ଈଶ୍ୱରରେ ବିଶ୍ୱାସ କରି ବସିଲା । ମାନସିଂହ ମୂଳରୁ ନାସ୍ତିକ ନଥିଲେ ହେଁ, ବହୁଦେବତା ବାଦରେ ବିଶ୍ୱାସ କରୁ ନଥିଲେ ଓ ପାରମ୍ପରିକ ଈଶ୍ୱର ବିଶ୍ୱାସ ମଧ୍ୟ ତାଙ୍କ ମନରୁ କ୍ରମଶଃ ଲୋପପାଇ ଆସୁଥିଲା । ବୁଦ୍ଧ ପ୍ରଚାରିତ ଧର୍ମର ନିରୀଶ୍ୱରବାଦିତା ପ୍ରତି ତାଙ୍କର ଆକର୍ଷଣ ସବୁଠାରୁ ବେଶି । ତେଣୁ ବୌଦ୍ଧ ହେଲାପରେ ଈଶ୍ୱର ଦେବତା ଓ ଅବତାର ବାଦ ସମ୍ପର୍କରେ ସେ ଯେତେ ଆଲୋଚନା କରିଛନ୍ତି, ସବୁଥିରେ ସେ ନିଜର ବୁଦ୍ଧିଜୀବୀ ଜିଜ୍ଞାସାର ଛାପ ରଖିଯାଇଛନ୍ତି । ମାନସିଂହ କହନ୍ତି ଯଦି ଈଶ୍ୱର ଥାଆନ୍ତି ଓ ତାଙ୍କର ଚିରପରସ୍ପରବିବଦମାନ ଭକ୍ତମାନଙ୍କର ପରସ୍ପର ବିରୋଧୀ ପ୍ରାର୍ଥନାମାନ ଶୁଣି କାମ କରୁଥାନ୍ତେ, ତେବେ ଏ ସୃଷ୍ଟି ହୁଏତ ଜଂଗଲ ରାଜ୍ୟ ହୋଇଥାନ୍ତା ବା ଅଚଳ ରହନ୍ତା । ତାଙ୍କ ମତରେ ସମସ୍ତ ଧର୍ମ ପ୍ରଚାରକମାନଙ୍କ ମଧ୍ୟରେ ଏକମାତ୍ର ବୈଜ୍ଞାନିକ ବିଚାରକ ହେଉଛନ୍ତି, ସେହି ମାନବଶ୍ରେଷ୍ଠ ବୁଦ୍ଧ । କାରଣ ଈଶ୍ୱରଙ୍କ ସମ୍ପର୍କରେ ତାଙ୍କର ବିଚାର ବୈଜ୍ଞାନିକ ଆଚାର ସିଦ୍ଧ, କୌଣସି ଅନ୍ଧବିଶ୍ୱାସ ଦ୍ୱାରା ତାହା ରହିତ ନୁହେଁ । ଯଦି ଈଶ୍ୱରଙ୍କୁ ପ୍ରାର୍ଥନା କଲେ ବା ବିଅଁଙ୍କୁ ଭୋଗ ଦେଲେ ସବୁ ହୋଇଯାନ୍ତା , ତେବେ ମନୁଷ୍ୟର ଆଉ ଭାବନାଇ ନଥାନ୍ତା । କିଏ କାହିଁକି କାମ କରିବାକୁ ଯାଆନ୍ତା? ସାମାନ୍ୟତମ ଦୁଶ୍ଚିନ୍ତାର ଅବକାଶ ବା ଆସନ୍ତା କାହୁଁ ?"(51)"ଯେଉଁମାନେ ମନେ କରନ୍ତି ଯେ, ଈଶ୍ୱର ବିଶ୍ୱାସ ବା ପ୍ରାର୍ଥନା ନ ହେଲେ ବଞ୍ଚିବା ଅସମ୍ଭବ, ସେମାନେ ସ୍ମରଣ କରିବା ଉଚିତ ଯେ ସମଗ୍ର ସୋଭିଏଟ ଋଷିଆ ଆଜି ନିରୀଶ୍ୱର । ସାର୍ଦ୍ଧ ଏସିଆ ବ୍ୟାପ୍ତ ବିରାଟ ବୌଦ୍ଧ ଜନତା ନିରୀଶ୍ୱର । ଏପରିକି ସେହିପରି ବୌଦ୍ଧଧର୍ମ ପ୍ରଭାବିତ କେନ୍ଦ୍ର ଏସିଆର ବହୁଭାଷାରେ 'ଈଶ୍ୱର' ପାଇଁ କୌଣସି ଶବ୍ଦ ହିଁ ନାହିଁ । ଆଜି କୋଟି କୋଟି ହିନ୍ଦୁ, ସୀତାରାମ ବା ରାଧାକୃଷ୍ଣଙ୍କୁ ପୂଜା କରନ୍ତି । କିନ୍ତୁ ଏହି ଦେବତା ଗୁଡିକର ଇତିହାସ ଆଠଶ ବା ହଜାର ବର୍ଷରୁ ବେଶି କି ? ସଂସ୍କୃତ ଭାଗବତରେ ରାଧାର ନାମୋଲ୍ଲେଖ ନାହିଁ।ଏ ଲୀଳାର ଉତ୍ପତ୍ତି ଏକାଦଶ ଶତାବ୍ଦୀରେ । ଖ୍ରୀଷ୍ଟାନମାନେ ବିଶ୍ୱାସ କରନ୍ତି ଯେ, ଯିଏ ଯିଶୁଖ୍ରୀଷ୍ଟଙ୍କୁ ତ୍ରାଣକର୍ତ୍ତା ବୋଲି ନ ମାନିଛି, ତାର ମୁକ୍ତି ନାହିଁ । ଖ୍ରୀଷ୍ଟଧର୍ମର ବୟସ ୧୯୦୦ ବର୍ଷମାତ୍ର, କିନ୍ତୁ ମାନବ ସଭ୍ୟତାର ବୟସ ଅନ୍ତତଃ ପାଂଚହଜାର ବର୍ଷ ।"(52)

॥ ମାନସିଂହଙ୍କ ବିଗ୍ରହଧାରା ॥

ମାନସିଂହ ଈଶ୍ୱରଙ୍କର ସ୍ୱରୂପ ସଂପର୍କରେ ଆଲୋଚନା କରି କହନ୍ତି :—"ଜଗତରେ ଆମେ ଈଶ୍ୱରଙ୍କର ଯେତେ କଳ୍ପନା ଦେଖୁ, ତାହା ଦୁଇ ପ୍ରଧାନ ଭାଗରେ ବିଭକ୍ତ ହୋଇପାରେ । ଗୋଟିଏ ହେଉଛି ନରାକାର, ଅନ୍ୟଟି ନିରାକାର । ଖ୍ରୀଷ୍ଟାନ, ମୁସଲମାନ ପ୍ରଭୃତି ସବୁ ଧର୍ମରେ ଭଗବାନ ନରାକାର । କେବଳ ପ୍ରକୃତ ହିନ୍ଦୁ ଓ ବୌଦ୍ଧ ଧର୍ମରେ ଭଗବାନ ନିରାକାର ।" ଏ କଥାକୁ ସ୍ପଷ୍ଟକରି ମାନସିଂହ କହନ୍ତି—"ମୁସଲମାନ ଧର୍ମ ପୌତ୍ତଳିକତାର ଘୋର ବିରୋଧୀ । ମହମ୍ମଦ ପ୍ରତିମା ପୂଜାର ଏପରି ବିରୋଧୀ ଥିଲେ ଯେ କାଳେ ତାଙ୍କ ଭକ୍ତମାନେ ତାଙ୍କ ମୂର୍ତ୍ତିକୁ ପୂଜାକରି ବସିବେ ଏଥିପାଇଁ ତାଙ୍କର କୌଣସି ଚିତ୍ର ବା ପ୍ରତିମା ସେ କରାଇ ଦେଇ ନଥିଲେ । ଏ ଦିଗରେ ମହମ୍ମଦଙ୍କ ଦୃଷ୍ଟାନ୍ତ ପ୍ରକୃତରେ ଅସାଧାରଣ ।ମୁସଲମାନମାନେ ଅନ୍ୟଧର୍ମାବଲମ୍ବୀମାନଙ୍କ ଅପେକ୍ଷା ଅନେକାଂଶରେ ପ୍ରକୃତରେ ପ୍ରତିମା ପ୍ରଭାବ ମୁକ୍ତ । କିନ୍ତୁ ମହମ୍ମଦ ଯେଉଁ ଆଲ୍ଲାଙ୍କର କଳ୍ପନାଟି ଦେଇଯାଇଛନ୍ତି ସେ ଗୋଟିଏ ବିରାଟ ପରାକ୍ରମଶାଳୀ ମନୁଷ୍ୟ ଛଡ଼ା ଆଉକିଛି ନୁହନ୍ତି । ଆଲ୍ଲା ବସିଛନ୍ତି ସ୍ୱର୍ଗରେ, ଦଣ୍ଡ ଦେଉଛନ୍ତି, ସ୍ତୁତି ଶୁଣୁଛନ୍ତି, ରାଗୁଛନ୍ତି; ତାଙ୍କର ସେଠି ସୁନ୍ଦରୀମାନଙ୍କର ନୃତ୍ୟ ଗ୍ଲୁଛି, ସୁରାପାନ ଚାଲିଛି । ଈଶ୍ୱରର ଏ କଳ୍ପନା ନରାକାର ନୁହେଁତ ଆଉ କ'ଣ ? ଖ୍ରୀଷ୍ଟୀୟ ସ୍ୱର୍ଗ ଓ ଈଶ୍ୱରର କଳ୍ପନା ମଧ୍ୟ ତଦ୍ରୂପ ।"(53)

ବୌଦ୍ଧଧର୍ମରେ ଈଶ୍ୱରଙ୍କର ସ୍ୱରୂପ ସଂପର୍କରେ ମାନସିଂହ ଲେଖିଛନ୍ତି :—"ବୌଦ୍ଧର ଈଶ୍ୱର ନାହିଁ କହିବା ଅସତ୍ୟ । ବୌଦ୍ଧର ଈଶ୍ୱର ଅନ୍ୟଧର୍ମାବଲମ୍ବୀର ଈଶ୍ୱର ପରି କୌଣସି ଗୋଟିଏ ସ୍ଥାନରେ ମନୁଷ୍ୟ ରୂପଧରି ବା ବସି ଆଦେଶ ଦେଉ ନାହାନ୍ତି । ବୌଦ୍ଧର ଈଶ୍ୱର ସର୍ବବ୍ୟାପୀ । ସେ ଏକ ଅଲଂଘ୍ୟ ନିୟମ, ଯାହା ଜୀବ ମାନବ ସମସ୍ତଙ୍କପାଇଁ ସମାନ । ବୌଦ୍ଧ ପ୍ରାର୍ଥନା କରେ ନାହିଁ କହିବା ଅସତ୍ୟ । ସେ ପୂଜା ପ୍ରାର୍ଥନା ଛଳରେ ଏକ କଳ୍ପିତ ଦେବତା ଓ ତାର ପୁରୋହିତକୁ ଉତ୍କୋଚ ଦିଏ ନାହିଁ ସତ୍ୟ, କିନ୍ତୁ ଦୈନନ୍ଦିନ ଜୀବନରେ ସେ ପଞ୍ଚଶୀଳ ଓ ଅଷ୍ଟାଂଗ ମାର୍ଗଦେଇ ପ୍ରତ୍ୟହ ଓ ପ୍ରତି ମୁହୂର୍ତ୍ତରେ ଉତ୍କୃଷ୍ଟ ପ୍ରାର୍ଥନା କରେ ତାର କର୍ମରେ ।"(54)

ମାନସିଂହ ଓଡ଼ିଆ ସାହିତ୍ୟର ଇତିହାସରେ ଉଲ୍ଲେଖ କରିଛନ୍ତି ଯେ, ଓଡ଼ିଶାର ଜାତୀୟ ଧର୍ମ ସଂସ୍କୃତିର ମଂଜଟା ହେଉଛି ବୌଦ୍ଧପଥ । ତାହାହିଁ ଯୁଗେ ଯୁଗେ ଓଡ଼ିଶାର ଆଧ୍ୟାତ୍ମିକ ଚିନ୍ତାନାୟକ ଓ କବିଙ୍କ ରଚନାରେ ପ୍ରତିଫଳିତ । ଭୀମଭୋଇଙ୍କ ମହିମାଧର୍ମ, ଅରକ୍ଷିତ ଦାସଙ୍କ ବୃହ୍ମକୈବର୍ତ୍ତିକ ସଂସ୍କାର, ରାଜାରାମମୋହନ ଓ କେଶବଚନ୍ଦ୍ରଙ୍କ ପ୍ରତିଷ୍ଠିତ ବ୍ରାହ୍ମଧର୍ମ ଠାରୁ ଏକାବେଳକେ ଅଭିନ୍ନ, ଯାହା ଭିନ୍ନତା, ତାହା ପାଶ୍ଚାତ୍ୟ ଶିକ୍ଷା ସଭ୍ୟତା ଜନିତ, ତତ୍ତ୍ୱରେ ନୁହେଁ । ବଂଗର ରାମମୋହନ ଓ କେଶବଚନ୍ଦ୍ରଙ୍କର ସଂସ୍କାର ପ୍ରବଣତାର ଉଦ୍ଭବ ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତାର ସଂପର୍କରୁ । ଭୀମାଭୋଇ ବା ଅରକ୍ଷିତ ଦାସ ଏହି ବଂଗ ସଂସ୍କାରକମାନଙ୍କଠାରୁ ବା ପାଶ୍ଚାତ୍ୟ ଭାବଧାରାରୁ ନିଜମତସବୁ ଧାର ଆଣିବାର ପ୍ରଶ୍ନ ହିଁ ଉଠି ନ ପାରେ ।"(55)

ମାନସିଂହ ମହିମା ଧର୍ମମଧ୍ୟରେ ବୌଦ୍ଧଧର୍ମର ସଂସ୍କାର ଓ ଆଗ୍ରହ ଦେଖିବାକୁ ପାଇଥିଲେ; ଏହାହିଁ ତାଙ୍କୁ ବୌଦ୍ଧଧର୍ମର ଏକ ନୂଆରୂପ ଭାବରେ ପ୍ରତିଭାତ ହୋଇଥିଲା । ମାନବବାଦୀ ଦୃଷ୍ଟିକୋଣରୁ ସାଧୁ ଅରକ୍ଷିତ

ଦାସଙ୍କୁ ବିଶେଷ ସମ୍ମାନ ପ୍ରଦାନ କରିଛନ୍ତି । କାରଣ ବୌଦ୍ଧ ଆଗ୍ରହର ଅନେକ ପନ୍ଥା ହିଁ ଅରକ୍ଷିତ ଦାସ ପ୍ରଚାର କରି ଯାଇଥିଲେ । ସ୍ୱାମୀ ଦୟାନନ୍ଦ ସରସ୍ୱତୀ ଯେଉଁଚିନ୍ତାକୁ ବହନ କରି ସମଗ୍ର ଭାରତୀୟ ସମାଜରେ ସଂସ୍କାର ପାଇଁ ପ୍ରୟାସୀ ହୋଇଥିଲେ, ତାଙ୍କର ବହୁ ପୂର୍ବରୁ—"ଏହି ସତ୍ୟାନୁସନ୍ଧିତ୍ସୁ ତରୁଣ ରାଜକୁମାରଙ୍କଠି ମଧ୍ୟ ସେୟା ଦେଖା ଯାଇଥିଲା । ସେ ଏହି ହିନ୍ଦୁ ଦେବାଦେବୀ ମାନଙ୍କଠାରେ କୌଣସି ଦେବତ୍ୱ ଦେଖି ନ ପାରି ପ୍ରକାଶ୍ୟରେ ପ୍ରତୀକ ପୂଜାର ବିରୋଧରେ ପ୍ରଚାର ଆରମ୍ଭ କରିଥିଲେ । ରାଜକୁମାରଙ୍କ ଚେତନାରେ ଯେଉଁ ଆତ୍ମିକ ବିବର୍ତ୍ତନ ଆସ୍ତେ ଆସ୍ତେ ଘଟି ଆସୁଥିଲା, ସେ ପ୍ରଭାବରେ ହିନ୍ଦୁ ସମାଜର ଜାତି ବିଭାଗର ଅଯୌକ୍ତିକତାରେ ମଧ୍ୟ ସେ ନିଃସନ୍ଦେହ ହୋଇ, ତଥାକଥିତ ବହୁ ନିମ୍ନ ଜାତିର ଲୋକଙ୍କଠାରୁ ଖାଦ୍ୟ ଗ୍ରହଣ କଲେ ।"(56)

## ଧର୍ମ ସମ୍ପର୍କରେ ସାଧାରଣ ବିଚାର:

ମାନସିଂହଙ୍କ ବୌଦ୍ଧିକ ଜୀବନର ଦ୍ୱିତୀୟ ପର୍ଯ୍ୟାୟର ଧର୍ମ ଜିଜ୍ଞାସା ମୁଖ୍ୟତଃ ଗାନ୍ଧି ଓ ବୁଦ୍ଧଙ୍କୁ କେନ୍ଦ୍ର କରିଥିଲେ ବି ପ୍ରସଙ୍ଗ କ୍ରମେ ଅନ୍ୟାନ୍ୟ ଧର୍ମ ଓ ବିଶ୍ୱାସ ସମ୍ପର୍କରେ ସେ ଆଲୋଚନା କରିଛନ୍ତି । ସେ ସବୁ ବିଚାର ଅନେକ ସମୟରେ ଖଣ୍ଡିତ ଓ ଅପରିଚ୍ଛିନ୍ନ —ଅନ୍ୟ ଏକ ବିଷୟର ସମ୍ପ୍ରସାରଣ । ତଥାପି ତାଙ୍କ ଚିନ୍ତାର ସାର୍ବିକ ପରିଚୟ ପାଇଁ ଏଭଳି ଆଲୋଚନା ଅପରିହାର୍ଯ୍ୟ ।

ଧର୍ମର ଉତ୍ପତ୍ତି ସାମାଜିକ ଆବଶ୍ୟକତାରୁ, ତେଣୁ ବିଭିନ୍ନ ଜାତି ନିଜସ୍ୱ ଆବଶ୍ୟକତା ଅନୁଯାୟୀ ନାନା ପ୍ରକାର ଧର୍ମ ଏବଂ ଦେବତାର ସୃଷ୍ଟି କରିଛି । ମାନସିଂହ ଏ ସମ୍ପର୍କରେ କହନ୍ତି:—"ମନୁଷ୍ୟର ଇଚ୍ଛା ଅନୁସାରେ ସବୁକଥା ଘଟି ଯାଉଥିଲେ ପୃଥିବୀରେ ଭଗବାନ ବା ଧର୍ମର ସୃଷ୍ଟି ହୁଏତ ହୋଇ ନଥାନ୍ତା । କିନ୍ତୁ ତାର ଇଚ୍ଛା ପଦେ ପଦେ ପ୍ରତିହତ ହେବା ସଂଗେ ସଂଗେ ଅନେକ ଘଟଣା ଜଗତରେ ଘଟୁଛି, ଯାହା ତାହାର କଳ୍ପନା ବା ବୁଦ୍ଧିର ବାହାରେ । ମନୁଷ୍ୟର ଯଥେଷ୍ଟ ଅହଂକାର ଅଛି, ତାର ଶକ୍ତି ଓ ତାର ପୌରୁଷକୁ ନେଇ, କିନ୍ତୁ ବାର୍ଦ୍ଧକ୍ୟ, ବ୍ୟାଧି, ମୃତ୍ୟୁ, ବନ୍ୟା, ଅନାବୃଷ୍ଟି, ଦୁର୍ଭିକ୍ଷ, ଝଟିକା, ଭୂମିକମ୍ପ, ମହାମାରୀ ପ୍ରଭୃତି ଆଗରେ ତାର ଶକ୍ତି ନିରସ୍ତ ଓ ବିନୀତକୃତ । ସ୍ନେହମୟୀ ଜନକ ଜନନୀଙ୍କ ଆଖି ଆଗରୁ ପ୍ରାଣର ଶିଶୁକୁ କିଏ ନେଇ ପଳାଉଛି ? ସେହି ଅଦୃଶ୍ୟ ହସ୍ତ କାହାର ? ଇହ ଜୀବନରେ ଏହିସବୁ ବିଘାତ ନଘଟି ମଣିଷ କେମିତି ଶାନ୍ତି ଓ ସୁଖରେ ଦିନ କାଟିବ, ଏଇଥିଲାଗି ହିନ୍ଦୁ ଗୃହାଙ୍ଗନର ତୁଳସୀ ଚଉରା ଓ ଘିଅଁବତୀ ଠାରୁ ଆରମ୍ଭ କରି ସମଗ୍ର ପୃଥିବୀରେ ନଭଶ୍ଚୁମ୍ବୀ ମନ୍ଦିର ଗୀର୍ଜା ଓ ମସଜିଦ୍‌ର ଆବିର୍ଭାବ । ସାଧାରଣ ମଣିଷର ଚିତ୍ତରେ ଭଗବାନଙ୍କ ଆବିର୍ଭାବ ଭୟରୁ ।"(57)

ଅତୀତରେ ଯେତେ ଯୁଦ୍ଧ ଘନଘଟା ଦେଖାଦେଇଛି, ସେଥିମଧ୍ୟରୁ ଅଧିକାଂଶ ଧର୍ମ ଓ ନାରୀକୁ ନେଇ । ମଣିଷ ତାର ଆତ୍ମିକ ଶାନ୍ତି ନିମନ୍ତେ, କୌଣସି ନା କୌଣସି ଧର୍ମର ଆଶ୍ରୟ ନେଇଥାଏ । ସେ

॥ ମାନସିଂହଙ୍କ ବିଗ୍ରହଧାରା ॥

ତାର ସେହି ଦୃଷ୍ଟିରୁ ଭଗବାନଙ୍କୁ ଦେଖିପାରେ । ମାତ୍ର ବିଭିନ୍ନ ଧର୍ମର ଧର୍ମଯାଜକ ଓ ପୁରୋହିତ ଗୋଷ୍ଠୀ ଧର୍ମନାମରେ ବ୍ୟବସାୟ କରି ଧର୍ମକୁ ସଂକୀର୍ଣ୍ଣ ପରିବେଶରେ ଆବଦ୍ଧ କରିଦିଅନ୍ତି । ଧର୍ମକୁ ସେମାନେ ଅର୍ଥ ଉପାର୍ଜନପ୍ରଦ ଅନୁଷ୍ଠାନ ଭାବରେ ପ୍ରୟୋଗ କରିବା ଦ୍ୱାରା ଧର୍ମ ଓ ଈଶ୍ୱର ପ୍ରତି ହେତୁବାଦୀ ଚିନ୍ତକ ମାନସିଂହ ଅଶ୍ରଦ୍ଧାଭାବ ପ୍ରଦର୍ଶନ କରିଛନ୍ତି । ମାନସିଂହ କହନ୍ତି:–" ଆମ ଭିତରେ ସବୁଜାତିରେ ଏପରି ମୂର୍ଖ ଅଛନ୍ତି ଯେଉଁମାନେ ଦାବୀ କରନ୍ତି ଯେ, ସେମାନେ ଈଶ୍ୱରଙ୍କୁ ଯେପରି ଜାଣନ୍ତି, ଈଶ୍ୱର କେବଳ ସେହିପରି, ଆଉସବୁ ଝୁଟା । ଉପନିଷଦ ଈଶ୍ୱରଙ୍କୁ 'ଅବାଙ୍ମାନସଗୋଚର' ରୂପେ ବର୍ଣ୍ଣନା କରି ଅତ୍ୟନ୍ତ ସତ୍ୟ କଥାହିଁ କହିଛନ୍ତି ।"(୫୪) ମାନସିଂହ କହନ୍ତି:–"ଈଶ୍ୱରଙ୍କୁ ଆମର ସାଂପ୍ରତିକ ଓ ପାର୍ଥିବ ପ୍ରୟୋଜନ ଗୁଡିକର କାରପଟ୍‌ଦ୍ୱାର ମାତ୍ର ଭାବିଲେ ସେ ଯେ କିପରି କରୁଣାତ୍ମକ ଓ [illegible] ରେ ଦେଖାଯିବେ ତାହା ଧର୍ମାନ୍ଧ ଗୁଡିକ ସହଜରେ ଭୁଲିଯାନ୍ତି । ହିନ୍ଦୁ ମୁସଲମାନଙ୍କୁ ଘୃଣାକରେ ଗୋଖାଦକ ମ୍ଳେଚ୍ଛ ବୋଲି, ମୁସଲମାନ ହିନ୍ଦୁକୁଘୃଣାକରେ ପୌତ୍ତଳିକ କାଫେର ବୋଲି । ଉଭୟେ ଭାବନ୍ତି ଭଗବାନ ତାଙ୍କରି ପକ୍ଷରେ, ସତ୍ୟ ତାଙ୍କରି ହାତରେ । ଗତ ସାଂପ୍ରଦାୟିକ କନ୍ଦଳରେ ଦୁଇପଟୁ ସହସ୍ର ସହସ୍ର ନିରୀହ ନିରପରାଧ ନରନାରୀ ଓ ଶିଶୁମଲେ ଓ ଅକଥନୀୟ କଷ୍ଟ ପାଇଲେ; କିନ୍ତୁ ହିନ୍ଦୁର କି ମୁସଲମାନର ଈଶ୍ୱର ଠିକ୍ ତାହା ପୂର୍ବ ପରିହିଁ ଅପ୍ରମାଣିତ ରହିଗଲା ।"(୫୨)

ମଣିଷ ତାର ଈଶ୍ୱରଙ୍କୁ ନିଜର ରୁଚି ଅନୁଯାଇ ରୂପାୟିତ କରିଛି । ଜଗନ୍ନାଥ ମନ୍ଦିରକୁ ଉଦାହରଣ ଦେଇ ମାନସିଂହ ନିଜର ମତକୁ ସାବ୍ୟସ୍ତ କରିବାକୁ ଯାଇ କହନ୍ତି:—"କଳ୍ପନା, ସ୍ୱାର୍ଥ ଓ ମତାନ୍ଧତାର ତ୍ରୀବେଣୀ ସଂଗମ ନହେଲେ, ବାରମ୍ବାର ଧର୍ଷିତ ଖଣ୍ଡିଏ ନିମ୍ବ କାଠକୁ 'ଜଗତର ନାଥ'ବୋଲି ବା ମାତ୍ର ୨୦୦୦ ବର୍ଷତଳେ ଜାତ ହୋଇଥିବା ଜଣେ ଧର୍ମ ପ୍ରଚାରକକୁ ଈଶ୍ୱରଙ୍କର ଏକମାତ୍ର ପୁତ୍ର ଜଗତର ଦୁଃଖ ଦୂର କରିବା ପାଇଁ ଅବତୀର୍ଣ୍ଣ ହୋଇଥିବାର କୁହାଯାନ୍ତା ନାହିଁ । ରାଜ ପ୍ରତିଷ୍ଠିତ ଜଗନ୍ନାଥ ଦେବଙ୍କର ପ୍ରତିଦିନର ସେବା ପୂଜା ଜଣେ ଭାରତୀୟ ରାଜାର ଦୈନିକ ରୁଟିନ୍ ଛଡା ଆଉକିଛି ନୁହେଁ । ଭଗବାନ ସକାଳୁ ଉଠି ମୁହଁ ଧୋଇବେ, ବ୍ରେକ୍‌ଫାଷ୍ଟ ଖାଇବେ, ମଧ୍ୟାହ୍ନରେ ଘିଅ ଖେଚଡି, ରାତିକି ପିଠା ଓ ଦହି ପଖାଳର ବ୍ୟବସ୍ଥା, ମଝିରେ ମଝିରେ ପୁଣି ବାରବନିତାର ନୃତ୍ୟ । ଭଗବାନଙ୍କ ସଂପର୍କରେ ଏ ବ୍ୟପାର ସବୁ ଉଦ୍‌ଭଟ ବା ବାଳକୀୟ କଳ୍ପନା ଛଡା ଆଉକ'ଣ ହୋଇପାରେ ? ଯଦି ନୃତ୍ୟ ଭଗବାନଙ୍କର ପ୍ରିୟ ଭୋଗ ତେବେ ନିଜେ ରଜାରାଣୀ ବା ଆମେ ସମସ୍ତେ ତାଙ୍କ ଆଗରେ ନାଚିବାର ବଂଦୋବସ୍ତ ନ ହୋଇଛି କାହିଁକି ? ବାରବନିତା ନାଚିବେ କାହିଁକି ? "(୬୦)

ଧର୍ମ, ପାଦ୍ରୀ, ପୁରୋହିତ ବା ମୁଲ୍ଲାମାନଙ୍କର ବିଳାସ ତଥା ଶାସନ ପ୍ରତିଷ୍ଠାର ଏକ ମସୃଧା । ହିନ୍ଦୁ ମନ୍ଦିରରେ ପଣ୍ଡାଙ୍କର ଯାତ୍ରୀଙ୍କ ପ୍ରତି ଅତ୍ୟାଚ୍ୱର ଓ ମନ୍ଦିର ମଧ୍ୟରେ ଅପରିଷ୍କାର ପରିବେଶ ମାନସିଂହଙ୍କୁ ବ୍ୟଥିତ କରିଛି । ପୁନଶ୍ଚ ପଣ୍ଡା ପୁରୋହିତଙ୍କର ଅଜ୍ଞତା ଓ ମୂର୍ଖାମୀକୁ ବର୍ଣ୍ଣନା କରି ଏକ ଗ୍ରାମ୍ୟ ପରିବେଶର ଚିତ୍ର ଦେବାକୁ ଯାଇ ମାନସିଂହ କହନ୍ତି :—"ଗ୍ରାମ୍ୟ ପୁରୋହିତ ତଣ୍ଡୁଳାୟ ସ୍ୱାହା, ନଡିଆୟ ସ୍ୱାହା କରି ମୂର୍ଖ କୃଷକ ଓ ତାରପରଲୋକ

ଘଟ ପୂର୍ବପୁରୁଷ, ସମସ୍ତଙ୍କୁ ଯେପରି ସନ୍ତୁଷ୍ଟକରି, ଗୁଡ଼ଳ ନଡିଆଟକ ଗାମୁଛାରେ ବାନ୍ଧି ଘରକୁ ଫେରେ, ତା ମୁ ଦେଖିଛି।"(

ମନୁଷ୍ୟର କଳ୍ପନା ତଥା ପ୍ରୟୋଜନ ବୋଧରୁ ଈଶ୍ୱରଙ୍କର ସୃଷ୍ଟି । ବାଇବେଲ କହେ ଯେ, ସ୍ୱର୍ଗସ୍ଥ ପିତା ସଂସାରର ସମସ୍ତ ଜୀବଜନ୍ତୁ ସୃଷ୍ଟି କରିସାରିଲା ପରେ, ମନୁଷ୍ୟକୁ ଠିକ୍ ନିଜ ଆକୃତି ଅନୁରୂପରେ ସୃଷ୍ଟି କଲେ । ମାନସିଂହ କହନ୍ତି :—"ବିଧାତାର ପ୍ରତିମା, ଶକ୍ତିଶାଳୀ ସିଂହ, ବର୍ଣ୍ଣବିଚିତ୍ର ମୟୂର, ଭୀମକାନ୍ତ ହିମାଳୟ ବା କାନ୍ତ କୋମଳ ଚନ୍ଦ୍ରପରି ନ ହୋଇ, ମର୍କଟପୁଚ୍ଛ ମନୁଷ୍ୟ ପରି କାହିଁକି ହେବ ? ତାର ଯୁକ୍ତି ନାହିଁ । ଏଥିରେ ଅଛି ମନୁଷ୍ୟର ଅହମିକା ଓ କଳ୍ପନା । ମନୁଷ୍ୟ ଅନୁରୂପ ନହୋଇ ବରଂ ସତ୍ୟ ଏହି ଯେ ଭଗବାନ ମନୁଷ୍ୟର କଳ୍ପନା ରୂପରେ ହିଁ ନାନା ରୂପରେ ଏ ଜଗତରେ ପ୍ରକାଶିତ ।"(62)

ଈଶ୍ୱର ଉପାସନା ସମ୍ପର୍କରେ ମାନସିଂହ କହନ୍ତି:—"ଦରିଦ୍ରକୁ ତେଲଲୁଣ ବା ଧନିକକୁ ବିଳାସ ଯୋଗାଇବାର ଗୁମାସ୍ତା ମାତ୍ର ଭଗବାନ ହୋଇ ନ ପାରନ୍ତି । ପ୍ରକୃତ ଧାର୍ମିକ ସେହି, ଯାହାର ଈଶ୍ୱରଙ୍କ ନିକଟରୁ କୌଣସି ପ୍ରୟୋଜନର ଆଶା ନାହିଁ । ସ୍ୱୟଂ ଈଶ୍ୱର ହିଁ ତାର ଏକମାତ୍ର ଓ ଶ୍ରେଷ୍ଠ ପ୍ରୟୋଜନ ।"(63) 'ଦୂର ଓ ନିକଟ' କବିତାରେ ମାନସିଂହ ଦର୍ଶାଇଛନ୍ତି ଯେ ଈଶ୍ୱର ସବୁ ସ୍ଥାନରେ ବିଦ୍ୟମାନ । ଆମେ ଅଙ୍କତାରୁ ନାନା ଦିଗ ଭ୍ରମଣ କରୁ, ମାତ୍ର ଯାହା ଦୂରରେ ମିଳେ, ତାହା ନିକଟରେ ମଧ୍ୟ ମିଳିଥାଏ । ସେହିପରି 'ବନ୍ଧନ', 'ଦୂର୍ବାର ଆରାଧନା 'ତୀର୍ଥଧୂଳି' ଓ 'ଅଗ୍ନିପୂଜା' ରେ ମାନସିଂହଙ୍କର ନାମହୀନ ଏକ ଶକ୍ତିର ଆରାଧନା ନିମନ୍ତେ ଆସ୍ଥା ଜାଗ୍ରତ ଅଛି ।

ଦୁଃଖ କଷଣଗ୍ରସ୍ତ ମଣିଷକୁ ଦେଖିଲାବେଳେ ଦରଦୀ କବି ମାନସିଂହଙ୍କର ପ୍ରାଣ ହାହୁତାଶରେ ବିଦ୍ରୋହ କରି ଉଠିଛି, କିନ୍ତୁ ଏହି ବିଦ୍ରୋହର ପ୍ରଳୟଝଡ଼ି ଅନନ୍ତ ଅବ୍ୟକ୍ତ ଈଶ୍ୱର କଳ୍ପନାର ପ୍ରଶାନ୍ତି ଭିତରେ ହଜିଯାଇଛି । ଅଭାବର ଦାରୁଣ କଷଣରେ ବ୍ୟଥିତ ହୋଇ କୌଣସି ଜଣେ ଲୋକ ନିଜର ସ୍ତ୍ରୀ ପୁତ୍ରକୁ ହତ୍ୟା କରିବାର ପ୍ରାକ୍ ମୁହୂର୍ତ୍ତରେ ଭଗବାନଙ୍କୁ ପ୍ରଶ୍ନ କରିଛି :—

" ସବୁ ଶେଷ ହେବା ଆଗୁଁ ଥରେ ପୁଚ୍ଛା କରେ ଭଗବାନ
ମିଥ୍ୟା କିହେ ବେଦେ ଶାସ୍ତ୍ରେ ହୋଇଛି ଯା' ତବ ଗୁଣ ଗାନ ?
ପଡ଼ିଛି ଭକତେ ତୋତେ ବର୍ଣ୍ଣିବାର କରୁଣା ବାରିଧି,
କରୁଣା କଣା ହିଁ ହେଲେ ନ ପାଉଛି ମୁହିଁ ଏ ଅବଧି ।"(64) ଏହି ପଦରେ କବି

ଭଗବାନଙ୍କ ଶକ୍ତି ଉପରେ ଓ କରୁଣା ଉପରେ ଆଶଙ୍କା ପ୍ରକାଶ କରିଛନ୍ତି । ମାତ୍ର ତାର ଦୁଇ ମାସ ପର ଏକ କବିତାରେ ଭିନ୍ନମତ ପ୍ରକାଶ ପାଇଛି 'ରିକ୍ତତାର ଗୌରବ'କବିତାରେ ମାନସିଂହ ଲେଖିଛନ୍ତି:—

"ଭାଗ୍ୟ–ଭାର ଯା ନ ଦେଇଛୁ ମାଥେ
ଶ୍ରେଷ୍ଠ ଆଶିଷ ମୋରେ,
ନୁଆଁଇ ପାରିବି ସହଜେ ଏ ଶିର
ହେ ନାଥ ତୋ ପଦତଳେ ।"(65)

## ।। ମାନସିଂହଙ୍କ ବିଗ୍ଭରଧାରା ।।

ହେ ଈଶ୍ୱର ମୋତେ ଆସନ ଦେଇନା ଭୂଷଣ ଦେଇନା, ଏ ବିପୁଳ ଜଗତରେ ମୋର ପଚ୍ଛକୁ ଡିଭିବାକୁ କିଚ୍ଛି ଦେଇନା; ତେଣୁ ମୁଁ ସହଜରେ ଆପଣଙ୍କ ଦେଉଳକୁ ଅଭିସାର କରିପାରିବି । ନଭେମ୍ବର ୧୨୪୧ ରେ ସାଧାରଣ ମଣିଷର ଆର୍ଥିକ ଅଭାବ ଜନିତ ଦୁଃଖ ପାଇଁ ଈଶ୍ୱରଙ୍କୁ ଦାୟୀ କଲାବେଳେ, ଜାନୁୟାରୀ ୧୨42 ରେ ନିଜର ରିକ୍ତତାକୁ ଭଗବାନଙ୍କର ଆଶୀର୍ବାଦ ବୋଲି ଧରି ନେଇଚ୍ଛନ୍ତି ।'ଭିକାରୀ' କବିତାରେ ମାନବ ଜାତିକୁ ଏ ମର୍ତ୍ତ୍ୟର ଅଦ୍ଭୁତ ଭିଖାରୀ ଭାବରେ ବର୍ଣ୍ଣନା କରିଚ୍ଛନ୍ତି । କାରଣ ଅଜ୍ଞାତ ଈଶ୍ୱରଙ୍କର ପାଦ ତଳରେ କର ପ୍ରସାରୀ ମାନବ ଭିକ୍ଷା ମାଗି ଗ୍ଭଲେ । ଏଠାରେ ସେହିପରି ନାମହୀନ ଆକାରହୀନ ଦେବତାଙ୍କ ପ୍ରତି ମାନସିଂହଙ୍କର ଶ୍ରଦ୍ଧାଥିବାର ସୂଚୀତ ହୁଏ । ଏହି ସମୟର କବିତାକୁ ଅନୁଧ୍ୟାନ କଲେ, ମାନସିଂହଙ୍କର ମନ ଈଶ୍ୱରଙ୍କର ସତ୍ତା ଉପରେ ଅଧିକ ଆସ୍ଥା ସ୍ଥାପନ କରିଥିବାର ଦେଖାଯାଏ । 'କ୍ରୁଶ ବହନ' କବିତା ଏହାର ଏକ ନମୁନା । ସଂସାର ଜଂଜାଳକୁ ନିର୍ବାହିତ କରିବା ପାଇଁ, ଈଶ୍ୱର ସଦା ସର୍ବଦା ବ୍ୟସ୍ତ । ମଣିଷ ଆପଣାର ସ୍ୱାର୍ଥରେ ଓ ଅହଂକାରରେ ବ୍ୟସ୍ତ ହୋଇ ସେ କଥା ଭୁଲିଯାଏ । ଈଶ୍ୱରଙ୍କୁ ନ ଜାଣିବା ପର୍ଯ୍ୟନ୍ତ, ନିଜର ଚ୍ଛୋଟ ଚ୍ଛୋଟ ଦୁଃଖ ସବୁ ବଡ ଦିଶୁଥିଲା, ମାତ୍ର କବି ଆଜି ନିଜର ସୁଖ ଦୁଃଖକୁ ଈଶ୍ୱରଙ୍କ ନିକଟରେ ସମର୍ପଣ କରି, ଈଶ୍ୱରଙ୍କ ବେଦନାକୁ କିଚ୍ଛି ନିଜ ସ୍କନ୍ଧରେ ଧାରଣ କରିବା ପାଇଁ କହୁଚ୍ଛନ୍ତି ।:–

"ଜନ୍ମେ ଜନ୍ମେ ତୁମ୍ଭ କ୍ରୁଶ ସାନଂଦେ ବହିବି,
ଯଦି ଖାଲି ଆଗେ ତବ ପଦ ଦେଖୁଥିବି ।"(୬୧)

ମାନସିଂହ ଈଶ୍ୱରଙ୍କୁ ପିତା, ବନ୍ଧୁ, ପ୍ରିୟ ଭାବରେ ସମ୍ବୋଧନ କରି ତାଙ୍କର ରହସ୍ୟମୟ ସତ୍ତା ସମ୍ପର୍କରେ ପ୍ରଶ୍ନ କରିଚ୍ଛନ୍ତି । ଈଶ୍ୱରଙ୍କ ଆଶୀର୍ବାଦ ପାଇଁ ତଥାପି କବି ଆଶାୟୀ:—

"ଶୁକ୍ତି କିନ୍ତୁ ଖୋଲା ମୋର ହୃଦ-ସିନ୍ଧୁ ତଳେ
ଅପେକ୍ଷି, କରୁଣା ମୁକ୍ତା ପଡିବ ଗର୍ଭରେ"(67) 'ଏକ ଓ ବହୁ' କବିତାରେ ମାନସିଂହ ସମସ୍ତ ତତ୍ତ୍ୱର ବ୍ୟାକରଣକୁ ତ୍ୟାଗକରି ସୃଷ୍ଟିବାଦକୁ ଅଧ୍ୟୟନ କରି କହିଚ୍ଛନ୍ତି :—

"ନାନା ଧର୍ମ ନାନା ଶାସ୍ତ୍ର, ନାନା ଦରଶନ
ପଢିମାତ୍ର ଭାରାକ୍ରାନ୍ତ କଲି ମୋର ଶିରେ,
କସ୍ତୁରିକା ମୃଗ ସମ ଭ୍ରାନ୍ତ ଅନ୍ୱେଷଣ
କରି ମୁଁ ଫେରିଚ୍ଛି ଶେଷେ ତୁମ୍ଭ ସନ୍ନିଧିରେ ।
ପଣ୍ଡିତମ୍ମନ୍ୟଙ୍କ ପରି ତର୍କେ ମୁଁ ମାତିଚ୍ଛି,
ତୁମ୍ଭେ ଅଚ୍ଛ, ଅବା ନାହିଁ, ଦେଖ ବା ନ ଦେଖ
ଆମ ଦୁଃଖ ଦୈନନ୍ଦିନ; ନ ଜାଣିଲି କିଚ୍ଛି,—
ଜାଣିଲି ମାତ୍ରକ ତୁମେ ଏକ ଓ ଅନେକ ।"(୬୮) ଶେଷରେ 'ସାନ୍ଧ୍ୟଗାଥା'ରେ କବି ଆହୁରି ସ୍ପଷ୍ଟ କରି କହିଚ୍ଛନ୍ତି :——

॥ ମାନସିଂହଙ୍କ ବିଗ୍ଭରଧାରା ॥

"ଅଲଂଘ୍ୟ ନିୟମ ଜାଳେ ବଂଧା ସେ ଈଶ୍ୱର,
ଆପଣା ନିର୍ଘଣ୍ଟକ୍ରମେ ଆସେ ତାଂକ ରଥ,
ସୁଖ, ଦୁଃଖ, ଜଂଗା, ଗଢା ଚକ୍ର ସେ ରଥର,
ବିଶ୍ୱ-ରେଣୁ ମହାକାଳ ତାଂକ ରାଜପଥ ।"(୬୯) ପୁନଶ୍ଚ,
ସମସ୍ତେ ଈଶ୍ୱର-ପୁତ୍ର, ସମସ୍ତେ ସମାନ,
ସମସ୍ତଙ୍କ ଧରାଭୋଗେ ସମ ଅଧିକାର,
ପରମପିତାଙ୍କୁ ସେ ଯେ ତୀବ୍ର ଅପମାନ,
ଅନ୍ୟେ ଯଦି ପୀଡେ ତବ ଅଜ୍ଞ ଅହଂକାରେ"(୭୦) ଏହି ପର୍ଯ୍ୟାୟରେ ଈଶ୍ୱରଙ୍କ ସଂପର୍କରେ ମାନସିଂହଙ୍କର ଶେଷବାଣୀ ହେଲା, ଭଗବାନଙ୍କୁ ବୁଦ୍ଧି ପ୍ରୟୋଗରେ ଲାଭ କରିହେବ ନାହିଁ, କେବଳ ପବିତ୍ର ହୃଦୟରେ ଲାଭ କରାଯାଇ ପାରେ ।

## ଜୀବନର ଅନ୍ତିମ ପର୍ବ: ......(୧୨୪୨-୧୨୭୩)

ମାନସିଂହଙ୍କ ଈଶ୍ୱର ବିଶ୍ୱାସ ଓ ଧର୍ମ ଧାରଣା ସଂପର୍କିତ ସୁସ୍ଥ ବିଗ୍ଭରବୋଧ ଜୀବନର ଅନ୍ତିମ ପର୍ବରେ ହିଁ ପ୍ରକାଶିତ । ଖ୍ରୀ: ୧୨୪୨ ମସିହା ବେଳକୁ ତାଂକର ଗ୍ଭକିରୀ ଜୀବନ ଅପେକ୍ଷାକୃତ ସରଳ ଓ ଜୀବନର ଗତି ସ୍ୱଚ୍ଛନ୍ଦ ହୋଇ ଉଠିଥିଲା । କବିମାନେ ଯଶାକାଙ୍କ୍ଷୀ । ମାନସିଂହ ନିଜ ପ୍ରତିଭାର ସ୍ୱୀକୃତି ସମକାଳରେ ପାଇବାକୁ ଆରମ୍ଭ କରିଥିଲେ । ସଂଶୟବାଦୀ ଚିନ୍ତାଧାରା ତାଂକୁ ବୌଦ୍ଧ ମାର୍ଗ ଆଡକୁ ଟାଣି ନେଇଥିଲା । ଭିତରେ ଆବେଗ ପ୍ରବଣ ରାସାଚ୍ଛନ୍ନ କବିମନ ସଂଯୋଜିତ ଥିଲେ ବି ତାର ଉଗ୍ରତା ଆଉ ନଥିଲା । ପ୍ରାଜ୍ଞ, ବିଗ୍ଭରଶୀଳ, ମାନସିଂହଙ୍କର ଆଧ୍ୟାତ୍ମିକ ଦୃଷ୍ଟି, ବକ୍ଷମାଣ କାଳର କବିତା ପୁସ୍ତକ 'ଇନ୍ଦ୍ରଶ', ସିନ୍ଧୁ ଓ ବିନ୍ଦୁ', 'କମଳାୟନ' କାବ୍ୟ, ' 'ବୁଦ୍ଧ' ନାଟକ, 'ଶିକ୍ଷାବିଚିତ୍ର ଗାଥା', 'ଓଡିଆ ସାହିତ୍ୟର ଇତିହାସ', 'ଗୀତା ମାହାତ୍ମ୍ୟ' ଓ କେତେକ ପ୍ରବନ୍ଧ ଓ ଗଦ୍ୟ ପୁସ୍ତକ ତଥା ଅନେକ ବିକ୍ଷିପ୍ତ ପ୍ରବଂଧରେ ପ୍ରକାଶିତ । ବିଶେଷତଃ 'ଗୀତା ମାହାତ୍ମ୍ୟ' ଆଧ୍ୟାତ୍ମିକ ଜିଜ୍ଞାସୁ ମାନସିଂହଙ୍କୁ ଚିହ୍ନିବା ପାଇଁ ଏକ ଗ୍ଭବିକାଠି । ହିନ୍ଦୁ ଭାବରେ ଜନ୍ମ ଗ୍ରହଣ କରିଥିଲେ ବି, ପରବର୍ତ୍ତୀ ସମୟରେ ବୌଦ୍ଧ ହୋଇଥିବା ମାନସିଂହ, ହିନ୍ଦୁମାନଙ୍କର ପରମଶାସ୍ତ୍ର ଶ୍ରୀମଦ୍ ଭଗବତ୍‌ଗୀତାକୁ ଶ୍ରଦ୍ଧା ଓ ସଂଶୟର ଦୃଷ୍ଟିରେ ଦେଖିଛନ୍ତି । ନିରପେକ୍ଷ ବିଗ୍ଭରର ଅପର ନାମ ଶ୍ରଦ୍ଧା । ଶ୍ରଦ୍ଧା ହିଁ ଗୀତାମହାତ୍ମ୍ୟର ମୂଳ ପରିଚୟ ।

"ଯାହା ଫଳରେ ଲେଖକ ସେହି ପିଲାଦିନରୁ ମଧ୍ୟ ସତ୍ୟାନୁସଂଧାନ ପାଇଁ 'ସ୍ୱଧର୍ମ' ଓ 'ପରଧର୍ମ' ଭିତରେ କୌଣସି ଭିତିପ୍ରଦ ବା ଅଲଂଘ୍ୟ ପାଚେରୀ ଦେଖିପାରି ନାହିଁ । ଫଳରେ ସେ ସକଳ ଧର୍ମର ମହତବାଣୀ ଓ ସକଳ ଧର୍ମ-ପ୍ରଗ୍ଭରକଙ୍କର ଜୀବନ ଚରିତର ବୀର୍ଯ୍ୟୋଜ୍ଜ୍ୱଳ ମହିମା ସମ୍ମୁଖରେ ମୁଗ୍ଧ ଆନନ୍ଦରେ

ନତମସ୍ତକ ହୋଇ ଦଣ୍ଡାୟମାନ ହୋଇ ପାରିଛି । ନିରୀଶ୍ୱର ହେଲେହେଁ, ସଂପୂର୍ଣ୍ଣ-ଭାବରେ ହେତୁ-ପ୍ରଭବ ଓ ହେତୁ-ପ୍ରତିଷ୍ଠ ହୋଇଥିବାରୁ, ଦୁର୍ବଳ-ବିଶ୍ୱାସ-ଜନିତ ପୂଜା-ହୋମ-ପ୍ରାର୍ଥନା-ଦାନ-ଦକ୍ଷିଣା-ତୀର୍ଥଯାତ୍ରାଦି ପରିବର୍ତ୍ତରେ ମାନବିକ ମହତ୍ତ୍ୱର ଶ୍ରେଷ୍ଠ-ପ୍ରକାଶ, ଅହିଂସା ଓ କରୁଣାକୁ ହିଁ ଯୁକ୍ତିଯୁକ୍ତ ଧର୍ମ-ସାଧନା ରୂପେ ଠିଆ କରାଇଥିବାରୁ ଏବଂ ନିଜର ପ୍ରଗ୍ୱର-ପ୍ରସାର-ଓ-ପ୍ରତିଷ୍ଠା-କ୍ରିୟାରେ ଏକମାତ୍ର ବିଶ୍ୱ-ଧର୍ମ, ଯାହାଲାଗି ଏକ-ବିନ୍ଦୁ ନର-ଶୋଣିତ ବା ନରାଶ୍ରୁ ଜନନୀ ବସୁଂଧରାର ପବିତ୍ର ମୃତ୍ତିକାକୁ ଆର୍ଦ୍ର କରି-ନଥିବା-କାରଣରୁ, ଏ ଲେଖକର ଶ୍ରଦ୍ଧା ଓ ସମ୍ମାନ, ଶେଷରେ ବୁଦ୍ଧ ଗୌତମଙ୍କ ବାଣୀ ଓ ମାର୍ଗପ୍ରତି ବିଶେଷ ଭାବରେ ଢଳିଥିଲେ ହେଁ, ଜରାଥୁଷ୍ଟ୍ର, ଶ୍ରୀକୃଷ୍ଣ, ଯୀଶୁଖ୍ରୀଷ୍ଟ ଓ ମହମ୍ମଦ ପ୍ରଭୃତି ବିଶ୍ୱର ଅନ୍ୟାନ୍ୟ ସତ୍ୟ ପ୍ରଗ୍ୱରକଙ୍କ ବାଣୀ ଓ ବ୍ୟକ୍ତିତ୍ୱ ପ୍ରତି, ଏ ଲେଖକର ଶ୍ରଦ୍ଧା ଓ ସମ୍ମାନ ଆଦୌ ନ୍ୟୁନ ନୁହେଁ ବୋଲି ପାଠକ ପାଠିକା ନିଶ୍ଚିତ ଜାଣିବେ ।"(71)

ଧର୍ମ ଶବ୍ଦର ବ୍ୟାଖ୍ୟା କରିବାକୁଯାଇ ମାନସିଂହ ପ୍ରାକୃତିକ ଧର୍ମ ସମ୍ପର୍କରେ କହିଛନ୍ତି ଯେ, :-"ଶୀତଳତା ବା ବହନଶୀଳତା ଜଳର ଯେପରି ପ୍ରାକୃତିକ ଧର୍ମ, ଜୀବ ଓ ପଦାର୍ଥ ପ୍ରତ୍ୟେକର ସେହିପରି ଏକ ଏକ ବିଶିଷ୍ଟ ଧର୍ମ ଅଛି । ଧର୍ମକୁ ଏକ ଏକ ପୁରୋହିତ ସଂପ୍ରଦାୟର ଜୀବିକାର ଉପାୟ କରିବା ବା ଧର୍ମ ନାମରେ ନିଜକୁ ସମଗ୍ର ମାନବଜାତିରୁ ଏକ ଭିନ୍ନଗୋଷ୍ଠୀ ମନେ କରିବା ଏକ ସଂପୂର୍ଣ୍ଣ ବିକୃତ ଅର୍ଥାରୋପ । ବୁଦ୍ଧ-ଆବିଷ୍କୃତ ଧର୍ମ କିନ୍ତୁ କହେ ଯେ, ଦୁଃଖ ହିଁ ଜୀବନର ଧର୍ମ, ଯେପରି ଶୀତଳତା ଜଳର ଧର୍ମ । ସେହି ଦୁଃଖରୁ ରକ୍ଷାର ଉପାୟ ମନୁଷ୍ୟର ନିଜ ହାତରେ । ତାହାହିଁ ଅର୍ଥାତ ସେହି ରକ୍ଷାର ଉପାୟହିଁ ଶାକ୍ୟ-ଗୌତମ ପ୍ରଗ୍ୱରିତ ଧମ୍ମ ବା ସଦ୍ଧମ୍ମ ।"(72)

ଜୀବନର ଅନ୍ତିମ ପର୍ବରେ ମାନସିଂହ ଅଧିକ ଭାବରେ ଧର୍ମଚର୍ଚ୍ଚାପାଇଁ ଧ୍ୟାନ ଦେଇଥିଲେ ମଧ୍ୟ, ରକ୍ଷଣଶୀଳ ବାବାଜୀ ସନ୍ୟାସୀଙ୍କ ପରି ସେ ଧର୍ମରେ ସଂକୀର୍ଣ୍ଣତାକୁ ଦେଖି ପାରି ନଥିଲେ । ସେ ବିଭିନ୍ନ ଧର୍ମ ତଥା ଶାସ୍ତ୍ର ଆଲୋଚନା ସମୟରେ ନିଜକୁ ବୌଦ୍ଧଧର୍ମର ଦୃଷ୍ଟିକୋଣରୁ ଦଣ୍ଡାୟମାନ କରୁଥିବାରୁ ପ୍ରତୀୟମାନ ହୁଏ । ଜୀବେ ଦୟା ବା ମାନବପ୍ରତି ସହାନୁଭୂତି ସବୁଧର୍ମର ମୂଳକଥା ହେଲେ ମଧ୍ୟ, ବୌଦ୍ଧଧର୍ମରେ ଏ ଧାରା ସକ୍ରିୟ । ଏଣୁ ମାନସିଂହ ଯେତେବେଳେ ଧର୍ମ, ପାପ ବା ଈଶ୍ୱର ସଂପର୍କରେ ଚର୍ଚ୍ଚା କରିଛନ୍ତି, ସେତେବେଳେ ବୌଦ୍ଧଦର୍ଶନ ଦୃଷ୍ଟିକୋଣରୁ ବିଗ୍ୱର କରିଛନ୍ତି । —"ଜୀବ ଓ ମାନବପ୍ରତି ଅନ୍ୟାୟ ହିଁ, ସେହି ଈଶ୍ୱରଙ୍କ ଦୃଷ୍ଟିରେ ଏକମାତ୍ର ପାପ ବୋଲି ମୁଁ ମନେ କରି ଆସିଛି । କାରଣ ପ୍ରତ୍ୟେକ ଜୀବହିଁ ଏକ ଏକ ସୀମିତ, କ୍ଷୁଦ୍ରୀଭୂତ ଈଶ୍ୱର ମାତ୍ର । ଜୀବ ଓ ପରମର ସଂପର୍କ ଏକାନ୍ତ ଭାବରେ ବ୍ୟକ୍ତିଗତ ସଂପର୍କ । ସେ ସଂପର୍କ ଦେଶଗତ, ଗୋଷ୍ଠୀଗତ, କୁଟୁମ୍ବଗତ ବା ସଂଘଗତ ହେବାର କୌଣସି ଯୁକ୍ତି ନାହିଁ । ଏକାନ୍ତ ବ୍ୟକ୍ତିଗତ ଥିବାରୁହିଁ ସେହି ପରମ ପୁରୁଷର ଅନୁଭବରେ ଦେଶେ ଦେଶେ ଧର୍ମ-ଗୋଷ୍ଠୀ-ନିର୍ବିଶେଷରେ ବ୍ୟକ୍ତିର ପ୍ରାଣ ହୋଇ ଉଠେ ଉଦାର, ମଧୁର ଓ ଐଶ୍ୱର୍ଯ୍ୟମୟ ।"(73)

ମାନସିଂହ ବିଭିନ୍ନ ଧର୍ମ ଚର୍ଚ୍ଚା ଭିତରେ କେବଳ ବୌଦ୍ଧଧର୍ମରେ ଉଦାରତାର ସୂଚନା

ପାଉଥିଲେ । ଅନ୍ୟ ସକଳ ଧର୍ମର ପୁରୋହିତ ଅତ୍ୟାଗ୍ରହକୁ ସେ ଅତ୍ୟନ୍ତ ଘୃଣା କରିଚ୍ଛନ୍ତି । ଏହି ଘୃଣାଭାବ ମାନସିଂହଙ୍କ ମଧ୍ୟରେ ଅନେକ ଆଗରୁ ଆସନ ଜମାଉଥିବାର ସୂଚନା ପୂର୍ବରୁ ପ୍ରଦାନ କରାଯାଇଛି । ସେ ସଂପର୍କରେ ମାନସିଂହଙ୍କ ନିଜସ୍ୱ ମନ୍ତବ୍ୟ ହେଲା:–'ତଥାକଥିତ 'ଧର୍ମ' ସବୁ,ଆମ ଭିତରର ଶାଶ୍ୱତ ସତ୍ତା ପାଇଁ ଏହି ଖାଦ୍ୟ ଯୋଗାଉଥାନ୍ତି ବୋଲି ଧରି ନିଆଯାଏ; କିନ୍ତୁ ଯାହା ସଂକୀର୍ଣ୍ଣ,ଈର୍ଷାକୂଳ,ହିଂସ୍ର,ଅକରୁଣ,ତାହା ଆତ୍ମା ବା ଏପରିକି ଶରୀରର ମଧ୍ୟ ଉତ୍ତମ ଖାଦ୍ୟ ନ ହୋଇପାରେ ଏବଂ କେବଳ ବୌଦ୍ଧଧର୍ମକୁ ଛାଡ଼ିଦେଲେ,ଅନ୍ୟ ସକଳ'ଧର୍ମ' ଘୃଣା ଓ ସଂକୀର୍ଣ୍ଣତାରେ ଭରା । ହିନ୍ଦୁ ରାମକୃଷ୍ଣ ଦେବ ଯେ ଅସାଧାରଣ ଅଧ୍ୟାତ୍ମ ଅନୁଭବ ସବୁ ଭୋଗ କରୁଥିଲେ,ତାର ସାରକଥା ଏହିଯେ, ସେ ବ୍ରାହ୍ମଣ ଧର୍ମ ଓ ସମାଜର ସକଳ ସଂକୀର୍ଣ୍ଣତାରୁ ବହୁ ଉର୍ଦ୍ଧ୍ବକୁ ଉଠିଯାଉଥିଲେ । ସେ ଯେଉଁ ସ୍ତରକୁ ଉଠିଥିଲେ ସେଠି କୌଣସି ଗୋଷ୍ଠୀ ଦେବତା ନାହାନ୍ତି,କୌଣସି ସାମାଜିକ ଭେଦାଭେଦ ନାହିଁ,ଅଛି କେବଳ ସର୍ବବ୍ୟାପ୍ତ ସଚ୍ଚିଦାନନ୍ଦ, ଯେ ହିଁ ମଧ୍ୟ ଆମ ଭିତରେ ଥିବା ଆମର ଅତ୍ୟନ୍ତ ଓ ଚିରନ୍ତନ ଅଂଶ ।"(74)

**ଜୀବନରେ ଧର୍ମର ଆବଶ୍ୟକତା :–**

ଜୀବନର ପ୍ରାଥମିକ ଓ ମଧ୍ୟସ୍ତରରେ ଧର୍ମପ୍ରତିଥିବା ଆପେକ୍ଷିକ ସଂଶୟ ସଂଚିତ କାଳରେ ଏକ ନିର୍ଦ୍ଦିଷ୍ଟ ଧର୍ମର ରୂପ ପରିଗ୍ରହ କରିଛି । ଧର୍ମ ଯେ ଜୀବନର ପରମ ଆବଶ୍ୟକତା,ଏ ସଂପର୍କରେ ମାନସିଂହ ନିଃସନ୍ଦିଗ୍ଧ ହୋଇଛନ୍ତି । ଈଶ୍ୱର ହୀନ,ଧର୍ମହୀନ,ଭୌତିକବାଦର ବିକଟ ନର୍ତ୍ତନ ଦୃଶ୍ୟ ମାନସିଂହ ମାନସ ଚକ୍ଷୁରେ ସୁଦ୍ଧା ଉପଭୋଗ କରିପାରି ନାହାନ୍ତି । ମାନବତାବାଦରେ ବିଶ୍ୱାସ କରୁଥିବା ମାନସିଂହ ମଣିଷ ଜୀବନର ବିବର୍ଜିତ ରୂପକୁ ଗ୍ରହଣ କରିପାରି ନାହାନ୍ତି । ନିତ୍ୟ ଘୂର୍ଣ୍ଣମାନ ଜୀବନର ମଧ୍ୟସ୍ଥଳରେ ସେ ଆବିଷ୍କାର କରିଛନ୍ତି ଏକ ପରମ ସତ୍ୟକୁ, ଯାହାର ଅପରନାମ ଧର୍ମ । ତେଣୁ ତାଙ୍କର ସବୁ ସତ୍ୟାନୁସନ୍ଧାନ ମୂଳରେ ରହିଛି ଏହି ଧର୍ମ ବିଶ୍ୱାସ । ତାଙ୍କ ନିଜ ଭାଷାରେ କହିଲେ :—"ଏ ଲେଖକ ଯତ୍–ସାମାନ୍ୟ ଭାବରେହିଁ ଏକ'ସତ୍ୟାନୁସନ୍ଧାନୀ' । ସେ'ଧର୍ମ' କଣ ଜାଣେନା ଏବଂ କୌଣସି କାଳେ 'ଧାର୍ମିକ' ହେବାର ପ୍ରତ୍ୟାଶା ସେ କରିନାହିଁ । କିନ୍ତୁ 'ପରମସତ୍ୟ'କୁ ସେ ଖୋଜି ବୁଲିଛି । ପଚ୍ଛରେ ଆସୁଥିବା ଜୀବନ–ପଥର–ସମଦଶାପନ୍ନ ଯାତ୍ରୀମାନଙ୍କୁ କାଳେ କିଛି ଆଶା,କିଛି ପ୍ରେରଣା, କିଛି ସାହସ ଦେଇପାରେ,ଏହି ଆଶାରେ ।"(75)

ନିଜ ଜୀବନର ନିୟାମକ ହେଲାଭଳି ଏକ ଦର୍ଶନର ସନ୍ଧାନରେ ମାନସିଂହ,ବିଶ୍ୱ ସାହିତ୍ୟର ଅନେକ ଗ୍ରନ୍ଥ ଅଧ୍ୟୟନ କରିଛନ୍ତି—ସେମାନଙ୍କ ମଧ୍ୟରୁ,ଗୀତାଞ୍ଜଳି,ରାମକୃଷ୍ଣ କଥାମୃତ,ଏ.କେମ୍ପସଙ୍କର ଯୀଶୁଖ୍ରୀଷ୍ଟଙ୍କର ଅନୁସରଣ,ଖ୍ରୀଷ୍ଟଙ୍କର ସରମନ ଅନ ଦ ମାଉଣ୍ଟ,ବୁଦ୍ଧଙ୍କର ଧର୍ମଚକ୍ର ପବ୍ରଉନ ସୂତ୍ର,ମହମ୍ମଦଙ୍କର କୋରାନ,ସର୍ ଏଡ୍ୱିନ୍ ଆର୍ନୋଲ୍ଡଙ୍କର,(ଇଂରାଜୀ) ଏସିଆର ଆଲୋକ,ଜଗନ୍ନାଥ ଦାସଙ୍କ ଭାଗବତର ଦଶମ ଓ ଏକାଦଶ ସ୍କନ୍ଧ,ଗୁରୁ ନାନକ ବାଣୀ,ଗୁରୁ ଗୋବିନ୍ଦ ସିଂହ,ଧମ୍ମପଦ,ପ୍ରଭୃତି ନାନା ଧର୍ମଗ୍ରନ୍ଥ ଅଧ୍ୟୟନ କରି ଜୀବନରେ ଧର୍ମର ଆବଶ୍ୟକତା

ସମ୍ପର୍କରେ ଅନୁଧ୍ୟାନ କରିଥିଲେ । ବିଶ୍ୱର ଅନ୍ୟାନ୍ୟ ମହାପୁରୁଷଙ୍କ ପରି ଶ୍ରୀମଦ୍ଭଗବତଗୀତା ମଧ୍ୟ ମାନସିଂହଙ୍କ ଜୀବନର ଏକ ବିଶିଷ୍ଟ ଗ୍ରନ୍ଥ । ଗୀତାକୁ ବିଭିନ୍ନ ଲୋକ ଭିନ୍ନଭିନ୍ନ ଦୃଷ୍ଟି ନେଇ ଦେଖିଲା ପରି, ମାନସିଂହ ଗୀତା ସମ୍ପର୍କରେ କହନ୍ତି:– "ପାଠକେ ତେଣୁ ଗୀତାରୁ ନିଜର ଶ୍ରଦ୍ଧା ଓ ଜିଜ୍ଞାସାର ଆନ୍ତରିକତା ଅନୁସାରେ ହିଁ ଆଧ୍ୟାତ୍ମିକ ଜ୍ଞାନ ଓ ସହାୟତା ପାଇବେ । ଏହି ଲେଖକ ଗୀତାର ଶ୍ଳୋକମାନଙ୍କ ଭିତରୁ ମୁକ୍ତି ବା ପୁଣ୍ୟ ଖୋଜିବାକୁ ଯାଇନି । କିନ୍ତୁ ଏ ଲେଖକ ଆନନ୍ଦର ସହିତ, ମୁକ୍ତ କଣ୍ଠରେ ସମଗ୍ର ଜଗତକୁ ଏତିକି ଘୋଷଣାକରି ଶୁଣାଇ ପାରେଯେ, ଗୀତା ବର୍ଣ୍ଣିତ ସତ୍ୟ ବଳରେ ହିଁ ସେ ତାର ଜୀବନ ଯାତ୍ରା ପଥରେ ଅହମିକା ମୂଢ଼ତା ଆଦି–ବିପଦ–ଆପଦ ଓ ଅଜ୍ଞାନତାର ଧୂଳିଝଡ଼ ପ୍ରଭୃତି ସଙ୍କଟକୁ ବିନାକ୍ଳେଶରେ ଅତିକ୍ରମ କରି ଶାନ୍ତିମୟ ଜୀବନ ଆଡକୁ ଅଗ୍ରସର ହେବାରେ ଯଥାର୍ଥ ସହାୟତା ପାଇଥାଇ ପାରେ, ଯେପରି ମଧ୍ୟ ସେ ପାଇଛି, ବାଇବେଲ ଓ କୋରାନରୁ ବା ବୁଦ୍ଧ–ରାମକୃଷ୍ଣ–ବିବେକାନନ୍ଦ–ଗାନ୍ଧି ବାଣୀରୁ । ତାହା... ଏ ଲେଖକ ନିକଟରେ ଏକମାତ୍ର ଗୀତା–ମହାତ୍ମ୍ୟ ।"(76)

ସକଳ ମାନବ ପାଇଁ ଏକ ଧର୍ମ ପଥର ସନ୍ଧାନ ପାଇଥିଲେ ବି, ମଣିଷକୁ ସେ ଜାତି ଓ ସଂସ୍କୃତି ଭିତ୍ତିରେ ଦେଖିଛନ୍ତି । ଫଳରେ ପ୍ରତ୍ୟେକ ଜାତିପାଇଁ ସେ ସ୍ୱତନ୍ତ୍ର ଧର୍ମର ପରିକଳ୍ପନା କରିଛନ୍ତି । ତାହାକୁ ସେ କହିଛନ୍ତି ଜାତୀୟ–ସ୍ୱଧର୍ମ । ଓଡିଆମାନଙ୍କ ଅଧଃପତନ ମୂଳରେ ଏହି ଜାତୀୟ ଧର୍ମର ଦୁର୍ବଳତା ନିହିତ ।— "ସେ ଜାତିମାନଙ୍କର ଏ ପ୍ରକାର ଜୀବନୀଶକ୍ତି ଆସୁଛି କୁଆଡୁ ? ଆଉ ଆମେ ଓଡିଆଏ, ଜଗନ୍ନାଥଙ୍କ ବାହୁଚ୍ଛାୟା ତଳେ ରହି, ଆନନ୍ଦ ବଜାରର ଦେବଭୋଗ୍ୟ କୈବଲ୍ୟ ସେବନ କରି, ନାନା ବ୍ରତ ଉପବାସରେ ପଡି, ଚିତା ଚନ୍ଦନ ଲଗି, ନିରାମିଷ ଭକ୍ଷଣ ଓ ଆମିଷ ବର୍ଜନ କରି, ପର୍ଥୁକି ଓ ମାଘସ୍ନାନ ପାଳନ କରି କରି ମଧ୍ୟ, ଭକ୍ତି–ଚିନ୍ତାମଣିଙ୍କଠାରୁ ଟିକିଏ ହେଲେ ଅନୁଗ୍ରହ ପାଇପାରୁନୁ କାହିଁକି ହାୟରେ ଧର୍ମ । ଏ ସବୁ ତୁଳନାକରି ଦେଖିଲେ ଦୃଢ଼ ଧାରଣା ହୁଏଯେ, ଆମ୍ଭମାନଙ୍କର ଧର୍ମ ମିଥ୍ୟାଧର୍ମ । ଏହା ମନୁଷ୍ୟର ଉପଯୋଗୀ ନୁହେଁ । ଜୀବ ଭାବରେ ମନୁଷ୍ୟର ଯାହାସବୁ ଅତ୍ୟନ୍ତ ଆବଶ୍ୟକୀୟ ପ୍ରୟୋଜନ ଏ ଧର୍ମ ସେ ସବୁକୁ ଦୃଷ୍ଟି ନ ଦେବାରୁ ଆମ୍ଭେମାନେ ଶେଷରେ ପଙ୍ଗୁ ଓ ନିର୍ଜୀବ ହୋଇ ପଡିଛୁ ।"(77)

## ବିଭିନ୍ନ ଧର୍ମ ସମ୍ପର୍କରେ ଧାରଣା

ମାନସିଂହ ବୌଦ୍ଧଧର୍ମପ୍ରତି ଆନୁଗତ୍ୟ ପ୍ରକାଶ କରିଥିଲେ ମଧ୍ୟ, ଅନ୍ୟାନ୍ୟ ଧର୍ମ ଚର୍ଚ୍ଚା କରିବାରେ କୌଣସି ଅଲଂଘ୍ୟ ପ୍ରାଚୀର ଦେଖିପାରୁ ନଥିଲେ । ତାଙ୍କ ମତରେ –"ହିନ୍ଦୁ, ମୁସଲମାନ, ବୌଦ୍ଧ, ଖ୍ରୀଷ୍ଟିଆନ, ସମସ୍ତଙ୍କର ଈଶ୍ୱରର ପ୍ରଥମ ଲକ୍ଷଣ ଏହି ଯେ, ସେ ସର୍ବବ୍ୟାପ୍ତ ଏକ ଓ ଅଖଣ୍ଡ । ଈଶ୍ୱର ଭାବାନୁଗତର ତେଣୁ ଏକମାତ୍ର ତତ୍ପର୍ଯ୍ୟ, ଐକ୍ୟବୋଧ, ସାମ୍ୟବୋଧ, ବ୍ୟାପ୍ତିବୋଧ ଓ ଅଖଣ୍ଡତା ବୋଧ । ଗୀତାରେ ବାରମ୍ବାର ତେଣୁ ଏହି ସାମ୍ୟର କଥାହିଁ କୁହାଯାଇଛି ।"(78) ମାନସିଂହଙ୍କ ଦୃଷ୍ଟିରେ ନୈଷ୍ଠିକ ମୁସଲମାନ ଓ ଉତ୍ତମ ମନୁଷ୍ୟ, ନୈଷ୍ଠିକ ଖ୍ରୀଷ୍ଟାନ

ଓ ଉତ୍ତମ ମନୁଷ୍ୟ ଏବଂ ନୈଷ୍ଠିକ ହିନ୍ଦୁ ଓ ଉତ୍ତମ ମନୁଷ୍ୟ ଭିତରେ କିଛି ପ୍ରଭେଦ ନାହିଁ । ଅନ୍ଧ ବିଶ୍ୱାସ ତଥା ନିମ୍ନ–ଜାତି ପ୍ରତି ଲାଞ୍ଛନା ଯୋଗୁ ହିନ୍ଦୁ ଧର୍ମର ପତନ । ସେହିପରି ଖ୍ରୀଷ୍ଟ ଓ ମୁସଲମାନ ଧର୍ମ ନୈଷ୍ଠିକତା ନାମରେ ଅମାନୁଷିକତା ଦ୍ୱାରା କଳଙ୍କିତ । ମାନସିଂହଙ୍କ କମଳାୟନ କାବ୍ୟରେ ବିଶ୍ୱମୈତ୍ରୀ ସହିତ ସର୍ବଧର୍ମ ସମନ୍ୱୟ ପାଇଁ ଚେଷ୍ଟା କରାଯାଇ ଅଛି । କମଳାୟନ'କାବ୍ୟର ଅଧ୍ୟାପକ ଅବିନାଶଙ୍କ ବାନ୍ଧବ, କମଳର ବନ୍ଧୁ ଖ୍ରୀଷ୍ଟଧର୍ମୀ, ଅରବିନ୍ଦଙ୍କ ସହିତ କମଳର ଭଉଣୀ ରମାର ବିବାହ । କମଳର ଭାଇ ମଦନ, ରାମକୃଷ୍ଣ ମିଶନର ଗୈରିକ ବସନଧାରୀ ସନ୍ନ୍ୟାସୀ, ସ୍ୱାମୀ ମହାନନ୍ଦ । ଏହି କ୍ରମରେ ବିଶ୍ୱମିତ୍ରା, ସେପିଲେକ୍ ପ୍ରଭୃତିଙ୍କୁ କାବ୍ୟରେ ପ୍ରବେଶ କରାଇ, ମାନସିଂହ ବିଶ୍ୱରେ ବିଭିନ୍ନ ଧର୍ମ ତଥା ବ୍ୟକ୍ତି ମଧ୍ୟରେ ସମନ୍ୱୟ ଆଣିବା ପାଇଁ ପ୍ରୟାସ କରିଛନ୍ତି । ତତ୍ ସଂଗେ ସଂଗେ ରାମକୃଷ୍ଣ ମିଶନ, ଅରବିନ୍ଦ ଆଶ୍ରମ ଓ ଗାନ୍ଧି ଆଶ୍ରମର ପବିତ୍ରତା, ଖ୍ରୀଷ୍ଟଧର୍ମ ଓ ଇସ୍‌ଲାମ୍ ଧର୍ମର ପରିଷ୍କାର ପରିଚ୍ଛନ୍ନତା ସଂଗେ ସଂଗେ ହିନ୍ଦୁ ମନ୍ଦିରର ଅପରିଷ୍କାର ଭାବ ଓ ପୁରୋହିତ ମାନଙ୍କର ଅତ୍ୟାଗ୍ରହକୁ ସମାଲୋଚନା କରିଛନ୍ତି । ଧର୍ମର ଆଲୋଚନା ମଧ୍ୟରେ ସୌନ୍ଦର୍ଯ୍ୟର ପୂଜା, ମାନସିଂହଙ୍କ ନିକଟରେ ବିଶେଷ ଅଗ୍ରାଧିକାର ଲାଭ କରିଛି ।

ଈଶ୍ୱର:–

ମାନସିଂହ ବୌଦ୍ଧଧର୍ମ ଗ୍ରହଣ କରିଥିଲେ ବି, ବୌଦ୍ଧଧର୍ମର ଶୂନ୍ୟବାଦ ଓ ଆଦି ବୌଦ୍ଧଧର୍ମର ଈଶ୍ୱରହୀନତା, ତାଙ୍କ ଚିତ୍ତଲୋକରେ ପ୍ରତିଷ୍ଠିତ ହୋଇପାରି ନାହିଁ । ଯୁକ୍ତି ପ୍ରବଣ ମନ ହୁଏତ ପୌତ୍ତଳିକ ଅବୟବ ବିଶିଷ୍ଟ ଈଶ୍ୱରଙ୍କୁ ନସ୍ୟାତ୍ କରିଛି, କିନ୍ତୁ ଏକ ଅରୂପମୟ, ପ୍ରେମମୟ, ପୁଣ୍ୟମୟ, ଈଶ୍ୱରଙ୍କ ଉପସ୍ଥିତି ସେ ଅନୁଭବ କରିଛନ୍ତି–ନିଜର ପ୍ରାଣ କନ୍ଦରରେ, ହୃଦୟର ଗୋପନ କକ୍ଷରେ । ତେଣୁ ରାଧାକୃଷ୍ଣ ତାଙ୍କ କଳ୍ପନାକୁ ଆସିଛନ୍ତି; ତାଙ୍କର ଉପଲବ୍ଧି ଭିତରେ ନବରୂପ ନେଇଛନ୍ତି; ନିରୀଶ୍ୱର ମାନସିଂହ, ବାରମ୍ବାର ଈଶ୍ୱର ସନ୍ଧାନରେ ଘୁରି ବୁଲିଛନ୍ତି । ଜୀବନର ଅନ୍ତିମ ପର୍ଯ୍ୟାୟର ଅଧିକାଂଶ କବିତାର ସ୍ୱର ସେହି ମର୍ମରେ ଅନୁରଣିତ । ଜୀବନର ସମସ୍ତ ସ୍ୱାଦ ବୁଦ୍‌ବୁଦ୍ ପ୍ରାୟ ମିଳାଇ ଯିବାପରେ ଏକ ନୂତନ ସ୍ୱାଦପାଇଁ କବି ସତୃଷ୍ଣ ନୟନରେ ଚାହିଁ ରହିଛନ୍ତି; ବିଶ୍ୱର ଶ୍ରେଷ୍ଠ ପ୍ରେୟସୀ କୃଷ୍ଣଙ୍କ ପ୍ରତି ଆକର୍ଷିତ ହୋଇ ନିଜକୁ ନବ ପ୍ରେୟସୀ ଭାବରେ ସଜାଇଛନ୍ତି ।

"ତୁମର ପ୍ରତୀକ୍ଷାରେ ଇଚ୍ଛାର ଶେଷ ନାହିଁ,
ଶେଷ ନାହିଁ ରାସ ପରା ପ୍ରେୟସୀ,
ଆତ୍ମା ମୋ ଖୋଜେ ଶ୍ୟାମ ସେହି ପ୍ରେମ ଅଭିରାମ,
ସବୁପାଇଁ ଯେ ନିରତ ବିରହୀ ।"(72)

ଏଠାରେ ମାନସିଂହଙ୍କର ଈଶ୍ୱର ପ୍ରେମ ନୂତନ ରୂପେ ଦେଖା ଦେଇଛି । 'ତୃତୀୟାକ୍ଷି' କବିତାରେ ମାନସିଂହଙ୍କ ପ୍ରାଣରେ ଉପନିଷଦର ବାଣୀ ଅନୁରଣିତ ହୋଇଛି । ମାନସିଂହ କାମନା କରିଛନ୍ତି :——

॥ ମାନସିଂହଙ୍କ ବିଶ୍ବରଧାରା ॥

"ସ୍ୱର୍ଗ ନାହିଁ ଯିବାକୁ ମୁଁ ମାଗେ,
ଘୃଣା ନାହିଁ କରେ ଏହି ଧରା,
ଓତଃପ୍ରୋତ ଯେହେତୁ ଜନନୀ
ଏଇଠି ତ ଅମୃତ-ପସରା ।"(୪୦)

ସେହି ଅଦୃଶ୍ୟ ଶକ୍ତିକୁ ଭେଟିବାକୁ ମାନସିଂହଙ୍କ ପ୍ରାଣ ଅହରହ ବ୍ୟଥିତ ହୋଇ ଉଠିଛି । ସୂର୍ଯ୍ୟଙ୍କୁ ଭେଟିବା ପାଇଁ ବୃକ୍ଷର ପ୍ରତ୍ୟାଶା ପରି, ବାୟୁ ସଂଗରେ କୁସୁମର ଗନ୍ଧ ମିଶିଯିବା ପରି, ସରିତ ସାଗର କୋଳକୁ ଧାଇଁଗଲା ପରି, ପୂର୍ଣ୍ଣିମା ଶଶୀକୁ ଚୁମ୍ବି ସାଗର ପାଗଳ ହେଲାପରି, ମଣିଷର ବାସନା ରୂପ-ରସ-ଗନ୍ଧକୁ ଅଧିକାର କରିବା ପରି, ଆଶା କଳ୍ପନାର ସ୍ୱର୍ଣ୍ଣମୃଗ ପଛରେ ଧାଇଁଲାପରି ମାନସିଂହଙ୍କ ପ୍ରାଣ ଧାଉଁଛି:—

"ଅଦୃଶ୍ୟ ହେ, ଅଜ୍ଞାତ ହେ
ପରମ ବନ୍ଧୁ ମୋର,
ତୁମରି ଆଶେ ଧାଉଁଛି ପ୍ରାଣ
ଭେଟିବି କେବେ ପଥେ ।"(୪୧)

କବି ମାନସିଂହ ଭାରତୀୟ ଦର୍ଶନର ଈଶ୍ୱରଙ୍କୁ ନିଜସ୍ୱ ଦୃଷ୍ଟିକୋଣରୁ ବିଶ୍ୱର କରିଛନ୍ତି । 'ଜୀବ-ଗୋପୀ' ଓ 'ଶ୍ରୀକୃଷ୍ଣ' କବିତାରେ ସେ ଧାରା ସ୍ପଷ୍ଟ ଭାବରେ ପ୍ରତିଫଳିତ ।

" ଯା'ନୀଳିମା ପରିବ୍ୟାପ୍ତ ମହା ଅନ୍ତରୀକ୍ଷେ,
ଯେ ପୀତ-ଦୁକୂଳ ପିନ୍ଧେ ଉଷା ପ୍ରଦୋଷରେ,
ଯା'ଶିରେ ଚନ୍ଦ୍ରିକା-ଗୁଚ୍ଛ, ମେଘ, ବିଦ୍ୟୁଚ୍ଚକ୍ର
ସେ ସୁନ୍ଦର କୃଷ୍ଣ ପଦେ ମୁହିଁ ପୂଜା କରେ ।"(୪୨)

ସେହି କ୍ରମରେ 'ଲାଭାଲାଭ', 'ମହାପଥରଯାତ୍ରୀ', 'ଆନନ୍ଦେ ଗୀତଗାଅ' ଓ 'ଆତ୍ମାବତରଣ' କବିତାରେ ଈଶ୍ୱର ସମ୍ପର୍କୀୟ ଧାରଣା ଅଭିବ୍ୟକ୍ତ ।

'ଶିକ୍ଷାବିତର୍‌ ଗାଥା'(୧୨୬୫) ରଚନା ବେଳେ ତାଙ୍କର ଈଶ୍ୱର ସମ୍ପର୍କୀୟ ଧାରଣା ହେଲା:—"ଅଗଣିତ ଜୀବାଶ୍ରୟ ଆମର ଏହି ଜନନୀ ବସୁନ୍ଧରା, ମନୁଷ୍ୟ କଳ୍ପନାତୀତ ଏକ ସୀମାହୀନ, ବିରାଟ-ବିସ୍ତୃତ ସୃଷ୍ଟିର ଏକ ଉପେକ୍ଷଣୀୟ ସାମାନ୍ୟ ଅଂଶ ମାତ୍ର । ଯେଉଁ ଅଦୃଶ୍ୟ ଶକ୍ତି, ମହା ବ୍ୟୋମରେ-କ୍ଷିପ୍ରବେଗରେ-ଅହରହ-ଘୂର୍ଣ୍ଣିତ, କୋଟି କୋଟି ବ୍ରହ୍ମାଣ୍ଡର ନିୟାମକ, ରକ୍ଷକ ଓ ଚାଳକ, ସେହି ମଧ୍ୟ ଏହି କ୍ଷୁଦ୍ର, ସାମାନ୍ୟ ପୃଥିବୀର ଚାଳକ ଏବଂ ସେହି ମଧ୍ୟ ତମ ଓ ମୋ ସହିତ, ମନ୍ତ୍ରୀ ଓ ବଡ଼ ସାହେବମାନଙ୍କର ଏକମାତ୍ର ଚାଳକ । ସମଗ୍ର ସୃଷ୍ଟିରେ ଗୋଟିଏ ଶକ୍ତି ହିଁ କାର୍ଯ୍ୟକାରୀ । "(୪୩)

'ଗୀତା ମହାତ୍ମ୍ୟ'(୧୭୯୨)ରେ ଈଶ୍ୱର ସଂପର୍କୀୟ ଧାରଣା ଅପରିବର୍ତ୍ତିତ ରହିଥିଲେ ମଧ୍ୟ, ଏହା ଭିନ୍ନ ଭାବରେ ପ୍ରକାଶ ଲାଭ କରିଛି । " ବିଶ୍ୱର ସକଳ ଧର୍ମ ଓ ଧର୍ମଗ୍ରନ୍ଥର ପ୍ରାଣକେନ୍ଦ୍ର ହେଉଛି ଏକ ସର୍ବ ଶକ୍ତିମାନ ଓ କରୁଣାମୟ ଈଶ୍ୱର–କଳ୍ପନା । ସମଗ୍ର ମାନବିକ ଚିନ୍ତାରେ ଏକମାତ୍ର ମହାନ୍ ଗୌରବମୟ ବିଚିତ୍ରତା ଧରି ଦଣ୍ଡାୟମାନ ବୌଦ୍ଧଧର୍ମ, ଯାହା 'ଧର୍ମ' ପ୍ରଚାର କରିଛି, କିନ୍ତୁ 'ଈଶ୍ୱର' ପ୍ରଚାର କରିନାହିଁ । ବସ୍ତୁତଃ ଅନ୍ୟ ସକଳ ଧର୍ମରେ ଈଶ୍ୱରହିଁ ପ୍ରଧାନ, ଧର୍ମଟା ଗୌଣ; କିନ୍ତୁ ବୌଦ୍ଧଧର୍ମରେ 'ଧର୍ମ'ହିଁ ସମସ୍ତ, ଈଶ୍ୱରଙ୍କର ଅସ୍ତିତ୍ୱ ନାହିଁ ସେଠି । ଗୌତମ ବୁଦ୍ଧ କୌଣସି କଳ୍ପିତ 'ସ୍ୱର୍ଗସ୍ଥ ପିତା' ବା 'ଆଲ୍ଲା' ବା 'ପୁରୁଷୋତ୍ତମଙ୍କ' ଶରଣ ପଶିବାକୁ କୋହିଁକୁ ନ କହି, କେବଳ 'ଧର୍ମଂ ଶରଣଂ'ଯିବାର ବତାଇଲେ ।"(୪୪)

ବୟସ ବଢିବା ସଂଗେ ସଂଗେ ମାନସିଂହଙ୍କର, ବୌଦ୍ଧଧର୍ମପ୍ରତି ଆନୁଗତ୍ୟ ବିଶ୍ୱାସ ପରେ, ଈଶ୍ୱରବାଦ ପ୍ରତି କ୍ରମଶଃ ଆକର୍ଷଣ ବଢିଯାଉଛି । ନିଜ ଜୀବନର ସମସ୍ତ ଦୁଃଖ ଦୁର୍ବିପାକ ପଛଆଡେ, ଈଶ୍ୱରଙ୍କ ପ୍ରତି ତାଙ୍କର ଅକୃତଜ୍ଞ ମନକୁ ସେ ଦେଖି ପାରିଛନ୍ତି । ଜଣେ ପରମ ପୁରୁଷ ଓ ସର୍ବମୟ କର୍ତ୍ତାଙ୍କର ଆନନ୍ଦମୟ ସୃଷ୍ଟି ହେଲା ଏହି ଜଗତ । ସାଧାରଣ ମଣିଷ ତାଙ୍କର ସାନ୍ନିଧ୍ୟ ପାଇବା ସମ୍ଭବ ନହେଲେ ବି, ସେହି ପରମ ପୁରୁଷଙ୍କ ଉପସ୍ଥିତିକୁ ଅସ୍ୱୀକାର କରିବା, ଅହଂକ୍ଲିଷ୍ଟ ମନର ପରିପ୍ରକାଶ । ପରମ ପୁରୁଷଙ୍କୁ ନିଜର ଶ୍ରଦ୍ଧା ନିବେଦନ କରି, ମଣିଷ କୃତଘ୍ନତାରୁ ମୁକ୍ତିପାଏ । ତା'ର ସ୍ରଷ୍ଟା ଓ ନିୟାମକକୁ ସେ ସମ୍ମାନ ଜଣାଏ । ସେହି ଅଜ୍ଞାତ ରୂପୀ ଈଶ୍ୱରଙ୍କ ସଂପର୍କରେ ମାନସିଂହ ଶିକ୍ଷାବିତ୍‌ର ଗାଥା ରେ କହନ୍ତି:–"ସେହି ଅଜ୍ଞାତ ହସ୍ତର ନିର୍ଦ୍ଦେଶ ଅନେକ ସମୟରେ ବୁଝିପାରି ନ ଥିବାରୁ ଓ ମାନି ନ ଥିବାରୁ ହିଁ ଏଇ ଲେଖକର ଜୀବନ ବହୁବେଳେ ନାନା ଅକାରଣ ଦୁଶ୍ଚିନ୍ତାରେ ବିଷାକ୍ତ ହୋଇ ଉଠିଛି ।"(୪୫)

ଈଶ୍ୱରଙ୍କ ସ୍ୱରୂପକୁ ଧର୍ମାନ୍ଧମାନେ ନିଜସ୍ୱ ସୁବିଧା ଦୃଷ୍ଟିରୁ ବିଚାର କରୁଥିବାରୁ, ସେମାନଙ୍କୁ ସଂକୀର୍ଣ୍ଣ ପଥଦେଇ ଗତିକରିବାକୁ ହୁଏ । ମାନସିଂହ ସେହି ସଂକୀର୍ଣ୍ଣତାର ବିରୋଧ କରିଛନ୍ତି । ଉଦାହରଣ ଦେବାକୁ ଯାଇ ସେ ଖ୍ରୀଷ୍ଟଧର୍ମ ଓ ଯୀଶୁଙ୍କ ସଂପର୍କରେ ଆଲୋଚନା କରିବାକୁ ଯାଇ ଲେଖିଛନ୍ତି:–"ଯୀଶୁଙ୍କ ବାଣୀ ଅତି ମହତ । କିନ୍ତୁ କ୍ୱଚିତ୍ କ୍ରିଶ୍ଚିୟାନ ସେ ବାଣୀ ଦୈନନ୍ଦିନ ଜୀବନରେ ପାଳନ କରନ୍ତି । ସାଧାରଣ କ୍ରିଶ୍ଚିୟାନ ର ଆସ୍ଥା 'ସରମନ ଅନ୍ ଦ 'ମାଉଣ୍ଟ' ଉପରେ ନଥାଏ । ଥାଏ, ଯୀଶୁଙ୍କ ତ୍ରାଣ କାରିଣୀ ଶକ୍ତି ଉପରେ । ଯୀଶୁଙ୍କ ବାଣୀ ଦୈନନ୍ଦିନ ଜୀବନ ରେ ପଦ ଦଳିତ ହେଲେ ମଧ୍ୟ ପ୍ରାର୍ଥନା କଲେ ଯୀଶୁ ସକଳ ପାପତାପରୁ ଉଦ୍ଧାର କରାଇ ନେବେ । ପୁଣି କେବଳ ଯୀଶୁ ହିଁ ଏହା କରି ପାରିବେ, ଆଉ କେହି ନୁହେଁ,—ମୁସଲମାନର ଆଲ୍ଲା ମଧ୍ୟ ନୁହେଁ । ଆଉ ଏହା ଯେ ସ୍ୱୀକାର ନ କରିବ, ସେ ରହିବ ବଦ୍ଧଜୀବ, ଅମୁକ୍ତ, ହୀଦନ୍ । ଅର୍ଥାତ୍ ଏତାବଦିତିନିଶ୍ଚିତାଃ ।"(୪୬)

ମଂଗଳମୟ କର୍ତ୍ତାଙ୍କର ଅଦୃଶ୍ୟ ହସ୍ତ ଅନୁଭବ କଲାପରେ ବା ଗ୍ରହଣ କରିନେଲାପରେ ଈଶ୍ୱରଙ୍କ ଅସ୍ତିତ୍ୱ ସଂପର୍କରେ ତାଙ୍କର ବିଚାରଧାରା ପ୍ରକାଶ କରିଛନ୍ତି । ଈଶ୍ୱରାନୁଭବ ଏକ ବିରଳ ନିବିଡ ଅନୁଭୂତି ।

ଯାହା ହୃଦୟ ଭିତରେ ନୂତନ ଜ୍ୟୋତିରେଖା ପ୍ରକାଶ କରେ । ମାନସିଂହଙ୍କ ଭାଷାରେ—"ସ୍ଥୂଳପ୍ରତି,ନିକଟପ୍ରତି,ପରିଚିତ ପ୍ରତି,ବିତସ୍ପୃହ ହୋଇ ସୂକ୍ଷ୍ମପ୍ରତି,ଦୂରପ୍ରତି,ଅପରିଚିତ ପ୍ରତି ଗଭୀର ଆକର୍ଷଣ ମାନବ–ଚିତ୍ତରେ ଦେବତ୍ୱର ଆବିର୍ଭାବ କ୍ରିୟା । ସାଧାରଣତଃ ଏହି ଦେବାଗ୍ନି ବିନ୍ଦୁ ଥରେ ଜଳିଉଠି ସମାଜ,କୁଟୁମ୍ବ ଓ ସଂସାରର ନାନା ଜଞ୍ଜାଳ,ନାନା ବାଧା,ନାନା ପ୍ରଲୋଭନ ଓ ବଂଧନର ପାଉଁଶଗଦା ତଳେ ପୁଣି ପୋତି ହୋଇ ଶୀତଳ ହୋଇଯାଏ । କିନ୍ତୁ ଭାଗ୍ୟବାନ କେତେକ ତାକୁ କୌଣସିମତେ ଲିଭିବାକୁ ଦିଅନ୍ତି ନାହିଁ । ସେହି କେତେକ ହେଉଛନ୍ତି ବୁଦ୍ଧ,ଖ୍ରୀଷ୍ଟ,ମହମ୍ମଦ,ରାମକୃଷ୍ଣ,ବିବେକାନନ୍ଦ, ଗାନ୍ଧି,ଅରବିନ୍ଦ,ପୁଣି ଦାନ୍ତେ,ଶେଲୀ,କାଳିଦାସ,ରବୀନ୍ଦ୍ର ।"(37) ଈଶ୍ୱରାନୁଭୂତି ସମ୍ବନ୍ଧୀୟ ଜ୍ୟୋତିକୁ ମାନସିଂହ ସର୍ବାଗ୍ରେ ଗୁରୁତ୍ୱ ପ୍ରଦାନ କରିଛନ୍ତି ।

## ମାନସିଂହଙ୍କ ଦୃଷ୍ଟିରେ ଭାରତୀୟ ଧର୍ମଧାରଣା ଓ ଈଶ୍ୱର :—

ଭାରତ ବହୁ ସଂସ୍କୃତିର ମିଳନ ପୀଠ । ଏହି ସାଂସ୍କୃତିକ ବୈଚିତ୍ର୍ୟ ତାର ଧାର୍ମିକ ବୈଚିତ୍ର୍ୟର କାରଣ । ମହାବୀର,ବୁଦ୍ଧ,ଶଙ୍କର,ପ୍ରଭୃତିଙ୍କର ଅର୍ଦ୍ଧ ଧର୍ମ ସଂପର୍କୀୟ ରଚନାବଳୀ ଊନବିଂଶ ଶତାବ୍ଦୀରେ ପାଶ୍ଚାତ୍ୟ ଗବେଷକମାନଙ୍କୁ ଗଭୀର ଭାବରେ ଆକୃଷ୍ଟ କରିଥିଲା । ଉପନିବେଶବାଦୀ ବା ଔପନିବେଶିକ ଇଂରେଜ ସରକାର, ଦଳିତ ନିରନ୍ନ ଜନତାକୁ ସେମାନଙ୍କର ନିଜ ଧର୍ମର ଗୌରବଗାଥା କହି ସନ୍ତୁଷ୍ଟ କରୁଥିଲେ । ଅଷ୍ଟାଦଶ ଶତାବ୍ଦୀରୁ ଆରମ୍ଭକରି ବିଂଶ ଶତକର ମଧ୍ୟବର୍ତ୍ତୀ ସ୍ତର ପର୍ଯ୍ୟନ୍ତ, ଗୋଟିଏ କଥା ବାରମ୍ବାର କୁହାଯାଉଥିଲା,ତାହା ହେଲା— ଭାରତୀୟମାନେ ଦରିଦ୍ର ହେଲେ ହେଁ ଆଧ୍ୟାତ୍ମିକତାର ସଂପଦରେ ସେମାନେ ଉର୍ଜସ୍ୱଳ । ଭଗବତପ୍ରୀତିର ଆଲୋକରେ ସେମାନଙ୍କର ଜୀବନ ଆଲୋକିତ । ବିବେକାନନ୍ଦ, ତିଳକ,ଅରବିନ୍ଦ,ଗାନ୍ଧି ପ୍ରମୁଖ ଚିନ୍ତାନାୟକ ଓ ଜନ ନାୟକମାନେ ଭାରତୀୟ ଜନତାକୁ ଆତ୍ମବିଶ୍ୱାସ ଦେବା ପାଇଁ ଇଉରୋପୀୟମାନଙ୍କର ଏହି ପ୍ରଚାରକୁ ଅନ୍ୟଭାବରେ ପ୍ରଚାର କଲେ । ଆଦର୍ଶ ଦୃଷ୍ଟିରୁ ଉଦାରତନ୍ତ୍ର–ଧର୍ମ–ନିରପେକ୍ଷତା,ଭାରତରେ ଗୃହୀତ ହୋଇଥିଲେ ବି,ପରବର୍ତ୍ତୀ କାଳରେ ସେହି ଇଂରେଜ ଶାସକମାନେ ଭାରତୀୟ ଜନତାକୁ ବିଭ୍ରାନ୍ତ କରିବା ପାଇଁ,ଧର୍ମରାଜନୀତିର ପଶାପାଲିରେ ଈପ୍ସିତ ଦାନପାଇଁ ପଶାକାଠି ଚଳାଇଥିଲେ । ଭାରତ ସ୍ୱାଧୀନ ହେଲାପରେ ଭାରତକୁ ଏକ ଧର୍ମ ନିରପେକ୍ଷ,ଗଣତାନ୍ତ୍ରିକ ରାଷ୍ଟ୍ର ରୂପେ ସ୍ୱୀକାର କରା –ଗଲା । ବଡ ଦୁଃଖର କଥା ମାନସିଂହଙ୍କ ଭଳି ବିଦ୍ୱାନ୍ ବ୍ୟକ୍ତିମାନେ ଧର୍ମ ନିରପେକ୍ଷ ରାଷ୍ଟ୍ର(ସିକୁଲାର ଷ୍ଟେଟ) ଓ ଧର୍ମ ଭିତ୍ତିକ ରାଷ୍ଟ୍ର(ଥିଓକ୍ରଟିକ୍ ଷ୍ଟେଟ)ର ପ୍ରଭେଦ ବାରି ପାରି ନାହାନ୍ତି । ଉଦାରତନ୍ତ୍ର ତଥା ଧର୍ମ ନିରପେକ୍ଷତା,ଗଣତାନ୍ତ୍ରିକ ରାଷ୍ଟ୍ରର ଦୁଇଟି ମୁଖ୍ୟ ସ୍ତମ୍ଭ । ତାହା ଆଧୁନିକ ଯୁଗର ଆଧୁନିକ ମଣିଷର ଈପ୍ସିତ ଆଦର୍ଶ । କିନ୍ତୁ ମାନସିଂହ ତାଙ୍କର ଏକ ପୁସ୍ତକରେ ଭାରତର ଧର୍ମ ନିରପେକ୍ଷତା ପ୍ରତି ଅସନ୍ତୋଷ ପ୍ରକାଶ କରିଛନ୍ତି । ସେ କହନ୍ତି :—ଭାରତର ଲୋକେ ଧାର୍ମିକ,ଆଧ୍ୟାତ୍ମିକ ଓ ଈଶ୍ୱରଗତ ପ୍ରାଣ ବୋଲି ବିଶ୍ୱରେ ବିଖ୍ୟାତ । ଏହି ଦେଶର ଧର୍ମାଲୋକ ଓ ଜ୍ଞାନାଲୋକ ଯାଇ ଅର୍ଦ୍ଧ ଧରଣୀର ଅନ୍ଧକାର ଦୂରୀଭୂତ କରିଛି । ଜଗତର କୋଟି କୋଟି ଲୋକଙ୍କର ଚକ୍ଷୁରେ ଭାରତର ମାଟି ପବିତ୍ର,

କାରଣ ଏହା ବୁଦ୍ଧ, ରାମକୃଷ୍ଣ, ଗାନ୍ଧି ଓ ଅରବିନ୍ଦର ଜନ୍ମଭୂମି । କିନ୍ତୁ ଅତ୍ୟନ୍ତ ପରିତାପର କଥା ଯେ ଏପରି ଆଧ୍ୟାତ୍ମିକ ଗୌରବରେ ଗୌରବମୟ ଓ ଇତିହାସ ପ୍ରସିଦ୍ଧ ଦେଶ ଆଜି ଧର୍ମ-ନିରପେକ୍ଷ ରାଷ୍ଟ୍ର । ଏବଂ ତାର ସ୍କୁଲ କଲେଜ ମାନଙ୍କରେ ଜାତିର ନୂତନ ବଂଶଧରମାନଙ୍କୁ ଧର୍ମଜୀବନର ଆସ୍ୱାଦ ବା ନିର୍ଦ୍ଦେଶ ପାଇଁ କୌଣସି ବ୍ୟବସ୍ଥା ନାହିଁ । ଅବଶ୍ୟ ଧର୍ମ ଜନିତ ସାମ୍ପ୍ରଦାୟିକ କବଳରୁ ଦେଶକୁ ଶାନ୍ତି ଦେବାପାଇଁ ଆମର ଚିନ୍ତାନାୟକମାନେ ଏ ବ୍ୟବସ୍ଥା କରିଛନ୍ତି । କିନ୍ତୁ କେତେକ ଅନ୍ୟ ମତରେ ସହିଷ୍ଣୁ ଧର୍ମାନ୍ଧମାନଙ୍କୁ ସନ୍ତୁଷ୍ଟ କରିବାକୁ ଯାଇ ଏପରି ବ୍ୟବସ୍ଥା ଦ୍ୱାରା ଭାରତର ବିରାଟ ମହାନ୍ ଐତିହ୍ୟ ଉପରେ ଏ ଜାତିର ଚରିତ୍ର ଉପରେ ଯେ ନିର୍ମମ କୁଠାରଘାତ ହେଉଛି, ଏଥିରେ ସନ୍ଦେହ ନାହିଁ ।"(୬୪)

ଭାରତର ଐତିହ୍ୟ ଓ ଧର୍ମୀୟ ପରମ୍ପରାକୁ ସ୍ୱାଗତ କଲେ ମଧ୍ୟ, ଏହି ଧର୍ମୀୟ ଆବରଣ ମଧ୍ୟରେ ଥିବା ଧର୍ମଧ୍ୱଜୀ ପଣ୍ଡା ପୁରୋହିତଙ୍କୁ ସେ କଠୋର ଭାବରେ ନିନ୍ଦା କରିଛନ୍ତି । 'ଅନ୍ୱେଷଣ' ଉପନ୍ୟାସରେ ମାନସିଂହ ମନ୍ଦିରର ପୂଜକକୁ 'ଅର୍ଥୈକଦୃଷ୍ଟି ପଣ୍ଡା' ନାମରେ ନାମିତ କରିଛନ୍ତି । ସେହି ପଣ୍ଡାମାନଙ୍କ ଦ୍ୱାରା ମନ୍ଦିର ତଥା ଦେବତା ପୀଠରେ ଯେ ଆଚରଣଗତ କଳୁଷତା ଦେଖାଦେଇଛି, ସେ କଥା ନୁହେଁ; ମନ୍ଦିରର ଗହ୍ୱର ମଧ୍ୟ ଅଜ୍ଞତା ଓ ସଂକୀର୍ଣ୍ଣତା ଯୋଗୁ ନର୍ଦ୍ଦମାରେ ପରିଣତ ହୋଇଛି । ଧବଳେଶ୍ୱର ମନ୍ଦିରର ଚିତ୍ର ଦେବାକୁ ଯାଇ ସେ ଲେଖିଛନ୍ତି:—"ଘୋର ଅନ୍ଧକାର ସ୍ଥାନ । ପୋଲାଂଗ ତେଲର ଦୀପର କ୍ଷୀଣ ଆଲୋକରେ ଅନ୍ଧାର ଟିକେ ପତଳା ହୋଇଯାଇଛି ମାତ୍ର । ଚଟାଣଟା ବର୍ଷାଦିନର ରାସ୍ତାପରି କାଦୁଅ ପାଣିରେ ସପର ସପର । ହିନ୍ଦୁର ଦେବତା ସେହି ପଥର ଗଢ଼ା ମୈଥୁନ ରତ ଯୋନି ପ୍ରତୀକ ଉପରେ ବହୁଦିନର ପତ୍ରଫୁଲର ପଚନଶୀଳ ସମାହାର । କିନ୍ତୁ ସଂସ୍କାର ଓ ବାଲ୍ୟ ବୟସର ଶିକ୍ଷା ମନୁଷ୍ୟର ମନକୁ ଏପରି ଗଢ଼ି ଦିଏ ଯେ, ଯେଉଁମାନେ ଠିକ୍ ସେହି କାଦୁଅ, ଠିକ୍ ଏପରି ଫୁଲପତ୍ର ଓ ସେଇ ଅଭଦ୍ର ପ୍ରତୀକକୁ ବାହାରେ କେଉଁଠି ଦେଖିଲେ, ହେଲେ ଘୃଣାରେ ପରିତ୍ୟାଗ କରନ୍ତେ, ସେଇମାନେ ଦେବତା ଓ ଧର୍ମ ନାମରେ ସେ ସମସ୍ତକୁ ସାଦରେ ଗ୍ରହଣ କରିନେଲେ, ନମସ୍କାର କଲେ ଓ ମନର ନିଗୂଢ଼ତମ କାମନାରାଜିର ସଫଳତା ପାଇଁ ହୁଏତ ଦରଖାସ୍ତ ପେଶ କରି ଆସିଲେ ଏବଂ ଦେବତା ଓ ମନୁଷ୍ୟ ଭିତରେ ଥିବା ଅସଭ୍ୟ, ଅଶିକ୍ଷିତ, ଅନାବଶ୍ୟକ, ସ୍ୱାର୍ଥସର୍ବସ୍ୱ ମଧ୍ୟସ୍ଥ ସେଇ ପଣ୍ଡାକୁ କେତୋଟି ମାତ୍ର ତାମ୍ର ମୁଦ୍ରା ଦେଇ ।"(୪୨)

ସୁନ୍ଦରର ଉପାସକ କବି ମାନସିଂହ ମନ୍ଦିର ଅଭ୍ୟନ୍ତରର ପରିଚ୍ଛନ୍ନତା ସଂଗେ ସଂଗେ ହିନ୍ଦୁ ସନ୍ନ୍ୟାସୀଙ୍କ ରୂପଗତ ସୌନ୍ଦର୍ଯ୍ୟ ତଥା ପରିଚ୍ଛନ୍ନତା ନିମନ୍ତେ ଆଶା ପୋଷଣ କରିଛନ୍ତି । ଜଟା ଓ ପାଉଁଶ ବିଲେପିତ ହିନ୍ଦୁ ସନ୍ନ୍ୟାସୀଙ୍କୁ ସେ ଆଉ ଆଖିରେ ଚାହିଁ ପାରନ୍ତି ନାହିଁ, ତାଙ୍କ ଦୃଷ୍ଟିରେ ସେହି ସନ୍ନ୍ୟାସୀ ହେଉଛନ୍ତି, ମାନବିକ ଘୁଷୁରୀ । (୨୦)

ମାନସିଂହଙ୍କ ଦୃଷ୍ଟିରେ ଭଗବାନ ବା ଈଶ୍ୱର ସଂକୀର୍ଣ୍ଣତା ମଧ୍ୟରେ ବନ୍ଧା ନୁହନ୍ତି । ତାଙ୍କ ମତରେ ଧର୍ମୀୟ ସଂକୀର୍ଣ୍ଣତାର ଊର୍ଦ୍ଧ୍ୱରେ ଈଶ୍ୱର ଅବସ୍ଥାନ କରନ୍ତି । 'ଅନ୍ୱେଷଣ' ଉପନ୍ୟାସର ଶ୍ରୀକଣ୍ଠ ଚରିତ୍ର ମୁଖରେ ବିଭିନ୍ନ ଧର୍ମର ପୁରୋହିତଙ୍କ ବିଷୟରେ ସେ କହନ୍ତି—"ବହୁପାପ, ବ୍ୟଭିଚାର, ରୋଗ ଓ ମୂର୍ଖତାର ପୀଠସ୍ଥଳୀ ହିନ୍ଦୁ ମନ୍ଦିର, ବହୁ ଅନ୍ଧ ଅସହିଷ୍ଣୁତା ଓ ବର୍ବରତାର ପୀଠସ୍ଥଳ ମୁସ୍‌ଲେମ୍ ମସ୍‌ଜିଦ ଓ ବହୁ ଅନ୍ଧ ଅହମିକା ଓ ଘୃଣାର

କେନ୍ଦ୍ର ଖ୍ରୀଷ୍ଟାନ୍ ଚର୍ଚ୍ଚ । x x x ଗୀର୍ଜା, ମନ୍ଦିର, ମସ୍‌ଜିଦ୍ ଠିଆ କରେଇ ଆସିଚ୍ଛନ୍ତି, ରାଜା, ଜମିଦାର, ଧନୀ ଓ ବ୍ୟବସାୟୀ ର ଦଳ, ଯେଉଁମାନଙ୍କ ଦୁଇ ହାତ ଓ କହୁଣୀ ପର୍ଯ୍ୟନ୍ତ ନର ଲୁହରେ ଆର୍ଦ୍ର । ସେଠିକି ଭଗବାନ ଆସିବେ କିପରି ଓ କାହିଁକି ? ଭଗବାନ କ'ଣ ଏତେ ଓଲୁ ହୋଇ ପାରନ୍ତି ?"(୨୧)

ହିନ୍ଦୁ ଧର୍ମରେ ଜାତୀୟ ସଂଗଠନ ପାଇଁ କୌଣସି ବ୍ୟବସ୍ଥା ନାହିଁ । ଏଣୁ ଭାରତବର୍ଷ ବିଭିନ୍ନ ସମୟରେ କେନ୍ଦ୍ର ଶକ୍ତିର ଦୁର୍ବଳତା ଯୋଗୁ ପରାଧୀନତା ସ୍ୱୀକାର କରିଛି । ମାନସିଂହଙ୍କ ଜାତୀୟତାବାଦୀ ପ୍ରାଣକୁ ଏ ଧାରା ବାଧୁଛି । ସେ ଲେଖିଚ୍ଛନ୍ତି :—"ହିନ୍ଦୁ ଏକାଧାରାରେ କେନ୍ଦ୍ରହୀନ ବା କୋଟି କେନ୍ଦ୍ରିକ । ସହସ୍ର ଧର୍ମ ପ୍ରଗ୍ରୁରକଙ୍କୁ କେନ୍ଦ୍ର କରି ଏଇ ଧର୍ମ ସହସ୍ର ଛୋଟ ଛୋଟ ଗୋଷ୍ଠୀରେ ବିଭକ୍ତ । ଭାଷା, ସମାଜ ଓ କାଷ୍ଟ(ଜାତି)ର ସହସ୍ର ପ୍ରାଚୀର ଦ୍ୱାରା ଆମର ଜାତୀୟ ଜୀବନ ଖଣ୍ଡ ବିଖଣ୍ଡିତ । ଦୃଢ କେନ୍ଦ୍ରିକ ଇସ୍‌ଲାମ୍ ଆମ ଧର୍ମ ଓ ଆମ ସମାଜ କୁ କେବଳ ନୁହେଁ, ଆମ ରାଷ୍ଟ୍ରର ମଧ୍ୟ ପ୍ରାୟ ଅର୍ଦ୍ଧେକ କବଳ କରି ସାରିଲା ପରେ ବି ଏଇ ହତଭାଗ୍ୟ ଅନନ୍ତ କେନ୍ଦ୍ରିକ ଜାତିଠାରେ କୌଣସି ପ୍ରକାର ଶୁଭ ପ୍ରତିକ୍ରିୟା ଦେଖାଯାଉ ନାହିଁ ।"(୨୨)

ହିନ୍ଦୁ ଧର୍ମର ପବିତ୍ର ଗ୍ରନ୍ଥ ଶ୍ରୀମଦ୍‌ଭଗବତଗୀତା ପ୍ରତି ମାନସିଂହଙ୍କର ଶ୍ରଦ୍ଧା ହାଇସ୍କୁଲରେ ଅଧ୍ୟୟନ କାଳରୁ । ପରବର୍ତ୍ତୀ କାଳରେ ଗୀତା ଉପରେ ତାଙ୍କର ହଜାର ପୃଷ୍ଠା ବ୍ୟାପୀ ସୁଦୀର୍ଘ ଭାଷ୍ୟ ଏହି ଶ୍ରଦ୍ଧାର ପରିପ୍ରକାଶ । ଗୀତା ସଂପର୍କରେ ମାନସିଂହ ଲେଖିଚ୍ଛନ୍ତି :—"ଏ ଲେଖକର ଆଶଙ୍କା ଏହି ଯେ, ସାଧାରଣ ହିନ୍ଦୁ ପାଠକ ଗୀତାକୁ ଏକ ମୋକ୍ଷଦାୟୀ ଓ ସାଂସାରିକ ସୁଖଦାୟୀ, ଯାଦୁକରୀ ଧର୍ମ ପୁସ୍ତକ ଭାବରେ ଗ୍ରହଣ କରି ଗୀତାର ସକଳ ଗୌରବ ନଷ୍ଟ କରିଥା'ନ୍ତି । ଲେଖକର ବିନୀତ ମତରେ ଗୀତାପରି ଗ୍ରନ୍ଥକୁ ଏ ଦୃଷ୍ଟିରେ ଦେଖିବା ଓ ସେହି ଲକ୍ଷ୍ୟରେ ହିଁ ପଢିବା, ହୁଏତ ଧର୍ମ ଭାବ ର ବା ଦିବ୍ୟ ଚେତନାର ଏକ ବ୍ୟଭିଗ୍ରୁର "(୨୩) ମାନସିଂହ ଗୀତା ପାଠରେ କୌଣସି ପୁଣ୍ୟ ବା ଧର୍ମ ନ ଖୋଜି, ଗୀତା ପାଠ ଦ୍ୱାରା ଦୈନନ୍ଦିନ ଜୀବନକୁ, ପବିତ୍ର, ମହନୀୟ ଓ କମନୀୟ କରିବା ପାଇଁ, ପଥ ନିର୍ଦ୍ଦେଶ କରିଚ୍ଛନ୍ତି । ବାପୁଜୀଙ୍କ ପରି ଜୀବନର ବିଭିନ୍ନ ଦ୍ୱନ୍ଦ୍ୱର ସମାଧାନ ସେ ଗୀତାରୁ ପାଇପାରିଚ୍ଛନ୍ତି ବୋଲି ଗୀତାପ୍ରତି ତାଙ୍କର ଏତେ ଆଦର । ତାଙ୍କ ଦୃଷ୍ଟିରେ ଗୀତା କେବଳ ଈଶ୍ୱର ବାଦର ଗ୍ରନ୍ଥ ନୁହେଁ; ଗୀତାରେ ଉଚ୍ଚ ଦର୍ଶନ, ଜଟିଳ ଆଧ୍ୟାତ୍ମିକ ତତ୍ତ୍ୱ ଓ ବିଧାତାର ବିଶ୍ୱରୂପ ପ୍ରଭୃତି ଆଧିଭୌତିକ ବିଷୟମାନ ବର୍ଣ୍ଣିତ ହୋଇଥିଲେ ମଧ୍ୟ ସେ ଗୀତାରେ ମନୁଷ୍ୟର ସାଧାରଣ ଦୁର୍ବଳତାକୁ ମଧ୍ୟ ସ୍ୱୀକୃତ ହେବାର ଦେଖିଚ୍ଛନ୍ତି । ଏଣୁ ଗୀତାକୁ ସେ ମାନବ ବାଦର ଗ୍ରନ୍ଥ ରୂପେ ସମ୍ମାନ ପ୍ରଦର୍ଶନ କରିଚ୍ଛନ୍ତି । ଗୀତା ମନୁଷ୍ୟତ୍ୱକୁ ଘୃଣାକରି ଦେବତ୍ୱକୁ ପ୍ରଗ୍ରୁର କରିବାକୁ ଯାଇନାହିଁ । ଗୀତା ସାଧାରଣ ମନୁଷ୍ୟତ୍ୱକୁ ଉତ୍ତମ ମନୁଷ୍ୟତ୍ୱରେ ହିଁ ପରିଣତ କରିବାକୁ ନିର୍ଦ୍ଦେଶ ଦେଉଛି ।"(୨୪)

ମାନସିଂହଙ୍କ ମତରେ:—"ଗୀତା ହେଉଛି ଭାରତୀୟ ଧର୍ମଶାସ୍ତ୍ରରେ ପ୍ରଥମ ଗ୍ରନ୍ଥ, ଯେ କି ସନ୍ନ୍ୟାସ ବା କର୍ମତ୍ୟାଗ ବିରୁଦ୍ଧରେ ସ୍ପଷ୍ଟ ସ୍ୱର ଉତ୍ତୋଳନ କଲା । ଗୀତାହିଁ ପ୍ରଥମେ ସୂଚିତ କଲା, ଯେ, ଆମେ ଆମର ଦୈନନ୍ଦିନ ଛୋଟବଡ କର୍ମକୁହିଁ ଯୋଗ ଓ ଯଜ୍ଞରେ ପରିଣତ କରି ପାରିବା । ଈଶ୍ୱରଙ୍କୁ ଖୋଜିବାକୁ ଆମକୁ

ପର୍ବତ କନ୍ଦରକୁ ଯିବାକୁ ହେବ ନାହିଁ । ଘରେ ରହି ହିଁ ସର୍ବମୟ ବାସୁଦେବଙ୍କୁ ଅନୁଭବ କରିପାରିବା ।"(୨୫)

ଶେଷରେ ହିନ୍ଦୁଧର୍ମ ସଂପର୍କରେ ମାନସିଂହଙ୍କର ମତ ହେଲା:—"ହିନ୍ଦୁଧର୍ମ ବା ସନାତନଧର୍ମ ବା ବ୍ରାହ୍ମଣ୍ୟ ଧର୍ମ ସାତହଜାର ବର୍ଷ ହେଲା ଏହି ଉପମହାଦେଶରେ ଚଳି ଆସୁଅଛି । ଏ ହେଉଛି ଏକ-ମାତ୍ର ଧର୍ମ, ଯାହା କୌଣସି ଭାବରେ ବ୍ୟକ୍ତିକେନ୍ଦ୍ରିକ ନୁହେଁ । ଅର୍ଥାତ କେହି କହି ପାରିବେ ନି ହିନ୍ଦୁଧର୍ମର ପ୍ରତିଷ୍ଠାତା ବା ପ୍ରଗ୍ଭରକ କିଏ, ଯେପରିକି ଇସ୍‌ଲାମ୍ ବା ବୌଦ୍ଧ ବା ଖ୍ରିଷ୍ଟିୟାନ ଧର୍ମ ସଂପର୍କରେ ଏ ଉତ୍ତର ସାଂଗେ ସାଂଗେ ମିଳି-ଯିବ । ଯୁଗଯୁଗର ସାମାଜିକ, ରାଷ୍ଟ୍ରିକ ପରିବର୍ତ୍ତନ ସେନି ସ୍ୱାଭାବିକ ଭାବରେ ହିନ୍ଦୁଧର୍ମ ବାରମ୍ବାର ପରିବର୍ତ୍ତିତ ହୋଇଛି । ନାନା ମହଜ୍ଜନର ଚିନ୍ତା ଓ ଜିଜ୍ଞାସା ଏଥିରେ ସ୍ଥାନ ପାଇଛି । ଫଳରେ ଏ ଧର୍ମଯେ ବିପୁଳ ଓ ଜଟିଳ ହୋଇ ଉଠିବ ଏହାମଧ୍ୟ ସ୍ୱାଭାବିକ । ଏପରିକି ମହାଭାରତ ଲେଖା ହେଲା ବେଳକୁ ମଧ୍ୟ ତଥାକଥିତ ଧର୍ମ ସଂପର୍କରେ ମତମତାନ୍ତର ଏପରି ପରସ୍ପର ବିରୋଧୀ ଓ ଅସରଳ ହେବାକୁ ବସିଲାଣି ଯେ, ଭୀଷ୍ମ ବାଧ୍ୟ ହୋଇ ଯୁଧିଷ୍ଠିରଙ୍କୁ ଧର୍ମ ସଂପର୍କରେ କହିଛନ୍ତି—'ମହାଜନ ଯେନ ଗତଃ ସ ପନ୍ଥା' ।"(୨୬)

ବର୍ତ୍ତମାନ ଭାରତବର୍ଷରେ ଧର୍ମକୁ ଏକ ବ୍ୟବସାୟରେ ପରିଣତ କରାଯାଉଛି । ରାଜନୈତିକ ଦଳ ଗଠନ ପରି ଓ ତାହାର ପ୍ରସାରଣ ପରି, ସ୍ୱାଧୀନ ଭାରତ ବର୍ଷରେ, ଧର୍ମୀୟ ଦଳଗଠନ ଓ ସେମାନଙ୍କର ପ୍ରସାରଣ ବର୍ତ୍ତମାନ ଧର୍ମ ରାଜ୍ୟରେ ଏକ ସମସ୍ୟାହୋଇ ଦେଖାଯାଇଛି । ଏହି ଅନୁଗ୍ରହ ବିତରକ ଭଗବାନ ମାନେ ଧର୍ମମଧ୍ୟରେ ଦେଖା ଦେଇଥିବା ଅଧଃପତନ ପାଇଁ ବିଶେଷତଃ ଦାୟୀ । ଏ ସଂପର୍କରେ ମାନସିଂହ ଲେଖିଛନ୍ତି:—"ଏ ଲେଖକ ଅନୁଗ୍ରହ ବିତରକ କୌଣସି ଈଶ୍ୱର ବା ଦେବତାର ପରିଚୟ ଜୀବନରେ ଏ ପର୍ଯ୍ୟନ୍ତ ପାଇନାହିଁ । ଏବେ ମଧ୍ୟ ଈଶ୍ୱର ଉପଲବ୍ଧି ଗୌରବାନ୍ୱିତ ଭାରତବର୍ଷରେ କୌଣସି କୌଣସି ସ୍ଥାନରେ ଅନୁଗ୍ରହର ଉତ୍ସ ଫିଟିଛି ବୋଲି, ବହୁଲୋକ ସେହି ସେହି ସ୍ଥାନରେ ରୁଣ୍ଡ ହେଉଛନ୍ତି । କାହା ଜୀବନରେ କି କି ଅଭିଜ୍ଞତା ଘଟିପାରେ, କହି ହେବନାହିଁ । କିନ୍ତୁ ଯେ ପର୍ଯ୍ୟନ୍ତ ଲେଖକର ନିଜ ଜୀବନରେ ସେପରି କିଛି ଘଟିନାହିଁ, ସେ ସଂପର୍କରେ ସେ ଦୃଢ ଭାବରେ କହି ବସିବା ପାଠକମାନଙ୍କୁ ଅଜଣାଭୂଇଁକି ଠେଲିଦେବା ପରି ହେବ ନାହିଁକି ? କିନ୍ତୁ କଠୋର, ଅଲଂଘ୍ୟ-ନିୟମ-ରାଜି-ଶୃଙ୍ଖଳିତ ଏହି ନିୟମାବଳୀର କର୍ତ୍ତା ସ୍ୱୟଂ ଈଶ୍ୱର, ନିଜସୃଷ୍ଟ ନିୟମ-ତାନ୍ତ୍ରିକତାକୁ ପଦାଘାତ କରି ଅଯୌକ୍ତିକ ଭାବରେ ଯାହାକୁ ତାକୁ ଅନୁ-ଗ୍ରହ ବିତରଣ କରିବେ କିପରି, ତାହା ଜଣାପଡ଼ନାହିଁ ।"(୨୭)

ମାନସିଂହ ମନେ କରନ୍ତି ଯେ ଧର୍ମ ସେହି ଓ ଈଶ୍ୱର ସେହି ଯେ ମନୁଷ୍ୟକୁ ପରିପୂର୍ଣ୍ଣତା ଆଡକୁ ନେଇ ଗ୍ଭଲେ ଏବଂ ସମଗ୍ର ସୃଷ୍ଟି ସହିତ ଏକୀଭୂତ କରାଇଦିଏ ।

॥ ମାନସିଂହଙ୍କ ବିଗ୍ରହଧାରା ॥

ଧର୍ମ ଓ ନୈତିକତା :-

ବହୁ ହେତୁବାଦୀ ଦାର୍ଶନିକ ଚିନ୍ତାବିଦ୍ ସଂଗଠିତ ଧର୍ମର ବିରୋଧୀ ହେଲେ ହେଁ ଧର୍ମର ଅମୁକ୍ତ ଭାବମଣ୍ଡଳପ୍ରତି ବିତଶ୍ରଦ୍ଧ ହେଲେ ବି ଅନ୍ତତଃ ଗୋଟିଏ ଦୃଷ୍ଟିରୁ ଧର୍ମକୁ ସ୍ୱୀକାର କରିଛନ୍ତି—ତାହା ହେଲା, ଜୀବନରେ ନୈତିକତାର ପ୍ରତିଷ୍ଠା ସମାଜକୁ ସୁଶୃଙ୍ଖଳ ଓ ନିୟମିତ କରିବାରେ ଧର୍ମର ଥିବା ଭୂମିକାକୁ ଆଧାର କରି । ଇମାନୁଏଲ୍ କ୍ୟାଣ୍ଟଙ୍କ ଭଳି ଦାର୍ଶନିକ କହିଛନ୍ତି, ଧର୍ମ ଓ ଭଗବାନର ଯଦିଓ ବାସ୍ତବ ସ୍ଥିତି ନାହିଁ ତଥାପି ଜୀବନରେ ନୀତିବୋଧର ପ୍ରତିଷ୍ଠା ପାଇଁ ଧର୍ମ ଓ ଭଗବାନର ଉଦ୍‌ଭାବନ ଅତ୍ୟାବଶ୍ୟକ । ଧର୍ମ ସାଙ୍ଗରେ ନୀତିର ସଂପର୍କ କ'ଣ, ତାହା ଏକ ଜଟିଳ ତର୍କର ବିଷୟ । ବର୍ତ୍ତମାନର ହେତୁବାଦୀ ନୀତିଶାସ୍ତ୍ରବିତ୍ ଏ.ଜେ.ଆୟାର, ମୁରେ ପ୍ରମୁଖ କହନ୍ତି—ନୀତି ଓ ଧର୍ମ ଉଭୟର ଗତି ଭିନ୍ନ ଦିଗରେ । ସେମାନଙ୍କର ସାଧାରଣ ମିଳନ ବିନ୍ଦୁଟି ବଡ ଅସ୍ପଷ୍ଟ ଓ ସଂଯୋଗ ସୂତ୍ରଟି ଦୁର୍ବଳ । ମାନସିଂହ କିନ୍ତୁ ଜୀବନର ଆବଶ୍ୟକୀୟ ନୀତିବୋଧକୁ ଧର୍ମଭାବରେ ଗ୍ରହଣ କରିଛନ୍ତି । ନୀତିଶାସ୍ତ୍ର ପ୍ରତି ତାଙ୍କରଥିବା ଦୃଷ୍ଟିକୋଣ ଅବରୋହ ମୂଳକ । ସେଥିପାଇଁ ମାନସିଂହ ପାରଂପାରିକ ଓ ସଂଗଠିତ ଧର୍ମ ବିଶ୍ୱାସ ବିରୁଦ୍ଧରେ ଅଭିଯାନ ଚଳାଇଥିଲେବି ପରିପୂର୍ଣ୍ଣ ନାସ୍ତିକ ହୋଇପାରି ନାହାନ୍ତି । ସେ ଜଣେ ହେରେଟିକ୍(ପ୍ରଚଳିତ ଧର୍ମମତ ବିରୋଧୀ) କିନ୍ତୁ ଧର୍ମଦ୍ରୋହୀ ନୁହନ୍ତି ।

ନୀତି ଓ ଧର୍ମ ମଧ୍ୟରେଥିବା ଘନିଷ୍ଠ ସଂପର୍କ ବିଷୟରେ ଅବତାରଣା କରି ସେ କହନ୍ତି:- ବିଶୁଦ୍ଧ ଚିନ୍ତା ରାଜ୍ୟରେ ସାଧାରଣ ମନୁଷ୍ୟ ଶୀଘ୍ର ଅଣନିଶ୍ୱାସୀ ହୋଇପଡିବାର କଥା । କାରଣ ବିଶୁଦ୍ଧ ଚିନ୍ତାପରି କଠିନ ଶ୍ରମ ମନୁଷ୍ୟ ପକ୍ଷରେ ଦ୍ୱିତୀୟ ନାହିଁ । 'ସତ୍ୟ'ଠାରୁ ଅଧିକ ମାନସିକ ବିଭୀଷିକା ମଧ୍ୟ ପୃଥିବୀରେ ଦ୍ୱିତୀୟ ନାହିଁ । ସାଧାରଣ ମନୁଷ୍ୟ ମିଥ୍ୟା, ମାୟା, ମାଟି ଓ ମଇଳା ବିନା ହୁଏତ ସ୍ୱାଭାବିକ ଜୀବନ ବଞ୍ଚି ନ ପାରେ । ଫଳରେ ଔପନିଷଦିକ ସ୍ତରରେ ବିଶୁଦ୍ଧ ଜିଜ୍ଞାସା, ଭାରତର ସାଧାରଣ ନର ନାରୀର ଚିତ୍ତକୁ କ୍ଳାନ୍ତ କରି ପକାଇଲା । ବ୍ରହ୍ମ ନାମକ, ଅସ୍ପୃଶ୍ୟ, ନିର୍ଗୁଣ ଏକ ଦ୍ରବ୍ୟ ନେଇ ମନୁଷ୍ୟର ସହସ୍ର କ୍ଷୁଦ୍ର-ଦୁଃଖ-ସୁଖ-ମୟ ଦୈନନ୍ଦିନ ଜୀବନ ଚଳେ କିପରି ?"(୨୪)

ସହସ୍ର ବର୍ଷର ଅଭିଜ୍ଞତାରୁ ମଣିଷ ଅନେକ ମୂଲ୍ୟାବଳୀକୁ ମହାର୍ଘ ମନେ କରି ଆସିଛି ଯଥା:- ସତ୍ୟ କଥନ, ମାନବ ସେବା, ଅନ୍ୟପ୍ରତି ପ୍ରେମ ଭାବ ଇତ୍ୟାଦି । ମାନସିଂହ ଏହି ସମସ୍ତ ମୂଲ୍ୟାବଳୀକୁ ଅନ୍ତରର ସହିତ ସମ୍ମାନ କରି ଆସିଛନ୍ତି । ଜୀବନରେ ଏହାର ମୂଲ୍ୟକୁ ସେ କେବେହେଲେ ଅସ୍ୱୀକାର କରିନାହାନ୍ତି । ଏହି ଅମୃତମୟ ଗୁଣାବଳୀ ମହାପୁରୁଷମାନଙ୍କ ଜୀବନରେ ପରୀକ୍ଷିତ ଓ ପ୍ରତିଷ୍ଠିତ ହୋଇଥାଏ । ବିଭିନ୍ନ ଧର୍ମର ଆଦିପୁରୁଷମାନେ ଜୀବନର ଅଗ୍ନି-ପରୀକ୍ଷା ଭିତରେ ସତ୍ୟ ନ୍ୟାୟ ସଂପର୍କରେ ସଚେତନତା ସୃଷ୍ଟି କରିଥା'ନ୍ତି । ତେଣୁ ମାନସିଂହ, ଯୀଶୁଖ୍ରୀଷ୍ଟ ବୁଦ୍ଧ, ମହମ୍ମଦ ପ୍ରମୁଖ ଧର୍ମପୁରୁଷମାନଙ୍କୁ ମହାମାନବ ହିସାବରେ ସ୍ୱୀକୃତି ଦେଇଛନ୍ତି । ସେମାନଙ୍କ ପ୍ରତି ଶ୍ରଦ୍ଧା ନିବେଦନ କରିଛନ୍ତି । ସେ କହନ୍ତି :—"ଆମେ ପରମ ପୁରୁଷମାନଙ୍କର ଜୀବନ ବିଶ୍ଳେଷଣ କଲେ ଦେଖୁ ଯେ, ଗୀତାର ଏହି

ବାଣୀ ଆଦୌ ଅସତ୍ୟ ନୁହେଁ । ଯେଉଁ ଲୋକଗୁରୁମାନଙ୍କର ଜୀବନରେ ଗୀତାର ଆଦର୍ଶ ପରିସ୍ଫୁଟିତ, ସେମାନେ ବାହ୍ୟରେ ଜନତା ଠାରେ ମଗ୍ନ ଥିଲେ ହେଁ ଅନ୍ତରରେଥିଲେ ଜନତା ଠାରୁ ବହୁ ଦୂରରେ ଓ ବହୁ ଉପରେ । ସେମାନେ ପ୍ରତ୍ୟେକ ଜୀବନ ଯାପନ କରୁଥିଲେ 'ପଦ୍ମପତ୍ରମିବାମ୍ଭସି' । ସେମାନଙ୍କର ସ୍ଥିତିଥିଲା ଜଗତରେ, କିନ୍ତୁ ଅନୁରକ୍ତି ନ ଥିଲା, ଯେ ଅନୁରକ୍ତି ଥାଏ ଗୃହୀର ତାର ନିଜର ଗୃହସ୍ଥଳୀପ୍ରତି, ବା କୃପଣର ସଞ୍ଚିତ ଧନ ପ୍ରତି ।"(୨୨)

ଜୀବନରେ ଆବଶ୍ୟକୀୟ ନୈତିକତା ପ୍ରତିଷ୍ଠା ପାଇଁ ମଣିଷର ମୁକ୍ତ ବୁଦ୍ଧି ଓ ସୁସ୍ଥ ବିଗ୍ରହ ଧାରା ହିଁ ସର୍ବଶ୍ରେଷ୍ଠ ଭିତ୍ତି । ଭକ୍ତି ନୁହେଁ ଶ୍ରଦ୍ଧା ହିଁ ଜୀବନର ଅଗ୍ରଗାମିତାର ସୂଚକ । ମଣିଷ ପ୍ରତ୍ୟେକ ମୁହୂର୍ତ୍ତରେ ପୁରାତନ ମୂଲ୍ୟବୋଧକୁ କେବଳ ପ୍ରତିଷ୍ଠା କରେନାହିଁ, ନୂତନ ମୂଲ୍ୟବୋଧ ମଧ୍ୟ ସୃଷ୍ଟି କରେ । ଏହି ନୂତନ ମୂଲ୍ୟବୋଧର ସୃଷ୍ଟିପାଇଁ ଏ ଜୀବନପ୍ରତି ମୁକ୍ତଜିଜ୍ଞାସା ଓ ସମ୍ପୂର୍ଣ୍ଣ ସମାଜ ଚିନ୍ତା ଆବଶ୍ୟକ । ବିଭିନ୍ନ କାରଣରୁ ମାନସିଂହଙ୍କ ପକ୍ଷରେ ତାହା ସମ୍ଭବ ହୋଇନାହିଁ ।

**ଶେଷକଥା :**

ଧର୍ମ ଜିଜ୍ଞାସା ଓ ଭଗବତ ବିଶ୍ୱାସ ମଣିଷର ଜଟିଳ ମାନସିକତାର ପରିଚୟ । ନିଜର ଜୈବିକ ଓ ଆଧିଭୌତିକ କାରଣରୁ ଏହି ଅଚିନ୍ତନୀୟ ଅପ୍ରମାଣ୍ୟ ଶକ୍ତି ଉପରେ ଆସ୍ଥା ସ୍ଥାପନ କରିବା ପାଇଁ ସେ ବାଧ୍ୟ ହୋଇଛି । ଏହି ଶକ୍ତିକୁ ସରଳ ଭାବରେ ବିଶ୍ୱାସ କରିବା ବା ଅବିଶ୍ୱାସ କରିବା ଯେତେ ସହଜ, ଗଭୀର ଭାବରେ ଚିନ୍ତାକରି ପରିତ୍ୟାଗକରିବା ସେତିକି କଷ୍ଟ । ସ୍ଥାନଗତ, କାଳଗତ, ପରିବେଶଗତ ବୈଭିନ୍ନ୍ୟ ସତ୍ତ୍ୱେ ମଣିଷ ସ୍ଥିତିବୋଧ ଓ ସଂସ୍କୃତିବୋଧ ସହ ସଂପୃକ୍ତ ହୋଇ ପଡିଛି । ଚଳିତ ଶତାବ୍ଦୀର ଶ୍ରେଷ୍ଠ ହେତୁବାଦୀ ଦାର୍ଶନିକ ବର୍ଟାଣ୍ଡ ରସେଲ୍, ଜନ ଡିଓ୍ୱେ ବା ଭାରତର ଏମ୍.ଏନ୍.ରାୟଙ୍କ ଭଳି ଚିନ୍ତାନାୟକମାନେ ଈଶ୍ୱର ବିଶ୍ୱାସ ଓ ଧର୍ମ ଜୀବନର ଅନାବଶ୍ୟକତାକୁ ଯୁକ୍ତିସହ ପ୍ରତିଷ୍ଠା କରିଛନ୍ତି । ବହୁ ଦାର୍ଶନିକ ଅଛନ୍ତି ଯେଉଁମାନେ ଈଶ୍ୱରଙ୍କୁ ଅସ୍ୱୀକାର କଲେ ବି ଧର୍ମ ଜିଜ୍ଞାସାର ମୂଳ ଦାର୍ଶନିକ ଭିତ୍ତି ଭାବବାଦ(ଆଇଡିଆଲିଜିମ୍)ରୁ ମୁକ୍ତି ପାଇ ନାହାନ୍ତି । ଗତ ଶତାବ୍ଦୀର ନିଟ୍‌ସେ ଓ ଚଳିତ ଶତାବ୍ଦୀର ଇଟାଲୀ ଦାର୍ଶନିକ କ୍ରୋଚେ ଏହାର ଜ୍ୱଳନ୍ତ ଦୃଷ୍ଟାନ୍ତ । ଯାନ୍ତ୍ରିକ ଭୌତିକବାଦୀ ଦାର୍ଶନିକମାନେ ଏହି ଅଦୃଶ୍ୟ ଶକ୍ତିର ଉପସ୍ଥିତିକୁ ଯୁକ୍ତି ସହ ନାକଚ କଲେ ବି ବସ୍ତୁ ତାନ୍ତ୍ରିକତାର ଅନ୍ଧ ରୂପକୁ ସ୍ୱୀକାର କରିନେଇଛନ୍ତି । ଏହି ସମସ୍ତର ପରିପ୍ରେକ୍ଷୀରେ ମାନସିଂହଙ୍କର ଧର୍ମ ଜିଜ୍ଞାସା ଓ ଭଗବତ ବିଶ୍ୱାସକୁ ପରୀକ୍ଷା କରାଯାଇପାରେ ।

ନିଜର ସାଂସ୍କୃତିକ ଅବଚେତନ ହେତୁ ନିଜ ଅଭିବୃଦ୍ଧିର ତଥା ଅଭିଶପ୍ତ ଜୀବନର କାରଣ ମାନସିଂହ ଯଥାର୍ଥ ଭାବରେ ଆବିଷ୍କାର କରିପାରି ନାହାନ୍ତି । ଦୁର୍ବଳ ମଣିଷ ନିଜ ପରାଜୟର କାରଣ ନ ଜାଣି ବା ଦୁର୍ବଳତାକୁ ଅତିକ୍ରମ କରିବା ପାଇଁ ଯେ ଭଳି ଏକ ବାହାର ଶକ୍ତିର ସାହାଯ୍ୟ ନେଇଥାଏ ମାନସିଂହ ଜୀବନର ପ୍ରତ୍ୟେକ ସ୍ତରରେ ସେହିଭଳି ଏକ ବାହ୍ୟ ତଥା କଳ୍ପିତ ଶକ୍ତିର ଆଶ୍ରୟ ଖୋଜିଛନ୍ତି । ଚଳିତ ଶତାବ୍ଦୀର ବିଖ୍ୟାତ ଦାର୍ଶନିକ ଏରିକ୍ ଫ୍ରୋମ୍ ତାଙ୍କର

## ॥ ମାନସିଂହଙ୍କ ବିଗ୍ରହଧାରା ॥

'ଫିଅର ଫର ଫ୍ରିଡମ୍' ବହିରେ ଧର୍ମ ସଂପର୍କରେ ଏକ ଚମତ୍କାର ଆଲୋଚନା କରିଛନ୍ତି । ତାଙ୍କ ମତରେ 'ମଣିଷ ମୁକ୍ତିର ସାଧନ ଚିରକାଳ କରି ଆସିଲେ ବି ସଂପୂର୍ଣ୍ଣ ମୁକ୍ତି ପ୍ରତି ତାର କେବଳ ଅନିହା ନୁହେଁ ଗଭୀର ଭୟ ମଧ୍ୟ । ତେଣୁ ଗୋଟାଏ ପ୍ରକାର ବନ୍ଧନରୁ ମୁକ୍ତି ଖୋଜିଲାବେଳେ ନିଜର ଅଜ୍ଞାତସାରରେ ସେ ଆଉ ଗୋଟାଏ ବନ୍ଧନକୁ ଆପଣାର କରିନିଏ । ଧର୍ମରୁ ମୁକ୍ତିପାଇ ରାଷ୍ଟ୍ରକୁ ବା ରାଷ୍ଟ୍ରରୁ ମୁକ୍ତିପାଇ ଦଳକୁ ସେ ପରମ ଓ ଚରମ ବୋଲି ମନେ କରେ ।' ମାନସିଂହଙ୍କ କ୍ଷେତ୍ରରେ ତାହାମଧ୍ୟ ଘଟିଛି । ବ୍ରାହ୍ମଣ୍ୟ ଧର୍ମର ଅତ୍ୟାଗ୍ରହ, କୁସଂସ୍କାର, ଅନ୍ଧବିଶ୍ୱାସ ଏବଂ ନିଜ ବର୍ଣ୍ଣ ସଂପ୍ରଦାୟର ନିଜ ଅବସ୍ଥା ତାଙ୍କୁ ବ୍ରାହ୍ମଣ୍ୟ ଧର୍ମ ବିରୋଧୀ କରିଛି । ସେ ହିନ୍ଦୁ ଧର୍ମର ଖୋଳପା ଫୋପାଡିବା ପାଇଁ ବାରମ୍ବାର ଚେଷ୍ଟା କରିଛନ୍ତି । ଆଦର୍ଶର ସନ୍ଧାନରେ କେତେବେଳେ ରବୀନ୍ଦ୍ର, କେତେବେଳେ ମହାତ୍ମା ଗାନ୍ଧି, କେତେବେଳେ ବୁଦ୍ଧ, କେତେବେଳେ ଯୀଶୁଖ୍ରୀଷ୍ଟ, କେତେବେଳେ ଅନୁକୂଳ ଚନ୍ଦ୍ରଙ୍କ ଦ୍ୱାରସ୍ଥ ହୋଇଛନ୍ତି । ଏ ସମସ୍ତର କାରଣ ହେଲା ଚରମ ମୁକ୍ତି ପ୍ରତି ପରମ ଭୟ । ଏହି ଭୟ ଫଳରେ ଜୀବନ ସାରା ସେ କୌଣସି ଏକ ଚରମଶକ୍ତି ଉପରେ ବିଶ୍ୱାସ ସ୍ଥାପନ କରି ଆସିଛନ୍ତି । ବିଶ୍ୱ ବ୍ରହ୍ମାଣ୍ଡ ଏକ ବସ୍ତୁ ନିୟନ୍ତ୍ରିତ ଜଗତ । ଖଣ୍ଡେ ପଥର କୌଣସି ଏକ ଆକସ୍ମିକ ଅଭିଘାତ ଫଳରେ ଗତିଶୀଳ ହୋଇ ଅସାଧ୍ୟ ସାଧନ କରିପାରେ, ଏଥିରେ କୌଣସି ଦୈବୀ ଲୀଳା ନାହିଁ, ଏହା ବସ୍ତୁର ନିଜ କ୍ରିୟାର ପ୍ରତିକ୍ରିୟା । ମାନସିଂହ ଏହି ବସ୍ତୁତାନ୍ତ୍ରିକତାକୁ ଓ ଯୁକ୍ତିବାଦୀ ଭୌତିକ ଦର୍ଶନକୁ କେବେ ବି ଆପଣାର କରିପାରି ନାହାନ୍ତି ।ବେଳେ ବେଳେ ନିଜଙ୍କୁ ନାସ୍ତିକ ବୋଲି ପରିଚୟ ଦେଲେ ବି, ଏକ ପରମ ଶକ୍ତିକୁ କେବେବି ମନ ପ୍ରାଣ ଦେଇ ଅସ୍ୱୀକାର କରିପାରି ନାହାନ୍ତି ।

ମାନସିଂହ ମୁଖ୍ୟତଃ କବି । ଜୀବନ ଓ ଜଗତକୁ ଭଲ ପାଇବାରୁ ହିଁ ତାଙ୍କ କବିତାର ଆରମ୍ଭ । ଶ୍ରଦ୍ଧା ଭାବରୁ ହିଁ ତାଙ୍କ କବିତାର ସ୍ଫୁର୍ତ୍ତି । ଆଲୋଚନା ମଧ୍ୟରେ କୁହାଯାଇଛି, ଗୌଣ ଭାବରେ ହେଲେ ବି, ପାରମ୍ପରିକ ସମାଜକୁ ନିୟମ ଶୃଙ୍ଖଳିତ କରିବା ପାଇଁ ଧର୍ମର ଏକ ସୀମିତ ଭୂମିକା ରହିଛି । ଜୀବନକୁ ନୀତିପୂର୍ଣ୍ଣ କରିବା ପାଇଁ ଧର୍ମର ଏହି ସୀମିତ ଭୂମିକାକୁ ମାନସିଂହ ଅପରିସୀମ ବୋଲି ମନେ କରିଛନ୍ତି ଓ ଧର୍ମ ରହିତ ଜଗତ ଧ୍ୱଂସମୁଖୀ ହେବା ସ୍ୱାଭାବିକ ବୋଲି ସେ ମନେ ମନେ ଗ୍ରହଣ କରି ନେଇଛନ୍ତି । ଧର୍ମର ଏହି ସାମାଜିକ ଭୂମିକା ସମ୍ବନ୍ଧରେ ନିଃସନ୍ଦିଗ୍ଧତା ହେତୁ ଧର୍ମର ନାଗପାଶ ଜାଲରୁ ସେ କେବେ ବି ମୁକ୍ତି ପାଇପାରି ନାହାନ୍ତି ।

ନୀତିବୋଧର ଉତ୍ସ ଧର୍ମ ନୁହେଁ, ମଣିଷର ମୁକ୍ତ ପ୍ରଜ୍ଞା ଓ ତାର ହେତୁବାଦୀ ଜିଜ୍ଞାସାରୁ ଏହା ଉତ୍ସାରିତ । ପ୍ରତିଷ୍ଠିତ ଓ ସଂଗଠିତ ଧର୍ମ, ମଣିଷର ମୁକ୍ତି ନୁହେଁ , ବନ୍ଧନର ପ୍ରତୀକ । ସାମାଜିକ, ସାଂସ୍କୃତିକ ଓ ମାନସିକ ସ୍ତରରେ ମଣିଷକୁ ପାଶବଦ୍ଧ କରି ତାର ମୁକ୍ତିର କାମନାକୁ ଏକ ଅନନ୍ତ ତଥା ଭିତ୍ତି ହୀନ ଦିଗରେ ପରିଚାଳିତ କରିବା ଧର୍ମର କାର୍ଯ୍ୟ । ବ୍ରାହ୍ମଣତନ୍ତ୍ର, ପ୍ରୋହିତତନ୍ତ୍ର, ବା ମୁଲ୍ଲାତନ୍ତ୍ରର ସେଇଠୁ ଆରମ୍ଭ । ଫଳରେ ପ୍ରତିଷ୍ଠିତ ଧର୍ମକେନ୍ଦ୍ରିକ ସମାଜରେ ଧର୍ମର ବଡପଣ୍ଡାମାନଙ୍କ ଜୀବନସହ ଆଦର୍ଶବାଦୀ ନୀତିବୋଧର ଭୟଙ୍କର ବିରୋଧ ଦୃଷ୍ଟିଗୋଚର ହେଉଥିଲା ।

ମାନସିଂହ ନିଜେ ବଢିଥିବା ପୁରୋହିତ ତନ୍ତ୍ର ମଧ୍ୟରେ ଅଣନିଶ୍ୱାସ ହୋଇ ଉଠିଛନ୍ତି । ନୈତିକ ଜୀବନ ଏହି ତନ୍ତପଣ୍ଡା ମାନଙ୍କଦ୍ୱାରା ବାରମ୍ବାର ହାତୁଡିମାଡ ଖାଉଥିବାର ସେ ଦେଖି ପାରିଛନ୍ତି । ଏହିଭଳି କ୍ଷେତ୍ରରେ ଧର୍ମାପେକ୍ଷା ନୀତିବୋଧ ତାଙ୍କର ଅଧିକ ପ୍ରିୟ ଓ ଧର୍ମ ନିନ୍ଦା ଯୋଗ୍ୟ । ସବୁଠାରୁ ବିସ୍ମୟର କଥା ହେଉଛି ଯେ, ଜୀବନର ମୂଲ୍ୟାବଳୀ ପରମ ତଥା ଚରମ ନୁହେଁ, ବଞ୍ଚିବାର ସଂଗ୍ରାମ ଭିତରେ ଅଭିଜ୍ଞତାର ନିକଷରେ ସମାଜ ଜୀବନର ମୂଲ୍ୟାବଳୀ ଗଠିତ ତଥା ପ୍ରତିଷ୍ଠିତ ହୁଏ, ଏ କଥା ମାନସିଂହ ଆଦୌ ଚିନ୍ତାକରି ନାହାନ୍ତି । ଦ୍ୱିତୀୟତଃ ବିଭିନ୍ନ ମୂଲ୍ୟ ମଧ୍ୟରେ ପାରସ୍ପରିକ ସଂଘର୍ଷ ଓ ବଞ୍ଚିବାର ଯନ୍ତ୍ରଣା ପ୍ରତ୍ୟେକ ବ୍ୟକ୍ତି ଜୀବନରେ ଆସେ ଓ ସେଠି ଗୋଟିକୁ ବାଛି ନେବାପାଇଁ ତାକୁ ନିଜର ବୁଦ୍ଧି ଉପରେ ନିର୍ଭର କରିବାକୁ ପଡେ ଏକଥା ମାନସିଂହ ବିଶ୍ୱରକୁ ଆଣି ନାହାନ୍ତି । ଅଫିସରେ ଦୁର୍ନୀତି କରୁଥିବା କର୍ମଚାରୀ ପାରିବାରିକ ଜୀବନରେ ଜଣେ ସଫଳ ବ୍ୟକ୍ତି ଓ ଉଭୟ ମଧ୍ୟରେ ଦ୍ୱନ୍ଦ୍ୱ ରହିଛି ଏ କଥା ମାନସିଂହ ବୁଝିପାରି ନାହାନ୍ତି । ପ୍ଲାଟୋଙ୍କ 'ପାରମେନାଇଡ୍' ଭଳି ମାନସିଂହଙ୍କ ନୀତିବୋଧର ମୂଲ୍ୟାବଳୀ ଅଟଳ, ଅଚଳ, ଅପରିବର୍ତ୍ତନୀୟ ଓ ପରସ୍ପର ବିଚ୍ଛିନ୍ନ । ସେ ପାରମ୍ପରିକ ଧର୍ମ ବିଶ୍ୱରକୁ ନିନ୍ଦା କରିଛନ୍ତି, ମାତ୍ର ଧର୍ମକୁ ଅତିକ୍ରମ କରି ଏକ ମୁକ୍ତ ସାମ୍ୟ-ବାଦୀ ନିରୀଶ୍ୱରବାଦୀ ଉଦାରତନ୍ତ୍ରୀ ଜୀବନାଦର୍ଶକୁ ଗ୍ରହଣ କରିପାରି ନାହାନ୍ତି ।

ନିଜର ଭାବବାଦୀ ବିଶ୍ୱାସ ଫଳରେ ସେ ସମ୍ମୁଖୀନ ହୋଇଥିବା ଏହି ମାନସିକ ସଙ୍କଟରୁ ମୁକ୍ତି ପାଇବା ପାଇଁ ଓ ନିଜର ବିଭକ୍ତ ଚିନ୍ତା ରାଜିର ଅଭିବ୍ୟକ୍ତି ଲାଗି ଚେଷ୍ଟା କଲାବେଳେ ନାନା ସଙ୍କଟରେ ସମ୍ମୁଖୀନ ହୋଇଛନ୍ତି । ଏହି ସଙ୍କଟରୁ ମୁକ୍ତି ପାଇବା ପାଇଁ ସେ ଶାବ୍ଦିକ ଯୁକ୍ତାଭ୍ୟାସର ଦ୍ୱାରସ୍ଥ ହୋଇଛନ୍ତି । ଧର୍ମ ଓ ନୀତିବୋଧ ସଂପର୍କିତ ନାନା ଜିଜ୍ଞାସାକୁ ପ୍ରକାଶ କରିବା ପାଇଁ ସେ ଶବ୍ଦ ଗୁଡିକର ପ୍ରତିଶବ୍ଦ ଖୋଜିଛନ୍ତି । ଘୂର୍ଣ୍ଣାୟମାନ ସୋଲେ-ମିବ୍ସ ର ସାହାଯ୍ୟ ନେଉଛନ୍ତି । କୌଣସି ବିଷୟକୁ ଘୁରାଇ କହିବା ସେହି ବିଷୟ ସଂପର୍କିତ ସମସ୍ୟାର ସମାଧାନ କରେ ନାହିଁ, ବରଂ ସମସ୍ୟାର ଅବବୋଧ କ୍ଷେତ୍ରରେ ଜଟିଳତା ସୃଷ୍ଟିକରେ । ମାନସିଂହଙ୍କର ବିଭିନ୍ନ ପ୍ରବନ୍ଧ ଏହି ଜଟିଳତା ସୃଷ୍ଟିରେ ସମର୍ଥ । ତେଣୁ ଏ ସଂପର୍କୀୟ ଆଲୋଚନାର ଶେଷକରି କୁହାଯାଇପାରେ ମାନସିଂହ ନିଜକୁ ଯେତେ ହେତୁବାଦୀ କହିଲେ ବି ସାମଗ୍ରିକ ଭାବେ ନିରୀଶ୍ୱର ରୂପେ ନିଜକୁ ପରିଚିତ କଲେ ବି, ସେ କୌଣସି ଟି ହୋଇପାରି ନାହାନ୍ତି । ମଣିଷ ପଶୁର ଏକ ପ୍ରଜାତି ହେଲେ ବି ସ୍ଥାନ କାଳ ଭେଦରେ ମଣିଷ ଭିନ୍ନ ହୋଇଯାଏ । ସମୟର ଅଭିଘାତରେ ସିଂହାଜୀ ଓ ସଭ୍ୟ ମଣିଷ ଭିତରେ ଯେଉଁଭଳି ତୁରନ୍ତ ବ୍ୟବଧାନ ଦୃଷ୍ଟି ଗୋଚର ହୁଏ, ବିଭିନ୍ନ ସ୍ଥାନର ମଣିଷ ଭିତରେ ସେଉଁଭଳି ବୈଭିନ୍ନ୍ୟ ଦୂରତ୍ୱ ଦେଖାଯାଏ । ମାନସିଂହ କିନ୍ତୁ ଏହା ଗ୍ରହଣ କରିବା ପାଇଁ ପରାଙ୍ମୁଖ । ତାଙ୍କ ମତରେ-"ପୃଥିବୀ-ଗ୍ରହର ବ୍ୟାପକ ପୃଷ୍ଠଭୂମିରେ ଦେଶେ ଦେଶେ ନାନା ବର୍ଣ୍ଣ, ନାନା ଭାଷା, ନାନାଧର୍ମର ମନୁଷ୍ୟ ଦେଖାଯାଉ ଥିଲେ ହେଁ, ଏବେ ଗମନାଗମନର ସ୍ୱାଚ୍ଛନ୍ଦ୍ୟ ଏବଂ ମାନବିକ ଇତିହାସ ଓ ସାହିତ୍ୟର ଆଲୋଚନା ଫଳରେ ଦେଖାଯାଉଛି ଯେ ପ୍ରାକୃତିକ ମଣିଷଟି ସବୁଠି ସମାନ । ସେହି ପ୍ରାଣୀର ଆଶା, ଲାଳସା, ଚିନ୍ତା ଓ କୌତୂହଳ ଇତ୍ୟାଦି ସର୍ବତ୍ର ଅଭିନ୍ନ । ଅଭିନ୍ନ ମଧ୍ୟ ସେହିପରି ମନୁଷ୍ୟ ଜୀବନର ଦୁଃଖ ଦୁର୍ଦ୍ଦଶା ଓ ତଆ କଥିତ ରୋଗ ।

ତେଣୁ ଗୀତାର ମନୁଷ୍ୟ, କୋରାଣର ମନୁଷ୍ୟ ବା ବାଇବେଲର ମନୁଷ୍ୟ ବୋଲି ଭିନ୍ନ ଭିନ୍ନ ଶ୍ରେଣୀର ପ୍ରାଣୀ ଆମେ କାହିଁ ପାଇବାନି; ଆମେ ସବୁଠି ପାଇବା ସେହି ଶାଶ୍ୱତ ଓ ସାର୍ବଭୌମ ମନୁଷ୍ୟକୁ ।"(100) ଏହି ଚିନ୍ତା ଓ ମତ ଆଦର୍ଶବାଦୀ ଦାର୍ଶନିକ ଜିଜ୍ଞାସାର ପ୍ରକାଶ । ରୋମାଣ୍ଟିକ ଆଦର୍ଶବାଦୀମାନେ ଅନ୍ୟଯାହା ହୁଅନ୍ତୁ ନା କାହିଁକି କେବେହେଲେ ହେତୁବାଦୀ ହୋଇ ପାରିବେ ନାହିଁ । ବିଭିନ୍ନ ପରିବେଶରେ ସତି ମାନସିଂହଙ୍କ ରୋମାଣ୍ଟିକ ମନ ବିଦ୍ରୋହ କରିଛି, କିନ୍ତୁ ସେ ବିଦ୍ରୋହର ପରିପ୍ରକାଶ ତାଙ୍କୁ ଧର୍ମଠାରୁ ବିଚ୍ଛିନ୍ନ ଓ ପରମଶକ୍ତିପ୍ରତି ଅବିଶ୍ୱାସୀ କରି ପାରିନି । ପରିବର୍ତ୍ତନଶୀଳ ପୃଥିବୀରେ ଶାଶ୍ୱତ ଓ ସାର୍ବଭୌମ ଖୋଜିଯିବା ଧର୍ମର କାର୍ଯ୍ୟ, ଉଦ୍ଧତ ବିଶ୍ୱାସର କାର୍ଯ୍ୟ, ହେତୁବାଦୀର କାର୍ଯ୍ୟ ନୁହେଁ ।

---

**ଷଷ୍ଠ ଅଧ୍ୟାୟ ର ସୂଚନା :**

1- Religion is the sign of the ~~p~~ oppressed creature, the heart of heartless world, just as it is the spirit of a spiritless situation. It is the opinion of the people"(Marx and Engels- On Religion- page-42-(1964) publisher-Schocken Books Newyork

2- A religion is a unified system of beliefs and practices relative to sacred things, that is to say, things set apart and forbidden-beliefs and practics, which unite into one single moral community called a church, all those who adhere to them-page-52

Emile Durkhem: The elementary Forms of the religious life. Translated by J.W. Swain-Free Press Newyork.

3: ମାନସିଂହ, (ଡଃ)ମାୟାଧର–ମୁଁ କାହିଁକି ଲେଖେ' ଡଗର, 14/1(1.7.1950)

4: ମାନସିଂହ, (ଡଃ)ମାୟାଧର– ଗୀତାମହାତ୍ମ୍ୟ(1969), ପୃ–ଭୂମିକା–ଏକ,

5: '' ତତ୍ରୈବ ପୃ–ଦୁଇ,

6: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ)–1973, ପରଧର୍ମ(ପ୍ରବନ୍ଧ) ପୃ–591,

7: ଗୀତା ମହାତ୍ମ୍ୟ, ଭୂମିକା, ପୃ–ଦୁଇ,

8: ତତ୍ରୈବ, ପୃ–ଏକ,

9: ମାନସିଂହ ଗ୍ରନ୍ଥାବଳୀ(ପ୍ରଥମ ଖଣ୍ଡ)–1962, କୁଳଟା ରାଧା(କବିତା) ହେମପୁଷ୍ପ–ପୃ– 156,

10: ମାନସିଂହ ଗ୍ରନ୍ଥାବଳୀ(ପ୍ରଥମ ଖଣ୍ଡ)–1962, ପାପ ଓ ପ୍ରେମ(କବିତା) ଧୂପ' ପୃ–75,
'ହୃଦୟେ ହୃଦୟ ମିଶିବାକୁ ଗଲେ/ଧର୍ମ ରହେନା ପୁଣି ମହୀତଳେ/ X X X X
ପରାଣେ ପରାଣ ମିଶିଲେ କି ନାରାୟଣ ହେ,/ଶୁଣିଛୁ କେ କାହିଁ କରିବାର ପଳାୟନ ହେ,
ସେ କଥା ମୂର୍ଖ ସମାଜ ତ ନାହିଁ ଜାଣିବ ?/ନିର୍ମମ ଖାଲି ଖୋଜି ଅପରାଧ,/
ସୃଷ୍ଟି କରିବମିଛୁ ଅପବାଦ,/ଈଶ୍ୱର ନାମେ ହିଂସାରେ ବାଣ ହାଣିବ,

11: ମାନସିଂହ ଗ୍ରନ୍ଥାବଳୀ(ପ୍ରଥମ ଖଣ୍ଡ)–1962, ଗୋପ ପ୍ରୟାଣ(କବିତା)ମାଟିବାଣୀ–ପୃ.343,

12: ମାନସିଂହ ଗ୍ରନ୍ଥାବଳୀ(ପ୍ରଥମ ଖଣ୍ଡ)–1962, ପଙ୍ଗୁର ଭିକ୍ଷା(କବିତା) ସେ ଦିନର କବିତା– ପୃ–44,

13: ତତ୍ରୈବ, ଶୁଣନା କିଆଁ(କବିତା)–ପୃ.43,

14: ତତ୍ରୈବ ପ୍ରାର୍ଥନା(କବିତା), ହେମଶସ୍ୟ–ପୃ.195,

15: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ)–1973,
ଗୋପାଳକୃଷ୍ଣ ପଦ୍ୟାବଳୀ(ଆଲୋଚନା) କବି ଓ କବିତା–ପୃ.456,

16: ତତ୍ରୈବ, ପୃ–459,

17: ତତ୍ରୈବ, ପ୍ରାଚୀନ ଓଡିଆ କାବ୍ୟ(ଆଲୋଚନା) ପୃ–577,

18: ତତ୍ରୈବ, ମାନବ ଗୋପବନ୍ଧୁ(ପ୍ରବନ୍ଧ) କବି ଓ କବିତା, ପୃ.521,

19: ଉତ୍କଳ ସାହିତ୍ୟ, 32/8, ମାର୍ଗଶୀର–1336, ନଭେମ୍ବର, 1928, ରେ ମାନସିଂହଙ୍କର 'ନିର୍ବିତ ଭଗବାନ'
କବିତା ପ୍ରକାଶ ପାଇଥିଲା, ସେ କବିତାର ଯେଉଁ ଅଂଶ ପରବର୍ତ୍ତୀ ସଂସ୍କରଣରେ ବାଦ ଦିଆ ଯାଇଛି
ଓ ଯେଉଁ ପଦର ପରିବର୍ତ୍ତନ କରାଯାଇଛି ତାର ବିବରଣୀ ପ୍ରଦାନ କରାଗଲା ।
ପତ୍ରିକାରେ ଥିଲା—'ଧରଣୀରେ ଆସି ମନ୍ତ୍ର ଭୁଲିଲି ମୁଁ ଯେ,/ଭଗବାନ ତୁମେ ନିର୍ବିତ କେଉଁ ଦେଶେ ?'
ଗ୍ରନ୍ଥାବଳୀରେ ଅଛି—'ମନ୍ତ୍ର ଭୁଲିଲି ମାନବର ଏ ଧରାରେ/ଭଗବାନ, ତୁମେ ନିର୍ବିତ କେଉଁଠାରେ ?'

॥ ମାନସିଂହଙ୍କ ବିଗ୍ରହଧାରା ॥

ଏହି କବିତାର ତୃତୀୟ ଭାଗ ପରେ ପତ୍ରିକାରେ ନିମ୍ନ ପଦ ଗୁଡିକ ପ୍ରକାଶ ପାଇଥିଲା, ଏ ଅଂଶକୁ ପରବର୍ତ୍ତୀ କାଳରେ ବାଦ ଦିଆ ଯାଇଛି ।

'ପଥେ ଆସୁ ଆସୁ କରିଲି ଦିଓଟି ସାଥୀ/ନେବାକୁ ହୃଦର ଦୁର୍ବହ ଲୁହ ବାଣ୍ଟି
ବକ୍ଷେ ଧରି ସେ ପୋଛିଲେ ନୟନ ପତା,/ଅଶ୍ରୁ ବୁହାଇ କହିଲେ ପ୍ରାଣର କଥା ।
(ମୁଁ ଗୋ) ଚାହଁକରି ହୋଇ ରହିଲି ତାଙ୍କୁ ଘେରି/ଅତୀତ ଭୁଲିଲି ନ ଗୁହିଁଲି ପଥ ଫେରି
ନପଶ୍ୟେର ବା ଭବିଷ୍ୟତ କିବା ଥାଏ,/ବର୍ତ୍ତମାନର ଜଂଜାଳେତ ଦିନ ଯାଏ ।
ଦୁଇ ସାଥୀ ଧରି ରଚିଲି ବିଶ୍ୱ ମୋର,/ଏ କଦା ଆସିଲା ମୋ ଘରେ ବିଶ୍ୱ ଚୋର ।
ଗୁଲିଗଲା ଧରି ଦୁଇରୁ ଗୋଟିଏ ସାଥୀ/ଅନ୍ଧାର ଘେରିଲା ମୋତେ ଦୁର୍ବହ ରାତି ।
ପଥ ତଟେ ବସି ପ୍ରଳୟର ଅପେକ୍ଷିତଲେ,/ଦୁହେଁ ଗୋ ଦୁହିଁଙ୍କୁ ଚିହ୍ନାଇ ଆଖି ଜଳେ,
ଭାବିଲୁ ଉଚ୍ଚେ 'ଶଂକର, ଶଂକର'/ ଚମକ ଆସିଲା ଆଉ ଯେତେ ପଥିକର ।
ରହିଲ କାହିଁ ହେ କୃପାମୟ ଭଗବାନ ?/କାହିଁ କି ରହିଲା ତବ ମଂଗଳ ଦାନ
ସକଳେ ଶୁଣିଲେ, ତମେ ନଶୁଣିଲ କିଆଁ ?/ କିପରି ସେ ଦୟା ପାଇତିଛି ତବ ହିୟା ?
ସାଥିରେ ଛୁଡାଇ ଏ ଜୀବନ ଦୁରୁବହ/କରିଛ, କିଏ ସେ ପୋଛିବ ମୋର ଲୁହ ?
ଉଷ୍ଣତା ଏ ମୋ ଲୋତକର ବୁନ୍ଦୁଟି ?/ ପ୍ରସାଦ ପାଇବା ଅନାଶ୍ରିତରେ ଠକି

ଏହାପରେ ଗ୍ରନ୍ଥାବଳୀରେ ଥିବା ଚତୁର୍ଥ ଅଂଶର ଆରମ୍ଭ । ଷଷ୍ଠ ଅଂଶର ଚଉଦ ଧାଡି ପରେ ପତ୍ରିକାରେ ଥିଲା——

ବିଷ୍ଣୁର ଗଦା କାହିଁ ବା ରହିଲା ଲୁଚି/ଅପମାନ ନିକି ଦେଉଛି ପଚୁକୁ କୁଚି ?
ଯୋଗ ନିଦ୍ରାରେ ଶୋଇଲେ ଦେବତା କୂଳ/ବୁଝିବ କିଏ ସେ ଏ ଭାର ଦାରୁଣ ଜ୍ୱାଳ ।

ମାନସିଂହ ଗ୍ରନ୍ଥାବଳୀ(ପ୍ରଥମ ଖଣ୍ଡ)–।୨62, ନିଦ୍ରିତ ଭଗବାନ(କବିତା) ଜୀବନ ଚିତା– ପୃ·384–387,

20: ମାନସିଂହ ଗ୍ରନ୍ଥାବଳୀ(ପ୍ରଥମ ଖଣ୍ଡ)–।୨62, ଜିଜ୍ଞାସା(କବିତା) ହେମଶସ୍ୟ–ପୃ·।96,

21: ତତ୍ରୈବ ଦେବପୂଜା(କବିତା) ଜୀବନଚିତା–ପୃ·402–403,

22: ତତ୍ରୈବ ବିଶ୍ୱଦେବାଳୟ(କବିତା) ହେମପୁଷ୍ପ–ପୃ·।68,

23: ତତ୍ରୈବ ବିଶ୍ୱରୂପ(କବିତା) ଜୀବନଚିତା–ପୃ·402,

24: ତତ୍ରୈବ ପୂର୍ଣ୍ଣଯୁଗ(କବିତା) ପୃ–3୨8,

25: ତତ୍ରୈବ ସୁଖଦୁଃଖ(କବିତା) ପୃ–3୨୨,

26: ମାନସିଂହ, ମାୟାଧର–ଜୀବନୀ ଓ ପ୍ରବନ୍ଧ(।୨54)–ଗାନ୍ଧୀଜୀ(ପ୍ରବନ୍ଧ) ପୃ–।।3,

27: ମାନସିଂହ, ମାୟାଧର–ଜୀବନପଥ(।୨57)–ଧର୍ମଜୀବନ(ପ୍ରବନ୍ଧ)– ପୃ·7।,

॥ ମାନସିଂହଙ୍କ ବିଗ୍ରଧାରା ॥


28: ମାନସିଂହ, ମାୟାଧର—ଜୀବନପଥ(1957), ନିଜଦାୟିତ୍ୱ(ପ୍ରବନ୍ଧ) ପୃ–36–37,

29: ମାନସିଂହ, ମାୟାଧର—ପଶ୍ଚିମ ପଥିକ(1964), ପୃ.100–101,

30: ମାନସିଂହ, ମାୟାଧର–ଯେଉଁମାନେ ଗାନ୍ଧିଙ୍କୁ ମହାତ୍ମା କଲେ(ପ୍ରବନ୍ଧ)–ଆଲୋକ, 2/1, ଜାନୁୟାରୀ–1973,

31: " " ଆଲୋକ, 2/2, (1973)

32: ମାନସିଂହ ଗ୍ରନ୍ଥାବଳୀ(ପ୍ରଥମ ଖଣ୍ଡ)–1962, ବାପୁ ତର୍ପଣ– ବାପୁଜୀ(କବିତା) ପୃ–259,

33: ତତ୍ରୈବ ପୃ.261,

34: ତତ୍ରୈବ ପୃ.264

35: ତତ୍ରୈବ ପୃ.265,

36: ତତ୍ରୈବ ପୃ.264,

37: ତତ୍ରୈବ ଗାନ୍ଧିଜୀ(କବିତା) ପୃ.267,

38: ମାନସିଂହ, ମାୟାଧର–ଗୀତାମହାତ୍ମ୍ୟ(1969)ମନୁଷ୍ୟ କୃଷ୍ଣ, ପୃ.21–22,

39: ତତ୍ରୈବ ପୃ.23,

40: ମାନସିଂହ, ମାୟାଧର–ପଶ୍ଚିମ ପଥିକ(1964), ଯାତ୍ରାରମ୍ଭ, ପୃ–12,

41: ମାନସିଂହ ଗ୍ରନ୍ଥାବଳୀ(ପ୍ରଥମ ଖଣ୍ଡ)–1962, ଅକ୍ଷତ'ର ଭୂମିକା, ପୃ.288,

42: ତତ୍ରୈବ,

43: ତତ୍ରୈବ,

44: ମାନସିଂହ, ମାୟାଧର, –ଜୀବନପଥ(1957) ନିଜଦାୟିତ୍ୱ(ପ୍ରବନ୍ଧ)ପୃ.84,

45: ମାନସିଂହ ଗ୍ରନ୍ଥାବଳୀ(ପ୍ରଥମଖଣ୍ଡ–1962)–ବୁଦ୍ଧଂ ଶରଣଂ ଗଚ୍ଛାମି(କବିତା) ସିନ୍ଧୁ ଓ ବିନ୍ଦୁ–ପୃ.558,

46: ମାନସିଂହ ଗ୍ରନ୍ଥାବଳୀ(ଦ୍ୱିତୀୟ ଖଣ୍ଡ–1964)–ବୁଦ୍ଧ'ନାଟକର ମୁଖବନ୍ଧ, ପୃ.639,

47: ତତ୍ରୈବ, ପୃ.672,

48: ତତ୍ରୈବ ପୃ.673,

49: ତତ୍ରୈବ ପୃ.674,

50: ମାନସିଂହ ଗ୍ରନ୍ଥାବଳୀ(ଦ୍ୱିତୀୟ ଖଣ୍ଡ–1964)–କମଳାୟନ କାବ୍ୟ, ଉତ୍ତରଖଣ୍ଡ ଦ୍ୱିତୀୟ ସର୍ଗ, ପୃ.314,

51: ମାନସିଂହ ଗ୍ରନ୍ଥାବଳୀ(ଦ୍ୱିତୀୟ ଖଣ୍ଡ)–1964, ବୁଦ୍ଧ'ନାଟକର ମୁଖବନ୍ଧ ପୃ.631,

52: ତତ୍ରୈବ, ପୃ.682,

53: ତତ୍ରୈବ, ପୃ.683–84,

54: ତତ୍ରୈବ, ପୃ.635,

॥ ମାନସିଂହଙ୍କ ବିଗ୍ରହଧାରା ॥

55: ମାନସିଂହ, ମାୟାଧର–ଓଡିଆ ସାହିତ୍ୟର ଇତିହାସ(1976), ଦଶମ ଅଧ୍ୟାୟ, ପୃ–୨୦4,
56: ତତ୍ରୈବ ପୃ.2୦5,
57: ମାନସିଂହ, ମାୟାଧର– ଜୀବନପଥ(1୨57), ଧର୍ମଜୀବନ(ପ୍ରବନ୍ଧ) ପୃ.6୦,
58: ତତ୍ରୈବ, ପୃ–68,
59: ତତ୍ରୈବ, ପୃ.61,
60: ତତ୍ରୈବ, ପୃ–62,
61: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ–1973), ଓଡିଆ ଜାତିର ବୈଶିଷ୍ଟ୍ୟ(ପ୍ରବନ୍ଧ) ପୃ.5୨୦,
62: ମାନସିଂହ, ମାୟାଧର, –ଜୀବନପଥ(1957) ଧର୍ମଜୀବନ(ପ୍ରବନ୍ଧ) ପୃ.61–62,
63: ତତ୍ରୈବ, ପୃ.63,
64: ମାନସିଂହ ଗ୍ରନ୍ଥାବଳୀ(ପ୍ରଥମ ଖଣ୍ଡ–1962) ଆତତାୟୀ(କବିତା) ଜୀବନଚିତା, ପୃ–417,
65: ତତ୍ରୈବ, ଚିକୁଡାର ଗୌରବ(କବିତା), ପୃ.410,
66: ତତ୍ରୈବ କ୍ରୁଶ ବହନ(କବିତା) ପୃ.294,
67: ତତ୍ରୈବ, ଅଭିମାନ(କବିତା) ପୃ.289,
68: ତତ୍ରୈବ, ପାନ୍ଥଗାଥା(କବିତା) ପୃ.290,
69: ତତ୍ରୈବ, ପୃ.298,
70: ତତ୍ରୈବ, ପୃ .302,
71: ମାନସିଂହ, ମାୟାଧର–ଗୀତାମହାତ୍ମ୍ୟ(1969) ଭୂମିକା, ପୃ.ଏକ–ଦୁଇ,
72: ତତ୍ରୈବ, ସମ୍ଭବାମୀ ଯୁଗେଯୁଗେ, ପୃ.68,
73: ମାନସିଂହ, ମାୟାଧର–ଶିକ୍ଷାବିତ୍ର ଗାଥା(1965) ଏକବିଂଶ ଅଧ୍ୟାୟ, ପୃ.350,
74: ମାନସିଂହ, ମାୟାଧର– ମହତବାଣୀ(ସଂପାଦନା)–ମୁଖବନ୍ଧ ପୃ.ଏକ,
75: ତତ୍ରୈବ ପୃ.ତିନି,
76: ମାନସିଂହ, ମାୟାଧର–ଗୀତାମହାତ୍ମ୍ୟ(1969) ପ୍ରଥମ ଅଧ୍ୟାୟ, ପୃ.13,
77: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ–1973), ଜୀବଧର୍ମ(ପ୍ରବନ୍ଧ), ପୃ.644,
78: ମାନସିଂହ ମାୟାଧର–ଶିକ୍ଷାବିତ୍ର ଗାଥା(1965), ଏକବିଂଶ ଅଧ୍ୟାୟ ତୃତୀୟ ଦନ୍ଦ, ପୃ–331,

॥ ମାନସିଂହଙ୍କ ବିଚାରଧାରା ॥


79: ମାନସିଂହ ଗ୍ରନ୍ଥାବଳୀ(ପ୍ରଥମ ଖଣ୍ଡ–1962) ନବପ୍ରଣୟୀ(କବିତା), ସିନ୍ଧୁ ଓ ବିନ୍ଦୁ, ପୃ–560,

80: ତତ୍ରୈବ, ତଟୀୟାନ୍ତି(କବିତା) ପୃ.562,

81: ତତ୍ରୈବ ଭେଟିବି(କବିତା) ପୃ.562,

82: ତତ୍ରୈବ, ଶ୍ରୀକୃଷ୍ଣ(କବିତା) ପୃ.564,

83: ମାନସିଂହ, ମାୟାଧର–ଶିକ୍ଷାବିତର ଗାଥା(1965) ଏକବିଂଶ ଅଧ୍ୟାୟ, ପୃ.349,

84: ମାନସିଂହ, ମାୟାଧର–ଗୀତାମହାତ୍ମ୍ୟ(1969) ସପ୍ତମ ଅଧ୍ୟାୟ, ପୃ.130,

85: ମାନସିଂହ, ମାୟାଧର, –ଶିକ୍ଷାବିତର ଗାଥା, ପ୍ରଥମ ଅଧ୍ୟାୟ, ପୃ.45,

86: ମାନସିଂହ, ମାୟାଧର, –ଗୀତାମହାତ୍ମ୍ୟ, ନବମ ଅଧ୍ୟାୟ ପୃ.200,

87: ମାନସିଂହ ଗ୍ରନ୍ଥାବଳୀ(ଦ୍ୱିତୀୟ ଖଣ୍ଡ–1964) ପୂଜାରିଣୀ(ନାଟିକା)ର ମୁଖବନ୍ଧ(1953) ପୃ.461,

88: ମାନସିଂହ, ମାୟାଧର– ଶିକ୍ଷା ଶିକ୍ଷକ, ଓ ଶିକ୍ଷାୟତନ(1953), ନୀତି ଓ ଧର୍ମଶିକ୍ଷା, ପୃ.67,

89: ମାନସିଂହ, ମାୟାଧର–ଅନ୍ୱେଷଣ)(ଉପନ୍ୟାସ–1957), ପୃ.49,

90: ତତ୍ରୈବ ପୃ.59,

91: ତତ୍ରୈବ, ପୃ.60,

92: ମାନସିଂହ, –ଶିକ୍ଷାବିତର ଗାଥା(1965) ଦ୍ୱିତୀୟ ଅଧ୍ୟାୟ ପୃ.14,

93: ମାନସିଂହ, –ଗୀତାମହାତ୍ମ୍ୟ(1969) ପ୍ରଥମ ଅଧ୍ୟାୟ ପୃ.7,

94: ତତ୍ରୈବ ନବମଅଧ୍ୟାୟ, ପୃ.211,

95: ମାନସିଂହ, –ଯେଉଁମାନେ ଗାନ୍ଧୀଙ୍କୁ ମହାତ୍ମା କଲେ(ପ୍ରବନ୍ଧ) ଆଲୋକ, 2/2, ଜାନୁୟାରୀ–1973, ପୃ.23,

96: ତତ୍ରୈବ,

97: ମାନସିଂହ, ଗୀତାମହାତ୍ମ୍ୟ, ସପ୍ତମ ଅଧ୍ୟାୟ, ପୃ.146,

98: ତତ୍ରୈବ, ଦ୍ୱିତୀୟ ଅଧ୍ୟାୟ ପୃ.14,

99: ତତ୍ରୈବ, ନବମ ଅଧ୍ୟାୟ ପୃ.212,

100 ତତ୍ରୈବ ଷଷ୍ଠ ଅଧ୍ୟାୟ, ପୃ.116,


---

# ମାନସିଂହଙ୍କ ବିଚାରଧାରା

( A THESIS PRODUCED UNDER UTKAL UNIVERSITY
FOR Ph. D. DEGREE, 1988 )


**ଅଧ୍ୟାପକ ଶ୍ରୀଚରଣ ମହାନ୍ତି**

ଓଡ଼ିଆ ବିଭାଗ, ସରକାରୀ ମହାବିଦ୍ୟାଳୟ, ରାଉରକେଲା

REGD. No. 85 ARTS, 1977 – 78



ତତ୍ତ୍ୱାବଧାରକ

**ଡକ୍ଟର ନିତ୍ୟାନନ୍ଦ ଶତପଥୀ**

ପ୍ରଫେସର, ସତ୍ୟବାଦୀ ଚେୟାର

ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର

# ମାନସିଂହଙ୍କ ବକ୍ତୃତଧାରା

# ତୃତୀୟ ଭାଗ

* ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ
* କଳା ଓ ସାହିତ୍ୟ
* ସଂସ୍କୃତି

ସପ୍ତମ ଅଧ୍ୟାୟ

## ।।। ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ ।।।

"ଯେଉଁ ଜାତିର ଶିକ୍ଷକ ଯେପରି ସେ ଦେଶ ସେପରି"—— ମାନସିଂହ,

"ଇଣ୍ଡିଆ ହେଉଛି ଏକମାତ୍ର ଦେଶ, ଯେଉଁଠି ଶିକ୍ଷାର କୌଣସି ନିଜସ୍ୱ ଦର୍ଶନ ନାହିଁ"—ମାନସିଂହ,

ମଣିଷ ତାର ଆଦିମତମ ସ୍ତର ଛାଡ଼ି ଆସିଲା ପରେ ଶିକ୍ଷା ତା' ଜୀବନର ଏକ ଅଂଶ ହୋଇ ପଡ଼ିଛି । ମଣିଷ ଭିତରେ ଥିବା ବିକାଶର ସମ୍ଭାବନା, ଶିକ୍ଷା ଫଳରେ ବାସ୍ତବ ରୂପ ପାଏ । ମଣିଷ ପଶୁ ସ୍ତରକୁ ଅତିକ୍ରମ କରି ଆଜିର ବିକାଶପ୍ରାପ୍ତ ସ୍ତରରେ ଉପନୀତ ହୋଇଛି । ସମୟ ଓ ସମାଜ ସଂଗଠନର ସ୍ୱରୂପ ନେଇ ଶିକ୍ଷାକୁ ବିଭିନ୍ନ ଦୃଷ୍ଟିକୋଣରୁ ଦେଖାଯାଉଛି । ତା'ର ଆଭିମୁଖ୍ୟର ପରିବର୍ତ୍ତନ ଆସିଛି । ସଂସ୍କୃତିକୁ ଯଦି ବୃହତ୍ତର ଅର୍ଥରେ ଗ୍ରହଣ କରାଯାଏ, ତେବେ ଶିକ୍ଷା ତାହାର ଏକ ଅଂଶ ରୂପେ ବିବେଚିତ ହେବା ସ୍ୱାଭାବିକ । ମାନସିଂହ ସଂସ୍କୃତି ସଂପର୍କରେ ଆଲୋଚନା କଲାବେଳେ ଶିକ୍ଷା ସଂପର୍କରେ ନିଜର ମତବ୍ୟକ୍ତ କରିଛନ୍ତି । ଏତଦ୍‌ବ୍ୟତୀତ ଶିକ୍ଷା ସଂପର୍କରେ ତାଙ୍କର ଅନେକ ମୂଲ୍ୟବାନ ପ୍ରବନ୍ଧ ରହିଛି । ତାଙ୍କର ଆତ୍ମଜୀବନୀର ଶୀର୍ଷକ ହେଉଛି, 'ଶିକ୍ଷାବିତ୍‌ର ଗାଥା' । ତେଣୁ ଚିନ୍ତାନାୟକ ମାନସିଂହଙ୍କର ପରିପୂର୍ଣ୍ଣ ସ୍ୱରୂପ ଜାଣିବାକୁ ହେଲେ ଶିକ୍ଷାବିତ୍ ମାନସିଂହଙ୍କୁ ଜାଣିବାକୁ ହେବ । ନିଜର ପରମ୍ପରା ଚଳଣି ଅଭିବୃଦ୍ଧି ଭିତରେ ଶିକ୍ଷାର ଯେଉଁ ସ୍ୱରୂପ ସେ ପ୍ରତ୍ୟକ୍ଷ କରିଛନ୍ତି, ସେ ସ୍ୱରୂପ ସଂପର୍କରେ ଆଲୋକପାତ କରିବାକୁ ପଡ଼ିବ । ଶିକ୍ଷା କ'ଣ ? ଏ ସଂପର୍କରେ ହୁଏତ ମତ ବିରୋଧ ନଥାଇ ପାରେ, କିନ୍ତୁ ତାର ଆଭିମୁଖ୍ୟ ନେଇ ବିଭିନ୍ନ ଚିନ୍ତାନାୟକ ଶିକ୍ଷାବିତ୍‌ମାନଙ୍କ ମଧ୍ୟରେ ମତଭେଦ ରହିଛି । ଶିକ୍ଷା—ବ୍ୟକ୍ତି ପାଇଁ ବା ସମାଜ ପାଇଁ, ଶିକ୍ଷା ବ୍ୟକ୍ତିକୁ ଉପାର୍ଜନ କ୍ଷମ କରିବା ଉଚିତ ବା ଅଧିକ ସଂସ୍କୃତି ସଂପନ୍ନ କରିବା ଉଚିତ, ଏ ସଂପର୍କରେ ମଧ୍ୟ ମତ ବିରୋଧ ରହିଛି । ବର୍ଟାଣ୍ଡ ରସେଲଙ୍କ ଭାଷାରେ କହିଲେ:—" ଶିକ୍ଷା ନେଇ ମୂଳ ତର୍କର ବିଷୟ ହେଲା,—ଏହା ଉତ୍ତମ ବ୍ୟକ୍ତି ନା ଉତ୍ତମ ନାଗରିକ ସୃଷ୍ଟି କରିବ "(।) ଦ୍ୱିତୀୟ ପ୍ରଶ୍ନ ହେଲା—ଶିକ୍ଷା ପ୍ରତ୍ୟେକ ମଣିଷ ପାଇଁ ସମାନ ହେବା ଉଚିତ ନା ଆବଶ୍ୟକ ଅନୁଯାୟୀ ଭିନ୍ନ ହେବା ଉଚିତ । ତୃତୀୟ ପ୍ରଶ୍ନ ହେଉଛି—ଶିକ୍ଷାରେ ଧର୍ମର କୌଣସି ଭୂମିକା ରହିବା

ଉଚିତ ବା ନୁହେଁ, ଏହି ସମସ୍ତ ପ୍ରଶ୍ନ ଜୀବନର ବିଭିନ୍ନ ପର୍ଯ୍ୟାୟରେ ମାନସିଂହଙ୍କୁ ଆଂଦୋଳିତ କରିଛି ଓ ସେ ଏହାର ଉତ୍ତର ଖୋଜିବାକୁ ଚେଷ୍ଟା କରିଛନ୍ତି । ଏହା ସହିତ ଶିକ୍ଷାର ଇତିହାସ ମଧ୍ୟ ରହିଛି, ସେ ଇତିହାସକୁ ଦେଖିବାର ପୃଷ୍ଠଭୂମି ମଧ୍ୟ ବିସ୍ତୃତ-ଯୋଗ୍ୟ ।

ଶିକ୍ଷକ ମାନସିଂହଙ୍କୁ ଚିହ୍ନିବା ପୂର୍ବରୁ ଓ ତାଙ୍କର ବିସ୍ତୃତ ଆଲୋଚନା ସହ ପରିଚିତ ହେବା ପୂର୍ବରୁ ଯେଉଁ ପରମ୍ପରାର ପୃଷ୍ଠଭୂମିରେ ସେ ଚିନ୍ତା ହୋଇଥିଲେ ସେ ସମ୍ପର୍କରେ ଆଲୋକପାତ କରିବାକୁ ହେବ । ମଣିଷର କହି ଯାଉଥିବା ଅତୀତ ଓ ଆବିଷ୍କାର କରୁଥିବା ଅତୀତ ମଧ୍ୟରେ ବହୁ ସମୟରେ ପାର୍ଥକ୍ୟ ରହିଛି । ଭାରତର ସଂସ୍କୃତି ସମ୍ପର୍କରେ ଗତ ଦୁଇଶହ ବର୍ଷଧରି ଯେଉଁ ଆଲୋଚନା ଚାଲିଛି ତାହା ବହୁଳାଂଶରେ ଆବିଷ୍କାରର ଫଳ, ଉପକଥାର ନୁହେଁ । ଏ ଦୁଇଶହ ବର୍ଷର ଆଲୋଚନା ଓ ଗବେଷଣା ଫଳରେ ଜଣା ପଡିଛି ଯେ, ଅତୀତ ଭାରତ ର ଶିକ୍ଷା ମୁଖ୍ୟତଃ କର୍ମାଭିମୁଖୀ ଓ ଶ୍ରେଣୀ ଭିତ୍ତିକ ଥିଲା । ଭାରତୀୟ ଜନ ସମାଜ ଯେମିତି ବର୍ଣ୍ଣ ଓ ଜାତିରେ ବିଭକ୍ତ ହୋଇଥିଲେ, ଶିକ୍ଷା ମଧ୍ୟ ବିଭିନ୍ନ ଜାତିପାଇଁ ସ୍ୱତନ୍ତ୍ର ଥିଲା ଓ ବିଭିନ୍ନ ଜାତିପାଇଁ ଭିନ୍ନ ଭିନ୍ନ ପ୍ରକାର ଶିକ୍ଷକ ମଧ୍ୟ ଥିଲେ । ଶୂଦ୍ର, ବୈଶ୍ୟ ତଥାଅନ୍ୟାନ୍ୟ ଅବହେଳିତ ଜାତି କି ପ୍ରକାର ଶିକ୍ଷା ପାଉଥିଲେ, ସେ ସମ୍ପର୍କରେ କୌଣସି ପ୍ରମାଣ ବର୍ତ୍ତମାନ ସହଜ ଲଭ୍ୟ ନୁହେଁ । ବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କର ଶିକ୍ଷା ବ୍ୟବସ୍ଥା ସମ୍ପର୍କରେ କେତେକ ନିଦର୍ଶନ କାହାଣୀ ଆକାରରେ ପୁରାଣରେ ଲିପିବଦ୍ଧ । ପୁରାଣ ଓ ଉପନିଷଦରେ କଥିତ ସମସ୍ତ ଶିକ୍ଷକ ଜାତିରେ ବ୍ରାହ୍ମଣ, ତେଣୁ ସେମାନଙ୍କ ମର୍ଯ୍ୟାଦାକୁ ଉଚ୍ଚରଖିବା ପାଇଁ ଶିକ୍ଷକକୁ ସଂପୂର୍ଣ୍ଣ ଭାବରେ ସବୁଠାରୁ ସମ୍ମାନପ୍ରଦ ଆସନ ପ୍ରଦାନ କରାଯାଇଛି । ମନୁ ସଂହିତାରେ ଛାତ୍ରର କର୍ତ୍ତବ୍ୟ ନେଇ ରହିଥିବା ଉଲ୍ଲେଖ ଏଠାରେ ଉପସ୍ଥାପନ କରାଯାଇ ପାରେ ।" ଆଚାର୍ଯ୍ୟ କହନ୍ତୁ ବା ନ କହିଥାନ୍ତୁ, ବିଦ୍ୟାର୍ଥୀ ବ୍ରହ୍ମଚାରୀ, ପ୍ରତ୍ୟହ ବିଦ୍ୟାଧ୍ୟୟନ ଓ ଗୁରୁଙ୍କ ହିତାନୁଷ୍ଠାନ ବିଷୟରେ ଯତ୍ନବାନ ରହିବେ । ଶରୀର, ବାକ୍ୟ, ବୁଦ୍ଧି, ଇନ୍ଦ୍ରିୟ ଓ ମନକୁ ସଂଯତ କରି ବିଦ୍ୟାର୍ଥୀ ବ୍ରହ୍ମଚାରୀ ପ୍ରତ୍ୟହ କୃତାଞ୍ଜଳିପୁଟରେ ଶ୍ରୀ ଗୁରୁଙ୍କ ସମ୍ମୁଖରେ ଦଣ୍ଡାୟମାନ ରହିବେ । ଗୁରୁ 'ବସ' ବୋଲି କହିଲେ ଯାଇ ଗୁରୁଙ୍କ ଆଗରେ ବସିବେ । ଗୁରୁ ନିକଟରେ ଥିବାଯାଏ, ଛାତ୍ରର ଖାଦ୍ୟ ଓ ବସନ, ଗୁରୁଙ୍କର ଖାଦ୍ୟ ଓ ବସନ ଠାରୁ ଯେପରି ନିକୃଷ୍ଟ ରହିଥାଏ । ଶିଷ୍ୟ, ଗୁରୁ ଶୋଇଗଲାପରେ ଯାଇ ଶୋଇବେ । ଶୋଇ, ବସି, ଖାଉ ଖାଉ, କିମ୍ବା ଦୂରରେ ଠିଆହୋଇ, ଅଥବା ଅନ୍ୟଆଡେ ମୁହଁକରି, ଶିଷ୍ୟ ଗୁରୁଙ୍କ ଆଦେଶ ଗ୍ରହଣ ବା ତାଙ୍କ ସହିତ କଥୋପକଥନ କରିବେ ନାହିଁ । ଗୁରୁ ଆସନରେ ବସି ଆଦେଶ ଦେଲେ, ଶିଷ୍ୟ ନିଜ ଆସନରୁ ଉଠି, ଗୁରୁ ଠିଆହୋଇ ଆଦେଶ ଦେଲେ, ଶିଷ୍ୟ ତାଙ୍କ ଆଡକୁ ଆସି, ଗୁରୁ ଚାଲି ଚାଲି ଆଦେଶ ଦେଲେ, ଶିଷ୍ୟ ତାଙ୍କ ପଛେ ପଛେ ଯାଇ ଏବଂ ଗୁରୁ ଧାଇଁ ଧାଇଁ ଆଦେଶ ଦେଲେ ଶିଷ୍ୟ ତାଙ୍କ ପଛେ ପଛେ ଧାଇଁ ଗୁରୁଙ୍କ ଆଦେଶ ଗ୍ରହଣ କରିବେ ବା ତାଙ୍କ ସହିତ ସମ୍ଭାଷଣ କରିବେ । ଗୁରୁ ଅନ୍ୟ ଆଡକୁ ମୁହଁ କରିଥିଲେ ଶିଷ୍ୟ ତାଙ୍କର ସମ୍ମୁଖୀନ ହୋଇ ଗୁରୁ ଦୂରରେ ଥିଲେ ତାଙ୍କ ନିକଟକୁ ଯାଇ ଏବଂ ଗୁରୁ ଶୋଇଥିଲେ ବା ନିକଟରେ ଥିଲେ, ଶିଷ୍ୟ ଅବନତ ମସ୍ତକ ହୋଇ ତାଙ୍କ ଆଜ୍ଞା ଗ୍ରହଣ ବା ତାଙ୍କ ସହିତ ସମ୍ଭାଷଣ କରିବେ । ଗୁରୁଙ୍କ ନିକଟରେ ଥିଲେ ଶିଷ୍ୟଙ୍କ

ଆସନ ଓ ଶଯ୍ୟା ଗୁରୁଙ୍କ ଆସନ ଓ ଶଯ୍ୟାଠାରୁ ନୀଚତର ହେବା ଉଚିତ । ଗୁରୁ ଦେଖିପାରିବା ସ୍ଥାନରେ, ଶିଷ୍ୟ ସ୍ୱଚ୍ଛା ଭାବରେ ହସ୍ତପଦ ପ୍ରସାରଣ ପୂର୍ବକ ବସା ଉଠା କରିବେ ନାହିଁ । ଗୁରୁଙ୍କ ପଛରେ ଶିଷ୍ୟ ଗୁରୁଙ୍କ ନାମ ଅସମ୍ମାନିତ ଭାବରେ ଉଚ୍ଚାରଣ କରିବେ ନାହିଁ ବା ଉପହାସ୍ୟ ରୀତିରେ ଗୁରୁଙ୍କ ଗତି ଓ କର୍ମ ବା ବଚନର ଅନୁକରଣ କରିବେ ନାହିଁ । ଯେଉଁଠି ଗୁରୁଙ୍କର ମିଥ୍ୟା ବା ପ୍ରକୃତ ଦୋଷ ଚର୍ଚ୍ଚା ହେଉଥିବ, ସେଠି ଶିଷ୍ୟ ଉପସ୍ଥିତି ଥିଲେ, ସେ କାନରେ ହାତ ଦେବ ବା ସେ ସ୍ଥାନ ବର୍ଜନ କରିବ । ଶିଷ୍ୟ ଶିବିକାଦି ଯାନାସନାସ୍ଥ ଥିଲେ ସେଥିରୁ ଅବତରଣ କରି ଗୁରୁଙ୍କୁ ଅଭିବାଦନ କରିବେ । କିନ୍ତୁ ଶିଷ୍ୟ, ଗୋଯାନ, ଅଶ୍ୱଯାନ ବା ଉଷ୍ଟ୍ରଯାନରେ, ପ୍ରାସାଦୋପରି, ତୃଣ—ଶିଳା ବା କାଷ୍ଠ ନିର୍ମିତ ଆସନରେ ଗୁରୁଙ୍କ ସହିତ ଏକତ୍ର ଉପବେଶନ କରି ପାରନ୍ତି ।"(2)

ଏ ସବୁ ଅବତାରଣା କରିବାର ମୂଳ ଲକ୍ଷ୍ୟ ହେଲା ଶିକ୍ଷା ଓ ଶିକ୍ଷକ ସମାଜର ଏକ ନିର୍ଦ୍ଦିଷ୍ଟ ଗଣ୍ଡି ଭିତରେ ଆବଦ୍ଧ ହୋଇ ରହିଥିଲେ । ଶିକ୍ଷକର ଗୌରବ ଓ ମହତ୍ୱ ରକ୍ଷିତ ହେଉଥିଲା, ସେମାନେ ଶିକ୍ଷକ ବୋଲି ନୁହେଁ, ଅଧିକାଂଶ ଶିକ୍ଷକ ଋଷି ହୋଇଥିବାରୁ । ରାମଚନ୍ଦ୍ରଙ୍କର ବିଶ୍ୱାମିତ୍ରଙ୍କ ପ୍ରତି, ଏକଲବ୍ୟର ଦ୍ରୋଣାଚାର୍ଯ୍ୟଙ୍କ ପ୍ରତି, ଉପମନ୍ୟୁଙ୍କର ମହର୍ଷି ଆୟୋଧ ଧୌମ୍ୟଙ୍କ ପ୍ରତି, ଆରୁଣି ବା ଉଦ୍ଦାଳକ ଗୁରୁ ଆୟୋଧ ଧୌମ୍ୟଙ୍କ ପ୍ରତି, ଉତଙ୍କଙ୍କର ମହର୍ଷି ବେଦଙ୍କ ପ୍ରତି, କର୍ଣ୍ଣଙ୍କର ପର୍ଶୁରାମଙ୍କ ପ୍ରତି ଆନୁଗତ୍ୟ ଏହି ସଂପର୍କର ପ୍ରତୀକ । ଉଚ୍ଚବର୍ଣ୍ଣାଶ୍ରମର ବାହାରେ ରହିଥିବା ଲୋକମାନେ ଶିକ୍ଷାରୁ କିଭଳି ବଞ୍ଚିତ ହେଉଥିଲେ କର୍ଣ୍ଣ, ଜାବାଳ, ସତ୍ୟକାମ ଓ ଏକଲବ୍ୟ ତାର ଦୃଷ୍ଟାନ୍ତ । ତେଣୁ ବ୍ୟକ୍ତିତ୍ୱ ଗଠନକାରୀ ଶିକ୍ଷା ଆନୁଷ୍ଠାନିକ ଭାବରେ ନୁହେଁ, ସାମାଜିକ ଆଚରଣ ଓ ସାଂସ୍କୃତିକ ବିସ୍ତାର ଭିତ୍ତିରେ ହିଁ ବ୍ୟକ୍ତି ମନରେ ପ୍ରବିଷ୍ଟ ହେଉଥିଲା । ପରବର୍ତ୍ତୀ କାଳରେ ସାମନ୍ତ ଓ ରାଜାମାନେ ଅଧିକ ବଳଶାଳୀ ହୋଇ ଉଠିବା ଫଳରେ ବ୍ରାହ୍ମଣ ଶିକ୍ଷକମାନଙ୍କର ଏହି ମର୍ଯ୍ୟାଦା କ୍ରମଶଃ ନିମ୍ନତର ହେବାକୁ ଲାଗିଲା । ବେଦ ଉପନିଷଦ, ସଂହିତା ଯୁଗପରେ ଆଚାର୍ଯ୍ୟଙ୍କୁ ଗୌରବ ଦେଉଥିବା ପରମ୍ପରା ଇତିହାସ ଭିତରୁ କ୍ୱଚିତ ମିଳେ । ମୋଗଲମାନଙ୍କର ସମୟରେ ଶିକ୍ଷକମାନଙ୍କର ସ୍ଥାନ ଖୁବ୍ ନିମ୍ନରେ ନିର୍ଣ୍ଣିତ ହେଉଥିଲା । ଶିକ୍ଷା ଯେ ଭଳି ସମାଜର ବିକାଶ ନୁହେଁ, ତାର ସ୍ଥିତିଶୀଳତା ପାଇଁ କାର୍ଯ୍ୟ କରୁଥିଲା, ଶିକ୍ଷକ ମଧ୍ୟ କ୍ଷମତାର ରାଜ ସିଂହାସନ ତଳେ ଭିକ୍ଷାପାତ୍ର ନେଇ ଠିଆ ହେଉଥିଲା । ଟୋଲ ଓ ଚତୁଷ୍ପାଠୀ ଇତ୍ୟାଦି ରାଜା ଜମିଦାର ଓ ବିତ୍ତ ସଂପନ୍ନ ବ୍ୟକ୍ତିଙ୍କର ଦାନ ଓ ଦକ୍ଷିଣା ଫଳରେ ଗଢି ଉଠୁଥିଲା କିନ୍ତୁ ଦାନ ନେଉଥିଲା ଲୋକର ଆତ୍ମମର୍ଯ୍ୟାଦା ନଥିଲା ଭଳି, ଶିକ୍ଷକର ମଧ୍ୟ କୌଣସି ମର୍ଯ୍ୟାଦା ନଥିଲା ।

ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଶିକ୍ଷାର ଜୀବନ ବିକାଶ ପାଇଁ ଓ ମଣିଷର ସାମାଜିକ ଗତିଶୀଳତାରେ ବିଶେଷ ଭୂମିକା ନଥିବାରୁ ଶିକ୍ଷା ଓ ଶିକ୍ଷକ ଅବହେଳିତ ହେଉଥିଲେ । ଏ ଭଳିକି ଆକବରଙ୍କ ପରି ବିଦ୍ୟୋତ୍ସାହୀ ସମ୍ରାଟମାନଙ୍କ ଦରବାରରେ ଶିକ୍ଷକମାନେ ନିପୀଡିତ ଓ ଦୟାର ପାତ୍ର ହୋଇ ରହିଥିଲେ ।'ଆବୁଲ—ଫଜଲ' ତାଙ୍କର ଆଇନ୍—ଇ—ଆକବରୀ ରେ ଅବଦୁଲ କାଦୀର, ମୌଲାନା ଆଲୌଦ୍ଦିନ ଓ ମିର୍ ନୁରୁଲ୍ଲାଙ୍କ ପ୍ରସଙ୍ଗ ଅବତାରଣା କରିଛନ୍ତି । ଆକବରଙ୍କ ବ୍ୟକ୍ତିଗତ ଗୃହରେ ପ୍ରାର୍ଥନା ନ କରିବାରୁ ଅବଦୁର କାଦୀରଙ୍କୁ ପ୍ରଦତ୍ତ ଜାଗିର୍

ବାଜ୍ୟାପ୍ତି କରାଯାଇଛି । ଦରବାରର ପଚୁଧାଡିରେ ବସିବାର ଆଦେଶକୁ ଅମାନ୍ୟ କରିବାରୁ ଆକବର ନିଜ ଶିକ୍ଷକ ମୌଲନା ଆଲୌଦ୍ଦିନ୍‌ଙ୍କୁ ବହିଷ୍କାର କରିଛନ୍ତି ଓ ଆଦେଶ ଅମାନ୍ୟ ପାଇଁ ମିର୍ ନୁରାଲ୍ଲାଙ୍କର ଶିରଚ୍ଛେଦ କରାଯାଇଛି । ଏ ଭଳିକି ଇଂରେଜମାନେ ଏ ଦେଶକୁ ଆସି ଉଦାରତନ୍ତ୍ରୀ ଶିକ୍ଷାର ପ୍ରବର୍ତ୍ତନ କଲାପରେ, ଶିକ୍ଷକର କର୍ତ୍ତବ୍ୟ ହୋଇଛି ଶାସକ ଓ ସମାଜର ବଡପଣ୍ଡାମାନଙ୍କ ନିର୍ଦ୍ଦେଶମତେ ଛାତ୍ରମାନଙ୍କୁ ଅଧ୍ୟାପନା କରିବା । ଏହି ନିର୍ଦ୍ଦେଶ ଅମାନ୍ୟ କରି–ବାରୁ ଡେରେଜିଓଙ୍କୁ ହିନ୍ଦୁ କଲେଜର ଶିକ୍ଷକତା ପଦରୁ ବହିଷ୍କାର କରାଯାଇଛି । ଭାରତୀୟ ସମାଜରେ ଶିକ୍ଷା ବ୍ୟକ୍ତି ନୁହେଁ, ସମାଜର ବିଶେଷତଃ ସମାଜର କ୍ଷମତାଶୀଳ ବ୍ୟକ୍ତିର ହାତ ବାରୀସ ହୋଇ କାର୍ଯ୍ୟ କରିଆସିଛି । ଛାତ୍ର ଭିତରେ ଗଭୀର ଅନ୍ୱେଷା ଯୁକ୍ତିବୋଧ ଓ ବ୍ୟକ୍ତିତ୍ୱବୋଧର ଜାଗରଣ ନୁହେଁ, ଶୁଷ୍କ ପାଣ୍ଡିତ୍ୟ, ସାମାଜିକ ବିକାଶବୋଧର ପ୍ରତିଷ୍ଠା ପାଇଁ ଶିକ୍ଷା ସବୁବେଳେ କାମ କରିଆସିଛି ।

ଇଉରୋପରେ ରେନେସାଁ ପରେ ଶିକ୍ଷା ଚର୍ଚ୍ଚ ଓ ରାଷ୍ଟ୍ରର ଅଜଗରୀ ବାହୁ ବନ୍ଧନରୁ ମୁକ୍ତିଲାଭ କରି ବ୍ୟକ୍ତିର ପ୍ରାତ୍ୟିସ୍ୱିକତା ଓ ହେତୁବାଦୀ ଚେତନାକୁ ଜାଗ୍ରତ କରିବାକୁ ଚେଷ୍ଟା କରିଛି । ପୁଞ୍ଜିବାଦୀ ଅର୍ଥ–ନୀତିର ଅଭ୍ୟାଗମ ସହ ଶିକ୍ଷା ବ୍ୟକ୍ତିକୁ ଏକ ସମାଜବଦ୍ଧ ଜୀବ ଭାବରେ କେବଳ ନୁହେଁ, ତାର ମାନସିକ ଓ ଦୈହିକ ସମସ୍ତ ପ୍ରକାର ଉନ୍ନତିର କ୍ଷେତ୍ରପାଇଁ ଭିତ୍ତିସ୍ଥାପକ ହୋଇପଡିଛି । ଏହି ଶିକ୍ଷା ଫଳରେ ଜ୍ଞାନବିଜ୍ଞାନର ବିକାଶ କ୍ଷେତ୍ରରେ ଆସିଛି ଅଭୂତପୂର୍ବ ବିସ୍ଫୋରଣ । ମଣିଷର ସାମାଜିକ ଜୀବନରେ ଆସିଛି ଅଭାବିତ ଗତିଶୀଳତା ଓ ରାଜନୀତି କ୍ଷେତ୍ରରେ, ରାଜତନ୍ତ୍ର ତଥା ସାମନ୍ତତନ୍ତ୍ରକୁ ପୋପାଡି ଦେଇ ଫୁଙ୍କିଛି ଗଣତନ୍ତ୍ରର ଶୁଭ ଶଙ୍ଖ । ଜାତି, ଧର୍ମ, ବା ଧନ ନୁହେଁ, ନିଜର ମହତ୍ତ୍ୱ, ନିଜ ସମ୍ପର୍କରେ ସଚେତନତା ତଥା କର୍ମକୁଶଳତା ବ୍ୟକ୍ତିକୁ ରାଷ୍ଟ୍ରର ସର୍ବୋଚ୍ଚ ପଦବୀରେ ଅଧିଷ୍ଠିତ କରାଇ–ପାରେ, ଏହା ପ୍ରମାଣ କଲା ଉଦାରତନ୍ତ୍ରୀ ଶିକ୍ଷା । ଉଦାରତନ୍ତ୍ରୀ ଶିକ୍ଷାରେ ନିଜେ ଶିକ୍ଷିତ ଇଂରେଜମାନେ ବହୁଦିନ ପର୍ଯ୍ୟନ୍ତ ଔପନିବେଶିକ ସ୍ୱାର୍ଥ ଦୃଷ୍ଟିରୁ ଭାରତରେ ଏହି ଶିକ୍ଷାର ପ୍ରଚଳନର ବିରୋଧ କରିଥିଲେ । ବେଣ୍ଟିକ୍, ମ୍ୟାକ୍‌ଲେ ଭଳି ଉଦାରତନ୍ତ୍ରୀ ଶାସକଙ୍କ ଉଦ୍ୟମରେ ଏହି ପ୍ରକାର ଶିକ୍ଷା ଭାରତ ମାଟିରେ ପ୍ରଚଳିତ ଓ ପ୍ରୋତ୍ଥିତ ହୋଇଥିଲା । ମ୍ୟାକ୍‌ଲେଙ୍କର ନିର୍ଦ୍ଦିଷ୍ଟ ଶିକ୍ଷାନୀତି ଔପନିବେଶିକ ସ୍ୱାର୍ଥର ଗ୍ରହରେ ଓ ସୁବିଧାବାଦୀ ଶ୍ରେଣୀର ତାଗିଦ୍‌ରେ ଭାରତରେ କିମ୍ଭୂତକିମାକାର ରୂପନେଇ ପ୍ରଚଳିତ ଓ ପ୍ରତିଷ୍ଠିତ ହୋଇଥିଲା—ଯାହାଫଳରେ ଶିକ୍ଷା ନୁହେଁ, ଅପଶିକ୍ଷାର ପ୍ରଚଳନ ପାଇଁ ପରାଧୀନ ଭାରତରେ ଭିତ୍ତି ପ୍ରସ୍ତୁତ ହୋଇଥିଲା । ଭାରତ ସ୍ୱାଧୀନ ହେଲାପରେ, ଅପଶିକ୍ଷାର ସେହି ଭିତ୍ତି ଉପରେ ସ୍ୱାଧୀନ ଭାରତର କଳା ସରକାରଙ୍କ ଶିକ୍ଷା ବ୍ୟବସ୍ଥାଟି ଗଢି ଉଠିଛି । ମାନସିଂହଙ୍କ ଶିକ୍ଷକ ଓ ଶିକ୍ଷା ପ୍ରଶାସକ ଜୀବନ ପରାଧୀନ ଓ ସ୍ୱାଧୀନ ଭାରତ ମଧ୍ୟରେ ବିସ୍ତୃତ । ସେ ନିଜେ ପ୍ରାଚୀନ ଭାରତର ଅନେକ ଗୁଡିଏ ମୂଲ୍ୟବୋଧକୁ ସମ୍ମାନ ଦେଉଥିଲେ ବି, ରାମମୋହନ, ବେଣ୍ଟିକ୍, ମ୍ୟାକ୍‌ଲେଙ୍କର ଶିକ୍ଷାନୀତିର ପ୍ରଶଂସକ । ଗାନ୍ଧୀଙ୍କ ପ୍ରତି ଶ୍ରଦ୍ଧାଭାବ ତାଙ୍କୁ ଇଂରେଜ ରାଜଶକ୍ତିର ବିରୋଧ କରି ନଥିଲା, ଏ ଭଳିକି ଇଂରେଜମାନେ ଏ ଦେଶରୁ ବିଦାୟ ନେଲାପରେ ମାନସିଂହଙ୍କର ସେ ଜାତିପ୍ରତି ଶ୍ରଦ୍ଧାଭାବ ଖୁବ୍ ଗୋଟାଏ ଉଣା ପଡି ନଥିଲା । ରବୀନ୍ଦ୍ରନାଥ ଶେଷ ଜୀବନରେ ଇଂରେଜମାନଙ୍କ ପ୍ରଦର୍ଶିତ ପଥ ଭାରତରେ ଏକ ସଭ୍ୟତା ସଂକଟ ସୃଷ୍ଟି କରିବାକୁ ଯାଉଛି ବୋଲି ଭବିଷ୍ୟତ ବାଣୀ କହିଥିଲେ । ମାନସିଂହ ସେହି

॥ ମାନସିଂହଙ୍କ ବିଚାରଧାରା ॥

ସଂକଟର ଚେହେରାକୁ ମନରେ ଆଣିପାରି ନାହାନ୍ତି । ଖ୍ରୀ: 1823 ମସିହାରେ କଲିକତାରେ ସଂସ୍କୃତ କଲେଜର ପ୍ରତି-
ବାଦ କରି ରାଜା ରାମମୋହନ ରାୟ ଭାରତର ତତ୍କାଳୀନ ଗଭର୍ଣ୍ଣର ଜେନେରାଲ ଲର୍ଡ ଆମହର୍ଷ୍ଟଙ୍କୁ ଏକ ଦୀର୍ଘ
ପତ୍ର ଲେଖିଥିଲେ । ଏହି ଦୀର୍ଘ ପତ୍ରରେ ସେ ସମକାଳୀନ ଭାରତରେ ସଂସ୍କୃତ ବା ଆରବୀ ଶିକ୍ଷା ନୁହେଁ, ଇଂରାଜୀ
ତଥା ଉଦାରତନ୍ତ୍ରୀ ଶିକ୍ଷାର ପ୍ରଚଳନ ହିଁ ଚରମ ଆବଶ୍ୟକ ବୋଲି କହିଥିଲେ । ଦେହମନର ଉନ୍ନତି ପରେ ଆତ୍ମାର
ଉନ୍ନତି ହିଁ ସମ୍ଭବ ଏବଂ ଏ ଦେହମନର ଉନ୍ନତି ପାଇଁ ଭାରତ ପକ୍ଷେ ଇଂରାଜୀ ଶିକ୍ଷା ଆବଶ୍ୟକ । ଭାରତରେ ସର୍ବ
ନିମ୍ନ ଶ୍ରେଣୀ ଭିତରେ ଏ ଆଧୁନିକ ଶିକ୍ଷା ପାଇଁ ଆଗ୍ରହ ରହିଛି କିନ୍ତୁ ଆର୍ଥିକ ଅସ୍ୱଚ୍ଛଳତା ଓ ସାମାଜିକ ଅନଗ୍ରସରତା
ହେତୁ ସେମାନେ ଏହି ଶିକ୍ଷା ଲାଭ କରିବାରୁ ବଞ୍ଚିତ । ତେଣୁ ସଂସ୍କୃତ କଲେଜର ପ୍ରତିଷ୍ଠା ନୁହେଁ, ବିଦ୍ୟାଳୟର ପ୍ରତିଷ୍ଠା
ହିଁ ଦେଶବାସୀଙ୍କ ପାଇଁ ଆବଶ୍ୟକ । ସେ ଲେଖିଛନ୍ତି:—" ଆମ୍ଭେମାନେ ଆଶା କରିଥିଲୁ ଯେ ସରକାରଙ୍କ ପ୍ରଦତ୍ତ
ଅର୍ଥ ଗୁଣବାନ୍ ଇଉରୋପୀୟ ଭଦ୍ରବ୍ୟକ୍ତିଙ୍କର ନିଯୁକ୍ତି ପାଇଁ ନିୟୋଜିତ ହେବ ଓ ସେହି ଗୁଣବାନ ବ୍ୟକ୍ତିମାନେ ଭାରତୀୟ
ମାନଙ୍କୁ ଗଣିତ, ପ୍ରାକୃତିକ ଦର୍ଶନ(ପଦାର୍ଥ ବିଜ୍ଞାନ), ରସାୟନ ବିଜ୍ଞାନ, ଶରୀର ବିଦ୍ୟା ଓ ଅନ୍ୟାନ୍ୟ ନବ ଆବିଷ୍କୃତ ଜ୍ଞାନ
ଭଣ୍ଡାର ସଂପର୍କରେ ଭାରତୀୟମାନଙ୍କୁ ଅବହିତ କରି ସେମାନଙ୍କର ଜ୍ଞାନଚକ୍ଷୁ ଖୋଲିଦେବେ । ତେବେଯାଇ ହେଲେ ଯାଇଁ
ଭାରତୀୟମାନେ ଆଧୁନିକ ବିଜ୍ଞାନର କର୍ଷଣ ଫଳରେ ସେମାନଙ୍କର ବର୍ତ୍ତମାନ ଅବସ୍ଥାର ଉର୍ଦ୍ଧ୍ୱକୁ ଯାଇପାରିବେ ।"(3)

ଇଷ୍ଟଇଣ୍ଡିଆ କମ୍ପାନୀର ଜନଶିକ୍ଷା ସାଧାରଣ ସମିତିର ସଭାପତି ହାରିଂଟନ ଏହି ଚିଠିକୁ ସମର୍ଥନ
କରିଥିଲେ, ଏହା ଭାରତର ସମସ୍ତ ଜନସାଧାରଣଙ୍କ ମତ ନୁହେଁ ବୋଲି ଅବହିତ କରିଥିଲେ । ସନ 1823 ମସିହା
ରେ ସରକାର ଏ ଚିଠିର କୌଣସି ଉତ୍ତର ଦେଇ ନ ଥିଲେ । କିନ୍ତୁ ବାର ବର୍ଷ ପରେ ଆଉଜଣେ ଇଂରେଜ ଲର୍ଡ
ଟମାସ୍ ବାବିଂଟନ୍ ମ୍ୟାକ୍ଲେ ରାମମୋହନଙ୍କର ଏହି ସ୍ୱପ୍ନକୁ ସରକାରୀ ନିର୍ଦ୍ଦେଶରେ ପରିଣତ କରିଥିଲେ । ମ୍ୟାକ୍ଲେ
ବି ଭବିଷ୍ୟତ ବାଣୀ କରିଥିଲେ—"ସୁଦୂର ଭବିଷ୍ୟତରେ ଏହି ନବଶିକ୍ଷିତ ଭାରତୀୟମାନଙ୍କ ଦ୍ୱାରା ଭାରତରେ ଗଣତାନ୍ତ୍ରିକ
ସରକାର ପ୍ରତିଷ୍ଠା ହେବ ।" ମାନସିଂହଙ୍କର ଶ୍ରଦ୍ଧାଶୀଳ ମନ ଭିତରେ ବିବେକାନନ୍ଦ, ଅରବିନ୍ଦ ଓ ଗାନ୍ଧି ପ୍ରମୁଖଙ୍କର
ସୁପ୍ରତିଷ୍ଠିତ ଆସନ ବି ଥିଲା । ତେଣୁ ତାଙ୍କର ଶିକ୍ଷା ସଂପର୍କରେ ବିଚାରଧାରା ଏ ଉଭୟ ମଧ୍ୟରେ ଦୋଳାୟିତ ହୋଇଛି
ବୟସର ଅଗ୍ରଗତି ସଂଗେ ସଂଗେ ଚିନ୍ତାଧାରାର ପେଣ୍ଡୁଲମ୍ ବି ତାର ଦୋଳାୟମାନ ଅବସ୍ଥା ପରିତ୍ୟାଗ କରି ଏକ
ନିର୍ଦ୍ଦିଷ୍ଟ ଦିଗରେ ସ୍ଥିର ହେବାକୁ ଆରମ୍ଭ କରିଛି ।

**ମାନସିଂହଙ୍କ ବିଚାରରେ ଶିକ୍ଷା——**

ମାନସିଂହଙ୍କ ଛାତ୍ରକାଳ ଭାରତ ଇତିହାସରେ ଏକ ବିପ୍ଳବମୁଖୀ ଜାଗରଣର କାଳ । ପ୍ରତ୍ୟେକ
ବିପ୍ଳବର ଗୁରିକାଠି ଶିକ୍ଷା ଓ ଶିକ୍ଷକମାନେ । ବିଂଶ ଶତାବ୍ଦୀର ପ୍ରଥମ ପର୍ଯ୍ୟାୟରେ ଶିକ୍ଷକମାନଙ୍କର ଆଦର୍ଶବାଦୀ ଭୂମିକା,

ସେମାନଙ୍କୁ ଛାତ୍ରମାନଙ୍କ ଆଗରେ କେବଳ ନୁହେଁ, ଜନଗଣଙ୍କ ଆଗରେ ମର୍ଯ୍ୟାଦାବନ୍ତ ପୁରୁଷ ଭାବରେ ପରିଚିତ କରାଇ ଥିଲା । ସତ୍ୟବାଦୀର ନୀଳକଣ୍ଠ, ଗୋଦାବରୀଶ କେବଳ ନୁହନ୍ତି, ନାଟ୍ୟକାର ଅଶ୍ୱିନୀ କୁମାର, ପଶ୍ଚିମ ଓଡିଶାର ବମ୍ବାନିଧି ମିଶ୍ରଙ୍କ ସମେତ ଭାରତର ବହୁ ବୁଦ୍ଧିଜୀବୀ ଉଚ୍ଚବିତ୍ତ ଓ ଆଧିପତ୍ୟ ସଂପନ୍ନ ଚାକିରୀକୁ ପଦରେ ଠେଲିଦେଇ ଶିକ୍ଷକ ଜୀବନକୁ ବରଣ କରି ନେଇଥିଲେ । ଶିକ୍ଷକ ଜୀବନର ଏହି ଆଦର୍ଶବୋଧ ମାନସିଂହଙ୍କ ଭାବବାଦୀ ଦୃଷ୍ଟିକୋଣକୁ ଗଭୀରଭାବେ ଅନୁପ୍ରାଣିତ କରିଥିଲା । ଖୋର୍ଦ୍ଧା ସ୍କୁଲର ଛାତ୍ରଥିଲାବେଳେ ଅନ୍ୟ କେତେକ ସହପାଠୀଙ୍କ ସହ ଜୀବନର ଲକ୍ଷ୍ୟ ସଂପର୍କରେ ଆଲୋଚନା ସମୟରେ ମାନସିଂହ ଜୀବନରେ ଶିକ୍ଷକତାକୁ ବରଣ କରି ନେବାକୁ ଶପଥ କରି ନେଇ ଥିଲେ । ତାଙ୍କ ନିଜ ଭାଷାରେ କହିଲେ,:-"ଯଦି ମୁଁ କୌଣସି ମତେ ମାଟ୍ରିକ ପରୀକ୍ଷାଟା ପାଶ କରିପାରେ, ତେବେ ମୁଁ କୌଣସି ସ୍କୁଲରେ ଶିକ୍ଷକତା କରିବି ।"(4)

ଶିକ୍ଷକତା କରିବା ନିମିତ୍ତ ଅଭିଳାଷ ପୋଷଣ କରିଥିବା ମାନସିଂହ, ଘଟଣା ଚକ୍ରରେ ଶିକ୍ଷା ବିଭାଗର ବିଭିନ୍ନ ସ୍ତର ଦେଇ ଗତି କରିବା ପରେ ଜୀବନର ଅପରାହ୍ଣରେ ଅନୁଶୋଚନା କରିଛନ୍ତି ।—"ଆହା, ଯଦି ସେ ଦିନର ସେହି ଅଭିଳାଷକୁ ମୁଁ ଅନ୍ତରରେ ଅନିର୍ବାଣ ପ୍ରଦୀପ ପରି ଜଳାଇ ରଖିଥାନ୍ତି, ତା ହେଲେ କୌଣସି ସନ୍ଦେହ ନାହିଁ ଯେ, ମୁଁ ଜଣେ ଉତ୍ତମ ଶିକ୍ଷକ ହୋଇପାରିଥାନ୍ତି କେବଳ ନୁହେଁ, ହୁଏତ ଜଣେ ଉତ୍ତମ ମନୁଷ୍ୟ ଓ ଜଣେ ଦେଶ-ସେବକ ମଧ୍ୟ ହୋଇପାରି ଥାନ୍ତି । "(5)

ମହାବିଦ୍ୟାଳୟ ଶିକ୍ଷା ପରିସମାପ୍ତି ପରେ ପ୍ରଶିକ୍ଷଣ ଚାକିରି ନେଇ ମାନସିଂହ ଶିକ୍ଷକ ଜୀବନ ଆରମ୍ଭ କରିଥିଲେ । ପରେ ବିଦ୍ୟାଳୟରୁ ମହାବିଦ୍ୟାଳୟ ତାଙ୍କର କର୍ମସ୍ଥଳୀ ହୋଇଥିଲା । କିନ୍ତୁ ଶିକ୍ଷା ସମ୍ପର୍କରେ ତାଙ୍କର ନିର୍ଦ୍ଦିଷ୍ଟ ମତାମତ ଶିକ୍ଷକତା କରିବାର ବହୁକାଳ ପରେ ହିଁ ତାଙ୍କ ଲେଖନୀରୁ ପ୍ରକାଶ ପାଇଥିଲା । ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ ପୁସ୍ତକରେ ସେ ଶିକ୍ଷାର ସଂଜ୍ଞା ପ୍ରଦାନ କରି କହନ୍ତି—"ପୂର୍ବପୁରୁଷର ସମ୍ପତ୍ତି ଓ ଅଭିଜ୍ଞତାକୁ ଆଗାମୀ ପୁରୁଷକୁ ଦେଇଯିବା ହିଁ ଶିକ୍ଷା ।"(6) କେବଳ ବିଦ୍ୟାୟତନର ଚାରିକାନ୍ଥ ମଧ୍ୟରେ ଆବଦ୍ଧ ରହି ନିର୍ଦ୍ଦିଷ୍ଟ ପାଠ୍ୟକ୍ରମକୁ ଆୟତ୍ତ କରି ତାହାକୁ ଦୀକ୍ଷାନ୍ତ କାଳରେ ଉଦ୍‌ଗାରିବା କେବଳ ଶିକ୍ଷା ନୁହେଁ, ମାନସିଂହ ସେ ପ୍ରକାର ଶିକ୍ଷାକୁ ଶିକ୍ଷା ଭାବରେ ଗ୍ରହଣ ନକରି ପ୍ରକୃତ ଶିକ୍ଷା ସଂପର୍କରେ କହନ୍ତି:-"ଶିକ୍ଷାର ଏକ ସଂଜ୍ଞା ହେଉଛି ଜୀବିବା ପାଇଁ ପ୍ରସ୍ତୁତ ହେବା" (7) ଅସଲ ଶିକ୍ଷା ହିଁ ଆମର ଏକ ସହଜାତ ପ୍ରବୃତ୍ତି । ପଶୁପକ୍ଷୀମାନେ ଜୀବନ ଧାରଣପାଇଁ ସେମାନଙ୍କର ଶାବକ ମାନଙ୍କୁ ତାଲିମ୍ ଦିଅନ୍ତି । ବନବାନ ପଶୁ ପକ୍ଷୀ ଶିକାର ପାଇଁ ସେମାନଙ୍କର ଶାବକମାନଙ୍କୁ ତାଲିମ୍ ଦେଲାବେଳେ, ଦୁର୍ବଳ ଜୀବମାନେ ସେମାନଙ୍କର ଶାବକମାନଙ୍କୁ ଆତ୍ମରକ୍ଷା ପାଇଁ ତାଲିମ୍ ଦିଅନ୍ତି । ଏ ପ୍ରକାର ଶିକ୍ଷାକୁ ମାନସିଂହ ଗତାନୁଗତିକ ଶିକ୍ଷାବୋଲି କହିଛନ୍ତି । ଶିକ୍ଷାର ଅନ୍ୟ ଧାରାଟି ହେଲା ବିବର୍ତ୍ତନାତ୍ମକ ଶିକ୍ଷା । ବୁଦ୍ଧି, ଅଭ୍ୟାସ, କୌଶଳ ପ୍ରୟୋଗରେ ସର୍ବୋତ୍କୃଷ୍ଟ ସମ୍ଭାବନାର ବିକାଶ କରାଇବା ହେଉଛି ବିବର୍ତ୍ତନାତ୍ମକ ଶିକ୍ଷା । ଏ ପୃଥିବୀ ହେଉଛି ଏକ ବିରାଟ

ପୁସ୍ତକ ଓ ଦୈନନ୍ଦିନ ଘଟଣା ଏହାର ବିଭିନ୍ନ ପୃଷ୍ଠା । ସାଧାରଣ ଜୀବ ଜଗତଠାରୁ ମଣିଷ ଭିନ୍ନ । ଏଣୁ ମଣିଷ ଗତାନୁଗତିକ ଶିକ୍ଷା ସହିତ ବିବର୍ତ୍ତନାତ୍ମକ ଶିକ୍ଷାକୁ ମଧ୍ୟ ଗ୍ରହଣ କରିଥାଏ । ଝରଣାର କୁଳୁକୁଳୁ ଧ୍ୱନି, ବନ ପତ୍ରର ସନସନ ଶବ୍ଦ ପକ୍ଷୀର କାକଳୀ ଠାରୁ ଆରମ୍ଭକରି ସିଂହର ଶିକାର ଓ ଇତର ଜୀବର ଆତ୍ମରକ୍ଷା ପର୍ଯ୍ୟନ୍ତ ସମସ୍ତ ଘଟଣାରୁ ସେ କିଛି କିଛି ଆହରଣ କରେ ଓ ନିଜ ଜୀବନରେ ତାର ପ୍ରୟୋଗ କରେ ।

ଶ୍ରୀମଦ୍‌ଭାଗବତ ଏକାଦଶ ସ୍କନ୍ଧରେ ଯଦୁ ଅବଧୂତ ସମ୍ବାଦରେ ଅବଧୂତଙ୍କ ଚବିଶଗୁରୁଙ୍କ ସମ୍ପର୍କରେ ଏକ ଆଖ୍ୟାୟିକା ପ୍ରଦାନ କରାଯାଇଛି । ଅବଧୂତ ପରିବେଶରୁହିଁ ବ୍ୟାବହାରିକ ଜ୍ଞାନ ଆହରଣ କରିଛନ୍ତି । ଏହାର ତାତ୍ପର୍ଯ୍ୟ ହେଲା, ଏ ପୃଥିବୀର ପୃଷ୍ଠାରୁ ଆମେମାନେ ଆମର ଆବଶ୍ୟକତା ନିମନ୍ତେ ନାନା ଜ୍ଞାନ ଆହରଣ କରି ପାରିବା । ତାହାଦ୍ୱାରା ଶିକ୍ଷାର ବ୍ୟାବହାରିକ ଜ୍ଞାନକୁ ସହଜରେ ଆୟତ୍ତ କରିହେବ । ମାତ୍ର ଆଧୁନିକ ଯୁଗରେ ଶିକ୍ଷା, ବ୍ୟାବହାରିକ ଜ୍ଞାନରୁ ଦୂରେଇଯାଇ କେବଳ ପୋଥି-ବିଦ୍ୟାରେ ଆବଦ୍ଧ ରହିଛି । ଶିକ୍ଷାର ପ୍ରୟୋଗାତ୍ମକ ଗୁଣ କ୍ରମଶଃ ହ୍ରାସ ପାଇ ଯାଉଛି ଓ ଶିକ୍ଷାକୁ ଜୀବିକା ନିମନ୍ତେ ପ୍ରସ୍ତୁତି କରିବାର ଏକ ପର୍ବ ଭାବରେ ମାନ୍ୟତା ପ୍ରଦାନ କରାଯାଉଛି । ମାତ୍ର ଯୁଗେଯୁଗେ ଅସଲ ଶିକ୍ଷା ପ୍ରକୃତିରୁ ବା ପରିବେଶରୁ ଆହରଣ କରାଯାଏ ଓ ଜୀବନର ପ୍ରୟୋଗ ଭିତରେ ସେହି ଶିକ୍ଷା ପରୀକ୍ଷିତ ହୁଏ ।

ମାନସିଂହ କହନ୍ତି:—"ବହିଘୋଷି ପରୀକ୍ଷା ଦେବା ଯେ ବିଦ୍ୟାଚର୍ଚ୍ଚା, ଏହି ଘୋର ଅସତ୍ୟ ଓ ହାନିକର ଧାରଣାକୁ ଯଥାଶୀଘ୍ର ଦେଶରୁ ବିଦାୟ ଦେବାକୁ ହେବ । ଏଣେ ଏକ ପକ୍ଷରେ ଆମର ନିଜର ସଂସ୍କୃତିକୁ ବଥେଁଇ ରଖିବା ସଂଗେ ସଂଗେ ଆମର ଜାତୀୟ ଚରିତ୍ରର ଜଣାଶୁଣା ଦୋଷ, ଅଭାବ ସବୁ ଦୂରିକରଣ କରିବା ଓ ସେ ସବୁର ସଂଶୋଧକ ଓ ପରିପୂରକ ଗୁଣାବଳୀର ଜାତୀୟ ଚରିତ୍ରରେ ଆରୋପ କରିବାର ଅଭ୍ୟାସ ପ୍ରାଇମେରୀଠାରୁ କଲେଜ ପର୍ଯ୍ୟନ୍ତ ସର୍ବତ୍ର ନିଷ୍ଠାର ସହିତ ଅଭ୍ୟାସ କରେଇବାକୁ ହେବ ।"(୩) ଆମ୍ଭେମାନେ ଶିକ୍ଷାଦାନ ନିମନ୍ତେ ନାନାଆଡମ୍ବର ପୂର୍ଣ୍ଣ ପରିବେଶ ସୃଷ୍ଟି କରିଥାଉ; ମାତ୍ର ଅସଲଶିକ୍ଷା ସେଠାରୁ ମିଳେ ନାହିଁ । ନାନା ଅଭିଜ୍ଞତା, ଦୁଃଖ ଦୁର୍ବି-ପାକ, ନାନା ଅନୁଭୂତିରୁହିଁ ଶିକ୍ଷାଲାଭ ହୋଇଥାଏ । ପ୍ରକୃତ ଶିକ୍ଷା ମନୁଷ୍ୟର ଅନ୍ତରର ଶିକ୍ଷା, ବାହାରର ନୁହେଁ ।

ଶିକ୍ଷାର ଦୁଇ ରୂପ ମଧ୍ୟରୁ ତା'ର ପ୍ରାଥମିକ ରୂପଟି ଆଜିର ଜଟିଳତମ ସଭ୍ୟତାର ଆବଶ୍ୟକତା ପୂରଣ କରିବା ପାଇଁ ଅକ୍ଷମ । ପରମ୍ପରାର ନିର୍ଦ୍ଦିଷ୍ଟତା ଭିତରେ ଭବିଷ୍ୟତକୁ ବାନ୍ଧିଦେବା, ଏକ ପ୍ରକାର ନିର୍ବୋଧତା । ବିବର୍ତ୍ତନାତ୍ମକ ଶିକ୍ଷା, ଆଜିର ଜୀବନପାଇଁ ଏକାନ୍ତ ପ୍ରୟୋଜନ କିନ୍ତୁ ଜୀବନର ବିକାଶ ପାଇଁ ଗୃହୀତ ହେଉଥିବା ଶିକ୍ଷା ଯଦି ପାରମ୍ପରିକ ମୂଲ୍ୟବୋଧଠାରୁ ଦୂରେଇଯାଏ କିମ୍ବା ତା'ର ବିରୋଧୀ ହୋଇ ଉଠେ ତେବେ ତା'ର ସୁଫଳ ପାଇବା ଅସମ୍ଭବ । ଆଜିର ଶିକ୍ଷା ପରମ୍ପରାର ଉତ୍ତରାଧିକାର ଓ ଭବିଷ୍ୟତ ପାଇଁ ପଥ ନିର୍ମାଣ ଉଭୟ ଏକସଂଗରେ କରିବା ପାଇଁ ବାଧ୍ୟ । ମାନସିଂହଙ୍କ ମତରେ:—"ଆଦର୍ଶ ଜାତୀୟ ଶିକ୍ଷା ବ୍ୟବସ୍ଥା ସେହି ଯାହା ସଂପୃକ୍ତ ଜାତିର ସଂସ୍କୃତିର

ଦେଶଷ୍ଟାନ୍ୟ ପ୍ରବନ୍ଧ ସ୍କୁଲ କଲେଜମାନଙ୍କରେ ଯତ୍ନ ଓ ଉତ୍ସାହର ସହିତ ବସ୍ତୁଗତ ଚରିତ୍ର ସହିତ ଜାତିର ସାମୁହିକ ଦୋଷ ଦୁର୍ବଳତା, ତାହା ଯେପରି ନୂତନ ପୁରୁଷ ଭିତରେ ନପଶେ ତାହାର ବ୍ୟବସ୍ଥା କରିଯାଏ ।"(୨) ମଣିଷକୁ ପରିବର୍ତ୍ତିତ ଓ ସଂସ୍କୃତ କରିବା ଶିକ୍ଷାର କାର୍ଯ୍ୟ । ମଣିଷ ସଦ୍‌ଭାବ ତଥା ଅସଦ୍‌ଭାବ, ସୃଷ୍ଟି ତଥା ଧ୍ୱଂସ, ସମକାଳରେ କରିବା ପାଇଁ ସମର୍ଥ । ଶିକ୍ଷା ମଣିଷ ଭିତରେ ଥିବା ଅସ୍ତିସୂଚକ ଗୁଣ ଗୁଡିକର ବିକାଶ କରେ, ଜୀବନର ଉଜ୍ଜ୍ୱଳତର ଦିଗପ୍ରତି ତାକୁ ଆକୃଷ୍ଟ କରେ । "ଶିକ୍ଷାର ପରମ ଆଦର୍ଶ ହେଉଛି ମନୁଷ୍ୟ ଭିତରର ପଶୁକୁ ନଷ୍ଟକରି ଦେବତ୍ୱର ବିକାଶ କରିବା ବା ଅନ୍ୟକଥାରେ ଆତ୍ମ ବିସର୍ଜନ ।"(୧୦)

ଜ୍ଞାନ ସଂଗ୍ରହ ଶିକ୍ଷାର ମୌଳ ଉଦ୍ଦେଶ୍ୟ, ବ୍ୟାବହାରିକ ଓ ତାତ୍ତ୍ୱିକ ଉଭୟେ ଏହି ସଂଗ୍ରହର ଅନୁ- ବର୍ତ୍ତୀ । "କର୍ମ ବା ସାଧନା ବା ଉଚ୍ଚର ପ୍ରଥମ ଆୟୋଜନ ହେଲା ଜ୍ଞାନ । ଜ୍ଞାନ ହୀନ ହୁଏ ଅକର୍ମା ବା କୁକର୍ମା । ଆମେ ଏତିଆଏ ଯେ ଏକ ଉପହସିତ ଓ ଅଧଃପତିତ ଜାତି ହୋଇ ରହିଛେଁ, ତାର ପ୍ରଥମ ହେତୁ ହେଉଛି, ଆମେ ଅନ୍ୟ ଜାତୀୟଙ୍କ ତୁଳନାରେ ଅଧମ କେବଳ ନୋହୁ, ଆମେ ଆମର ଅଧମତା କନର ବସ୍ତୁନୀୟ ନିର୍ଲ୍ଲଜତା ସହିତ ନାଚିମଧ୍ୟ ପାରୁ । ଅଧମତା ପୁଷ୍ଟିକରେ ଏ ପ୍ରକାର ନିର୍ଲ୍ଲଜ ଆତ୍ମସନ୍ତୋଷ, ନାଚିନିଏ ସମ୍ମାନ ସଚେତନତା ଓ ଆଣିଦିଏ ମଧ୍ୟ ମାରାତ୍ମକ ଆତ୍ମ ବିସ୍ମୃତି । କିନ୍ତୁ ସଭ୍ୟ ଉନ୍ନତ ଜାତିମାନଙ୍କର ଚିତ୍ର ଠିକ୍ ଅଲଗା । ସେ ସବୁ ଜାତିର ଜ୍ଞାନଗୁଧାର ପାଣି ନାହିଁ । ଜ୍ଞାନାହରଣରେ ସେମାନଙ୍କର କୃତକାର୍ଯ୍ୟତାର ଉଦ୍ଦେଶ୍ୟବସ୍ତୁ ଆମପରି ମୂର୍ଖଙ୍କ ପକ୍ଷରେ କଳ୍ପନା କରିବା ହିଁ ଅସମ୍ଭବ । ନିଉଟନଙ୍କ ମହୋଦାର ବାଣୀ 'ମୁଁ ଜ୍ଞାନ ସମୁଦ୍ର କୂଳରେ କେତୋଟି ଉପଳ ଖଣ୍ଡମାତ୍ର ଗୋଟେଇଛି' ଏ ଦେଶର ପଣ୍ଡିତମନ୍ୟ ବ୍ୟକ୍ତିଏ ସର୍ବଦା ସ୍ମରଣ ରଖିବା ଉଚିତ ।"(୧୧) ଶିକ୍ଷା କୌଣସି ଦେଶରେ କେବଳ ପୁସ୍ତକ ଚର୍ଚ୍ଚା ମଧ୍ୟରେ ସୀମିତ ନୁହେଁ । ପ୍ରାଚୀନ ଭାରତରେ ବ୍ୟାବହାରିକ ଜ୍ଞାନଠାରୁ ଜଟିଳ ଦାର୍ଶନିକ ତତ୍ତ୍ୱ ପର୍ଯ୍ୟନ୍ତ ସବୁ ବିଷୟ ଶିକ୍ଷାର ଅନ୍ତର୍ଗତ ଥିଲା । କଉରୋପରେ ଶିକ୍ଷା ଚର୍ଚ୍ଚ କବଳରୁ ମୁକ୍ତି ପାଇଲା ପରେ ଉଦାରତାନ୍ତ୍ରିକ ପ୍ରଶାନ୍ତି ନେଇ ଆବିର୍ଭୂତ ହୋଇଥିଲା । ମାନସିଂହଙ୍କ ସମୟକୁ ଭାରତରେ ପକ୍ଷାଘାତ ରୋଗୀପରି ଶିକ୍ଷା ପୁସ୍ତକ ଚର୍ଚ୍ଚାରେ ହିଁ ସୀମିତ ରହିଥିଲା । ତାଙ୍କର ବିଖ୍ୟାତ ପୂର୍ବବର୍ତ୍ତୀ ଓ ସମକାଳୀନ ଭାରତୀୟ ମନୀଷୀମାନେ ଶିକ୍ଷାର ସଂଜ୍ଞା ପ୍ରଦାନ କଲାବେଳେ, ସମକାଳୀନ ଶିକ୍ଷା ପଦ୍ଧତି ବିରୁଦ୍ଧରେ ବିକ୍ଷୋଦ୍‌ଗାରକରି ସାମଗ୍ରିକ ଦିଗଟିପ୍ରତି ସମସ୍ତଙ୍କ ଦୃଷ୍ଟିଆକର୍ଷଣ କରିଥିଲେ, ମାନସିଂହ ତାହାହିଁ କରିଛନ୍ତି ।

**ଶିକ୍ଷାର ଉଦ୍ଦେଶ୍ୟ :—**

ଶିକ୍ଷା ମାନବ ଜୀବନର ଏକ କାରଣ ରହିତ ସ୍ୱୟଂସମ୍ପୂର୍ଣ୍ଣ ପ୍ରକାଶ ନୁହେଁ । ଜୀବନକୁ ମହତ୍ତର ସୁନ୍ଦରତର କରିବା ପାଇଁ ଶିକ୍ଷା ଅଭିପ୍ରେତ । ତେଣୁ ସବୁ ଯୁଗରେ ଶିକ୍ଷାସହ ନିର୍ଦ୍ଦିଷ୍ଟ ଆଦର୍ଶକୁ ସନ୍ନିହିତ କରାଯାଏ । ଶିକ୍ଷାର ଉଦ୍ଦେଶ୍ୟ କ'ଣ ? ପ୍ରଶ୍ନ କରାଯାଏ । ମାନସିଂହ ତାଙ୍କର ବିଭିନ୍ନ ଲେଖାରେ 'ଆଦର୍ଶ ଶିକ୍ଷା କ'ଣ' ତାର

ସ୍ୱରୂପ ବ୍ୟାଖ୍ୟା କରିବାକୁ ଚେଷ୍ଟା କରିଛନ୍ତି । ଜୀବନର କେଉଁ ଉଦ୍ଦେଶ୍ୟର ପରିପୂରଣ ପାଇଁ ଶିକ୍ଷା ଅଭିପ୍ରେତ ହେବା ଉଚିତ ସେ ସମ୍ପର୍କରେ ନିଜର ମନ୍ତବ୍ୟ ପ୍ରଦାନ କରିଛନ୍ତି । ମଣିଷ ସମାଜ ଗ୍ରହଣ କରିଥିବା ସ୍ୱାଭାବିକ୍ ଶିକ୍ଷା ନୁହେଁ, ବିବର୍ତ୍ତନାତ୍ମକ ଶିକ୍ଷା ହିଁ ତାଙ୍କର ପ୍ରଥମ ଆଲୋଚ୍ୟ ବସ୍ତୁ । ଝରଣାର ସ୍ରୋତ ଭଳି ସହଜ ଓ ନିତ୍ୟ ପ୍ରବାହିତ ଶିକ୍ଷା ଧାରା ସମ୍ପର୍କରେ ତାଙ୍କର କିଛି କହିବାର ନାହିଁ । ମଣିଷ ବଞ୍ଚିବାର ସଂଗ୍ରାମ ଭିତର ଦେଇ, ତାର ପୂର୍ବପୁରୁଷ ଠାରୁ, ପରିବେଶ ଠାରୁ ଯାହା ଶିଖେ, ତାର ଉଦ୍ଦେଶ୍ୟ ସ୍ୱୟଂ ନିର୍ଦ୍ଧାରିତ । ସେ ଶିକ୍ଷାୟତନ କୌଣସି ନିର୍ଦ୍ଦିଷ୍ଟ କ୍ଷେତ୍ରରେ ଆବଦ୍ଧ ନୁହେଁ । ଜୀବନ ଭଳି ତାହା ସର୍ବବ୍ୟାପୀ । ନିଜକୁ ଅଧିକ ଉନ୍ନତ କରିବା ପାଇଁ, ବିକାଶର ପଥରେ ଆଗେଇ ନେବା ପାଇଁ ଯେଉଁ ଜ୍ଞାନ ଦିଆଯାଏ ତାହାହିଁ ଆଦର୍ଶ ଶିକ୍ଷା । ମାନସିଂହଙ୍କ ମତରେ "ଆଦର୍ଶ ଶିକ୍ଷା ସେହି ଯାହାର ଉଦ୍ଦେଶ୍ୟ ଓ ଆଦର୍ଶ ସ୍ପଷ୍ଟ ଭାବରେ ବର୍ଣ୍ଣିତ । ଆଦର୍ଶ ଶିକ୍ଷା ବ୍ୟବସ୍ଥା ସେହି ଯାହା ଶିକ୍ଷାକୁ କେବଳ ଲେବୁଲ ସଂଗ୍ରହବୋଲି ମନେ କରେନା ବା ଗୁଡାଏ ଖବର ସଂଗ୍ରହକୁ ଜ୍ଞାନବୋଲି ଗ୍ରହଣ କରେନା, ବରଂ ଅସଲଗ୍ନ ଗୁଡାଏ ଇନ୍‌ଫରମେସନ (ଖବରଯୋଗାଣ) ଅପେକ୍ଷା ବୁଦ୍ଧି, ବ୍ୟକ୍ତିତ୍ୱ ଓ ବିଚାରର ଫରମେସନ(ଗଠନ)କୁ ହିଁ ପ୍ରକୃତ ଶିକ୍ଷାବୋଲି ମନେକରେ । ଏବଂ ଆଦର୍ଶ ଶିକ୍ଷା ସେହି ଯାହା ମନୁଷ୍ୟ ଜୀବନରେ ପ୍ରକୃତିର ଭିନ୍ନ ଭିନ୍ନ ପରିବର୍ତ୍ତନ ସହିତ ନିଜକୁ ଖାପ ଖୁଆଇ ଆପଣାକୁ ବ୍ୟବସ୍ଥିତ କରେ ।"(12)

ବ୍ୟକ୍ତି ଓ ଜାତି ପରିବେଶ ଭେଦରେ ଶିକ୍ଷାର ଆଦର୍ଶ ଭିନ୍ନ ଭିନ୍ନ ହୋଇଥାଏ । ଜଣେ ସାଇ-ବେରିଆ ଅଧିବାସୀର ଶିକ୍ଷାର ଆଦର୍ଶ ଯାହାହେବ, ଜଣେ ବିଷୁବ ମଣ୍ଡଳୀୟ ଅଧିବାସୀର ଶିକ୍ଷାର ଆଦର୍ଶ ସେହିପରି ହେବ ନାହିଁ । ଗୋଟିଏ ଭ୍ରାମ୍ୟମାଣ ଜାତିର ଶିକ୍ଷାର ଆଦର୍ଶ ଯାହାହେବ ସ୍ଥାୟୀ ଭାବରେ ବସବାସ କରୁଥିବା କୌଣସି ଜାତିର ଶିକ୍ଷାର ଆଦର୍ଶ ସେ ପ୍ରକାର ହେବ ନାହିଁ । କିନ୍ତୁ ଏ ସବୁ ଆଲୋଚନାର ଶୀର୍ଷରେ ଅବସ୍ଥିତ—"ଶିକ୍ଷାର ମୁଖ୍ୟ ଉଦ୍ଦେଶ୍ୟ ହେଲା, ମନୁଷ୍ୟ ଗଠନ । ଏହା ଏକ ସର୍ବାଙ୍ଗୀନ ପ୍ରୟୋଗ । ମନୁଷ୍ୟ ଜୀବନର କୌଣସି ହେଲେ ଗୋଟିଏ ବିଭାବକୁ ଅବହେଳାକରି କେହି ଉତ୍ତମ ଶିକ୍ଷାପାଇଛି ବା ଦେଇଛି ବୋଲି କହି ନ ପାରେ ।"(13)

ଶିକ୍ଷା ଗ୍ରହଣ ମଣିଷ ଜୀବନ ପାଇଁ ଅପରିହାର୍ଯ୍ୟ ହେଲେ ମଧ୍ୟ, ସାଧାରଣ ମଣିଷ ଶିକ୍ଷାର ଆବଶ୍ୟକତା ଅନୁଭବ କରିପାରେ ନାହିଁ । ସେ ସାଧାରଣତଃ ପାରମ୍ପରିକ ଶିକ୍ଷା, ଯାହା ଗତାନୁଗତିକ ଭାବରେ ପରିବାରରୁ ଶିକ୍ଷା କରାଯାଏ, ସେହି ଶିକ୍ଷାକୁ ସର୍ବଶ୍ରେଷ୍ଠ ଆବଶ୍ୟକତା ବୋଲି ମନେ କରିଥାଏ । ଏହି ପରିବର୍ତ୍ତିତ ପରିସ୍ଥିତିର ଶିକ୍ଷାକୁ ଗ୍ରହଣ କରିବା ପାଇଁ ଅନେକ ସମୟରେ ସେ ଅନିଚ୍ଛୁକ । ଏଣୁ ମାନସିଂହ କହନ୍ତି :—"ଦେଶର ପିଲାକୁ ମଣିଷ କରାଇବାର ଦାୟିତ୍ୱ ଦେଶର ଓ ରାଷ୍ଟ୍ରର, ବ୍ୟକ୍ତିର ନୁହେଁ; ଭାରତବର୍ଷରେ ଏଇ ନୀତି ଶୀଘ୍ର ଗୃହୀତ ହେବା ଆବଶ୍ୟକ ।" (14)ଦେଶର ଶିକ୍ଷାର ଆଦର୍ଶ ସେପରି ହେବା ଉଚିତ, ଯେପରି ଦେଶର ବହୁଳ ଲୋକ ଶିକ୍ଷା ଗ୍ରହଣ ନିମନ୍ତେ ଆଗ୍ରହ ପ୍ରକାଶ କରିବେ ଅର୍ଥାତ ସେ ଶିକ୍ଷା ସେମାନଙ୍କର ଦୈନନ୍ଦିନ ଜୀବନ ଓ ଜୀବିକା ପ୍ରତି ଯେପରି ପ୍ରତିକୂଳ ନ ହୁଏ ।

ଭାରତବର୍ଷରେ ସମ୍ପ୍ରତି ଶିକ୍ଷାର ଉଦ୍ଦେଶ୍ୟ ପ୍ରତିହତ ହୋଇଥିବାର ଅନୁଭବ କରାଯାଉଛି । ଶିକ୍ଷାଧାରାର ଦୋଷତ୍ରୁଟି ଶିକ୍ଷାର ଉଦ୍ଦେଶ୍ୟ ଓ ଆବଶ୍ୟକତା ସମ୍ପର୍କରେ ମାନସିଂହ ନାନା ଦାମି ଆଲୋଚନା କରିଛନ୍ତି । ଆମର ଶିକ୍ଷାଧାରା ଯେ ବିଫଳ ହୋଇଛି, ସେ ସମ୍ପର୍କରେ ମାନସିଂହ ଲେଖିଛନ୍ତି:—"କେବଳ ଏହି ହତଭାଗ୍ୟ ଦେଶରେ ପରସ୍ୱତ୍ୱୀର ଅପମାନ କାରଣ ଏଠି ସ୍କୁଲକଲେଜରେ ତଥାକଥିତ ପାଠପଢି ବାହାରିଲେ ଲୋକେ କର୍ମଠ ହେବା ପରିବର୍ତ୍ତେ, ସେ ହୁଅନ୍ତି ଆଳସ୍ୟ ପରାୟଣ; ସାଧୁ ନହୋଇ ହୁଅନ୍ତି ପାଜି, ନାହିଁ ବିବେକ, ନାହିଁ ମଧ୍ୟ ଅପରିହାର୍ଯ୍ୟ ଭଦ୍ର ବ୍ୟବହାର ।

ଏ ଦୁର୍ବିପାକର ଏକମାତ୍ର କାରଣ ଏହି ଯେ, ଆମର ସ୍କୁଲ କଲେଜ କୌଣସି ଉନ୍ନତ ଆଦର୍ଶରେ ଅନୁପ୍ରାଣିତ ନୁହେଁ, କୌଣସି ସ୍ଥିର ଲକ୍ଷ୍ୟ ଆମର ନାହିଁ । ଇଣ୍ଡିଆ ହେଉଛି ଏକମାତ୍ର ଦେଶ ଯେଉଁଠି ଶିକ୍ଷାର କୌଣସି ନିଜସ୍ୱ ଦର୍ଶନ ନାହିଁ ।"(15)

ଅଜ୍ଞତାର ଅନ୍ଧକାରରୁ ଟାଣିଆଣି ଜ୍ଞାନାଞ୍ଜନ ପ୍ରୟୋଗରେ ଚକ୍ଷୁ ଉନ୍ମୋଚନ କରିବା ଏ ଦେଶରେ ପ୍ରଚଳିତ ଶିକ୍ଷାର ଆଦର୍ଶ ଥିଲା । ମାତ୍ର ସେ ଉଦ୍ଦେଶ୍ୟ ଓ ସେ ଆଗ୍ରହ ବ୍ୟକ୍ତି ମନରୁ ଓ ସମାଜରୁ କ୍ରମଶଃ ଦୂରେଇ ଯାଉଛି । ସେଥିପାଇଁ ଶିକ୍ଷାବିତ୍ ତଥା ଚିନ୍ତାନାୟକମାନେ ଅନେକ ମାତ୍ରାରେ ଚିନ୍ତିତ । ମାନସିଂହ କହନ୍ତି:—"ଆଲୋକିତ ମନୁଷ୍ୟତା ଏ ଦେଶରେ ଆଜି ଶିକ୍ଷାର ଲକ୍ଷ୍ୟ ନୁହେଁ, ଅର୍ଥ ଅଧିକାର ଓ ପ୍ରଭାବହିଁ ଆଜି ଦେଶରେ ଶିକ୍ଷାର ଲକ୍ଷ୍ୟ । ଏ ଲକ୍ଷ୍ୟ ଯେଉଁ ଶିକ୍ଷା ବ୍ୟବସ୍ଥାର, ତାହା ଯେ କୌଣସି ଦେଶ ପକ୍ଷରେ ଘୋର ଅପକାରକ, ଏଥିରେ ସନ୍ଦେହ ନାହିଁ ।" (16) ପରିବର୍ତ୍ତିତ ପରିସ୍ଥିତିରେ ଆମଦେଶରେ ପ୍ରାଚୀନ ପରମ୍ପରାର କେତେକ ଧାରା ପ୍ରଚଳିତ ହେବା ଆବଶ୍ୟକ । "ଯଦି ଆମ ଦେଶର ପ୍ରାଚୀନ ସଂସ୍କୃତି ଅନୁଯାୟୀ ଆମଦେଶକୁ ଆଜି ପୁନର୍ଗଠିତ କରିବାର ଇଚ୍ଛାଥାଏ, ତେବେ ପାଶ୍ଚାତ୍ୟ ସଭ୍ୟତାର କେତୋଟି ଅଗୌଣ ଅଂଶକୁ ବିନା ଚିନ୍ତାରେ ବରି ନ ନେଇ ଆମକୁ ଆମର ନିଜର ପ୍ରୟୋଜନ, ପାରିପାର୍ଶ୍ୱି-କତା ଓ ସାଂସ୍କୃତିକ ପରମ୍ପରା ଅନୁସାରେ ଆମର ଶିକ୍ଷା ସଂସ୍କାର ଓ ବିପ୍ଳବ ଆଣିବାକୁ ହେବ ।"(17) ଆମର ଶିକ୍ଷାଧାରା ଆମକୁ କ୍ରମଶଃ ଶାରୀରିକ କର୍ମ ବିମୁଖ କରାଇ ଦେଇ ଆସୁଛି । ଇଂରେଜ ଶାସନ କାଳରେ ପ୍ରବର୍ତ୍ତିତ ଆମର ଶିକ୍ଷା ବ୍ୟବସ୍ଥାକୁ ଆମେମାନେ ଠିକ୍ ଭାବରେ ଉପଯୋଗ କରି ନପାରି ଏହି ବ୍ୟବସ୍ଥାକୁ କେବଳ ତ୍ରୁଟିପୂର୍ଣ୍ଣବୋଲି କହିବାକୁ ଲାଗିଲୁ । ଏହି ଶିକ୍ଷା ବ୍ୟବସ୍ଥା ଆମ ସମାଜ ପାଇଁ ଉପଯୋଗୀ ନୁହେଁବୋଲି ବାରମ୍ବାର କହି ବୁଲିଲୁ । ଜୀବନର ସନ୍ଧ୍ୟାରେ ମାନସିଂହ ପ୍ରଚଳିତ ଶିକ୍ଷାଧାରାରେ ତ୍ରୁଟି ନାହିଁ ବୋଲି ଅନୁଭବ କରିଥିଲେ ମଧ୍ୟ ଗଡ୍ଡଳିକା ପ୍ରବାହରେ ୧୨୬୦ ମସିହା ବେଳକୁ ଏହି ଶିକ୍ଷା ବ୍ୟବସ୍ଥାର ବିରୋଧରେ ମତ ପ୍ରଦାନ କରିଛନ୍ତି ଓ ପଲ୍ଲୀବହୁଳ ଭାରତବର୍ଷର ଜନଜୀବନ ପାଇଁ ଏହି ଶିକ୍ଷାଧାରା ଉପଯୋଗୀ ନୁହେଁବୋଲି ମତବ୍ୟକ୍ତ କରିଛନ୍ତି ।:—"ଜାତି କେବଳ କେତୋଟି ଅଫିସ ଗୁଲକ ବାବୁ ଦରକାର କରେ ନାହିଁ, କରେ ନିପୁଣ ଗୃଷୀ, ବଢେଇ, ପଥୁରିଆ, କୁମ୍ଭାର, ତନ୍ତୀ, ଭଣ୍ଡାରୀ ଓ ବ୍ୟବସାୟୀ ମଧ୍ୟ । କିନ୍ତୁ ଆମେ କୋଟି କୋଟି ଟଙ୍କା ଶେଷରେ କେତୋଟି ଅଫିସ ଗୁଲକ 'ବାବୁ'ଙ୍କୁ ମାତ୍ର ସୃଷ୍ଟି କରିବାପାଇଁ ଖର୍ଚ୍ଚ କଲାବେଳେ, ଦେଶର ଉତ୍ତମ ଗୃଷୀ, ତନ୍ତୀ, ସୃଷ୍ଟି କରିବା ପାଇଁ ତ କିଛି ହେଲେ କରୁନେ ।"(18)

## ।। ମାନସିଂହଙ୍କ ବିଗ୍ରହଧାରା ।।

ଜନ ସାଧାରଣଙ୍କ ନିଜସ୍ୱ ସଂସ୍କୃତି ଓ ପ୍ରାକୃତିକ ସଂପଦର ଉପଯୋଗିତାରେ ଦେଶର ଉନ୍ନତି ସମ୍ଭବ ହୋଇଥାଏ । ନିଜସ୍ୱ ଚଳଣିକୁ ଉପେକ୍ଷା କରି କୌଣସି ରାଷ୍ଟ୍ର କେବେହେଲେ ଉନ୍ନତି କରିପାରି ନାହିଁ । ମାନସିଂହ ଅନୁଭବ କରିଥିଲେ ଯେ, ଭାରତବର୍ଷ ବିଜ୍ଞାନର ଅଗ୍ରଗତି ସହିତ ତାଳ ଦେବା ସଂଗେ ସଂଗେ ନିଜ ସଂସ୍କୃତି ପ୍ରତି ଧ୍ୟାନ ଦେଲେ ହିଁ ଭାରତର ଉନ୍ନତି ସମ୍ଭବ ହୋଇପାରିବ ।"ଭାରତବର୍ଷ ଯଦି ଧରଣୀର ପୁନର୍ବାର ନେତୃତ୍ୱ ନେବାକୁ ଚାହେଁ, ଅନ୍ତତଃ ସେ ସୁଖ ଶାନ୍ତିରେ ବଞ୍ଚିରହିବାକୁ ଚାହେଁ, ତେବେ ତାକୁ ପଶ୍ଚିମ ଆଡୁ ଆଖି ଫେରାଇବାକୁ ହେବ । ଆମକୁ ଧରି ନେବାକୁ ହେବଯେ ମୋଟର କାର, ଏରୋପ୍ଲେନର ମାସ୍-ପ୍ରଡକ୍‌ସନ ବା ଗଣ-ପ୍ରସବ ହୋଇପାରେ, କିନ୍ତୁ ଯଥାର୍ଥ ଶିକ୍ଷିତରେ ନୁହେଁ । ଶିକ୍ଷିତ କହିଲେ ବୁଝିବାକୁ ହେବ, ଉତ୍ତମ ମନୁଷ୍ୟ । ପ୍ରତି ବାଟା କାରଖାନାରୁ ଜୋତା ବାହାରିଲା ପରି ହଜାର ହଜାର ସଂଖ୍ୟାରେ ଶିକ୍ଷିତ ବର୍ଷକୁ ବର୍ଷ ବାହାରି ନ ପାରନ୍ତି । ସହସ୍ର ସହସ୍ର ମାଟ୍ରିକ୍ୟୁଲେଟ ବା ଗ୍ରାଜୁଏଟର ସୃଷ୍ଟି କେବଳ ଚାକିରୀ ଖୋଜାଳୀଙ୍କ ସୃଷ୍ଟି, ଯଥାର୍ଥ ଶିକ୍ଷିତର ସୃଷ୍ଟି ନୁହେଁ ।"(୧୨)

ମାନସିଂହ ଜୀବନର ସଂଧ୍ୟାକାଳ ପର୍ଯ୍ୟନ୍ତ ଗାନ୍ଧିଜୀ ପ୍ରମୁଖ ଜାତୀୟବାଦୀ ଚିନ୍ତାନାୟକଙ୍କ ବକ୍ତବ୍ୟ ଦ୍ୱାରା ଅନୁପ୍ରାଣିତ ହୋଇଥିଲେ । ଇଉରୋପର ଉଦାରତାନ୍ତ୍ରିକ ଶିକ୍ଷା ପଦ୍ଧତିର ପ୍ରଚଳନ ଭାରତୀୟମାନଙ୍କୁ ବର୍ମବୃତ୍ତ କରିଛି, ଜୀବନର ବ୍ୟାପକ କ୍ଷେତ୍ରରୁ ସେମାନଙ୍କୁ ଟାଣିଆଣି ଅଫିସର ଚାରିକାନ୍ଥ ମଧ୍ୟରେ ଆବଦ୍ଧ ରହିବା ପାଇଁ ଅନୁପ୍ରେରିତ କରିଛି, ଏହିଭଳି ଏକ ଧାରଣା ପୋଷଣ କରିଥିବାରୁ ଶିକ୍ଷାର ଉଦ୍ଦେଶ୍ୟ ବିଷୟମୁଖୀ ହେବା ଉଚିତ ବୋଲି ସେ ମତପ୍ରକାଶ କରିଛନ୍ତି । ଜଣେ ଚଷା ହୋଇପାରେ, ତନ୍ତୀ ହୋଇପାରେ ବା ଭାରତର ସର୍ବୋଚ୍ଚ ଶାସକ ହୋଇପାରେ, କାର୍ଯ୍ୟକ୍ଷେତ୍ରରେ ଭିନ୍ନତା, ସେମାନଙ୍କର ମାନସିକ ପରିଧି, ଜୀବନ ଓ ଜଗତକୁ ବୁଝିବାର ଶିକ୍ଷା ବା ଜୀବନର ଅନ୍ୟ ସମସ୍ତ ସୃଷ୍ଟିଧର୍ମ ଦିଗରୁ ସେମାନଙ୍କୁ ବଞ୍ଚିତ କରିବା ଉଚିତ ନୁହେଁ । ତେଣୁ ପ୍ରତ୍ୟେକ ଲୋକ ଏକ ନିର୍ଦ୍ଦିଷ୍ଟ ସ୍ତର ପର୍ଯ୍ୟନ୍ତ ଶିକ୍ଷାଲାଭ କରିବା ଉଚିତ । ଜୀବନର ଜଟିଳତମ ସଂଗ୍ରାମରେ ଝାସଦେବା ପୂର୍ବରୁ ତାର ସୌନ୍ଦର୍ଯ୍ୟ ଓ ସଂଗ୍ରାମ ଉଭୟକୁ ଅନୁଭବ କରିବା ଉଚିତ ଏ କଥା ପ୍ରତି ସେ ଦୃଷ୍ଟିଦେଇ ନାହାନ୍ତି । ଯାହେଉ ଜୀବନର ସଂଧ୍ୟାରେ ନିଜ ପୂର୍ବବର୍ତ୍ତୀ ମତର ଦୁର୍ବଳତା ସେ ଅନୁଭବ କରିପାରିଛନ୍ତି ।

### ଶିକ୍ଷକ :...

ଆମ ଦେଶରେ କଥା ଅଛି ଯେ, "ବିଦ୍ୟାରମ୍ଭେ ଗୁରୁଶ୍ରେଷ୍ଠ" ଅର୍ଥାତ ଶ୍ରେଷ୍ଠ ଗୁରୁଙ୍କ ଠାରୁ ଅଧ୍ୟୟନ ଆରମ୍ଭ କରିବା ଉଚିତ । ଭାରତବର୍ଷରେ ଏ ପରମ୍ପରା ଅନେକ ଦିନ ଧରି ଚଳିଆସିଥିଲା । ଛାତ୍ର ବା ଶିଷ୍ୟ ମାନେ ବିଭିନ୍ନ ଅନୁସନ୍ଧାନ ପରେ ହିଁ ଅଭୀଷ୍ଟ ଗୁରୁଙ୍କୁ ଲାଭ କରୁଥିଲେ । ଛାତ୍ରଙ୍କ ଦୃଷ୍ଟିରେ ଗୁରୁ, ସ୍ରଷ୍ଟା, ପାଳନକର୍ତ୍ତା ଓ ସଂହାର କର୍ତ୍ତା ବି ହୋଇପାରନ୍ତି, ତେଣୁ ଗୁରୁଙ୍କୁ ବ୍ରହ୍ମା, ବିଷ୍ଣୁ ତଥା ଶିବ ଭାବରେ ବନ୍ଦନା କରାଯାଇଅଛି । ଆଧୁନିକ ଶିକ୍ଷା ବ୍ୟବସ୍ଥାରେ ଗୁରୁଙ୍କ ପ୍ରତି ସେ ଆନୁଗତ୍ୟ ନାହିଁ ବା କର୍ମକର୍ତ୍ତାମାନେ ଗୁରୁଙ୍କ ନିର୍ବାଚନରେ ପୂର୍ବ ପଦ୍ଧତି ଅନୁସରଣ କରୁ ନାହାନ୍ତି । ଆଧୁନିକ ଶିକ୍ଷା ବ୍ୟବସ୍ଥାରେ ଶିକ୍ଷକ ପ୍ରାଧାନ୍ୟ ଲୋପପାଇ ଥିବାରୁ ଶିକ୍ଷାର ମାନ କ୍ରମଶଃ ହ୍ରାସ ହେଉ–

ଥିବାର ଲକ୍ଷ୍ୟ କରାଯାଏ । ଶିକ୍ଷା ବ୍ୟବସ୍ଥାରେ ଶିକ୍ଷକ ଓ ଛାତ୍ରଙ୍କର ଭୂମିକା ମୁଖ୍ୟ ହେଉଥିବା ସ୍ଥଳେ, ଭାରତର ଆଧୁନିକ ଶିକ୍ଷା ବ୍ୟବସ୍ଥାରେ, ଶିକ୍ଷକ ତଥା ଛାତ୍ରଙ୍କୁ ଗୌଣସ୍ଥାନ ଦିଆଯାଇ ଶିକ୍ଷାୟତନ ଗଠନ ଓ ଶିକ୍ଷାପଦ୍ଧତି ନିର୍ଣ୍ଣୟକୁ ଅଗ୍ରାଧିକାର ଦିଆଯାଉଅଛି । ଶିକ୍ଷାବିତ୍ ମାନସିଂହ ସେ ବ୍ୟବସ୍ଥାର କଠୋର ସମାଲୋଚନା କରି ଲେଖିଥିଲେ:—"ଏ ଦେଶରେ (ଭାରତରେ) ସ୍କୁଲ କଲେଜ କଥା ପଡିଲେ ପ୍ରଥମେ ହିସାବ ହେବ କୋଠାବାଡିର ଖର୍ଚ୍ଚ କିନ୍ତୁ ଇଂଲଣ୍ଡରେ ପ୍ରଥମ ଓ ପ୍ରଧାନ ପ୍ରସ୍ତାବ ହେଉଛି ଅଧ୍ୟାପକ ଓ ତାର ଯୋଗ୍ୟତା—ଆଉସବୁ ପଛ ।"(20)

ଶିକ୍ଷାଧାରାରେ ଶିକ୍ଷକର ପ୍ରାଧାନ୍ୟ ନ ରହିଲେ ଶିକ୍ଷାର ଉନ୍ନତି ସମ୍ଭବ ନୁହେଁ । ଜାତି ତାର ଶିକ୍ଷକମାନଙ୍କୁ ନେଇ ବଡହୁଏ । ଶିକ୍ଷକ ହିଁ ଜାତିକୁ ଗଢିଥାନ୍ତି, "ଯେଉଁ ଜାତିର ଶିକ୍ଷକ ଯେପରି, ସେ ଜାତି ସେପରି । ଏହାକୁ ଆମେ ସ୍ୱତଃ ପ୍ରତିଷ୍ଠ ବାକ୍ୟ ରୂପେ ଗ୍ରହଣ କରି ନେବାକି ?"(21) ପୁଣି "ଏକ ସଭ୍ୟ ଜାତି ନିକଟରେ ଜଣେ ପ୍ରକୃତ ଶିକ୍ଷକର ସମ୍ମାନ କୌଣସି ଡି.ପି.ଆଇ. ବା ଶିକ୍ଷାମନ୍ତ୍ରୀ ପାଇ ନ ପାରନ୍ତି ।"(21) ମାନସିଂହ କହନ୍ତି "ଆମେ ଯେ ପର୍ଯ୍ୟନ୍ତ ଶିକ୍ଷକ ନୁ ଏଇ ଶ୍ରେଣୀର ସମ୍ମାନ ଦେବାପାଇଁ ପ୍ରସ୍ତୁତ ନ ହୋଇଛୁ, ସେ ପର୍ଯ୍ୟନ୍ତ ଆମ ଜାତୀୟ ଚରିତ୍ରର ମୂଳପତ୍ତନ ଦୁର୍ବଳ ହିଁ ରହିବ ।"(21)

'ଶିକ୍ଷକ' ପଦବୀରେ ଯେଉଁମାନେ ଅଧିଷ୍ଠିତ ହୁଅନ୍ତି, ସମସ୍ତେ ଶିକ୍ଷକ ହେବାର ଯୋଗ୍ୟ ନୁହନ୍ତି । ଶିକ୍ଷକ ହେବାର ପ୍ରାଥମିକ ଯୋଗ୍ୟତା ନଥିବା ବହୁ ଲୋକ ଶିକ୍ଷକ ଭାବରେ ନିଯୁକ୍ତି ପାଇବାରୁ, ଶିକ୍ଷା କ୍ଷେତ୍ରରେ ନାନା ଅଧୋଗତି ଦେଖା ଦେଇଛି ।"ବିଦ୍ୟାଧର ହେବା ଯେତେ ସହଜ, ବିଦ୍ୟାନୁରକ୍ତ ହେବା ସେତେ ନୁହେଁ । ତଥାକଥିତ ଭାବରେ ମାର୍କାଧାରୀ'ମାଷ୍ଟର' ବୋଲାଇବା ଯେତେ ସହଜ ଜଣେ ପ୍ରକୃତ ଶିକ୍ଷକ ହେବା କୌଣସିମତେ ସେତେ ସହଜ ନୁହେଁ, X X X ପ୍ରକୃତ ଶିକ୍ଷକ ଏ ସମସ୍ତର ଊର୍ଦ୍ଧ୍ୱକୁ ଉଠି ନରୋତ୍ତମ ନହେଲେ ହେଁ ଉତ୍ତମ ନର ହେବାକୁ ଚେଷ୍ଟିତ ହେବା ଉଚିତ । ଜାତିର ନୂତନ ବଂଶଧରଙ୍କ ଆଗରେ ଶିକ୍ଷକମାନେ ହିଁ ପ୍ରଥମ ଆଦର୍ଶ ପୁରୁଷ ରୂପେ ବିରାଜିତ ନ ରହିଲେ, କୋଟି କୋଟି ମୁଦ୍ରା ବ୍ୟୟରେ ନିର୍ମିତ ସ୍କୁଲ—କଲେଜ, ବ୍ୟର୍ଥ—ଲକ୍ଷ୍ୟ ହେବା, ଧରି ନେବାକୁ ହେବ ।"(22) ଶିକ୍ଷକ ହେବା ନିମନ୍ତେ ଯଥେଷ୍ଟ ନିଷ୍ଠା ଓ ମିଶନାରୀ ଭାବ ରହିବା ଆବଶ୍ୟକ । ପ୍ରାଚୀନ ଭାରତରେ ଗୁରୁସ୍ଥାନୀୟ ବ୍ରାହ୍ମଣମାନଙ୍କର ଯଥେଷ୍ଟ ସମ୍ମାନ ଥିଲା ଓ ସେମାନେ କୌଣସି ଅର୍ଥକାରୀ ବ୍ୟବସାୟ ସହିତ ସଂପୃକ୍ତ ନଥିଲେ । ଏହି ପ୍ରଥାକୁ ମାନସିଂହ ଏକ ପ୍ରାଚୀନ ସଭ୍ୟ ଜାତିର ଗଭୀର ସାମାଜିକ ମନନର ଅତି ଉତ୍ତମ ସିଦ୍ଧାନ୍ତ ବୋଲି ମନେ କରିଥିଲେ । ଅନ୍ୟ ଅର୍ଥରେ ବିଗ୍ଭର କଲେ ଶିକ୍ଷକକୁ ଅର୍ଥଚିନ୍ତା ନ କରିବା ପାଇଁ ସମାଜ ତଥା ରାଷ୍ଟ୍ର ସେହିପରି ବ୍ୟବସ୍ଥା କରିବା ମଧ୍ୟ ଆବଶ୍ୟକ । ଶିକ୍ଷକର ଉଚ୍ଚ ସାମାଜିକ ସମ୍ମାନ ତାହାକୁ ସମଗ୍ର ଛାତ୍ରସମାଜ ଦୃଷ୍ଟିରେ ଆଦର୍ଶ ସ୍ଥାନୀୟ କରି ଛିଡା କରାଇଥାଏ ।"ସମଗ୍ର ଜାତି ଆଗରେ ଶିକ୍ଷକର ଏକ ମହାନ୍ ଆଦର୍ଶ ବଥାଇ ନ ପାରିଲେ, କୌଣସି ଜାତି ଉଚ୍ଚ ସ୍ତରକୁ ଉଠି ପାରିବନି କି ଉଚ୍ଚସ୍ତରରେ ରହି ପାରିବନି । ଜର୍ମାନୀ, ଇଂଲାଣ୍ଡ ପରି ଜ୍ଞାନଦୀପ୍ତ ଦେଶ କଥା ଛାଡିଦିଅ । କେହି ଓଡିଆ, ତାର ପ୍ରତିବେଶୀ ଏବର ବଂଗାଳୀ ଜାତିର ଅଭ୍ୟୁତ୍ଥାନର ଇତିହାସ ଅନୁଶୀଳନ କଲେ ଅଚିରେ ଜାଣିବେ

ଯେ, ସେ ଜାତି ହେଉଛି ଗତ ଶତାବ୍ଦୀର କେତୋଟି ସୁଦକ୍ଷ, ଜାତିଗତପ୍ରାଣ ଶିକ୍ଷକ, ପ୍ରଧାନ ଶିକ୍ଷକ ଓ ଅଧ୍ୟାପକଙ୍କର ହାତଗଢା ଶିଳ୍ପ ମାତ୍ର । ଓଡିଶାରେ ସେପରି ଶ୍ରେଣୀର ଶିକ୍ଷକ ବେଶି ଦେଖା ଦେଉ ନାହାନ୍ତି । ଏବଂ ସେହି କାରଣରୁ ହିଁ ଓଡିଆ ଜାତି ଏବେ ବି ଅଧଃପତିତ ।"(23)ଏହା କେବଳ ଇତିହାସର କଥା ନୁହେଁ ବର୍ତ୍ତମାନ କାଳରେ ମଧ୍ୟ କେତେକ ଉତ୍ସର୍ଗପ୍ରାଣ ଶିକ୍ଷକଙ୍କ ଉଦ୍ୟମରେ ସାମାଜିକ ବିକାଶ ସଂଘଟିତ ହେବାର ଦେଖାଯାଉଛି ।

ଅବସ୍ଥା ଚକ୍ରରେ ପଡି ଗ୍ଭକିରୀ କରିବା ନିମନ୍ତେ ଯେଉଁମାନେ ଶିକ୍ଷକ ବୃତ୍ତି ଧରିଥାନ୍ତି, ସେମାନେ କସ୍ମିନ କାଳେ ଶିକ୍ଷକ ପଦପାଇଁ ଯୋଗ୍ୟ ହୋଇ ପାରିବେ ନାହିଁ । ଶିକ୍ଷକ ହେବାକୁ ହେଲେ ଛାତ୍ରାବସ୍ଥାରୁହିଁ ଶିକ୍ଷକ ହେବାର କାମନା ଜାଗରିତ କରିବାକୁ ହୁଏ, ନିଜକୁ ଶିକ୍ଷକ ହେବା ନିମନ୍ତେ ଗଢିବାକୁ ହୁଏ । ଅବଶ୍ୟ ଶିକ୍ଷକମାନଙ୍କର ସମସ୍ତ ଆର୍ଥନୀତିକ ଦୁରବସ୍ଥା ଦୂର କରିବା ରାଷ୍ଟ୍ରର କର୍ତ୍ତବ୍ୟ । ମାନସିଂହ ଲେଖିଛନ୍ତି–"ଯଦି ଛାତ୍ରାବସ୍ଥାରୁହିଁ ଆମର ଭବିଷ୍ୟତ ଶିକ୍ଷକମାନଙ୍କର ହୃଦୟରେ ଶିକ୍ଷକତାର ମହନୀୟତା ଉଦ୍‌ବୋଧିତ କରି ରଖାଯାଆନ୍ତା, ଯଦି ସରକାର ଏମାନଙ୍କର ସକଳ ଅଭାବ ଅସୁବିଧାର ଦାୟିତ୍ୱ ନିଅନ୍ତେ, ଯେପରି ଖ୍ରୀଷ୍ଟିଆନ ମିଶନ୍ ସବୁ ନିଅନ୍ତି ପାଦ୍ରୀମାନଙ୍କର, ତା ହେଲେ ଆମେ ଏକ ଅନନ୍ୟଚିତ୍ତ, ନିଷ୍ଠାପର ଶିକ୍ଷକ ଗୋଷ୍ଠୀ ସହଜରେ ହୁଏତ ପାଆନ୍ତେ, ଯେଉଁମାନେ ବି ଆନ୍ତରିକତାର ସହିତ ଶିକ୍ଷକତାର ମାଧ୍ୟମରେ ଜାତିର ସେବା କରିବେ ବୋଲି ବିଶ୍ୱାସ କରାଯାଇ ପାରନ୍ତା ।"(24)

ଶିକ୍ଷକ ତା ଅନୁଷ୍ଠାନର ସର୍ବମୟ କର୍ତ୍ତା ନ ହେଲେ, ଶିକ୍ଷାଦାନ ଆଶାନୁରୂପ ଉନ୍ନତି କରିପାରିବ ନାହିଁ । ଶିକ୍ଷକ ହିଁ ଛାତ୍ରମାନଙ୍କ ନିକଟରେ ଏକ ମୂର୍ତ୍ତିମନ୍ତ ଆଦର୍ଶ । ଛାତ୍ରଛାତ୍ରୀମାନଙ୍କର କୋମଳ ମନ ଉପରେ ଶିକ୍ଷକଙ୍କର କ୍ରିୟା କଳାପ ଅଲିଭା ଅକ୍ଷରରେ ଲିପିବଦ୍ଧ ହୋଇଥାଏ । ଏଣୁ ଶିକ୍ଷକର ଦୟନୀୟ ଓ ପ୍ରାଧାନ୍ୟ ହୀନ ଅବସ୍ଥା ଦେଖିଲେ ଛାତ୍ରଛାତ୍ରୀମାନଙ୍କର ଶିକ୍ଷକଙ୍କ ପ୍ରତି ଶ୍ରଦ୍ଧା ଓ ଗୌରବଭାବ ରହିବ ନାହିଁ । ମାନସିଂହଙ୍କ ମତରେ:— "ଯେଉଁ ଦେଶ ଓ ସମାଜରେ 'ଶିକ୍ଷକ ହିଁ ବିଦ୍ୟାଳୟ'–ଶିକ୍ଷାର ଏହି ପ୍ରଧାନତମ ନୀତି ଅକ୍ଷରେ ଅକ୍ଷରେ ଗୃହିତହୋଇନି– ନାହିଁ, ସେଠି ଶିକ୍ଷା ସମାଜର ଅକଲ୍ୟାଣ ନକରି କଲ୍ୟାଣକରିବାର ଆଶା ବୃଥା ତ ହୋଇ ନ ପାରେ ।"(25)

ଶିକ୍ଷାବିତ୍ ମାନସିଂହ ଶିକ୍ଷାର ଉନ୍ନତି ନିମନ୍ତେ ଏକ ପ୍ରସ୍ତାବଦେଇ ଆଶା କରି ଥିଲେ ଯେ, ଆମର ଶିକ୍ଷା–ସମସ୍ୟା ସମାଧାନର ଅନେକ ବାଟ ମଧ୍ୟରୁ ଶିକ୍ଷକକୁ ସ୍ୱାତନ୍ତ୍ର୍ୟ ପ୍ରଦାନ କରାଗଲେ ଶିକ୍ଷାର ଉନ୍ନତି ସମ୍ଭବ ହେବ । ମାନସିଂହଙ୍କ ଭାଷାରେ:—"ସରସ୍ୱତୀ ଯଦି ଶାସକର ଆଜ୍ଞାବହ ହୁଅନ୍ତି ଓ ଶିକ୍ଷକ ସାମାନ୍ୟ ନୌକର ମାତ୍ର ରହନ୍ତି, ତେବେ ଦେଶରେ–'ଶିକ୍ଷା ପ୍ରସାର ବିଦ୍ୟାପ୍ରସାର'ପ୍ରଭୃତି କପଟ ଚିତ୍କାର ଛଡା ଆଉକିଛି ନୁହେଁ । ସରସ୍ୱତୀଙ୍କି ସ୍ୱାଧୀନତା ଦିଅ ଏବଂ ଶିକ୍ଷକଙ୍କୁ ପୁଣି ସେହି ବ୍ରାହ୍ମଣ ରୂପେ, ମିଶନାରୀ ରୂପେ, ତ୍ୟାଗୀ ସନ୍ନ୍ୟାସୀ ରୂପେ ଦେଖ ଓ ସମ୍ମାନ ଦିଅ, ତେବେ ହିଁ ପ୍ରକୃତ ମନୁଷ୍ୟ ଦେଶରେ ଗଢାହେବେ ।"(26)

ଆମର ଶିକ୍ଷା ସମସ୍ୟାର ସମାଧାନର ପଥ ପ୍ରଦର୍ଶିତ କରିବାକୁ ହେଲେ, ଶିକ୍ଷକର ପ୍ରାଧାନ୍ୟକୁ

ଅଗ୍ରାଧିକାର ଦିଆଯିବା ଆବଶ୍ୟକ । ଅବଶ୍ୟ ସେ ଶିକ୍ଷକ, ଶିକ୍ଷକ ଗୁଣ ସମ୍ପନ୍ନ ହେବା ଚାହିଁ, ନହେଲେ ଶିକ୍ଷକ ବେଶଧାରୀ ଶିକ୍ଷାଗୁଣ ବିବର୍ଜିତ ବ୍ୟକ୍ତି ଶିକ୍ଷାନୁଷ୍ଠାନକୁ ଗ୍ରାସ କରିବ । ମାନସିଂହଙ୍କ ମତରେ:—"ଦେଶର ଶିକ୍ଷାନୁଷ୍ଠାନ ଗୁଡିକ ସୁସମୃଦ୍ଧ ଭାବରେ ବଢି ଉଠିବାକୁ ଯଦି ଚାହେଁ, ତେବେ ଶିକ୍ଷକ ତହିଁରେ ଗୌଣ ନହୋଇ ପ୍ରଧାନ କର୍ତ୍ତାବୋଲି ଧରାଯିବା ଉଚିତ । ଶିକ୍ଷକ ଓ ସମାଜ ମଧ୍ୟରେ ସରକାର ବା ମ୍ୟାନିଜିଂ କମିଟି କେହି ହେଲେ ଅବାନ୍ତର ଅନ୍ତରାୟ ରହିବେ ନାହିଁ । ଶିକ୍ଷା ବିଭାଗର ବିଶେଷଜ୍ଞମାନେ କେବଳ ଶିକ୍ଷାର ପଥ ନିର୍ଦ୍ଦେଶ କରିବେ । ପାଠ୍ୟ ପୁସ୍ତକର ନିର୍ବାଚନ, ଦୈନନ୍ଦିନ ପରିଚାଳନା, ଶିକ୍ଷକଙ୍କ ଦରମା, ଛାତ୍ରମାନଙ୍କର ଫିସ୍ ପ୍ରଭୃତି ବିଷୟରେ ପ୍ରତ୍ୟେକ ଅନୁଷ୍ଠାନକୁ ଅର୍ଥାତ ପ୍ରଧାନ ଶିକ୍ଷକ ବା ସଂଘକୁ ନିଜ ଦାୟିତ୍ୱରେ ଛାଡିଦେବା ସର୍ବଥା ଶ୍ରେୟଃ । ଏହି ବିକେନ୍ଦ୍ରୀକରଣ ଫଳରେ ସରକାର ଅନେକ ମୁଣ୍ଡ ବ୍ୟଥାରୁ ରକ୍ଷା ପାଇବା ସଂଗେ ସଂଗେ, ମୋର ଦୃଢ ବିଶ୍ୱାସ ଆମ ସ୍କୁଲମାନଙ୍କରେ ଶିକ୍ଷା ଓ ଶୃଙ୍ଖଳା ଆଶ୍ଚର୍ଯ୍ୟ ଜନକ ଭାବରେ ବଦଳିଯିବ ।"(27)

ଶିକ୍ଷାବିତ୍ ମାନସିଂହ ଶିକ୍ଷାନୁଷ୍ଠାନରେ ଶିକ୍ଷକ ପ୍ରାଧାନ୍ୟ ସମ୍ପର୍କରେ ସୂଚନା ପ୍ରଦାନ କରିବା ସଂଗେ ସଂଗେ ଆଦର୍ଶ ଶିକ୍ଷକଙ୍କର ଆବଶ୍ୟକତା ଅନୁଭବ କରିଛନ୍ତି । ଉତ୍ସର୍ଗୀକୃତ, ସତ୍ୟନିଷ୍ଠ, ଆଦର୍ଶ ଶିକ୍ଷକଙ୍କ ବ୍ୟତୀତ ଶିକ୍ଷାଧାରାର ପରିବର୍ତ୍ତନ ଅସମ୍ଭବ । ମାନସିଂହ ତାଙ୍କ ସୃଷ୍ଟି ସମ୍ପଦର ବିଭିନ୍ନ ଅଂଶରେ ଆଦର୍ଶ ଶିକ୍ଷକଙ୍କୁ ସସମ୍ମାନ ଅଗ୍ରାଧିକାର ଦେଇଛନ୍ତି । ବିଭିନ୍ନ କବିତା ସମେତ, କମଳାୟନ କାବ୍ୟ, ଅନ୍ୱେଷଣ ଉପନ୍ୟାସ ଓ ଶିକ୍ଷା ସମ୍ପର୍କୀୟ ବିଭିନ୍ନ ପୁସ୍ତକରେ ଆଦର୍ଶ ଶିକ୍ଷକର ଲକ୍ଷଣ ନିର୍ଦ୍ଦେଶ କରିଛନ୍ତି । କମଳାୟନ କାବ୍ୟରେ ଉତ୍କଳମଣି ଗୋପବନ୍ଧୁ କମଳର ପିତାଙ୍କ ସମ୍ପର୍କରେ ଯାହା କହିଛନ୍ତି; ତାହା ଗୋପବନ୍ଧୁଙ୍କର ନୁହେଁ, ମାନସିଂହଙ୍କର ମନର କଥା । ଶିକ୍ଷକ ସାମାନ୍ୟ ଅବସ୍ଥାରେ, ମାତ୍ର ଜଣେ ଆଦର୍ଶ ଶିକ୍ଷକ, ମନୁଷ୍ୟ–ଗଠକ, ସାଧୁ, ଦକ୍ଷ, ଧର୍ମ–ଭୀରୁ, କାର୍ଯ୍ୟ–ପରାୟଣ, ଉଦାରମନା ତଥା ଛାତ୍ରଙ୍କ ମଙ୍ଗଳାକାଂକ୍ଷୀ ହେବା ଆବଶ୍ୟକ ।'(28) ଏହି ଆଦର୍ଶ ଶିକ୍ଷକର ସଫଳ ରୂପାୟନ ପାଇଁ, ମାନସିଂହ କମଳାୟନ କାବ୍ୟରେ, କମଳଲୋଚନକୁ ଏକ ଶିକ୍ଷକ ରୂପରେ ଅଧିଷ୍ଠିତ କରାଇଛନ୍ତି । କମଳ ଅଧ୍ୟାପନାର ବ୍ରତ ଗ୍ରହଣ କରି, ସ୍କୁଲ ଓ ଘରେ ଅକାତରେ ବିଦ୍ୟାଦାନ କରି ଚାଲିଛି । ଛାତ୍ରମାନଙ୍କୁ ବୋଧଗମ୍ୟ କରାଇବା ଉଦ୍ଦେଶ୍ୟରେ ନିଜେ ଘରେ ଅଧ୍ୟୟନ କରିଥାଏ । ଛାତ୍ରମାନଙ୍କର ପ୍ରମାଦ ନିମନ୍ତେ ସେମାନଙ୍କୁ ମୃଦୁ ତିରସ୍କାର କରେ । ପିଲାମାନଙ୍କ ସହିତ ଉତ୍ତମ ଭାବରେ ମିଶୁଥିଲେ ମଧ୍ୟ, ନିଜକୁ ସର୍ବଦା ଏକ ସ୍ୱତନ୍ତ୍ର ସ୍ତରରେ ରଖିଥାଏ ।(29) ମାନସିଂହଙ୍କର ନିଜର ଏହି ଆଦର୍ଶ ବ୍ୟକ୍ତିତ୍ୱ ଥିବାରୁ ସେ ଦୃଢ ଭାବରେ ଏହି ମତକୁ ପ୍ରକାଶ କରିଛନ୍ତି । ସେ କେବଳ ଶିକ୍ଷକ ଭାବରେ ନୁହେଁ, ଅନ୍ୟତ୍ର ମଧ୍ୟ ନିଜକୁ ଏକ ସ୍ୱତନ୍ତ୍ର ଦୂରତାରେ ରଖିବାକୁ ଚାହୁଁଥିଲେ, ତେଣୁ ସେ ଭାବୁଥିଲେ ଏହି ଗୁଣ ଶିକ୍ଷକର ଆଦର୍ଶ ହେବା ଉଚିତ ।

ଅନ୍ୟପକ୍ଷରେ ସେ ଚିନ୍ତା କରୁଥିଲେ ଯେ, ଏହି ଦରିଦ୍ର ଦେଶର ଛାତ୍ର ଓ ଶିକ୍ଷକମାନେ, ପ୍ରାଚୀନ ଗ୍ରୀକ୍ ରାଜ୍ୟ ସ୍ପାର୍ଟାର ଶିକ୍ଷକ ଓ ଛାତ୍ରପରି ସରଳ କଠୋର ଜୀବନରେ ହିଁ ଅଭ୍ୟସ୍ତ ରହିବା ଉଚିତ । ଶିକ୍ଷକ ବା

ଶିକ୍ଷାବିତ୍‌ମାନେ ଶିକ୍ଷକ ଓ ଜୀବନ ମଧ୍ୟରେ କୌଣସି ଅନ୍ତର ଦେଖିବା ଉଚିତ ନୁହେଁ ।"ପ୍ରକୃତ ଶିକ୍ଷାବିଦ୍ ନିକଟରେ ଶିକ୍ଷା ଓ ଜୀବନ ଓତପ୍ରୋତ ଭାବରେ ଜଡିତ । ଆମେ ପ୍ରତ୍ୟହ କେବଳ ନୁହେଁ, ଦିନର ପ୍ରତି ମୁହୂର୍ତ୍ତରେ ମଧ୍ୟ ଶିକ୍ଷା–ଲାଭ କରୁଛୁ ଓ ପରୀକ୍ଷାର ସମ୍ମୁଖୀନ ହେଉଛୁ । ପାଶ–ଫେଲ୍, ଜନତାର ବାହବା, ପଦ–ପଦାର୍ଥ–ସିଦ୍ଧି, ନିନ୍ଦା–ନୁହା, ଇତ୍ୟାଦି କ୍ଷିପ୍ର ପଳାୟମାନ ଘଟଣାରାଜି ଜୀବନର ବଡକଥା ନୁହନ୍ତି । ଜୀବନର ମୁଖ୍ୟତମ ଲାଭ ଓ ଲକ୍ଷ୍ୟ ବୋଧହୁଏ, 'ଅଭିଜ୍ଞତା' ଅର୍ଥାତ ଗୋଟିଏ ଦୀର୍ଘଜୀବନର ସୂକ୍ଷ୍ମ ନିର୍ଯାସ, ବା ଘଟଣା ପ୍ରଭାବରୁ ଯାହା ଶେଷତତ୍ତ୍ୱ ହୃଦୟଙ୍ଗମ ହେବା ସେହି ହିଁ ଆମର ପ୍ରକୃତ ଜ୍ଞାନଯୋଗ । ଯେଉଁ ଶିକ୍ଷା ବ୍ୟବସ୍ଥା ଏହି ପ୍ରକାର ପରିବ୍ୟାପ୍ତ ଜୀବନ ଦର୍ଶନ ଉପରେ ପ୍ରତିଷ୍ଠିତ ନୁହେଁ, ସେ ଶିକ୍ଷା କୌଣସି ବ୍ୟକ୍ତି ବା ଜାତିକୁ ସଭ୍ୟ, ଶକ୍ତିମାନ, ସଂସ୍କୃତି ସଂପନ୍ନ, ଉର୍ଦ୍ଧ୍ୱଗ ଓ ପ୍ରଜ୍ଞାବାନ କରିପାରିବ ବୋଲି ଆଶା କରିବା ପାଗଳର ପ୍ରଳାପ ପରି ହେବ ।"(୩୦)

ମାନସିଂହ ଲକ୍ଷ୍ୟ କରିଛନ୍ତି ଯେ, ସ୍ୱାଧୀନତା ପରେ ପରେ ଭାରତବର୍ଷରେ ଶିକ୍ଷକମାନଙ୍କର ନୈତିକ ମାନ କ୍ରମଶଃ ହ୍ରାସ ହେବାପରି ମନେ ହେଉଛି । କେବଳ ସ୍କୁଲ ଶିକ୍ଷକ ନୁହନ୍ତି "ସ୍ୱାଧୀନତା ପରର ଭାରତବର୍ଷରେ ବିଶ୍ୱବିଦ୍ୟାଳୟର ମର୍ଯ୍ୟାଦା ସର୍ବତ୍ର ବେଗ ଅଧୋଗାମୀ ହୋଇଛି, ଏହା ବର୍ତ୍ତମାନ ପ୍ରକାଶ୍ୟ ଆଲୋଚନା ଓ ଚରଚେ କର୍ତ୍ତୃ–ପକ୍ଷଙ୍କର ମସ୍ତକ–ବ୍ୟଥାର କାରଣ ହୋଇଛି । ଏହି ଅଧୋଗତିର ମୁଖ୍ୟ କାରଣ ଏହି ଯେ ଏ ଦେଶରେ ସାଧାରଣ ଲୋକଙ୍କ କଥା ଛାଡ, ବିଶ୍ୱବିଦ୍ୟାଳୟର ତଥା କଥିତ ପ୍ରଫେସରମାନେ ମଧ୍ୟ ବିଶ୍ୱବିଦ୍ୟାଳୟକୁ ଏକାନ୍ତଭାବରେ ଏକ ପୁଣ୍ୟ–ସଂପୂର୍ଣ୍ଣ, ଜ୍ଞାନ–ତପସ୍ୟାର ଓ ଜାତିର–ତରୁଣ–ସମାଜର–ଗଠନ–ପୀଠ ବୋଲି ମନେ ନକରି ତାକୁ ନିଜର ପ୍ରତିଷ୍ଠା ଓ ବୃତ୍ତି ଲକ୍ଷ୍ୟରେ ସହଜଲଭ୍ୟ ଅନୁଗ୍ରହ ବଣ୍ଟନର କ୍ଷେତ୍ରବୋଲି ମନେ କରୁଛନ୍ତି । ଗୁରିଆଡେ ତେଣୁ ବିଶୃଙ୍ଖଳା ।"(୩୧)

ଜଣେ ଶିକ୍ଷକ ବା ଶିକ୍ଷିତ ଲୋକର ତିନୋଟି ଗୁଣକୁ ମାନସିଂହ ଉଲ୍ଲେଖ କରିଛନ୍ତି । ସେ ଆଶା କରିଥିଲେ ଏହି ତିନିଗୋଟି ଗୁଣଯୁକ୍ତ ବ୍ୟକ୍ତି, ଶିକ୍ଷା ବ୍ୟବସ୍ଥାର ପରିବର୍ତ୍ତନରେ ମୁଖ୍ୟତଃ ସହାୟକ ହେବେ ।

ଜଣେ ଶିକ୍ଷିତ ବ୍ୟକ୍ତି:— (କ) ଯେତିକି ଜାଣିଥିବେ ତାହା ଉତ୍ତମ ରୂପେ ଅବଗତ ଥିବେ ।

(ଖ) ସେ ସଂପୂର୍ଣ୍ଣ ଭାବରେ ନୈତିକ ଥିବେ ଅର୍ଥାତ କୌଣସି ପ୍ରକାର ଅସାଧୁ କର୍ମ କରିବା ବା ଅସତ୍ୟ କଥା କହିବା ତାଙ୍କ ପକ୍ଷରେ ସମ୍ଭବ ହେବନାହିଁ ।

(ଗ) ସେ କୌଣସି ଶ୍ରମକୁ ଆନନ୍ଦରେ ଶରୀର ଓ ମନଦେଇ ସ୍ୱୀକାର କରିବେ ।

ଆମ ଦେଶରେ କୌଣସି ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରିବାକୁ ହେଲେ, ଆମେ ଆଗେ ଗୁରୁ, ଯେ କି ଶିକ୍ଷାର ପ୍ରକୃତ ଉତ୍ସ, ତାଙ୍କୁ ନ ଖୋଜି, କୋଠାବାଡିର ଆୟୋଜନରେ ଲାଗିପଡୁ । କୋଠାବାଡି ଠିଆ ହେଲାପରେ ଯାଇ ବଜାରରେ ଯେପରି ମିଳିଲା ସେପରି ଗୁରୁଙ୍କୁ ଗୋଟାଇ ଆଣୁ ଓ ଓ ବିଦ୍ୟାଳୟର ନାନା ଦ୍ରବ୍ୟ ଭିତରେ ସେ ଗୋଟାଏ ଦ୍ରବ୍ୟ ପରି ମାତ୍ର ଆମେ ତାଙ୍କ ପ୍ରତି ବ୍ୟବହାର କରୁ । ଯେଉଁ ଦେଶରେ ଗୁରୁହିଁ ଥିଲା ବିଦ୍ୟାନୁଷ୍ଠାନ, ଆଜି ସେଠାରେ ଏଇ ଅବସ୍ଥା ଦେଖିଲେ ଘୋର ଲଜ୍ଜିତ ହେବାକୁ ହୁଏ । (୩୨)

ଶିକ୍ଷକରସମାଜରେ ଏହିଭଳି ଗୁରୁ ଦାୟିତ୍ୱ ଥିଲେ ମଧ୍ୟ, ଦେଶର ପ୍ରଶାସନ ମୁଖ୍ୟମାନେ ଶିକ୍ଷକଙ୍କ ପ୍ରତି ଏକ ତାଚ୍ଛଲ୍ୟ ଭାବ ପ୍ରଦର୍ଶନ କରନ୍ତି । ସେମାନେ ଶିକ୍ଷକକୁ ଏକ ଆଦର୍ଶ ଶିକ୍ଷକ ହେବାକୁ ଉପଦେଶ ଦେଇ, ତାର ଆର୍ଥନୀତିକ ଦୁରବସ୍ଥା ପ୍ରତି କୌଣସି ଦୃଷ୍ଟିପାତ କରନ୍ତି ନାହିଁ । 'ତଳିଆ ଜୀବର ବିଳାପ'ରେ ମାନସିଂହ ଲେଖିଛନ୍ତି:—

"ବଡ ସାହେବ ବୁଝିବା ଉଚିତ
ମାଷ୍ଟର ବି ପିଲା
ହୁଅନ୍ତି, ଭାତ ଖାଆନ୍ତି, ଭୋକେ
ହୁଅନ୍ତି କିଲିବିଲା ।
ମାଷ୍ଟ୍ର ଘରେ ଗହଣା ଲୋଡା,
ତା ଚୁଲି ଲୋଡେ କାଠ,
ଝିଅର ବର ଲୋଡା ଓ ପୁଅର
ସୋଟା କୋଟ୍, ପାଟ୍"(33)

କ୍ଷମତାରେ ଥିବା ମନ୍ତ୍ରୀ ଓ ବଡସାହେବମାନେ ଶିକ୍ଷକମାନଙ୍କ ପ୍ରତି କିପରି ତାଚ୍ଛଲ୍ୟ ଭାବ ପ୍ରଦର୍ଶନ କରନ୍ତି ମାନସିଂହ ତାଙ୍କର 'ଶାସନଚକ୍ର'ଏକାଙ୍କିକାରେ ସ୍ପଷ୍ଟ ଭାବରେ ଉଲ୍ଲେଖ କରିଛନ୍ତି । ପୁଣି ଯେଉଁମାନେ କୌଣସି ବୃତ୍ତି ପ୍ରତି ଯୋଗ୍ୟ ବିବେଚିତ ହୁଅନ୍ତି ନାହିଁ, ସେମାନେ ଶିକ୍ଷକ ଭାବରେ ଯୋଗ ଦେଉଥିବାରୁ ଶିକ୍ଷକର ମାନ ସମାଜରେ ହ୍ରାସ ହୋଇଯାଉଛି ଓ ଲୋକମାନଙ୍କର ଶିକ୍ଷକମାନଙ୍କ ପ୍ରତି ସମ୍ମାନବୋଧ ତଥା ଆସ୍ଥା କ୍ରମଶଃ କମି କମି ଆସୁଛି ।'ସ୍ୱରାଜ୍ୟାଶ୍ରମ'କବିତା ସଂକଳନରେ ମାନସିଂହ ବିଦ୍ରୂପ କରି ଲେଖିଛନ୍ତି :—

"ନିତାନ୍ତ ଯଦି ସ୍ପୃହଁ କରିବ କିଛି,
ଇସ୍କୁଲ ମାଷ୍ଟ୍ର କାମ ପଡି ରହିଛି ।
ଗଣନ୍ତି ନାହିଁ କାର୍ଯ୍ୟ ବୋଲି ତାହାକୁ
ଆମ ଶାସନେ ଯେତା ହୁଏ ତୁଚ୍ଛାକୁ ।"(34)

ସଂସ୍କୃତି ଠାରୁ ତାର ଅନ୍ତର୍ଭୁକ୍ତ ସ୍ରଷ୍ଟା ଜନସାଧାରଣକୁ, କବିତା ଠାରୁ ତାର ସ୍ରଷ୍ଟା କବିଙ୍କୁ ବିଚ୍ଛିନ୍ନ କରିବା ଯେଉଁଳି ସମ୍ଭବ ନୁହେଁ, ଶିକ୍ଷାଠାରୁ ଶିକ୍ଷକକୁ ସେଉଳି ବିଚ୍ଛିନ୍ନ କରିବା ମଧ୍ୟ ସମ୍ଭବ ନୁହେଁ । ଶିକ୍ଷକ ମାନବ ସମାଜର ଅତୀତ ପୁଞ୍ଜାର ଉତ୍ତରାଧିକାରୀ ଓ ଭବିଷ୍ୟତର ପଥ ନିର୍ଦ୍ଦେଶକ । ସମାଜର ଅନ୍ୟାନ୍ୟ ଗୋଷ୍ଠୀ ଏହି କାର୍ଯ୍ୟ କରିବାକୁ ଅକ୍ଷମ, ସେଇଥିପାଇଁ ସମାଜର ସର୍ବୋତ୍ତମ ଜ୍ଞାନମୟ ପୁରୁଷକୁ ଶିକ୍ଷକରୂପେ ନିଯୁକ୍ତ କରାଯିବା ବିଧେୟ । କିନ୍ତୁ ଏହି ତପସ୍ୟାକୁ ଜଣେ ବରଣ କରିବ କାହିଁକି ? ସମାଜରେ ଯଦି ତାର ସ୍ଥାନ ସେହି ଅନୁସାରେ ନିର୍ଣ୍ଣିତ ନ ହୁଏ । ସେଇଥି ପାଇଁ ଶ୍ରେଣୀ ବିଭକ୍ତ ସମାଜରେ ଶିକ୍ଷକର ସ୍ଥାନ କେଉଁଠି, ସେଥିନେଇ ବାରମ୍ବାର ତର୍କ ଆସିଛି । ବାକ୍ୟତଃ ଶିକ୍ଷକର

ଭୂମିକାକୁ ସମସ୍ତେ ସ୍ୱୀକାର କରୁଥିଲେ ବି, କାର୍ଯ୍ୟତଃ ଶିକ୍ଷକକୁ ସେହି ସମ୍ମାନ ଦେବାପାଇଁ ସତତ ପରାଙ୍ମୁଖ । ଅତୀତ ଭାରତରେ ବା ମଧ୍ୟ–ଯୁଗୀୟ ଇଉରୋପରେ ଶିକ୍ଷା ଏକ ନିର୍ଦ୍ଦିଷ୍ଟ ସଂକୀର୍ଣ୍ଣ ଗୋଷ୍ଠୀପାଇଁ ଅଭିପ୍ରେତ ଥିବାରୁ, ଶିକ୍ଷକକୁ ବ୍ରାହ୍ମଣର ତପସ୍ୟା ଭିତରେ ବା ମିଶନାରୀର ନିର୍ଲୋଭ ସାଧନା ଭିତରେ ଦେଖିବାକୁ ସମ୍ଭବ ହେଉଥିଲା । ରେନେସାଁ ପରବର୍ତ୍ତୀ ଇଉରୋପ ଓ ଊନବିଂଶ ଶତାବ୍ଦୀ ପରବର୍ତ୍ତୀ ଭାରତରେ ଶିକ୍ଷକର ମର୍ଯ୍ୟାଦା ଦାନ ନେଇ ଓ ତାର ସ୍ୱାତନ୍ତ୍ର୍ୟ ନେଇ ବାରମ୍ବାର ପ୍ରଶ୍ନ ଆସିଛି । ମାନସିଂହ ସେ ସବୁ ପ୍ରଶ୍ନକୁ ମଧ୍ୟ ଏକ ଭାବମୟ ଦୃଷ୍ଟି ନେଇ ଆଲୋଚନା କରିଛନ୍ତି । ସେ ଶିକ୍ଷକକୁ ସର୍ବୋତ୍ତମ ସମ୍ମାନ ଦେବା କଥା କହିଲାବେଳେ, ଯେଉଁ ସମାଜ ଭିତରେ ଆମେ ବଞ୍ଚିଛେ, ସେଇ ସମାଜ ଭିତରେ ଶିକ୍ଷକର ଯେ ସ୍ୱତନ୍ତ୍ର କିଛି ଭୂମିକା ନାହିଁ, ସେ ନିଯୁକ୍ତିପ୍ରାପ୍ତ ଜଣେ ଶିକ୍ଷା ବିକ୍ରେତା ମାତ୍ର, ସେ କଥା ସେ ବୁଝି ପାରି ନାହାନ୍ତି । । ଶିକ୍ଷକର ଆଦର୍ଶରୂପେ ଯେଉଁ ଗୁଣକୁ ସେ ଅବତାରଣା କରିଛନ୍ତି, ସେ ଗୁଣ ଜଣେ ଆଦର୍ଶବୋଧରେ ଅନୁପ୍ରାଣିତ ନହେଲେ ବା ନିପୀଡିତ ନ ହେଲେ ଗ୍ରହଣ କରିବ ନାହିଁ । ଜୀବନରେ ସମସ୍ତେ ସୁଖ ସମୃଦ୍ଧି ସ୍ୱଚ୍ଛନ୍ଦ–ଭଲରେ ବଞ୍ଚିବାକୁ ଚାହାନ୍ତି, ଯନ୍ତ୍ରଣା ପାଇବା ପାଇଁ କେହି ଇଚ୍ଛା କରନ୍ତି ନାହିଁ । ଶିକ୍ଷକର ଜୀବନ ଭାରତରେ ଏକ ଯନ୍ତ୍ରଣା କ୍ଲିଷ୍ଟ ଜୀବନ, ତାକୁ ଯୋର ଜବରଦସ୍ତ ଆଦର୍ଶ ଶିଖାଯାଏ । ପୂର୍ବରୁ କ୍ଷମତା ଜଣେ ରଜା ବା ତାର ପରିବାର ଭିତରେ କେନ୍ଦ୍ରୀଭୂତ ଥିଲା । ବର୍ତ୍ତମାନ କାଳରେ ସେହି କ୍ଷମତା ବିଭିନ୍ନ ପ୍ରଶାସକ ଗୋଷ୍ଠୀ ହାତକୁ କ୍ରମଶଃ ଚାଲି ଆସିଛି । ସେହି ପରିବର୍ତ୍ତନ ଫଳରେ ରାଜନୀତିଜ୍ଞ ପ୍ରଶାସକମାନଙ୍କ ଠାରୁ ଶିକ୍ଷକର ସାମାଜିକ ମର୍ଯ୍ୟାଦା ନ୍ୟୁନ ହୋଇଛି ଓ ହେବା ସ୍ୱାଭାବିକ ମଧ୍ୟ । ଶିକ୍ଷକ ଯେ ପର୍ଯ୍ୟନ୍ତ ନିଜର ପ୍ରାତିସ୍ୱିକତାକୁ ଅନୁଭବ କରି ନ ପାରିବେ, କେବଳ ସୁବିଧାଭୋଗୀ ଗୋଷ୍ଠୀର ଅନ୍ତର୍ଭୁକ୍ତ ହେବା ପାଇଁ ଆପ୍ରାଣ ଚେଷ୍ଟା କରୁଥିବେ ଓ ଗଣ ରାଜନୀତି ଯୁଗରେ କ୍ଷମତାର କୌଣସି ଅଂଶୀଦାର ହୋଇ ନପାରିବେ ସେ ପର୍ଯ୍ୟନ୍ତ ସେ ମାନସିଂହଙ୍କ ଭଳି ଆର୍ତ୍ତ ଚିତ୍କାର କରୁଥିବେ । ଶିକ୍ଷକତା ସମ୍ପର୍କରେ ଲମ୍ବା ଲମ୍ବା ଭାଷଣ ଦେଲା ପରେବି ମାନସିଂହ ଶିକ୍ଷକ ହେବା ଅପେକ୍ଷା ଶିକ୍ଷା ପ୍ରଶାସକ ହେବାକୁ ବେଶି ଚେଷ୍ଟା କରୁଥିଲେ । ତାଙ୍କ ବ୍ୟକ୍ତିତ୍ୱର ଏ ଦ୍ୱୈତଧାରା ପ୍ରତି ତାଙ୍କ ସମସାମୟିକ ବନ୍ଧୁମାନେ ପ୍ରଶଂସମାନ ନଥିଲେ । ବରଂ କବି ମାନସିଂହ ଶିକ୍ଷକତା କାଳରେ ଶିକ୍ଷକମାନଙ୍କଠାରୁ ଦୂରେଇ ରହୁଥିବା ଅପବାଦ ରଟିତ ହେଉଥିଲା ।

<u>ଶିକ୍ଷାୟତନ :–</u>

ଶିକ୍ଷାଦାନ ନିମନ୍ତେ ପ୍ରଥମ ଆବଶ୍ୟକ ଶିକ୍ଷକ ଓ ପରବର୍ତ୍ତୀ ଆବଶ୍ୟକତା ରହିଛି ଶିକ୍ଷାୟତନର । ପରିବେଶ ଶିକ୍ଷାର୍ଥୀ ମନରେ ଶିକ୍ଷା ଗ୍ରହଣ ନିମନ୍ତେ ଭୂମି ପ୍ରସ୍ତୁତ କରେ । ଏହି ଭୂମିର ଅଭାବରେ ଶିକ୍ଷାଦାନ ଓ ଗ୍ରହଣ ଅସଂପୂର୍ଣ୍ଣ ରହିଯାଏ । ମାନସିଂହଙ୍କ ପୂର୍ବରୁ ଏକ ରୋମାଣ୍ଟିକ୍ ଭାବପ୍ରବାହ ସମଗ୍ର ଇଉରୋପ ଓ ଭାରତର ଚିତ୍ତକୁ ଅଧିକାର କରିଥିଲା । ପ୍ରକୃତି ଭିତରେ ମାନବ ଜୀବନର ମହତ୍ତମ ସତ୍ତା ନିହିତ, ଏହିଭଳି ଏକ ବିଶ୍ୱାସ ରସ୍କିନ୍ଙ୍କ ଠାରୁ ଟଲଷ୍ଟୟଙ୍କ

ପର୍ଯ୍ୟନ୍ତ, ଭାରତର ରବୀନ୍ଦ୍ରନାଥଙ୍କଠାରୁ ଗୋପବନ୍ଧୁଙ୍କ ପର୍ଯ୍ୟନ୍ତ ବହୁ ଚିନ୍ତାନାୟକଙ୍କ ମନକୁ ଅଧିକାର କରିଥିଲା । ମାନସିଂହ ତାଂକର ବିଭିନ୍ନ ପୁସ୍ତକ ଓ ପ୍ରବନ୍ଧରେ ଶିକ୍ଷାର ନବ ସ୍ୱରୂପ ବିଶିଷ୍ଟତା ଓ ତାର ଆଦର୍ଶ ସମ୍ପର୍କରେ ନିଜର ମନ୍ତବ୍ୟ ପ୍ରକାଶ କରିଛନ୍ତି । ଶିକ୍ଷାୟତନ ସମ୍ପର୍କରେ ମାନସିଂହଙ୍କ ଚିନ୍ତାଧାରାକୁ ଜାଣିବାକୁ ହେଲେ, ପ୍ରଥମେ ତାଂକ ଦ୍ୱାରା ଅନୁବାଦିତ 'ଗ୍ରାମୋନ୍ନତିର ରୋମାଞ୍ଚକର କାହାଣୀ' ପଢିବାକୁ ହେବ । ଉକ୍ତ ପୁସ୍ତକର ଲେଖକ, ଡବ୍ଲିଉ.ଏସ୍.ଡଟନ୍ ,ଜଣେ ଆମେରୀକୀୟ ମହିଳା ମିସେସ୍ ଆଲିଡ୍ ଲୟେଡ଼ଙ୍କ ଦ୍ୱାରା କାନେ କଲେଜ ପ୍ରତିଷ୍ଠା ଓ କଲେଜ ସନ୍ନିହିତ ଗ୍ରାମର ବିକାଶ କାହାଣୀ ଉପସ୍ଥାପିତ କରିଛନ୍ତି । ଶିକ୍ଷାୟତନ ନିଜ ଭିତରେ ନିଜେ ସମ୍ପୂର୍ଣ୍ଣ ହୁଏ ନାହିଁ, ଶିକ୍ଷକ ଓ ଶିକ୍ଷାର୍ଥୀ ପାରସ୍ପରିକ ଆନନ୍ଦ ପ୍ରଦାନ ମାଧ୍ୟମରେ ପାରିପାର୍ଶ୍ୱିକ ଜୀବନକୁ ସୁନ୍ଦର ଓ ବିକାଶପ୍ରାପ୍ତ କରନ୍ତି ଉକ୍ତ ପୁସ୍ତକରେ ଏହି କଥା ହିଁ ଉଲ୍ଲିଖିତ । ଏହି ପୁସ୍ତକରେ ମିସେସ୍ ଆଲିଡ୍‌ଙ୍କ ସାଧନାଦ୍ୱାରା କିପରି ଅନୁନ୍ନତ ଅଞ୍ଚଳରେ ଆଲୋକ ପ୍ରବେଶ କରିଛି, ସେ ବିଷୟ ବର୍ଣ୍ଣନା କରିବା ସଂଗେ ସଂଗେ ସେଠାକାର ଶିକ୍ଷା ବ୍ୟବସ୍ଥା ସମ୍ପର୍କରେ ନାନା ମତ ଉଲ୍ଲେଖ କରିଛନ୍ତି । ତନ୍ମଧ୍ୟରୁ ଭାରତୀୟ ପରିବେଶରେ ସୁହାଇଲା ଭଳି ଶିକ୍ଷାୟତନର ସଂସ୍କାର ସମ୍ପର୍କରେ ମାନସିଂହ କେତେକ ମତର ଉପ-ସ୍ଥାପନ କରିଛନ୍ତି । ପ୍ରତ୍ୟେକ ଶିକ୍ଷାୟତନ ସେହି ଅଞ୍ଚଳର ପାରିପାର୍ଶ୍ୱିକ ପରିବେଶ ଓ ସଂସ୍କୃତିକୁ ଆଧାର କରି ଗଢାଯିବା ଉଚିତ, ଯାହାକୁ ସ୍ଥାନୀୟ ଅଧିବାସୀମାନେ ସେମାନଙ୍କର ସାଂସ୍କୃତିକ ପ୍ରାଣକେନ୍ଦ୍ର ଭାବରେ ଗ୍ରହଣ କରିନେବେ । ତତ୍ ସଂଗେ ସଂଗେ "ଜିଲ୍ଲାର ସର୍ବୋଚ୍ଚ ଶିକ୍ଷାନୁଷ୍ଠାନର ମୁଖ୍ୟ-କର୍ତ୍ତା ଜିଲ୍ଲାର ସମଗ୍ର ଶିକ୍ଷା ବ୍ୟବସ୍ଥାର ସର୍ବୋଚ୍ଚ ପରିଚାଳକ ହେବା ଉଚିତ୍ । ଏହାର ଫଳ ଏଇ ହେବ ଯେ, ପ୍ରାଇମେରୀଠାରୁ କଲେଜ ଯାଏ, ପିଲାଏ ଗୋଟିଏ ଲକ୍ଷ୍ୟ, ଗୋଟାଏ ଆଦର୍ଶ, ଗୋଟାଏ ପଦ୍ଧତିରେ ଗଢିହୋଇ ଆସିବେ । କାନେ ରେ ସେଇଆ ହୋଇଛି । ଆମ ଦେଶରେ କଲେଜ ଦୋଷ ଦେଉଛି ହାଇସ୍କୁଲକୁ, ହାଇସ୍କୁଲ ଦୋଷ ଦେଉଛି ପ୍ରାଇମେରୀକୁ । ଏବଂ ପ୍ରାଇମେରୀ ବକିବାରେ ଲାଗିଛି ସରକାରଙ୍କୁ କାହାର କାହାସଂଗେ ପରିଚୟ ବା ସମ୍ପର୍କ ନାହିଁ । ସମସ୍ତଂକୁ ଏକାଠି କରି ଏକ ଲକ୍ଷ୍ୟ, ଏକ ଆଦର୍ଶରେ ଅନୁପ୍ରାଣିତ ଓ ପରିଚାଳିତ କରିବାର କୌଣସି ଅନୁଷ୍ଠାନ ନାହିଁ । ସେଣେ ପୁଣି ପ୍ରତି ସ୍କୁଲ ବା କଲେଜ ନିଜ ନିଜ ପାରିପାର୍ଶ୍ୱିକ ସମାଜ ସହିତ ସମ୍ପର୍କହୀନ ।"(୩୫)

ତତ୍ପର ମାନସିଂହ ଆଲିଡ୍ ଲୟେଡ଼ଙ୍କ ସ୍କୁଲକୁ ଆଦର୍ଶ ଶିକ୍ଷାନୁଷ୍ଠାନ ଭାବରେ ବର୍ଣ୍ଣନା କରି ତାହାର କେତେକ ବୈଶିଷ୍ଟ୍ୟ ସମ୍ପର୍କରେ ଉଲ୍ଲେଖ କରିଛନ୍ତି :-

ପ୍ରଥମତଃ ସେ ସ୍କୁଲ ସ୍ଥାନୀୟ ସମାଜ ଓ ଅଞ୍ଚଳ ସହିତ ଓତଃପ୍ରୋତ ଭାବରେ ଜଡିତ ତଥା ସମସୂତ୍ରରେ ଗ୍ରଥିତ । ଆମ ସ୍କୁଲ ଗୁଡିକ ସାଧାରଣ ଜୀବନ ଯାପନ, ବେଶପୋଷାକ, ପାରିପାର୍ଶ୍ୱିକ ଅବସ୍ଥାଠାରୁ ଭିନ୍ନ । ଆମର ଶିକ୍ଷାୟତନ ପ୍ରାଥମିକ ଠାରୁ ଉଚ୍ଚତର ପର୍ଯ୍ୟନ୍ତ ସବୁଠାରେ ସମ୍ପର୍କ ଶୂନ୍ୟ ।

ଦ୍ୱିତୀୟ କଥା କାନେ ସ୍କୁଲ ବା କଲେଜ ସାର୍ଟିଫିକେଟ ଯୋଗାଡ ଲକ୍ଷ୍ୟରେ ବସାଯାଇ ନାହିଁ । ନିଜ ମାଟିକୁ ଶ୍ରୀସମ୍ପନ୍ନ ଓ ସମୃଦ୍ଧ କରିବା ତାର ଲକ୍ଷ୍ୟ ।

ତୃତୀୟ କଥା– ସେଠାରେ କେହାରେ ଫିସ୍ ନିଆଯାଏ ନାହିଁ । ଫିସ୍ ନିଅନ୍ତି ବୁଦ୍ଧି, ବିଚକ୍ଷଣତା, ପ୍ରଜ୍ଞା, ଚରିତ୍ର ପୁଣି ଶ୍ରମରେ । ଅସଲ ଫିସ୍ ହେଉଚ୍ଛି ମାନସିକ ଓ ଶାରୀରିକ ଶକ୍ତି ।

ଚତୁର୍ଥ କଥା—ବର୍ଥିବାର ସାରଲ୍ୟ ଓ ଶ୍ରମ-ସମ୍ମାନ । ଧନୀ ଦରିଦ୍ର ନିର୍ବିଶେଷରେ ସମସ୍ତେ ଶ୍ରମ କରିକି ସମବସ୍ତ୍ର ହୋଇ ଚଳିବେ । ସ୍କୁଲର ନିର୍ଦ୍ଧାରିତ ବସ୍ତ୍ର ଛଡା ଅନ୍ୟବସ୍ତ୍ର ବ୍ୟବହାର କରିପାରିବେ ନାହିଁ ।

ପଞ୍ଚମ କଥା– ସ୍କୁଲ କଲେଜର ପାଠ୍ୟ ନିର୍ଘଣ୍ଟ ସେ ପାରିପାର୍ଶ୍ୱିକ ସୁବିଧା ଅନୁସାରେ, ନିଜେ ତିଆରି କରନ୍ତି । ତେଣୁ ଲୋକେ ଅନୁଷ୍ଠାନକୁ ନିଜର ବୋଲି ଭାବନ୍ତି । ଆମ ଦେଶର ସ୍କୁଲରେ ଶିକ୍ଷକ, ସିଲାବସ୍, ପାଠ୍ୟବହି, ପରୀକ୍ଷା, ସବୁ ଉପରୁ ଲଦା ହେଉଚ୍ଛି, ତେଣୁ ସ୍କୁଲ ସବୁର ଚେର ମାଟିକୁ ପଶିପାରୁ ନାହିଁ ।

ଡକ୍ଟର ମାୟାଧର ମାନସିଂହ ସ୍କୁଲ ଇନ୍‌ସ୍ପେକ୍ଟର ଓ ଗଙ୍ଗାଧର ମେହେର କଲେଜର ପ୍ରିନ୍‌ସିପାଲ ଥିବା ସମୟରେ ମିସେସ୍ ଆଲିଶ୍ ବୟେଡ୍‌ଙ୍କ ସ୍କୁଲ ଢାଞ୍ଚାର ପ୍ରୟୋଗ କରିବାକୁ ଚେଷ୍ଟା କରିଥିଲେ । ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ ପୁସ୍ତକରେ ସେ ସମ୍ପର୍କରେ ବିସ୍ତୃତ ବିବରଣୀ ରହିଛି ।

ଡଃ ମାନସିଂହ ଆମଦେଶର ଶିକ୍ଷାୟତନର ସଂସ୍କାର ସମ୍ପର୍କରେ ମତାମତ ପ୍ରଦାନ କରି କହନ୍ତି:—

1–ପ୍ରତ୍ୟେକ ଶିକ୍ଷାନୁଷ୍ଠାନ (ପ୍ରାଇମେରୀ, ହାଇସ୍କୁଲ ବା କଲେଜ) ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳର ସାମୂହିକ ଜୀବନର କେନ୍ଦ୍ରରୂପେ ବିବେଚିତ ଓ ବ୍ୟବସ୍ଥିତ ହେବେ । ପୁଣି ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳର ଯେତେପ୍ରକାର ଶିକ୍ଷାନୁଷ୍ଠାନ ସମସ୍ତଙ୍କର ସମନ୍ୱୟ କରି ସମସ୍ତ ଅଞ୍ଚଳର ଶିକ୍ଷା ବ୍ୟବସ୍ଥାକୁ ଗୋଟିଏ କେନ୍ଦ୍ରରୂପେ ଗଢାଯାଇ ଗୋଟିଏ ଲକ୍ଷ୍ୟ ଓ ଗୋଟିଏ ଆଦର୍ଶରେ ସେ ଗୁଡିକ ଅନୁପ୍ରାଣିତ କରାଯିବ ।

2– ପ୍ରତ୍ୟେକ ଶିକ୍ଷାନୁଷ୍ଠାନକୁ ଯଥା ସମ୍ଭବ ସ୍ୱାଧୀନ ଓ ସ୍ୱୟଂସମ୍ପୂର୍ଣ୍ଣ ଭାବରେ ଗଢିବାକୁ ଦିଆଯିବ । ଶିକ୍ଷକମାନେ ପୂର୍ଣ୍ଣ ସ୍ୱାଧୀନ ହେବେ । କେଉଁ ପାଠ୍ୟ ପୁସ୍ତକ ଗ୍ରହଣ କରିବେ ବା ନକରିବେ, ନିଜ ଶିକ୍ଷାଦାନ ବିଧି ଗଢିବାର ବା ଶିକ୍ଷା ବିଭାଗର ସିଲାବସ୍‌ରେ ସ୍ଥାନୀୟ ପ୍ରୟୋଜନ ଅନୁଯାୟୀ ଅଦଳ ବଦଳ କରିବାରେ ସେମାନେ ପୂରା ସ୍ୱାଧୀନ ରହିବା ଉଚିତ ।

3– କୌଣସି ହେଲେ ଛାତ୍ର ବା ଛାତ୍ରୀଠାରୁ ବେତନ ନିଆଯିବ ନାହିଁ—ଶିକ୍ଷାର କୌଣସି ସ୍ତରରେ ଶିକ୍ଷାନୁଷ୍ଠାନର ପ୍ରବେଶର ଏକମାତ୍ର ଫିସ୍ ହେବ ବୁଦ୍ଧି ଓ ଚରିତ୍ରର ଉତ୍କର୍ଷ । ପାଠର ମାନଦଣ୍ଡ ବରାବର ଉଚ୍ଚବହିବ, ଯେପରିକି ତାହା ଯେ କୌଣସି ସ୍ଥାନରେ ସମ୍ମାନ ପାଇବ ।

4– ଶିକ୍ଷାନୁଷ୍ଠାନ ମାନଙ୍କରେ ଦୈନନ୍ଦିନ ଜୀବନ ପରିଚାଳିତ ହେବ ଛାତ୍ର ଛାତ୍ରୀଙ୍କ ଦୈହିକ ଶ୍ରମ ଉପରେ । ସଂଯମ ଓ ସାରଲ୍ୟ ବିଦ୍ୟାଳୟ ଜୀବନର ପ୍ରଧାନ ନୀତି ହେବ । ଧନୀ ଦରିଦ୍ର ସମସ୍ତେ ଏକ ଖାଦ୍ୟ ଖାଉବେ । ଏକ ବସନ ପିନ୍ଧିବେ ଓ ଏକ ଜୀବନଯାପନ କରିବେ ।

5– ଯେଉଁମାନେ ବୁଦ୍ଧି, ବିଦ୍ୟା ଓ ଚରିତ୍ରରେ ଉତ୍କୃଷ୍ଟ ବିବେଚିତ ହେବେ, କର୍ତ୍ତୃପକ୍ଷ ସେମାନଙ୍କର

ସମସ୍ତ ଖର୍ଚ୍ଚ ବହନ କରିବେ । ପୁଣି ପ୍ରତି ଛାତ୍ର ବା ଛାତ୍ରୀଙ୍କ ଠାରୁ ପ୍ରତିଶ୍ରୁତି ନିଆଯିବ ଯେ, ସେମାନେ ନିଜ ମାଟିକୁ ଉନ୍ନତ କରିବା ପାଇଁ ଯଥାଶକ୍ତି ଚେଷ୍ଟା କରିବେ ।

ମାନସିଂହଙ୍କ ପ୍ରସ୍ତାବ ଗୁଡିକ ଏକ ଇଉଟୋପିଆ ଉପରେ ପ୍ରତିଷ୍ଠିତ । ଅତୀତରେ ଇଉରୋପୀୟ ବିଶ୍ୱବିଦ୍ୟାଳୟ ଗୁଡିକ ଧନାଢ୍ୟ ବ୍ୟକ୍ତିମାନଙ୍କର ଦାନରେ ସମୃଦ୍ଧ ହୋଇ ରାଷ୍ଟ୍ର ଓ ଚର୍ଚ୍ଚ କବଳରୁ ମୁକ୍ତି ଲାଭ କରି ବିଦ୍ୟାର ସର୍ବୋଚ୍ଚ ଅନୁଷ୍ଠାନ ରୂପେ ଗଢି ଉଠିଥିଲା । ଖ୍ରୀ: 1857 ରେ ଭାରତୀୟ ବିଶ୍ୱବିଦ୍ୟାଳୟ ଗୁଡିକର ପ୍ରତିଷ୍ଠା କାଳରେ ବିଶ୍ୱବିଦ୍ୟାଳୟ ଗୁଡିକ ବାହ୍ୟତଃ ସ୍ୱୟଂଶାସିତ ଓ ସ୍ୱାଧୀନ ବୋଲି ଘୋଷଣା କରାଯାଇଥିଲା । ପ୍ରକୃତ ବିଦ୍ୟାଚର୍ଚ୍ଚା ପାଇଁ ସ୍ୱାଧୀନତା ଓ ଆତ୍ମ ସଂଯମ କାମ୍ୟ, ଆମର ବିଶ୍ୱବିଦ୍ୟାଳୟ ଗୁଡିକ କିନ୍ତୁ ସେହି ସଂଯମ ବା ଶୃଙ୍ଖଳା ଭିତରେ ରହିପାରି ନାହିଁ । ମୂଲ୍ୟବୋଧର ଅଧୋଗତି ଫଳରେ ଭାରତର ଉଚ୍ଚତମ ବିଦ୍ୟାୟତନ ଗୁଡିକ ଆଜି କ୍ଷୟରୋଗରେ ଆକ୍ରାନ୍ତ, ମାନସିଂହ ଏଥିପାଇଁ ଦୁଃଖପ୍ରକାଶକରି ଲେଖିଛନ୍ତି:—"ବିଶ୍ୱବିଦ୍ୟାଳୟ ହେଲା ଦେଶର ତରୁଣ ସମାଜକୁ ମାନବୀୟ କରି ଗଢି ବାହାର ଜଗତକୁ ଛାଡି ଦେବାର ସାଧନା ପୀଠ । କେବଳ ଅଭିଶପ୍ତ ଭାରତବର୍ଷରେ କଲେଜ ବା ବିଶ୍ୱବିଦ୍ୟାଳୟକୁ ଯେ କୌଣସି ମତେ ଡିଗ୍ରିଏ ଦୁଇଟିଏ ଡିପ୍ଲୋମା ମାରିନେବାର ଏକପ୍ରକାର ବିଜିନେସପ୍ଲାନ ପ୍ରତିଷ୍ଠା ବୋଲି ଧରାଯାଏ ।"(36)

ଦୀର୍ଘ ତିରିଶ ବର୍ଷତଳେ ମାନସିଂହ ଯେଉଁ ଆଶଙ୍କା କରୁଥିଲେ, ବର୍ତ୍ତମାନ ସେ ଅନୁଷ୍ଠାନ ଗୁଡିକ ତଦପେକ୍ଷା ଆହୁରି ନିକୃଷ୍ଟ ରୂପ ଧାରଣ କଲାଣି । ମାନସିଂହ ସେତେବେଳେ ବିଶ୍ୱବିଦ୍ୟାଳୟର ଲକ୍ଷ୍ୟ ସମ୍ପର୍କରେ ମତ ପ୍ରଦାନ କରିଥିଲେ:—"ବିଶ୍ୱବିଦ୍ୟାଳୟର ଏକମାତ୍ର ଲକ୍ଷ୍ୟ ଯେଣୁ ହେବା ଉଚିତ ଜାତିର ତରୁଣ ସମାଜକୁ ମାନବୀୟ, ଉନ୍ନତ ଓ ବଳିଷ୍ଠ ମନୁଷ୍ୟ କରି ଗଢିବା ତେଣୁ ସେଠାରେ ପାଠ୍ୟକ୍ରମ, ଅଧ୍ୟାପକ ନିର୍ବାଚନ, ଅଧ୍ୟାପନା ଓ ପରୀକ୍ଷାର ପ୍ରକାର ସମସ୍ତ ହିଁ ସେହି ଲକ୍ଷ୍ୟରେ ସଂଗଠିତ ହେବା କଥା । ସଦ୍ୟ ଶସ୍ତା ଲାଭ ପାଇଁ କୌଣସି ବିଭାଗରେ ହେଲେ ଲକ୍ଷ୍ୟର ମାନବିନ୍ଦୁକୁ ତଳକୁ ଖସେଇ ଦେବା, ଛାତ୍ର, ଅଧ୍ୟାପକ ବା କର୍ତ୍ତୃପକ୍ଷଙ୍କର ବାହାରି କଳ୍ପନାକୁ ମଧ୍ୟ ଆସିବାର କଥା ନୁହେଁ । ପାଠ୍ୟକ୍ରମ, ଅଧ୍ୟାପନା, ପରୀକ୍ଷା ଓ ଅଧ୍ୟାପକର ଜ୍ଞାନ ଓ ବ୍ୟକ୍ତିତ୍ୱ,—କେଉଁଠାରେ ହେଲେ ମାନବିନ୍ଦୁକୁ ତଳକୁ ଖସାଇନା ଯାଉଁକି, ତାହା ଜାତିର ଆଗାମୀ ବଂଶଧର ଉପରେ ସମୂହ ଭାବରେ ମାରାତ୍ମକ ପ୍ରତିକ୍ରିୟା ସୃଷ୍ଟି କରିବ ।"(37) ଅତ୍ୟନ୍ତ ପରିତାପର କଥା ସ୍ୱର୍ଗତ ମାନସିଂହ ଯେଉଁ ଆଶଙ୍କା ପ୍ରକାଶ କରୁଥିଲେ ବର୍ତ୍ତମାନ ଅଧିକାଂଶ ଅନୁଷ୍ଠାନ ସେହିପରି ନିମ୍ନଗାମୀ ହୋଇଗଲାଣି ।

**ଶିକ୍ଷାବିତ୍ ମାନସିଂହ.....**

ମାନସିଂହଙ୍କ ଶିକ୍ଷା ସଂପର୍କରେ ବିଚାରଧାରା, କେତେକ ସମୟରେ ଅଧ୍ୟୟନ ଅନ୍ୟ କେତେକ ସମୟରେ ମନନରୁ ଉଦ୍‌ଭୂତ ହୋଇଥିଲେ ହେଁ, ସେ ସବୁର ମୂଳସ୍ରୋତ ତାଙ୍କର ବ୍ୟକ୍ତିଗତ ଜୀବନରୁ ଉତ୍ସାରିତ । ମାନସିଂହଙ୍କର ବ୍ୟକ୍ତିତ୍ୱ ଏକ ଭାବ ବିହ୍ୱଳ ଶିକ୍ଷକର ବ୍ୟକ୍ତିତ୍ୱ । ଆଦର୍ଶବାଦିତା, ସମ୍ମୋହ ପୁଣି ଦୂରତ୍ୱ ସବୁ କିଛି ଏକତ୍ର

॥ ମାନସିଂହଙ୍କ ବିଚାରଧାରା ॥

ହୋଇ ମାନସିଂହଙ୍କ ବ୍ୟକ୍ତିତ୍ୱକୁ ଏକ ପାରମ୍ପରିକ ଓ ଆଦର୍ଶନିଷ୍ଠ ଶିକ୍ଷକର ବ୍ୟକ୍ତିତ୍ୱରେ ପରିଣତ କରିଥିଲା । ମାନସିଂହଙ୍କ ଶିକ୍ଷା ସମ୍ପର୍କିତ ବିଚାରଧାରାର ଯଥାର୍ଥ ପରିଚୟପାଇଁ ଶିକ୍ଷାବିତ୍ ମାନସିଂହଙ୍କର ପରିଚୟ ଏକାନ୍ତ ଆବଶ୍ୟକ ।

କବି ତଥା ଶିକ୍ଷାବିତ୍ ମାନସିଂହଙ୍କର ଜୀବନର ଆଦ୍ୟ ତଥା ଅନ୍ତିମ ଅଭିଳାଷ ଥିଲା, ଜଣେ ଶିକ୍ଷକ ଭାବରେ ଜୀବନ ଅତିବାହିତ କରିବା, ଏକଥା ଆଗରୁ କୁହାଯାଇଛି । ଖୋର୍ଦ୍ଧା ହାଇସ୍କୁଲର ଛାତ୍ରଥିଲାବେଳେ ସେ ଦେଖିଥିବା ସ୍ୱପ୍ନ ଭିତରେ ପରବର୍ତ୍ତୀ ଜୀବନକୁ ଆବଦ୍ଧ ରଖି, ଜଣେ ଶିକ୍ଷକର ନିରାମୟ ଜୀବନଯାପନ କରିପାରିଥିବେ, ସେ ପାଇପାରିଥାନ୍ତେ ଅଧିକ ଶାନ୍ତି ଓ ସୌହାର୍ଦ୍ଦ୍ୟ–ପରବର୍ତ୍ତୀକାଳରେ ନିଜର ଅନୁତାପ ପ୍ରକାଶକରି ସେ ଏହା ବ୍ୟକ୍ତ କରିଛନ୍ତି ।

ଏ ଦେଶରେ ଶିକ୍ଷକ 'ଗୁରୁ'ଭାବରେ ପ୍ରତିଷ୍ଠା ଲାଭ କରି ଏକ ମହାନ୍ ପରମ୍ପରା ରଖି ଆସି–ଥିଲା ଓ ସେହି ପରମ୍ପରା ମାନସିଂହଙ୍କୁ ଉଦବୁଦ୍ଧ କରିଥିଲା । ମାତ୍ର ଆଜି ସେ ଗୌରବ ଲୁପ୍ତ ପ୍ରାୟ । ତାର କାରଣ ଆଜି "ଆମର ଶିକ୍ଷା ବିଭାଗ କେବଳ ନୁହେଁ, ସମଗ୍ର ଜାତୀୟ ଜୀବନରେ ମଧ୍ୟ ଯେଉଁ ଘୋର ବିଶୃଙ୍ଖଳା ଦେଖା ଦେଇଛି, ତାହାର ପ୍ରକୃତ କାରଣ ଏହିଠାରେ । ଏକମାତ୍ର କାରଣ ଏଇ ଯେ ଏ ଦେଶରେ ଶିକ୍ଷକ ଆଜି 'ଗୁରୁ' ହୋଇ ନାହିଁ, ସେ କେବଳ ମାତ୍ର ଦରମା ସର୍ବସ୍ୱ ଏକ ଚାକିରିଆ ' । ଆମର ସାଧେ ହଜାର ବର୍ଷର ମହିମାମୟ ଜାତୀୟ ସଂସ୍କୃତିକୁ ପଦାଘାତ କରି ଆଜି ଶିକ୍ଷକତା ଏ ଦେଶର କେବଳ ବଜାରର ପଣ୍ୟ ଦ୍ରବରେ ପରିଣତ ହୋଇ ପଡ଼ିଛି ।"(୨୫) ଦେଶର ଅଧିକାଂଶ ଶିକ୍ଷକଙ୍କ ନୈତିକ ମାନଦଣ୍ଡ ହ୍ରାସ ପାଇଥିଲେ ମଧ୍ୟ ଶିକ୍ଷକର ଓ ଶିକ୍ଷାୟତନର ଆଧ୍ୟାତ୍ମିକ ଆକର୍ଷଣ ଏ ଦେଶରେ ଏବେମଧ୍ୟ ଲୁପ୍ତ ହୋଇନାହିଁ । ଏହା ଜଣେ ଶିକ୍ଷକ ତଥା ଶିକ୍ଷାବିତ୍ ଭାବରେ ମାନସିଂହଙ୍କ ଜୀବନର ଶେଷ ପର୍ଯ୍ୟାୟର ବାଣୀ ।

ଜୀବନର ନାନା ଉତ୍ଥାନ ପତନ ମଧ୍ୟରେ ଗତିକରି, ଶିକ୍ଷକତା କରିବା କାଳରେ ନାନା ସାର୍ଥ–ନୀତିକ ଦୁର୍ବିପାକର ସମ୍ମୁଖୀନ ହୋଇମଧ୍ୟ ମାନସିଂହ ଶିକ୍ଷକତାରେ ଆନନ୍ଦ ତଥା ଗୌରବ ଲାଭ କରିଥିଲେ । ମାନସିଂହ ଶିକ୍ଷକତା କରିବା ମଧ୍ୟରେ ନାନାସ୍ୱପ୍ନ ଦେଖିଥିଲେ ଓ କେତେକ ସ୍ୱପ୍ନ ବ୍ୟର୍ଥତାରେ ମଧ୍ୟ ପରିଣତ ହୋଇ–ଥିଲା । ତଥାପି ସେ ଆଶା ପ୍ରକାଶ କରିଥିଲେ"—ମୋର ବିଶ୍ୱାସ, ମୁଷ୍ଟିମେୟ ହୁଅନ୍ତୁ ପଛକେ ଦେଶରେ କରାଚିତ୍ ପ୍ରତି ପୁରୁଷରେ ଆଦର୍ଶବାଦୀ ତରୁଣର ଦଳ ବାହାରିବେ, ଯେଉଁମାନେ ଶିକ୍ଷକ ଭାବରେ ଏ ଦେଶରେ ମାନବ ସେବା କରିବାକୁ ଜୀବନରେ ମହତ୍ତ୍ୱବୋଲି ମନେ କରିବେ । ପ୍ରତି ପୁରୁଷରେ ଜଣେ ହେଲେ ଯେପରି ଶିକ୍ଷକତ ଦେଖାଦେବେ ? ମୋର ଏ ବର୍ଣ୍ଣନା ହୁଏତ ମୋର ସେହି ଭବିଷ୍ୟତର ପରମ ଆତ୍ମୀୟ ଜଣେମାତ୍ର ସମାନଧର୍ମାଙ୍କ ପାଇଁ । ତାଙ୍କୁ ହିଁ ମୁଁ କହି ରଖୁଛି ଯେ, ମନ୍ତ୍ରୀ ବା ବଡ଼ ସାହେବଙ୍କ ଆପାତ ମର୍ଯ୍ୟାଦାକୁ ଦୃଷ୍ଟି ନ ଦେଇ ଜୀବନର ପ୍ରଥମରୁ ହିଁ ସେ ଯେପରି ଶିକ୍ଷକ ହେବାର ସ୍ଥିର କରନ୍ତି ଓ ସେଇ ଲକ୍ଷ୍ୟରେ ସାରାଜୀବନ ଏକମୁଖୀ ଯାତ୍ରା କରନ୍ତି ।"(୨୨)

ସ୍ୱାଧୀନ ଭାରତରେ ଶିକ୍ଷାର ପ୍ରସାର କହିଲେ ସାଧାରଣତଃ କୋଠାବାଡ଼ି, ଫାଇଲପତ୍ର, ଶିକ୍ଷା ସମ୍ବନ୍ଧୀୟ ନୀୟମାବଳୀ ପ୍ରଣୟନକୁ ହିଁ ବୁଝାଯାଏ । ପ୍ରକୃତ ଶିକ୍ଷାଲାଭ ନିମନ୍ତେ ଗୁରୁଙ୍କର ଯେ ଏକ ବିଶେଷ ଭୂମିକା

ରହିଛି, ତାହା ଏ ଦେଶର କର୍ଣ୍ଣଧାରମାନେ ଚିନ୍ତା କରନ୍ତି ନାହିଁ । ମାନସିଂହଙ୍କ ମତରେ—"ଗୁରୁହିଁ ବିଦ୍ୟାଳୟ, ଗୁରୁହିଁ ଦେଶ, ଗୁରୁହିଁ ଜାତି । ଗୁରୁ ଯେପରି କେବଳ ବିଦ୍ୟାଳୟ ସେପରି ନୁହେଁ; ଦେଶ ସେପରି, ଜାତି ସେପରି ।"(40) ଓଡିଶାର ପ୍ରତ୍ୟେକ ଗ୍ରାମରେ ଗୋଟିଏ ଗୋଟିଏ କଲେଜ ବସାଇଦେଲେ ପ୍ରକୃତ ଶିକ୍ଷାର ପ୍ରସାର ହୋଇ ହୋଇପାରିବ ନାହିଁ; କେବଳ ଶିକ୍ଷା ନାମରେ ଅନେକ ଆବର୍ଜନା ବୃଦ୍ଧି ହୋଇଯିବ ମାତ୍ର । ପ୍ରତ୍ୟେକ କଲେଜରେ ଯଦି ଉତ୍ତମ ପ୍ରିନ୍‌ସପାଲ, ଉତ୍ତମ ଅଧ୍ୟାପକ ଓ କେବଳ ଯୋଗ୍ୟ ବୁଦ୍ଧିମାନ ଛାତ୍ରଙ୍କୁ ନିଆଯାଏ, ତେବେ ସେହି ହିଁ ସମଗ୍ର ଓଡିଶାରେ ଆଦର୍ଶ ଅନୁଷ୍ଠାନ ହୋଇ ପାରିବ । ଗୁରୁହିଁ ବିଦ୍ୟାନୁଷ୍ଠାନ ଗୁରୁହିଁ ଜାତି । ଗୁରୁଙ୍କ ଭୁଲ ପଥ ପ୍ରଦର୍ଶନରେ ଗୋଟିଏ ଜାତି ମାନସିକ ବିକାର ଗ୍ରସ୍ତ ହୋଇ ପଡିବ । ଏ ଦେଶ ବର୍ତ୍ତମାନ ଅନାଚାର ଅନ୍ଧକାର ମଧ୍ୟକୁ କ୍ରମଶଃ ଖସିଚାଲି ଚାଲୁଛି । ଜ୍ଞାନପ୍ରସାର ନାମରେ ଅନାଚାରହିଁ ରାଜତ୍ୱ କରୁଛି । ଦେଶର ଏପରି ସଙ୍କଟସନ୍ଧି ମୁହୂର୍ତ୍ତରେ ଦେଶକୁ ଉଦ୍ଧାର କରିବା ନିମନ୍ତେ ଉପଯୁକ୍ତ ଗୁରୁ ବା ଶିକ୍ଷକଙ୍କର ଆବଶ୍ୟକତା, ମାନସିଂହ ଅନୁଭବ କରିଛନ୍ତି । ମୁଷ୍ଟିମେୟ ହେଲେ ମଧ୍ୟ ପ୍ରକୃତ ଗୁରୁହିଁ ଦେଶର ନୈତିକ ଅଧୋଗତିକୁ ବଦଳାଇ ପାରିବ । "ଯେଉଁମାନେ ଆଦର୍ଶର, ବ୍ୟକ୍ତିତ୍ୱର, ଆତ୍ମବିଶ୍ୱାସର, ଦେଶ ପ୍ରେମର, ଜ୍ଞାନ-ସାଧନାର ଓ ନ୍ୟାୟ-ନୈତିକତାର ପ୍ରଦୀପକୁ କୌଣସିମତେ ଏହି ଦୁର୍ଦ୍ଦଶା ରେ ଜଳାଇ ରଖିବାକୁ ବଦ୍ଧପରିକର ରହିବେ ।"(41)ସେହି ଆଦର୍ଶ ଶିକ୍ଷକମାନଙ୍କୁ ଆହ୍ୱାନ କରି ମାନସିଂହ କହିଛନ୍ତି—"ହେ ମୋର ସେହି ସଂଖ୍ୟା ଲଘିଷ୍ଠ ବନ୍ଧୁଗଣ, ତମର ଜଣେ ସହଧର୍ମୀ, ସତୀର୍ଥ, ସହଯାତ୍ରୀ, ସହଭୋଗୀ ଶିକ୍ଷକ, ତାର ଦୀର୍ଘ ଶିକ୍ଷକ ଜୀବନର ନାନା ଅଭିଜ୍ଞତାର ଜମା-ଖର୍ଚ୍ଚ ଓଜନ କରି, ସେ ଆଜି ତାର ନୀରବ, ନିର୍ଜନ କୁଟୀରରୁ ଏହି ବିନୀତ ଆବେଦନ ପ୍ରତ୍ୟେକଙ୍କ ନିକଟକୁ ପ୍ରେରଣ କରୁଛି ଯେ, ଅନନ୍ୟଚିତ୍ତ ରହ କମ୍‌ରେଡ୍, ଆଦର୍ଶର ପ୍ରଦୀପକୁ ଅନିର୍ବାଣ ରଖ କମ୍‌ରେଡ୍, ସର୍ବଦା ଅବିସ୍ମୃତ ରହ କମ୍‌ରେଡ, ଯେ ପ୍ରକୃତ ଗୁରୁହିଁ ଯେ କୌଣସି ସମାଜରେ ଶ୍ରେଷ୍ଠମାନବ, ନୁହେଁ ହାକିମ, ନୁହେଁ ପୋଲିସ୍, ନୁହେଁ ଇଞ୍ଜିନିଅର, ନୁହେଁ ମନ୍ତ୍ରୀ ।"(41)

ବିଂଶ ଶତକର ଦ୍ୱିତୀୟ ଦଶକରେ ସତ୍ୟବାଦୀର ଶିକ୍ଷାଧାରା ଓ ଶିକ୍ଷକମାନେ, କେବଳ ଓଡିଶା ନୁହେଁ, ଓଡିଶା ବାହାରର ଜନ ସାଧାରଣଙ୍କର ଦୃଷ୍ଟି କରିପାରିଥିଲେ । ସେ ସମୟରେ ଉଚ୍ଚଶିକ୍ଷା ଲାଭକରି, ଇଂରେଜ ସରକାରଙ୍କ ପଦବୃତ୍ତି ଗ୍ରହଣ କରିବାକୁ ଅବଜ୍ଞାକରି ଦେଶସେବା ନାମରେ, ସତ୍ୟବାଦୀର ଶିକ୍ଷକମାନେ ଯେଉଁ ମଣିଷ ତିଆରି କାରଖାନା ପ୍ରତିଷ୍ଠା କରିଥିଲେ, ତାହା ପ୍ରତ୍ୟେକ ଦେଶପ୍ରେମୀ ତଥା ଆଦର୍ଶବାଦୀଙ୍କୁ ପ୍ରଲୋଭିତ କରିଥିଲା । ତରୁଣ ମାୟାଧର ମାନସିଂହ ସତ୍ୟବାଦୀ ବନବିଦ୍ୟାଳୟରେ ଅଧ୍ୟୟନ ପାଇଁ ଯେଉଁ ଅଭିଳାଷ ପୋଷଣ କରିଥିଲେ, ତାହା କେବଳ ଆଶାରେ ହିଁ ରହିପାଇଥିଲା । କାରଣ ଅସହଯୋଗ ଆନ୍ଦୋଳନ କାଳରେ ଏହି ବିଦ୍ୟାଳୟର କର୍ମୀ ଶିକ୍ଷକମାନେ ଜାତୀୟ ସଂଗ୍ରାମରେ ଯୋଗ ଦେଇ ଜେଲ୍ ଯିବାରୁ ଓ ସ୍କୁଲ ପାଇଁ ସରକାରୀ ଅନୁଦାନ ପ୍ରତ୍ୟାଖାନ କରିବାରୁ ଅର୍ଥ ଓ ସଂଗଠନ ଶକ୍ତିର ଅଭାବରୁ ସତ୍ୟବାଦୀ ଭଳି ଜାତୀୟ ଶିକ୍ଷାନୁଷ୍ଠାନ ଅକାଳରେ ଟଳି ପଡିଲା । ମାତ୍ର ମାନସିଂହଙ୍କ ମାନସ ପଟରେ ସତ୍ୟବାଦୀର ଆଦର୍ଶ ଓ ଶିକ୍ଷକତାର ଗୌରବ ଚୁପିଚୁପି ରହିଗଲା । ମାନସିଂହ ଲେଖିଛନ୍ତି:——

"ଖୋର୍ଦ୍ଧା ସ୍କୁଲର ଛାତ୍ର ଯେ, ସ୍କୁଲ ଶିକ୍ଷକ ହେବାର ଅଭିଳାଷ ପୋଷଣ କରିଥିଲା, ତାହା ଟ୍ରେନିଂ ସାର୍ଟିଫିକେଟ ସର୍ବସ୍ୱ ସାଧାରଣ ଟିଚର ନୁହେଁ, ତାର ଆଦର୍ଶଥିଲା ସତ୍ୟବାଦୀର ଶିକ୍ଷକ;—ଜାତୀୟ ଜୀବନର ପୁଣ୍ୟସ୍ରୋତରେ ପୂର୍ଣ୍ଣ ଅବଗାହନ ଓ ସନ୍ତରଣର ଆଶା ।"(42) ମାନସିଂହ ଖୋର୍ଦ୍ଧା ସ୍କୁଲରେ ପଢ଼ିଲାବେଳେ ସତ୍ୟବାଦୀ ବନବିଦ୍ୟାଳୟ ଭାଙ୍ଗିଯାଇଥିବା ଓ ସେ ସ୍କୁଲର କେତେକ ଛାତ୍ର ମାଟ୍ରିକ ପରୀକ୍ଷା ଦେବାପାଇଁ ଆସି ଖୋର୍ଦ୍ଧା ସ୍କୁଲରେ ପ୍ରସ୍ତୁତ ହେଉଥିଲେ ।

ତଥାପି ଆଦର୍ଶବାଦୀ, ରୋମାଣ୍ଟିକ୍ କବି ମାନସିଂହଙ୍କ ଅନ୍ତର ତଳେ ଶିକ୍ଷକ ହେବାର ଅଭିଳାଷ ପ୍ରଶମିତ ହୋଇ ନଥିଲା । ଶିକ୍ଷା ସମାପନାନ୍ତେ ସତ୍ୟବାଦୀ ବିଦ୍ୟାଳୟର ଅନ୍ୟତମ ଶିକ୍ଷକ, ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ପ୍ରତିଷ୍ଠିତ ବାଣପୁର ସ୍କୁଲରେ ଶିକ୍ଷକତା କରିବା ପାଇଁ ମାନସିଂହ ଯାଇଥିଲେ । ସତ୍ୟବାଦୀ ସଦୃଶ ଅନ୍ୟଏକ ବିଦ୍ୟାଳୟ ସ୍ଥାପନ କରିବା ମାନସିଂହଙ୍କର ଅବଚେତନ ମନର ଅଭିଳାଷ ଥିଲା, ପଣ୍ଡିତ ଗୋଦାବରୀଶ ମଧ୍ୟ ସେହି ମର୍ମରେ ତାଙ୍କର ସେକ୍ରେଟାରୀଙ୍କ ହାତରେ ମାନସିଂହଙ୍କ ପାଖକୁ ଚିଠିଦେଇଥିଲେ । ମାନସିଂହ ଡି.ଇଡି. ପାଶ୍ କଲାପରେ ବାଣପୁର ହାଇସ୍କୁଲରେ ଶିକ୍ଷକତା କଲେ । ଶିକ୍ଷକ ହେବାର ମୋହ ଓ ଜାତୀୟତାର ଆଦର୍ଶ ତାଙ୍କୁ କିପରି ଘାରିଥିଲା ସେ ସମ୍ପର୍କରେ ମାନସିଂହ ଲେଖିଛନ୍ତି—"ମୁଁ ଯେତେବେଳେ ବାଣପୁର ସ୍କୁଲକୁ ଯାଇଥିଲି, ସେତେବେଳେ ଭାବି ନେଇଥିଲି ସେଇଠାରେ ସମଗ୍ର ଜୀବନ କଟାଇବା ପାଇଁ । ମୋର ନିଜର କାକା ଶ୍ୱଶୁର ଔପନ୍ୟାସିକ ଶ୍ରୀଯୁକ୍ତ ସତ୍ୟାନନ୍ଦ ଚମ୍ପତିରାୟ, ସେଠାରେ କେତେମାସ ଧରି ଶିକ୍ଷକତା କରିଆସି ତାଙ୍କର ତିକ୍ତ ଅଭିଜ୍ଞତା ଯୋଗୁ ମୋର ସେଠାକୁ ଯିବା ଆଦୌ ପସନ୍ଦ ନକରି ବାଧା ଦେଇଥିଲେ । କିନ୍ତୁ ତାହାସତ୍ତ୍ୱେ ମୁଁ ଲମ୍ଫ ଦେଇଥିଲି, ଏକ ଆଦର୍ଶର ମୋହରେ ।"(43)

କେତେକ ଅସୁବିଧାରୁ ମାନସିଂହ ବାଣପୁର ସ୍କୁଲରୁ ଇସ୍ତଫା ଦେଇ, ନିମାପଡା ସ୍କୁଲରେ ଶିକ୍ଷକ ଭାବରେ ଯୋଗ ଦେଲେ । ନିମାପଡାର ଶିକ୍ଷକ ଜୀବନକୁ ମାନସିଂହ ଅନେକ ସମୟରେ ସ୍ମରଣ କରୁଥିଲେ । ନିମାପଡା ରେସମଧର୍ମୀ ଶିକ୍ଷକମାନଙ୍କର ସହଯୋଗରେ ବେଶ ଆନନ୍ଦଭାବରେ ସମୟ ବିତାଇ ଥିଲେ ହେଁ, ଆର୍ଥିକ ଲାଭ ନିମନ୍ତେ ମାନସିଂହ ନିମାପଡା ଛାଡି ଭବାନୀପାଟଣା ହାଇସ୍କୁଲରେ ଯୋଗଦେବା ପାଇଁ ଗଲେ । ନିମାପଡା ଅବସ୍ଥାନ କାଳରେ ଶିକ୍ଷକ ଓ କବି ହେବାର ମୋହ ସମ୍ପର୍କରେ ମାନସିଂହ ଲେଖିଛନ୍ତି—"ସେହି ସମୟରେ ମୋର ମନେ ପଡିଲା କାହିଁ କେଉଁଠି ପଢିଥିଲି କେବେ ଇଂରାଜୀକବି ଓ୍ୱାଡସୱାର୍ଥଙ୍କର ବାଣୀ—'ମୁଁ ଜଗତ ଆଖିରେ ଜଣେ ଶିକ୍ଷକବୋଲିହିଁ ଧରାହୁଏ ଯେପରି ।

କବି ପୁଣି ଶିକ୍ଷକ ? ମୁଁ ଏକ ବିଚିତ୍ର ଆତ୍ମ—ଜ୍ଞାନ ଯେପରି ଉପଲବ୍ଧି କରିବାର ଆରମ୍ଭ କଲି । ଏହା ସତ୍ୟ ଯେ କାବ୍ୟ ଶିକ୍ଷା ତତ୍ତ୍ୱ ନୁହେଁ । ତଥାପି କବି ହିଁ ଜାତିର ପ୍ରକୃତ ଶିକ୍ଷକ,—ଅନ୍ୟ କେହି ସେପରି ହୋଇ ନ ପାରେ । ସେହି ଦିନଠାରୁ ମୋର ଲେଖକ ଜୀବନର ଦୁଇ ପ୍ରଧାନପଥ ମୁଁ ସ୍ଥିର କରିନେଲି । ପ୍ରଥମ, ଯେତେବେଳେ ଲେଖିବା ପାଇଁ ପ୍ରକୃତ ଇନସ୍ପିରେଶନ୍ ବା ପ୍ରେରଣା ଆସିବ, ମୁଁ କାବ୍ୟ କବିତା ଲେଖିବି, । ଦ୍ୱିତୀୟ ବାକି ସମୟତକ ଶିକ୍ଷାତତ୍ତ୍ୱ ଓ ଜୀବନତତ୍ତ୍ୱ ପାଇଁ ଦେବି । ମଲାବେଳକୁ ଯଦି ମତେ କବି ଓ ଲେଖକ ଭାବରେ ମୋ ଜାତି ସ୍ୱୀକାର କରିଥିବ ଭଲକଥା । କିନ୍ତୁ ତା ନହେଲେ ମଧ୍ୟ ବା ତାହା ସାଂଗେ ସାଂଗେ ମତେ ଜାତି ତାର ଜଣେ ଶିକ୍ଷକ ଭାବରେ ମଧ୍ୟ ଯେପରି ଗଣିବ, ଏଇ ମୋର ଆଶା ।"(44)

ମାନସିଂହ ଭବାନୀପାଟଣା ହାଇସ୍କୁଲରେ ଶିକ୍ଷକତା କରିବା ସମୟରେ ବିଲାତ ଯାତ୍ରା କରିଥିଲେ । ବିଲାତରୁ ଫେରି ଆଠଗଡ ହାଇସ୍କୁଲରେ ଶିକ୍ଷକତା, ରେଭେନ୍ସା କଲେଜରେ ଅସ୍ଥାୟୀ ଭାବରେ ଇଂରାଜୀ ଅଧ୍ୟାପନା, ଇଷ୍ଟର୍ଣ୍ଣ ଷ୍ଟେଟ ଏଜେନ୍ସିର ଶିକ୍ଷା ପରାମର୍ଶଦାତା, ସ୍କୁଲ ଇନ୍ସପେକ୍ଟର, ରେଭେନ୍ସା କଲେଜରେ ଓଡିଆ ବିଭାଗରେ ଅଧ୍ୟାପନା, ପ୍ରୌଢ଼-ଶିକ୍ଷା ଅଫିସର, ତଥା ମେହେର କଲେଜର ଅଧ୍ୟକ୍ଷ ହେବା ଇତ୍ୟାଦି କର୍ମ ଏକାଧାରାରେ ଶିକ୍ଷାବିତ୍ ମାନସିଂହଙ୍କର କର୍ମମୟ ଜୀବନର ବିଭିନ୍ନ ପର୍ଯ୍ୟାୟ ମାତ୍ର । ସେ ଶିକ୍ଷା ବିଭାଗର ଯେଉଁ ପର୍ଯ୍ୟାୟରେ ଥାଆନ୍ତୁ ନା କାହିଁକି, ଶିକ୍ଷା ବ୍ୟବସ୍ଥାର ସଂସ୍କାର ଓ ଜାତି ଗଠନ ତାଙ୍କର ମୁଖ୍ୟ ଅଭିଳାଷ ହୋଇଥିଲା । ବିଭିନ୍ନ ସମୟରେ ସେ ଯେଉଁ ସର୍କୁଲାରମାନ ପ୍ରେରଣ କରୁଥିଲେ, ସେଥିରୁ ତାଙ୍କର ଶିକ୍ଷା ପ୍ରୀତି ସମ୍ପର୍କୀୟ ଅବବୋଧର ସୂଚନା ମିଳିଥାଏ । ମାନସିଂହ ଲେଖିଛନ୍ତି—"ଏକ ବଳିଷ୍ଠ, ଗରୀୟାନ, ମହିମାମୟ ଜାତି ମୋର ଗଢିଉଠୁ, ଏହାହିଁ ମୋର ଏକାନ୍ତ କାମନା ଜୀବନବ୍ୟାପୀ ରହି ଆସିଛି । ଶିକ୍ଷକ ଓ ଶିକ୍ଷାବିତ୍ ଭାବରେ ମୋର ଅଧିକାଂଶ କାମ, ଚିନ୍ତା, ନିର୍ଦ୍ଦେଶ ଓ ପ୍ରତିରୋଧ ମଧ୍ୟ, ସେହି ଏକ ଲକ୍ଷ୍ୟରୁହିଁ ଘଟି ଆସିଛି ।"(45)

ମାନସିଂହ ଶିକ୍ଷକତାର ଗୌରବ ଓ ମହନୀୟତାକୁ କେବଳ ଆଦର୍ଶବାଦୀ ଦୃଷ୍ଟିରୁ ଦେଖି ନାହାନ୍ତି; ବରଂ ଆଦର୍ଶ ଶିକ୍ଷକ ଗଠନ ଓ ଶିକ୍ଷାଦାନ ପାଇଁ ରାଷ୍ଟ୍ରର ଭୂମିକାକୁ ସେ ବାସ୍ତବବାଦୀ ଦୃଷ୍ଟିରୁ ସ୍ୱୀକାର କରିଛନ୍ତି । ଶିକ୍ଷକତା ଏକ ମହତ ସେବା ଓ ଗୁରୁହିଁ ଦେଶର ଗୌରବ, ଏହି ବାକ୍ୟ ଉଚ୍ଚାରଣ କରି ଭାଷଣ ଦେବା ସହଜ ହୋଇପାରେ, ମାତ୍ର ଗୁରୁମାନଙ୍କର ବ୍ୟକ୍ତିଗତ, ପାରିବାରିକ ସମସ୍ୟାକୁ ଲକ୍ଷ୍ୟ ନ ରଖିବା ଏକ ବିଗ୍ୱର ବିଭ୍ରମର ସୂଚନା ଦିଏ । ପ୍ରାଚୀନ ଭାରତରେ ଗୁରୁ ଶିକ୍ଷାଦାନକୁ କର୍ତ୍ତବ୍ୟ ଭାବରେ ଗ୍ରହଣ କରିଥିଲେ, ତତ୍ ସଂଗେ ସଂଗେ ରାଷ୍ଟ୍ର, ଶାସକ ବା ଜନ ସାଧାରଣ ଗୁରୁଙ୍କ ପରିବାରର ଭରଣ ପୋଷଣର ଦାୟିତ୍ୱ ବହନ କରୁଥିଲା । ଅର୍ଥନୈତିକ ସମସ୍ୟାପାଇଁ ଗୁରୁ ଚିନ୍ତା କରିବା ପାଇଁ ଅବକାଶ ନଥିଲା । ମାତ୍ର ବର୍ତ୍ତମାନର ଶାସନଚକ୍ର ଗୁରୁଙ୍କୁ କେବଳ ବାକ୍ୟରେ ଆଦର୍ଶ ସ୍ଥାନରେ ରଖିଲେ ମଧ୍ୟ ଗୁରୁଙ୍କ ପ୍ରତି କର୍ତ୍ତବ୍ୟକୁ ଅନାୟାସରେ ଭୁଲି ଯାଉଛି । ଏ ସମ୍ପର୍କରେ ମାନସିଂହଙ୍କର ବିଗ୍ୱର ହେଲା—"ଯଦି ଶିକ୍ଷକ ସର୍ବଗୁଣ ଆଧାର ହେବାର ଆଶା କରାଯାଏ, ତେବେ ସେହି ଅନୁପାତରେ ସେ ପୁରସ୍କୃତ ଓ ସମ୍ମାନିତ ହେବା ଦରକାର । ଶିକ୍ଷକକୁ ପିଅନଠାରୁ କମ୍ ଦରମାଦେଇ ମନ୍ତ୍ରୀଙ୍କ ଅପେକ୍ଷା ଉଚ୍ଚତର କର୍ତ୍ତବ୍ୟଜ୍ଞାନ ଓ ବହୁତର କର୍ମକଳାପ ତାଠାରୁ ଆଶାକରିବା ବିଡମ୍ବନାମାତ୍ର । ପ୍ରାଚୀନ ଭାରତରେ ରାଷ୍ଟ୍ର ଓ ସମାଜ ଗୁରୁର ପରିପୋଷଣରେ ସମସ୍ତ ଦାୟିତ୍ୱ ନେଉଥିଲା । ଗୁରୁମଧ୍ୟ ସମାଜର ଶ୍ରେଷ୍ଠତମ ସମ୍ମାନିତ ବ୍ୟକ୍ତିଥିଲା । ଏବେ ଶିକ୍ଷକତାର ମାନଦଣ୍ଡ ଯେ ବହୁତଳକୁ ଖସିଛି ତାହାପାଇଁ ଶିକ୍ଷକ ଦାୟୀ ନୁହେଁ, ଦାୟୀ ଶିକ୍ଷା ବିଭାଗର କର୍ତ୍ତୃପକ୍ଷ, ଦାୟୀ ଦେଶର ଶାସକ ବର୍ଗ । ରାଜନୈତିକ କାରଣରୁ ସ୍କୁଲ କଲେଜ ବଢେଇ ଦିଆଯାଉଛି । ଶିକ୍ଷକର ଦେଖାନାହିଁ, ଏବେ ସ୍କୁଲ ମଞ୍ଜୁରୀ ପାଇଯାଉଛି । ଏତେ ସଂଖ୍ୟାରେ ଉଚ୍ଚ ଦରର ଶିକ୍ଷକ ଗୁଡ଼ିଏ ମାତ୍ରେ ଦେଶରେ ଆସିବେ କୁଆଡୁ ? ଯଦି ଶିକ୍ଷକକୁ ଶସ୍ତା କଲ, ତେବେ ତମର ଶିକ୍ଷାକୁ ଯେ ସେ ଶସ୍ତା କରିବ, ଏଥିରେ ବିଚିତ୍ର କଣ ?"(46)

ଶିକ୍ଷକ ବା ଶିକ୍ଷାବିତ୍ ହେବା ଏକ ଆନ୍ତରିକ ପ୍ରଚେଷ୍ଟାର କାର୍ଯ୍ୟ । ମନ-ପ୍ରାଣରେ ଶିକ୍ଷକ ହେବାର କାମନା ବଳବତ୍ତର ନହେଲେ ଶିକ୍ଷାବିତ୍ ହେବା ଦୁରୁହ ବ୍ୟାପାର ମାତ୍ର ଆମ ଦେଶରେ ସେ କଥାକୁ ବିଗ୍ରହ କରାଯାଏ ନାହିଁ । ଆମର ଶିକ୍ଷା ବିଭାଗରେ ଅନେକ ଶିକ୍ଷକଙ୍କର ଶିକ୍ଷକ ହେବାପାଇଁ ପ୍ରାଥମିକ ଯୋଗ୍ୟତା ନଥିବା ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ଶିକ୍ଷା କ୍ଷେତ୍ରରେ ଅଧ୍ୟାପନା ଓ ପରିଚାଳନାଗତ ଅଭିଜ୍ଞତା ନଥିବା ଲୋକମାନେ ଶିକ୍ଷା ବିଭାଗର ଭାଗ୍ୟ ନିୟନ୍ତ୍ରଣ କରନ୍ତି । ସେ ସଂପର୍କରେ କ୍ଷୋଭ ପ୍ରକାଶ କରି ମାନସିଂହ ଲେଖିଛନ୍ତି —"କେବଳ ଶିଳ୍ପଶାସ୍ତ୍ରଟି କଣ୍ଠସ୍ଥ କରିଦେଲେ କୌଣସି ଲୋକ କୋଣାର୍କର ନର୍ତ୍ତନଶୀଳା ଅପ୍ସରା ବା କୋଣାର୍କର ରଥଚକ୍ର ଗଢିଦେଇ ନପାରେ । ଏବେ ଆମଦେଶରେ ଏଡୁକେଶନ କୋଡ୍ ବା ବିଶ୍ୱବିଦ୍ୟାଳୟର ଷ୍ଟାଟ୍ୟୁଟ୍ ବା ରେଗୁଲେଶନ୍‌ର ଅଧ୍ୟାୟ ଓ ଦଫାଗୁଡିକ ଯିଏ ମୁଖସ୍ଥ କରିଥିବ ବା ସେହି ଅନୁସାରେ ମାରପେଁଚ ଖେଳି ପାରୁଥିବେ, ତାଙ୍କୁ ଏ ଦେଶରେ ଶିକ୍ଷାବିଦ୍‌ବୋଲି ସମ୍ମାନ ମିଳୁଛି । କିନ୍ତୁ ଜାତି ଭାବରେ ଏହା ଆମରକେବଳ ବୌଦ୍ଧିକଶୂନ୍ୟତା ବା ବୌଦ୍ଧିକଅଧଃପତନର ଚିହ୍ନବୋଲି ହିଁ ବୁଝିବାକୁ ହେବ ।" (47)ଆଜୀବନ ଶିକ୍ଷା ସେବକ ତଥା ଶିକ୍ଷା ପ୍ରେମୀ ଭାବରେ କବି ତଥା ଶିକ୍ଷକ ମାନସିଂହଙ୍କର ଏହାହିଁ ଅଭିମତ ।

ପ୍ରଚଳିତ ଶିକ୍ଷାଧାରା ଓ ଶିକ୍ଷା ସଂସ୍କାର–

ଡକ୍ଟର ମାୟାଧର ମାନସିଂହ, ଶିକ୍ଷା ବିଭାଗର ବିଭିନ୍ନ ପଦପଦବୀରେ ରହିଥିବାରୁ ସମସାମୟିକ ଶିକ୍ଷା ବ୍ୟବସ୍ଥାର କେତେକ ତ୍ରୁଟି ଦେଖି ତାକୁ ସଂଶୋଧନ କରିବାର ପ୍ରସ୍ତାବ ଆଗତ କରିଥିଲେ । କାର୍ଯ୍ୟତଃ ତାହା କେବଳ ଫାଇଲ ମଧ୍ୟରେ ରହିବା ସାର ହୋଇଥିଲା, ତାର ବ୍ୟବହାରିକ ମୂଲ୍ୟକୁ କେହି ଦୃଷ୍ଟିପାତ କରି ନଥିଲେ । ସ୍ୱାଧୀନତୋତ୍ତର ଭାରତବର୍ଷରେ ଶିକ୍ଷା ସଂସ୍କାର ନାମରେ ଅନେକ କମିଶନ ବସିଲାଣି, ଶିକ୍ଷା ସଂସ୍କାର କମିଶନଙ୍କ ପ୍ରସ୍ତାବର ଅନେକ ପୂର୍ବରୁ ମାନସିଂହ ତାଙ୍କର ଶିକ୍ଷା ବିଭାଗର ବିଭିନ୍ନ ରିପୋର୍ଟରେ ଅନୁରୂପ ପ୍ରସ୍ତାବମାନ ଆଗତ କରିଥିଲେ ମାତ୍ର ମାନସିଂହଙ୍କର ଚିନ୍ତା ଓ ଭାଗ୍ୟ ପରସ୍ପର ପ୍ରତିକୂଳ ଗତିରେ ଗମନ କରିବାରୁ ଓ ତାତ୍କାଳିକ ଜ୍ଞାନ ଅଭାବରୁ ମାନସିଂହ ତାଙ୍କର ମତାମତକୁ ଯଥାଯଥ ଭାବରେ ଉପସ୍ଥାପନ କରିପାରି ନଥିଲେ । ଶିକ୍ଷାଧାରାର ପରିବର୍ତ୍ତନ ଓ ଶିକ୍ଷା ବ୍ୟବସ୍ଥା ସଂପର୍କରେ ଅନେକ ବିଶିଷ୍ଟ ପ୍ରବନ୍ଧ ସମେତ ନିମ୍ନ ପୁସ୍ତକ ଗୁଡିକ ମଧ୍ୟ ପ୍ରଣିଧାନ ଯୋଗ୍ୟ ।

| | |
|---|---|
| 1– ସିଟିଜେନ ଏଡୁକେଶନ(ଇଂରାଜୀ) | (1942) |
| 2–ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ | (1953) |
| 3–ଶିକ୍ଷାର କି' କାଁଣ, କାହିଁକି ? | (1960) |
| 4– ଶିକ୍ଷାବିତ୍‌ର ଗାଥା(ଆତ୍ମଜୀବନୀ) | (1965) |
| 5– ଟ୍ରିମ୍ସ ଇନ୍ ଏଡୁକେଶନ(ଇଂରାଜୀ) | (1965) |

ତତ୍ ସଂଗେ ସଂଗେ, ଗ୍ରାମୋନ୍ନତିର ରୋମାଞ୍ଚକର କାହାଣୀ(ଅନୁବାଦ)ପୁସ୍ତକଟି ଶିକ୍ଷାବ୍ୟବସ୍ଥା ସମ୍ପର୍କରେ ଏକ ଉଲ୍ଲେଖ ଯୋଗ୍ୟ ପୁସ୍ତକ । ଶିକ୍ଷା ବ୍ୟବସ୍ଥା ଓ ଶିକ୍ଷା ସଂସ୍କାର ସମ୍ପର୍କରେ ତାଙ୍କର ସର୍ବଶେଷ ଦୀର୍ଘପ୍ରବନ୍ଧ 1972 ମସିହା ଜୁଲାଇ ମାସରେ 'ନବରବି'ରେ ପ୍ରକାଶିତ ହୋଇଥିଲା ।ମୃତ୍ୟୁର ଅବ୍ୟବହିତ ପୂର୍ବରୁ ସେ ଶିକ୍ଷା ସମ୍ପର୍କରେ ମଧ୍ୟ ଚିନ୍ତା କରୁଥିଲେ । 'ସିଟିଜେନ ଏଡୁକଶନ' ପୁସ୍ତକରେ ଜାତୀୟ ଶିକ୍ଷାଧାରା ଓ ଶିକ୍ଷାନୀତି ସହିତ ପ୍ରଚଳିତ ଶିକ୍ଷା ବ୍ୟବସ୍ଥାର ପରିବର୍ତ୍ତନ ସମ୍ପର୍କରେ ମତାମତ ଉପସ୍ଥାପିତ । ଉକ୍ତ ପୁସ୍ତକରେ ଭାରତୀୟ ଶିକ୍ଷାଧାରାର ତ୍ରୁଟିକୁ ସଦୃଷ୍ଟାନ୍ତ ବର୍ଣ୍ଣନା କରାଯାଇଛି । ସାଧାରଣ ଶିକ୍ଷା, ଇଂରାଜୀ ଶିକ୍ଷା, ନାରୀଶିକ୍ଷା ପ୍ରଭୃତି ଶିକ୍ଷାର ବିଭିନ୍ନଧାରା ଏଥିରେ ଆଲୋଚିତ । ଏହି ପୁସ୍ତକଟି ଶିକ୍ଷାବିତ୍ ମାନସିଂହଙ୍କ ଅପରିପକ୍ୱତାର ଫଳ, ସେଇଥିପାଇଁ ଇତିହାସ ଏଥିରେ ଯେତିକି ଅଛି, ମାନସିଂହଙ୍କ ନିଜସ୍ୱ ବକ୍ତବ୍ୟ ସେତିକି ନାହିଁ ତଥାପି ତାଙ୍କ ଶିକ୍ଷା ସମ୍ପର୍କୀୟ ଚିନ୍ତାଧାରାର ପ୍ରାଥମିକ ନକ୍ସା 'ସିଟିଜେନ ଏଡୁକେଶନ' ପୁସ୍ତକ ଦେଇଥାଏ । ମାନସିଂହ ଇଷ୍ଟର୍ଣ୍ଣ ଷ୍ଟେଟ ଏଜେନ୍ସିର ଶିକ୍ଷା ପରାମର୍ଶ ଦାତା ଥିବା ସମୟରେ ସ୍ୱାଧୀନ ଭାବରେ ଶିକ୍ଷା ବ୍ୟବସ୍ଥା ସମ୍ପର୍କରେ ଚିନ୍ତା କରିବାକୁ ଲାଗିଥିଲେ ଓ ନିଜର ମତାମତକୁ ବିଭିନ୍ନ ଗଡଜାତ ସ୍କୁଲରେ ପ୍ରୟୋଗ କରାଇ ପାରିଥିଲେ । ମାତ୍ର ତାଙ୍କ ମନ୍ତବ୍ୟ ଓ ପ୍ରସ୍ତାବ ଗଡଜାତ ରାଜାମାନଙ୍କ ସ୍ୱାର୍ଥରେ ବାଧାସୃଷ୍ଟି କରିବାରୁ ସେମାନେ ଶିକ୍ଷା ପରାମର୍ଶଦାତା ପୋଷ୍ଟଟିକୁ ଉଠାଇଦେଲେ । ସେ ସମୟରେ ତାଙ୍କର କେତେକ ପରିବର୍ତ୍ତିତଧାରା ଶିକ୍ଷକ, ଛାତ୍ର ତଥା ଜନସାଧାରଣଙ୍କର ଯଥେଷ୍ଟ ଉପକାରରେ ଆସିଥିଲା ।

ଆମର ଶିକ୍ଷାଧାରା, ଆମକୁ ଆମ ସାମାଜିକ ଜୀବନ, ପାରିପାର୍ଶ୍ୱିକ ପରିବେଶ ଓ ଏହି ମାଟିର ଜନସାଧାରଣଙ୍କ ପାଖରୁ ଦୂରେଇ ନେଇ ଯାଉଛି । ବିଭିନ୍ନ ଦେଶର ଶିକ୍ଷାଧାରା ଓ ଶିକ୍ଷାଦାନ ପଦ୍ଧତିରୁ ମାନସିଂହ ଅନୁଭବ କରିଥିଲେ ଯେ ଶିକ୍ଷା ବ୍ୟବସ୍ଥା ପାରିବାରିକ ସମ୍ପର୍କ ଓ ଦେଶର ଚଳଣି ଠାରୁ ଦୂରେଇଗଲେ ତାହ ଅଫଳପ୍ରଦ ହୋଇଥାଏ । ତାଙ୍କର ବିଲାତ ରହଣି କାଳରେ ସେ ଯେଉଁ ଧାରଣାଟିରି ଆସିଥିଲେ, ଗାନ୍ଧିଙ୍କର ସର୍ବୋଦୟ ଓ ନିଈ ତାଲିମରୁ ସେହିଧାରାର ସମର୍ଥନ ପାଇଲେ ନାହିଁ । ତାପରେ ଉଇଲିଅମ୍ ଡଟନଙ୍କ ଲିଖିତ 'ଷ୍ଟେ ଅନ୍ ଷ୍ଟ୍ରେଞ୍ଜର'ରେ ବର୍ଣ୍ଣିତ 'କାନେ' ଶିକ୍ଷାଧାରାହିଁ ତାଙ୍କୁ ଅଧିକ ପ୍ରଭାବିତ କରିଥିଲା । ମାନସିଂହଙ୍କ ଭାଷାରେ—"ଯେଉଁଥିରୁ ଆମର ଶିଖିବାର କିଛି ନାହିଁ, ତାହା ଆଲୋଚନା କରିଲାଭ କ'ଣ ? କେବଳ 'ସମାଜ' କାଗଜର ସ୍ତମ୍ଭ ପୂର୍ଣ୍ଣ କରିବା ପାଇଁ ମୁଁ ମଧ୍ୟଉଇଲିଅମ୍ ଡଟନଙ୍କ ବହିର ପ୍ରଚାରରେ ମାତି ନଥାନ୍ତି । ଏ ବହିରେ ଯେଉଁ ଶିକ୍ଷାର ଯୋଜନା ଓ ପରୀକ୍ଷାର ବର୍ଣ୍ଣନା ଦେଖିବାକୁ ପାଇଲି, ତାହା ଏକାନ୍ତ ଭାବରେ ଆମ ଦେଶ ଓ ଆମସ୍କୁଲକଲେଜପାଇଁ ମଧ୍ୟ ପ୍ରଯୁଜ୍ୟ ଓ ପ୍ରୟୋଜିତ ହେବା ଉଚିତ । ଆମର ଶିକ୍ଷାନୁଷ୍ଠାନମାନେ ଓ ଶିକ୍ଷାବିଭାଗର ଏଥିରୁ ଅନେକକଥା ଶିଖିବାର ଅଛିବୋଲି ଗଭୀର ହୃଦବୋଧ ହେବା ରୁହିଁ ମୁଁ ଦେଶଆଗରେ ତାହାର ପ୍ରଚାରକରୁଛି। ଜଣେ ଶିକ୍ଷାବିତ୍ ଭାବରେ ଏହାମୋର କର୍ତ୍ତବ୍ୟବୋଲି ମନେ ହେଲା ।"(୮

ମାନସିଂହଙ୍କ ମତରେ ଜାତୀୟ ଶିକ୍ଷା ଯୋଜନା ସେହି ନୀତିରେ ହେବା ଉଚିତ, ଯାହାଦ୍ୱାରା ସେହି ଜାତିର ଯେଉଁ ନିଜସ୍ୱ ସଂସ୍କୃତି ଅଛି ତାହା ବଞ୍ଚି ରହିବ ଓ ନିଜ ଜାତୀୟ ଚରିତ୍ରରେ ଯାହା ଦୋଷାଦୋଷ,

ତଥା ଅଭାବ ରହିଥିବ ତାକୁ କାଢିନେଇ ସେ ସ୍ଥାନରେ ଉନ୍ନତ ସଂଶୋଧକ ଓ ପରିପୂରକ ଗୁଣାବଳୀର ଅଭ୍ୟାସ କରା ଇବା ଉଚିତ । ଏଇ ଦୁଇ ପ୍ରଧାନ ଆବଶ୍ୟକତା ସଂଗେ ସଂଗେ ନିଜସ୍ୱ ମାଟିରଗୌରବ ବର୍ଦ୍ଧନ ପାଇଁ ବାଲ୍ୟକାଳରୁ ଅଭ୍ୟାସ ରହିବା ଦରକାର ।

ତା ପରେ ଆମ ଦେଶର ଶିକ୍ଷା ମୁଖ୍ୟତଃ ପୁସ୍ତକ ପ୍ରଧାନ ଶିକ୍ଷାରେ ପରିଣତ ହୋଇ, ବାସ୍ତବତା ଠାରୁ ଦୂରେଇଯାଉଛି । ଫଳରେ କାର୍ଯ୍ୟକ୍ଷେତ୍ରରେ ଆମ୍ଭେମାନେ କୌଣସି ଫଳପ୍ରଦ କର୍ମପାଇଁ ସମର୍ଥ ହୋଇପାରୁ ନାହୁଁ । ପ୍ରାଚୀନ ଉତ୍କଳ ତଥା ଭାରତବର୍ଷରେ ଶିକ୍ଷା ବୃତ୍ତି-ଭିତ୍ତିକ ଓ ପ୍ରୟୋଗାତ୍ମକ ଥିଲା । ଅକ୍ଷର ଶିକ୍ଷା, ଶିକ୍ଷାର ବିଭିନ୍ନ ମାଧ୍ୟମ ମଧ୍ୟରୁ ଗୋଟିଏ ମାତ୍ର, ଜୀବନର ବାସ୍ତବ କ୍ଷେତ୍ରରେ ଅନେକ ବିଦ୍ୟା ଅଛି, ଯାହା ବିନା ବହିରେ ସମ୍ଭବ ଓ ଦୈନନ୍ଦିନ ଜୀବନରେ ତାହାର ପ୍ରଭୂତ ଉପଯୋଗିତା ଅଛି । ବର୍ତ୍ତମାନର ଡିଗ୍ରୀ ଓ ସାର୍ଟିଫିକେଟ ପ୍ରଧାନ ଶିକ୍ଷା ଆମକୁ କେବଳ ସେହି ଉପାଧି ଅଭିମୁଖୀ କରାଉଛି । ମାନସିଂହ କହନ୍ତି:-"ବିନା ବହିରେ କି ଚମତ୍କାର ଶିକ୍ଷା ମିଳିପାରେ । କୋଣାର୍କର ଶିଳ୍ପକଳା ପୃଥିବୀର ସବୁ ପ୍ରାନ୍ତର ଦର୍ଶକଙ୍କୁ ବିସ୍ମିତ କରିଛି । କିନ୍ତୁ ଯେଉଁପଥୁରିଆମାନେ ତାକୁ ଗଢିଥିବେ, କେତେଜଣ ସେଥିରୁ ପାଠପଢିଥିବେ ? ଯଦି ଇଞ୍ଜିନିୟରିଂ ଓ ସ୍ଥାପତ୍ୟର ଏ ପ୍ରକାର ଉଚ୍ଚକୋଟି ଦକ୍ଷତା ନିରକ୍ଷର ଭିତରେ ଫୁଟିପାରେ, ତେବେ ଏବେ ଶିକ୍ଷା କହିଲେ ଗୁଡାଏ ବହି ମୁଖସ୍ଥ କରିବା ମାତ୍ର ବୁଝାଉଛି, ତାହା ଆମର ଚିନ୍ତା ଶକ୍ତିର ଘୋର ଦୈନ୍ୟ ହିଁ ସୂଚନା ଦେଉଛି । ଯେଉଁମାନେ କେବଳ ଡିଗ୍ରୀ ଓ ସାର୍ଟିଫିକେଟକୁ ମନୁଷ୍ୟର ପରିମାପକ ବୋଲି ଧରିଛନ୍ତି ସେମାନେ ବୋଧହୁଏ ଭୁଲିଯାଇଛନ୍ତି ଯେ, ପୃଥିବୀ ଇତିହାସରେ କେତେକ ଶ୍ରେଷ୍ଠବ୍ୟକ୍ତି ଆଦୌ ଅକ୍ଷର ଜାଣି ନ ଥିଲେ । ମହମ୍ମଦ, ରାମକୃଷ୍ଣ, ଶିବାଜୀ, ଆକବର ପ୍ରଭୃତି ଏକାବେଳକେ ନିରକ୍ଷର ଥିଲେ ।"(49)

ଖ୍ରୀ: ୧୨୫୨-୬୦ ବେଳକୁ ଶିକ୍ଷା ବ୍ୟବସ୍ଥାର ସଂସ୍କାର ସଂପର୍କରେ ଡକ୍ଟର ମାନସିଂହ କେତେକ ପ୍ରସ୍ତାବ ଦେଇଥିଲେ । ସେ ପ୍ରସ୍ତାବରେ ଶିକ୍ଷା ବିଭାଗ ତଥା ଶିକ୍ଷାକୁ ଏକ ସ୍ୱୟଂ ଶାସିତ ସଂସ୍ଥାଦ୍ୱାରା ପରିଚାଳିତ କରିବା, ଶିକ୍ଷକ ପ୍ରଧାନ ଶିକ୍ଷା ବ୍ୟବସ୍ଥା ଗ୍ରହଣ କରାଇବା, ସମସ୍ତ ଶିକ୍ଷାକୁ ସାଧାରଣ ଶିକ୍ଷା ଓ ଉଚ୍ଚଶିକ୍ଷା କ୍ରମରେ ରଖିବା, ସାର୍ଟି-ଫିକେଟ୍ ପ୍ରଧାନ ଶିକ୍ଷା ବ୍ୟବସ୍ଥା ଠାରୁ ଦୂରେଇଯାଇ, ବୃତ୍ତି ଭିତ୍ତିକ ଶିକ୍ଷା ବ୍ୟବସ୍ଥା ପ୍ରବର୍ତ୍ତନ କରିବା, ସ୍ଥାନୀୟ ସୁବିଧାକୁ ଲକ୍ଷ୍ୟ ରଖି ଛୁଟି ତାଲିକାର ସଂଶୋଧନ କରିବା ମୁଖ୍ୟ । ନିମ୍ନରେ ମାନସିଂହଙ୍କ ପ୍ରସ୍ତାବ ଗୁଡିକୁ ସଂକ୍ଷେପରେ ଅବତାରଣା କରାଯାଉଛି :-

୧- ଦେଶର ଶିକ୍ଷା ବ୍ୟବସ୍ଥା ଉପରେ ଶାସକ ସରକାରଙ୍କର ପ୍ରତ୍ୟକ୍ଷ ପ୍ରଭୁତ୍ୱ ରହିବ ନାହିଁ । କେବଳ ଶିକ୍ଷାର ବିଶେଷଜ୍ଞ, ପଣ୍ଡିତ, ତ୍ୟାଗୀ, ଅଧ୍ୟାପକ ଓ ଶିକ୍ଷକଙ୍କ ମାର୍ଫତରେ ଶିକ୍ଷାକୁ ଛାଡି ଦିଆଯିବା ଉଚିତ ।

2- ପ୍ରାଇମେରୀ ଶିକ୍ଷାଠାରୁ କଲେଜ ଶିକ୍ଷାଯାଏ, ଘର ଆସ୍‌ବାବ୍ ପତ୍ର ଅପେକ୍ଷା ଶିକ୍ଷକହିଁ ଶିକ୍ଷାନୁଷ୍ଠାନର ପ୍ରଥମତମ ପ୍ରଧାନତମ ଓ ଦୁର୍ଲ୍ଲଭତମ ଉପାଦାନ ବୋଲି ଧରାଯିବ ଓ ଉପଯୁକ୍ତ ଶିକ୍ଷକ ନିର୍ବାଚିତ କଲାପରେ ତାକୁ ଉପଯୁକ୍ତ ସମାଦର କରାଯିବ । (50)

3—ଦେଶରେ ନିମ୍ନ, ମଧ୍ୟ, ଉଚ୍ଚ ବୋଲି ଅର୍ଥହୀନ ଅନୁଷ୍ଠାନ ସବୁ ଉଠାଇଦେଇ ଶିକ୍ଷାକୁ କେବଳ ଦୁଇ ପାବରେ ବିଭକ୍ତ କରାଯାଉ । ପ୍ରଥମପାଦ ହେବ ସାଧାରଣ ଶିକ୍ଷା, ଯାହାକି ଦେଶର ପ୍ରତ୍ୟେକ ବାଳକ ବାଳିକା 14/15, ବର୍ଷଯାଏ ପାଇବେ । ସରକାର ସାଧାରଣ ଶିକ୍ଷାର ଅଭାବକୁ ଦଣ୍ଡନୀୟ ଅପରାଧ ବୋଲି ଘୋଷଣା କରିବେ ।

4—ସିଲାବସ୍‌କୁ ଯଥାସମ୍ଭବ ଲଘୁ ଓ ସରଳ ରଖାଯିବ । ବର୍ତ୍ତମାନ ଅନେକ କିଛି ସିଲାବସ୍‌ରେ ଭର୍ତ୍ତି କରାଯାଇଅଛି, ଯାହା ମଣିଷର ଆପେ ଆପେ ଶିକ୍ଷ୍ୟ ।

5— ପ୍ରତ୍ୟେକ ବାଳକ ଓ ବାଳିକା, ବିଶେଷତଃ ଗ୍ରାମାଞ୍ଚଳରେ ପାଠପଢିବା ଭିତରେ ଯେପରି ପୈତୃକ ବ୍ୟବସାୟକୁ ବା ହାତ କାମରୁ ବିଚ୍ଛିନ୍ନ ନ ହୁଅନ୍ତି, ସେଥିପାଇଁ ଦୈନନ୍ଦିନ ସ୍କୁଲବେଳ ଓ ବାର୍ଷିକ ଛୁଟିର ସମୟ ବଦଳେଇବାକୁ ହେବ ।

ଏହି ବାର୍ଷିକ ଛୁଟି ତାଲିକା ସଂଶୋଧନ ସମ୍ପର୍କରେ 'ଶିକ୍ଷାବିଚିତ୍ର ଗାଥା'ରେ ମାନସିଂହ ବିସ୍ତୃତ ଭାବରେ ଆଲୋଚନା କରିଛନ୍ତି । ମାନସିଂହ ଲେଖିଛନ୍ତି:—"ଲେଖକର ଦୃଢମତ ଏଇ ଯେ, ପ୍ରତ୍ୟେକ ସ୍କୁଲପିଲା ତାର ବାପାକୁ ତାର କୌଳିକ ବୃତ୍ତିରେ ସାହାଯ୍ୟ କରିବ । କେବଳ ସେହି ସୂତ୍ରରେ ହିଁ ଆମଦେଶର ଶିକ୍ଷିତ ଲୋକ ମାନଙ୍କର ଶାରୀରିକ ଶ୍ରମ ପ୍ରତି ଘୃଣା କଟିଯିବ । ବାପାଦାଦି ଆଣ୍ଠୁଏ ପଙ୍କରେ ଧାନ ରୋଉଥିବା ବେଳେ, ପୁଅ ପୁତୁରା ଯାଇ ଶୁଖିଲା ଗୋଡରେ ପ୍ରାଇମେରୀ ସ୍କୁଲରେ ହାଫ୍ ଆଣ୍ଟ୍ ସିଂଧି ବ୍ୟାୟାମ ଶିଖିବେ ଓ ଗଳ୍ପକଥନ ଶୁଣିବେ, ଏହା ଏକ ନିତ୍ୟାନ୍ତ ଅଯୌକ୍ତିକ ଓ ଅସ୍ୱାସ୍ଥ୍ୟକର ଶିକ୍ଷା ବ୍ୟବସ୍ଥା । ଏହା କେବେ ହେଲେ ଜାତି ବା ବ୍ୟକ୍ତିର କଲ୍ୟାଣ ଜନକ ହୋଇ ନପାରେ । ସେଇଥିପାଇଁ ଏ ଲେଖକ ସ୍କୁଲମାନଙ୍କରେ ଛୁଟି ତାଲିକାକୁ ନୂଆକରି ଚଳାଉ ଗତଜାତ ମାନଙ୍କରେ ଚଳାଇଥିଲା । ମୋର ବିନୀତ ମତ ଏହି ଯେ, ଏ ପ୍ରକାର ପରିବର୍ତ୍ତିତ ଛୁଟି ବ୍ୟବସ୍ଥା ଏ ରାଜ୍ୟର ସର୍ବତ୍ର ପ୍ରଚଳିତ ହେବା ଉଚିତ । ଏଡୁକେଶନାଲ ଆଡଭାଇଜର ଥିବା ବେଳେ ଶୁଣିଛି ଏହାଦ୍ୱାରା ଧାନ ରୋଇବା ଓ କାଟିବା ରେ ଅନେକ ଦରିଦ୍ର ଛାତ୍ର ବେଶ ରୋଜଗାର କରିପାରୁଥିଲେ । (51)

6— ଶିକ୍ଷା ସମ୍ପର୍କରେ ମାନସିଂହଙ୍କ ଷଷ୍ଠ ପ୍ରସ୍ତାବ ହେଲା "ପାଠ ପଢାଅ ଜ୍ଞାନାର୍ଜନ ପାଇଁ ସବୁ ସାହାଯ୍ୟ କର କିନ୍ତୁ ସାର୍ଟିଫିକେଟ ଦିଅନାହିଁ । ସାର୍ଟିଫିକେଟର ବ୍ୟାଧି ହେଉଛି, ଗୁକିରୀ ଅନ୍ୱେଷଣ ଓ ନିଜକୁ ଗାଁର ବା ସାଇପଡିଶାର ଅନ୍ୟ ପାର୍ଥିଜଣଠୁଁ ଭିନ୍ନ ମନେକରିବା । ସମଗ୍ର ଶିକ୍ଷା ବ୍ୟବସ୍ଥାକୁ କଳୁଷିତ କରିଛି ଏଇ ସାର୍ଟିଫିକେଟ ।(52)

ଦେଶରେ ଦୁଇଧାରାର ଶିକ୍ଷା ସମ୍ପର୍କରେ ସେ ବିସ୍ତୃତ ଭାବରେ ଆଲୋଚନା କରିଛନ୍ତି । ତାଙ୍କ ମତରେ— ଏହି ସାଧାରଣ ଶିକ୍ଷାପରେ ଯିଏ ଯେଉଁ ବିଭାଗରେ ଯିବ, ସେ ସେହି ବିଭାଗର କଠିନ ପ୍ରବେଶିକା ପରୀକ୍ଷା ପାର ହେଲେ ସେହି ଡିପାର୍ଟମେଣ୍ଟରେ ଭର୍ତ୍ତି ହେବ । ପ୍ରତ୍ୟେକ ଡିପାର୍ଟମେଣ୍ଟ ନିଜ ନିଜର ଲୋକ ସଂଗ୍ରହର ଓ ସେମାନଙ୍କୁ ଟ୍ରେନିଂଦେବାର ଦାୟିତ୍ୱ ନେବେ ।(53) ତତ୍ ସଂଗେ ସଂଗେ କର୍ମକ୍ଷେତ୍ରରେ ନିଯୁକ୍ତି ପାଇଁ, ଉପଯୁକ୍ତ

ପରୀକ୍ଷା ମାଧ୍ୟମରେ ପ୍ରାର୍ଥୀ ଗ୍ରହଣ କଲେ, ସାର୍ଟିଫିକେଟର ବୈରାଗ୍ୟ ରହିବ ନାହିଁ ଓ ପ୍ରାର୍ଥୀମାନେ ଯଥୋପଯୁକ୍ତ ଅଧ୍ୟୟନ ପ୍ରତି ମନ ଦେବେ । ବିଭିନ୍ନ ବିଭାଗରେ ସାର୍ଟିଫିକେଟ ବଳରେ ଉଚ୍ଚପଦବୀ ନ ଦେଇ ଦକ୍ଷ ପୁରୁଖା ଲୋକଙ୍କୁ ନିଯୁକ୍ତି ଦେବା ଦ୍ୱାରା ନୂତନ କର୍ମଚାରୀମାନେ ସଫଳକାମ ହୋଇପାରିବେ ବୋଲି ସେ ମନେ କରନ୍ତି । କୌଣସି ଉଚ୍ଚତର ପଦବୀପାଇଁ "ପ୍ରତ୍ୟକ୍ଷ ସଂଗ୍ରହ ବନ୍ଦ ହୋଇ ତଳୁ ଯେଉଁମାନେ କାମକରି କରି ପୁରୁଖା ହେବେ, ସେମାନଙ୍କ ଭିତରୁ ଅଭିଜ୍ଞ ଲୋକବାଛି ଡିପାର୍ଟମେଣ୍ଟର ଘାଟିଜାଗା ମାନଙ୍କରେ ରଖିବା ଉଚିତ । ଏବେ ଜୀବନରେ ଗୋଟିଏ ହେଲେ ଗ୍ରେରୀ ଡକାୟତି ନ ଧରି ଲୋକେ ପୋଲିସ ବିଭାଗର ବଡସାହେବ ଓ ଜୀବନରେ ଦିନେ ହେଲେ ଶିକ୍ଷକତା ନକରି ବା ଶିକ୍ଷକର କୌଣସି ଟ୍ରେନିଂ ନଥାଇ ମଧ୍ୟ ଶିକ୍ଷା ବିଭାଗର ବଡ ହାକିମ ହେବାର ଦେଖୁଛୁ । ଯାହାର ଫଳରେ ଦେଶର ସମଗ୍ର ଶାସନକଳ ଅକାମିକା ହୋଇ ପଡିଚି । ପ୍ରଧାନକାର୍ଯ୍ୟ ଧରାଯାଉଛି ଡିଗ୍ରୀ ଓ ସାର୍ଟିଫିକେଟ । ଏ ଡିଗ୍ରୀ ଓ ସାର୍ଟିଫିକେଟ ନ ଉଠିଲାଯାଏ, ଦେଶରେ ସୁ–ଶିକ୍ଷା ଅସମ୍ଭବ ।" (54)

ସାଧାରଣ ଶିକ୍ଷାପରେ ଉଚ୍ଚଶିକ୍ଷାର ବ୍ୟବସ୍ଥା ସମ୍ପର୍କରେ ମାନସିଂହ ଯେଉଁ ପ୍ରସ୍ତାବ ଦେଇଥିଲେ ତାହା ବିଶେଷ ପ୍ରଣିଧାନ ଯୋଗ୍ୟ । କାରଣ ଶିକ୍ଷା ବ୍ୟବସ୍ଥାର ସଂସ୍କାର ସମ୍ପର୍କରେ ଶିକ୍ଷା କମିଶନମାନେ ଯେଉଁ ପ୍ରସ୍ତାବ ଆଗତ କରୁଥିଲେ, ତାର ଯଥେଷ୍ଟ ଆଗରୁ ଶିକ୍ଷାବିତ୍ ମାନସିଂହ ସେହି ପ୍ରସ୍ତାବମାନ ପ୍ରଦାନ କରିଥିଲେ । ଉଚ୍ଚଶିକ୍ଷା ସମ୍ପର୍କରେ ମାନସିଂହ ଲେଖିଛନ୍ତି:—"ମୋ ମତରେ ସାଧାରଣ ଶିକ୍ଷାପରେ 'ଉଚ୍ଚଶିକ୍ଷା' ନଦେଇ 'ବିଶେଷଜ୍ଞ ଶିକ୍ଷା' ହେବା ଉଚିତ । ସେ ଶିକ୍ଷା କେବଳ ମୁଷ୍ଟିମେୟ ବୁଦ୍ଧିମାନ ଓ ଚରିତ୍ରବାନ୍ ପିଲାଙ୍କୁ, ପ୍ରତିଭାବାନ ଓ ଚରିତ୍ରବାନ ତ୍ୟାଗୀ ଅଧ୍ୟାପକମାନଙ୍କ ତତ୍ତ୍ୱାବଧାନରେ ଦେବା ଉଚିତ ।" (55)

ଭାରତ ସ୍ୱାଧୀନତା ଲାଭ କଲାପରେ ପ୍ରଚଳିତ ଶିକ୍ଷା ବ୍ୟବସ୍ଥାର ତ୍ରୁଟିକୁ ଅନୁଭବ କରି ଜାତୀୟ ସରକାର ବିଭିନ୍ନ ସମୟରେ ଶିକ୍ଷା ବ୍ୟବସ୍ଥାର ସଂଶୋଧନ ପାଇଁ କମିଶନ ବସାଉଛନ୍ତି । ପ୍ରତ୍ୟେକ କମିଶନ ନିଜର ଦୃଷ୍ଟି କୋଣରୁ ନାନା ପ୍ରସ୍ତାବ ପ୍ରଦାନ କଲେ ମଧ୍ୟ, ଆଜି ଦେଶକୁ ସୁହାଇଲା ପରି ଶିକ୍ଷା ବ୍ୟବସ୍ଥା କରିବାର ଧାରଣା କରି ହେଉନାହିଁ । ବାପୁଜୀଙ୍କ ନୟୀତାଲିମ୍ ଓ ଗ୍ରାମୋଦ୍ୟୋଗକୁ ଭିତ୍ତିକରି ବେସିକ୍ ଶିକ୍ଷା ବ୍ୟବସ୍ଥା ପ୍ରତିଷ୍ଠା କରାଗଲା । ମାନସିଂହ ସେ ଶିକ୍ଷା ବ୍ୟବସ୍ଥା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ ଓ ଫଳ ସ୍ୱରୂପ ସେ ଓଡିଶା ସରକାରଙ୍କ ବିଷ ଦୃଷ୍ଟିରେ ପଡିଥିଲେ । ଜଣେ ଶିକ୍ଷାବିତ୍ ଭାବରେ ସେ ଯେଉଁ ଆଶଙ୍କା କରିଥିଲେ, ତାହା ପରବର୍ତ୍ତୀ କାଳରେ ହିଁ ଘଟିଥିଲା ମାତ୍ର ତା ପୂର୍ବରୁ ମାନସିଂହ ସରକାରଙ୍କ କୋପାନଳର ଶିକାର ହେଲେ । ମାନସିଂହ ବେସିକ୍ ଶିକ୍ଷାକୁ ଏକ ପ୍ରତାରଣା ମୂଳକ ଶିକ୍ଷାବୋଲି ନାମିତ କରିଥିଲେ । ତାଙ୍କ ଭାଷାରେ:–"ଯାହା କେବଳ ପ୍ରତାରଣା ଉପରେ ପ୍ରତିଷ୍ଠିତ, ତାହା ଗୋଟିଏ ବିରାଟ ଜାତିକୁ କେତେଦୂର ଆଗେଇନେବ ?" (57) ତାଙ୍କ ମତରେ—"ବେସିକ୍ ଏ ଦେଶରେ ଏକ ମାତ୍ର ସମାନ୍ତରାଳ ପଦ୍ଧତି ନୁହେଁ । ଟୋଲ, ଚାଟଶାଳୀ, ମଦ୍ରାସା, ଆଶ୍ରମ, ସେବାଶ୍ରମ, ବେସିକ୍, ନନ୍‌ବେସିକ, ପବ୍ଲିକ— ଏପରି ପ୍ରାୟ ଏକ ଡଜନ ସମାନ୍ତରାଳ ଓ ପରସ୍ପର ବିରୋଧୀ ପଦ୍ଧତି ଏ ଦେଶରେ ଆଜି ପ୍ରଚଳିତ । ପୃଥିବୀର

କୌଣସି ଦେଶରେ ଏପରି ଏକାଧାରାରେ ମାରାତ୍ମକ ଓ ଅସହାୟ୍ୟ ବ୍ୟବସ୍ଥା ନାହିଁ ।"(୫୪) ମାନସିଂହ ବିଭିନ୍ନ ସମୟରେ ସରକାରଙ୍କ ପରୀକ୍ଷାମୂଳକ ଶିକ୍ଷା ବ୍ୟବସ୍ଥାକୁ ବିରୋଧ କରିଥିଲେ ଓ ସେଥିପାଇଁ ସରକାରଙ୍କର ନାନା ପ୍ରତିକ୍ରିୟାକୁ ସହିବାକୁ ବାଧ୍ୟ ହୋଇଥିଲେ । ତଥାପି ନିର୍ଭୀକ ପ୍ରାଣ ଶିକ୍ଷାବିତ୍ ମାନସିଂହ ମନ୍ତବ୍ୟ ପ୍ରକାଶ କରିବାରେ କେବେ କୁଣ୍ଠିତ ହୋଇନାହାନ୍ତି ।

ସ୍ୱାଧୀନ ଭାରତବର୍ଷରେ ଆମ୍ଭେମାନେ ଶ୍ରେଣୀହୀନ ସମାଜବ୍ୟବସ୍ଥା ପ୍ରଚଳନ କରିବାକୁ ଯାଉଛୁ କହି ପ୍ରଥମେ ଆମର ଶିକ୍ଷା ବ୍ୟବସ୍ଥାରେ ହିଁ ଏହାର ବିରୋଧ କରୁଛୁ । ଦେଶର କ୍ଷମତାଶୀଳ ଓ ଧନୀକମାନଙ୍କ ପାଇଁ ବ୍ୟୟବହୁଳ ଶିକ୍ଷାର ବ୍ୟବସ୍ଥା ଥିବାବେଳେ, ଅନ୍ୟ ସାଧାରଣଙ୍କ ପାଇଁ ଭିନ୍ନ ସ୍କୁଲ ସ୍ଥାପନକୁ ମାନସିଂହ ସମାଲୋଚନା କରି ଲେଖିଥିଲେ:—"ସମଗ୍ର ଜାତିର ପିଲାମାନଙ୍କ ପାଇଁ ଗୋଟିଏ ପ୍ରକାର ସ୍କୁଲ, ଆଉ ଡି.ସି.ଆଇ. ଓ ହାକିମମାନଙ୍କ ପିଲାଙ୍କ ପାଇଁ ଆଉ ଏକ ପ୍ରକାର ସ୍କୁଲ । ବେଶ ଚମତ୍କାର ଆଦର୍ଶ । ଏଥିରେ ଶ୍ରେଣୀହୀନ ନ୍ୟାୟ ପ୍ରତିଷ୍ଠ ସମାଜ ଆପେ ଆପେ ଗଢ଼ିଉଠିବ ।"(୫୨)

ବର୍ତ୍ତମାନର ଶିକ୍ଷା ବ୍ୟବସ୍ଥା ସମ୍ପର୍କରେ ମାନସିଂହଙ୍କ ସମାଲୋଚନା ଅତ୍ୟନ୍ତ କଠୋର । ଶିକ୍ଷାର ଶ୍ରେଣୀବିଭାଗ କେବଳ ନୁହେଁ, ଶିକ୍ଷା ସଂସ୍କାର ଓ କର୍ମାଭିମୁଖୀ ଶିକ୍ଷା ତାଙ୍କର ତୀକ୍ଷ୍ଣ ବାକ୍ୟବାଣରୁ ନିଷ୍କୃତି ପାଇନାହିଁ । ଏ ସମସ୍ତ ପାଇଁ ସରକାର ଯେ ସମ୍ପୂର୍ଣ୍ଣ ଦାୟୀ, ଏଥିନେଇ ସେ ନିଶ୍ଚିତ । ତେଣୁ ଶିକ୍ଷାର ସଂସ୍କାର ପାଇଁ ହେଉଥିବା ନାନା ଉଦ୍ୟମକୁ ସରକାରଙ୍କର ସାଧାରଣ ଲୋକଙ୍କ ପ୍ରତି ଆଖିଠାର ବୋଲି ସେ କହିଛନ୍ତି । ଶିକ୍ଷା ସଂସ୍କାର ଭାରତରେ ଯାହା କରାଯାଉଛି, ତା ପଶ୍ଚାତରେ ଥିବା ଆଦର୍ଶ ଓ ନିଷ୍ଠାର ଅଭାବରୁ ସେ ଗୁଡ଼ିକ ନୂଆ ବୋତଲରେ ପୁରୁଣା ମଦ ଭଳିହିଁ ଶୋଭା ପାଉଛି । ସେ ସମୟରେ ମାନସିଂହ ତତ୍କାଳୀନ ଶିକ୍ଷା ବ୍ୟବସ୍ଥା ସମ୍ପର୍କରେ ଯେଉଁ ସ୍ୱର ଉତ୍ତୋଳନ କରିଥିଲେ ବର୍ତ୍ତମାନ ମଧ୍ୟ ସେ କଥାର ଉପାଯୋଗିତା ରହିଅଛି । ସେତେବେଳେ ମାନସିଂହ କହିଥିଲେ:—"ମଲ୍ଟି ପର୍ପସ୍ ବା ହାୟାର ସେକେଣ୍ଡାରୀ ପ୍ରଭୃତି ନୂଆ ଲେବଲ୍ ମାରିଦେଲେ, ଶିକ୍ଷାର ବିପ୍ଳବ ଆସିଯିବନି । କି 'ବାରବର୍ଷକୁ ।।+।, ଗ୍ରରି ବର୍ଷକୁ ବା 3+। କରିଦେଲେ ନୂଆ ଜାତି ଫୁଟି ଉଠିବନି । ଯଦି ପ୍ରକୃତ ଆନ୍ତରିକତା ଥାଏ, ଯଦି ଜାତି ଗଠନର ପ୍ରକୃତ ଲକ୍ଷ୍ୟ ଥାଏ, ତେବେ ଧୂଆଁବାଣରେ ବ୍ୟବହାର ନକରି, ଋଷନ୍ମାନେ ଯେପରି କରିଛନ୍ତି, ସେହପରି କରିବାର ଚେଷ୍ଟା ହେଉ । ସାମାନ୍ୟ ଶିକ୍ଷା-ବିତ୍ ଭାବରେ ଏହାହିଁ ଲେଖକର ବିନୀତ ନିବେଦନ ।"(୬୦)

ଜଣେ ଶିକ୍ଷାବିତ୍ ଭାବରେ ମାନସିଂହଙ୍କ ଶିକ୍ଷା ସମ୍ପର୍କୀୟ ଦୂରଦୃଷ୍ଟି ପ୍ରଶଂସନୀୟ । ସାଧାରଣ ଡିଗ୍ରୀଧାରୀମାନଙ୍କର କର୍ମ ସଂସ୍ଥାନ ନହେଲେ, ଦେଶ ସଂକଟର ସମ୍ମୁଖୀନ ହେବା ସ୍ୱାଭାବିକ । ଶିକ୍ଷିତ ବେକାରମାନେ ସବୁ ଆନ୍ଦୋଳନର ପୁରୋଭାଗରେହିଁ ଦେଖା ଦେଇଥାନ୍ତି । ଭାରତରେ ପ୍ରଚଳିତ ଶିକ୍ଷା ବ୍ୟବସ୍ଥା ଶିକ୍ଷିତ ବେକାର ତିଆରିର ଏକ କାରଖାନା । ଏହି ସମସ୍ୟାର ସମାଧାନ ପାଇଁ, ଆମର ବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟର ଶିକ୍ଷାକୁ ବହୁମୁଖୀ ଓ ଆବଶ୍ୟକତାଭିତ୍ତିକ କରିବା ଉଚିତ । ମାନସିଂହ ପୂର୍ବ ଗଡଜାତରେ ଶିକ୍ଷା ପରାମର୍ଶଦାତା ଥିବା ସମୟରେ 'ହିଂଦୋଳ'

ରିପୋର୍ଟ'ରେ ଲେଖିଥିଲେ:—"ପ୍ରତ୍ୟେକଟି ରାଜ୍ୟ କେବଳ ସେଇ ଏକ ଧରଣର କିତାପୀ ହାଇସ୍କୁଲର ସଂଖ୍ୟା ନ ବଢାଇ ଯଦି ପରସ୍ପରର ସହଯୋଗରେ ସମଗ୍ର ଗଡଜାତ ଅଂଚଳର ପ୍ରୟୋଜନ ଅନୁଯାୟୀ ଗୁଡିଏ ଟେକ୍‌ନିକାଲ ଅନୁଷ୍ଠାନ ବସାଇ ଯାଆନ୍ତେ, ତେବେକେତେ ଅଧିକ ମଙ୍ଗଳଦାୟକ ଯୋଜନା ତାହା ନ ହୁଅନ୍ତା ! ସବୁଠାରେ ସେହି ଏକପ୍ରକାର କିତାପୀ ହାଇସ୍କୁଲ ନ ବସାଇ କାହିଁକି, ସବୁ ଦରବାରର ଆଂଶିକ ସହାୟତାରେ ହିଂଦୋଳରେ ଏକ କେନ୍ଦ୍ରୀୟ କୃଷି ବିଦ୍ୟାଳୟ, ବଉଦରେ ଏକ କେନ୍ଦ୍ରୀୟ ପଲିଟେକ୍‌ନିକାଲ ସ୍କୁଲ, ତାଳଚେରରେ ଏକ କେନ୍ଦ୍ରୀୟ ମେଡିକାଲ ସ୍କୁଲ, ଗାଂଗପୁରରେ ଏକ କେନ୍ଦ୍ରୀୟ ପଶୁଚିକିତ୍ସା ବିଦ୍ୟାଳୟ ଏବଂ ଢେଙ୍କାନାଳରେ ଏକ କେନ୍ଦ୍ରୀୟ ଶିକ୍ଷକ ଟ୍ରେନିଂ ସ୍କୁଲ, ବସାଯାଇ ନପାରନ୍ତା ? ମୋର ବିଶ୍ୱାସ, ଗଡଜାତ ରାଜ୍ୟ ଗୁଡିକ ବିରାଟ ପରିବର୍ତ୍ତନ ରାଜୀର ଦ୍ୱାରଦେଶ ନିକଟରେ ଆଜି ଦଣ୍ଡାୟମାନ । ସମଗ୍ର ବିଶ୍ୱ ଏକ କେନ୍ଦ୍ରୀୟ-ଶାସନ ଆଡକୁ ଯାଉଛି।"(61) ପ୍ରାକ୍ ସ୍ୱାଧୀନତା କାଳରେ ମାନସିଂହ ଶିକ୍ଷା ବ୍ୟବସ୍ଥାର ପରିବର୍ତ୍ତନ ପାଇଁ ଯେଉଁ ପରାମର୍ଶ ଦେଇଥିଲେ, ସ୍ୱାଧୀନତାର ତ୍ରିଶ ବର୍ଷ ପାଳନ କରିବା ଅବସରରେ ଆମ୍ଭେମାନେ ସେହି ଅନୁପାତରେ ଆଗେଇଥିଲାପରି ମନେହୁଏ ନାହିଁ । ଏବେମଧ୍ୟ ସରକାର, ଶାସନକଳ ଓ ପ୍ରଶାସକମାନଙ୍କର ସ୍ୱେଚ୍ଛାନୁସି ଅନୁସାରେ ଶିକ୍ଷା ବିଭାଗ ଉପରେ ନାନା ପ୍ରକାର ଅସ୍ତ୍ରୋପଚାର କରିବାରେ ବ୍ୟସ୍ତ । ଖ୍ରୀ: 1960 ମସିହାରେ ମାନସିଂହ ଦେଶରେ ପ୍ରଚଳିତ ଏକାଧିକ ସମାନ୍ତରାଳ ଶିକ୍ଷା ବ୍ୟବସ୍ଥାକୁ ଆକ୍ଷେପକରି ପରାମର୍ଶ ଦେଇଥିଲେ ଯେ,— "ଲେଖକର ଦୃଢମତ ଏହି ଯେ, ଦେଶରେ ଏକାଧିକ ସମାନ୍ତରାଳ ଶିକ୍ଷା ପଦ୍ଧତିକୁ ବଞ୍ଚେଇ ରଖିବା ଅନୁଚିତ ଯେପରି, ସେହିପରି ଅନାବଶ୍ୟକ, ଯାହା ଆନ୍ତର୍ଜାତିକ ଓ ବିଶ୍ୱବ୍ୟାପୀ, ଆମେ ସେହି ନକ୍‌ସା ଗ୍ରହଣ ନକରି ବାର ଆଡର ପରୀକ୍ଷା କରିବାକୁ ଯିବା କେବଳ ବୁଦ୍ଧି ଭ୍ରଂଶର ଚିହ୍ନ, ପ୍ରଗତିର ଚିହ୍ନ ନୁହେଁ । ଏକ ପଦ୍ଧତି ଭିତରେ ଆମେ ସକଳ ପଦ୍ଧତିର ଉତ୍ତମାଂଶ ମିଶାଇ, ଆମଦେଶର ସ୍ପୃହିଦା ଅନୁଯାୟୀ ଆମେ କାହିଁକି ଏକ ବଳିଷ୍ଠ ସମ୍ମାନନୀୟ ଶିକ୍ଷା ବ୍ୟବସ୍ଥା ଏ ଦେଶରେ ଠିଆ କରାଇ ନ ପାରିବା ! ତାହାର କୌଣସି କାରଣ ନାହିଁ ।"(62)

ତ୍ରୁଟିପୂର୍ଣ୍ଣ ଶିକ୍ଷା ବ୍ୟବସ୍ଥା ସହ ପ୍ରଚଳିତ ମୂଲ୍ୟାୟନ ବା ପରୀକ୍ଷା ପଦ୍ଧତି ସଂପୃକ୍ତ । ମୂଲ୍ୟାୟନ ତଥା ପରୀକ୍ଷା ବିଦ୍ୟାଳୟ ତଥା ବିଶ୍ୱବିଦ୍ୟାଳୟ ଉତ୍ତୀର୍ଣ୍ଣର ତଥା ଛାତ୍ରଙ୍କର ବିଦ୍‌ବତ୍ତାର ମାପକାଠି ହୋଇଥିବାରୁ ଓ ଏଇ ପ୍ରଶଂସାପତ୍ର ଗୁଡିକ ଶିକ୍ଷାଦାନ ସହ ସଂପୃକ୍ତ ନଥିବା ବୋର୍ଡ ତଥା ବିଶ୍ୱବିଦ୍ୟାଳୟର ବ୍ୟୁରୋକ୍ରାଟମାନଙ୍କଦ୍ୱାରା ବିତରିତ ହେଉଥିବାରୁ ମୂଲ୍ୟାୟନର ପଦ୍ଧତିଟି ଯାନ୍ତ୍ରିକ ହୋଇ ଉଠିଛି । ଛାତ୍ର, ଶିକ୍ଷକ, ପ୍ରଶ୍ନକର୍ତ୍ତା ଓ ପରୀକ୍ଷକ ଏମାନଙ୍କ ଭିତରେ ସହଯୋଗ ଓ ବୁଝାମଣା ନାହିଁ । ଯାହାର ଫଳ ହୋଇଛି ଭୟଙ୍କର ଦୁର୍ନୀତି । ବ୍ୟୁରୋକ୍ରାସୀ ସହିତ ସଂପୃକ୍ତ ହୋଇଥିବାରୁ ଶିକ୍ଷା ବିଭାଗର ସର୍ବାଧିକ ଦୁର୍ନୀତି ଏହି ପରୀକ୍ଷା ସଂକ୍ରାନ୍ତରେ ହିଁ ପରିଦୃଷ୍ଟ । ଛାତ୍ର ଶିକ୍ଷକ ଆଲୋକ ଦ୍ୱାରା ଆକର୍ଷିତ ହେଉଥିବା କୀଟଭଳି ଏ ଦୁର୍ନୀତି ଯଜ୍ଞରେ ବଳିପଡନ୍ତି । ମାନସିଂହ ନିଜସ୍ୱ ଦୃଷ୍ଟିକୋଣରୁ ଏହି ପରୀକ୍ଷା ପଦ୍ଧତିର ଦୋଷଗୁଣ ନିର୍ଣ୍ଣୟ କରିଛନ୍ତି । ପ୍ରଚଳିତ ମୂଲ୍ୟାୟନ ପଦ୍ଧତିର କଠୋର ନିନ୍ଦା କରି ସେ ଲେଖିଛନ୍ତି :—"ଗୋଟିଏ ପିଲା ବାରବର୍ଷକାଳ ଆମ ସ୍କୁଲମାନଙ୍କରେ ଓ ଆମଶିକ୍ଷକମାନଙ୍କର ତତ୍ତ୍ୱାବଧାନରେ ପଢିଲାପରେ ଯଦି ଶେଷରେ ଷହେରୁ

ମାତ୍ର ତିରିଶଟି ମାର୍କରଖି ପାଶ କରିବ ତେବେ ଇଏତ ଚମତ୍କାର ଆଦର୍ଶ । ଦେଶ ଓ ଜାତି ଆଗରେ ଓ ଆମ ଶିକ୍ଷା ବ୍ୟବସ୍ଥାର ଗୌରବ ତିଳକବୋଲି ଯାହାକୁ ଧରିବାକୁ ହେବ । X X X ଯଦି ପିଲାଙ୍କୁ ପାଶ କରେଇବା କେବଳ ଲକ୍ଷ୍ୟ ହୁଏ ଓ ଆମେ ମନେକରୁ ଯେ ତାହାହିଁ 'ଉଚ୍ଚଶିକ୍ଷା'ର ପ୍ରସାର ବା ଶୈକ୍ଷିକ ବିପ୍ଳବ, ତେବେ ପରୀକ୍ଷାପରି ଗୋଟିଏ ଆୟସସାଧ୍ୟ ଆୟୋଜନ ବା ଆଉ କାହିଁକି ? X X Xଶହେରୁ ତିରିଶମାର୍କ ରଖି ପାଶ୍ ଦେବା ଯେଉଁ ପରୀକ୍ଷାର ଲକ୍ଷ୍ୟ, ତାହା ଏକ ଅନୁକମ୍ପନୀୟ ପାର୍ଶଚ୍ଛୁତା ଆଉକିଛି ହୋଇ ନ ପାରେ ।"(63)

ସେ ସମୟରେ ଶିକ୍ଷା ସଂସ୍କାର ସମ୍ପର୍କରେ ମାନସିଂହ ଯେଉଁ କେତୋଟି ପ୍ରସ୍ତାବ ଦେଇଥିଲେ, ତାହାର ଉପଯୋଗିତା ଏବେମଧ୍ୟ ଥିବାରୁ ସେ ପ୍ରସ୍ତାବ ମଧ୍ୟରୁ କେତେଗୋଟିକୁ ନିମ୍ନରେ ଉଲ୍ଲେଖ କରାଗଲା ।

1—ପ୍ରଥମ ଓ ପ୍ରଧାନ ଶୈକ୍ଷିକ ବିପ୍ଳବ ବା ସଂସ୍କାର ହେବା ଉଚିତ ଯେ, ସମଗ୍ର ଜାତିପାଇଁ କେବଳ ଗୋଟିଏମାତ୍ର ଶିକ୍ଷାପଦ୍ଧତିର ପ୍ରଚଳନ । ହାକିମଙ୍କ ପୁଅ ଗୋଟାଏ ରୀତିରେ, ପୁଣି ଆଦିବାସୀଙ୍କ ପିଲେ ଆଉ ଗୋଟାଏ ରୀତିରେ, ଏହା କୌଣସି ସଭ୍ୟ ଜାତି ପକ୍ଷରେ ସୁନ୍ଦରତ ନୁହେଁ, ଏହା ପୁଣି ଏକ ପକ୍ଷରେ ଏକ ମହାଜାତିର ଗଠନରେ ସାହାଯ୍ୟ କରିବା ପରିବର୍ତ୍ତେ ଚିରକାଳ ଜାତିକି ଖଣ୍ଡ ଖଣ୍ଡ କରି ରଖିବ ଅନ୍ୟପକ୍ଷରେ ଏହା ଭୀଷଣ ଅପବ୍ୟୟଶୀଳ ।(64)

2—ଦ୍ୱିତୀୟ ସଂସ୍କାର ହେବା ଉଚିତ, ବିଦେଶୀ ଅମଳର ସରକାରୀ ବେସରକାରୀ ବୋଲି ଦୁଇଟି ବିପରୀତାତ୍ମକ ଯେଉଁଭାବ ଦେଶରେଥିଲା, ଅନ୍ତତଃ ଶିକ୍ଷା କ୍ଷେତ୍ରରୁ ତାହାର ମୂଳୋତ୍ପାଟନ । X X X ଆମକୁ ଇଂଲାଣ୍ଡ ଓ ଆମେରିକା ପରି ସବୁ ଶିକ୍ଷାନୁଷ୍ଠାନକୁ ଲୋକଙ୍କ ହାତରେ ଛାଡି ଦେବାକୁ ହେବ, ଯାହାକି ଡିମୋକ୍ରାସୀ ବା ଗଣତନ୍ତ୍ର ଭାବରେ ଅଭିବର୍ଦ୍ଧନ ପାଇଁ ଏକାନ୍ତ ଦରକାର । ନଚେତ କମ୍ୟୁନିଷ୍ଟ ଶାସିତ ଦେଶପରି ସବୁ ଶିକ୍ଷାନୁଷ୍ଠାନ ଗୁଡିକୁ ଏକାନ୍ତରେ ସର-କାରୀ କରିବାକୁ ହେବ । ଏହା କିନ୍ତୁ ପଥ ତିଆରି କରିଦେବ ଭବିଷ୍ୟତରେ ଏକଚ୍ଛତ୍ରବାଦ ପାଇଁ ।"(65)

3—"ଯଦି ଶିକ୍ଷାର ପ୍ରକୃତ ବିକାଶ ଆମେ ଚାହୁଁ, ତେବେ ଆମର ଶିକ୍ଷକକୁ ତା ସ୍କୁଲ ରୂପକ ଛୋଟ ରାଜ୍ୟରେ ପୁରା ସ୍ୱାଧୀନତା ଦେବାକୁ ହେବ । ଡି·ପି·ଆଇ· ଓ ଇନସ୍‌ପେକ୍ଟର କେବଳ ରହିବେ ତାକୁ ଅର୍ଥ ଓ ପରାମର୍ଶ ସାହାଯ୍ୟ ଦେବାକୁ, ଡରେଇବାକୁ ନୁହେଁ ।"(66)

4— ଭାରତର ଐତିହ୍ୟ ରକ୍ଷଣ— ପ୍ରତ୍ୟେକ ଦେଶରେ ଶିକ୍ଷା ବ୍ୟବସ୍ଥା ଏକାନ୍ତରେ ହେବ ମଧ୍ୟ ଜାତୀୟ ବ୍ୟବସ୍ଥା । ଏହାର ଦୁଇଟିଦିଗ । ଗୋଟିଏ ହେଉଛି, ଏକ ଜାତିର ସଂସ୍କୃତିର ଯାହା ଉତ୍କୃଷ୍ଟାଂଶ ତାହାକୁ ବଞ୍ଚେଇ ରଖିବାର ଦାୟିତ୍ୱ ଏକାନ୍ତରେ ସେ ଦେଶର ସ୍କୁଲ ଗୁଡିକର । ଭାରତର ବିଶିଷ୍ଟ ସଂସ୍କୃତି ସମଗ୍ର ବିଶ୍ୱର ନମସ୍ୟ । କିନ୍ତୁ କାହିଁ ତାହା ଆମର ସ୍କୁଲ କଲେଜରେ ? କାହିଁ ଗୁରୁ ଶିଷ୍ୟର ସେଇ ଗୌରବାବହ ସଂପର୍କ, ଯାହା ସାରା ବିଶ୍ୱରେ ଆଲୋଚନାର ବସ୍ତୁ ହୋଇଛି ? କାହିଁ ବିଦ୍ୟାପ୍ରତି ସେହି ପରମ ଅନୁରାଗ ? ଆମର ପାଞ୍ଚହଜାର ବର୍ଷର ସଭ୍ୟତାରେ କେଉଁଠିଥିଲା, ବିଦ୍ୟା କହିଲେ ଠକାଠକି ଖଣ୍ଡେ ସାର୍ଟିଫିକେଟ କାଗଜ ପାଇବାର ପ୍ରଚେଷ୍ଟା ? ବିଦ୍ୟାନୁଷ୍ଠାନ ମାନଙ୍କରେ କାହିଁ ଅଛି ସେଇ ସରଳ ଜୀବନ ଓ ଉଚ୍ଚଚିନ୍ତା ?"

ଜାତୀୟ ଶିକ୍ଷା ପଦ୍ଧତିର ଆଉଏକ ଦିଗ ହେଲା ଆମ ଜାତିର ସଂସ୍କୃତିର ଯାହା ଦୋଷ ବା ଅଭାବ ରହିଯାଇଛି, ଆମର ସ୍କୁଲ ଜରିଆରେ ଆଗାମୀପୁରୁଷମାନଙ୍କଠାରେ ଯେପରି ସେ ସବୁ ଦେଖା ନଯାଏ, ତାର ବ୍ୟବସ୍ଥା ।"(୬୭)

5– ସମଗ୍ର ଦେଶର ଶିକ୍ଷା ବ୍ୟବସ୍ଥାକୁ ଏକମୁଖୀ କରି ଗୋଟିଏ ମହାନ୍ ଆଦର୍ଶରେ ଗଢିବା ପାଇଁ, ଦେଶରେ ଏକାନ୍ତ ଆବଶ୍ୟକ ସର୍ବଶ୍ରେଣୀର ଶିକ୍ଷାବିତ୍ ଓ ଚିନ୍ତାଶୀଳ ଲୋକଙ୍କର ଏକ ମିଳନ ସଂସ୍ଥା, ଯେଉଁଠାରେ ସମସ୍ୟାଗୁଡିକ ନିର୍ଭିକ ଓ ନିରପେକ୍ଷ ଭାବରେ ବିଚାର ହୋଇପାରିବ ଓ କର୍ତ୍ତୃପକ୍ଷ ଯାହାର ବିଚାରକୁ ସମ୍ମାନ ଦେବେ ।"(୬

ସାମାନ୍ୟ କାରଣ ପାଇଁ ଲାଠିନେବା ବା ଅନ୍ୟର ଦ୍ୱାରସ୍ଥହେବା ଭାରତର ଏକ ପ୍ରାଚୀନ ପରଂପରା । ଇଂରେଜମାନଙ୍କ ଅମଳରେ ଅନ୍ତତଃ ଶିକ୍ଷା ବ୍ୟବସ୍ଥାରେ ଏ ପରଂପରାରେ ଅଧୋଗତି ଘଟିଥିଲା । ଭାରତ ସ୍ୱାଧୀନତା ପାଇଲାପରେ, ଉଚ୍ଚୋଚ ତଥା ସାମାନ୍ୟ ସୁବିଧା ହାସଲ କରିବା ପାଇଁ ଅନ୍ୟର ଦ୍ୱାରସ୍ଥ ହେବା ବା ସୁପ ପ୍ରୟୋଗ କରିବା ନୂତନ ଭାବରେ ଜାତୀୟ ସଂସ୍କୃତିରେ ପରିଣତ ହୋଇଛି । ପରୀକ୍ଷା ପରେ ପରୀକ୍ଷକମାନେ କେବଳ ଏହି ପ୍ରକାର ଶରବ୍ୟ ହେଉ ନାହାନ୍ତି, କ୍ଲାସ ବା ଡିଗ୍ରୀ ବାଣ୍ଟିବାରେ ତଥାକଥିତ ଶିକ୍ଷାବିତ୍‌ମାନେ ପରସ୍ପର ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା କରୁଛନ୍ତି । ମାନସିଂହ ଏହି ବିଉସ୍ତ ପ୍ରକ୍ରିୟା ବିରୁଦ୍ଧରେ ବିକ୍ଷୋଦ୍‌ଗାର କରି ଲେଖିଛନ୍ତି:—ବ୍ରିଟୀଶ୍ ରାଜତ୍ୱରେ ଯେଉଁମାନେ ବଢିଥିଲେ, ସେମାନେ ଏ ବିଭତ୍ସତା କଳ୍ପନା କରିପାରିବେ ନାହିଁ, । ଇଂଲଣ୍ଡର ନୀଚତମ ନାଗରିକ ମଧ୍ୟ ପରୀକ୍ଷା ଉପରେ 'ଧରାଧରି କଳ୍ପନା କରି ପାରିବେ ନାହିଁ ଏବଂ କୌଣସି ଦେଶରେ ଏହା ହେଉଥିବାରେ କୋଟି ମଧ୍ୟ ବିଶ୍ୱାସ କରିବେନି । ଭାରତୀୟ ବିଶ୍ୱବିଦ୍ୟାଳୟମାନଙ୍କରେ ପିଏଚ୍.ଡି. ଓ ଫାଷ୍ଟକ୍ଲାସ୍ ସୃଷ୍ଟି କରିବାରେ ବିଭିନ୍ନ ଡିପାର୍ଟମେଣ୍ଟ ର ପ୍ରଫେସରମାନଙ୍କର ଏବେ ପ୍ରତିଯୋଗିତା ଚାଲିଛି ବୋଲି କୁହାଯାଉଛି ।"(୬୨)

ପରୀକ୍ଷା ପଦ୍ଧତି ପରେ ମାନସିଂହଙ୍କ ସମାଲୋଚନାର ଶରବ୍ୟ ହୋଇଛି ସିଲାବସ୍ ଓ ପାଠ୍ୟ ପୁସ୍ତକ ନିର୍ବାଚନ । ସ୍ୱାଧୀନ ଭାରତରେ ଶିକ୍ଷକ ଓ ଛାତ୍ର ଉଭୟଙ୍କ ଉପରେ ଶିକ୍ଷା ବିଭାଗର ହାକିମମାନଙ୍କ ଦ୍ୱାରା ଏକ ନିର୍ଦ୍ଦିଷ୍ଟ ପାଠ୍ୟକ୍ରମ ଚାପିଦିଆଯାଇଥାଏ । ପାଠ୍ୟ ପୁସ୍ତକ ରଚନା, ନିର୍ବାଚନ ତଥା ପ୍ରସାର ଉପରେ ଶିକ୍ଷକ, ଜନସାଧାରଣଙ୍କର କୌଣସି ନିୟନ୍ତ୍ରଣ ନଥାଏ । ଶିକ୍ଷା ହାକିମମାନଙ୍କର ତାହା ଏକଚାଟିଆ ଅଧିକାର । ପାଠ୍ୟପୁସ୍ତକ ନିୟନ୍ତ୍ରଣ ଔପନିବେଶିକ ଶିକ୍ଷାନୀତିର ଫଳ । ମାନସିଂହ ଏ ସଂପର୍କରେ ଦୃଷ୍ଟି ଆକର୍ଷଣ କରି କହନ୍ତି ।—"ସାମ୍ରାଜ୍ୟ ଶାସକ ଭାବରେ ତାଙ୍କର(ଇଂରେଜମାନଙ୍କର) ନିତ୍ୟାନ୍ତ ଆବଶ୍ୟକ ଥିଲା ପାଠ୍ୟପୁସ୍ତକ ନିୟନ୍ତ୍ରଣ କରିବା । କାରଣ ଗୋଟିଏ ଜାତିର ଶିକ୍ଷକମାନେ ପାଠ୍ୟପୁସ୍ତକ ଜରିଆରେ ସେ ଜାତିର ନୂତନ ବଂଶଧରମାନଙ୍କୁ କ'ଣ ନ ଶିଖେଇ ପାରନ୍ତି ଓ କିପରି ଗଢି ନପାରନ୍ତି ? ନିୟନ୍ତ୍ରିତ ନ ହେଲେ ପରାଧୀନ ଜାତିର ଶିକ୍ଷକମାନେ ଟେକ୍‌ଷ୍ଟବୁକ୍ ଦେଇ ପ୍ରତି ସ୍କୁଲରେ ବିଦ୍ରୋହୀ ଓ ବିପ୍ଳବୀ ଗଢି ଚାଲିବେ, ଅକ୍ଳେଶରେ । ଚତୁର କମ୍ୟୁନିଷ୍ଟମାନେ ଏଇଥିପାଇଁ ଯେଉଁଠି ଶାସନ କ୍ଷମତାକୁ ଆସିଛନ୍ତି, ପ୍ରଥମେ ତାଙ୍କର ପ୍ରଥମ କାମ ହେଉଛି ଟେକ୍‌ଷ୍ଟବୁକ୍ କଣ୍ଟ୍ରୋଲ, ଠିକ୍ ନିଜ ଆଦର୍ଶରେ ନୂତନ ବଂଶଧରକୁ ଗଢିନେବା ପାଇଁ, ସମସ୍ତ ପାଠ୍ୟପୁସ୍ତକର କଠୋର ନିୟନ୍ତ୍ରଣ । ଇଂରେଜ ଭାରତରେ ପାଠ୍ୟପୁସ୍ତକଯାକ ଡି.ପି.ଆଇ.ର

ନିୟନ୍ତ୍ରଣରେ ସେଇଥିପାଇଁ ରଖିଥିଲେ, ଯାହାକି ତାଙ୍କ ଇଂଲଣ୍ଡରେ ଘଟିଥିଲେ ସେଠି ସାଂଗେ ସାଂଗେ ବିପ୍ଳବ ହେବା ନିଶ୍ଚିତ ।"(70) ପରାଧୀନ ଭାରତରେ ପାଠ୍ୟପୁସ୍ତକ ନିୟନ୍ତ୍ରଣ ହୋଇଥିଲା ଇଂରେଜମାନଙ୍କର ସ୍ୱାର୍ଥପାଇଁ ଓ ତଥା କଥିତ ସ୍ୱାଧୀନ ଭାରତରେ ଶିକ୍ଷା ନିୟନ୍ତ୍ରିତ ହୋଇଛି କ୍ଷମତାସୀନ ରାଜନୀତିଜ୍ଞ, ବ୍ୟୁରୋକ୍ରାଟମାନଙ୍କ ସ୍ୱାର୍ଥପାଇଁ ।

ମାନସିଂହ ନିଜେ ଜଣେ ସାହିତ୍ୟ ସ୍ରଷ୍ଟା ଓ ଇଂରାଜୀ ସାହିତ୍ୟର ଜଣେ ବିଦଗ୍ଧ ପାଠକ । ଇଂରାଜୀ ଓ ଓଡିଆରେ ଅଧ୍ୟାପକତ୍ୱ କରିବା ସମୟରେ ସେ ପ୍ରୀତିକର ଓ ଅପ୍ରୀତିକର ଉଭୟ ପରିସ୍ଥିତିରେ ସମ୍ମୁଖୀନ ହୋଇଥିଲେ, ତେଣୁ ସାହିତ୍ୟର ଅଧ୍ୟୟନ ଅଧ୍ୟାପନା ସମ୍ପର୍କରେ ସେ କରିଥିବା ଆଲୋଚନା ବ୍ୟକ୍ତିଗତ ରୁଚି ଓ ଅସୂୟାଦ୍ୱାରା ଆକ୍ରାନ୍ତ । ଭାଷା ଓ ସାହିତ୍ୟର ଶିକ୍ଷାଦାନ ସମ୍ପର୍କରେ ସେ କରିଥିବା ଦୀର୍ଘ ଆଲୋଚନା ତାଙ୍କ ଚିନ୍ତା ଅପେକ୍ଷା, ବ୍ୟକ୍ତିଗତ ରୁଚିକୁ ବେଶି ପ୍ରତିଫଳିତ କରେ ।

ପ୍ରଚଳିତ ଶିକ୍ଷା ବ୍ୟବସ୍ଥା ଓ ବିଧି ସମ୍ପର୍କରେ ଜୀବନସାରା ସ୍ୱର ଉତ୍ତୋଳନ କରି ଆସିଥିବା ଡକ୍ଟର ମାୟାଧର ମାନସିଂହ ଜୀବନର ଶେଷ ପର୍ଯ୍ୟାୟ ଆଡକୁ ନିଜର ମତାମତ ପରିବର୍ତ୍ତନ କରିଥିବାର ଦେଖାଯାଏ । 'ପ୍ରଚଳିତ ଶିକ୍ଷା ବ୍ୟବସ୍ଥା କି ସତ୍ୟରେ ତ୍ରୁଟିପୂର୍ଣ୍ଣ' ଶୀର୍ଷକ ଏକ ଦୀର୍ଘ ପ୍ରବନ୍ଧରେ ସେ ଦେଖାଇଛନ୍ତି ଯେ, ଶିକ୍ଷା ବ୍ୟବସ୍ଥା ନୁହେଁ, ତାର ପ୍ରୟୋଗହିଁ ଭାରତୀୟ ଶିକ୍ଷାଧାରାର ଅଧୋଗତି ପାଇଁ ଦାୟୀ । ସଂପୃକ୍ତ ପ୍ରବନ୍ଧରେ ସେ ଦେଇଥିବା ମତାମତ ଗୁରୁତ୍ୱପୂର୍ଣ୍ଣ ହୋଇଥିବାରୁ ସେ ଗୁଡିକର ଅବତାରଣା କରାଯାଉଛି । ସେ କହନ୍ତି:——

"ଭାରତର ପ୍ରଚଳିତ ଶିକ୍ଷା ବ୍ୟବସ୍ଥାକୁ 'ତ୍ରୁଟିପୂର୍ଣ୍ଣ ତ୍ରୁଟିପୂର୍ଣ୍ଣ' ବୋଲି ବେଳ—ଅବେଳ, ସ୍ଥାନ—ଅସ୍ଥାନ, ସର୍ବତ୍ର ଓ ସର୍ବଦା ଚିତ୍କାର କରି ନିନ୍ଦା କରିବା, ଏବେ ଏ ଦେଶରେ ଏକ ଧରାବନ୍ଧା ଗତ ହୋଇଗଲାପରି ଲାଗୁଛି । ପୂର୍ବେ ଖଦ୍ଦଡ ପରିଧାୟୀ, ରାଜନୈତିକମାନେତ ଏ ବ୍ୟବସ୍ଥାକୁ ଶୋଷକ ଇଂରେଜମାନଙ୍କର ଅପକୀର୍ତ୍ତି ରୂପେ, ଇତିହାସର ସମସ୍ତ ସତ୍ୟ କୁ ପଦଦଳିତ କରି, ଏପରିସବୁ ବର୍ଣ୍ଣନାକରି ଜନତାଠୁ ଶସ୍ତା ବାହାବା ପାଉଥିଲେ । କିନ୍ତୁ ଲେଖକ ଘୋର ପରିତାପର ସହିତ ଲକ୍ଷ୍ୟ କରୁଛି ଯେ, ଏବେ ଶିକ୍ଷା ବିଭାଗୀୟ ତଥାକଥିତ କେତେକ ଶିକ୍ଷାବିତ୍‌ମଧ୍ୟ ସେହି ଗଡ୍ଡଳିକା ପ୍ରବାହରେ ଯୋଗ ଦେଲେଣି । ଏମାନେ ମଧ୍ୟ ପ୍ରକାଶ୍ୟରେ କହୁଛନ୍ତି ଯେ ଏ ଶିକ୍ଷା ବ୍ୟବସ୍ଥା 'ତ୍ରୁଟିପୂର୍ଣ୍ଣ' । ଯଦି ଏହା ଏପରି ତ୍ରୁଟିପୂର୍ଣ୍ଣ', ତେବେ କେଉଁ ପ୍ରତିଭା ବଳରେ ତମେ ନିଜେ ଏ ପଦ—ପଦବୀକୁ ଆସିପାରିଛ, ସେ ପ୍ରଶ୍ନ ନିଜକୁ ପଚାରୁନା କାହିଁକି ?"(71)

ପ୍ରଚଳିତ ଶିକ୍ଷା ବ୍ୟବସ୍ଥା ସଂପର୍କରେ ମାନସିଂହ କହନ୍ତି ଯେ,

1—ପ୍ରଚଳିତ ଶିକ୍ଷା ବ୍ୟବସ୍ଥାରେ ଆଧୁନିକ ଭାରତର ବିଶିଷ୍ଟ ମନୀଷୀମାନେ ଶିକ୍ଷିତ ହୋଇ ଭାରତର ପ୍ରାକ୍‌ସ୍ୱାଧୀନତା ଓ ସ୍ୱାଧୀନତା ପରବର୍ତ୍ତୀ କାଳରେ ନାନା ଉନ୍ନତି ସାଧନ କରିପାରିଛନ୍ତି ।

2— ଏହି ଶିକ୍ଷା ଅଭାବରୁ ପଠାଣ ସାଆନ୍ତଙ୍କ ପରି ଜ୍ଞାନତରୁ ମଉଳିଗଲା । ତାଙ୍କର ଉପଯୁକ୍ତ ବିକାଶ ହୋଇପାରିଲା ନାହିଁ ।

3– ଭାରତୀୟ ଉପମହାଦେଶରେ, ଏହିଶିକ୍ଷା ଆଣିଦେଇଛି ସାତହଜାର ବର୍ଷପରେ ପ୍ରଥମକରି ଜାତୀୟ ଚେତନା ,ଏକତା ଓ ସଂହତି ।

4– ଏହା ଆମ ସ୍ୱାଧୀନତାର ମୂଳଭିତ୍ତି ।

5– ଏହି ଶିକ୍ଷା ଦେଇଛି ରମଣ, ବୋଷ, ତିଳକ, ଗୋଖ୍ଲେ, ଲାଲାଜୀ, ଚିତ୍ତରଂଜନ, ମାଳବ୍ୟଜୀ, ମୋତିଲାଲ୍, ଗାନ୍ଧି, ଜବାହାର ଓ ଏହି ବ୍ୟବସ୍ଥା ଆଣି ଦେଇଛି ଭାରତୀୟ ଭାଷାମାନଙ୍କରେ ରେନେସାଁ । ମାନସିଂହ ମନ୍ତବ୍ୟ ପ୍ରଦାନ କରିଛନ୍ତି ଯେ, ଆମ୍ଭେମାନେ ଏହି ଶିକ୍ଷା ବ୍ୟବସ୍ଥାକୁ 'ତ୍ରୁଟିପୂର୍ଣ୍ଣ ବୋଲି ହଟାକବା ପାଇଁ ଧ୍ୱନି ଦେଉଥିଲେ ମଧ୍ୟ ଏହି ବ୍ୟବସ୍ଥାର ବିକଳ୍ପ ବ୍ୟବସ୍ଥା କରିଦେଇ ପାରିନାହୁଁ । ପ୍ରଚଳିତ ଶିକ୍ଷା ବ୍ୟବସ୍ଥା ବିରୋଧରେ ସାଧାରଣତଃ ତିନିଗୋଟି ଅଭିଯୋଗ ଆସିଥାଏ । ସେ ଗୁଡିକ ହେଲା——

(କ) ସାମ୍ରାଜ୍ୟବାଦୀ ବିଦେଶୀ ଇଂରେଜ–ଶାସକମାନେ ଆମକୁ ଏକ କିରାଣୀର ଜାତିରୂପେ ଗଢିବା ପାଇଁ, ଏ ଶିକ୍ଷା ବ୍ୟବସ୍ଥା ପ୍ରବର୍ତ୍ତିତ କରିଯାଇଥିଲେ । ତେଣୁ ସ୍ୱାଧୀନ ଭାରତ ତାକୁ ଫିଙ୍ଗି ନିଜର ଶିକ୍ଷା ବ୍ୟବସ୍ଥା ପ୍ରବର୍ତ୍ତନ କରିବା ଉଚିତ ।

(ଖ) କଲେଜ ସ୍ତରରେ ଇଂରାଜୀ ମାଧ୍ୟମକୁ ଗ୍ରହଣ ରଖିବା ଅସହ୍ୟ ବ୍ୟାପାର । ଆଞ୍ଚଳିକ ଭାଷା ମାନଙ୍କୁ ମାଧ୍ୟମ କରି ନୂତନ ବ୍ୟବସ୍ଥା ହେଉ ।

(ଗ) ଏ ଶିକ୍ଷା ବ୍ୟବସ୍ଥା ଦେଶରେ ଗୁରୁତର ବେକାର ସମସ୍ୟା ସୃଷ୍ଟି କରୁଛି ।

ଉପର୍ଯ୍ୟୁକ୍ତ ଅଭିଯୋଗମାନଙ୍କର ଉତ୍ତର ଦେବାକୁ ଯାଇ ମାନସିଂହ ଲେଖିଛନ୍ତି——

(କ) ଏ ଶିକ୍ଷା ବ୍ୟବସ୍ଥାକୁ ଇଂରେଜମାନେ ଆଦୌ ଭାରତୀୟମାନଙ୍କ ଉପରେ ଲଦି ଦେଇ ନ ଥିଲେ । ରାଜା ରାମମୋହନ ରାୟ ଓ ତାଙ୍କ ସମସାମୟିକମାନେ ନିଜନିଜ ଚେଷ୍ଟାରେ ହିଁ ଇଂଲିଶ–ଶିକ୍ଷା ପ୍ରଚଳନ ପାଇଁ ଚେଷ୍ଟା କରିଥିଲେ । ଇଷ୍ଟଇଣ୍ଡିଆ କମ୍ପାନୀ–ସରକାର ନିଃସଂଦେହ ଭାବରେ ଇଣ୍ଡିଆନ ମାନଙ୍କୁ ଇଂରାଜୀ ଶିଖା– ଇବା ବିରୁଦ୍ଧରେ ଥିଲେ । ମାନସିଂହଙ୍କ ଭାଷାରେ:—ତେଣୁ ବିଦେଶୀ ଇଂରାଜୀ ଶାସକେ ଏହି ଶିକ୍ଷା ବ୍ୟବସ୍ଥାକୁ ଆମ ଉପରେ ଜବରଦସ୍ତ ଲଦିଦେଇ ଯାଇଛନ୍ତି ବୋଲି କହିବାକୁ ଯିବା, ସତ୍ୟରେ ଏକ ଐତିହାସିକ ସତ୍ୟର ଅକାରଣ ହତ୍ୟା ଛଡ଼ା ଆଉକିଛି ନୋହିପାରେ ।"(72) ପୁନଶ୍ଚ ମାନସିଂହ କହନ୍ତି – ଇଂରେଜମାନଙ୍କର ଆମକୁ ଏକ କିରାଣୀର ଜାତିକରି ଗଢିବାର ଉଦ୍ଦେଶ୍ୟ ଯଦିଥିଲା, 'ତେବେ ଗୋଖ୍ଲେ, ମାଳବ୍ୟ, ମୋତିଲାଲ୍, ଚିତ୍ତରଂଜନ, ଅରବିନ୍ଦ, ସୁଭାଷ, ଲଜପତ୍, ତିଳକ ଓ ରମଣ–ଜଗଦୀଶ ଆଦି ବିରାଟ ଧୁରନ୍ଧର ସବୁ କିପରି ବାହାରିଲେ ଏହି ଶିକ୍ଷା ପଦ୍ଧତିରୁ ?"(73)

(ଖ) ଦ୍ୱିତୀୟ ଅଭିଯୋଗର ଉତ୍ତରରେ ମାନସିଂହ କହନ୍ତି—କଲେଜ ସ୍ତରରେ ଇଂରାଜୀକୁ ଛଡି ଆଞ୍ଚଳିକ ଭାଷା–ମାଧ୍ୟମ ପ୍ରଚଳନ ଆଦୌ ଶୁଭଙ୍କର ନୁହେଁ । ପ୍ରାଚ୍ୟ ଭାଷାବିଦ୍ ରାଜା ରାମମୋହନ ସେତେବେଳେ କହିଥିଲେ—' ଭାରତ ଯଦି ସପ୍ତଦଶ ଶତାବ୍ଦୀର ଘୋର–ଅଜ୍ଞାନ–ଅନ୍ଧକାର ଭିତରେ ବୁଡି ରହିବାକୁ ଚାହେଁ, ତେବେ ହିଁ

ଯେ ସଂସ୍କୃତ ବା ଆରବୀ ଗ୍ରହଣ କରୁ । କିନ୍ତୁ ଯଦି ଭାରତ ସଭ୍ୟ ଓ ଅଗ୍ରଗାମୀ ହେବାକୁ ଚାହେଁ, ତେବେ ଗ୍ରହଣ କରୁ ଇଂରାଜୀ ଭାଷା ଓ ଇଉରୋପୀୟ ଜ୍ଞାନ ବିଜ୍ଞାନ ।(74) ତେଣୁ ଶୈକ୍ଷିକ, ବୌଦ୍ଧିକ, ସାଂସ୍କୃତିକ, ପ୍ରଭୃତି ଦିଗରୁ ଆଲୋଚନା କଲେ ଇଂରାଜୀ ଚାଳନ ଏକ ଚରମ ଆତ୍ମଘାତି ଯୋଜନା ବୋଲି ମନେ କରିବାକୁ ହେବ । ଏ ଅଭ୍ୟାସର ପୁନର୍ବାର ଏ ଦେଶକୁ ଅଜ୍ଞାନ–ଅନ୍ଧକାରରେ ବୁଡାଇ ମାରିବ ।(75) ଏ ସମ୍ପର୍କରେ ଡଃ ମାନସିଂହଙ୍କ ମନ୍ତବ୍ୟ ସୁସ୍ପଷ୍ଟ ତଥା ନିରପେକ୍ଷ ଥିବାପରି ମନେ ହୁଏ ନାହିଁ । କାରଣ ଯେଉଁମାନେ ଉଦାରପନ୍ଥୀ ଶିକ୍ଷା ଭାରତରେ ପ୍ରଚଳନ କଲେ, ଯଥା–ଡେଭିଡ୍ ହେୟାର, ରାଜା ରାମମୋହନ ରାୟ, ରାଧାକାନ୍ତ ଦେବ ତଥା ମ୍ୟାକ୍‌ଲେ ଓ ଡେରେଜିଓଙ୍କ ପରି କତ–ବିଦ୍ ଶିକ୍ଷକମାନେ, ସମସାମୟିକ କାଳରେ ଇଂରାଜୀ ଭାଷାର ଗୁରୁତ୍ୱ ଉପରେ ଆଲୋକପାତ କରିଥିଲେବି, ମାତୃଭାଷା ମାଧ୍ୟମରେ ଶିକ୍ଷାଦାନକୁ ଅଧିକ ପସନ୍ଦ କରିଥିଲେ । ଡେଭିଡ୍ ହେୟାର ମାତୃଭାଷାରେ ଶିକ୍ଷାଦାନ ପାଇଁ, ସ୍କୁଲବୁକ୍ ସୋସାଇଟ୍ ବସାଇଥିଲେ । ମ୍ୟାକ୍‌ଲେ ଆଶା କରିଥିଲେ ଇଂରାଜୀ ଭାଷା ଓ ପାଶ୍ଚାତ୍ୟ ଜୀବନର ସଂସ୍ପର୍ଶ ଫଳରେ ଭାରତର ଆଞ୍ଚଳିକ ଭାଷାଗୁଡିକ ମଧ୍ୟରେ ଏକ ନୂଆ ଉଦ୍‌ବୋଧ ଦେଖାଯିବ ଏବଂ ଏଇ ଉଦ୍‌ବୋଧ ଭାରତୀୟ ଜନସାଧାରଣଙ୍କୁ ଆଧୁନିକ ଶିକ୍ଷାର ଦ୍ୱାର ଦେଶରେ ପହଞ୍ଚାଇବ । ସେମାନଙ୍କର ସମସ୍ତ ବିଷୋଦ୍‌ଗାର, ସଂସ୍କୃତ, ଆରବୀ ଓ ଫାର୍ସୀ ବିରୋଧରେ ଥିଲା । ବଙ୍ଗଳା ଓଡିଆ, ତେଲୁଗୁ ତାମିଲ, ହିନ୍ଦି, ଗୁଜରାଟି ପ୍ରଭୃତି ଭାଷା ବିରୁଦ୍ଧରେ ନଥିଲା । ଶିକ୍ଷାଦାନ ମୁଖ୍ୟତଃ ଏକ ଆଳାପ । ଆଳାପ ମଧ୍ୟରେ ଯେତିକିବେଳେ ମନର ଭାବ ବିକଶିତ ହୁଏ, ସେତେବେଳେ ତାହା ଅନ୍ତରର, ମନର ଭାଷା ପାଏ । ମାତୃଭାଷା ବ୍ୟତିରେକ ଅନ୍ୟ ଭାଷାରେ ଶିକ୍ଷା ଦେବା ଏହା ଅପଶିକ୍ଷାର ନିକଟବର୍ତ୍ତୀ–ଏହା ଅଧିକାଂଶ ମନୋବିଜ୍ଞାନିଙ୍କର ମତ । ଡକ୍ଟର ମାନସିଂହଙ୍କର ଇଂରାଜୀ ଭାଷାପ୍ରତି ଅତ୍ୟଧିକ ଶ୍ରଦ୍ଧା ଏହି ଦିଗଟି ପ୍ରତି ତାଙ୍କୁ ଅନ୍ଧ ହେବାକୁ ବାଧ୍ୟ କରିଚି ।

(ଗ) ତୃତୀୟ ଅଭିଯୋଗର ଉତ୍ତରରେ ମାନସିଂହ କହନ୍ତି– ଶିଳ୍ପ ବିପ୍ଳବ ପରଠାରୁ ହିଁ ମନୁଷ୍ୟ ବେକାର ହେବା ଏକ ପୃଥିବୀମୟ ସମସ୍ୟା ହୋଇ ଉଠିଚି । ଏଥିରେ ଶିକ୍ଷିତ ବା ଅଶିକ୍ଷିତର ବାଛ–ବିଚାର ଏକାନ୍ତ ଅବାନ୍ତର । (76) ପୃଥିବୀର ସବୁ ଦେଶରେ ବେକାର ଅଛନ୍ତି । ଆମଦେଶରେ ନିରକ୍ଷର ଲୋକମଧ୍ୟ ବେକାର ଅଛନ୍ତି, ମାତ୍ର ଆମେ କେବଳ ରାଜନୈତିକ ପ୍ରୋପାଗଣ୍ଡା ନିମନ୍ତେ ଶିକ୍ଷିତ ବେକାର ଧ୍ୱନି ଦେଇ ଚାଲିଚୁ । ଶିକ୍ଷିତ ବେକାର ସୃଷ୍ଟି ହେବାର କାରଣ ନିର୍ଦ୍ଦେଶ କରି ମାନସିଂହ କହନ୍ତି:—"ସ୍ୱାଧୀନତା ପରେ ଆମେ ଅନ୍ଧଭାବରେ ଓ ସମ୍ପୂର୍ଣ୍ଣ ଆଞ୍ଚଳିକ ଭାବ ପ୍ରଣୋଦିତ ହୋଇ ହିଁ ଗୋଟାକ ପରେ ଗୋଟାଏ ମେଡିକାଲ କଲେଜ ଓ ଇଂଜିନିୟରିଂ କଲେଜ ସହିତ ଗ୍ରାମେ ଗ୍ରାମେ ସାଧାରଣ କଲେଜ ଓ ହାଇସ୍କୁଲଯେ ବସାଇ ଚାଲିଲେ ଏବଂ ଶିକ୍ଷାର ସକଳ ମର୍ଯ୍ୟାଦା ଓ ମାନଦଣ୍ଡକୁ ଧୂଳିସାତ୍ କରି ଆମେ ଯେପରି ଭାବରେ ବିଦ୍ୟା–ବା–କୌଣସି କର୍ମପାଇଁ–ଯୋଗ୍ୟତା ଶୂନ୍ୟ ଅଥଚ କେବଳ–କପି–ଧରାଧରି–ଗୁଣ୍ଡାମି–ନିପୁଣ କାହାଣ କାହାଣ ତଥା କଥିତ 'ଶିକ୍ଷିତ'ଯୁବକ ବାହାର କରି ଚାଲିଚୁ, ସେଥିରେ କେଉଁ ରାଷ୍ଟ୍ର ଏ ପ୍ରକାର ତଥାକଥିତ 'ଶିକ୍ଷିତ' ଜନତାକୁ ଧଳା–କଲାର– ଚାକିରୀ ଯୋଗାଇ ପାରିବ ।X X X

॥ ମାନସିଂହଙ୍କ ବିଗ୍ରରଧାରା ॥

ଟା ଛୁଟା କର୍ତ୍ତୃପକ୍ଷଙ୍କର ପାଶ୍ରୁ ମାନଦଣ୍ଡକୁ କୋହଳ କରିବା ଏବଂ ପିଲାଙ୍କର ପାଠ–ନପଢ଼ି–ନପି–ଧରାଧରି ଦେଇ ସାର୍ଟିଫିକେଟ ଯୋଗାଡ କରିବା, 'ଶିକ୍ଷିତ'ବେକାର ସମସ୍ୟାର ଏକ ପ୍ରଧାନ କାରଣ ।"(77)

ପ୍ରଚଳିତ ଶିକ୍ଷା ବ୍ୟବସ୍ଥା ସମ୍ପର୍କରେ ଆଲୋଚନା କରି ମାନସିଂହ କହନ୍ତି:– ଏହାହିଁ ପୃଥିବୀ ବ୍ୟାପୀ ବ୍ୟବସ୍ଥା । ଏବେ ସବୁ ଦେଶରେ ହିଁ ଶିକ୍ଷା ବ୍ୟବସ୍ଥା ଏଇମିତି ପ୍ରାଇମେରୀ, ସେକେଣ୍ଡାରୀ ଓ କଲେଜରେ ବିଭକ୍ତ । ସେ ସବୁ ଦେଶରେ ମଧ୍ୟ ଏଇ ସାହିତ୍ୟ, ଗଣିତ, ଇତିହାସ, ଭୂଗୋଳ ଇତ୍ୟାଦି ହିଁ ପାଠ୍ୟ ବିଷୟ । ପ୍ରଭେଦ ଏତିକି ଯେ, ଅଗ୍ରଗାମୀ ଦେଶମାନଙ୍କରେ ଛାତ୍ରମାନଙ୍କର ଜ୍ଞାନ–ଆହରଣ ଓ ଶିକ୍ଷକମାନଙ୍କର ଜ୍ଞାନ–ପରିବେଷଣ ଏବଂ ଛାତ୍ରମାନଙ୍କର ଆହୃତ ଜ୍ଞାନର ମୂଲ୍ୟାୟନର ମାନଦଣ୍ଡ ଆମଦେଶ ଅପେକ୍ଷା ଢେର ଉପରେ । X X X ଆମେ କେବଳ ପଣ ପଣ ସାର୍ଟିଫିକେଟ ଧାରୀ ବାହାର କରୁଛୁ ସିନା, ପ୍ରକୃତ ବିଦ୍ୟାବନ୍ତ, ବିଚକ୍ଷଣ ବା ବିଶେଷ ବିଶେଷ ବ୍ୟବସାୟ ପାଇଁ ତାଲିମ୍ ଲୋକ ତିଆରୀ କରୁନାହୁଁ । X X X ତେଣୁ କେବଳ ପ୍ରଚଳିତ ଶିକ୍ଷା ବ୍ୟବସ୍ଥାଟି ଆପେଇ'ତ୍ରୁଟିପୂର୍ଣ୍ଣ' କହିବାର ଆଦୌ କୌଣସି ଯୁକ୍ତି ନାହିଁ । ଆମେଇ ଆମର ବିଗ୍ରର ହୀନ, ଅଜ୍ଞ ଓ ସ୍ୱାର୍ଥକେନ୍ଦ୍ରିକ ଦୃଷ୍ଟିକୋଣରୁ ଏକ ପୃଥିବୀ ବ୍ୟାପ୍ତ ସୁଫଳପ୍ରଦ ବ୍ୟବସ୍ଥାକୁ ଲଜ୍ଜାଜନକ ଭାବରେ'ତ୍ରୁଟିପୂର୍ଣ୍ଣ'କରି ଠିଆ କରାଉଛେ ।"(78)

ମାନସିଂହଙ୍କ ମତରେ–"ରାଜନୈତିକମାନଙ୍କର, ଆମର ଶିକ୍ଷା ବିଭାଗ ଓ ଶିକ୍ଷାନୁଷ୍ଠାନମାନଙ୍କରେ ଏହିପ୍ରକାର ସମ୍ପୂର୍ଣ୍ଣ ଅନୁଚିତ ବାହୁ ପ୍ରବେଶହିଁ ଆଜି ଶିକ୍ଷା ବିଭାଗର ସକଳ ତ୍ରୁଟି ଓ ଅବ୍ୟବସ୍ଥାପାଇଁ ଦାୟୀ ।" ପୁନଶ୍ଚ ସେ କହନ୍ତି ଯେ "ସ୍କୁଲ ବା କଲେଜରେ ହେଡମାଷ୍ଟର ବା ପ୍ରିନ୍ସିପାଲଙ୍କ ପ୍ରତି ଛାତ୍ରମାନଙ୍କର ସମ୍ଭ୍ରମ ନ ରହିବାର କାରଣ ରାଜନୈତିକ ନେତାମାନେ । ମାନସିଂହଙ୍କ ଭାଷାରେ—"ପିଲେ ଯେତେବେଳେ ଜାଣିଲେଣି ଯେ, ଏ ରାଜ୍ୟରେ ହେଡ୍‌ମାଷ୍ଟର ପ୍ରିନ୍ସିପାଲ କେବଳ ଏକ ଏକ ପଙ୍ଗୁ ଜଗନ୍ନାଥ, ଆଉ ଅସଲ ମା–ବାପ ହେଉଛନ୍ତି ଶିକ୍ଷାମନ୍ତ୍ରୀ ବା ମୁଖ୍ୟମନ୍ତ୍ରୀ, **ସେତେବେଳେ ସ୍କୁଲ୍–କଲେଜମାନଙ୍କରେ ହେଡ୍‌ମାଷ୍ଟର ପ୍ରିନ୍ସିପାଲ୍**ମାନେ ଆନୁଷ୍ଠାନିକ ଡିସିପ୍ଲିନ୍‌ପାଇଁ ଦାୟୀ ହେବେ କିପରି ? "(79)

ଆମ ଦେଶରେ ଶିକ୍ଷା କ୍ଷେତ୍ରରେ ଯେଉଁ ତ୍ରୁଟି ବିଚ୍ୟୁତି ଦେଖା ଦେଇଛି, ତାର ସମାଧାନ ପାଇଁ ମାନସିଂହ ପାଞ୍ଚୋଟି ଉପାୟ ସ୍ଥିର କରିଛନ୍ତି । ସେ ପାଞ୍ଚୋଟି ମତ ସାମ୍ପ୍ରତିକ ଶିକ୍ଷା ବ୍ୟବସ୍ଥାର କେତେକ ଅସୁବିଧାର ସମାଧାନ ପାଇଁ କେତେକ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ । ନିମ୍ନରେ ତାହାର ଆଲୋଚନା କରାଯାଉଅଛି ।

ମାନସିଂହଙ୍କ ପ୍ରଦତ୍ତ ପ୍ରଥମ ପ୍ରସ୍ତାବ ହେଲା—(କ)– ଶିକ୍ଷା ବିଭାଗର ସମ୍ପୂର୍ଣ୍ଣ ସ୍ୱାଧୀକାର——— ଶିକ୍ଷା ବିଭାଗ ସରକାରୀ ଅର୍ଥ ପୋଷିତ ହେଲେ ମଧ୍ୟ, ହାଇକୋର୍ଟ ଓ ଜୁଡିସିଆଲ ପରି ସେଥିରେ କୌଣସି ହେଲେ ବାହାର ଲୋକର ଅନୁ ପ୍ରବେଶକୁ ତୁରନ୍ତ **ନିଷିଦ୍ଧ** କରାଯାଉ । X X X ଶିକ୍ଷା ବିଭାଗର ପାସ୍–ଫେଲ ବା ଦୈନନ୍ଦିନ ପରିଗ୍ଳନା ରାଜନୈତିକ ମାନଙ୍କର ମୁକ୍ତ କ୍ରୀଡାପାତ୍ରର ହୋଇପଡିବା ଏକ ଜାତି ପକ୍ଷରେ ଚରମ ଅଭିଶାପ ଓ ଘୋରତର ଲଜ୍ଜାକର ଓ ମାରାତ୍ମକ ବ୍ୟାପାର ।"(80)

(ଖ) ମାନସିଂହଙ୍କ ଦ୍ୱିତୀୟ ପ୍ରସ୍ତାବ ହେଲା——

ଡିଗ୍ରୀ ଡିପ୍ଲୋମା ଉଠାଇ ଦିଆଯାଉ——

ଉକ୍ତ ପ୍ରସ୍ତାବରେ ମାନସିଂହଙ୍କର ମତାମତ ହେଲା—"ଆମ ଶିକ୍ଷା ବ୍ୟବସ୍ଥାକୁ ଆମେ ସଂପୂର୍ଣ୍ଣରୂପେ 'ମାଟ୍ରିକ', 'ବି.ଏ.' ଇତ୍ୟାଦି ଭାବରେ କେବଳ ସାର୍ଟିଫିକେଟ କେନ୍ଦ୍ରିକ କରି ରଖିବାରୁ ହେବଯେ, ଆମେ ଆମ ପିଲାଙ୍କୁ କପି କରେଇବାକୁ ପରୋକ୍ଷ ଭାବରେ ପ୍ରେରଣା ଦେଉଛୁ । ବରଂ ଏହି ପ୍ରକାର କାଗଜ—ଖଣ୍ଡ—କେନ୍ଦ୍ରିକ ପାଶ ଫେଲର ସମସ୍ତ ଅଯୌକ୍ତିକତା ଉଠାଇଦେଇ, ଆମେ ଯଦି ପ୍ରତ୍ୟେକ ବିଦ୍ୟାର୍ଥୀଙ୍କୁ ସେ କେଉଁ କେଉଁ ବିଷୟ କେଉଁ ଅନୁଷ୍ଠାନରୁ କେତେବର୍ଷ ଅଧ୍ୟୟନ କଲେ ଓ ସେ ସବୁରେ କି ପ୍ରକାର ପାରଂଗମତା ଲାଭ କରିଛନ୍ତି ସେ ସବୁର ଦ୍ୟୋତକ କେବଳ ଏକ ଏକ କାର୍ଡଦେଇ ଛାଡି ଦିଅନ୍ତେ ତେବେ ବ୍ୟବସ୍ଥାଟା ଅଧିକ ଯୁକ୍ତିଯୁକ୍ତ ଓ ବିଗ୍ଧର ପ୍ରତିଷ୍ଠ ହୁଅନ୍ତାବୋଲି ବିଶ୍ୱାସ । X X X ପିଲେ ଯେତେବେଳେ ଜାଣିବେ ଯେ ଏହି ଅର୍ଜିତ ଦକ୍ଷତା ଉପରେହିଁ ସେମାନଙ୍କର ଭାଗ୍ୟ ନିର୍ଭର କରୁଛି, ତେବେ ସେମାନେ ସ୍ଲୋଗାନ ଗାଇ ରାସ୍ତାରେ ବୁଲିବା ଓ ଶେଷରେ ବସିବସି ସାର୍ଟିଫିକେଟ ଆଦାୟ କରିବାର ଯୋଜନା ଛାଡି, ଅଧିକରୁ ଅଧିକ ବିଦ୍ୟାସାଧନରେ ମନ ଦିଅନ୍ତେ । "(୩୧)

(ଗ) ମାନସିଂହଙ୍କ ତୃତୀୟ ପ୍ରସ୍ତାବ ହେଲା——

ଆନ୍ତର୍ଜାତିକ ମାନଦଣ୍ଡ——

ତୃତୀୟ ପ୍ରସ୍ତାବରେ ମାନସିଂହ କହିଛନ୍ତି ଯେ, —"ଡିଗ୍ରୀ ଡିପ୍ଲୋମା ରଖ ବା ନ ରଖ, ଆମର ମୂଲ୍ୟାୟନ ଯେପରି ଆନ୍ତର୍ଜାତିକ ମାନଦଣ୍ଡରେହିଁ ମପା ହେବାର ବ୍ୟବସ୍ଥା ହେଉ । ବର୍ତ୍ତମାନ ଇଣ୍ଡିଆନ ଡିଗ୍ରୀର କୌଣସି ମୂଲ୍ୟହିଁ ନାହିଁ । ଶତକଡା 30 ବା 25 ଯେଉଁଠି ପରମ ମସ୍ତିଷ୍କବତ୍ତା ଓ କଠୋର ବିଦ୍ୟା ସାଧନାର ଚିହ୍ନ ଏବଂ ସେଥିପାଇଁ ପୁଣି ଗ୍ରେସ୍ ମାର୍କ, କପି ଓ ଧରାଧରି—ଏଥିରେ ଆମ ପାଠ ଓ ଡିଗ୍ରୀ—ଡିପ୍ଲୋମାର ମୂଲ୍ୟ କ'ଣ ?"

ମାନସିଂହ ଆଜିର ଶିକ୍ଷା ବ୍ୟବସ୍ଥାକୁ ଘୋର ଅପବ୍ୟୟଶୀଳ ପ୍ରହସନ ଓ ଟ୍ରାଜେଡି ମାତ୍ର ବୋଲି କହିଛନ୍ତି । "ଏଥିରେ ଜ୍ଞାନସାଧନା ଓ ତାଲିମ୍‌ର ଗନ୍ଧ ନାହିଁ । ଅଛି କେବଳ ଠକାମି, ଧପ୍ପାବାଜି, ଅନ୍ୟାୟ ଓ ଦୁର୍ନୀତି ଅଥବା କେବଳ କୋଠାବାଡି ଓ ଗ୍ଧକିରୀତନ୍ତ୍ର । ଗୋଟାଏ ନୂତନ ଜାତିକୁ ସବୁ କ୍ଷେତ୍ରରେ ଦୁର୍ଦ୍ଧର୍ଷ କରି ଠିଆ କରାଇବାକୁ ଏ ଶିକ୍ଷା କ୍ଷେତ୍ରରେ କିଛି ହିଁ ଅଛି ବୋଲି ମନେ ହେଉନି । ଜାତୀୟ ଜୀବନ ଓ ସଂସ୍କୃତି ସହିତ ମଧ୍ୟ ଏହା ସଂପର୍କ—ଲେଶ—ଶୂନ୍ୟ ।"(୪୨)

(ଘ) ଶିକ୍ଷା ସଂସ୍କାର ସଂପର୍କରେ ମାନସିଂହଙ୍କର ଚତୁର୍ଥ ପ୍ରସ୍ତାବ ହେଲା———

ଦାୟିତ୍ୱହୀନ ନିରାପତ୍ତାକୁ ପ୍ରଶ୍ରୟ ଦିଆ ନ ଯାଉ ।——

ଶିକ୍ଷକ, ଅଧ୍ୟାପକ ଗ୍ଧକିରୀରେ ଥିବା କେତେକ ଦାୟିତ୍ୱହୀନ ନିରାପତ୍ତାକୁ ପ୍ରଶ୍ରୟ ଦିଆ ନଯାଉ ଅର୍ଥାତ ଯେଉଁ ଶିକ୍ଷକମାନେ ଦେଶର ପ୍ରାଚୀନ ଐତିହ୍ୟକୁ ଭୁଲି ଶିକ୍ଷାକୁ ଏକ ବ୍ୟବସାୟ ବା ଗ୍ଧକିରୀ ବୋଲି ମନେ କରୁଛନ୍ତି, ସେମାନଙ୍କୁ ବହିଷ୍କାର

କରାଯାଉ, ଅନ୍ୟ ଅଗ୍ରଗାମୀ ଦେଶପରି ଶିକ୍ଷାବର୍ଷର ଶେଷରେ ଛାତ୍ରଛାତ୍ରୀମାନଙ୍କର ଯୋଗ୍ୟତା ନିର୍ଣ୍ଣୟ କରାଯାଉ ଏବଂ ଶିକ୍ଷାନୁଷ୍ଠାନକୁ ଯଥା ସମ୍ଭବ ତଥା କଥିତ ରାଜନୀତିଠାରୁ ଦୂରେଇ ରଖାଯାଉ ।

(ଡ) ଏ ସଂପର୍କରେ ମାନସିଂହଙ୍କର ଶେଷ ପ୍ରସ୍ତାବ ହେଲା—

ତଥାକଥିତ ଉଚ୍ଚଶିକ୍ଷାରେ ବନ୍ଧ ପକାଅ——

ବର୍ତ୍ତମାନ କଲେଜମାନଙ୍କରେ ଯେତେ ପିଲାଆସି ଭର୍ତ୍ତି ହୋଇ ଯାଉଛନ୍ତି, ସେଥିରୁ ଅର୍ଦ୍ଧାଧିକ 'ଉଚ୍ଚଶିକ୍ଷା'ପାଇଁ ଏକାନ୍ତ ଅଯୋଗ୍ୟ । ସେମାନଙ୍କର ବିଦ୍ୟାସାଧନରେ ଆଗ୍ରହ ନାହିଁ, ପୁଣି ଲେକ୍‌ଚରର ମାନଙ୍କର ଲେକ୍‌ଚର ବୁଝିବାର କ୍ଷମତା ମଧ୍ୟ ସେମାନଙ୍କର ନାହିଁ । ଅଥଚ ଉଚ୍ଚଶିକ୍ଷାର ପ୍ରତାରଣାପୂର୍ଣ୍ଣ ବା ଅଜ୍ଞାତମୟ ସ୍ଲୋଗାନ ଚିତ୍କାର କରି ନିଚ୍ଛକ ରାଜନୈତିକ କାରଣରୁ ହିଁ ଆମେ ଗ୍ରାମେ ଗ୍ରାମେ ହାଇସ୍କୁଲ ଓ କଲେଜ ବସେଇ ଗ୍ଲିଲେ । ପିଲେ ତ ପାଠ ପଢିବାକୁ ନାରାଜ । । ସେମାନେ ମାଷ୍ଟ୍ର ଅଧ୍ୟାପକଙ୍କୁ ଛୁରା ଦେଖାଇ ମାସ୍—କପି କରିହିଁ ଡିପ୍ଲୋମା କାଗଜ ଖଣ୍ଡିକ ଯେ କୌଣସି ମତେ ପାଇବାର ଯୋଗାଡରେ ଲାଗିଲେ । କେତେକ ଅଧମ ଶିକ୍ଷକ-ଅଧ୍ୟାପକ ମଧ୍ୟ ନିଜ ସ୍ୱାର୍ଥ-ଦୃଷ୍ଟିରୁ ପିଲାଙ୍କୁ ଏପରକାର ଘୋର ଅପକର୍ମରେ ସହାୟତା କରିବାର ଦେଖାଯାଉଛି । ତେଣୁ ଉଚ୍ଚଶିକ୍ଷା ନାମରେ ଏ ବିଭତ୍ସ ଓ ବ୍ୟୟବହୁଳ ପ୍ରତାରଣାକୁ ପ୍ରଶ୍ରୟ ଦେଇ କି ଲାଭ ?"(୩୨) ଏହାର ନିରାକରଣ ପାଇଁ ମାନସିଂହ ଦୁଇଟି ପ୍ରସ୍ତାବ ଆଗତ କରିଥିଲେ । ସେ କହିଥିଲେ ଯେ— ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ସମସ୍ତଙ୍କର ଶିକ୍ଷା ବାଧ୍ୟତାମୂଳକ ହେବ । ତାପରେ ପିଲାର ଯୋଗ୍ୟତା ରୁଚି ଓ ବିଦ୍ୟାପ୍ରତି ଆଗ୍ରହର ମାନଦଣ୍ଡ ନିର୍ଣ୍ଣୟ କରି ସୀମିତ ସଂଖ୍ୟକ ପିଲାଙ୍କୁ ଉଚ୍ଚଶିକ୍ଷା ପାଇଁ ପଠାଯାଉ । ଅବଶିଷ୍ଟ ଛାତ୍ର ଛାତ୍ରୀଙ୍କର ଆଗ୍ରହ ଅନୁସାରେ ସେମାନଙ୍କୁ କୃଷି, ଶିଳ୍ପ ଓ ଅନ୍ୟାନ୍ୟ ଉପଯୋଗୀ ଶିକ୍ଷା ପ୍ରତି ସୁଯୋଗ ଦିଆଯାଉ । 'ଉଚ୍ଚଶିକ୍ଷା' ନାମରେ ତଥାକଥିତ ଡିଗ୍ରୀ ହାସଲ କରିବାକୁ ଅପାରଦର୍ଶୀ ଛାତ୍ରଛାତ୍ରୀମାନେ କୃଷି ଶିଳ୍ପ ପ୍ରତି ଆଗ୍ରହ ଦେଖାଉ ନାହାନ୍ତି । ଏଣୁ ସେମାନଙ୍କୁ ସାଧାରଣ ଶିକ୍ଷା ଲାଗୁ ନକରି ବୈଷୟିକ ଶିକ୍ଷା ଦିଆଯାଉ । ସାଧାରଣ ଶିକ୍ଷାପରେ କୋଡିଏ ଭାଗ ଛାତ୍ରଛାତ୍ରୀଙ୍କୁ ଉପରକୁ ଆସିବାର ଦିଆଗଲେ, ସେମାନେ ଆମର ରାଷ୍ଟ୍ରୀୟ ଗୁଜରାଣ ମେଣ୍ଟାଇବେ ।

ସମସ୍ୟା ସମାଧାନର ଦ୍ୱିତୀୟ ମାର୍ଗ ହେଲା —ଛୁଟୁ ଫୁଟିଲା ଭଳି କଲେଜ ସଂଖ୍ୟା ନ ବଢେଇ ଉଚ୍ଚ ଯୋଗ୍ୟତା ସଂପନ୍ନ ସୁଯୋଗ୍ୟ ଅଧ୍ୟାପକ ଅଧ୍ୟାପିକାଙ୍କୁ କେତେକ ସୀମିତ କଲେଜମାନଙ୍କରେ ନିଯୁକ୍ତି ଦିଆଯାଉ । ନିମ୍ନଯୋଗ୍ୟତାର ଅଧ୍ୟାପକ ଲାଇବ୍ରେରୀ ଲାବୋରଟାରୀ ହୀନ କଲେଜମାନେ ହିଁ ଶିକ୍ଷାର ମାନଦଣ୍ଡକୁ ନିମ୍ନଗାମୀ କରାଉଛନ୍ତି । ତେଣୁ ପ୍ରଚଳିତ ଶିକ୍ଷା ପଦ୍ଧତିରେ ହିଁ ଉତ୍ତମ ଫଳ ପାଇପାରିବା ପାଇଁ ଏହି ବ୍ୟବସ୍ଥାର ପ୍ରଚଳନ କରାଯାଉ । ମାନସିଂହ ସେତେବେଳେ ପ୍ରସ୍ତାବ ଦେଇଥିଲେ ଯେ, ଏହି ଛୋଟ ଛୋଟ କଲେଜମାନଙ୍କରୁ କେତେଗୋଟି କଲେଜକୁ ଜୁନିଅର କଲେଜ କରି ସେଥିରେ ନିମ୍ନ ସ୍ନାତକ ଶ୍ରେଣୀମାନ ଖୋଲାଯାଉ । ଅବଶିଷ୍ଟ ସ୍ୱଳ୍ପ ସଂଖ୍ୟକ ଛାତ୍ର ଛାତ୍ରୀଙ୍କୁ ଉଚ୍ଚତର ଜ୍ଞାନ ପାଇଁ ସୁଯୋଗ ଦେଲେ, ଆମର ଅନେକ ସମସ୍ୟାର ସମାଧାନ ହୋଇପାରିବ ।

॥ ମାନସିଂହଙ୍କ ବିଗ୍ରହଧାରା ॥

ଖ୍ରୀ: 1972 ଜୁଲାଇ ମାସରେ ମାନସିଂହ ଲେଖିଥିଲେ—"ପ୍ରିୟ ପାଠକେ, ଏ ପ୍ରବନ୍ଧ ଲେଖକ ବର୍ତ୍ତମାନ ଜୀବନର ଶେଷପାଦରେ। କୌଣସି ସାଂସାରିକ ଆଶା ଆକାଂକ୍ଷା ତାର ବାକି ନାହିଁ। କିନ୍ତୁ ଯେତେବେଳେ ଆଶା–ଆକାଂକ୍ଷା–ପୂରଣ ଆଶା କରିବାର ବେଳଥିଲା, ସେତେବେଳେ ମଧ୍ୟ ସେ ମୂର୍ଖ 'ମାଧିଆଭାଇ, ସବୁ କଥାକୁ ହଇ ହଇ' କରି ସୁନାପିଲା ନହୋଇ, ତିନିବର୍ଷିଆ–ଡିଗ୍ରୀ–କୋର୍ଷ ବା ବେସିକ୍ ସରକାରୀ–ତୋପ–ସଂରକ୍ଷିତ ଆସ୍ଫାଳନମୟୀ ଆସ୍ତ୍ର–ପ୍ରଗ୍ରହ ବିରୁଦ୍ଧରେ ଏ ରାଜ୍ୟରେ ପ୍ରତିରୋଧର ନିଃସଂଗ ଏକକ ସ୍ୱର ଉତ୍ତୋଳନ କରିଥିଲା। କିନ୍ତୁ ବିଳମ୍ବରେ ହେଲେ ବି ହେଁ, ଲେଖକର ଯେହି ପ୍ରତିବାଦ ସବୁ ଯେ ଏବେ ସତ୍ୟ ହୋଇଛି, ତାହାହିଁ ତାର ଏକମାତ୍ର ସାନ୍ତ୍ୱନା।"(୨୪)

ଶିକ୍ଷାବିତ୍ ମାନସିଂହ ଦେଶର ଛାତ୍ରମାନଙ୍କ ଉଦ୍ଦେଶ୍ୟରେ କହିଥିଲେ:—"ମୋ ଦେଶର ପ୍ରିୟ ତରୁଣ ସମାଜକୁ ଏତିକି କହି ଏ ଲେଖକ ବିଦାୟ ନେବ ଯେ, 'ବାବୁ ହେ କଠୋର ଶାରିରୀକ ଓ ମାନସିକ ଶ୍ରମ ବିନା କୌଣସି ଜାତିକଥା ଛାଡ, କୌଣସି ବ୍ୟକ୍ତିର ମଧ୍ୟ ଜୀବନରେ କିଛି ହେଲେ ସମୃଦ୍ଧି ସାଧିତ ହୋଇ ନପାରେ। କୈଶୋର ଓ ଯୌବନ, ଦୀର୍ଘ ଆଗାମୀ ଜୀବନ ପାଇଁ ଯେ ଏକାନ୍ତରେ କେବଳ ପ୍ରସ୍ତୁତିର ସମୟ, ଏହା ପ୍ରକୃତି ନିର୍ଦ୍ଦିଷ୍ଟ। ଏହାକୁ ତେଣୁ ସଫଳ ପ୍ରସ୍ତୁତିରେ ଲଗାଅ; କ୍ଷିପ୍ର ପଳାୟମାନ ତତ୍କାଳୀନ ଉତ୍ତେଜନା ସବୁରେ ନଷ୍ଟ କରିଦିଅ ନାହିଁ। ଅନ୍ୟ ଲୋକେ ଗ୍ରହ ଉପଗ୍ରହରେ ବସତିପାଇଁ ଗଲାବେଳେ, ତମେ ଭାରତର ତରୁଣ ଦଳ, କପିକରି ମଣିଷ ହେବାର ଚେଷ୍ଟା କରିବାଟା କିପରି ଲଜ୍ଜାକର ବ୍ୟାପାର, ଭାବତ ଥରେ।"(୨୫)

ଆମର ଶିକ୍ଷା ବ୍ୟବସ୍ଥାରେ ଛାତ୍ର ବିଶୃଂଖଳାର କାରଣ ସ୍ୱରୂପ ମାନସିଂହ ପ୍ରତ୍ୟକ୍ଷ ଛାତ୍ର ନିର୍ବାଚନକୁ ବିରୋଧ କରି ପରୋକ୍ଷ ନିର୍ବାଚନପାଇଁ ପ୍ରସ୍ତାବ ଦେଇଛନ୍ତି। ପ୍ରତ୍ୟକ୍ଷ ନିର୍ବାଚନ ଯୋଗୁ କେତେକ ତଥା କଥିତ ଗୁଣ୍ଡା ନେତା କଲେଜମାନଙ୍କରେ ରାଜନୀତି କରି ନିରୀହ ଛାତ୍ର ଛାତ୍ରୀଙ୍କୁ ଶିକାର କରୁଛନ୍ତି। ମାନସିଂହ କହନ୍ତି :— "କଲେଜ ଓ ବିଶ୍ୱବିଦ୍ୟାଳୟମାନଙ୍କରେ ଇଉନିୟନ ପ୍ରତ୍ୟକ୍ଷ ନିର୍ବାଚନଯେ, ସେଠାରେ ବାତାବରଣ ଦୂଷିତ ହେବାର ଏକ ମୁଖ୍ୟ କାରଣ, ଏଥିରେ ମତଦ୍ୱୈଧ ନ ଥାଇପାରେ। ଏହି ପ୍ରତ୍ୟକ୍ଷ ନିର୍ବାଚନ ନେଇ ହିଁ, ରାଜନୈତିକ ଟାଉଟରମାନେ ଆମର ବିଦ୍ୟାୟତନମାନଙ୍କରେ ଢୁକି ସେମାନଙ୍କର ମର୍ଯ୍ୟାଦାକୁ ଧୂଳିସାତ୍ କରିବାରେ ସହଜରେ ସକ୍ଷମ ହୋଇ ପାରୁଛନ୍ତି। ପ୍ରତ୍ୟକ୍ଷ ଛାତ୍ର ନିର୍ବାଚନ ଯୋଗୁହିଁ, କୌଣସି ବିଦ୍ୟାଳୟର କାନ୍ଥବାଡ, ରାସ୍ତା ଓ ନାଗରିକ ମାନଙ୍କର ପାଚେରୀ ଅକଳଙ୍କ ରହିପାରୁ ନାହିଁ। ଏହା ଏକ ଘୋର ଅସାମାଜିକ ବ୍ୟବହାର। କିନ୍ତୁ ଆମର ଆଗାମୀପୁରୁଷ ରାଜନୈତିକ ଟାଉଟର ମାନଙ୍କ ଆଦର୍ଶରେ ଏ ପ୍ରକାର ମହିମାମୟ ଭାଣ୍ଡାଲିଜମ୍, ଛାତ୍ରତ୍ୱର ଏକ ଗୁଣ ଭାବରେ ସିଲାବେଲୁ ଶିଖୁଛନ୍ତି।"(୨୬)

ଶିକ୍ଷାବିତ୍ ମାନସିଂହଙ୍କୁ ଆଲୋଚନା କଲାବେଳେ, ରୋମାଣ୍ଟିକ୍ କବି ମାନସିଂହ ସବୁବେଳେ ଆଖି ଆଗରେ ଆସି ଉଭା ହୁଅନ୍ତି। ଜୀବନର ନାନା ସୁଖ ଦୁଃଖକୁ ଅନୁଭୂତିର ସାମଗ୍ରୀ କଲାପରେବି, ଅନୁଭୂତି ଭିତରୁ

ସେ ଆଦର୍ଶ ଖୋଜି ନାହାନ୍ତି । ଜନ୍ମଗତ ସଂସ୍କାର ଓ ଭାବପ୍ରବଣତା, ତାଙ୍କ ଚିନ୍ତାଧାରାକୁ ସବୁବେଳେ ବିଧ୍ୱସ୍ତ କରିଛି । ଶିକ୍ଷା ସଂପର୍କରେ ବହୁ ଚମତ୍କାର କଥା କହିଲେ ବି ଓ ଶିକ୍ଷା ସଂପର୍କରେ ତାଙ୍କର ଦୃଷ୍ଟିକୋଣ ଅନେକ ସମୟରେ ବୈପ୍ଳବିକ ମନେ ହେଲେ ବି, ମୁଖ୍ୟତଃ ସେ ଜଣେ ରକ୍ଷଣଶୀଳ ଆଦର୍ଶବାଦୀ ବ୍ୟକ୍ତି । ଏକ ପ୍ରକାର ଶିକ୍ଷା ସମସ୍ତଙ୍କ ପାଇଁ ଦରକାର ନ ହୋଇପାରେ, କିନ୍ତୁ ବଞ୍ଚିବାର ମାନ ସମସ୍ତଙ୍କର ପ୍ରାୟତଃ ଏକା ପ୍ରକାର ହେବା ଉଚିତ । ଏ ପ୍ରକାର ସତ୍ୟକୁ ଅସ୍ୱୀକାର କରୁଥିବା ବ୍ୟକ୍ତି ନିଶ୍ଚିତ ଭାବରେ ମାନବ ବିରୋଧୀ । ସମାଜରେ ସକଳ ଶ୍ରେଣୀର ଓ ସକଳ ପ୍ରକାର କର୍ମ କରୁଥିବା ଲୋକ ସମାନ ସାମାଜିକ ମର୍ଯ୍ୟାଦା ଓ ସମାନ ସୁଯୋଗ ସୁବିଧା ନ ପାଉଥିବା ବେଳେ ଶିକ୍ଷାରେ ବୈଚିତ୍ର୍ୟ ଆଣିବା ଏକ କଳ୍ପନା ବିଳାସ ମାତ୍ର । ଗୋଟିଏ ମୃତ ଫ୍ରେମ ଭିତରେ ମଣିଷର ଭବିଷ୍ୟତକୁ ବାନ୍ଧିବାରି ତାର ପ୍ରଗତିର ପଥକୁ ବନ୍ଦ କରିଦେବା କ'ଣ ଏକ ସୁସ୍ଥ ଗଣତାନ୍ତ୍ରିକ ମନର ପରିଚୟ ? ମାନସିଂହ ଶିକ୍ଷା ସଂପର୍କରେ ଉପସ୍ଥାପିତ କରିଥିବା ବକ୍ତବ୍ୟରେ ବୈଚିତ୍ର୍ୟ ରହିଛି, ପରସ୍ପର ବିରୋଧୀ ସ୍ୱର ବି ରହିଛି, କିନ୍ତୁ ଗଣତାନ୍ତ୍ରିକ ମୁକ୍ତ ଦୃଷ୍ଟିନାହିଁ, ଯାହା ଫଳରେ କ୍ଷୟିଷ୍ଣୁ ସାମନ୍ତବାଦର ଭିତ୍ତି ଉପରେ ନିଜକୁ ଅବସ୍ଥାପିତ କରି, ଆଧୁନିକ ଯୁଗର ଶିକ୍ଷାବିତ୍ ଭାବରେ ପରିଚୟ ଦେଇଥିଲା ଭଳି ମନେ ହୁଏ ।

---

ସପ୍ତମ ଅଧ୍ୟାୟ ର ସୂଚନା—

1: Bertrand Russel- Education and the Social Order:
Unwin Paper backs London (1977) Page-9

2: ରାୟ, ରାମଶଙ୍କର— ସଂପାଦନା—ମନୁସଂହିତା ବା ମନୁ ସ୍ମୃତି (ନୂତନ ମୁଦ୍ରଣ—1969)
ପ୍ରକାଶକ ଧର୍ମଗ୍ରନ୍ଥ ଷ୍ଟୋର, ଆଲିଶା ବଜାର କଟକ —2,
ଦ୍ୱିତୀୟ ଅଧ୍ୟାୟ, ଶ୍ଳୋକ ସଂଖ୍ୟା— 191 ରୁ ଶ୍ଳୋକ— 204,

ଚୋଦିତୋ ଗୁରୁଣା ନିତ୍ୟମପ୍ରଚୋଦିତ ଏବ ଚ ।
କୁର୍ଯ୍ୟାଦଧ୍ୟୟନେ ଯତ୍ନମାଚାର୍ଯ୍ୟସ୍ୟ ହିତେଷୁ ଚ ।। 191·

ଶରୀରଞ୍ଚୈବ ବାଚଞ୍ଚ ବୁଦ୍ଧୀନ୍ଦ୍ରିୟମନାଂସି ଚ ।
ନିୟମ୍ୟ ପ୍ରାଞ୍ଜଳିସ୍ତିଷ୍ଠେଦ୍ ବୀକ୍ଷମାଣୋ ଗୁରୋର୍ମୁଖମ୍ । 192

ନିତ୍ୟମୁଦ୍ଧୃତପାଣିଃ ସ୍ୟାତ୍ ସାଧ୍ୱାଚାରଃ ସୁସଂଯତଃ ।
ଆସ୍ୟତାମିତି ଚୋକ୍ତଃ ସନ୍ନାସୀତାଭିମୁଖଂ ଗୁରୋଃ ।। 193·

ହୀନାନ୍ନବସ୍ତ୍ରବେଷଃ ସ୍ୟାତ୍ ସର୍ବଦା ଗୁରୁସନ୍ନିଧୌ ।
ଉତ୍ତିଷ୍ଠେତ୍ ପ୍ରଥମଂ ଚାସ୍ୟ ଚରମଂ ଚୈବ ସଂବିଶେତ୍ ।। 194·

ପ୍ରତିଶ୍ରବଣସମ୍ଭାଷେ ଶୟାନୋ ନ ସମାଚରେତ୍ ।
ନାସୀନୋ ନ ଚ ଭୁଞ୍ଜାନୋ ନ ତିଷ୍ଠନ୍ନ ପରାଙ୍ମୁଖଃ ।। 195·

ଆସୀନସ୍ୟ ସ୍ଥିତଃ କୁର୍ଯ୍ୟାଦଭିଗଚ୍ଛଂସ୍ତୁ ତିଷ୍ଠତଃ ।
ପ୍ରତ୍ୟୁଦ୍ଗମ୍ୟ ତ୍ୱାବ୍ରଜତଃ ପଶ୍ଚାଦ୍ଧାବଂସ୍ତୁ ଧାବତଃ ।। 196

ପରାଙ୍ମୁଖସ୍ୟାଭିମୁଖୋ ଦୂରସ୍ଥସ୍ୟୈତ୍ୟ ଚାନ୍ତିକମ୍ ।
ପ୍ରଣମ୍ୟ ତୁ ଶୟାନସ୍ୟ ନିଦେଶେ ଚୈବ ତିଷ୍ଠତଃ ।। 197·

ନୀଚଂ ଶଯ୍ୟାସନଂ ଚାସ୍ୟ ସର୍ବଦା ଗୁରୁ ସନ୍ନିଧୌ ।
ଗୁରୋସ୍ତୁ ଚକ୍ଷୁର୍ବିଷୟେ ନ ଯଥେଷ୍ଟାସନୋ ଭବେତ୍ ।। 198·

ନୋଦାହରେଦସ୍ୟ ନାମ ପରୋକ୍ଷମପି କେବଳମ୍ ।
ନ ଚୈବାସ୍ୟାନୁକୁର୍ବୀତ ଗତିଭାଷିତଚେଷ୍ଟିତମ୍ ।। 199·

ଗୁରୋର୍ଯତ୍ର ପରୀବାଦୋ ନିନ୍ଦା ବାପି ପ୍ରବର୍ତ୍ତତେ ।
କର୍ଣ୍ଣୌ ତତ୍ର ପିଧାତବ୍ୟୌ ଗନ୍ତବ୍ୟଂ ବା ତତୋଽନ୍ୟତଃ ।। 200·

ପରୀବାଦାତ୍ ଖରୋ ଭବତି ଶ୍ୱା ବୈ ଭବତି ନିନ୍ଦକଃ ।
ପରିଭୋକ୍ତା କୃମିର୍ଭବତି କୀଟୋ ଭବତି ମତ୍ସରୀ ।। 201·

ଦୂରସ୍ଥୋ ନାର୍ଚ୍ଚୟେଦେନଂ ନ କ୍ରୁଦ୍ଧୋ ନାନ୍ତିକେ ସ୍ତ୍ରିୟାଃ ।
ଯାନାସନସ୍ଥଶ୍ଚୈବୈନମବରୁହ୍ୟାଭିବାଦୟେତ୍ ।। 202·

ପ୍ରତିବାତେଽନୁବାତେ ଚ ନାସୀତ ଗୁରୁଣା ସହ ।
ଅସଂଶ୍ରବେ ଚୈବ ଗୁରୋର୍ନ କିଞ୍ଚିଦପି କୀର୍ତ୍ତୟେତ୍ ।। 203·

ଗୋଽଶ୍ୱୋଷ୍ଟ୍ରଯାନପ୍ରାସାଦପ୍ରସ୍ତରେଷୁ କଟେଷୁ ଚ ।
ଆସୀତ ଗୁରୁଣା ସାର୍ଦ୍ଧଂ ଶିଳାଫଲକନୌଷୁ ଚ ।। 204·

X X X X

॥ ମାନସିଂହଙ୍କ ବିଗ୍ରହଧାରା ॥

3: English works of Raja Rammohan Ray: Published by Sadharana Bramha Samaj :Calcutta.

4: ମାନସିଂହ, (ଡଃ) ମାୟାଧର–ଶିକ୍ଷାବିତ୍‌ର ଗାଥା(1965)– ପୃ.1,

5: ତତ୍ରୈବ,

6: ମାନସିଂହ, ମାୟାଧର–ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ, – ପୃ.1,

7: ତତ୍ରୈବ, 8: ତତ୍ରୈବ–ପୃ.9,

9: ମାନସିଂହ, ମାୟାଧର– ଶିକ୍ଷାର କି' କା'ଣ, ଓ କାହିଁକି ? ପୃ. 22–23,

10: ତତ୍ରୈବ ପୃ.30,

11: ମାନସିଂହ– ଶିକ୍ଷାବିତ୍‌ର ଗାଥା(1965) ପୃ–333,

12: ମାନସିଂହ– ଶିକ୍ଷାର କି, କା'ଣ ଓ କାହିଁକି ? ପୃ–20–21,

13: ତତ୍ରୈବ ପୃ.11, 14: ତତ୍ରୈବ.. ପୃ.13,

15: ମାନସିଂହ–ଶିକ୍ଷା ଶିକ୍ଷକ ଓ ଶିକ୍ଷାୟତନ, ପୃ– 8,

16: ମାନସିଂହ– ଶିକ୍ଷାର କି, କା'ଣ ଓ କାହିଁକି ? ପୃ.2–3,

17: ତତ୍ରୈବ ପୃ.3, 18: ତତ୍ରୈବ ପୃ. 9,

19: ତତ୍ରୈବ ପୃ.33,

20: ମାନସିଂହ, ପଶ୍ଚିମ ପଥିକ(1964) ପୃ–84,

21: ମାନସିଂହ–'ଶିକ୍ଷାବିତ୍‌ର ଗାଥା'(1965) ପ୍ରଥମ ଅଧ୍ୟାୟ ପୃ–2,

22: ତତ୍ରୈବ, ପୃ.3, 23: ତତ୍ରୈବ, ପୃ.4,

24: ତତ୍ରୈବ, ପୃ.5,

25: ମାନସିଂହ, – ଶିକ୍ଷାରର କି' କା'ଣ ଓ କାହିଁକି ? (1960) ପୃ.11,

26: ତତ୍ରୈବ, ପୃ. 38, 27: ତତ୍ରୈବ, ପୃ.43–44,

28: ମାନସିଂହ– ମାନସିଂହ ଗ୍ରନ୍ଥାବଳୀ(ଦ୍ୱିତୀୟ ଖଣ୍ଡ–1964) କମଳାୟନ କାବ୍ୟ— ପୃ. 182,

"ତମର ବାପାଙ୍କୁ ଜାଣେ, ସାମାନ୍ୟ ଶିକ୍ଷକ/ହେଲେ କି ହୋଇଲା, ଜଣେ ମନୁଷ୍ୟ ଗଠକ;
ସାଧୁ, ଦକ୍ଷ, ଧର୍ମଭୀରୁ, କାର୍ଯ୍ୟ–ପରାୟଣ /ଛାତ୍ରଙ୍କ ମଙ୍ଗଳାକାଙ୍କ୍ଷୀ, ଉଦାର ମନନ ।
ଏହିପରି ଦୁଇଗଣ୍ଡା, ଗୁରୁ ଓ ଦେଶରେ/ ଥିଲେ ଉଠିଯା'ନ୍ତା ଜାତି ବହୁତ ଉପରେ ।(ପ୍ରଥମ ସର୍ଗ)

29: ତତ୍ରୈବ ପ୍ର.233–34,
"ବ୍ରତପରି ଧରିଅଛି ଛାତ୍ର ଅଧ୍ୟାପନା,/ନାହିଁରହିଛିତେ ବିନିମୟର ଗଣନା
କମଳ କରଇ ବିଦ୍ୟାଦାନ ଏକାନ୍ତରେ/ଶିକ୍ଷକ ସେ ସବୁବେଳେ,ଇସ୍କୁଲେ ବା ଘରେ ।
ଘରେ କରେ ଅଧ୍ୟୟନ,କରେ ପରିଶ୍ରମ /କରିବାକୁ ଜ୍ଞାନ,ଛାତ୍ରଙ୍କର ହୃଦଂଗମ,
ଦେଖେ ତାଙ୍କ ଖାତାପତ୍ର ସାବଧାନତାରେ/ଦେଖାଏ ପ୍ରମାଦ ସବୁ ମୃଦୁ ତିରସ୍କାରେ,
ତାଙ୍କ ସଂଗେ ଏକ ହୁଏ,କ୍ରୀଡନେ ବିଳାସେ/ ତାଙ୍କ ଛୋଟ ଛୋଟ ଦୁଃଖେ ବେଦନା ପ୍ରକାଶେ ।
ସବୁ ସତ୍ତ୍ୱେ ଥାଏ କିନ୍ତୁ ଆପଣାର ସ୍ତରେ/ଯେହ୍ନେ ସେ ଉନ୍ନତ ଜୀବ ଜୀବନ,ଚରିତ୍ରରେ ॥(ଷଷ୍ଠ ସର୍ଗ)
30: ମାନସିଂହ—ଶିକ୍ଷାବିତ୍‌ର ଗାଥା(1965) ପ୍ର–331–32,
31: ତତ୍ରୈବ, ପ୍ର.204,
32: ମାନସିଂହ—ଶିକ୍ଷାର କି'କ'ଣ ଓ କାହିଁକି ? (1960) ପ୍ର.4,
33: ମାନସିଂହ ଗ୍ରନ୍ଥାବଳୀ,ପ୍ରଥମ ଖଣ୍ଡ,ସେ ଦିନର କବିତା,ଚଲିଆ ଜୀବର ବିଳାପ(କବିତା) ପ୍ର.64,
34: ତତ୍ରୈବ, ମୋ ପିଲାଙ୍କ ଭବିଷ୍ୟତ(କବିତା) ସ୍ୱରାଜ୍ୟାଶ୍ରମ– ପ୍ର.594,
35: ମାନସିଂହ—ଗ୍ରାମୋନ୍ନତିର ରୋମାଞ୍ଚକର କାହାଣୀ(ଅନୁବାଦ–1956) ପ୍ର.71–72,
36: ମାନସିଂହ–ସାହିତ୍ୟ ଓ ବିଶ୍ୱବିଦ୍ୟାଳୟ(ପ୍ରବନ୍ଧ) ନବଜୀବନ 6/10, ପ୍ର.597,
37: ମାନସିଂହ–ଶିକ୍ଷାବିତ୍‌ର ଗାଥା(1965), ପ୍ର.204–205,
38: ତତ୍ରୈବ, ପ୍ର.4, 39: ତତ୍ରୈବ ପ୍ର.10,
40: ତତ୍ରୈବ ପ୍ର.11, 41: ତତ୍ରୈବ, ପ୍ର.11,
42: ତତ୍ରୈବ ପ୍ର.18, 43: ତତ୍ରୈବ, ପ୍ର.18–19,
44: ତତ୍ରୈବ ପ୍ର.27–28, 45: ତତ୍ରୈବ, ପ୍ର.79,
46: ମାନସିଂହ–ଶିକ୍ଷା,ଶିକ୍ଷକ ଓ ଶିକ୍ଷାୟତନ(1957) ପ୍ର .59,
47: ମାନସିଂହ–ଗୀତାମହାତ୍ମ୍ୟ(1969) ପ୍ର–5,
48: ମାନସିଂହ–ଗ୍ରାମୋନ୍ନତିର ରୋମାଞ୍ଚକର କାହାଣୀ(ଅନୁବାଦ–1956) ପ୍ର.66,
49: ମାନସିଂହ–ଶିକ୍ଷାର କି' କ'ଣ ଓ କାହିଁକି ?(1960) ପ୍ର.4–5,
50: ତତ୍ରୈବ ପ୍ର.34–35,
51: ମାନସିଂହ –ଶିକ୍ଷାବିତ୍‌ର ଗାଥା(1965) ପ୍ର.82,

## ॥ ମାନସିଂହଙ୍କ ବିଗ୍ରହଧାରା ॥

52: ମାନସିଂହ– ଶିକ୍ଷାର କି' କ'ଣ ଓ କାହିଁକି ? ପୃ.50,

53: ତତ୍ରୈବ ପୃ.50, 54: ତତ୍ରୈବ ପୃ.53,

55: ତତ୍ରୈବ ପୃ.53, 56: ତତ୍ରୈବ ପୃ.55,

57: ତତ୍ରୈବ ପୃ.73, 58: ତତ୍ରୈବ ପୃ83,

59: ତତ୍ରୈବ ପୃ.84, 60: ତତ୍ରୈବ ପୃ.96,

61: ମାନସିଂହ– ଶିକ୍ଷାବିତ୍‌ର ଗାଥା(1965) ହିଂଦୋଳ ରିପୋର୍ଟ– ପୃ. 52,

62: ମାନସିଂହ– ଶିକ୍ଷାର କି' କ'ଣ ଓ କାହିଁକି(1960) ପୃ. 77,

63: ତତ୍ରୈବ ପୃ.98–99, 64: ତତ୍ରୈବ ପୃ.106–107,

65: ତତ୍ରୈବ 107–108, 66: ତତ୍ରୈବ ପୃ. 110

67: ତତ୍ରୈବ ପୃ. 111, 68: ତତ୍ରୈବ ପୃ.114,

69: ମାନସିଂହ– ଶିକ୍ଷାବିତ୍‌ର ଗାଥା ପଂଚଦଶ ଅଧ୍ୟାୟ– ପରିଶିଷ୍ଟ–4, ଟିପ୍ପଣୀ–1 ପୃ–176,

70: ତତ୍ରୈବ ପୃ. 76,

71: ମାନସିଂହ–ପ୍ରଚଳିତ ଶିକ୍ଷା ବ୍ୟବସ୍ଥା କି ସତ୍ୟରେ ତ୍ରୁଟିପୂର୍ଣ୍ଣ? ନବରବି,3/1, ଜୁଲାଇ–1972, ପୃ. 17,

72: ତତ୍ରୈବ ପୃ.19, 73: ତତ୍ରୈବ ପୃ.20,

74: ତତ୍ରୈବ ପୃ.21, 75: ତତ୍ରୈବ ପୃ.22,

76: ତତ୍ରୈବ ପୃ.23, 77: ତତ୍ରୈବ ପୃ.24,

78: ତତ୍ରୈବ ପୃ.26, 79: ତତ୍ରୈବ ପୃ27,

80: ତତ୍ରୈବ ପୃ.28, 81: ତତ୍ରୈବ ପୃ. 28–29,

82: ତତ୍ରୈବ ପୃ.30, 83: ତତ୍ରୈବ ପୃ.31,

84: ତତ୍ରୈବ ପୃ. 32, 85: ତତ୍ରୈବ ପୃ.32,

86: ମାନସିଂହ– ଆମ ଗଣତନ୍ତ୍ରର ଭବିଷ୍ୟତ / ନବରବି,3/9, ମାର୍ଚ୍ଚ–1973 ପୃ.38,

---

## ଅଷ୍ଟମ ଅଧ୍ୟାୟ

### ——କଳା——

" ଯାହା ରହସ୍ୟହୀନ ତାହା ସୃଷ୍ଟି ନୁହେଁ ଏବଂ ଯାହା ସୃଷ୍ଟି ନୁହେଁ ତାହା ସାହିତ୍ୟ ନୁହେଁ"——ମାନସିଂହ ।

**କଳା ଓ ସାହିତ୍ୟର ଉତ୍ସ——ମାନବ ଜୀବନରେ ଏହାର ଭୂମିକା ଓ ତତ୍ ସମ୍ପର୍କୀୟ ପ୍ରତ୍ୟୟ ।**

ବିଶ୍ୱର ସମସ୍ତ ପ୍ରଜାତିର ବୈଶିଷ୍ଟ୍ୟ ହେଲା ବିବର୍ତ୍ତନ । ଏହି ବିବର୍ତ୍ତନ ପ୍ରକ୍ରିୟାରେ ମଣିଷ କଳା ଓ ସାହିତ୍ୟକୁ ସୃଷ୍ଟି କରିଛି । ମଣିଷର ଥିବା ପାଞ୍ଚୋଟି ଜ୍ଞାନେନ୍ଦ୍ରିୟ ମଧ୍ୟରୁ ବିଶେଷତଃ ଦୁଇଟି ଇନ୍ଦ୍ରିୟ: ଦର୍ଶନେନ୍ଦ୍ରିୟ ଓ ଶ୍ରବଣେନ୍ଦ୍ରିୟ ନିଜର ଉପଭୋଗ୍ୟ ବସ୍ତୁକୁ କିଛିଟା ଦୂରରୁ ଅନୁଭବ କରେ । ଏହି ଦୂରତ୍ୱର ଅନୁଭବ ତାର ବଂଶ ବୃଦ୍ଧି ତଥା ବଞ୍ଚିବାର ସଂଗ୍ରାମ ଭିତ ର ଦେଇ ସୁନ୍ଦର ବସ୍ତୁର ସୃଷ୍ଟି କରିଛି । ଅନୁନ୍ନତ ସୌନ୍ଦର୍ଯ୍ୟକୁ ଦୀର୍ଘଜୀବୀ ଓ ମାନବିକ କରିବାର ଉଦ୍ୟମରୁ କଳା ଓ ସାହିତ୍ୟର ସୃଷ୍ଟି ।

ପୁରାଣର ଗୋଟିଏ କାହାଣୀ ରହିଛି, କାହାଣୀଟି ହେଉଛି ଉର୍ବଶୀଙ୍କର ଜନ୍ମକଥା । କୁଆଡେ ପରିପୂର୍ଣ୍ଣ ଯୌବନା ଉର୍ବଶୀ ହଠାତ ସାଗର ଗର୍ଭରୁ ସମୁଦ୍ର ମନ୍ଥନ କାଳରୁ ଆବିର୍ଭୂତ ହୋଇଥିଲେ । କଳା ଓ ସାହିତ୍ୟକୁ ଅନେକ ସେହି ଉର୍ବଶୀର ପ୍ରତିରୂପ ବୋଲି ଭାବିଥାନ୍ତି । ଭାବବାଦୀ(ଆଇଡିଆଲିଷ୍ଟ)ଚିନ୍ତାନାୟକମାନେ ମନେ କରିଥାନ୍ତି, କୌଣସି ଏକ ବିଶେଷ ମୁହୂର୍ତ୍ତରେ ଶିଳ୍ପୀମନର ରଂଗୀନ୍ ଅଧ୍ୟାସରୁ କଳା ଓ ସାହିତ୍ୟର ସୃଷ୍ଟି । କିନ୍ତୁ ବସ୍ତୁନିଷ୍ଠ ପ୍ରତିନ୍ୟାସ ନେଇ ବିଗ୍ରହକଲେ ଜଣାଯାଏ, ମଣିଷର ମନନ, ମାନବିକତା ଓ ସାଂସ୍କୃତିକ ଜୀବନର ବିଭିନ୍ନ ଅଂଗ ତାର ବଞ୍ଚିବାର, ସେଥିନେଇ ସଂଗ୍ରାମ କରିବାର ପ୍ରବୃତ୍ତି ଓ ନିଜକୁ ବିକାଶ କରିବାର ଇଚ୍ଛା ଭିତରଦେଇ ଯେଭଳି ସୃଷ୍ଟି ହୋଇଛି କଳା ଓ ସାହିତ୍ୟ ମଧ୍ୟ ସେଭଳି ମଣିଷର ଜୀବନ ସଂଗ୍ରାମ ଓ ତାର ବିକାଶ ଇଚ୍ଛା ଭିତରୁ ଉଦ୍‌ଭୂତ ।

|| ମାନସିଂହଙ୍କ ବିଗ୍ରହଧାରା ||

ଅତୀତ ର ବହୁ କଳା ସୃଷ୍ଟି, ଯାହା ଆଜି ଆମ ନିକଟରେ ଉପଭୋଗର ବସ୍ତୁ, ସେହି କଳାତ୍ଵ ସଂପୃକ୍ତ ବସ୍ତୁ ଗୁଡିକ ଭିତରେ କାଳର ଦୂରତ୍ଵ ହିଁ ଆରୋପିତ ହୋଇଛି । ମଣିଷର ଆବଶ୍ୟକତା ଓ ଜୀବନ ଚର୍ଯ୍ୟା କଳା ସୃଷ୍ଟିକୁ ଏକ ନିର୍ଦ୍ଦିଷ୍ଟ ରୂପ ପ୍ରଦାନ କରିଛି । ଏହା ମଧ୍ୟ ସ୍ୱୀକାର କରିବାକୁ ହେବ, ମଣିଷ ଆଜି ଯାହା ହୋଇଛି, ତାହା ହେବାରେ କଳା ଓ ସାହିତ୍ୟ ଏକ ନିର୍ଦ୍ଦିଷ୍ଟ ଭୂମିକା ନେଇଛି । ଇତିହାସ ପର୍ଯ୍ୟାଲୋଚନା କଲେ ଦେଖାଯାଏ, ବିବର୍ତ୍ତନ ମଧ୍ୟରେ ଗୋଟିଏ ସଂଧିକାଳ ଆସେ, ମଣିଷ ଜୀବନ ଯେତେବେଳେ ତା'ର ସାଧାରଣ ଗତି ପ୍ରବାହ ତ୍ୟାଗ କରି ନୂତନ ସୋତ ନିଏ । ଏହି ସୋତ ନେଉଥିବା କାଳରେ ମଣିଷ ଜୀବନପାଇଁ କଳା ତଥା ସାହିତ୍ୟ ନୂତନ ଜୀବନର ଇଶାରା ଦେଇଥାଏ । ଆଗାମୀ କାଳର ଶୁଭ ଶଂଖ ଫୁଙ୍କିଥାଏ । ରେନେସାଁ ପରବର୍ତ୍ତୀ ଇଉରୋପୀୟ ସଭ୍ୟତାର ବିକାଶପାଇଁ ଶିଳ୍ପୀ ତଥା ବୈଜ୍ଞାନିକମାନଙ୍କର ମହନୀୟ ଭୂମିକା ଆଜି—ସର୍ବସ୍ୱୀକୃତ ।

କିନ୍ତୁ ଏହି କଳା ଓ ସାହିତ୍ୟ କଣ ? ତା'ର ଭଲମନ୍ଦ ବିଗ୍ରହ କରାଯିବା ଉଚିତ କି ନାହିଁ ? ଯଦିବା ଭଲମନ୍ଦ ବିଗ୍ରହ କରାଯିବ ତା'ର ମାନଦଣ୍ଡ କ'ଣ ? ଏ ମାନଦଣ୍ଡ ତିଆରି କରେ କିଏ ? ଏହି ମାନଦଣ୍ଡକୁ ସାର୍ବଜନୀନ ଓ ସାର୍ବକାଳିକ କରାଯିବ କି ନାହିଁ ? ଗୋଟାଏ ପଟେ ଏ ସବୁ ପ୍ରଶ୍ନ ଉଠେ, ଅନ୍ୟ ପକ୍ଷରେ ସଂସ୍କୃତିର ବିକାଶରେ ଏହାର ଭୂମିକା, ଜୀବନକୁ ସୁସ୍ଥ ସୁନ୍ଦର ମଂଗଳମୟ କରିବାରେ ଏହାର ଗୁରୁତ୍ଵ ମଧ୍ୟ ଆମର ଦୃଷ୍ଟି ଆକର୍ଷଣ କରେ । ଏହାର ଦାହାରେ କଳାସୃଷ୍ଟିର ରହସ୍ୟ ଓ ଉପଭୋଗର କ୍ଷେତ୍ର ମଧ୍ୟ ବିଗ୍ରହର ସାମଗ୍ରୀ ହେବାକୁ ବାଧ୍ୟ ହୁଏ । ମଣିଷ ସଭ୍ୟତାର ଆଦିମ ସ୍ତରରେ ବନ୍ୟ ଜନ୍ତୁର ଶିକାରପାଇଁ ଅଲୌକିକ ଶକ୍ତିକୁ ଆବାହନ କରିବା ପାଇଁ ଗୁମ୍ଫିଥିଲା । ସେ ଯାହାସବୁ କରିଥିଲା ତା ଭିତରେ ସଚେତନ ଅପେକ୍ଷା ତା'ର ଅଚେତନ ମନର କ୍ରିୟା ଥିଲା ଅଧିକ ତେଣୁ ଅଚେତନ ମନର ରୂପକୁ ନଜାଣିବା ଫଳରେ ଅଧିକାଂଶ କଳାସୃଷ୍ଟି ତା'ପାଇଁ ରହସ୍ୟମୟ ହୋଇ ଉଠିଥିଲା । ପରବର୍ତ୍ତୀ କାଳରେ ସମାଜର ସ୍ଥିତିସ୍ଥାପନା ଖୋଜୁଥିବା କ୍ଷମତାଭୋଗୀ ଶକ୍ତିସକଳ ମଣିଷର ଏହି କଳାତ୍ମକ ପ୍ରବୃତ୍ତିର ଉତ୍ସ ସଂଧାନ ନକରି ଅଧିକ ରହସ୍ୟମୟ କରିବାରେ ସାହାଯ୍ୟ କରିଥିଲେ । ପୁଣି ଏମିତି ସମୟ ଆସିଛି, ସେହି ଶକ୍ତିବର୍ଗ କଳା ଓ ସାହିତ୍ୟର ମୂଲ୍ୟକୁ ନ୍ୟୂନ କରି ଦେଇଛନ୍ତି । ମଣିଷ ସମାଜ ଜୀବନ ଭିତରେ କଳା ଓ ସାହିତ୍ୟର ସୃଷ୍ଟି; କିନ୍ତୁ ଏହି ସମାଜ ଜୀବନ ବାରମ୍ବାର କଳା ଓ ସାହିତ୍ୟର ବିରୋଧୀ ହୋଇ ଉଠିଛି । ସମାଜରେ ତାର ମୂଲ୍ୟକୁ ଅପାଂକ୍ତେୟ କରିବାର ଚେଷ୍ଟା ବି କରାଯାଇଛି । ତେଣୁ କଳା—ସୃଷ୍ଟି ଭଳି କଳା ତଥା ସମାଜର ସଂପର୍କ ପ୍ରଶ୍ନ ବିଭିନ୍ନ ସମୟରେ ନାନା ଭାବରେ ବିଗ୍ରହ କରାଯାଇଛି । ଶିଳ୍ପୀ ଜଣେ ସ୍ରଷ୍ଟା ନିଶ୍ଚୟ । ସମାଜକୁ ନିୟନ୍ତ୍ରିତ କରୁଥିବା ଓ ସମାଜରେ ସମ୍ମାନ ଦାବୀ କରୁଥିବା ବର୍ଗ ଭିତରେ ଶିଳ୍ପୀର ଆସନ ଅଛିକି ନାହିଁ, ପ୍ରତ୍ୟେକ ସମୟ ଏ ପ୍ରଶ୍ନ ବାରମ୍ବାର ଉଚ୍ଚାରଣ କରିଛି । ଗତ ଏକଶତ ବର୍ଷ ମଧ୍ୟରେ ସମାଜ ବିଜ୍ଞାନ ଓ ତାର ବିଭିନ୍ନ ଶାଖା ବିଜ୍ଞାନର ଅକଳ୍ପନୀୟ ପ୍ରଗତି ସାଧିତ ହୋଇଥିଲେ ବି, କଳା ସଂପର୍କୀୟ ବିଭିନ୍ନ ପ୍ରଶ୍ନର ଯଥାର୍ଥ ଉତ୍ତର ସେହି ଶାସ୍ତ୍ରଗୁଡିକ ଏ

ପର୍ଯ୍ୟନ୍ତ ପ୍ରଦାନ କରିପାରି ନାହିଁ । ଯାହାଙ୍କରେ ମାନସିଂହଙ୍କ ନିଜ କାଳରେ ବା ତାଙ୍କର ପରବର୍ତ୍ତୀ ସମୟରେ କଳା ଓ ସାହିତ୍ୟ ସମ୍ପର୍କୀୟ ଆଲୋଚନା ବସ୍ତୁତଃ ଭାବବାଦୀ ଦର୍ଶନର ସଂସ୍ପର୍ଶକରଣ ତଥା ପ୍ରତ୍ୟୟରୁ ମୁକ୍ତିପାଇପାରି ନାହିଁ ।

ମାନସିଂହ ନିଜେ ଥିଲେ ଜଣେ କବି । ଜୀବନରେ ପ୍ରତ୍ୟେକ ବସ୍ତୁକୁ ଏକ ଶିଳ୍ପୀ ସୁଲଭ ଦୃଷ୍ଟି କୋଣରୁ ଦେଖିବା ଥିଲା ମାନସିଂହଙ୍କ ବ୍ୟକ୍ତିତ୍ୱର ଏକ ବିଶିଷ୍ଟ ଗୁଣ । ସମୟ କ୍ରମରେ ସେ ଇଂରାଜୀ ସାହିତ୍ୟର ସ୍ନାତକତ୍ୱ ଗ୍ରହଣ କଲେ ଓ ବିଶ୍ୱର ଦୁଇ ଶ୍ରେଷ୍ଠ ସାହିତ୍ୟକାର କାଳିଦାସ ତଥା ସେକ୍ସପିଅରଙ୍କ ସମ୍ପର୍କରେ ଗବେଷଣା ବି କଲେ ।ତେଣୁ ଜୀବନର ବିଭିନ୍ନ ପର୍ଯ୍ୟାୟରେ ସେ କେବଳ କବିତା ଲେଖି ନାହାନ୍ତି ବା କବିତା ପଢି ସନ୍ତୁଷ୍ଟ ହୋଇ ନାହାନ୍ତି, ଶିଳ୍ପ ସୃଷ୍ଟିର ବିଗ୍ରହ କରିବାକୁ ମଧ୍ୟ ଯାଇଛନ୍ତି । ନିଜକୁ ଜୀବନର ବିଭିନ୍ନ ପର୍ଯ୍ୟାୟରେ ନିଜର ରଚନା ମଧ୍ୟରେ ନାନା ଭାବରେ ଆବିଷ୍କାର କଲାଭଳି, ବିଭିନ୍ନ କବି ସାହିତ୍ୟିକ ଓ ଶିଳ୍ପ ସୃଷ୍ଟିକି ସେ ଭିନ୍ନ ଭିନ୍ନ ଭାବରେ ପର୍ଯ୍ୟାଲୋଚନା କରିଛନ୍ତି । କଳା ତଥା ସାହିତ୍ୟ ସଂସ୍କୃତିର ଏକ ଅଂଶ ବିଶେଷ । ବିଶେଷତଃ ସାହିତ୍ୟ ଏକ ବିକଶିତ ସଂସ୍କୃତିର ପ୍ରତିଭୂ । ସଂସ୍କୃତି ଯେ ଭଳି କୌଣସି ରେଡିମେଡ୍ ଜିନିଷ ନୁହେଁ, ତାହା ଜୀବନ ଯାପନ ଭିତରୁ କ୍ରମଶଃ ଗଢିଉଠେ ଓ ବିଭିନ୍ନ ପର୍ଯ୍ୟାୟରେ ଏହାର କୌଣସି ନା କୌଣସି ଅଂଶ ଗୁରୁତ୍ୱ ଦାବୀ କରେ । ସାହିତ୍ୟ ଜାତିର ସଂସ୍କୃତିରେ ସେହିଭଳି ଏକ ଗୁରୁତ୍ୱ ଦାବୀ କରିଛି । ସେଥିପାଇଁ ସଂସ୍କୃତିର ଏକ ଅଂଶ ହୋଇଥିଲେ ମଧ୍ୟ କଳା ଓ ସାହିତ୍ୟର ବିଗ୍ରହକୁ ସ୍ୱତନ୍ତ୍ର ଭାବରେ ବିଶେଷ ଗୁରୁତ୍ୱ ସହ ଏଠାରେ ସ୍ଥାନିତ ।

## ମାନସିଂହଙ୍କ ବ୍ୟକ୍ତିଗତ ଜୀବନ— କଳା ଓ ସାହିତ୍ୟ ସହିତ ତାଙ୍କର ସମ୍ପର୍କ ॥

କବି ବା ଶିଳ୍ପୀର ମାନସିକ ଚିତ୍ରର ପ୍ରତିଫଳନ କଳା ରୂପରେ ହିଁ ଆତ୍ମ ପ୍ରକାଶ କରେ । ସୃଷ୍ଟି ସ୍ରଷ୍ଟାର ସହଜାତ ପ୍ରବୃତ୍ତି । ମଞ୍ଜିରୁ ଗଛହେବା ପ୍ରାକୃତିକ ନିୟମରେ ସତ୍ୟ ହେଲେ ମଧ୍ୟ, ଉପଯୁକ୍ତ ଜଳ, ବାୟୁ ଓ ଉତ୍ତାପର ଅଭାବରେ ମଞ୍ଜିରୁ ନୂତନ ସୃଷ୍ଟି ସମ୍ଭବ ନୁହେଁ । ସେହିପରି ସ୍ରଷ୍ଟା ଜୀବନରେ ସମୁପଯୁକ୍ତ ପାରିପାର୍ଶ୍ୱିକ ଅବସ୍ଥାର ପ୍ରତିକୂଳତା ମଧ୍ୟରେ ସ୍ରଷ୍ଟାର ସୃଷ୍ଟି ସମ୍ଭବ ନୁହେଁ । ପୃଥିବୀ ରୂପକ ପୁସ୍ତକର ପ୍ରତ୍ୟେକ ପୃଷ୍ଠାରେ କଳା, ସାହିତ୍ୟ, ଜୀବନ, ସଂଗୀତର ରସ ଭରି ରହିଛି; ମାତ୍ର ଉପଯୁକ୍ତ ଦୃଷ୍ଟିର ଅଭାବରୁ ତାହା ସାଧାରଣରେ ଉପଭୋଗ ଉପଯୋଗୀ ହୋଇପାରେ ନାହିଁ । କବି ଅଥବା ଚିତ୍ରକର ନିଜର ସୃଜନୀ ଦୃଷ୍ଟିରେ ଜନସାଧାରଣଙ୍କୁ କଳାର ମାଧୁରୀ ଦେଖାଇ ଦିଅନ୍ତି । ହିମଗିରୀର ଗୁରୁଗମ୍ଭୀର ଶୋଭା, ଭସାବାଦଲର ସଂଦେଶ ବା ନଦନଦୀର ପ୍ରାକୃତିକ ଶୋଭା ଅନାଦି କାଳରୁ ରହି ଆସିଥିଲା । କବି କାଳିଦାସଙ୍କ ସ୍ପର୍ଶରେ ମଣିଷ ତାକୁ ନୂଆକରି ଦେଖିଲା । ସେ ମେଘ ମଧ୍ୟରେ ଜୀବନର ସନ୍ଧାନ କଲା । ରାଧାନାଥଙ୍କ ଆବିର୍ଭାବ ପର୍ଯ୍ୟନ୍ତ ଓଡିଶାର ନଦନଦୀ, ହ୍ରଦ, ବନଗିରି ସେହିପରି କେବଳ ମଣିଷର ବସ୍ତୁନିଷ୍ଠ ଆବଶ୍ୟକତାକୁ ପୂରଣ କରି ଆସିଥିଲେ । ଜୀବନ ପାଇଁ ଯେ ଖୋରାକ ସେଥିରେ ନିହିତ ଅଛି, ସେ କଥା ରାଧାନାଥ ଓଡିଆମାନଙ୍କୁ ଜଣାଇଦେଲେ । । ବିଶ୍ୱର ବିଭିନ୍ନ ଭାଷାର କବି ଶିଳ୍ପୀ ସେହିପରି ମଣିଷର ମନପାଇଁ ଖୋରାକ ଯୋଗାଇ ଆସିଛନ୍ତି ।

## ।। ମାନସିଂହଙ୍କ ବିସ୍ମୟଧାରା ।।

କବି ମାନସିଂହଙ୍କ ସ୍ରଷ୍ଟା ମନ ଭିତରେ ଏହିପରି ଏକ ସୁପ୍ତ ଦୃଷ୍ଟି ବରାବର ରହିଥିଲା । କବି ରାଧାନାଥ ପଶ୍ଚିମ ଜୀବନ ଯାହାର ପଶ୍ଚିମ ତୀରରେ ଯାପନ କରିବା ପାଇଁ କାମନା କରିଥିଲେ, ସେହି ଲୋକ ପାଭୋରା ଅପ୍ସରା–ଭୁବନ ଚିଲିକାର କୋଳରେ କବିଙ୍କର ଜନ୍ମ । ତାଙ୍କ ବାଲ୍ୟ ଜୀବନ, ପ୍ରାଥମିକ ଓ ମାଧ୍ୟମିକ ଶିକ୍ଷା ସେଇଠାରେ ସମାପନ ହୋଇଥିଲା । କବିଙ୍କ ଘରର ଗୋଟିଏ ପଟରେ ପ୍ରକୃତିର ସ୍ବୁରୁ ଚିତ୍ରଶାଳା ଚିଲିକା, ଅପର ପାର୍ଶ୍ୱରେ ଦଣ୍ଡାୟମାନ ଅନନ୍ତବାହୁ ବିସ୍ତାର କରି ସଦା ମୁଖରିତ ମହୋଦଧି । କିଆ କେତକୀ, ଯୋଗାଙ୍ଗ ନାରୀକେଳ, ତାଳ ଆମ୍ରକୁଞ୍ଜର ଏକ ପ୍ରାକୃତିକ ପରିବେଶ କବି ମନକୁ ରସମୟ କରିଥିଲା । ଜନ୍ମଭୂମି ଗଞ୍ଜାମର ସାଂସ୍କୃତିକ ବାୟୁ ମଣ୍ଡଳର ଝଲକ କବିଙ୍କ ଗ୍ରାମ ପର୍ଯ୍ୟନ୍ତ ପରିବ୍ୟାପ୍ତ । ଓଡିଶାର ରାଜ ଦରବାର ପ୍ରାଚୀନ ତଥା ମଧ୍ୟଯୁଗୀୟ ଓଡିଆ ସାହିତ୍ୟର ପୃଷ୍ଠପୋଷକତା କରି ଆସିଥିଲା । ମାଲୁଦର ଗ୍ରାମେ ଗ୍ରାମେ ପ୍ରାଚୀନ ଛାନ୍ଦ ଚଉପଦୀର ଲହର ସାଙ୍ଗକୁ, ପାରିକୁଦର ରାଜପରିବାର ସହିତ ମାନସିଂହ ପରିବାରର ସମ୍ପର୍କ ପରିବେଶକୁ ଆହୁରି ନିବିଡ କରିଥିଲା । ପୁନଶ୍ଚ ମାନସିଂହଙ୍କ ପିତାମହ ସତ୍ୟବାଦୀ ନାୟକ ଜଣେ କବି ଓ ପିତୃବ୍ୟ ଜଣେ ଗ୍ରାମ୍ୟ ଗାୟକ ଥିବାରୁ ସାହିତ୍ୟ ସଙ୍ଗୀତ ଓ କଳାପ୍ରତି କବିଙ୍କ ମନରେ ଏକ ସହଜାତ ପ୍ରବୃତ୍ତି ବିଦ୍ୟମାନ ଥିଲା ।

ପାରିପାର୍ଶ୍ୱିକ ପରିବେଶର ସହଯୋଗରେ ମାନସିଂହଙ୍କର କଳାକାର ପ୍ରାଣ ଜାଗି ଉଠିଥିଲା । ରାଧାନାଥ ଜୀବନ୍ତ ପ୍ରକୃତି ଭିତରେ ଜୀବନର ସତ୍ତା ଦେଖିଥିଲେ ମାତ୍ର ମାନସିଂହ ପାଷାଣ ମଧ୍ୟରେ ଜୀବନର ସନ୍ଧାନ କଲେ । ଉତ୍କଳର ପ୍ରାଚୀନ ଶିଳ୍ପୀକୁଳ ପାଷାଣ ବକ୍ଷରେ ପଦ୍ମ ଫୁଟାଇ ପାରିଥିଲା, ମାତ୍ର ଉତ୍କଳର ଧର୍ମୀୟ ଚେତନାରେ, ଧର୍ମର ଚକ୍ଷୁରେ ତାହା କେବଳ ଦେବାଦେବୀ ରୂପେ ଅବତୀର୍ଣ୍ଣ ହୋଇ ଆସୁଥିଲେ । କବି ରାଧାନାଥ ମଧ୍ୟ ଉତ୍କଳୀୟ ମନ୍ଦିରମାଳାରେ ସୌନ୍ଦର୍ଯ୍ୟ ପରିବର୍ତ୍ତେ ଦେବତାର ସନ୍ଧାନ କରିଥିଲେ । ଉତ୍କଳୀୟ ପ୍ରସ୍ତର–କାବ୍ୟ–ଶିଳ୍ପୀର ପ୍ରାଣର ଭାଷା ବୁଝିବା ପାଇଁ ଚିହ୍ନା ଗ୍ରାହକ କେହି ନଥିଲେ । ବୌଦ୍ଧଯୁଗର ପ୍ରସ୍ତର ମୂର୍ତ୍ତି ବହୁଳ ସିନ୍ଦୁରରେ ମାଖି ହୋଇ ଗ୍ରାମ ପ୍ରାନ୍ତରର ତରୁତଳେ ଠାକୁରାଣୀ ପାଲଟିଗଲାପରି ଉତ୍କଳୀୟ ଶିଳ୍ପୀର ପ୍ରାଣର କଥା ଦେବତାର ଘଟାଟୋପ ମଧ୍ୟରେ ଗୁମୁରି ଗୁମୁରି କାନ୍ଦିବାକୁ ଲାଗୁଥିଲା । ରାଧାନାଥ କୋଣାର୍କକୁ ଲକ୍ଷ୍ୟକରି ଚନ୍ଦ୍ରଭାଗା ପ୍ରସଙ୍ଗ ଲେଖିଥିଲେ ମଧ୍ୟ, କୋଣାର୍କର ଅପୂର୍ବ ଶୋଭା ଦେଖିପାରି ନଥିଲେ । ପଣ୍ଡିତ ନୀଳକଣ୍ଠ କୋଣାର୍କକୁ ଦେଖି ଅତୀତ ଓଡିଶାର ଗୁଣ ଗରିମା ଗାନ କରିବାରେ ଲାଗିଲେ । ଗୋପବନ୍ଧୁ ଧରମାର ଉତ୍ସର୍ଗୀକୃତ ଜୀବନର କିମ୍ବଦନ୍ତୀ ଓ ଧର୍ମ ଭାବନା ମଧ୍ୟରେ ବୁଡିରହି କୋଣାର୍କର ଶୋଭାକୁ କବି ଆଖିରେ ଦେଖି ପାରିଲେ ନାହିଁ । ଓଡିଶାର ସାଧାରଣ ଜନତାଙ୍କ ପାଇଁ ମାଘ ସ୍ନାନ ଚନ୍ଦ୍ରଭାଗା ବୁଡ ଓ ନବଗ୍ରହ ପୂଜା ହିଁ କେବଳ ଆକର୍ଷଣୀୟ ଥିଲା । କଳାପ୍ରାଣ ମାନସିଂହ ହିଁ କୋଣାର୍କର ବିଗତ ଯୌବନକୁ ସ୍ମରଣ କରି ପାଷାଣ ବକ୍ଷରେ ରମ୍ୟକଳାର ରୂପର ସନ୍ଧାନ ପାଇଛନ୍ତି । ମାନସିଂହ ହିଁ କୋଣାର୍କର ଅଂଗେ ଅଂଗେ କଳାର କାଉଁରୀ ସ୍ପର୍ଶ ଓ ଫୁଲର ପଟଳରେ ସପନର ନୀଳ ଢେଉ ଦେଖିବାକୁ ପାଇଲେ । ସାଧାରଣ ଜନତା ଚିତ୍ତରେ କୋଣାର୍କ ଯେଉଁ ତୀର୍ଥ କ୍ଷେତ୍ର ଭାବରେ ବିଦ୍ୟମାନ ଥିଲା ମାନସିଂହଙ୍କ 'କୋଣାର୍କ' କବିତାରେ ତାହା ସାଧାରଣର ପର୍ଯ୍ୟଟନ କ୍ଷେତ୍ର ରୂପରେ ଦେଖାଦେଲା ।

## ।। ମାନସିଂହଙ୍କ ବିଚାରଧାରା ।।

ଅତୀତରେ ସୌନ୍ଦର୍ଯ୍ୟ ଦେଖିବା ଓ ପ୍ରକୃତିକୁ ଦେଖିବାର ଇଚ୍ଛା ରାଜା ତଥା ସାମନ୍ତମାନଙ୍କ ମଧ୍ୟରେ ସୀମାବଦ୍ଧ ଥିଲା । ସାଧାରଣ ଜନତା କଳା ଓ ସାହିତ୍ୟତ ଦୂରର କଥା ସାଧାରଣ ପ୍ରକୃତି ଓ ଜୀବନରେ ଥିବା ସୌନ୍ଦର୍ଯ୍ୟକୁ ଉପଭୋଗ କରିବାକୁ ଅସମର୍ଥ ଥିଲେ । ପ୍ରକୃତି ଓ ଜୀବନର ସୌନ୍ଦର୍ଯ୍ୟ ଉପଭୋଗ ପାଇଁ ଯେଉଁ ଯେଉଁ ନିର୍ଲିପ୍ତତା, ଅବସର ଓ ମାନସିକ ଦୂରତ୍ୱ ଆବଶ୍ୟକ, ତାହା ସାଧାରଣ ଲୋକଙ୍କ ଭାଗ୍ୟରେ ପ୍ରାୟତଃ ଜୁଟି ନ ଥିଲା । ମାନସିଂହ ସାଧାରଣ ପରିବାରରେ ଜନ୍ମ ଗ୍ରହଣ କରିଥିଲେ ବି, ରାଜ ପରିବାରର ସମ୍ପର୍କ ହେତୁ ସାମନ୍ତ ପରିବାରର ଆଭିଜାତ୍ୟ ତାଙ୍କ ମାନସିକତାରେ ଅକ୍ଷୁଣ୍ଣ ରହିଥିଲା । ତେଣୁ କଳା, ସାହିତ୍ୟ, ପ୍ରକୃତି ତଥା ଜୀବନକୁ ଏକ ରସଗ୍ରାହୀ ଦୃଷ୍ଟିକୋଣରୁ ଦେଖିବାର ଅଭ୍ୟାସ ସେ ପାରିବାରିକ ସୂତ୍ରରୁ ହିଁ ପାଇଥିଲେ । ଇଂରେଜୀ ରୋମାଣ୍ଟିକ କବିଙ୍କ ପ୍ରଭାବ, ପ୍ରାଚ୍ୟ କବିଙ୍କର ପ୍ରଭାବ ଓ ନିଜର ସ୍ରଷ୍ଟାମନ ତାଙ୍କୁ ବଚିତ୍ର ସରଣୀରେ ପଥିକୀ କଲା । ପୁଣି ସାହିତ୍ୟ ଗୋଟିଏ ଏମିତି ନିଶା ଯେ ଏଥିରେ ଥରେ ପଡିଗଲେ ଛୁଟି ହେବନାହିଁ । ମାନସିଂହଙ୍କ ଭିତରେ କଳାକାରର ମନ ଓ ସ୍ରଷ୍ଟାର ଅଭିମାନ ଥିଲା । ଏହି କ୍ରିୟାର ପ୍ରତିକ୍ରିୟାରୁ ସ୍ରଷ୍ଟା ମାନସିଂହଙ୍କର ଆବିର୍ଭାବ ।

ମାନସିଂହଙ୍କର ଶିଳ୍ପୀପ୍ରାଣ ଜନଜୀବନର ବିଭିନ୍ନ ପୃଷ୍ଠାକୁ ପଢିପାରୁଥିଲା । ଜନ ଜୀବନକୁ ଛାଡି ସାହିତ୍ୟ ସୃଷ୍ଟି ସମ୍ଭବ ନୁହେଁ । ଜୀବନର ହସ କାନ୍ଦକୁ ଫୁଟାଇବା ପାଇଁ ଜଗତର ସମସ୍ତ ସ୍ରଷ୍ଟା ବିଭିନ୍ନ ମାର୍ଗରେ ନିଜର ଭାବକୁ ପ୍ରକାଶ କରନ୍ତି । ସତ୍ୟ ପ୍ରକାଶ ହିଁ କଳା ବା ସାହିତ୍ୟର ଲକ୍ଷ୍ୟ । ମାନସିଂହଙ୍କ ଭାଷାରେ—"ମାନବ ଜୀବନର ଅଗଣିତ ଦୁଃଖ ବେଦନାହିଁ ସାହିତ୍ୟକୁ ପ୍ରକୃତରେ ମେରୁଦଣ୍ଡ ଦାନ କରେ ଓ କଲ୍ୟାଣମୟ କରେ । ଆମ୍ଭ ମାନଙ୍କର କବି କଳ୍ପନାର ସ୍ଫଟିକ ପ୍ରାଚୀର ମଧ୍ୟରେ ବଢି ଆସିଛି । ବାହାରେ ଦୃଶ୍ୟମାନ ଧୂଳିମୟ ସୃଷ୍ଟିର ସତ୍ୟ ସହିତ ତାର ବିଶେଷ ସମ୍ପର୍କ ନାହିଁ । କିନ୍ତୁ ଏହି ଧୂଳି ଆବର୍ଜନାର ସୃଷ୍ଟିତ ସତ୍ୟ ସୃଷ୍ଟି ।"(1)

ମାନସିଂହ କବି ତଥା କଳାକାରଙ୍କୁ ଏହି ସାଧାରଣ ଦୁନିଆର ଜୀବ ରୂପରେ ସ୍ୱୀକାର କଲେ ମଧ୍ୟ, ସେମାନଙ୍କର ସ୍ରଷ୍ଟାମନ ସମାଜର ଅନ୍ୟମାନଙ୍କ ଅପେକ୍ଷା ମଣିଷ ଜୀବନକୁ ଅଧିକ ନିବିଡ ଭାବରେ ଅନୁଭବ କରିପାଏ ବୋଲି କହିଛନ୍ତି । କବିଙ୍କ ସମ୍ପର୍କରେ ସେ କହନ୍ତି—"ଆମ୍ଭମାନଙ୍କ ମଧ୍ୟରେ ଏପରି ଜଣେ ଜଣେ ଲୋକ ଜନ୍ମ ଗ୍ରହଣ କରନ୍ତି, ଯେଉଁମାନେ ମାନବର ଏହି ଅନୁଭୂତି ଗୁଡିକୁ ସମାଜର ଆଉ ଦଶ ଜଣଙ୍କ ଅପେକ୍ଷା ନିବିଡତର ଭାବରେ ଅନୁଭବ କରନ୍ତି । ମାନବ ଚରିତ୍ର ବିଶ୍ଳେଷଣ କରିବାରେ, ସୃଷ୍ଟିର ତତ୍ତ୍ୱ ଉପଲବ୍ଧି କରିବାରେ, ଯେଉଁମାନଙ୍କର ସହଜ ଲବ୍ଧ ବୁଦ୍ଧିଥାଏ ଏବଂ ଏଇ ଅନୁଭୂତି ଓ ଏଇ ତତ୍ତ୍ୱଜ୍ଞାନକୁ ଭାଷାରେ ପ୍ରକାଶ କରିବାର କ୍ଷମତା ଯେଉଁମାନଙ୍କର ଥାଏ, ସେଇମାନେ କବି । କବିର କାର୍ଯ୍ୟ, ଅଗଣିତ ଜନସଂଘର ଶତ ଶତ ମୂକ ଅନୁଭୂତିକୁ ଭାଷାଦାନ କରିବା । ଯେଉଁକବି ଯେଉଁ ପରିମାଣରେ ମାନବ ଅନୁଭୂତିକୁ ଭାଷାର ଶିଳ୍ପ ଦେଇ ପ୍ରକାଶ କରି ପାରିଛି, ସେ ସେହି ପରିମାଣରେ ପ୍ରିୟ ଓ ପୂଜ୍ୟ । ଯେଉଁ ସାହିତ୍ୟରେ ମାନବର ବିଚିତ୍ର ଅନୁଭୂତି ଯେଉଁ ପରିମାଣରେ ପ୍ରକାଶ ପାଇଛି, ସେ ସାହିତ୍ୟ ସେଇ ପରିମାଣରେ ପୂର୍ଣ୍ଣ ।"(2)

॥ ମାନସିଂହଙ୍କ ବିଗ୍ରହଧାରା ॥

ଅକ୍ଷର ଯୋଡି ପଦକୁ ପଦ ଛନ୍ଦିଗଲେ ବା ବିଭିନ୍ନ ରଙ୍ଗକୁ ମଚ୍ଚଡ ଲଗାଇଲେ, କେହି କବି ବା ଶିଳ୍ପୀ ହୋଇ ନ ପାରେ । ସୃଷ୍ଟିର ପୃଷ୍ଠପଟରେ ଜୀବନ ଥାଏ । ଶୃଂଖଳା, ସ୍ୱାତନ୍ତ୍ର୍ୟ ଓ ବୈଚିତ୍ର୍ୟରୁ ସ୍ରଷ୍ଟାର ଧର୍ମ । ସାଧାରଣ ଦୃଷ୍ଟିଠାରୁ କଳାକାର ବା କବିର ଦୃଷ୍ଟି ଭିନ୍ନ । ମାନସିଂହଙ୍କ ମତରେ ଏହା କେବଳ କବି କଳାକାରର ଧର୍ମ ନୁହେଁ, ବୈଚିତ୍ର୍ୟ ହିଁ ସୃଷ୍ଟିର ଧର୍ମ, ସଂସାରର ଧର୍ମ । ସେ ସମ୍ପର୍କରେ ଉଦାହରଣ ଦେବାକୁ ଯାଇ ମାନସିଂହ ଲେଖିଛନ୍ତି– "ଧରନ୍ତୁ ଯଦି ପୃଥିବୀରେ ସକଳ ତରୁଣୀ କଳଗଢା ପିତୁଳାପରି ଏକ ଆକୃତି ବିଶିଷ୍ଟ ହୋଇ ଯାନ୍ତେ, ତେବେ ଏ ପୃଥିବୀ ପୃଷ୍ଠତ କ୍ଷଣକେ ରକ୍ତାକ୍ତ ହୁଅନ୍ତା । ଅପର ପକ୍ଷରେ, ତିନିଚରାଂଶ ତରୁଣୀ ଅବିବାହିତ ରହନ୍ତେ ତେବେ ଜଗ– ତର କବି ଓ ଚିତ୍ରକର ବର୍ଗ ଏ ଯାବତ୍ ଯେପରି ତରୁଣୀ ପାଗଳ ହୋଇଆସିଛନ୍ତି, ଆଉ ସେପରି ହୁଅନ୍ତେ ନାହିଁ । ମନୁଷ୍ୟ ଚକ୍ଷୁରେ ନାରୀର ମାଧୁରୀ ହିଁ ନଷ୍ଟ ହୁଅନ୍ତା; କିନ୍ତୁ ବିଧାତା ସୃଷ୍ଟିକୁ ତ ଏପରି ନୀରସ କରିବାକୁ ଦେଇ ନାହାନ୍ତି । ତାଙ୍କର ସୃଷ୍ଟିର ରସହୀନ ସାମ୍ୟମଧ୍ୟ ଦେଇ ଗ୍ଳଳିତ ନ ହୋଇ, ସରସ ସ୍ୱତନ୍ତ୍ରତା ଓ ବୈଚିତ୍ର୍ୟ ମଧ୍ୟ ଦେଇ ଗତି କରୁଅଛି । ସ୍ୱାତନ୍ତ୍ର୍ୟ ସୃଷ୍ଟିର ଧର୍ମ ଏବଂ ଏହି ଧର୍ମହିଁ ଏ ଧରଣୀକୁ ରଖିଛି ।"(3)

କବି ପ୍ରତିଭା ମାନସିଂହଙ୍କର ସହଜାତ । ଲାଭାଲାଭର ଜମାଖର୍ଚ୍ଚ ପାଇଁ ସେ କେଉଁଦିନି ଚିନ୍ତି ନ ଥିଲେ, ଅନ୍ତରର ଭାବକୁ ପ୍ରକାଶ କରିବା ପାଇଁ ମାନସିଂହଙ୍କର ଲେଖନୀ ଜାଗ୍ରତ ଥିଲା । ଯେତେବେଳେ କବି କାଳିନ୍ଦୀଚରଣ ପାଣିଗ୍ରାହୀ 'ଓଡିଆରେ ଲେଖିବି କାହିଁକି ?' ବୋଲି ସ୍ୱର ଉଠାଇଲେ, ମାନସିଂହ ଏକ ଦୀର୍ଘ ଆଲୋ– ଚନାରେ ତାହାର ପ୍ରତିବାଦ କରିଥିଲେ । ଏହି ପ୍ରତିବାଦର ସ୍ୱରରେ ସ୍ରଷ୍ଟା ମାନସିଂହଙ୍କର ସୃଷ୍ଟିର ରହସ୍ୟ ବିଦ୍ୟମାନ । ମାନସିଂହଙ୍କର ଭାଷାରେ—"ବାହାରର ଜମାଖର୍ଚ୍ଚ ସଂଗେ ସାହିତ୍ୟ ସୃଷ୍ଟିର ସମ୍ପର୍କ ସେତେ ନିଗୂଢ ନୁହେଁ ଓ ଜମା ଖର୍ଚ୍ଚଟା ଆମକୁ ସାହିତ୍ୟଠାରୁ ଭିନ୍ନବୋଲି ଭାବିବାକୁ ହେବ ।"(4)

ଅଭାବର ଚାବୁକ ନ ଖାଇଲେ ସ୍ରଷ୍ଟାର ସୃଷ୍ଟିର ବୀଜ ଅଙ୍କୁରିତ ହୁଏ ନାହିଁ । ସେ ଅଭାବ ଆର୍ଥନୀତିକ ବା ମାନସିକ ଅଥବା ନିଃସଂଗତା ହେଉ, ସ୍ରଷ୍ଟାମନର ପରଦା ଉନ୍ମୋଚନ ପାଇଁ ଅଭାବବୋଧ ଆବଶ୍ୟକ । ମାନସିଂହ କହନ୍ତି—"ଲାଞ୍ଛନା ଓ ଦୁଃଖ, ସାଧନା ଓ ଅନୁଭୂତିର ଜନନୀ ଓ ଧାତ୍ରୀ । ସାଧନା ଓ ଅନୁଭୂତି ସାହିତ୍ୟ ସୃଷ୍ଟିର ମେରୁଦଣ୍ଡ । ଯେଉଁମାନଙ୍କ ଜୀବନରେ ସୃଜନାନନ୍ଦ ଅନୁଭବ କରିବା ପାଇଁ ଆଗ୍ରହ ଅଛି, ସେମାନଙ୍କର ଦୁଃଖ ଦାରିଦ୍ର୍ୟରେ ଅଭିଭୂତ ନ ହୋଇ ସେ ସବୁକୁ ପ୍ରଶାନ୍ତ ଚିତ୍ତରେ ବରଣ କରିନେବା ଉଚିତ । ଅର୍ଜନାନନ୍ଦ ଓ ସୃଜନାନନ୍ଦ ଭିତରେ ଢେର ବ୍ୟବଧାନ । ଅର୍ଜନ ମନୁଷ୍ୟର ଦୈନିକ ଦେହ ପୋଷଣ ଲାଗି । କିନ୍ତୁ କବି ବା ସାହିତ୍ୟିକ, ଦୁଃଖ ଦାରିଦ୍ର୍ୟ ଲାଞ୍ଛନାରେ ନିକ୍ଷେପିତ ହୋଇ, ଲୋକଲୋଚନର ଅଗୋଚରରେ ଯାହା ସୃଜନ କରନ୍ତି, ତାହା କେବଳ ତାଙ୍କୁ ଆନନ୍ଦ ଦିଏନି, ସେ ଯେଉଁ ଜାତି ବା ଭାଷାର, ସେଗୁଡିକ ପାଇଁ ମଧ୍ୟ ଚିରନ୍ତନ ଆନନ୍ଦ ଆୟୋଜିତ ହୋଇଯାଏ ।"(

କବି ପାଣିଗ୍ରାହୀଙ୍କ ଅଭିଯୋଗର ଉତ୍ତରରେ ମାନସିଂହ କହିଥିଲେ ଯେ ପ୍ରବୃତ୍ତି ଗ୍ଳଳିତ ହୋଇ ସ୍ରଷ୍ଟା ବା କଳାକାର ସୃଷ୍ଟି କରିପାରେ ମାତ୍ର ତାର ଜୀବିକାର୍ଜନ ପାଇଁ ସେ ଅନ୍ୟାପେକ୍ଷା ଧରିବାରେ କୌଣସି ବାଧା

ନାହିଁ । ମାନସିଂହଙ୍କ ଭାଷାରେ——"ଲେଖକ ଲେଖିବା ସାହିତ୍ୟ ଛୁଡା ଅନ୍ୟବୃତ୍ତି ଅବଲମ୍ବନ କରିବାରେ କୌଣସି ବାଧାନାହିଁ, ଅପରାଧ ବା ଅପମାନ ନାହିଁ । ପ୍ରକୃତିର ନିୟମ ଅନୁସାରେ ପ୍ରତ୍ୟେକଙ୍କୁ ଜୀବିକା ପାଇଁ ସ୍ୱେଦପାତ କରିବାକୁ ହେବ । କେବଳ ଘରେ ବସି କବିତା ଲେଖିବା ପାଇଁ ପ୍ରକୃତିର ସୃଷ୍ଟିରେ କୌଣସି ବ୍ୟବସ୍ଥା ନାହିଁ । ସେଥିପାଇଁ କୀଟ୍‌ସଙ୍କ ପରି କବିଙ୍କୁ କମ୍ପାଉଣ୍ଡର ହେବାକୁ, ଓ୍ୱାର୍ଡସ୍‌ୱାର୍ଥଙ୍କୁ ଡାକ ଟିକେଟ ବିକିବାକୁ, ବର୍ଣ୍ଣିତ ଶ'ଙ୍କୁ ସ୍ପଷ୍ଟ କରିବାକୁ ଓ ମଦଝଟି ଦେଖିବାକୁ, ଗଙ୍ଗାଧରଙ୍କୁ ତନ୍ତବୁଣିବାକୁ ଓ ରାଧାନାଥଙ୍କୁ ପିଲାଙ୍କ ଖାତା ସଂଶୋଧନ କରିବାକୁ ହୋଇଛି । ଉତ୍କଳର ଭବିଷ୍ୟତ ଲେଖକ ଲେଖିବା ମଧ୍ୟ ଜୀବିକା ପାଇଁ ଅନ୍ୟପନ୍ଥା ଦେଖି ମଧ୍ୟ ସାହିତ୍ୟ ସେବା କରି ପାରନ୍ତି । ସେଥିରେ ଲଜ୍ଜା ବା ଦୁଃଖ ନାହିଁ ।"(୧)

ମାନସିଂହଙ୍କ ଦୃଷ୍ଟିରେ କଳା ଓ ସାହିତ୍ୟ ଏହୁ ନିତିଦିନିଆ ଜୀବନ ମଧ୍ୟରେ କୌଣସି ପ୍ରତ୍ୟକ୍ଷ ତଥା ବ୍ୟାବହାରିକ ସମ୍ପର୍କ ନାହିଁ । ଶିଳ୍ପୀର ଜଗତ ତାର ବଞ୍ଚିବା ପାଇଁ ନୁହେଁ, ତାର ଆନନ୍ଦ ପାଇଁ । ପ୍ରଜାପତି ରଙ୍ଗୀନ ଡେଣାର ଅଧିକାରୀ । ଏହି ରଙ୍ଗ ତାର ପ୍ରଜାତିର ବୈଶିଷ୍ଟ୍ୟ । ଠିକ୍ ସେହିପରି ମଣିଷ ଚିତ୍ରକରେ, କବିତା ଲେଖେ, କାରଣ ସେ ମଣିଷ ବା କିଛିଟା ଉଚ୍ଚସ୍ତରର ମଣିଷ । ଏହାର ପ୍ରାୟୋଗିକ ମୂଲ୍ୟ ସ୍ୱଳ୍ପ । ସେ ଦ୍ୱିତୀୟ ସ୍ରଷ୍ଟା । ସ୍ରଷ୍ଟା ନିର୍ଲିପ୍ତ ଭାବରେ ସୃଷ୍ଟି କରିବା ଓ ସୃଷ୍ଟି କରିସାରିଲା ପରେ ସେ ବିଷୟ ରହିତ ଆନନ୍ଦ ଅନୁଭବ କରିବା ଉଚିତ । ସୃଷ୍ଟିକୁ ବିକ୍ରୀ କରି ଦେଲେ, ତା ମଧ୍ୟରେ ବ୍ୟାବହାରିକତା ଖୋଜିବାକୁ ଗଲେ, ତାହା ସେତେବେଳେ ଆଉ ଶିଳ୍ପ ହୋଇ ରହିବ ନାହିଁ । ଏହା କାରିଗରୀରେ ପରିଣତ ହୋଇଯିବ । ସ୍ରଷ୍ଟା ଆଉ ସାଧାରଣ ମଣିଷ ଭିତରେ ଥିବା ପାର୍ଥକ୍ୟ ସମ୍ପର୍କିତ ସଚେତନତା ଜୀବନର ପ୍ରତ୍ୟେକ ପାଦରେ ମାନସିଂହଙ୍କ ମନରେ ସ୍ପଷ୍ଟ ଥିଲା ଏବଂ ଏଇ ଦୃଷ୍ଟିକୋଣଗତ କୌଳିନ୍ୟ ସେ ପାଇଥିଲେ ନିଜର ପାରମ୍ପାରିକ କଳା ଶିକ୍ଷାରୁ ଓ ସାହିତ୍ୟ ଚର୍ଚ୍ଚାରୁ ତଥା ସମକାଳର ଲୋକ ପ୍ରିୟ ରବୀନ୍ଦ୍ର ଓ ରୋମାଣ୍ଟିକ କାବ୍ୟ ଆନ୍ଦୋଳନରୁ ।

## ସାମନ୍ତବାଦୀ ଶିଳ୍ପଦୃଷ୍ଟି ଓ ମାନସିଂହ ॥

ଜନ୍ମଗତ ସୂତ୍ରରୁ ମାନସିଂହ ଅଭିଜାତ ମନର ମଣିଷ ଥିଲେ । ପ୍ରାଥମିକ ଜୀବନର ଦାରିଦ୍ର୍ୟ ଓ ଜୀବନରେ ବଡ ହେବା ପାଇଁ ସଂଗ୍ରାମ, ମାନସିଂହଙ୍କ ମନରୁ ସେହି ଆଭିଜାତ୍ୟର ମୋହକୁ ଉଠାଇ ପାରି ନଥିଲା । ଆଗରୁ କୁହାଯାଇଛି, ମାନସିଂହଙ୍କର ସାହିତ୍ୟ ପ୍ରବଣତା ତାଙ୍କର ସମ୍ପୃକ୍ତ ମନର ସମ୍ପ୍ରସାରଣ । ଅଷ୍ଟାଦଶ ଶତାବ୍ଦୀରେ ଇଂରେଜମାନେ ଭାରତରେ ପ୍ରତିଷ୍ଠା କରିଥିବା ସାମ୍ରାଜ୍ୟ ପୁଞ୍ଜିବାଦ ଅର୍ଥନୀତି ଉପରେ ପ୍ରତିଷ୍ଠିତ ଥିଲା । କ୍ଷୟିଷ୍ଣୁ ସାମନ୍ତବାଦର ପ୍ରଧାନତମ ଶତ୍ରୁ ଅଗ୍ରଗାମୀ ପୁଞ୍ଜିବାଦ । କମ୍ପାନୀ ଓ ବ୍ରିଟିଶ ଶାସନରେ ଅତୀତର ସାମନ୍ତବାଦର ଦୁର୍ଗ ଗୋଟିକ ପରେ ଗୋଟିଏ ଭାଙ୍ଗି ପଡିଲା ସତ କିନ୍ତୁ ପୁରୋଗାମୀ ଉଦାର ପୁଞ୍ଜିବାଦୀ ଜୀବନର ଜୟଯାତ୍ରା ଏଠାରେ ଉଦ୍‌ଘୋଷିତ ହୋଇ ନ ଥିଲା । ଔପନିବେଶିକ ଅର୍ଥନୀତି ଓ ରାଜନୀତିର କୂଟଚକ୍ର ଭିତରୁ ପୁରୁଣା ସାମନ୍ତବାଦ ଲୋପପାଇ ଏକ

ପୂର୍ବ ସୋତ ଅନଭିଜାତ ନୂତନ ସାମନ୍ତ ଶ୍ରେଣୀ ଗଢି ଉଠିଲା । ଏହି ନବ୍ୟ ସାମନ୍ତବାଦ ପ୍ରତି ଲୋକମାନଙ୍କର ଆସିଥିବା ଶ୍ରଦ୍ଧା, ଅତୀତର ସାମନ୍ତବାଦ ପ୍ରତି ଲୋକମାନଙ୍କୁ ଶ୍ରଦ୍ଧାନ୍ୱିତ କରିଥିଲା । ଓଡିଆ ସାହିତ୍ୟରେ ଫକୀରମୋହନ ଛ'ମାଣ ଆଠଗୁଣ୍ଠ ରେ ଏହାର ଚିତ୍ର ଦେଇଛନ୍ତି । ମାନସିଂହଙ୍କ ମନରେ, ସେ ଅତୀତର ସାମନ୍ତବାଦ, ତାର ଅପସୃୟମାଣ ଓ କ୍ରମଶଃନିଶ୍ଚିହ୍ନ ସାଂସ୍କୃତିକ ପ୍ରତୀକ ତଥା ସଂସ୍କାର ପ୍ରତି ଏକ ଅହେତୁକ ମୋହ ରହି ଆସିଥିଲା । ଅତୀତରେ ସାହିତ୍ୟିକ ମାନଙ୍କର କଳ୍ପନାର ଫସଲ କିଣିବା ପାଇଁ ଜନସାଧାରଣଙ୍କ ପାଖରେ ନା ଥିଲା ଅର୍ଥ ନା ଥିଲା ସାମର୍ଥ୍ୟ । ତେଣୁ କବିମାନେ ନିଜର ଏହି କଳ୍ପନାର ଫସଲକୁ ବିକ୍ରୀ କରୁଥିଲେ ସାମନ୍ତମାନଙ୍କ ରାଜ ଦରବାରରେ । ସୁଲଭ ମୂଲ୍ୟରେ ହେଉପଛେ କବିମାନେ ନିଜର ଏହି କଳ୍ପନାର ଫସଲକୁ ବିକ୍ରୀକରି କିଛିଟା ଆସ୍ଥ ପ୍ରଶଂସା ଲାଭ କରୁଥିଲେ । ଊନବିଂଶ ଶତାବ୍ଦୀରେ ଭାରତ ବ୍ରିଟିଶ ଶାସନର ପ୍ରତ୍ୟକ୍ଷ ଶାସନାଧୀନ ହେଲାପରେ, ଶାସନ ତନ୍ତ୍ରର କଳା ଓ ସାହିତ୍ୟ ପ୍ରତି ଏକ ଉଦାର ଦୃଷ୍ଟିକୋଣ ଘୋଷିତ ହୋଇଥିଲା । ତାର ପ୍ରତି ଫଳନ ଘଟିଥିଲା ଭାରତ ଭଳି ଔପନିବେଶିକ ରାଷ୍ଟ୍ରରେ ।

ଓଡିଶାର ଊନବିଂଶ ଶତାବ୍ଦୀର ନବସାହିତ୍ୟ, ଶାସନତନ୍ତ୍ରର ଏହିଭଳି ଏକ ଉଦାରଦୃଷ୍ଟିର ଫଳ । ସାମନ୍ତବାଦୀ କାବ୍ୟ ଚିନ୍ତାରେ କବି ସ୍ୱୟଂଭୂକ୍, ସଂସାରପ୍ରତି ସେ ଉଦାସୀନ । ସଂସାରର ସମୁଦ୍ରରେ ତାର ଜୀବନ ନଉକା ଲକ୍ଷ୍ୟହୀନ ଭାବରେ ଘୁରିବୁଲେ । କବି ବା କଳାକାର ନିସ୍ପୃହ ଭାବରେ ସେଇ ନଉକାଟିରେ ବସିରହିଥାଏ ମାତ୍ର । ମାନସିଂହଙ୍କ ନିକ୍ୱଣ କାବ୍ୟଗ୍ରନ୍ଥ, କବି ଓ ଅଭିଜାତ ପ୍ରବନ୍ଧ ତଥା 'ତରୁଣ କବିର ଆଶା' କବିତା ମାନସିଂହଙ୍କର ଏହିଭଳି ଏକ କବିତା ଦୃଷ୍ଟିର ପରିଚୟ ଦିଏ ।

'ନିକ୍ୱଣରେ' କବି ନିର୍ଲିପ୍ତ ଭାବରେ କବିତା ଲେଖିଯାଉଛି । ତା'ର ସ୍ୱପ୍ନ, ସମ୍ଭାବନା, ଅନୁଭୂତିସ୍ତର ତିଳତଣ୍ଡୁଳିତ ହୋଇ ତା' କବିତାରେ ଆଣିଛି ନୂତନ ମୂର୍ଚ୍ଛନା । କବି ଆସିଛି ଅନୁରୁଦ୍ଧ ହୋଇ ରାଜଦରବାରକୁ । ରାଜଦରବାରର ଗୁଜଟବ୍ୟ ଭିତରେ ସେ ନିର୍ଲିପ୍ତ । ବାଧ୍ୟବାଧକତାରେ ନୁହେଁ ତା'ର କବିମନ ପାଇଁ ସେ ସାଂସାରିକ ଭୋଗ ବାସନା ନେଇ ନିସ୍ପୃହ । କିନ୍ତୁ ଏକ ସରଳ ତରଳ ତରୁଣୀମନ କବିଙ୍କର କବିତାରେ ମୁଗ୍ଧ ହୋଇଛି । ସେ ଅନୁଭବ କରିପାରିଛି ରାଜାର ଯଶ ଠାରୁ କବିର ଯଶ ଅଧିକ ପରିବ୍ୟାପ୍ତ । ରାଜତ୍ୱ ଠାରୁ କବିତ୍ୱ ଅଧିକ ଚିରନ୍ତନ ।

ତମର କବିତା କିନ୍ତୁ
ଗୀତ ହେବ ଯୁଗଯୁଗାନ୍ତର
ତୁମଲାଗି ହେବ କ୍ଷୁବ୍ଧ
ଲକ୍ଷ ଲକ୍ଷ ଲୋକର ଅନ୍ତର,
ଲକ୍ଷ ଲକ୍ଷ ବର୍ଷ ପରେ ।
ଏହାଠାରୁ ଅଧିକ ସମ୍ମାନ
ପାଇବେ କି ରାଜା, ଧନୀ,
କେଉଁମାନୀ ତୁମର ସମାନ ?" (7)

॥ ମାନସିଂହଙ୍କ ବିଗ୍ରହଧାରା ॥

ଅତୀତରେ କବି କବିତା ମାଧ୍ୟମରେ ସମ୍ମାନ ପାଉଥିଲା, ମନର–ମଣିଷ ବି ପାଉଥିଲା । ରାଜ ଦରବାରରେ କବିପାଇଁ ଅନ୍ତତଃ ଗୋଟିଏ ସ୍ଥାନ ନିରୂପିତ ଥିଲା । କିନ୍ତୁ ବର୍ତ୍ତମାନ ସମାଜରେ ସାମନ୍ତ ଯାଇ ନୂତନ ଅଭିଜାତ ଆସିଛନ୍ତି, କିନ୍ତୁ ତାଙ୍କ ମନରେ ସେଇ କାବ୍ୟ ଚେତନା ତଥା କବି ପ୍ରତି ଦରଦ ନାହିଁ । ସାହିତ୍ୟପ୍ରୀତି ଲୋକ ଦେଖାଣିଆ ହୋଇ ପଡିଛି । 'କବି ଓ ଅଭିଜାତ' ପ୍ରବନ୍ଧରେ ମାନସିଂହ ଦେଖାଇଛନ୍ତି:–" ଦରିଦ୍ର କବି ନିଜର ଅନ୍ତରଂଗ ପରିବେଶରେ ଦାରିଦ୍ର୍ୟ ଅନୁଭବ କରିପାରି ନ ଥିଲେ । ଧନର ଅଭାବ ମନକୁ ରୁଗ୍ଣ କରିପାରି ନ ଥିଲା । କବି ମନତ ଧନର ବର୍ବରତା ପ୍ରତି ନିତ୍ୟ ସଂକୁଚିତ ତା'ରି ଭିତରେ ରହି,– ସେହି କବିଙ୍କର କାବ୍ୟରେ ଏହି ମଧୁମୟ ପଲ୍ଲୀର ଚିତ୍ର, ରମଣୀୟ ଭାବରେ ବିକଶିତ ହୋଇ ଉଠୁଥିବା । ତେଣୁ ଦୂରସ୍ଥ ନଗରମାନଙ୍କରେ ବୈଚିତ୍ର୍ୟହୀନ ନାଗରିକଙ୍କ ନିକଟରେ ତାଙ୍କର କବିତା ବିଶେଷ ଆଦର ଲାଭ କଲା । ପଲ୍ଲୀର ଶୋଭା ସୌନ୍ଦର୍ଯ୍ୟ, ସୁଖଦୁଃଖ, ପ୍ରେମ ସ୍ନେହ, ଏପରି ନିପୁଣ ଭାବରେ କୌଣସି କବି ପୂର୍ବେ ଆଙ୍କିପାରି ନଥିଲେ । ନିର୍ଜୀବ ନଗର ସଭ୍ୟତାରେ ପଲ୍ଲୀଜୀବନ ସରସତା ଏକ ନୂତନ ଓ ସଥୀର କଲା । ଦେଖୁ ଦେଖୁ କବିଙ୍କର ଯଶ ଦେଶମୟ ପରିବ୍ୟାପ୍ତ ହୋଇ ଉଠିଲା ।"(୩)

ନବ ଅଭିଜାତମାନଙ୍କ ପାଖରେ କବିଙ୍କର କୌଣସି ମୂଲ୍ୟ ନାହିଁ, ଆଦର ନାହିଁ, ସମ୍ମାନର ପ୍ରଶ୍ନହିଁ ନାହିଁ । ଲଜ୍ଜାଶୀଳ କବି ଅଭିଜାତଙ୍କର ଦ୍ୱାରସ୍ଥ ହୋଇ ରିକ୍ତ ହସ୍ତରେ ରାଜପଥକୁ ବାହାରିଯାନ୍ତେ । ସେ ଅନାହାରରେ ସପରିବାର ପ୍ରାଣତ୍ୟାଗ କରେ । ମୃତ୍ୟୁପରେ ତାଙ୍କ ନାମରେ ସଭାସମିତି ହୁଏ । ଶ୍ରେଷ୍ଠ କବି ବୋଲି ସେ ଘୋଷିତ ହୁଅନ୍ତି । ପୁଞ୍ଜିବାଦୀ ସମାଜରେ କବି ଓ ସାହିତ୍ୟିକର ଏ ଯେଉଁ ଆତ୍ମ ବିନାଶ ତା'ପ୍ରତି ମାନସିଂହ ଗଭୀର ଭାବେ କ୍ଷୁବ୍ଧ ଥିଲେ । ଝଟିକାଗ୍ରସ୍ତ ସମୁଦ୍ର ଅପେକ୍ଷା ଶାନ୍ତ ସମାହିତ ଗଂଗା ନଦୀର ଧାର କବିପାଇଁ ଅଧିକ ଅନୁକୂଳ । ବଞ୍ଚିବା ପାଇଁ ଅତ୍ୟାବଶ୍ୟକ ଜୀବନର ଝଞ୍ଜା ବାତରେ କବିର ମନର ଫୁଲ ମଉଳିଯାଏ, କବି ନିଜେ ମରିଯାଏ । ପୁଞ୍ଜିବାଦୀ ସମାଜର ଏଇ ପ୍ରକୃତି ପ୍ରତି ମାନସିଂହ ବିତଶ୍ରଦ୍ଧ ଥିଲେ । ସନ ୧୯୫୧ ରେ ଲିଖିତ 'ଶାସନଚକ୍ର' ଏକାଙ୍କିକାରେ ମଧ୍ୟ ମାନସିଂହ ଅନୁରୂପ ଭାବ ବ୍ୟକ୍ତ କରିଥିଲେ ।

ନିଜେ କବିତା ଲେଖିଲା ବେଳେ, ଆଦ୍ୟ ଜୀବନରେ ମାନସିଂହଙ୍କର ସାମନ୍ତ ମନୋବୃତ୍ତି କିଛି ପରିମାଣରେ ରହିଥିଲା । ତାଙ୍କର ତରୁଣ କବିମନ ଆଶା କରିଥିଲା, କାଳିଦାସଙ୍କ ଭଳି, ସେ ଘୁରି ବୁଲନ୍ତା ଦେଶରୁ ଦେଶାନ୍ତର, ନଗରରୁ ନଗରାନ୍ତର । ଘୁରିଆନ୍ତେ ସେ ପାଆନ୍ତା ଶ୍ରଦ୍ଧା ଓ ସମ୍ମାନ, କେତେବେଳେ ପ୍ରକୃତି ବକ୍ଷରେ ତ କେତେ ବେଳେ ନାରୀର ଦେହାଙ୍ଗନରେ ସେ ଖୋଜିଥାନ୍ତେ କବିତାର ଉପାଦାନ, ପୁଣି କେତେବେଳେ ସୁବିଧା ହୋଇଥାନ୍ତା ସେ ଅସୀମ ପଥରେ ଯିବାପାଇଁ ଇଚ୍ଛା କରିଥାନ୍ତା । ମଧ୍ୟ ଯୁଗର କବି ନାରୀର ଯୁବତୀ ରୂପକୁ ଭଲପାଏ । ମାନସିଂହ ବି ତାଙ୍କ କାବ୍ୟ ପ୍ରେୟସୀକୁ ସେହିଭଳି ଲାବଣ୍ୟମୟୀ ହେବ ବୋଲି ଆଶା କରିଥିଲେ । ଅସରା ଗନ୍ଦିନୀ ଯାମିନୀ ତଳରେ ପ୍ରେୟସୀ ରାଧାର କୋମଳ ଜଘନ ଉପରେ ଜୀବନ ମରଣକୁ ଭୁଲିଯିବା ପାଇଁ ସେ ସ୍ୱପ୍ନ ଦେଖିଥିଲେ । କିନ୍ତୁ ରସିକପରି ସବୁ କିଶୋରୀର ଚିବୁକ ଧରି ବୁଲିବାର ଇଚ୍ଛା ତାଙ୍କର ପୂରଣ ହୋଇ ନ ଥିଲା । ତରୁଣ କବିର ଆଶା'ରେ

ଉଚ୍ଚାରିତ ଏହି ସ୍ୱପ୍ନ ଓ ସ୍ୱପ୍ନଭଙ୍ଗ ସାମନ୍ତବାଦୀ କାବ୍ୟ ଦୃଷ୍ଟିରୁ ରୋମାଣ୍ଟିକ କାବ୍ୟ କଳ୍ପନା ଆଡକୁ ସ୍ଥାନାନ୍ତରିତ । ସମୟ କେବେ ଫେରେ ନାହିଁ । ସେଇଥିପାଇଁ ଅତୀତର ସାମାଜିକ ତଥା ସାଂସ୍କୃତିକ ବିନ୍ୟାସ ଅବିକଳ ଜନ୍ମ ନିଏନା । ବର୍ତ୍ତମାନ କାଳରେ ଅତୀତ ତାର ଆବଶ୍ୟକତା ନେଇ ନବଜନ୍ମ ଲାଭ କରେ । ମଧ୍ୟଯୁଗ ପ୍ରତି ମାନସିଂହଙ୍କର ଶ୍ରଦ୍ଧା, ମାନସିଂହଙ୍କୁ ଆଉଜଣେ ଉପେନ୍ଦ୍ର ବା ଯଦୁମଣି କରିପାରି ନାହିଁ । କୋଣାର୍କ ଶିଳ୍ପକୁ ସେ ନମସ୍କାର ଜଣାଇ ପାରନ୍ତି, ସେ ଭଳି ବର୍ତ୍ତିବା ତାଙ୍କ ପକ୍ଷରେ ସମ୍ଭବହିଁ ନୁହେଁ । ଅତୀତକୁ ବର୍ତ୍ତମାନରେ ରହି ସ୍ୱପ୍ନ ଦେଖାଯାଇ ପାରେ କିନ୍ତୁ ବର୍ତ୍ତମାନରେ ରହି ଅତୀତକୁ ସମଗ୍ର ଭାବରେ ଫେରିପିବା ସମ୍ଭବ ନୁହେଁ; ସେଇଥିପାଇଁ ମାନସିଂହଙ୍କର ମଧ୍ୟଯୁଗପ୍ରତି ଦୃଷ୍ଟି ପରିଣତ ହୋଇଛି ରୋମାଣ୍ଟିକ କାବ୍ୟଧାରା ପ୍ରତି ଆସକ୍ତିରେ । ସେ ମିଡିଏଭାଲ ଜଗତ ନୁହେଁ, ମେଡିଏଭାଲିଜିମ୍ ସ୍ୱପ୍ନ ସଂସାର ଭିତରେ ଆପଣା କଳ୍ପନାର ଚରିତାର୍ଥ ଖୋଜିଛନ୍ତି ।

## ରୋମାଣ୍ଟିକ କାବ୍ୟ ପ୍ରତ୍ୟୟ ଓ ମାନସିଂହଙ୍କ ସାହିତ୍ୟାଦର୍ଶ

ଊନବିଂଶ ଶତାବ୍ଦୀରେ ପ୍ରଥମେ ବଙ୍ଗଳା ଓ ପରବର୍ତ୍ତୀ ସମୟରେ ଅନ୍ୟାନ୍ୟ ଭାଷା ସାହିତ୍ୟରେ ଯେଉଁ ନୂଆ ଚେତନାର ଅଭ୍ୟାଗମ ହୋଇଥିଲା, ତାହା ପାଶ୍ଚାତ୍ୟ ପ୍ରଭାବର ଫଳ: ଏକଥା ଭୁଣା ଅଧିକେ ଅଧିକାଂଶ ଐତିହାସିକଙ୍କ ଦ୍ୱାରା ସ୍ୱୀକୃତ । ଇଉରୋପୀୟ ସାହିତ୍ୟ ର ସମସ୍ତ କବି, ନାଟ୍ୟକାର ଓ ଔପନ୍ୟାସିକ ଭାରତୀୟ କବି ମାନଙ୍କୁ ମୁଗ୍ଧ ଓ ପ୍ରଭାବିତ କରିଥିଲେ । ଭାରତୀୟମାନଙ୍କୁ ପ୍ରଭାବିତ କରିଥିବା କବିମାନଙ୍କ ସଂଖ୍ୟା ସୀମିତ । ମାଇକେଲ ମଧୁସୂଦନ ଦତ୍ତଙ୍କ ଭଳି ଅଳ୍ପ କେତେଜଣଙ୍କୁ ଛାଡିଦେଲେ ଗ୍ରୀକ୍ ଓ ଲାଟିନ୍ ସାହିତ୍ୟ ସଂପର୍କରେ ଅଧିକାଂଶ ଭାରତୀୟ ଆସି ନଥିଲେ । ଗୋଟାଏ ପଟରେ ସେକ୍ସପିଅର ଓ ଅନ୍ୟପଟରେ ଇଂରାଜୀ ରୋମାଣ୍ଟିକ କବିଗଣ ଥିଲେ ଆଧୁନିକ ଯୁଗର କାବ୍ୟ ସ୍ରଷ୍ଟାମାନଙ୍କର ଆଦର୍ଶ । ଭାରତୀୟ ରେନେସାଁ ର ଅନ୍ୟତମ ମନ୍ତ୍ରଦାତା, ଡେରୋଜିଓ ତାଙ୍କର ସମକାଳୀନ ବାଇରନଙ୍କ କାବ୍ୟ ଚିନ୍ତା ଦ୍ୱାରାହିଁ ପ୍ରଭାବିତ ହୋଇଥିଲେ । ଏହି କ୍ଷତର ପକ୍ଷୀ ରୋମାଣ୍ଟିକ କାବ୍ୟ ଆନ୍ଦୋଳନକୁ ନୂତନ ଯୁଗର ଯୁଗଧର୍ମ ଭୁକିବାର ପ୍ରେରଣା ପାଇଥିଲା । ବଙ୍ଗଳା ସାହିତ୍ୟରେ ରଙ୍ଗଲାଲଙ୍କ ଠାରୁ ଆରମ୍ଭକରି ମୋହିତ ଲାଲଙ୍କ ପର୍ଯ୍ୟନ୍ତ ଓ ଓଡିଆ ସାହିତ୍ୟରେ ରାଧାନାଥଙ୍କ ଠାରୁ ଆରମ୍ଭକରି ମାନସିଂହ, ଗଡନାୟକଙ୍କ ପର୍ଯ୍ୟନ୍ତ ଅଧିକାଂଶ କାବ୍ୟ ସ୍ରଷ୍ଟା ଚିନ୍ତା ଚେତନା ଓ ପ୍ରେରଣା ଦୃଷ୍ଟିରୁ ଥିଲେ ରୋମାଣ୍ଟିକ । କିନ୍ତୁ ଏଠାରେ ସ୍ମରଣ ରଖିବାକୁ ହେବ ରୋମାଣ୍ଟିକ୍ କାବ୍ୟାଦର୍ଶକୁ ଯେ ଭଳି କୌଣସି ସହଜ ସରଳ ଚୁକ କଟା ହୋଇଥିବା ଆବେଷ୍ଟନୀ ଭିତରେ ଆବଦ୍ଧ କରି ହେବ ନାହିଁ, ତାହା ବିଭିନ୍ନ ଢଙ୍ଗର, ପ୍ରକୃତିର । ଓଡିଆ କବିମାନଙ୍କର ରୋମାଣ୍ଟିକ୍ ଚେତନା ମଧ୍ୟ ବିଚିତ୍ର । କିନ୍ତୁ ସବୁଠାରୁ ବଡକଥା ହେଉଛି, ରୋମାଣ୍ଟିକ ସାହିତ୍ୟାଦର୍ଶ, କାବ୍ୟସୃଷ୍ଟି ଓ କାବ୍ୟର ଆବଶ୍ୟକତା ନେଇ ଯେଉଁପ୍ରକାର ମତାମତ ଦେଇଥାନ୍ତି; ମାନସିଂହଙ୍କର ସାହିତ୍ୟଚିନ୍ତା ସେଥିରୁ ଖୁବ୍ ଗୋଟାଏ ଦୂରବର୍ତ୍ତୀ ନୁହେଁ ।

## ।। ମାନସିଂହଙ୍କ ବିଚାରଧାରା ।।

ରବୀନ୍ଦ୍ରନାଥଙ୍କ 'ନବଜାତକ' କବିତା ସଂଗ୍ରହରେ ଗୋଟିଏ କବିତା ରହିଛି, ଯାହାର ଶୀର୍ଷକ ରହିଛି, 'ରୋମାଣ୍ଟିକ୍' । ଉକ୍ତ କବିତାରେ ରବୀନ୍ଦ୍ରନାଥ କବିଙ୍କୁ ଦ୍ୱିତୀୟ ସ୍ରଷ୍ଟାର ଆସନ ଦେଇଛନ୍ତି । ଆମର ନିତି ଦିନିଆ ପରିଚିତ ଚଲାପଥ ଉପରେ କବି ଚାଲିଲେବି କବି ନିଜର ପ୍ରତିଭା ବଳରେ ସେହି ପରିଚିତ ଜଗତ ସ୍ୱତନ୍ତ୍ର ହୁଏ, ବାସ୍ତବ ଜଗତ ତା'ର କଳ୍ପନାର ଯାଦୁମନ୍ତ୍ରରେ ଅଭିସିଞ୍ଚିତ ହୋଇ ନୂତନ ପରିଚିତି ଆହରଣ କରେ । ଜୀବନରେ ଦାରିଦ୍ର୍ୟ, ଅସ୍ୱାସ୍ଥ୍ୟ, କୁଶ୍ରୀତା ଭିତରେ ରହି, କବି ନୂତନ ରସତୀର୍ଥ ରଚନା କରେ । କିନ୍ତୁ ରୋମାଣ୍ଟିକ୍ ପ୍ରତ୍ୟୟକୁ ଏହିଭଳି ଭାବରେ ବୁଝାଯାଇ ପାରିବ ନାହିଁ । ମଣିଷ ଭିତରେ ଦୁଇଟି ସତ୍ତା ସମକାଳରେ ଜାଗରୁକ, ଗୋଟିଏ ତାର ଜୈବୀ ସତ୍ତା, ଯାହା ତାର ବଞ୍ଚିବା, ଆତ୍ମରକ୍ଷା କରିବା ଓ ବିକାଶ ପାଇଁ ଶକ୍ତି ଦିଏ । ଅପରଟି ତାର ହେତୁବୋଧ, ତାର ବିଚାରଶକ୍ତି । ଯାହା ଜୀବନରେ ପ୍ରତିପଦରେ ତାକୁ ନିୟନ୍ତ୍ରଣ କରେ, ବାଟ ଦେଖାଏ, ଭାଙ୍ଗି ପଡ଼ିଥିବା ବେଳେ ତାକୁ ନୂଆ ଜୀବନର ଇଶାରା ଦିଏ । ପ୍ରଥମଟି ସ୍ୱତଃସ୍ଫୂର୍ତ୍ତ, ଦ୍ୱିତୀୟଟି ମନନର ଫଳ । ସାହିତ୍ୟ ଆଲୋଚନାରେ ଗୋଟିଏ ରୋମାଣ୍ଟିକ୍ ଅପରଟି କ୍ଲାସିକ୍ । କ୍ଲାସିକ୍ ଓ ରୋମାଣ୍ଟିକ୍ ଭିତରେ ଥିବା ପ୍ରଭେଦ ମୌଳିକ କିନ୍ତୁ ପ୍ରତ୍ୟେକ ସାହିତ୍ୟ କୃତିରେ ଉଭୟେ ବିଦ୍ୟମାନ । ଯଦି ମଣିଷ ତାର ଜୀବଧର୍ମର ଆହ୍ୱାନରେ କେବଳ ପରିଚାଳିତ ହୁଏ, ତାର ଧ୍ୱଂସ ଅନିବାର୍ଯ୍ୟ ହୋଇପଡ଼େ । ସେହିଭଳି କବି ଯଦି ମନନ ଓ ସାଧନାର ଅଭାବରେ କେବଳ ସ୍ୱତଃସ୍ଫୂର୍ତ୍ତ ପ୍ରକାଶ ଭିତରେ କାବ୍ୟ ରଚନା କରେ, ତା ହେଲେ ତାହା ନିଷ୍ଫଳ ହେବାର ସମ୍ଭାବନା ବହୁତ । କ୍ଲାସିକ୍ ରୁଚି ଦର୍ଶନର ଆଦର୍ଶ ଗାଣିତିକ ପ୍ରତ୍ୟୟ ଓ ରୋମାଣ୍ଟିକ୍ ବିଶ୍ୱବୀକ୍ଷାର ମଧ୍ୟରେ ରହିଛି ଜୈବ ଅଭୀପ୍ସା ।

ଅଷ୍ଟାଦଶ ଶତାବ୍ଦୀ ଇଉରୋପରେ ବିଜ୍ଞାନର ନବନବ ଆବିଷ୍କାର ସୂକ୍ଷ୍ମ ବିଚାରବୋଧକୁ କ୍ରମଶଃ ଦୁର୍ବଳ କରିଦେଇଥିଲା । ନବ ଆବିଷ୍କାରର ଆନନ୍ଦ ନିକଟରେ ଇନ୍ଦ୍ରଧନୁର ସପ୍ତରଂଗ ମଳିନ ପଡ଼ିଯାଇଥିଲା । ତେଣୁ କବିତାର ଐନ୍ଦ୍ରଜାଲିକ ଅନୁଭବ ସେ ଖୋଜିଥିଲା ଶୃଙ୍ଖଳା ଭିତରେ, ବିଚାରବୁଦ୍ଧି ଭିତରେ, ପରମ୍ପରା ଭିତରେ । ମୁକ୍ତି ଅପେକ୍ଷା ଯୁକ୍ତି ସେଠି ହୋଇପଡ଼ିଥିଲା ପରମକାମ୍ୟ । ଏହାର ପ୍ରତିବାଦରେ ଜର୍ମାନ, ଫ୍ରାନ୍ସ ଓ ଇଂଲଣ୍ଡରେ ଦେଖା ଦେଇଥିଲା ରୋମାଣ୍ଟିକ୍ କାବ୍ୟ ଆନ୍ଦୋଳନ । ବିବିଧ ଦେଶରେ ସୃଷ୍ଟି ହୋଇଥିବା ଏହି ରୋମାଣ୍ଟିକ୍ କାବ୍ୟ ଆନ୍ଦୋଳନ, ତା'ର ସ୍ୱରୂପ, ଆଦର୍ଶ ଓ ପ୍ରତିକ୍ରିୟା ଦୃଷ୍ଟିରୁ ଥିଲା ସ୍ୱତନ୍ତ୍ର । ଯୁକ୍ତି ଓ ଜ୍ଞାନ ଅପେକ୍ଷା ଶିଳ୍ପ ସୃଷ୍ଟିରେ ମୁକ୍ତି ଓ ବିକାଶର ଭୂମିକା ଯେ ଅଧିକ, ନିୟମନିଷ୍ଠା ଅପେକ୍ଷା ପ୍ରକାଶାକାଂକ୍ଷା ଯେ କବିର ଶ୍ରେଷ୍ଠତର ଧର୍ମ ଓ ସର୍ବ କ୍ଷେତ୍ରରେ ପରମ୍ପରା ଓ ପରିଚିତିର ପୁନଃଅନୁଶୀଳନ ଅପେକ୍ଷା ଅନୁଭୂତି ପାତ୍ରରେ ଗଚ୍ଛିତ ନବଉପାଦାନସେ ସାହିତ୍ୟର ପରମକାମ୍ୟ, ଏଇ କଥା ସେମାନେ ପ୍ରତିଷ୍ଠା କରିବାକୁ ଚାହୁଁଥିଲେ । ଏକ ସାମାଜିକ ଓ ନୈତିକ ପ୍ରତି କ୍ରିୟାରୁ ସଂପୃକ୍ତ କାବ୍ୟାନ୍ଦୋଳନ ଆରମ୍ଭ ହୋଇଥିବାରୁ ଓ ଫରାସୀ ରାଷ୍ଟ୍ର ବିପ୍ଳବର ବୈପ୍ଳବିକ ଭୂମିକା ଏହାର ପୁରୋଭାଗରେ ଥିବାରୁ ପ୍ରାଥମିକ ସ୍ତରରେ ଏହା ସଂଗ୍ରାମୀ ଓ ଏକଦେଶଦର୍ଶୀ ହେବାକୁ ବାଧ୍ୟ ହୋଇଥିଲା । ପୁଞ୍ଜିବାଦ ଅର୍ଥନୀତିର କାରା ଗହ୍ୱର ଭିତରେ ରୁଦ୍ଧଶ୍ୱାସ ହୋଇପଡ଼ିଥିବା ଶିଳ୍ପୀ ତାର ମାନସ ବିପ୍ଳବ ସଂଗଠିତ କରିଥିଲା କବିତା ମଧ୍ୟରେ । କେତେବେଳେ

॥ ମାନସିଂହଙ୍କ ବିଗ୍ଭରଧାରା ॥

କବିର କଳ୍ପନା ଅତୀନ୍ଦ୍ରିୟ ରାଜ୍ୟକୁ ପ୍ରସରି ଯାଉଥିଲା ତ ଓ ଅନ୍ୟକେତେବେଳେ ପ୍ରକୃତି ଓ ନିତ୍ୟ ପରିଚିତ ଘଟଣା ଭିତରେ ପାଉଥିଲା ଜୀବନର ନବସ୍ୱାଦ । ପୁଣି କେତେବେଳେ ଇନ୍ଦ୍ରିୟ ଅତୀନ୍ଦ୍ରିୟ ଜଗତର ସୀମାରେଖା ପାରିହୋଇ ତାହା ଏକ ନବକଳ୍ପ ରାଜ୍ୟରେ ପ୍ରବେଶ କରିଥିଲା । କେତେବେଳେ କବି ଖୁଣ୍ଟିଥିଲା ମୃତ ଅତୀତର ଭସ୍ମପାତ୍ରରେ ଜୀବନର ନବ ଉପାଦାନ, ପୁଣି ଅନ୍ୟବେଳେ ସେ ଖୁଣ୍ଟିଥିଲା ଜୀବନର ରୁଦ୍ରବୀଣାରେ ଭୈରବୀ ରାଗର ସର୍ଥାର । ଏ ସବୁକୁ ଅନୁଧ୍ୟାନ କଲେ ଜଣାଯାଏ, ରୋମାଣ୍ଟିକ୍ କବିମନ ଓ ପ୍ରାଣରେ ଆଦର୍ଶବାଦୀ । କଠିନ ବାସ୍ତବତା ଭିତରେ ବର୍ତ୍ତିଲେ ବି ତାକୁ ଅତିକ୍ରମ କରି ନୂତନ ରାଜ୍ୟର ସନ୍ଧାନ ଦେବାପାଇଁ ଇଚ୍ଛୁକ । ସେମାନେ ପୃଥିବୀକୁ ସୁନ୍ଦରତର ଭାବରେ ଗଢିବାକୁ ଚାହାନ୍ତି, ସମାଜକୁ ନୂଆ ଚେହେରା ଦେବାପାଇଁ ଇଚ୍ଛା କରନ୍ତି; ସେଥିପାଇଁ ଦରକାର ପଡିଲେ ସେ ଜୀବନପଣ ମଧ୍ୟ କରିପାରନ୍ତି । ତେଣୁ ରୋମାଣ୍ଟିକ୍ କବି ପଳାୟନବାଦୀ ନୁହେଁ । ସେ ସାମୟିକ ପଳାୟନ କରିପାରେ ମଣିଷର ମୁକ୍ତିକୁ ତ୍ୱରାନ୍ୱିତ କରିବା ପାଇଁ । ଜୀବନର ଶତ ଜଞ୍ଜାଳ ଓ ବୀଭତ୍ସତା ଭିତରେ ସେ ନିଜ ବ୍ୟକ୍ତିତ୍ୱର ଅନନ୍ୟତାରେ ବିଶ୍ୱାସୀ; ନିଜର ବ୍ୟକ୍ତିତ୍ୱକୁ ସଞ୍ଜୀବିତ କରି କାବ୍ୟକୁ ସେ ରସତୀର୍ଥର ପ୍ରତିମା କରି ଗଢିବାରେ ତାଙ୍କ ସାଧନାର ପରମସାର୍ଥକତା ।

ରୋମାଣ୍ଟିକ୍ କାବ୍ୟ ପ୍ରତ୍ୟୟ ଦୃଷ୍ଟିରୁ କବିର ମନ ସାଧାରଣ ମନଠାରୁ ସ୍ୱତନ୍ତ୍ର ପ୍ରକୃତିର । ଏଇ ସ୍ୱାତନ୍ତ୍ର୍ୟ ପାଇଁ ସେ ସ୍ରଷ୍ଟା, ସତ୍ୟ ଦ୍ରଷ୍ଟା । ସାଧାରଣ ମଣିଷ ଯାହାକୁ ସଙ୍କୀର୍ଣ୍ଣ ଓ ଉପରଠାଉରିଆ କରି ଦେଖିଥାଏ, କବି ତାକୁ ଗଭୀରତର ଭାବରେ ଉପଲବ୍ଧି କରେ । ରୋମାଣ୍ଟିକ୍ ସାହିତ୍ୟ ତତ୍ତ୍ୱର ବିଶିଷ୍ଟ ଆଲୋଚକ ଏମ୍.ଏଚ୍. ଆବ୍ରାମସ୍ କବି ମନକୁ ଏକ ପ୍ରଦୀପ ସହ ତୁଳନା କରିଛନ୍ତି ।(୨) କବି ପରିଚିତ ଜଗତକୁ ପ୍ରତିଫଳନ କରେ ନାହିଁ; କବିତା ବାସ୍ତବ ଜଗତର ଏକ ଦର୍ପଣ ନୁହେଁ । ପ୍ରତ୍ୟେକ ପ୍ରଦୀପ ଥରେ ଜଳି ଉଠିଲା ପରେ, ସେ କେଳି ଅନ୍ଧାରକୁ କେବଳ ଦୂରୀଭୂତ କରେ ନାହିଁ, ତାର ସମ୍ମୁଖରେ ଥିବା ଜଗତକୁ ଆଲୋକିତ କରେ, ସ୍ୱତନ୍ତ୍ର ଭାବରେ ଚିହ୍ନାଏ । କବି ମଧ୍ୟ ସେହିଭଳି ଜଗତକୁ ଆଲୋକିତ କରେ, ଅନ୍ଧାରକୁ ବିଦୂରିତ କରି ବାସ୍ତବତାକୁ ସ୍ୱତନ୍ତ୍ର ମହିମାରେ ଚିହ୍ନାଇ ଦିଏ । କବିର ଅନନ୍ୟ ବ୍ୟକ୍ତିତ୍ୱ ଏଠି ଦୀପଶିଖାର ଭୂମିକା ନିର୍ବାହ କରେ । କବିତାର ପ୍ରଧାନ ଲକ୍ଷ୍ୟ ହେଲା, କଳ୍ପନାର ଆଲୋକରେ ଜୀବନକୁ ରୂପାନ୍ତରିତ କରିବା । କବିର ବ୍ୟକ୍ତିତ୍ୱ ମୁଖ୍ୟ ହୋଇଥିବାରୁ କାବ୍ୟରେ କବି ହୃଦୟାଲୋକର ଗୋଟିଏ ଅନ୍ତରଙ୍ଗ ଚିତ୍ର ଫୁଟିଉଠେ । ସେଇଥିପାଇଁ କବି କେତେବେଳେ ହୁଏ ମିଷ୍ଟିକ୍, ପୁଣି କେତେବେଳେ ହୁଏ ରୂପ ପିପାସୁ, ଅନ୍ୟ କେତେବେଳେ ସେ ସମାଜକୁ ପରିବର୍ତ୍ତନ କରିବାରେ ଶପଥ ନେଇ ବିଦ୍ରୋହୀ ସାଜେ । ବାହ୍ୟ ନିର୍ଦ୍ଦେଶିତ ବିଧିବିଶେଷ, ଅନୁଶାସନ କବି ଓ କବିତା ପାଇଁ ଅନାବଶ୍ୟକ ତଥା ଅକଲ୍ୟାଣ କର । କବି ଚିରନବୀନ ଚିରଯୁବକ । ସ୍ଥିତିରେ ନୁହେଁ ଗତିରେ ତାର ଆନନ୍ଦ ।

ମାନସିଂହ ମଧ୍ୟ କବିତାର ପ୍ରେରଣାଦାୟକ ଶକ୍ତି ଭାବରେ ଏକ ଅଦୃଶ୍ୟ ଭାବ ସତ୍ତାକୁ ସ୍ୱୀକାର କରିଛନ୍ତି । ପରିଚିତ ବାସ୍ତବତାକୁ ନୂତନ ଭାବରେ ଦେଖିବା ଅଥବା ଦୂରାଗତ ଅତୀତର ସରଳ ପ୍ରାକୃତିକ ଦୃଶ୍ୟ ଭିତରେ

ସେ କବିତାର ଉପାଦାନ ଖୋଜିଥିବାର ଦେଖାଯାଏ । ମାନସିଂହଙ୍କ ମତରେ କବିର କବିତା ଅନନ୍ୟ । ତାହା ନୈତିକ ତାର ମାନଦଣ୍ଡରେ ମାପି ହେବ ନାହିଁ କିମ୍ବା ନିଷେଧ ଜାଲରେ ବାନ୍ଧିବା ତାକୁ ଉଚିତ ନୁହେଁ । ତାଙ୍କ ମତରେ କବି ଓ ଇଶ୍ୱର ସମଧର୍ମୀ :– "ସୃଷ୍ଟିରୂପୀ ମହାକାବ୍ୟର ଲେଖକ ଭାବରେ ସ୍ରଷ୍ଟା ପ୍ରକୃତରେ ମହାକବି । କବିମାନଙ୍କର ବିଗ୍ରହ ତାଙ୍କରି ହାତରେ । X X X ସାହିତ୍ୟର ପ୍ରଥା ହେଉଛି, ଅନୁଭୂତିର ରସ ସଞ୍ଚାର କରି ଜଡକୁ ପ୍ରାଣବାନ ଓ ଆତ୍ମ–ଚେତନକରିବାରେ । ପ୍ରାଣ ନୀତି ନୁହେଁ କି ଅନୀତି ନୁହେଁ । ତା'ର ଲକ୍ଷଣ ହେଉଛି ଯେ ତାହା ଶକ୍ତିରେ ଚଞ୍ଚଳ ଓ ଅନୁଭୂତିରେ ସରସ ।"(10) ଏହି ଅନୁଭୂତି କବିର ନିଜ ଜୀବନର ଅନୁଭୂତି । ତା ନିଜ ଜୀବନର ସୁଖ ଦୁଃଖ କବିର ମନପାତ୍ରରେ ଉଚ୍ଛୁଳି ଉଠି କବିତା ଆକାରରେ ପ୍ରକାଶ ପାଏ । 'ଧୂପ' ସେହିପରି ମାନସିଂହଙ୍କ ମନର ଆତ୍ମ ପ୍ରକାଶ । ଓ୍ୱାର୍ଡସ୍ୱାର୍ଥଙ୍କ କାବ୍ୟ ସଂଜ୍ଞାକୁ ଆଲୋଚନା କରି ଆବ୍ରାମସ୍ ଲେଖିଛନ୍ତି:–"କବିତାର ଉପାଦାନ କବି ମଧ୍ୟରୁହିଁ ବାହାରିଥାଏ । ସେ ଗୁଡିକ ବସ୍ତୁ ବା କ୍ରିୟାକୁ ସିଧାସଳଖ ନେଇ ସୁଗଠିତ ନୁହେଁ । କବିର ଅନୁଭୂତି ନିର୍ଯ୍ୟାସ ଆକାରରେ କବିତା ମଧ୍ୟରେ ଆତ୍ମ ପ୍ରକାଶ କରିଥାଏ ।"(11) କବିର ଏହି ତରଳ ଅନୁଭୂତି ଅଭିବ୍ୟକ୍ତି ସାର କଳାପରେ ଆଉ ବ୍ୟକ୍ତିଗତ ହୋଇ ରହେ ନାହିଁ, ତାହା ସାର୍ବଜନୀନ ରୂପ ଗ୍ରହଣ କରେ । କବିତା ପାତ୍ରରେ କବିର ଯେଉଁ ଅନୁଭୂତି ନିବେଦିତ ହୋଇଥିଲା, ତାହା ସମଗ୍ର ବିଶ୍ୱର ଉପଭୋଗର ବିଷୟ ହୋଇଉଠେ । ସେହି 'ଧୂପ' ମୁଖବନ୍ଧରେ ମାନସିଂହ ଲେଖିଛନ୍ତି:–"ଏ କବିତା ସବୁ ପ୍ରକୃତରେ ବ୍ୟକ୍ତି ନିରପେକ୍ଷ । ଏ ସବୁ ଏକ ନିଃସଙ୍ଗ ତରୁଣ ହୃଦୟ ଉପରେ ଅନ୍ୟ ହୃଦୟମାନଙ୍କର ପ୍ରତିକ୍ରିୟାର ଚିତ୍ରମାତ୍ର । ସେ ହୃଦୟ ସବୁର ଢେର ପରିବର୍ତ୍ତନ ହୋଇ ଗଲାଣି । ଯୌବନର ରଙ୍ଗିନ୍ ଚଷମାରେ ଯେଉଁ ଜଗତ ସ୍ୱପ୍ନପୁରୀପରି ପ୍ରତୀତ ହେଉଥିଲା, ତାହା ଆଜି ରୁକ୍ଷ, ନୀରସ ଓ ହାହାକାରମୟ । X X X ଯିଏ ଲେଖିଥିଲା ଓ ଯେଉଁମାନଙ୍କପାଇଁ ଲେଖିଥିଲା, ସେମାନେ କ୍ରମେ ପରିବର୍ତ୍ତିତ ଓ ଶେଷରେ ଅନ୍ତର୍ହିତ ହୋଇଯିବେ; କିନ୍ତୁ ଏ କବିତା ଗୁଡିକରେ ଯଦି ସତ୍ୟ ଓ ଗଭୀର ଅନୁଭୂତିର ସଞ୍ଚାର ହୋଇଥିବ, ତେବେ ସେମାନଙ୍କର ପରିବର୍ତ୍ତନ ବା ମରଣ ନାହିଁ ।"(12)

'ଧୂପ' ମୁଖବନ୍ଧ ପଢିଲା ପରେ ତିନୋଟି କଥା ସ୍ପଷ୍ଟ ହୋଇଉଠେ; ଇଂରେଜୀ କବି ବିଶେଷତଃ ରୋମାଣ୍ଟିକ୍ କବିଗଣଙ୍କର କବିତା ମାନସିଂହଙ୍କ ମନରେ କବିତା ଲେଖିବାର ପ୍ରେରଣା ସୃଷ୍ଟି କରିଥିଲା । କବିତା ଯେ କବି ଅନୁଭୂତିର ସତ୍ୟତମ ପ୍ରକାଶ ଏକଥା ମାନସିଂହ ଜୀବନର ଶେଷ ପର୍ଯ୍ୟାୟ ପର୍ଯ୍ୟନ୍ତ ଗ୍ରହଣ କରିଥିଲେ । କବି ହେଉଛି ଦ୍ୱିତୀୟ ସ୍ରଷ୍ଟା, ତେଣୁ ସାଧାରଣ ଜଗତରେ ଭଲମନ୍ଦ ନେଇ ତାକୁ ବିଗ୍ରହ କରାଯାଇ ପାରିବ ନାହିଁ । ପ୍ରତ୍ୟେକ କବିତା ହେଉଛି ଗୋଟିଏ ଫୁଲ; ସୌରଭ ଓ ସୌନ୍ଦର୍ଯ୍ୟ ବିତରଣରେ ତା'ର ଆନନ୍ଦ, ତାର ମୂଳ ଖୋଜିଲେ ହତାଶ ହେବାହିଁ ସ୍ୱାଭାବିକ । ଶେଷରେ, କବି–ବ୍ୟକ୍ତିତ୍ୱର ଆତ୍ମ ପ୍ରକାଶ ହେଲେ ବି କବିତା ଚିରନ୍ତନ । ଏଇ ସମସ୍ତ କାବ୍ୟ ଧାରଣା ରୋମାଣ୍ଟିକ୍ କାବ୍ୟ ଧାରଣାର ପ୍ରତିଧ୍ୱନି ବ୍ୟତୀତ ଅନ୍ୟ କିଛି ନୁହେଁ । ଜୀବନର ପ୍ରାରମ୍ଭରୁ ହିଁ ଏହି କାବ୍ୟ ଜିଜ୍ଞାସାର ସ୍ଫୁର୍ତ୍ତି ।

|| ମାନସିଂହଙ୍କ ବିଗ୍ଭରଧାରା ||

'ରାଜକବି ଉପେନ୍ଦ୍ର' ନାଟିକାରେ ମାନସିଂହ ଉପେନ୍ଦ୍ରଙ୍କୁ ଜଣେ ରୋମାଣ୍ଟିକ୍ କବି ଭାବରେ ଦେଖାଇଛନ୍ତି । ରୋମାଣ୍ଟିକ୍ କବିଭଳି ଉପେନ୍ଦ୍ର ପ୍ରକୃତିର ଶୋଭା ଭିତରେ ବୁଡିଯାଇଛନ୍ତି । ସାଧାରଣ ବନ୍ୟ ବାଳକ ମାନଙ୍କ ଭିତରେ ସ୍ୱପ୍ନ ଜଗତର ମାଧୁର୍ଯ୍ୟ ଅନୁଭବ କରିଛନ୍ତି । ସେ କହି ଉଠିଛନ୍ତି :—"ଏ କ'ଣ ସ୍ୱପ୍ନର ପୁରୀ ! ମାୟାର ବିଳାସ! କାହାର ଅମୃତମୟ ପରଶରେ ଏମାନଙ୍କ ପ୍ରାଣ ଏତେ ଉଚ୍ଛଳ,ଏତେ ଅଦମ୍ୟ ହୋଇ ଉଠୁଛି ? ନଗର ପ୍ରାଣରେ ଚଞ୍ଚଳତା ଅଛି ସତ,କିନ୍ତୁ ସେଥିରେ ଏତେ ଜୀବନ,ଏତେ ସରଳତା ନାହିଁ ! ଆନନ୍ଦ କାହିଁ ସେଠି ? କିନ୍ତୁ ଏଠେ ଏକାବେଳକେ ପ୍ରମତ୍ତର ଭାବ; ଏଠି କ୍ଷୁଦ୍ରତାର ସ୍ଥାନ ନାହିଁ,ନୀଚତାର ଆସନ ନାହିଁ,ଭେଦ ନାହିଁ,ହିଂସା ନାହିଁ ! ସ୍ୱର୍ଗିଆତେ ପ୍ରୀତି ! ଧରଣୀବଧୂର ପ୍ରେମ ଓ ଆନନ୍ଦର ଫୁଆରା ଏହିଠାରେ ଯେପରି ଫିଟି ପଡିଛି । ରାଜ ବିଭବ ପ୍ରତି ମୋର ଯାହାକିଛି ବିରକ୍ତି ଥିଲା,ତା' ଏବେ ମୋ ହୃଦୟକୁ ସଂପୂର୍ଣ୍ଣ ଅଧିକାର କରି ବସିଲାଣି । ଏ ବନ ପର୍ବତକୁ ଛାଡି ଯିବାକୁ ମୋର ତିଳେ ହେଲେ ବାସନା ନାହିଁ ।"(13) ସୌନ୍ଦର୍ଯ୍ୟ ଓ ପ୍ରଶାନ୍ତି ପାଖରେ ରାଜ—ଲକ୍ଷ୍ମୀର ପ୍ରମତ୍ତ ଯୌବନ ନିହାତି ନଗଣ୍ୟ ମନେ ହୋଇଛି ତାଙ୍କୁ । ସେ ରାଜଗାଦୀ ପରିତ୍ୟାଗ କରି ପରସ୍ତ୍ରୀଙ୍କି ବରଣ କରି ନେଇଛନ୍ତି ଓ ପ୍ରକୃତି ବକ୍ଷକୁ ଫେରିଯାଇଛନ୍ତି । ପ୍ରକୃତି ବକ୍ଷରେ ସେ ଅନୁଭବ କରିଛନ୍ତି ତାଙ୍କ ଭିତରେ ଲୁଚି ରହିଥିବା ଅନନୁଭବ ପ୍ରତିଭା ଯେପରି ଆତ୍ମ ପ୍ରକାଶ କରୁଛି । କୂଳରୁ ଅକୂଳକୁ ଭାସିଯିବାର ଇଚ୍ଛା ପ୍ରାଣରେ ତାଙ୍କର ଜାଗି ଉଠିଛି । ଅସୀମ ଫୁଲକୁ ଆଘ୍ରାଣ କରିବାର ଇଚ୍ଛା ତାଙ୍କର ପ୍ରଜ୍ୱଳିତ ହୋଇ ଉଠିଛି ।—

"ଯିବି ଗୋ ଯିବି ସେତେ
ସେ ଜଗତେ
ଚିର ଯହିଁ ଜୋଛନା ।

ବହି ଗୋ ଯିବି ମୁହିଁ
ଲଭେ ଯହିଁ
ତାରା ତା'ର ଦ୍ୟୋତନା ।

ଯିବି ଗୋ ଯିବି ବହି
ଛାଡି ମହୀ,
ହେ ଅରୁଣ ,ହେ ନଭ ।"(14)

ଉପେନ୍ଦ୍ରଙ୍କ ଜୀବନରେ ଏସବୁ ଘଟଣା ଘଟିଥିଲା କି ନାହିଁ,ତାହା ଗଭୀର ସଂନ୍ଦେହର ବିଷୟ । କିନ୍ତୁ ରୋମାଣ୍ଟିକ୍ କବି ମାନସିଂହ ଉପେନ୍ଦ୍ରଙ୍କ ଭିତରେ ଏହା ଦେଖିବା ସ୍ୱାଭାବିକ୍ ଥିଲା । ତେଣୁ ରାଜକବି ଉପେନ୍ଦ୍ରରେ ରାଜସଭାର କବି ଉପେନ୍ଦ୍ର ପ୍ରକୃତି ବକ୍ଷରେ ଅବସ୍ଥାପିତ ହୋଇଛନ୍ତି ।

କିନ୍ତୁ କବିର ଭୂମିକା କେବଳ ରୂପ ସୌନ୍ଦର୍ଯ୍ୟ ବା ଅରୂପ ସନ୍ଧାନରେ ବ୍ୟସ୍ତ ନୁହେଁ,ସେ ମାନବ ସମାଜର ଅସ୍ୱୀକୃତ ବୈଧାନିକ । ପଥହରା ମଣିଷ ସମାଜକୁ ହାତଧରି ବାଟ ଚଲାଇବା ତାର କାମ । ତେଣୁ କବିର ଭୂମିକାକୁ ସୌନ୍ଦର୍ଯ୍ୟର ଉପାସନା ରୀତି ଭିତରେ ସୀମାବଦ୍ଧ କରିହେବ ନାହିଁ । ତାଙ୍କୁ ନୂଆ କିଛି ଦବାକୁ ପଡିବ । ଜଗତର ମଙ୍ଗଳ ବିଧାନ ପାଇଁ ନିଜକୁ ତିଳତିଳ କରି ଦଗ୍ଧ କରିବାକୁ ପଡିବ, ଏଇ ଭାବ ଯେତେବେଳେ ମାନସିଂହଙ୍କ

ଭିତରେ ଆସିଛି, ସେତେବେଳେ ସେ ନାରୀ ଓ ନିଃସର୍ଗର କବି ହୋଇ ସେ ରହି ନାହାନ୍ତି । କର୍ତ୍ତବ୍ୟବୋଧ ତାଙ୍କୁ ସମାଜପ୍ରତି ଅଙ୍ଗୀକାର ବଦ୍ଧ ହେବାପାଇଁ ଆହ୍ୱାନ କରିଛି । ଏହି ଆହ୍ୱାନର ସ୍ୱର ତାଙ୍କ ଜୀବନର ଦ୍ୱିତୀୟ ପର୍ଯ୍ୟାୟରେ ଆହୁରି ସ୍ପଷ୍ଟ ।

**ଆଦର୍ଶବାଦୀ ଚିନ୍ତାଧାରା ଓ ମାନସିଂହଙ୍କ ସାହିତ୍ୟ ବିଗ୍ରହ :**

ରୋମାଣ୍ଟିକ କାବ୍ୟାଦର୍ଶ ଭାବବାଦୀ ଦର୍ଶନ ଉପରେ ଆଧାରିତ । ମାନସିଂହ ରୋମାଣ୍ଟିକ କାବ୍ୟାଦର୍ଶକୁ ଆପଣାର କରି ନେଇଥିବାରୁ ପରବର୍ତ୍ତୀ କାଳର ଆଦର୍ଶବାଦୀ ଚିନ୍ତାଧାରା ସହ ତାର କୌଣସି ମୌଳ ବିରୋଧ ଘଟି ନାହିଁ । ପ୍ରାଥମିକ ସ୍ତର ର ସ୍ୱପ୍ନ ପ୍ରବଣ କବିମନ ପରବର୍ତ୍ତୀ କାଳର ଆଦର୍ଶବାଦୀ କାବ୍ୟକାର ଓ ସାହିତ୍ୟ ସମୀକ୍ଷକ ଭାବରେ ଆତ୍ମ ପ୍ରକାଶ କରିଛି । ମାନସିଂହଙ୍କ ଜୀବନର ଦ୍ୱିତୀୟ ପର୍ଯ୍ୟାୟ, ପ୍ରଥମ ପର୍ଯ୍ୟାୟର ସ୍ୱାଭାବିକ ସଂପ୍ରସାରଣ ମାତ୍ର । 'ଧୂପ', 'କୋଣାର୍କ', 'ପ୍ରେମଶସ୍ୟ', 'ହେମଶସ୍ୟ' ଆଦି କବିତାଗୁଚ୍ଛ, ରାଧାନାଥ, ରବୀନ୍ଦ୍ରନାଥ, ମଧୁସୂଦନ ଆଦି କବିଙ୍କର ସମୀକ୍ଷକ ମାନସିଂହ, ପରବର୍ତ୍ତୀ କାଳରେ 'ଅକ୍ଷତ', 'ମାଟିବାଣୀ', 'ସିନ୍ଧୁ ଓ ବିନ୍ଦୁ', ଛୁଣ'' କବିତା ସଂକଳନ, 'କମଳାୟନ' କାବ୍ୟ, 'ଅନ୍ୱେଷଣ' ଉପନ୍ୟାସ ତଥା ବହୁ ସମାଲୋଚନାମୂଳକ ପ୍ରବନ୍ଧ ଓ ନାଟକର ରଚୟିତା ରୂପେ ଦେଖାଦେଇଛନ୍ତି ।

ବିଂଶ ଶତକର ଦ୍ୱିତୀୟ ଦଶକ ପରେ ଗାନ୍ଧି, ଭାରତୀୟ ରାଜନୀତିରେ ଆଦର୍ଶବାଦର ଧ୍ୱଜାଧରି ପ୍ରବେଶ କରିଥିଲେ । ଏହି ଆଦର୍ଶବାଦ ରାଜନୀତିକୁ ଛାଡି କ୍ରମଶଃ ଜୀବନର ଅନ୍ୟାନ୍ୟ କ୍ଷେତ୍ରକୁ ସଂକ୍ରମିତ ହୋଇଥିବା ଭାରତୀୟମାନଙ୍କର ଚିନ୍ତାଧାରା କ୍ରମଶଃ ସେ ଆଦର୍ଶବାଦର ଅଦୃଶ୍ୟ ରଂଗ ସୁଷମାରେ ବର୍ଣ୍ଣିଳ ହୋଇ ଉଠିଲା । ମାନସିଂହଙ୍କ ବିଲାତ ଫେରନ୍ତା ମନ ଏହି ଆଦର୍ଶବାଦରେ ନିମଜ୍ଜିତ ହୋଇ ପଡିଥିଲା । ଜୀବନର ପ୍ରାଥମିକ ପର୍ଯ୍ୟାୟରେ 'ସ୍ୱଧର୍ମ' 'ପରଧର୍ମ' ଭିତରେ ତଫାତ ଦେଖିଥିବା ମାନସିଂହ ସ୍ୱଧର୍ମର ନୂତନଭୂମି ଆବିଷ୍କାର କରିବାକୁ ଚେଷ୍ଟାକଲେ ।

ଗାନ୍ଧିଜୀଙ୍କର ଆଦର୍ଶବାଦର ଫମ୍ପା ରୂପ ୧୯୩୭ ମସିହା ପରେ କ୍ରମଶଃ ପ୍ରକାଶ ପାଇବାକୁ ଲାଗିଥିଲା । ଇଂରେଜମାନେ ନିଷ୍ଠୁର ଏକଚ୍ଛତ୍ର ସମ୍ରାଟ ନ ଥିଲେ ବା କଂଗ୍ରେସ ତଥା ଗାନ୍ଧି ଆନ୍ଦୋଳନ ଏକ ବିପ୍ଳବୀ ଅନୁଷ୍ଠାନ ବା କ୍ରାନ୍ତିକାରୀ କାର୍ଯ୍ୟକ୍ରମ ନଥିଲା । ଉଦାରତନ୍ତ୍ର ଓ ଗଣତନ୍ତ୍ର ଜନକଲ୍ୟାଣ ଶାନ୍ତିପ୍ରିୟ ସହାବସ୍ଥାନର ଦୁହାଇ ଦେଇ, ଭାରତରେ ଶାସନ କରୁଥିବା ଔପନିବେଶିକ ସରକାରଙ୍କୁ ସ୍ଥାନାନ୍ତରିତକରି ଶାସନ ଭାର ଗ୍ରହଣ କରିବା ପାଇଁ ଭାରତୀୟ ଶୋଷକ ଶ୍ରେଣୀ କଂଗ୍ରେସ ମାଧ୍ୟମରେ ଆନ୍ଦୋଳନ ଚଳାଇଥିଲେ । ପୁନ ୧୯୩୭ ରେ କଂଗ୍ରେସ ହାତ କୁ ସୀମିତ ଶାସନ କ୍ଷମତା ରାଜ୍ୟସ୍ତର ମଧ୍ୟଦେଇ ଆସିବା ଫଳରେ, ସେମାନଙ୍କର ପ୍ରକୃତ ରୂପ କ୍ରମଶଃ ଦୃଷ୍ଟିଗୋଚର ହୋଇଥିଲା । ମାନସିଂହଙ୍କ ଭଳି ମନପ୍ରାଣରେ ଆଦର୍ଶବାଦରେ ବିଶ୍ୱାସ କରୁଥିବା ବ୍ୟକ୍ତି ତେଣୁ କ୍ରମଶଃ ସ୍ୱପ୍ନଭଙ୍ଗର

ଗରବ୍ୟ ହୋଇଥିଲେ । ଖ୍ରୀ: ୧୨୪୧ ର ଗୋଟିଏ ପ୍ରବନ୍ଧରେ ତାଙ୍କର ଏହି ସ୍ୱପ୍ନଭଙ୍ଗର ଲକ୍ଷଣ ସ୍ପଷ୍ଟ । ମଧୁର ସ୍ୱପ୍ନକୁ ମଣିଷ ସବୁବେଳେ ଖୋଜିବୁଲେ ।·ତା'ରି ଭିତରେ ଆପଣାକୁ ଅବସ୍ଥାପିତ କରିବାକୁ ଚାହେଁ । ରାଜନୀତି କ୍ଷେତ୍ରରେ ସ୍ୱ-କଳ୍ପିତ ଆଦର୍ଶବାଦର ସୁରାବ ନ ପାଇଲା ପରେ, ମାନସିଂହ, ସାହିତ୍ୟ ଆଶ୍ରୟରେ ଆଦର୍ଶବାଦର ଖୋଳପା ତିଆର କରି ତାର ଭିତରେ ଆଶ୍ରୟ ନେବାକୁ ଚାହିଁଛନ୍ତି :—"ଆମ ଜାତିକୁ ଆଧୁନିକ ରାଜନୀତିରୁ ରକ୍ଷା କରିବାକୁ ହେବ । ସେଥିପାଇଁ ସାହିତ୍ୟର ଅଭିବୃଦ୍ଧି ଓ ପ୍ରଚାରହିଁ ଏକମାତ୍ର କଲ୍ୟାଣର ପନ୍ଥାବୋଲି ମୁଁ ମନେକରେ । ଚାଳିଶବର୍ଷ ତଳେ ରାଜନୀତି କହିଲେ ଆମେ ଆମ ପରାଧୀନ ଦେଶର ମୁକ୍ତି ସଂଗ୍ରାମ ବୋଲି ବୁଝୁଥିଲୁଁ । ଏବେ ସେ ସ୍ୱପ୍ନ ନିଷ୍ଠୁର ଭାବରେ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଯାଇଛି । ଆଜି ରାଜନୀତି କହିଲେ କେତେକ ଅବୁଦ୍ଧିଜୀବୀ, ବୈଶ୍ୟ-ଓ-ଶୂଦ୍ର ଭାବାପନ୍ନ ଲୋକଙ୍କର ସ୍ୱାର୍ଥ ସଂଘର୍ଷର ଦେଶବ୍ୟାପୀ କୁତ୍ସିତ ବା ବୀଭତ୍ସତା । ଏ ବିଭତ୍ସତା ଆଜି ଜାତିର ସକଳ ସ୍ତରକୁ ଏପରି ପ୍ରଭାବିତ କରିବାକୁ ବସିଲାଣି ଯେ ଦେଶର ଗାଁ ରୁ ସହର ପର୍ଯ୍ୟନ୍ତ ବା ସ୍କୁଲରୁ ଆସେମ୍ବ୍ଲି ପର୍ଯ୍ୟନ୍ତ କେଉଁଠି ହେଲେ ଜଣେ ସାଧୁ ଲୋକ ପାଇବାକୁ ଆଶା କରିବା ଏକ ବିଡମ୍ବନା ହୋଇଉଠିବାଣି । ଏ ପ୍ରକାର ଦୁର୍ନୀତି ଯଦି ଜାତିକୁ ଗ୍ରାସ କରିବସେ, ତେବେ ବନ୍ଧୁଗଣ, ମନେ ରଖନ୍ତୁ ଯେ, ଆମର ରାଜନୈତିକ ସ୍ୱାଧୀନତା ଯଦି କେବେ ଆମ ଭାଗ୍ୟରେ ଜୁଟେ, ତେବେ ତାହା ଏକ ଅଭିଶାପ ବୋଲି ଗଣିତ ହେବ । Xଏ ଦିଗରେ ଜାତିର ସାହିତ୍ୟିକ ଯେ ଦାୟିତ୍ୱ ଅଛି, ତାହା ଆମ୍ଭେମାନେ ଏ ପର୍ଯ୍ୟନ୍ତ ସମ୍ୟକ ବୁଝିନାହୁଁ ।"(୧୫)

ମାନସିଂହଙ୍କ ବିଚାରରେ ସାହିତ୍ୟିକର ସମ୍ମୁଖରେ ଦେଶ ବା ଜାତି ଗଢିବାର ଏକ ଆଦର୍ଶ ରହିବା ଉଚିତ । ଜାତି ଯେତେବେଳେ ନିମ୍ନଗାମୀ ହୋଇଯାଏ, ସେତେବେଳେ ବଳିଷ୍ଠ ସାହିତ୍ୟ ସମାଜର ଗତିକୁ ପରିବର୍ତ୍ତନ କରିପାରେ । ଏହି ବିଶ୍ୱାସରେ ସ୍ଥିରନିଷ୍ଠଥିବା ମାନସିଂହ ଲେଖିଛନ୍ତି —" ଦେଶକୁ 'ଦଳ' ମାଡିଯିବାର ଗୋଟିଏ କାରଣ ଏହି ଯେ, ବୋଧହୁଏ ଜାତିର ଜନତାର ମନ ଆକର୍ଷଣ କରିବାକୁ ଅନ୍ୟ କିଛି ଦେଶରେ ନାହିଁ ବା ଜନସଂଘର ଜୀବନ କୌଣସି ଉଚ୍ଚ ଆଦର୍ଶଦ୍ୱାରା ଅନୁପ୍ରାଣିତ ହେଉନାହିଁ । କାବ୍ୟ, ନାଟକ, କବିତା, ଗଳ୍ପ, ପ୍ରବନ୍ଧାଦିଦ୍ୱାରା ଜନତାର ଚିତ୍ତକୁ ଭିନ୍ନ ଦିଗରେ ଓ ଭିନ୍ନ ଆଦର୍ଶ ଆଡକୁ ଟାଣି ନେଇ ପାରିଲେ, ଜାତି ଜୀବନରେ ଗୋଟିଏ ମମତା ଆସିପାରନ୍ତା ବୋଲି ମୋର ବିଶ୍ୱାସ । ସାହିତ୍ୟର ଅଧିକତର ସାର୍ଥକତା ବା କ'ଣ ? ବ୍ୟକ୍ତି ବା ଜାତିର ଜୀବନକୁ ଯଦି ସାହିତ୍ୟ ଉଚ୍ଚତର ସ୍ତରକୁ ନେଇ ନ ପାରେ, ତେବେ ସାହିତ୍ୟ କେବଳ ଗୋଟିଏ ବିଳାସ ସାମଗ୍ରୀ ହୋଇ ରହିବ । ବୀଣାପାଣିଙ୍କ ବିପଞ୍ଚୀ କ'ଣ ବିଳାସର ସାମଗ୍ରୀ ? ସାହିତ୍ୟକୁ ଯେଉଁ ଯେଉଁ ଦେଶ ଓ କାଳରେ ଅପକର୍ମରେ ଲଗାଯାଇଛି, ତାର ଫଳ ହୋଇଛି ଜାତିର ଅଧୋଗତି ।"(୧୬)

ସାହିତ୍ୟ ସାଧନାକୁ ଏକ ଆଦର୍ଶ ଭାବରେ ମାନସିଂହ ବିଚାର କରିଛନ୍ତି । ପୁରାତନ ଭିତ୍ତି ଉପରେ ନୂତନକୁ ସୃଷ୍ଟି କରିବାହିଁ ସାହିତ୍ୟାଦର୍ଶ । ପ୍ରାଚୀନ ବଙ୍ଗଳା ଭାଷାର ମୌଳିକ ରୀତିକୁ ଆଦର୍ଶକରି ନୂତନ ଧାରାରେ ରବୀନ୍ଦ୍ରନାଥଙ୍କ ସାହିତ୍ୟ ପ୍ରତିଷ୍ଠିତ । ବାଲ୍ମୀକି, କାଳିଦାସ, ରବୀନ୍ଦ୍ରନାଥ, ତୁଳସୀଦାସ, କବୀର ପ୍ରଭୃତି ଶ୍ରେଷ୍ଠ କବିଗଣ

॥ ମାନସିଂହଙ୍କ ବିଗ୍ରଧାରା ॥

ଆମ ଆଗରେ ଯେଉଁ ଆଦର୍ଶ ଥୋଇଯାଉଛନ୍ତି, ସେ ସମ୍ପର୍କରେ ମାନସିଂହ କହନ୍ତି :–" ଆମ ସମସ୍ତଙ୍କର ମନେ ରଖିବା ଉଚିତ ଯେ, ସାହିତ୍ୟ ଏକ ବିଳାସ ନୁହେଁ—ଏହା ଏକ ସାଧନା । ମାନବ ସମାଜର ସେବା ଲାଗି ବିଧାତା କବି ହସ୍ତରେ ଭାଷାର ଯେଉଁ ବ୍ୟାପକ ଅସ୍ତ୍ର ଦେଇଛନ୍ତି, କବି ତାର ସଦ୍ ବ୍ୟବହାର କରିବା ଉଚିତ ।"(୧୮) କବିର ଏହି ଆତ୍ମା ନିର୍ଦ୍ଦେଶିତ ଭୂମିକା ଦୁର୍ନୀତିଗ୍ରସ୍ତ ସମାଜରେ ସମ୍ଭବ ହୋଇପାରେ ନାହିଁ । ବାସ୍ତବ ଜଗତକୁ ଫେରି ଆସିଲା ପରେ କବିର ସ୍ୱପ୍ନ ସଂସାର ବାରମ୍ବାର ଭାଙ୍ଗିପଡେ । କବି ବିଦ୍ରୋହୀ ହୁଏ, ବିଦ୍ରୋହ କରି ବି ଆତ୍ମ ବିସର୍ଜନ କରେ । 'ଶେଲୀ ମୃତ୍ୟୁ' କବିତାର ମାନସିଂହ ଇଂରାଜୀ ରୋମାଣ୍ଟିକ୍ କବି ଶେଲୀଙ୍କ ପ୍ରତି ଶ୍ରଦ୍ଧା ନିବେଦନ କରି କହିଛନ୍ତି:– ପ୍ରେମର ବନ୍ୟାରେ ରକ୍ଷ ଧରାକୁ ଉପାଳ ଶେଲୀ ତାଙ୍କର କଳ୍ପନାର ଜଗତ ଗଢିବା ପାଇଁ ଗ୍ରହିଁଥିଲେ କିନ୍ତୁ ନିଷ୍ଠୁର ସମାଜ ତାଙ୍କର ଏହି ସ୍ୱପ୍ନକୁ ଭାଙ୍ଗିଦେଲା ।—

"କିନ୍ତୁ ଭାଙ୍ଗିଅଛି ସ୍ୱପ୍ନ—ମାନବର ଶୁଭ ଅଭିଳାଷୀ,<br>
ମନୁଷ୍ୟର ହୀନତାରେ ନିଷ୍ପେଷିତ, ସେ ସ୍ୱପ୍ନ–ବିଳାସୀ ।<br>
ପକ୍ଷାହତ ପକ୍ଷୀ ପରି ଉଡିବାର ବାସନା ଶେଳୀର<br>
ଅଧିକୁ ଅଧିକ ବଢେ, ହେଉଥିଲେ ବିକଳ ଶରୀର ।"(୧୩)

ସଂଗ୍ରାମ କରି କରିଶେଲୀ ଶେଷରେ ମରିଯାଇଛନ୍ତି । କବି ବି ସେମିତି ମରେ । ସମାଜରେ ଦଳିତ ପତିତଙ୍କ ପାଇଁ ସଂଗ୍ରାମ କରି, ସେମାନଙ୍କ ପାଇଁ ସ୍ୱର ଉତ୍ତୋଳନ କରି କରି । ସତ୍ୟ ନ୍ୟାୟ ଲାଗି ଜେହାଦ୍ ଘୋଷଣା କରି ସେ ବାରମ୍ବାର ପ୍ରମିଥିଅସ୍ ସାଜେ । ସେ ହୀନ ଦୁଃସ୍ଥ ଦଳିତର ବନ୍ଧୁ ହୋଇ ପଡେ

"ସତ୍ୟ ନ୍ୟାୟ ଲାଗି ଏବେ, ଯିଏ ଯହିଁ ହୁଏ ନିର୍ଯ୍ୟାତିତ,<br>
ସେ ଏକ ଜୀବନ୍ତ ଶେଲୀ—ପ୍ରମିଥିଅସ୍ ଭୀତି–ବିବର୍ଜିତ ।<br>
ତମେ ଶେଲୀ, ଦେଖାଇଛ କବି କିସ ହେବାର ଉଚିତ—<br>
କବି ଖାଲି ନ ରଚିବ ମଦ–ଓଠ–ସୁଆଦି ସଂଗୀତ ।<br>
ବିଦ୍ରୋହୀ ସେ, ଜଗତର ହୀନ ଦୁଃସ୍ଥ ଦଳିତର ବନ୍ଧୁ,<br>
ତା ଲେଖନୀ ଅଶ୍ରୁ ତେଜେ, ନେବ କେହ୍ନେ ଭାରା ଜନସନ୍ଧୁ ।<br>
ସ୍ୱାର୍ଥହୀନ, ପାପହୀନ, ସତ୍ୟ–ସନ୍ଧ, ଉର୍ଦ୍ଧ୍ୱଗ ଜୀବନ,<br>
ରୂପପାୟୀ, ପ୍ରେମମୟ, ନରେ–ଜୀବେ–ନିରତ–କରୁଣ ।<br>
କବିର ଏ ଛବି ଶେଲୀ, ଦେଶେ ଦେଶେ ସାହିତ୍ୟେ ସାହିତ୍ୟେ,<br>
ତୁମ ଲାଗି ବ୍ୟାପି ଅଛି, ଭାଷା ଆଉ ମାନବର ହୀତେ ।"(୧୨)

ନିଜ ଜୀବନର ଚରମ ବ୍ୟର୍ଥତା ଭିତରେ କବି ନୂଆ ଜଗତର ମୂଲ୍ୟବୋଧ ରଚନା କରେ । ଆଗାମୀ କାଳର ସ୍ବପ୍ନ ଦେଖିଥାଏ । ମାନସିଂହ 'ସେଦିନର କବିତା'ରେ ଚଳିଆ ଜୀବମାନଙ୍କ ସହିତ ନିଜକୁ ମିଳାଇ ଦେଇଛନ୍ତି । ନିଜର ଅଧିକାରକୁ ଜାହିର କରିବା ଲାଗି, ସଂଗ୍ରାମ କରିବା ଲାଗି ଆହ୍ବାନ କରିଛନ୍ତି । ମାନସିଂହଙ୍କ ଆହ୍ବାନ ବହୁ ସମୟରେ ଗାନ୍ଧିବାଣୀର ଅତି ନିକଟବର୍ତ୍ତୀ ହୋଇପଡିଛି ।:—

"ହିଂସା, ଘୃଣା ନ କରି କାରେ ନ ଆଣି ମନେ କାହାର ନାଶ,
ନିଜର ମୂଲ୍ୟ ମନରେ ହେଜି ଏକତ୍ରିତେ ଜୋ'ରେ ଭାଷ ।
ବହୁତ ଭାଇ ପଡିବ ଖସି, ଶୋଷକ ଆସି ହୋଇବେ ସାଥୀ,
ଲୋକ-ଦୁଃଖର ମାରକ ବୋଝ ହୋଇବ ଲଘୁ, ସ୍କନ୍ଧେ ଯାଚି ।
କିନ୍ତୁ ମନେ ରଖିଥା ସଦା, ସମୂହ ଶୁଭ ଜାତି, ଦେଶର;
ନିଜ ସୁବିଧା ଖୋଜିଲେ ଖାଲି, ତମେଭ ହେବ ଜାତିର ଶତ୍ରୁ ।
ସମସ୍ତେରେ ଲାଗିବା ଆସ ଏପରି ଗୋଟିଏ ସମାଜ ପାଇଁ,
ସକଳେ ଯହିଁ ସେବକ ଖାଲି, ହାକିମ ନାହିଁ, ସକଳେ ଭାଇ ।"(20)

ରୋମାଣ୍ଟିକ କାବ୍ୟାଦର୍ଶ କବିର ସାମାଜିକ ଭୂମିକାକୁ ସ୍ବୀକାର କରେ । ସମାଜର ମଙ୍ଗଳ ଲାଗି କବି ବିପ୍ଳବୀ ଆସୁହୃତା ବିଦ୍ରୋହୀଭାବକୁ ସେ ସମ୍ମାନ ଜଣାଏ । କିନ୍ତୁ ସେ ସବୁର ସୀମାରେଖା ବା ସୂକ୍ଷ୍ମରୂପ ସେ କେବେ ଚିହ୍ନନ କରେ ନାହିଁ । ସେଇଥିପାଇଁ ଶେଲୀ ନ୍ୟାୟ୍ୟ ସତ୍ୟର ସଂଗୀତ ଗାଇଲେ ବି ରୋମାଣ୍ଟିକ କବି ହୋଇ ରହିଥିଲେ । ମାନସିଂହଙ୍କ କ୍ଷେତ୍ରରେ ମଧ୍ୟ ସେଇଆହିଁ ଘଟିଛି । ବୟସ ବଢିବା କ୍ରମେ ମାନସିଂହଙ୍କର ସାହିତ୍ୟାଦର୍ଶ ଲୋକଚ୍ଛାଡି ଲୋକୋତ୍ତରକୁ ଗତି କରିଛି । ସେ ଅତୀନ୍ଦ୍ରିୟ ଜଗତ ଭିତରେ ଶ୍ରେଷ୍ଠ କବିତାର ଉପାଦାନ ସନ୍ଧାନ କରିଛନ୍ତି ।

## ଅତୀନ୍ଦ୍ରିୟ ପ୍ରତି ଆକର୍ଷଣ——କଳା ଓ ସାହିତ୍ୟରେ ପରମ ମୂଲ୍ୟର ସନ୍ଧାନ :

ଜୀବନର ଶେଷ ପର୍ଯ୍ୟାୟରେ ମାନସିଂହଙ୍କର ଆଦର୍ଶବାଦୀ ମନ ଏକ ଅଲୌକିକ ଶକ୍ତିର ଅନ୍ବେଷଣରେ ବାହାରି ପଡିଥିଲା । ଜୀବନର ଶେଷ ସ୍ତରରେ ମାନସିଂହ ଏକ ଅରୂପ ଦେବତାର ପଦଧ୍ବନି ଉତ୍କର୍ଣ୍ଣହୋଇ ଶ୍ରବଣ କରିବାକୁ ଯତ୍ନ କରିଥିଲେ । ବୌଦ୍ଧ ତଥା ନିରୀଶ୍ବର ଦାବୀ କରୁଥିବା ମାନସିଂହ ପରମ ଶକ୍ତିର ସନ୍ଦର୍ଶନ ପାଇଁ ଉଦ୍‌ଗ୍ରୀବ । 'ଅକ୍ଷତ', 'ଜୀବନଚିତା', 'କ୍ରୁଶ', 'ସିନ୍ଧୁ ଓ ବିନ୍ଦୁ', 'ଗୀତା ମହାତ୍ମ୍ୟ' ତାଙ୍କର ସମକାଳୀନ ଚିନ୍ତାଧାରାର ସ୍ବାକ୍ଷର ବହନ କରେ । ସଂପୃକ୍ତ ନିବନ୍ଧର ଷଷ୍ଠ ଅଧ୍ୟାୟରେ ମାନସିଂହଙ୍କର ଭଗବାନ ସଂପର୍କୀତ ବିଶ୍ବଧାରା ସ୍ଥାନିତ । କିନ୍ତୁ ଏଠାରେ **ଲକ୍ଷ୍ୟ କରିବାର ବିଷୟ ହେଉଛି; ତାଙ୍କର ଧର୍ମ ଜିଜ୍ଞାସାକୁ କେବଳ** ପ୍ରଭାବିତ ନୁହେଁ, ବକ୍ଷମାଣ କାଳରେ

ନିମ୍ନରୂପେ କରିବାକୁ ଚେଷ୍ଟା କରିଥିଲେ । କବି ରବୀନ୍ଦ୍ର ସମ୍ପର୍କିତ ତାଙ୍କର ଏକ ପ୍ରବନ୍ଧରେ ଏହି ଅତୀନ୍ଦ୍ରିୟବାଦୀ ସାହିତ୍ୟ ଦୃଷ୍ଟି ସ୍ପଷ୍ଟ "କବିତା ଆରାଧିତ ଓ ସମ୍ମାନିତ ହେବାର ତୃତୀୟ ଓ ଶେଷ କାରଣ ଏଇ ହୋଇପାରେ ଯେ, ତାହା ମନୁଷ୍ୟକୁ ଉନ୍ନତ କରାଏ, ଉର୍ଦ୍ଧ୍ୱଗ କରାଏ । ଏହି ଜୀବନ ଓ ଜଗତପ୍ରତି ନିବିଡ ତୃଷ୍ଣା ଓ ମମତା ସତ୍ତ୍ୱେ, ଏହାମଧ୍ୟ ସତ୍ୟ ଯେ ତାର ଅବଚେତନରେ ମନୁଷ୍ୟ ଏମାନଙ୍କ ପ୍ରତି ବିଦ୍ରୋହୀ । ଚିରକାଳ ଧରି ତେଣୁ ସେ ଏମାନଙ୍କର ବନ୍ଧନ କାଟି ସ୍ୱାଧୀନ ହେବାର ସ୍ୱପ୍ନ ଦେଖି ଆସିଛି । ସେ ବରାବର ଗରୁଡ ପରି ସୁଧାପାନ କରିବା ପାଇଁ ଇନ୍ଦ୍ରର ବଜ୍ର ପ୍ରହାରର ଆଶଙ୍କା ସତ୍ତ୍ୱେ ଅନ୍ତରୀକ୍ଷ ଆଡକୁ ଧାବମାନ ହୋଇ ଆସିଛି । ଜଗତର ସୀମିତତା, କ୍ଷୁଦ୍ରତା, ସଂକୀର୍ଣ୍ଣତାକୁ କାଟି ମନୁଷ୍ୟର ଚିତ୍ତ ଖୋଜି ଆସିଛି ଏକ ବନ୍ଧନ ହୀନ, ସୀମାହୀନ ବିରାଟ ସତ୍ତାରେ ନିଜକୁ ମିଳାଇ ଦେବାକୁ ଏବଂ ମନୁଷ୍ୟର ସେହି ପରମ ଦୈବତ ତୃଷ୍ଣାକୁ ଚିରକାଳ ଶାନ୍ତ କରି ଆସିଛି କେବଳ କବିତା ।"(21)

ମାନସିଂହଙ୍କ ଦୃଷ୍ଟିକୋଣର ଏହି ପ୍ରକାରେଣ କେତେଜଣ ବିଶିଷ୍ଟ କବିଙ୍କ ଆଲୋଚନାକୁ ନିରୀକ୍ଷଣ କଲେ ସ୍ପଷ୍ଟ ଜଣାପଡେ । ଖ୍ରୀ: ୧୨୩୦ ରେ ପ୍ରକାଶିତ ତାଙ୍କର ରବୀନ୍ଦ୍ରନାଥଙ୍କ କବିତା 'ପ୍ରବନ୍ଧରେ, ରବୀନ୍ଦ୍ରନାଥଙ୍କ ସୌନ୍ଦର୍ଯ୍ୟ ଦୃଷ୍ଟି ତାଙ୍କୁ ବେଶି ପ୍ରଭାବିତ କରିଛି । ତାଙ୍କ ମତରେ ରବୀନ୍ଦ୍ରଙ୍କ କବିତାରେ ଏହି ସୁନ୍ଦର ବିଶ୍ୱ ସୌନ୍ଦର୍ଯ୍ୟର ଦେବତା ରୂପରେ ଅଧିଷ୍ଠିତ, ରୂପ-ରସରେ ତାହା ଉଦ୍ଭାସିତ ।—"ରବୀନ୍ଦ୍ରନାଥଙ୍କ କବିତାରେ ଗୋଟିଏ ମଧୁରଭାବ ଏଇଯେ—ଏମ ସୁନ୍ଦର ବିଶ୍ୱକୁ ଏକ ସୌନ୍ଦର୍ଯ୍ୟ-ଦେବତା-ରୂପ-ରସରେ ଉଦ୍ଭାସିତ କରି ରଖିଛନ୍ତି । ସେଇତ ଧରଣୀରେ ଫୁଲ, ଆକାଶରେ ତାରା ଫୁଟାଏ, ଷଡଋତୁ ତାର ଲୀଳା, ଜଗତରେ ଯାହା କିଛି ସୁନ୍ଦର, ତାହା ତାଙ୍କରି କାର୍ଯ୍ୟ ।"(22)

ମଧୁସୂଦନଙ୍କ ସମ୍ପର୍କିତ ଆଲୋଚନାରେ ଏହି ପରିବର୍ତ୍ତିତ ଦୃଷ୍ଟିକୋଣ ମଧ୍ୟ ସ୍ପଷ୍ଟ । ସାହିତ୍ୟିକ ଜୀବନର ଆବିର୍ଭାବରେ ଲିଖିତ 'ରାଧାନାଥ ଓ ମଧୁସୂଦନ 'ପ୍ରବନ୍ଧରେ ସେ ଲେଖିଥିଲେ—"ବାକ୍ୟଂରସାତ୍ମକଂ କାବ୍ୟମ୍; ମଧୁସୂଦନଙ୍କ ଅଧିକାଂଶ କବିତାରେ ଏହି ରସ ପଦାର୍ଥର ଅଭାବ ଲକ୍ଷିତ ହୁଏ । ରସ ଅନୁଭୂତିରୁ ଆସେ । ଅନୁଭୂତିର ସ୍ଥାନ ହୃଦୟ । ମଧୁସୂଦନଙ୍କ କବିତା ଅନେକ ଭାବରେ ହୃଦୟରୁ ନ ଆସି ମସ୍ତିଷ୍କରୁ ଜାତ ହୋଇଅଛି ।"(23) କିନ୍ତୁ ଖ୍ରୀ: ୧୨୬୦ରେ ପ୍ରକାଶିତ 'ରବୀନ୍ଦ୍ରନାଥ 'ପ୍ରବନ୍ଧରେ ସେ ଶ୍ରେଷ୍ଠତମ କବିତାର ଉଦାହରଣ ଭାବରେ 'ଋଷିପ୍ରାଣେ-ଦେବାବତରଣ 'କଥା ଅବତାରଣା କରିଛନ୍ତି । ତାଙ୍କମତରେ ସଂପୃକ୍ତ କବିତା ପାଠକକୁ ଅମର୍ତ୍ତ୍ୟ ସ୍ତରକୁ ନେଇ ଏକ ଅସୀମ ସତ୍ତା ସହିତ ତାହାର କ୍ଷୁଦ୍ର ସତ୍ତାକୁ ମିଶାଇ ଦିଏ । ଋଷିପ୍ରାଣରେ ଦେବାବତରଣ ପାଠକରି ପାଠକ ପ୍ରାଣରେ ଦିବ୍ୟଭାବର ପ୍ରତୀତି ଆସେ । କବିତାରେ କଥିତ ଋଷିପରି ତାହା ପାଠକର ଲୋଚନ କମଳ ହଠାତ୍ ଜ୍ୟୋତିର୍ମୟ ଆଲୋକ ସନ୍ଦର୍ଶନ କରେ । ପ୍ରାଣରେ ବାହ୍ୟ ଆଭ୍ୟନ୍ତରଭେଦ କୁଆଡେ ଲୁଚିଯାଏ । ମାନସିଂହଙ୍କର ଏହି ଅତୀନ୍ଦ୍ରିୟ ଦୃଷ୍ଟି ଅବଶ୍ୟ ବେଶିଦିନ ଧରି ଅକ୍ଷୁଣ୍ଣ ରହିପାରି ନଥିଲା । ଖ୍ରୀ: ୧୨୬୦ ପରେ ପରେ ସେ ପୁଣି ଆଦର୍ଶବାଦୀ ଅଥଚ ପୃଥିବୀ ସନ୍ନିହିତ ଚିନ୍ତାଧାରା ପ୍ରତି ଆକୃଷ୍ଟ ହୋଇ ପଡିଥିଲେ । ଗୀତା ମହାତ୍ମ୍ୟ ଏହାର ଚମତ୍କାର ଦୃଷ୍ଟାନ୍ତ ।

॥ ମାନସିଂହଙ୍କ ବିଚାରଧାରା ॥

'କମଳାୟନ' କାବ୍ୟରେ ମାନସିଂହ ଲେଖିଛନ୍ତି ଯେ ଅବିନାଶଚନ୍ଦ୍ରଙ୍କର ପରିବାରରେ ରବୀନ୍ଦ୍ର ସଂଗୀତ ଗାନ କରାଯାଏ । ଏହି ସଂଗୀତର ପ୍ରଭାବ ଶ୍ରୋତା ହୃଦୟରେ ଯେଉଁ ଦିବ୍ୟ ଭାବର ସ୍ପର୍ଶ ଆଣିଦିଏ, ତାହାର ବର୍ଣ୍ଣନା କରି ସେ ତାଙ୍କର ଅତୀନ୍ଦ୍ରିୟ ଭାବଧାରା ପ୍ରତି ଆକର୍ଷଣର ପରିଚୟ ଦେଇଛନ୍ତି ।—

"କରୁଣା କରର ଗାନ ରବୀନ୍ଦ୍ର ସଂଗୀତ
ଅତୀନ୍ଦ୍ରିୟ ଭାବେ ହୁଏ ଦ୍ରବୀଭୂତ ଚିତ୍ତ;
ଆତ୍ମା ଯେହ୍ନେ ଲଘୁ ହୋଇ କ୍ରମେ ଭାସିଯାଏ
ଊର୍ଦ୍ଧ୍ୱେ ଊର୍ଦ୍ଧ୍ୱେ ସଂଗୀତର ତରଂଗ ପ୍ରବାହେ,
ପାର୍ଥିବ କ୍ଷୁଦ୍ରତା ଲୁଚେ, ସାର୍ବଭୌମ ଭାବ
ଶ୍ରୋତାର ମନରେ ରଚେ ପବିତ୍ର ପ୍ରଭାବ ।
କମଳେ ଅଜ୍ଞାତ ଥିଲା, କରିବା ସଂଗୀତ
ଆତ୍ମାକୁ ଉଦ୍‌ବୁଦ୍ଧ, କ୍ଳିନ୍ନ ଚିତ୍ତେ ବିଭୂଷିତ ।
ରବୀନ୍ଦ୍ରର ବାଣୀ ଆଉ କଣ୍ଠ କରୁଣାର
ମିଶୁଁ, ପ୍ରତିଭାତ ହେଲା ନୂତନ ସଂସାର ।
ମନ୍ତ୍ର–ମୁଗ୍ଧ ପରି ଶୁଣେ; ଅପେକ୍ଷାରେ ଥାଏ
ଦିନ ସାରା, ପ୍ରାର୍ଥନାର ମଧୁକ୍ଷଣ ଯାଏଁ ।
ଅବିନାଶ କରିଥାନ୍ତି ପାଠ ବା ପ୍ରାର୍ଥନା;
କିଛି କ୍ଷଣ ଧ୍ୟାନେ ହୁଏ ଶେଷ ଉପାସନା ।
ସଂଗୀତ ପ୍ରାର୍ଥନା ଅବା ପାଠ ପ୍ରଭାବରେ
କମଳ ନୟନୁ ବେଳେ ବେଳେ ଅଶ୍ରୁ ଝରେ ।"(24)

'ଅକ୍ଷତ' କବିତା ଗ୍ରନ୍ଥ ତଥା 'ଜୁଣ'ର ବିଭିନ୍ନ କବିତାରେ ଏହି ଅତୀନ୍ଦ୍ରିୟ ଭାବର ସଂପର୍କ ଉପସ୍ଥାପିତ । କବି ଲୌକିକ ରୂପର ସନ୍ଧାନ ଦେଇସାରିଲା ପରେ ତା'ର ଦୃଷ୍ଟି କ୍ରମଶଃ ଅରୂପ ଜଗତକୁ ଘୁଞ୍ଚିଯାଏ । ଇନ୍ଦ୍ରିୟ ଜଗତର ଅପୂର୍ଣ୍ଣତା ଭିତରେ ସେ ଅଣନିଃଶ୍ୱାସ ହୋଇପଡେ, ନିଜକୁ ଅପୂର୍ଣ୍ଣ ମନେକରେ ।

"ଅପୂର୍ଣ୍ଣ ମୁଁ, ଖୋଜେ ମୋର ମଧୁର ପୂର୍ଣ୍ଣତା
ତୁମପାଇଁ ତେଣୁ ପ୍ରାଣେ ତୀବ୍ର ଏ ମମତା ।" (25)

ଭୂମି ମଧ୍ୟରେ ସେ ଆଉ ସୀମାବଦ୍ଧ ରହେନାହିଁ, ସେଥିରେ ସେ ଭୂମାକୁ ପ୍ରତ୍ୟକ୍ଷ କରେ । କବିର ଅହଂକାର ସାଧକର ଆତ୍ମ–ଶୂନ୍ୟତା ଉପଲବ୍ଧିରେ ରୂପାନ୍ତରିତ ହୁଏ । କବି ଅନୁଭବକରେ ତାର ଅହମିକା ପରମଶକ୍ତିର ଏକ ଇନ୍ଦ୍ରଜାଲମାତ୍ର ।

॥ ମାନସିଂହଙ୍କ ବିଗ୍ରହଧାରା ॥

"ବିରାଟ ଭୂମାରେ କରି ମୁଗଧ ନମସ୍କାର,
କହିବି 'ମୋ ଅହମିକା ତବ ଅଙ୍କାର' । "(26)

ଏହି ଅତୀନ୍ଦ୍ରିୟ ସାଧନା ଫଳରେ କବି କିନ୍ତୁ ସନ୍ଥ ହୋଇ ଯାଇ ନାହାନ୍ତି ବା ଅତୀନ୍ଦ୍ରିୟ ଭାବ ତାଙ୍କୁ କବି ହେବାରୁ ବିରତ କରିନାହିଁ । କବି ସ୍ୱଭାବତଃ ଭିନ୍ନ ଜଗତର ଅଧିବାସୀ । ସଂସାରର କ୍ଷୁଦ୍ର ମଳିନତା ଭିତରୁ,ଇନ୍ଦ୍ରିୟ ଜଗତର ଆବର୍ଜନା ଭିତରୁ ସେ ଉର୍ଦ୍ଧ୍ୱରେ । ସେଥିପାଇଁ ପରବର୍ତ୍ତୀ ଜୀବନର ଅତୀନ୍ଦ୍ରିୟ ପ୍ରୀତି ମାନସିଂହଙ୍କୁ କବିତା ବିମୁଖ କରିନାହିଁ,ବରଂ କବି ପାଇଁ ସେ ନୂତନ ଭୂମିକା ସନ୍ଧାନ କରିଛନ୍ତି । ସେ ପରମ ପୁରୁଷଙ୍କ ନିକଟରେ ପ୍ରାର୍ଥନା କରିଛନ୍ତି,ବିଶ୍ୱକବିମାନଙ୍କ ଭିତରେ ଆଉଥରେ କବି ଭାବରେ ଅବତୀର୍ଣ୍ଣ ହେବାପାଇଁ । ପରମ ପୁରୁଷ ମହିମା ଗାନ ସହ ତମାନ୍ଧ ମାନବକୁ ପଥ ଦେଖାଇବା ହେବ ତାଙ୍କର କାର୍ଯ୍ୟ । ପଶୁତ୍ୱର ସଂହାର କରି ଦେବତ୍ୱର ପ୍ରତିଷ୍ଠା ତାଙ୍କ ଜୀବନର ହେବ ସର୍ବଶ୍ରେଷ୍ଠ ସାଧନା । ନିଜର ମୁକ୍ତିପାଇଁ ନୁହେଁ,ସନ୍ତୋଷ ବା ବିଳାସ ପାଇଁ ନୁହେଁ;ଜୀବନରେ ସତ୍ୟ ଶିବ ସୁନ୍ଦରର ବିକାଶ ଓ ଭଗବାନଙ୍କର ମହିମା ଗାନ ତାଙ୍କ ସାଧନାର ଲକ୍ଷ୍ୟ

"ମାଗେ ନା ମୁଁ ନିଜମୁକ୍ତି ,ସନ୍ତୋଷ,ବିଳାସ,
ହେ କବି,କରାଅ ମତେ କବି ଜନ୍ମେ ଜନ୍ମେ,
ଗୀତେ ଫୁଟାଇବି ସତ୍ୟ, ଶିବର ବିକାଶ,
ଜଗାଇବି ଦେବତାରେ ମାନବ ମରମେ ।
କବି–ହୃଦେ ବାସ ତବ,କବି ଲେଖନୀରେ
ମହିମା ତୁମ୍ଭର ଫୁଟ ମାଟି ଧରଣୀରେ ।"(27)

ବ୍ଲେକ୍,ଓ୍ୱାର୍ଡସ୍‌ଓ୍ୱାର୍ଥଙ୍କ ଠାରୁ ରବୀନ୍ଦ୍ରନାଥଙ୍କ ପର୍ଯ୍ୟନ୍ତ ବହୁ ରୋମାଣ୍ଟିକ କବି ଅତୀନ୍ଦ୍ରିୟବାଦୀ । ତାଙ୍କର ତେଣୁ ଅତୀନ୍ଦ୍ରିୟବାଦ ରହସ୍ୟମୟ ଜଗତପ୍ରତି ଆକର୍ଷଣ,ରୋମାଣ୍ଟିକ କବିତାର ଅନ୍ୟତମ ବିଭାଗ । ମାନସିଂହଙ୍କ ଜୀବନର ଏହି ଅତୀନ୍ଦ୍ରିୟ ଭାବ ସହ ତାଙ୍କ କବି ଜୀବନ ବା ରୋମାଣ୍ଟିକ୍ ଭାବଧାରା ସହିତ କୌଣସି ବିରୋଧ ନାହିଁ । ସେଥିପାଇଁ 1953 ମସିହାରେ ରଚିତ ତାଙ୍କର 'ଶିଳ୍ପୀବନ୍ଦନା' କବିତାରେ କୋଣାର୍କର ବାରଶତ ଶିଳ୍ପୀ,ତାଙ୍କୁ ରୋମାଣ୍ଟିକ୍ କବି ଭଳି ପ୍ରତୀତ ହୋଇଛନ୍ତି । ବାସ୍ତବ ଜୀବନର ଦୈନ୍ୟ ସେମାନଙ୍କର ଅସଲ ରୂପ ସୃଷ୍ଟିକୁ ମୂମର୍ଷୁ କରି ପାରିନାହିଁ । କୋଣାର୍କ ରାଜାର ଆଦେଶରେ ନିର୍ମିତ ସାମନ୍ତ ରୁଚି ଛାଞ୍ଚରେ ଗଠିତ ଶିଳାସ୍ତୁପମାତ୍ର ନୁହେଁ; ତାହା ବାରଶତ କବିଙ୍କ ଦ୍ୱାରା ରଚିତ ଏକ ମହାକାବ୍ୟ । ସେମାନଙ୍କର ଅନନ୍ୟ ରୂପ ଦୃଷ୍ଟିର ତାହା ପ୍ରକାଶ

"ଦରିଦ୍ର କୁଟୀରେ ବସି ଚୀର ପିନ୍ଧି କବି ବାରଶତ,
କେମନ୍ତେ କଳ୍ପିଲ ମନେ ଅପୂର୍ବ ଏ ରୂପ ଶତ ଶତ ?
ରାଜାର ଭୃତ୍ୟତା,ନିଜ ଦୀନତାର ବହୁ ଉର୍ଦ୍ଧେ ଭାସି,
ହେ ସହସ୍ର କବି, ତବ କଳ୍ପ–ସରୁ ଏ କମଳ ରାଶି

କେମନ୍ତେ ତୋଳିଲ ପଟେ ? ଶିଳା ଦେହେ ଦେଲ ତାହା ଲେଖି
ପାଷାଣର ଏ କବିତା, ମୁଗ୍ଧ ବିଶ୍ୱ ଚଢ଼େ ଦେଖି ଦେଖି ।"(28)

ପ୍ରାଥମିକ ଜୀବନରୁ ଶେଷ ପର୍ଯ୍ୟାୟ ପର୍ଯ୍ୟନ୍ତ ମାନସିଂହଙ୍କ କାବ୍ୟ ଦୃଷ୍ଟିରେ ଅନ୍ତରଣ ରହିଛି, କିନ୍ତୁ ମୌଳ ଭିନ୍ନତା ନାହିଁ । କାବ୍ୟର ରଚନା ଓ ପରମ ମୂଲ୍ୟ ନେଇ ତାଙ୍କ ଦୃଷ୍ଟିକୋଣରେ କିଛିଟା ଭିନ୍ନତା ଆସି ଥିବେ ବି କଳା ସୃଷ୍ଟିର ରହସ୍ୟ, କିନ୍ତୁ ସୃଷ୍ଟିର ଅନନ୍ୟତା ତଥା କଳା ଉପଭୋଗର ପ୍ରକୃତ କ୍ଷେତ୍ର ନେଇ ତାଙ୍କ ମନ ଭିତରେ କୌଣସି ଦ୍ୱନ୍ଦ୍ୱ ସୃଷ୍ଟି ହୋଇଥିବା ଦେଖାଯାଏ ନାହିଁ । 'କାଳିଦାସ ଏଣ୍ଡ ସେକ୍ସପିଅର'ବହିରେ ସେ ଲେଖିଛନ୍ତି: 'କବି, ନାଟ୍ୟକାର, ସଂଗୀତଜ୍ଞ, ସ୍ଥପତି ଓ ଚିତ୍ରକରର ଅଭିବ୍ୟକ୍ତିରେ ବୈଚିତ୍ର୍ୟ ଥାଇପାରେ କିନ୍ତୁ ସେମାନେ ଉପଯୋଗ କରୁଥିବା ବସ୍ତୁ ସବୁବେଳେ ସମାନ; ତାହା ହେଲା ମଣିଷ ଓ ତାର ସ୍ୱପ୍ନ । ସମସ୍ତ ସୃଷ୍ଟିଧର୍ମୀ କଳାକାରମାନଙ୍କର ଚରମ ଲକ୍ଷ୍ୟ ହେବା ସୌନ୍ଦର୍ଯ୍ୟ ମଧ୍ୟ ଦେଇ ସତ୍ୟର ପ୍ରତୀତି ଓ ତାର ଉପସ୍ଥାପନ । କାଳ, ସ୍ଥାନ ଓ ପରିସ୍ଥିତିର ସୀମାବଦ୍ଧତା ଓ ଶିଳ୍ପୀର ଆପଣା ବ୍ୟକ୍ତିଗତ ପ୍ରକୃତି, ବିଭିନ୍ନ ମାଧ୍ୟମପାଇଁ ତାଙ୍କୁ ବାଧ୍ୟ କରୁଥିବେ ବି ଏହା ମୂଳତଃ ସମାନ । ତାଙ୍କ ମତରେ ସମସ୍ତ କଳାର ଏହି ନିର୍ଯ୍ୟାସ ପ୍ରତି ଆଖିବୁଜିଦେବା ଉଚିତ ନୁହେଁ । କାଳିଦାସ ଏବଂ ସେକ୍ସପିଅରଙ୍କ ର ଆଲୋଚନା କରି ସେ ଦେଖାଇଛନ୍ତି :—ମହତ କଳା ଆକସ୍ମିକ ଅଥବା ଅସ୍ଥିର ନୁହେଁ । ଏହା ସର୍ବଦା ମହା ଜାଗତିକ । ଆପଣା ନିମ୍ନମନେ ସେ ନୃତ୍ୟ କରେ କିନ୍ତୁ ତାହା ଉଦ୍ଭ୍ରାନ୍ତ ନହେଁ ।'(29) ସେହି କାଳିଦାସ ଏଣ୍ଡ ସେକ୍ସପିଅର'ପୁସ୍ତକରେ ସେ ପୁନଶ୍ଚ ସର୍ବୋତ୍ତମ ଓ ମହାନ୍ ସାହିତ୍ୟ ସୃଷ୍ଟିର ଲକ୍ଷଣ ତଥା ଉପାଦାନ ସମ୍ପର୍କରେ କହିଛନ୍ତି :—ପ୍ରତ୍ୟେକ ସାହିତ୍ୟ ସୃଷ୍ଟି ମଣିଷ ତଥା ପ୍ରକୃତିକୁ ଆପଣାର କରିପାଏ । ଏହା ସୀମିତ ଭିତରେ ବିଚରଣ କରୁ କରୁ ଅସୀମର ସନ୍ଧାନ ପାଏ । (30)

## ମାନସିଂହଙ୍କ ବିଚାରରେ କବିତା ଓ କାବ୍ୟ :

ସାହିତ୍ୟ ଆଲୋଚନାର ରହିଛି ଦୁଇଟି ଦିଗ । ସେଥିରୁ ଗୋଟିଏ ଦିଗ ହେଲା ସାହିତ୍ୟ ସମ୍ପର୍କିତ କୌଣସି ତତ୍ତ୍ୱକୁ ପ୍ରତିଷ୍ଠା କରିବା; ତତ୍ତ୍ୱ ଆଲୋଚନା ଓ ପ୍ରତିଷ୍ଠା ଅବସରରେ କବି ଓ କାବ୍ୟର ଆଲୋଚନା ପରିସର ଭୁକ୍ତ କରିବା । ତା'ର ଦ୍ୱିତୀୟ ଦିଗ ହେଲା କୌଣସି ନିର୍ଦ୍ଦିଷ୍ଟ କାବ୍ୟ ବା କବିତା, କବି ବା କାବ୍ୟଧାରା ସମ୍ପର୍କରେ ଆଲୋଚନା କରି ଏକ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତ ବା ତତ୍ତ୍ୱରେ ଉପନୀତ ହେବା । ମାନସିଂହଙ୍କର ସାହିତ୍ୟ ସମ୍ପର୍କିତ ଆଲୋଚନା ମୁଖ୍ୟତଃ ଦ୍ୱିତୀୟ ଶ୍ରେଣୀର । କେତେବେଳେ ନିଜ ପୁସ୍ତକ ଓ ଅନ୍ୟ ପୁସ୍ତକର ମୁଖବନ୍ଧ ଆକାରରେ ତଥା ଅନ୍ୟ କେତେବେଳେ କବି ଓ କାବ୍ୟଧାରାକୁ ଆଲୋଚନା କଲାବେଳେ, ସେ ସାହିତ୍ୟ ସମ୍ପର୍କରେ ତାଙ୍କର ବିଚାରଧାରା ଉପସ୍ଥାପନ କରିଛନ୍ତି । ରବୀନ୍ଦ୍ରନାଥ, ରାଧାନାଥ, ଗୋପାଳକୃଷ୍ଣ, ସେକ୍ସପିଅର, ଶାରଳାଦାସ, ଭୀମଭୋଇ , ଗଙ୍ଗାଧର

ପ୍ରମୁଖଙ୍କ ସମ୍ପର୍କରେ ସେ ବିକ୍ଷିପ୍ତ ପ୍ରବନ୍ଧ ଆକାରରେ ବା ପୁସ୍ତକ ଆକାରରେ ଆଲୋଚନା କଲାବେଳେ, ନିଜର ସାହିତ୍ୟ ସମ୍ପର୍କିତ ମତବାଦକୁ ଉପସ୍ଥାପନ କରିଛନ୍ତି । ସାହିତ୍ୟ ସମ୍ପର୍କରେ ଆଲୋଚନା କରୁ କରୁ ସେ ସମଗ୍ର କଳା ଜଗତ ପ୍ରତି ଦୃଷ୍ଟିପାତ କରିଛନ୍ତି । ସାହିତ୍ୟ ପ୍ରସଙ୍ଗରେ ଚିତ୍ରକଳା ଭାସ୍କର୍ଯ୍ୟ ଓ ସଙ୍ଗୀତ ତାଙ୍କର ଆଲୋଚନା ପରିସରକୁ ପଶି ଆସିଛି । କିନ୍ତୁ ଏକଥା ମୂଳରୁ ସ୍ପଷ୍ଟ କରାଇଦେବା ଉଚିତ, ରବୀନ୍ଦ୍ରନାଥ ଯେଉଁଳି, ସାହିତ୍ୟ, ସାହିତ୍ୟ ପଥେ, ସାହିତ୍ୟର ସ୍ୱରୂପ ଓ ପଞ୍ଚଭୂତ ଆଦି ଗ୍ରନ୍ଥରେ ସାହିତ୍ୟର ସଂଜ୍ଞା ପ୍ରକରଣ ସମ୍ପର୍କରେ ଗଭୀର ତତ୍ତ୍ୱ ଉପସ୍ଥାପନ କରିଛନ୍ତି । ମାନସିଂହ ସେହିଭଳି ତାତ୍ତ୍ୱିକ ବିଚାର କରିଥିବାର ଜଣାଯାଏ ନାହିଁ । 'କବି ଓ ଅଭିଜାତ' ପ୍ରବନ୍ଧ କୌଣସି ତତ୍ତ୍ୱ ବ୍ୟାଖ୍ୟାନ କରିବା ଅପେକ୍ଷା ଗଳ୍ପ କହିବାରେ ନିଜର ବାହାଦୁରୀ ଦେଖାଇଛି । 'ମୁଁ କାହିଁକି ଲେଖେ' ଭିତରେ ଅବଶ୍ୟ ଆତ୍ମ ଜୀବନୀ ମୂଳକ ଆତ୍ମକଥା ଭିତ୍ତିରେ, ସାହିତ୍ୟ ସମ୍ପର୍କିତ କେତେକ ସାଧାରଣ ତତ୍ତ୍ୱ ଉପସ୍ଥାପନ କରିଛନ୍ତି । ଏହି ସାଧାରଣ ପରିଚିତ ତତ୍ତ୍ୱାବଳୀ ତାଙ୍କର ବିଭିନ୍ନ କବିତା, କାବ୍ୟ ଓ ନାଟକରେ ପରିଦୃଷ୍ଟ । ଏ ସବୁରୁ କବି କାବ୍ୟ ଓ କଳା ସମ୍ପର୍କରେ ତାଙ୍କ ବିଚାରର ପୁନର୍ଗଠନ କରାଯାଇପାରେ । କିନ୍ତୁ ତାଙ୍କର ମତାମତ ଗୁଡିକ ମୁଖ୍ୟତଃ ବିଭିନ୍ନ କବି ତଥା କାବ୍ୟର ଆଲୋଚନା ପ୍ରସଙ୍ଗରେ ଆସିଥିବାରୁ, ସମସ୍ତ ବିଷୟ ସମ୍ପର୍କରେ ତାଙ୍କର ଆଲୋଚନାକୁ ପର୍ଯ୍ୟାଲୋଚନା କରିବା ଅଧିକ ନିରାପଦ ।

ମାନସିଂହ ମୁଖ୍ୟତଃ ଜଣେ କବି । ତାଙ୍କ ରଚିତ ଗଳ୍ପ, ଉପନ୍ୟାସ, ନାଟକ, ପ୍ରବନ୍ଧ, ଆଲୋଚନା, ସବୁ ପ୍ରକାର ସାହିତ୍ୟ ରୂପ ଭିତରେ ହିଁ କବି ସ୍ୱରୂପ ଫୁଟି ଉଠିଛି । ବଙ୍ଗଳା ସାହିତ୍ୟର ପ୍ରସିଦ୍ଧ ଆଲୋଚକ ସ୍ୱର୍ଗତ ମୋହିତ୍ ଲାଲ୍ ମଜୁମ୍‌ଦାର ମାଇକେଲ୍ ମଧୁସୂଦନ ଦତ୍ତଙ୍କ 'ମେଘନାଦ ବଧ' କାବ୍ୟ ଆଲୋଚନା କରି କହିଥିଲେ– ଯେ ମଧୁସୂଦନ ମୁଖ୍ୟତଃ ଗୀତିକବି । 'ମେଘନାଦ ବଧ'କୁ ମହାକାବ୍ୟ ରୀତିରେ ରଚନା କରିଥିଲେ ବି, ତାହା ମୁଖ୍ୟତଃ ଏକ ଗୀତି କବିର ଆତ୍ମ ପ୍ରକାଶରେ ପରିଣତ ହୋଇଛି । କ୍ଲାସିକ୍ ଆଦର୍ଶରେ ରଚିତ ହେଲେବି ଏହାର ମୂଳ ପ୍ରବୃତ୍ତି ହୋଇ ଉଠିଛି ରୋମାଣ୍ଟିକ୍ ।'(୨।) ମାନସିଂହଙ୍କ କ୍ଷେତ୍ରରେ ତାହାହିଁ ଘଟିଛି । ତାଙ୍କର 'ରାଜକବି ଉପେନ୍ଦ୍ରଭଞ୍ଜ' ଗୀତିନାଟ୍ୟ, 'ସାଧନଚନ୍ଦ୍ର' ଭଳି ଏକାଙ୍କିକା, ତଥା 'ବୁଦ୍ଧ' ଭଳି ନାଟକ ରଚନା କଲାବେଳେ, ଗୀତିକବି ମାନସିଂହ ବାରମ୍ବାର ଆମ ସମ୍ମୁଖରେ ଛିଡା ହୋଇଛନ୍ତି । 'କମଳାୟନ'ଭଳି ଉପନ୍ୟାସିତ କାବ୍ୟ ବି ଯେଉଁ କେତୋଟି ଛୁଟ୍ ପ୍ରବନ୍ଧ କରେ, ତାହା ଗୀତିକବି ମାନସିଂହଙ୍କର ହିଁ ଆତ୍ମ ପ୍ରକାଶ । ସାହିତ୍ୟ ସମ୍ପର୍କରେ ମାନସିଂହ କିଛି କହିଲାବେଳେ, ମୁଖ୍ୟତଃ ଗୀତି କବିତା ବିଷୟରେ ହିଁ କହିଛନ୍ତି । ଏ ଭଳିକି କୋଣାର୍କର ମୂର୍ତ୍ତିଭଳି ଭାସ୍କର୍ଯ୍ୟ ଓ ଚିତ୍ରକଳା ସମ୍ପର୍କରେ ଆଲୋଚନା କଲାବେଳେ ଗୀତି କବିତା ହିଁ ପ୍ରଥମେ ତାଙ୍କ ମନରେ ଆସିଛି । ତେଣୁ କବି ଓ କବିତା ସମ୍ପର୍କରେ ତାଙ୍କର ଆଲୋଚନା ମୁଖ୍ୟତଃ କଳାତତ୍ତ୍ୱ ସମ୍ପର୍କରେ ସାଧାରଣ ଆଲୋଚନା । ଏହି ପ୍ରସଙ୍ଗରେ ତାଙ୍କର 'ରାଧାନାଥ' ପ୍ରବନ୍ଧକୁ ସ୍ମରଣ କରାଯାଇପାରେ । 'ରାଧାନାଥ' ପ୍ରବନ୍ଧରେ ସେ କବିତାର ଉପାଦାନ ସମ୍ପର୍କରେ ଆଲୋଚନା କରି ଲେଖିଛନ୍ତି—

## ॥ ମାନସିଂହଙ୍କ ବିଚାରଧାରା ॥

"କବିତାର ଶ୍ରେଷ୍ଠତାର ପ୍ରଥମ ଓ ପ୍ରଧାନ ଚିହ୍ନ ମାନବ ହୃଦୟର ଗଭୀର ଓ ଶାଶ୍ୱତ ଅନୁଭୂତିମାନଙ୍କୁ ସୁନ୍ଦର ବର୍ଣ୍ଣରେ ରଞ୍ଜିତ କରି ପ୍ରକାଶ କରିବା ।"(୩୨) ସାହିତ୍ୟରେ କଳ୍ପନା ରହିଲେ ହେଁ କଳ୍ପନା ମୂଳ ନୁହେଁ, ତାଙ୍କ ମତରେ "ଜୀବନ ହିଁ ସାହିତ୍ୟ ଜାହ୍ନବୀର ଗଙ୍ଗୋତ୍ରୀ" ରାଧାନାଥଙ୍କ କବିତା ସମ୍ପର୍କରେ ମାନସିଂହ ଯେଉଁ ମନ୍ତବ୍ୟ ପ୍ରକାଶ କରିଛନ୍ତି, ତାହାହିଁ ଆଦ୍ୟ ଜୀବନରେ କବିତା ସମ୍ପର୍କରେ ମାନସିଂହଙ୍କର ବିଚାରର ଚିତ୍ର । ମାନସିଂହ ଲେଖିଛନ୍ତି—"ରାଧାନାଥଙ୍କ ରଚନାରେ ମନୋଜ୍ଞ ଭାଷା ଅଛି, କଳ୍ପନାରେ ଇନ୍ଦ୍ରଧନୁସମ୍ଭବ ବର୍ଣ୍ଣୋତ୍ସବ ଅଛି, କିନ୍ତୁ ଯାହା କବିତାର ପ୍ରାଣ, ସେହି ମାନବ ହୃଦୟର ଗଭୀର ସ୍ପନ୍ଦନାନୁଭବ ସବୁ ନାହିଁ । ରାଧାନାଥ ଗ୍ରନ୍ଥାବଳୀ ସୁଲଳିତ ଭାଷାରେ ଲିଖିତ କେତେଗୁଡିଏ କିମ୍ବଦନ୍ତୀ ମାତ୍ର । ଏଥିରେ ମାନବିକତା ଓ ଆଧିଭୌତିକତାରେ ଲୟ ଲାଭ କରିଅଛି । ସତ୍ୟ ପରିବର୍ତ୍ତରେ କଳ୍ପନା ସ୍ଥାନମାଡି ବସିଅଛି, ଇତିହାସ ପରିବର୍ତ୍ତେ କାହାଣୀ କାର୍ଯ୍ୟ କରିଅଛି । ଏଥିରେ ଫଳ ଏହା ହୋଇଅଛି ଯେ, ତାଙ୍କ କାବ୍ୟର ନାୟକ ନାୟିକା ଜୀବନ୍ତ ମନୁଷ୍ୟ ନ ହୋଇ ଯକ୍ଷ ଗନ୍ଧର୍ବ ପରି ଅତିମାନୁଷ ହୋଇ ଉଠି ଅଛନ୍ତି କିମ୍ବା ନନ୍ଦିକା ପରି ଯନ୍ତ୍ରଚାଳିତ ପୁତଳିକା ହୋଇ ଅଛନ୍ତି । ମନୁଷ୍ୟ ଯେଉଁ ସୁଖଦୁଃଖ ମଧ୍ୟଦେଇ ଜୀବନ ଅତିବାହିତ କରେ, ଯେଉଁ ଅନୁଭୂତି ମଧ୍ୟଦେଇ ଜୀବନ ଉପଭୋଗ କରେ, ସେମାନଙ୍କର ଏ ସୁଖଦୁଃଖ ବା ଅନୁଭୂତି ନାହିଁ । ଏମାନଙ୍କର ସଂସାର ମନୁଷ୍ୟର ହାସ୍ୟକୋଳାହଳମୟ ସଂସାରଠାରୁ ବହୁ ଦୂରରେ ।"(୩୩)

ମାନସିଂହଙ୍କ ବିଚାରରେ:—" କବିତା ହୃଦୟର ଭାବ ପ୍ରକାଶ ମାତ୍ର । କ୍ରୌଞ୍ଚ ମିଥୁନ ମଧ୍ୟରୁ ଏକର ହତ୍ୟା ଦେଖି ବାଲ୍ମୀକି ଯେଉଁ ବ୍ୟଥା ଅନୁଭବ କଲେ, ତାହାର ଅଭିବ୍ୟକ୍ତିରେ ଜଗତର ପ୍ରଥମ କବିତା ସୃଷ୍ଟି ହେଲା । ବାଲ୍ମୀକିଙ୍କର ସେହି ଶ୍ଳୋକରେ ଉଚ୍ଚଚିନ୍ତା ବା ନିଗୂଢ ତତ୍ତ୍ୱ କିଛି ନାହିଁ—କେବଳ ଗୋଟିଏ କ୍ଷଣିକ ଅନୁଭୂତିର ପ୍ରକାଶ ମାତ୍ର । ବସ୍ତୁତଃ, କବିତା ଏହିପରି ଅନୁଭୂତିର ଅଭିବ୍ୟକ୍ତି ମାତ୍ର । ସଭ୍ୟତାର ଜଟିଳତା ବୃଦ୍ଧି ସଂଗେ ଅବଶ୍ୟ ମନୁଷ୍ୟର ଅନୁଭୂତି ଜଟିଳ ହୋଇ ଉଠିଲା ଏବଂ ସେଥି ସଂଗେ କବିତା ମଧ୍ୟ ଜଟିଳ ହୋଇଗଲା; କିନ୍ତୁ ମୂଳତଃ କବିତାର ସୃଷ୍ଟି ଅନୁଭୂତିର ଅଭିବ୍ୟକ୍ତିରେ ।"(୩୪)

ମାନସିଂହ ରାଧାନାଥ ଓ ମଧୁସୂଦନଙ୍କ କବିତା ତୁଳନା କରି କବିତା ସମ୍ପର୍କରେ ଦେଖିଛନ୍ତି:— "ରସ ଅନୁଭୂତିରୁ ଆସେ ମସ୍ତିଷ୍କରୁ ନୁହେଁ । ମାନବ ହୃଦୟର ଶାଶ୍ୱତ ଭାବରାଜି କବିତାର ପ୍ରାଣବସ୍ତୁ ହୋଇଥିବାରୁ ଓ ଏହି ମହାନ୍ ସତ୍ୟକୁ କବି ଗୋପାଳକୃଷ୍ଣ ତାଙ୍କର କବିତାରେ ପ୍ରକାଶ କରିଥିବାରୁ, କବି ଗୋପାଳକୃଷ୍ଣ ମାନସିଂହଙ୍କର ଜଣେ ପ୍ରିୟ କବି । ମାନସିଂହ କବିତାରେ ଛନ୍ଦ, ଶବ୍ଦଗୁମ୍ଫନ ତଥା ପାଣ୍ଡିତ୍ୟକୁ ନ ଦେଖି କବିତା ମଧ୍ୟରେ ଥିବା ଭାବ, ଅନୁଭୂତି ଓ ରହସ୍ୟମୟ ଗୁଣକୁ ସର୍ବାଗ୍ରେ ଦେଖିଛନ୍ତି ।

ସଂସାରର ଜଟିଳତା ମଧ୍ୟରେ ଛନ୍ଦିଦେଲେ କବିତାର ରମଣୀୟତା ନଷ୍ଟ ହୋଇଯାଏ । ପଲ୍ଲୀ-କବି ନନ୍ଦକିଶୋରଙ୍କ ବିଷୟରେ ଚର୍ଚ୍ଚା କରିବାକୁ ଯାଇ ଲେଖିଛନ୍ତି :—" କବିତା ଅତ୍ୟନ୍ତ ସୁକୁମାର କଳା । ତାର

ପରିପୋଷଣ ପାଇଁ ପ୍ରାୟ ସକଳ କବିଙ୍କୁ ଜନତା ଓ ସଂସାରର ମଳିନ ସ୍ପର୍ଶରୁ ଦୂରରେ ରହିବାକୁ ପଡ଼ିଛି ।"(35) ତାଙ୍କ ଦୃଷ୍ଟିରେ କବିତା ଏକ ଅବଗୁଣ୍ଠନବତୀ ନାରୀ । ଗୀତିକବିତାର କବି ଗିରି ନିର୍ଝରିଣୀ ପ୍ରାୟ ନର୍ତ୍ତନଶୀଳା ହେବେ ମଧ୍ୟ, କବିତାର ଅନ୍ତର୍ନିହିତ ସୌନ୍ଦର୍ଯ୍ୟ ରକ୍ଷା କରିବା ପାଇଁ ସେ ମତ ପ୍ରକାଶ କରିଛନ୍ତି । ଖ୍ରୀ: 1957 ମସିହା ବେଳକୁ କବିତା ସମ୍ପର୍କରେ କହିଛନ୍ତି ଯେ, "କବିତା ହେଲା ରହସ୍ୟମୟୀ ସରସ୍ୱତୀ । ସେ ଯେତିକି ରହିବେ ରହସ୍ୟାବୃତା, ଯେତିକି ଅସ୍ପଷ୍ଟ, ଯେତିକି ଅବୋଧ୍ୟ, ଅଗମ୍ୟ, ଅଜ୍ଞେୟ, ସେତିକି ତାଙ୍କର ମାଧୁର୍ଯ୍ୟ ବୃଦ୍ଧି ପାଇବାର ଆଶା । କେବଳ ଇତର ସାଧାରଣ ହିଁ ଖୋଜନ୍ତି ମାନେ, ଯାହା ହେବ ସ୍ପଷ୍ଟ, ସୀମାବଦ୍ଧ, ନିର୍ଦ୍ଦିଷ୍ଟ । ପ୍ରକୃତ ସମଜଦାର ପାଠକ ନିକଟରେ କିନ୍ତୁ ପ୍ରକୃତ କବିତା ସେହି, ଯାହା ସବୁକଥା ପ୍ରକାଶ କରିବାକୁ କୁଣ୍ଠିତ, ଅନ୍ୟ କଥାରେ ଯାହା ଅବୋଧ୍ୟ, ଦୁର୍ବୋଧ୍ୟ, ଅସ୍ପଷ୍ଟ ।"(36)

ରବୀନ୍ଦ୍ରନାଥଙ୍କ ଶତବାର୍ଷିକ ଅବସରରେ ରବୀନ୍ଦ୍ର କବିତାର ଆଲୋଚନା ସମୟରେ କବିତା ତଥା କବିତାର ଧର୍ମ ସମ୍ପର୍କୀୟ ଆଲୋଚନା ବିଶେଷ ପ୍ରଣିଧାନ ଯୋଗ୍ୟ । ମାନସିଂହ କହନ୍ତି:-"କବି ଏକ ସାଧାରଣ ନାଗରିକ । କିନ୍ତୁ ତାର କବିତା ଯଦି ପ୍ରକୃତ କବିତା ହୁଏ, ତେବେ ତାହା ଅସାଧାରଣ ହେଉଥି ପାଇଁ ସମାଜରେ କବି ପ୍ରତି ଯେତେ ଉନ୍ମାଦନା ନଥିଲେ ହେଁ, କବିତା ପ୍ରତି ସମ୍ମାନ ଏତେ ବେଶି । ତମେ ଆମେ ମିଳି ମିଶି କ୍ଲବ, କମିଟି, ଏକାଡେମୀ ବସେଇ ଗୋଟିଏ ହେଲେ ପ୍ରକୃତ କବିତା ସୃଷ୍ଟିକରି ପାରିବାନି । ବସ୍ତୁତଃ ଯେଉଁ କବିତାରେ ଏଇ ନିରାତ୍ମ ଗୁଣ ନାହିଁ, ତାହା ପଦ୍ୟମାତ୍ର । ତାହାର ଯାହା ସ୍ଥାନ ତାହା କେବଳ କବିତାର ଗୋଷ୍ଠୀରେ ଜନ୍ମ ନେଇଥିବାରୁ ।" (37)

ରବୀନ୍ଦ୍ରନାଥଙ୍କ କବିତା ଆଲୋଚନା ଅବସରରେ କବିତାର ଅନ୍ୟତମ ଧର୍ମ ବିଷୟରେ ଉଲ୍ଲେଖ କରି ମାନସିଂହ କହନ୍ତି :-"କବିତା ସମାଦର ଲାଭ କରିବାର ଦ୍ୱିତୀୟ କାରଣ ଏହି ହୋଇପାରେ ଯେ, ଏହା ଆମକୁ ମାୟାର ପୁଷ୍ପୋଦ୍ୟାନକୁ ନେଇଯାଏ । ଜଗତର ଅନିତ୍ୟତା ସରି, ତାର ଓତଃପ୍ରୋତବ୍ୟାପ୍ତ ଦୁଃଖ ମଧ୍ୟ ଆମର ଅବଚେତନାର ଏକ ଶକ୍ତିଶାଳୀ ପ୍ରଭାବ । ଆମର ଅଜ୍ଞାତସାରରେ ଆମେ ଅହରହ ଭଲମନ୍ଦ କାମ କରିଯାଉଛୁ, ହୁଏତ କେବଳ ଜୀବନର ଅନ୍ତର୍ନିହିତ ଦୁଃଖର ସମ୍ମୁଖୀନ ନ ହେବା ପାଇଁ । ଯାହା କିଛି ମନୁଷ୍ୟକୁ ଜୀବନର ରୂଢ଼ତା କ୍ରୂରତା କଠୋରତାରୁ, ଅର୍ଥାତ 'ଦୁଃଖରୁ' ନେଇଯାଇପାରେ, ସେ ହେଲା ମନୁଷ୍ୟର ପ୍ରିୟ । ଚିରକାଳ ଧରି କବିତାର ମଧ୍ୟ ଏଇ ଏକ ଗୁଣ ଅଛି । କବିତା ଆମକୁ ଅଧାଜଗତ ଅଧା-କଳ୍ପନାର ଏକ ସ୍ୱପ୍ନମୟ ପୁରୀକୁ ନେଇଯାଏ, ଯେଉଁଠି

ସତ୍ୟଟା ଠିକ୍ ନିଷ୍ଠୁର ସତ୍ୟ ନୁହେଁ, କି ମିଥ୍ୟାଟା ଠିକ୍ ମିଥ୍ୟାପରି ଘୃଣ୍ୟ ନୁହେଁ । ଜୀବନର ନିଷ୍ଠୁର ତାକୁ ପରାଜୟ ଦେବା ପାଇଁ ଆମେ ସ୍ୱପ୍ନ ଦେଖୁ ଏଇପରି ଏକ ଜଗତର, ଯେଉଁଠି ମିଥ୍ୟାର ସ୍ପର୍ଶରେ ସତ୍ୟ ହୁଏ ପ୍ରିୟ, ସତ୍ୟର ସ୍ପର୍ଶରେ ମିଥ୍ୟା ହୁଏ ମଧୁର । କବିତା ସେହି କଳ୍ପଲୋକ ।"(38) ମାନସିଂହ କବିତା ସମ୍ପର୍କରେ

ଯେଉଁ ମନ୍ତବ୍ୟ ଦେଇଛନ୍ତି ତାହା କାବ୍ୟ ଧର୍ମ ମଧ୍ୟ ପ୍ରଯୋଜ୍ୟ । ତାଙ୍କର ପ୍ରିୟ କାବ୍ୟ ମଧ୍ୟରେ କବି କାଳିଦାସଙ୍କ କାବ୍ୟ ସକଳ ଗୌରବର ଅଧିକାରୀ । କାରଣ—" ତାଙ୍କର ଭାଷା ଅତ୍ୟନ୍ତ ଶ୍ରୁତିସୁଖକର, ସରଳ ଓ ସରସ । ସଂସ୍କୃତ ଭାଷାରେ ଅନ୍ୟାନ୍ୟ କବିଙ୍କର ରସହୀନ ଶବ୍ଦକ୍ରୀଡା ତାଙ୍କ ଲେଖାରେ ଦେଖିବାକୁ ମିଳେ ନାହିଁ । ନରନାରୀର ଶାଶ୍ୱତ ଅନୁଭୂତି ସବୁ ସହଜ ସ୍ୱଚ୍ଛନ୍ଦ ଭାଷାରେ ସେ କିପରି ଦେଇ ପାରିଛନ୍ତି, ତାହା ପାଠ କରିଥିବା ଲୋକଙ୍କୁ ସହଜରେ ବୁଝାଇ ହେବ ନାହିଁ ।"(39) ଏହିପରି ସରଳ ଅଥଚ ବୈଚିତ୍ର୍ୟ ପୂର୍ଣ୍ଣ କାବ୍ୟ କବିତା ମାନସିଂହଙ୍କର ପ୍ରିୟ ଥିଲା ।

## ନାଟକ, ଗଳ୍ପ, ଉପନ୍ୟାସ :

'କାଳିଦାସ ଏଣ୍ଡ ସେକ୍ସପିଅର' ଚର୍ଚ୍ଚା ନିବନ୍ଧ, 'କଷ୍ଟକୀଟ'ନାଟକର ମୁଖବନ୍ଧ ତଥା ଓଡ଼ିଆ ସାହିତ୍ୟର ଇତିହାସରେ ମାନସିଂହ ନାଟକର ସ୍ୱରୂପ ଉପରେ ଦେତେକ ବିକ୍ଷିପ୍ତ ଆଲୋଚନା କରିଛନ୍ତି । ଏହି ଆଲୋଚନାଗୁଡିକ ମୁଖ୍ୟତଃ ବିବରଣାତ୍ମକ । 'କାଳିଦାସ ଏଣ୍ଡ ସେକ୍ସପିଅର'ରେ ମାନସିଂହ କହିଛନ୍ତି— ଦେଶ, କାଳ, ସାହିତ୍ୟ ଓ ସାମ୍ପ୍ରଦାୟର ରୂପଗଠନକୁ ନିୟନ୍ତ୍ରିତ କରେ । ତାହାମଧ୍ୟ ଘଟେ ନାଟକର କ୍ଷେତ୍ରରେ ।ନାଟକର ମୂଳଲକ୍ଷ୍ୟ ହେଲା, ମାନବ ବ୍ୟକ୍ତିତ୍ୱର ଉନ୍ମୁକ୍ତ । ଏହି ଦୃଷ୍ଟିରୁ ଆରିଷ୍ଟଟଲ୍ ଓ ଭରତଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । କିନ୍ତୁ ପରବର୍ତ୍ତୀ କାଳରେ ଭରତଙ୍କ ଅନୁଶାସନ ଆକ୍ଷରିକ ଭାବରେ ଅନୁଷ୍ଠିତ ହେବା ଫଳରେ ଭାରତୀୟ ନାଟକ ପରମ୍ପରାନୁଗାମୀ ହୋଇ କାବ୍ୟଧର୍ମୀ ହୋଇ ଉଠିଲା । ତାହାମଧ୍ୟ ଘଟିଲା ସେକ୍ସପିୟରଙ୍କ କ୍ଷେତ୍ରରେ । ଉଭୟର କିନ୍ତୁ ମୂଳ ଲକ୍ଷ୍ୟ ହେଲା ମାନବ ଚରିତ୍ର ବିଶ୍ଳେଷଣ । ପରମ୍ପରା ଓ ପ୍ରୟୋଜନାଗତ ଆବଶ୍ୟକତା ଉଭୟ ନାଟ୍ୟକାରଙ୍କର ସୌନ୍ଦର୍ଯ୍ୟ ଦୃଷ୍ଟି ଓ ରସବୋଧକୁ କିନ୍ତୁ ବିକଳାଙ୍ଗ କରିପାରି ନାହିଁ । ତେଣୁ ନାଟକ ଆଲୋଚନା କଲାବେଳେ ମୁଖ୍ୟତଃ ତାହାର କାବ୍ୟ ଧର୍ମ ଆଲୋଚନା କରିଛନ୍ତି । ତାହାମଧ୍ୟ ଘଟିଛି ତାଙ୍କର ଉପନ୍ୟାସ ଓ ଗଳ୍ପ ଆଲୋଚନା କ୍ଷେତ୍ରରେ । ଉପନ୍ୟାସ ଓ ଗଳ୍ପ ସମ୍ପର୍କରେ କେତେକ ମନ୍ତବ୍ୟ କରିବା ବ୍ୟତୀତ ସେ ତାତ୍ତ୍ୱିକ ଆଲୋଚନା କରିପାରି ନାହାନ୍ତି । ତାଙ୍କର କବିପ୍ରାଣ ସାହିତ୍ୟର ରୂପଗତ ଆବଶ୍ୟକତାକୁ ଏକ ବନ୍ଧନ ଭାବରେ ଗ୍ରହଣ କରିଛି, ମାଧ୍ୟମ ଭାବରେ ନୁହେଁ । ତାଙ୍କ ମତରେ:—"ନିପୁଣ ସ୍ରଷ୍ଟା ନାଟକ ଉପନ୍ୟାସ କାହାଣୀ ଭଳି ଭଳି ସାହିତ୍ୟ ରୂପର ବନ୍ଧନକୁ ଅତିକ୍ରମ କରେ । କବିତାର ସାହା ଚରମ ଓ ପରମ ମୂଲ୍ୟ ତାକୁ ପ୍ରକାଶ କରେ ।"(40)

## ପ୍ରବନ୍ଧ ଓ ସମାଲୋଚନା

ଶିକ୍ଷା, ଧର୍ମ, ସଂସ୍କୃତି ଓ ସାହିତ୍ୟ ସମ୍ପର୍କରେ ମାନସିଂହ ବହୁ ଆଲୋଚନା କରିଛନ୍ତି ଓ ଜୀବନର ନାନା ମୌଳିକ ସମସ୍ୟା ସମ୍ପର୍କରେ ବିଭିନ୍ନ ପ୍ରବନ୍ଧ ରଚନା କରିଛନ୍ତି । କିନ୍ତୁ ପ୍ରବନ୍ଧ ଓ ସମାଲୋଚନା

କହିଲେ କ'ଣ ବୁଝାଯାଏ, କେତେକ ବିକ୍ଷିପ୍ତ ମତାମତ ଛାଡିଦେଲେ, ମାନସିଂହ ସେ ସମ୍ପର୍କରେ ସ୍ପଷ୍ଟ ଭାବରେ କିଛି କହି ନାହାନ୍ତି । ପ୍ରବନ୍ଧର ସ୍ୱରୂପ ସମ୍ପର୍କରେ ସେ ପ୍ରସଙ୍ଗକ୍ରମେ କହିଛନ୍ତି ଯେ, ପ୍ରବନ୍ଧ କବିତା ଭଳି ଏକ ମୌଳିକ ସାହିତ୍ୟ ସୃଷ୍ଟି । କବିତାରେ କବିର ଅନୁଭୂତି ଭାଷା ମାଧ୍ୟମରେ ପ୍ରକାଶ ପାଏ, ପ୍ରବନ୍ଧରେ ପ୍ରକାଶ ପାଏ ମନନ । ତେଣୁ ତାହା ମଧ୍ୟ କବିତାର ପ୍ରକାଶ ଭଳି ସ୍ୱଚ୍ଛ ଓ ସାବଲୀଳ । ଚର୍ଚ୍ଚିତ ବିଷୟର ଗୁରୁତ୍ୱ ଓ ଚିନ୍ତାର ମୌଳିକତା ପ୍ରବନ୍ଧକୁ କରିଥାଏ ଶୃଙ୍ଖଳିତ । ସେଥିପାଇଁ ଉଦ୍ଧୃତି କଣ୍ଟକିତ ଆଲୋଚନା ପ୍ରତି ତାଙ୍କର ଅତ୍ୟନ୍ତ ଅଶ୍ରଦ୍ଧା ।(41) ସାହିତ୍ୟ ସମାଲୋଚନା ସମ୍ପର୍କରେ ମଧ୍ୟ ତାଙ୍କର ମତାମତ ଅନୁରୂପ । ସାହିତ୍ୟ ସମାଲୋଚନାକୁ ସେ ସାହିତ୍ୟ ସୃଷ୍ଟିଭଳି ଏକ ମୌଳିକ ସାହିତ୍ୟକର୍ମ ଭାବରେ ବିଚାର କରନ୍ତି । ସାହିତ୍ୟର ଲକ୍ଷ୍ୟ ଯଦି ଜୀବନର ଅନୁଭୂତିକୁ ରସତୀର୍ଥର ପ୍ରତିମା କରି ତୋଳିବା, ଠିକ୍ ସେହିପରି ସମାଲୋଚନାର ଲକ୍ଷ୍ୟ ହେଉଛି, 'ଏହି ପ୍ରତିମାର ସୌନ୍ଦର୍ଯ୍ୟ ଓ ଅନନ୍ୟତାକୁ ପ୍ରଜ୍ଞାର ଆଲୋକରେ ପ୍ରକାଶ କରିବା । ଏଣୁ ତାଙ୍କ ନିକଟରେ ଗବେଷଣା ବା ଏକାଡେମିକ ସାହିତ୍ୟାଲୋଚନା ଶ୍ରେୟସ୍କର ମନେ ହୋଇନାହିଁ ।

ପ୍ରବନ୍ଧ ରଚନା କାଳରେ ପ୍ରାବନ୍ଧିକ ନିଜର ମନନର ବୈଶିଷ୍ଟ୍ୟ ଓ ଅନୁଭୂତିର ନିର୍ଯ୍ୟାସକୁ ସନ୍ତୁଳନ କରି ଏକ ପରିପୂର୍ଣ୍ଣ ତଥା ଉତ୍ତମ ଦିଙ୍ନିର୍ଦ୍ଦେଶକ ରଚନା ଲେଖିବା ଆବଶ୍ୟକ । ସାହିତ୍ୟିକ ଗବେଷଣାରେ ଏହି ଗୁଣ ରହିବା ଉଚିତ କିନ୍ତୁ ଏହା ଅନ୍ୟର ମତାମତର ଖଣ୍ଡନ ମଣ୍ଡନ ଉପରେ ପ୍ରତିଷ୍ଠିତ ହୋଇଥିବାରୁ ବା କୌଣସି ବେଶୀ କମ ବସ୍ତୁନିଷ୍ଠ ଆଲୋଚନା ହୋଇଥିବାରୁ ସେଥିରେ ଉଦ୍ଧୃତି ଓ ପ୍ରସଙ୍ଗ ନିର୍ଦ୍ଦେଶ ରହିବା ସ୍ୱାଭାବିକ୍ । ଜ୍ଞାନରାଜ୍ୟରେ ପ୍ରତ୍ୟେକ ଗବେଷକ ଆପଣାର କଥା ଖୁବ୍ କମ୍ କହିଥାନ୍ତି । ବହୁ ସମୟରେ ସେ ବହୁ ଚର୍ଚ୍ଚିତ ବିଷୟବସ୍ତୁ ମଧ୍ୟରେ ନୂତନ ସମ୍ଭାବନା ତଥା ଅନ୍ୟ ସମୟରେ ଅଜ୍ଞାତ ତଥ୍ୟକୁ ଲୋକଲୋଚନକୁ ଆଣିଥାନ୍ତି । ଠିକ୍ ସେହି ଭଳି ଡଃ ମାନସିଂହ ଯେଉଁମାନଙ୍କ ପ୍ରବନ୍ଧର ଭୂରିପ୍ରଶଂସା କରିଛନ୍ତି, ସେମାନଙ୍କର ରଚନା ଗୁଡିକ ଓଡିଆ ଭାଷାରେ ସୁଲିଖିତ ପ୍ରବନ୍ଧ ମାତ୍ର, ବିଶ୍ୱ ଜ୍ଞାନରାଜ୍ୟ ପାଇଁ ସେ ଗୁଡିକରେ କୌଣସି ନୂତନ ସଂଦେଶ ନାହିଁ । ପ୍ରତ୍ୟେକ ସାହିତ୍ୟ ବା ଭାଷା କେବଳ ପପୁଲାର ଏସେଜ୍ ନେଇ ସମୃଦ୍ଧ ହୁଏ ନାହିଁ -, ; ସେହି ଭାଷାରେ ଜ୍ଞାନ ରାଜ୍ୟର ଯେଉଁ ମୌଳିକ ଉଚ୍ଚତମ ଚର୍ଚ୍ଚା ହୁଏ, ସେହି ଅନୁସାରେ ସେ ଭାଷା ଓ ସାହିତ୍ୟ ଆନୁପାତିକ ଭାବରେ ଉନ୍ନତ ହୁଏ । ଉଦାହରଣ ସ୍ୱରୂପ, ବଙ୍ଗଳାର ଜଗଦୀଶ ଚନ୍ଦ୍ର ବସୁ, ସତ୍ୟେନ୍ ବସୁ, ନିର୍ମଳ ଚନ୍ଦ୍ର ବସୁ, ରବୀନ୍ଦ୍ରନାଥ ଠାକୁର ଓ ରାମେନ୍ଦ୍ର ସୁନ୍ଦର ପ୍ରମୁଖ ତଥା ମରାଠୀରେ ଇରାବତୀ କାର୍ଭେ, ମାର୍ଧେକର ପ୍ରମୁଖ ଏହାର ଦୃଷ୍ଟାନ୍ତ । ବିଜ୍ଞାନ, ନୃତତ୍ତ୍ୱ ଓ ନନ୍ଦନତତ୍ତ୍ୱ ଆଲୋଚନା କ୍ଷେତ୍ରରେ ଏମାନେ ଯେଉଁ ମୌଳିକ ଦୃଷ୍ଟିକୋଣର ପରିଚୟ ଆପଣା ମାତୃଭାଷାରେ ଲିଖିତ ପ୍ରବନ୍ଧ ଗୁଡିକରେ ଦେଇଛନ୍ତି, ତାହା ତାଙ୍କ ଭାଷା ଓ ସାହିତ୍ୟକୁ ବିଶ୍ୱ-ଗବେଷକ ମଣ୍ଡଳୀ ନିକଟରେ ପରିଚୟ କରିଛି । ଓଡିଆ ଭାଷାରେ ଏ ପର୍ଯ୍ୟନ୍ତ ମୌଳିକ ଆଲୋଚନା ହୋଇନାହିଁ; ଦୁଃଖର ବିଷୟ ମାନସିଂହଙ୍କ ଦୃଷ୍ଟି ଏ ସବୁ ଦିଗ ପ୍ରତି ଆଦୌ ଆକର୍ଷିତ ହୋଇନାହିଁ ।

## ଇତିହାସ ଓ ସାହିତ୍ୟର ଇତିହାସ :

ମାନସିଂହଙ୍କ ଜୀବନର ନାନା ଖଣ୍ଡ-ଚିତ୍ର ମଧ୍ୟରୁ ଇଂରାଜୀରେ ଲିଖିତ 'ଓଡ଼ିଆ ସାହିତ୍ୟର ଇତିହାସ'ହିଁ ଅଧିକ ବିବଦମାନ ଘଟଣା । ଗତାନୁଗତିକତାରୁ ଓହରିଆସି ନୂଆବାଟ ଖୋଜିବା, ମାନସିଂହଙ୍କ ବ୍ୟକ୍ତିତ୍ୱର ଗୋଟିଏ ବିଶେଷ ଦିଗ । ମାନସିଂହଙ୍କ ମନର ଦୃଢ଼ମୂଳ ଧାରଣା ଯେ, ସାହିତ୍ୟର ଇତିହାସ ଜନ-ସନ ବା ରଜା-ରାଣୀ ର କ୍ୟାଟଲଗ୍ ନୁହେଁ । ରାଜନୈତିକ ଇତିହାସ ବା ଦେଶର ଇତିହାସ ସମ୍ପର୍କରେ ମଧ୍ୟ ତାଙ୍କର ଅନୁରୂପ ଧାରଣା । ପ୍ରାଚୀନ ଭାରତୀୟ ମାନଙ୍କର ଇତିହାସ ଧାରଣା ନଥିଲା, ଏହି ସାଧାରଣ ଅଭିଯୋଗକୁ ମାନସିଂହ ମାନିବା ପାଇଁ ପ୍ରସ୍ତୁତ ନୁହନ୍ତି । ଇତିହାସ ପ୍ରସଙ୍ଗରେ ସେ କହନ୍ତି—"ଆମ୍ଭମାନଙ୍କର ଏକ ବଦନାମ୍ ଯେ, ଆମ୍ଭମାନଙ୍କର ଐତିହାସିକ ସଚେତନତା ନାହିଁ । ଏହା ମାନିବାକୁ ହେବ ଯେ ହିନ୍ଦୁମାନେ, ସନ ତାରିଖ ଇତିହାସକୁ ସମ୍ମାନ ଦେଇ ନାହାନ୍ତି । କିନ୍ତୁ ସେଥିପାଇଁ ଯେ ସେମାନେ କୌଣସି ମାରାତ୍ମକ ଭୁଲ କରିଛନ୍ତି ବୋଲି, କି ତା' ଦ୍ୱାରା ଭାରତୀୟ ସଂସ୍କୃତି ନ୍ୟୂନତାବୋଧ ପ୍ରକାଶ କରିବାର ଅବସର ଅଛି ବୋଲି, ମନେ ହେଉନାହିଁ । ହିନ୍ଦୁର ଜୀବନ ଲୀଳା ସନ ତାରିଖରେ ସମାପ୍ତ ହୋଇନା; ତାହା ମହାକାଳ ଆସିକ ବିନାଶ ନେଇ । ତାର ତାଳ ଅନନ୍ତ । ହିନ୍ଦୁର ଇତିହାସ କେବଳ ରଜା-ମହାରାଜାର, ଯୁଦ୍ଧ-ସନ୍ଧିର, ସନ-ତାରିଖର ଇତିହାସ ନୁହେଁ; ତାହା ଏକାନ୍ତରେ ଆତ୍ମାର ଇତିହାସ । ହିନ୍ଦୁ ଅନ୍ୟମାନଙ୍କ ପରି ସନ ତାରିଖର ପୂଜାରୀ ନୁହେଁ; ସେ ବିରାଟ ଓ ମହାନ୍ ଆତ୍ମାର ଅମୃତତ୍ୱ ଓ ପୂର୍ଣ୍ଣତାର କେବଳ ପୂଜାରୀ ।"(42)

ଇତିହାସ ପରି ସାହିତ୍ୟର ଇତିହାସରେ ମଧ୍ୟ ସେ ଜନ ସନର ତାଲିକାକୁ ଅସ୍ୱୀକାର କରିଛନ୍ତି । ତାଙ୍କ ବିଚାର ରେ ସାହିତ୍ୟର ଇତିହାସ ଶୁଷ୍କ ନାମ ତାଲିକା ନ ହୋଇ ଅତି ସୁଖପାଠ୍ୟ ଓ ଶିକ୍ଷାପ୍ରଦ ଗ୍ରନ୍ଥ ହେବା ଆବଶ୍ୟକ । କାରଣ କେବଳ ସାହିତ୍ୟର ଇତିହାସହିଁ ଦେବ ଯେ କୌଣସି ଜାତିର ଆତ୍ମାର ଇତିହାସ, ତାର ପ୍ରକୃତ ମର୍ମବାଣୀ ।

ମାନସିଂହ ଇଂରାଜୀ ସାହିତ୍ୟର ଛାତ୍ର ଥିଲେ ଓ କେତେକ ସୁନିର୍ବାଚିତ ଇତିହାସର ମୁଗ୍ଧ ପାଠକ ମଧ୍ୟ ଥିଲେ । ସେ କେନ୍ଦ୍ର ସାହିତ୍ୟ ଏକାଡେମୀ କର୍ତ୍ତୃକ ଅନୁରୁଦ୍ଧ ହୋଇ ଇଂରାଜୀରେ 'ଓଡ଼ିଆ ସାହିତ୍ୟର ଇତିହାସ' ଲେଖିବା ପୂର୍ବରୁ ଓଡ଼ିଆ ସାହିତ୍ୟର ବିଭିନ୍ନ ଦିଗ ଉପରେ କେତେକ ସୁଖପାଠ୍ୟ ସମାଲୋଚନା ଲେଖିଥିଲେ । ଓଡ଼ିଆରେ ଲେଖିବା ସଂଗେ ସଂଗେ ଓଡ଼ିଶା ବାହାରେ ଓଡ଼ିଆ ସାହିତ୍ୟର ପରିଚୟ କରାଇବା ପାଇଁ ଓଡ଼ିଆ ସାହିତ୍ୟ ସମ୍ପର୍କରେ ଇଂରାଜୀରେ ଆଲୋଚନାମାନ କରୁଥିଲେ । ଖ୍ରୀ: ୧୯୩୨ ବେଳକୁ ମାନ୍ଦ୍ରାଜରୁ ପ୍ରକାଶିତ 'ଇଣ୍ଡିଆନ୍ ରିଭ୍ୟୁ' ଓ ବାଙ୍ଗାଲୋରରୁ ପ୍ରକାଶିତ 'ତ୍ରିବେଣୀ' ପତ୍ରିକାରେ ଓଡ଼ିଆ ସାହିତ୍ୟ ସମ୍ପର୍କରେ ଆଲୋଚନା କରିଥିଲେ । ପରେ ଡକ୍ଟର ନଗେନ୍ଦ୍ରଙ୍କ ସମ୍ପାଦନାରେ ପ୍ରକାଶିତ 'ଇଣ୍ଡିଆନ୍ ଲିଟିରେଚର', ସାହିତ୍ୟ ଏକାଡେମୀ କର୍ତ୍ତୃକ ପ୍ରକାଶିତ 'କଣ୍ଟେମ୍ପରାରୀ ଇଣ୍ଡିଆନ୍ ଲିଟିରେଚର(୧୯୫୭)' ଓ ରାଷ୍ଟ୍ରଭାଷା ପ୍ରଚାର ସମିତି ଓ୍ୱାର୍ଦ୍ଧା ଦ୍ୱାରା ପ୍ରକାଶିତ 'ଭାରତୀୟ ବାଙ୍ମୟ' ଗ୍ରନ୍ଥରେ ମାନସିଂହ ଓଡ଼ିଆ ସାହିତ୍ୟର ଇତିହାସ ସମ୍ପର୍କରେ ଆଲୋଚନା କରିଥିଲେ । ସାହିତ୍ୟ ଏକାଡେମୀ ଦ୍ୱାରା

ପ୍ରକାଶିତ 'ହିଷ୍ଟ୍ରି ଅଫ ଓଡିଆ ଲିଟିରେଚର' ଓ ଓଡିଆ ଭାଷାରେ ତାର ପରିବର୍ଦ୍ଧିତ ସଂସ୍କରଣ 'ଓଡିଆ ସାହିତ୍ୟର ଇତିହାସ(1967)' ପୂର୍ବୋକ୍ତ ରଚନା କ୍ରମର ପରିଣତ ରୂପ ।

ମାନସିଂହଙ୍କ ସଂପୃକ୍ତ ଇତିହାସ ଓଡିଶାର ଅନେକ ସମୀକ୍ଷକଙ୍କ ଦ୍ୱାରା ଆଲୋଚିତ । ଏହି ଆଲୋଚନା କେତେବେଳେ ନିନ୍ଦା ସୂଚକ ବା ଅନ୍ୟ କେତେବେଳେ ପ୍ରଶଂସାବାଚକ । ନିଜ ତରଫରୁ ମାନସିଂହ ଏହାର ଯେଉଁ ପ୍ରତ୍ୟୁତ୍ତର ଦେଇଥିଲେ, ସେଥିରେ ସେ ସାହିତ୍ୟ ଇତିହାସ କ'ଣ ? ତାର ଆବଶ୍ୟକତା କ'ଣ ? ଓ ତାର ରୂପରେଖ କ'ଣ ହେବା ଉଚିତ ସେ ବିଷୟରେ ଦିଗ୍‌ନିର୍ଦ୍ଦେଶ କରିଥିଲେ । ମାନସିଂହଙ୍କ କଲା, ସାହିତ୍ୟ ଓ ତାର ଇତିହାସ ସଂପର୍କରେ ଧାରଣା ଥିବା ଦୃଷ୍ଟିରୁ, ସଂପୃକ୍ତ ଉତ୍ତରରେ ଅବତାରଣା କରିଥିବା ବିଷୟ ଗୁଡିକ ଗୁରୁତ୍ୱ ପୂର୍ଣ୍ଣ । ତାଙ୍କ ମତରେ ପ୍ରଥମ କଥା ହେଲା କୌଣସି ଜାତିର ଇତିହାସ ବା କୌଣସି ସାହିତ୍ୟର ଇତିହାସ ମଧ୍ୟ କେବଳ ନାମ ତାରିଖର ପଞ୍ଜିକା ହୋଇ ନପାରେ । ଗୋଟିଏ ଜାତିର ରାଜନୈତିକ ଇତିହାସ ଅପେକ୍ଷା ସେହି ଜାତିର ସାହିତ୍ୟର ଇତିହାସ ଆହୁରି ଅଧିକ ପରିମାଣରେ ଓ ଗଭୀରତର ଭାବରେ ସେହି ଜାତିର ଆତ୍ମାର ଇତିହାସ । ତେଣୁ ସେ ଇତିହାସରେ ସେହି ଜାତିର ଆତ୍ମା ଯେଉଁମାନଙ୍କ ରଚନାରେ ପ୍ରସ୍ଫୁଟିତ ହୋଇ ପାରିଛି କେବଳ ସେହି ମାନଙ୍କ କୃତିତ୍ୱ ବର୍ଣ୍ଣିତ ହେବାର କଥା । ଯେଉଁଠାର ଲେଖକମାନଙ୍କର ତାଲିକା ଜାତୀୟ ସାହିତ୍ୟଇତିହାସ ହୋଇ ନପାରେ ।"(43)

ସାହିତ୍ୟ ଇତିହାସର ଦ୍ୱିତୀୟ ସର୍ତ୍ତ ହେଲା ତାହା ମୁଖ୍ୟତଃ ଏକ ସାହିତ୍ୟ କୃତି; ସନ—ତାରିଖ, ନାମ—ଧାମର ପ୍ରାଚୁର୍ଯ୍ୟ ସାହିତ୍ୟ ଇତିହାସର ଉଦ୍ଦେଶ୍ୟକୁ ବିଡମ୍ବିତ କରେ । କାରଣ ସାହିତ୍ୟ ଏକ ନିର୍ଦ୍ଦିଷ୍ଟ କାଳରେ ସୃଷ୍ଟି ହେଲେ ହେଁ ତାହା କାଳାତୀତ । ସନ ତଥା ତାରିଖ ର ଦୌରାତ୍ମ୍ୟ ବହୁତ ସମୟରେ ରସବୋଧକୁ ମ୍ଳାନ କରି ଦିଏ । ସାହିତ୍ୟ ଇତିହାସର ତୃତୀୟ କଥା ହେଲା "ସେଥିରେ ସଂପୃକ୍ତ ଜାତିର ଆତ୍ମା ମଧ୍ୟ ଫୁଟିବା ଉଚିତ । ତା ନ ହେଲେ ସେ ହେବ ଏକ ମାଦଳାପାଞ୍ଜି ମାତ୍ର "(44) କଳାସୃଷ୍ଟି ବ୍ୟାକରଣର ନିୟମକୁ ଅପେକ୍ଷା କରେ ନାହିଁ, କିମ୍ବା ବାହ୍ୟ ଜଗତ ଭିତରେ କାବ୍ୟକୁ ଖୋଜିଲେ ବହୁତ ସମୟରେ ବିଭ୍ରାନ୍ତ ହେବାକୁ ପଡେ । ଠିକ୍ ସେହିଭଳି ସନ ତାରିଖର ଇତିହାସକୁ ସେ ସୁଲିଖିତ ଓ ନିଜର ଆତ୍ମାଦେଇ ରଚିତ ଏକ ଇତିହାସ ନୁହେଁ ବୋଲି କହିଛନ୍ତି ।

ମାନସିଂହଙ୍କର ଏହି ତତ୍ତ୍ୱ ଭିତରେ ତାଙ୍କ ଇତିହାସର ମୌଳିକ ଦୁର୍ବଳତା ରହିଛି । ଜାତି ଯେଉଁଭଳି ଭିନ୍ନ ଭିନ୍ନ, ସମାଜ ଉପରେ କଳ୍ପିତ ଭାବ ସତ୍ତା ସେହିପରି ଏକ ନୁହେଁ । ଜାତିର ଆତ୍ମା ଖୋଜିବା, ଭାବବାଦିତାର ଚରମ ଉଦାହରଣ । ଇତିହାସର ଉପସ୍ଥିତିକୁ ଅସ୍ୱୀକାର କରୁଥିବା ଭାବବାଦୀ ଆଲୋଚକଙ୍କ ପକ୍ଷରେ ଏଭଳି ଉକ୍ତି ଶୋଭା ପାଏ । ସାହିତ୍ୟ ମାନବିକ ସଂସ୍କୃତିର ପ୍ରକାଶ । ସଂସ୍କୃତି ମଧ୍ୟ ସ୍ୱର୍ଗରୁ ଖସିପଡିଥିବା କୌଣସି ଅଦେହୀ ସତ୍ତା ନୁହେଁ । ଏହା ସମାଜ ବଦ୍ଧ ମଣିଷର ବଞ୍ଚିବା ମରିବା ସଂଗ୍ରାମ ଭିତରେ ଆପଣାକୁ ବିକଶିତ କରାଇବାର ଇଚ୍ଛା ମଧ୍ୟରୁ ଜନ୍ମ ନିଏ । ଚେତନା ବସ୍ତୁକୁ ନିୟନ୍ତ୍ରଣ କରେ ନାହିଁ; ବସ୍ତୁହିଁ ଚେତନାକୁ ସୃଷ୍ଟି କରେ । ତେଣୁ କୌଣସି ଜନ ଗୋଷ୍ଠୀର ବାସ୍ତବ

ଇତିହାସ ଠାରୁ ତାର ସାହିତ୍ୟର ଇତିହାସକୁ ବିଚ୍ଛିନ୍ନ କରିହେବ ନା । ଇତିହାସ ତ ଶୂନ୍ୟରୁ ଖସେ ନାହିଁ; ତାହା ସନ-ତାରିଖ, ସାମାଜିକ-ରାଜନୈତିକ ଘଟଣାର ଉପରେହିଁ ପର୍ଯ୍ୟବସିତ ହୁଏ । ମାନସିଂହ ଏ ସବୁକୁ ଅବହେଳା କରିବା ଫଳରେ, ତାଙ୍କର ସାହିତ୍ୟର ଇତିହାସ କେତେଜଣ ଓଡିଆ କବିଙ୍କ ଉପରେ ଇଂପ୍ରେସନିଷ୍ଟ ଆଲୋଚନାରେ ପରିଣତ ହୋଇଛି । ବହୁତ ଆଲୋଚକ ମାନସିଂହଙ୍କର ଏହି ତତ୍ତ୍ୱଗତ ଦୁର୍ବଳତାକୁ ବୁଝି ନପାରି ଉପର ଠାଉରିଆ ଭାବରେ କେବଳ ସନ ତାରିଖର ବିବରଣୀ ନେଇ ବିତର୍କ କରିବାରେ ଲାଗିଥିଲେ ।

**<u>ଶେଷକଥା</u>**

କଳା ତଥା ସାହିତ୍ୟ, ମଣିଷର ସାଂସ୍କୃତିକ ଜୀବନର ଏକ ପ୍ରକାଶ । ସଂସ୍କୃତି ଯେଉଁଳି ଏକ ବାସ୍ତବ ଭିତ୍ତିରୁ ଉଦ୍ଭାବିତ ହେଲେ ବି ଉତ୍କର୍ଷର କଥାହିଁ କହିଥାଏ; କଳା ବା ସାହିତ୍ୟ ସେହିପରି ଉଦ୍ଭୂତ ହୋଇଥିବା ଗୋଷ୍ଠୀର ମନକଥାକୁ ପ୍ରକାଶ କରିଥାଏ । କଳା ବା ସାହିତ୍ୟ ପ୍ରତି ଏକ ବ୍ୟକ୍ତିର ଦୃଷ୍ଟିକୋଣ ତା'ର ସାମାଜିକ ସ୍ଥିତି ଓ ସମାଜ ପ୍ରତି ତା'ର ଦୃଷ୍ଟିକୋଣ ଦ୍ୱାରା ପରିଚାଳିତ ହୋଇଥାଏ । ମାନସିଂହ ଦରିଦ୍ର ପରିବାରରେ ଜନ୍ମ ଗ୍ରହଣ କରିଥିଲେ ବି, ସାମାଜିକ ଆଭିମୁଖ୍ୟ ଦୃଷ୍ଟିରୁ ଥିଲେ ସାମନ୍ତବାଦୀ । ସାମନ୍ତବାଦ ଅର୍ଥ ଅପେକ୍ଷା ପ୍ରତିପତ୍ତି ଓ ଆଭିଜାତ୍ୟରେ ବିଶ୍ୱାସ କରେ । ଏହି ଆଭିଜାତ୍ୟର ନିର୍ଯ୍ୟାସକୁ ଏକ କଳ୍ପିତ ଇତିହାସରୁହିଁ ସେ ସଂଗ୍ରହ କରିଥାଏ । ମାନସିଂହଙ୍କ କ୍ଷେତ୍ରରେ ତାହା ଘଟିଛି । ସେ କୌଣସି ଦିନ ଜନସାଧାରଣଙ୍କ ସହ ନିଜକୁ ମିଶାଇ ପାରି ନାହାନ୍ତି ।— [illegible] କବି ଯେ ଜଣେ ସାଧାରଣ ମଣିଷ ଓ ତାର କାବ୍ୟ କବିତା ସାଧାରଣ ମଣିଷର ବିଭିନ୍ନ ଅନୁଭୂତିର ଆତ୍ମପ୍ରକାଶ, ଏ କଥା ସେ ସ୍ୱୀକାର କରିପାରି ନାହାନ୍ତି । ସାମନ୍ତବାଦୀ ସମାଜରେ ବ୍ରାହ୍ମଣ ଧନରେ ଦରିଦ୍ର ହେଲେ ବି ତାକୁ ଜ୍ଞାନ ଦୃଷ୍ଟିରୁ ଉଚ୍ଚସ୍ଥାନ ଦିଆ ଯାଇଥାଏ । ମାନସିଂହ କବିପାଇଁ ଅନୁରୂପ ସ୍ଥାନଟିଏ ଆଜିର ସମାଜରେ ଖୋଜିଛନ୍ତି । ତାହା ପ୍ରକୃତରେ ନିଜ ସପକ୍ଷରେ ଏକ ଓକିଲାତି । ଆତ୍ମକେନ୍ଦ୍ରିକ ହେବା ଫଳରେ ମାନସିଂହଙ୍କର କାବ୍ୟ ଜିଜ୍ଞାସା ବସ୍ତୁନିଷ୍ଠ ହୋଇପାରି ନାହିଁ, ଭାବବାଦୀ ହୋଇ ପଡିଛି । ସ୍ରଷ୍ଟା, ସୃଷ୍ଟି, ସୃଷ୍ଟିର ପ୍ରକାଶଭଙ୍ଗୀ, ତାର ଉପଯୋଗ ସବୁକୁ ସେ ଭାବବାଦୀ ଦୃଷ୍ଟିକୋଣରୁ ହିଁ ବିଚାର କରିଛନ୍ତି । ମାନସିଂହ ଇଂରାଜୀ ସାହିତ୍ୟର ଛାତ୍ର ଥିଲେ ଓ ସେହି ସମ୍ପର୍କରେ ରୋମାଣ୍ଟିକ୍ କବିଗଣଙ୍କ ସମ୍ପର୍କରେ ଆସିଥିଲେ । ସଂସ୍କୃତ ସାହିତ୍ୟ ଓ ବଂଗଳା ସାହିତ୍ୟ ସହିତ ତାଙ୍କର କିଛି ପରିଚୟ ବି ଥିଲା । କଳା ଓ ସାହିତ୍ୟ ସମ୍ପର୍କରେ ଗତ ଦୁଇ ଶତାବ୍ଦୀ ଭିତରେ ହୋଇଥିବା ନାନ୍ଦନିକ ବିଶ୍ଳେଷଣ, ସେ ଘନିଷ୍ଠ ଭାବରେ ଅଧ୍ୟୟନ କରିଥିବା ଭଳି ମନେ ହୁଏ ନାହିଁ । ମାର୍କସ୍, ଡିଡେ଼୍, ଲୁକାସ୍ ବା କଡ୍‌ୱେଲ୍, ପ୍ଲେଖାନଭ୍‌ଙ୍କ ଭଳି ବସ୍ତୁବାଦୀ ସାହିତ୍ୟ ବିଚାରକ ଦୂରର କଥା; ସେ କୁମାର ସ୍ୱାମୀ, ବେସାଂକ୍ୱେଟ, ରିଚ୍ଚର୍ଡସ୍, ଇଲିୟଟ, ଏମ୍ପସନ୍, ଆନନ୍ଦବର୍ଦ୍ଧନ ପ୍ରମୁଖଙ୍କ ଗ୍ରନ୍ଥ ଗୁଡିକ ଉତ୍ତମ ରୂପେ ଅଧ୍ୟୟନ କରିଥିବାର ଦୃଷ୍ଟାନ୍ତ ତାଙ୍କ ବିଚାରଧାରାରୁ ମିଳେ

ନାହିଁ । ସେହିପରି ଇତିହାସ ସମ୍ପର୍କରେ ତାଙ୍କର ଧାରଣା ଅସ୍ପଷ୍ଟ ଓ ରୋମାଣ୍ଟିକ୍ । ଧର୍ମ ଓ ଦର୍ଶନ ଆଲୋଚନା କ୍ଷେତ୍ରରେ ହେତୁବାଦକୁ ସ୍ୱୀକାର କରୁଥିବା ମାନସିଂହ, ସାହିତ୍ୟ ଆଲୋଚନା କ୍ଷେତ୍ରରେ ହେତୁବାଦକୁ ନସ୍ୟାତ୍ କରିଛନ୍ତି । କିନ୍ତୁ ଏକଥା ଅବଶ୍ୟ ସ୍ୱୀକାର୍ଯ୍ୟ, କଳା ଓ ସାହିତ୍ୟ ଉପଭୋଗ କରିବା ପାଇଁ ତାଙ୍କର ଏକ ସଂସ୍କୃତ ଓ ରସଗ୍ରାହୀ ମନଥିଲା । ତେଣୁ ସେକ୍ସପିଅର, କାଳିଦାସ, ରବୀନ୍ଦ୍ରନାଥ, ଗୋପାଳକୃଷ୍ଣ, ପ୍ରମୁଖ ଅନେକ କବି ତାଙ୍କୁ ଆକୃଷ୍ଟ କରିଛନ୍ତି ଓ ତାଙ୍କ ସମ୍ପର୍କରେ ସେ ଇମ୍ପ୍ରେସନିଷ୍ଟ ଆଲୋଚନା କରିଛନ୍ତି । ସାହିତ୍ୟ ସମାଲୋଚନା ଯୁକ୍ତିଗ୍ରାହ୍ୟ ହେବାକୁ ହେଲେ ତାହାକୁ ସଂହତ (ଇଣ୍ଟିଗ୍ରିଟିଭ୍) ହେବାକୁ ହେବ । ସେହି ସଂହତି ବା ଇଣ୍ଟିଗ୍ରେସନ ଅଭାବ ହେତୁ ମାନସିଂହଙ୍କର କାବ୍ୟ ଜିଜ୍ଞାସା ଖଣ୍ଡିତ ।

---

## ଅଷ୍ଟମ ଅଧ୍ୟାୟର ସୂଚନା

1: ମାନସିଂହ ଗ୍ରନ୍ଥାବଳୀ (ତୃତୀୟ ଖଣ୍ଡ–1973)–ପ୍ରାଚୀନ ଓଡ଼ିଆ କାବ୍ୟ(ପ୍ରବନ୍ଧ) ପୃ–573,

2: ତତ୍ରୈବ ପୃ·574, 3: ତତ୍ରୈବ,–ପରଧର୍ମ(ପ୍ରବନ୍ଧ) ପୃ·592,

4: ତତ୍ରୈବ, ଓଡ଼ିଆରେ ଲେଖିବି କାହିଁକି, ପୃ·606,

5: ତତ୍ରୈବ, ପୃ·607, 6: ତତ୍ରୈବ ପୃ·607,

7: ମାନସିଂହ ଗ୍ରନ୍ଥାବଳୀ(ଦ୍ୱିତୀୟ ଖଣ୍ଡ–1964), ନିକ୍ୱଣ(କାବ୍ୟ) ପୃ·30,

8: ମାନସିଂହ, ମାୟାଧର–କବି ଓ ଅଭିଜାତ(ପ୍ରବନ୍ଧ)–ସହକାର, I/3, ବୈଶାଖ–1340, ପୃ· 1,

9: M.S.Abram's–'The Miror and the Lamp'
Oxford University Press– New Yark 1971)

10: ମାନସିଂହ ଗ୍ରନ୍ଥାବଳୀ(ପ୍ରଥମ ଖଣ୍ଡ–1962) –'ଧୂପ' କାବ୍ୟର ଭୂମିକା ପୃ·–ଏକଅଣା,

11: " the material of a poem came from within and the consiste expressly neither of objects nor action, but of the fluit feelings of the poet himself" M.S.Abram's–The mirror and the Lamp "

॥ ମାନସିଂହଙ୍କ ବିଶ୍ୱରଧାରା ॥

12: ମାନସିଂହ ଗ୍ରନ୍ଥାବଳୀ(ପ୍ରଥମ ଖଣ୍ଡ–1962) 'ଧୂପ' ଭୂମିକା ପୃ– ତିନିଅଣା
13: ମାନସିଂହ ଗ୍ରନ୍ଥାବଳୀ(ଦ୍ୱିତୀୟ ଖଣ୍ଡ–1964) –'ରାଜକବି ଉପେନ୍ଦ୍ର' ପୃ. 402,
14: ତତ୍ରୈବ, ପୃ.426,
15: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ–1973)–ଓଡିଆ ଜାତିର ବୈଶିଷ୍ଟ୍ୟ (ପ୍ରବନ୍ଧ) ପୃ.582,
16: ତତ୍ରୈବ, ପୃ.582–83, 17: ତତ୍ରୈବ, ପୃ.590,
18: ମାନସିଂହ ଗ୍ରନ୍ଥାବଳୀ(ପ୍ରଥମ ଖଣ୍ଡ–1962)–ଶେଲୀ ମୃତ୍ୟୁ(କବିତା) ପୃ. 159,
19: ତତ୍ରୈବ ପୃ.161, 20: ତତ୍ରୈବ, କବିକହ୍ନେ(କବିତା,) ପୃ–67,
21: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ–1973)– ରବୀନ୍ଦ୍ରନାଥ(ପ୍ରବନ୍ଧ)– ପୃ.419,
22: ତତ୍ରୈବ 'ରବୀନ୍ଦ୍ରନାଥଙ୍କ କବିତା(ପ୍ରବନ୍ଧ) ପୃ.431,
23: ତତ୍ରୈବ ରାଧାନାଥ ଓ ମଧୁସୂଦନ(ପ୍ରବନ୍ଧ) ପୃ–438,
24: ମାନସିଂହ ଗ୍ରନ୍ଥାବଳୀ(ଦ୍ୱିତୀୟ ଖଣ୍ଡ–1964) କମଳାୟନ (କାବ୍ୟ) ପୃ.198,
25: ମାନସିଂହ ଗ୍ରନ୍ଥାବଳୀ(ପ୍ରଥମ ଖଣ୍ଡ–1962)ପୂର୍ଣ୍ଣତା ପ୍ରାପ୍ତି(କବିତା) ପୃ.443,
26: ତତ୍ରୈବ, ନିଷ୍ଠୁର ସାଧୁ(କବିତା) ପୃ.489,
27: ତତ୍ରୈବ, କବି ଜୀବନ(କବିତା) ପୃ–293,
28: ତତ୍ରୈବ, ଶିଳ୍ପୀ–ବନ୍ଦନା(କବିତା) ପୃ–254,
29: Great art is neither spasmodic nor erratic It is ever cosmic - M.Mansingh - Kalidas & Shakespher-Page-42
30: Poets and artists in all landsare but like divine harps; they have sung as they have been struch by the fingers of the external world with which they came in contact.Ultemataly,therefore,the poets should only be considered as sharehouses of aesthesic images and impressions of Man,Nature and Time among which they flourished"- Kalidas & Shakespere-M.Mansingh(1969) Page-45.

|| ମାନସିଂହଙ୍କ ବିଶ୍ୱଧାରା ||

31 ମଜୁମଦାର, ମୋହିତଲାଲ୍ । — କବି ଶ୍ରୀମଧୁସୂଦନ(ତୃତୀୟ ସଂସ୍କରଣ-1375) ପୃ.8-11, ପ୍ରକାଶକ-ବିଦ୍ୟୋଦୟ, କଲିକତା,

32: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ-1973)-ରାଧାନାଥ (ପ୍ରବନ୍ଧ), ପୃ-464,

33: ତତ୍ରୈବ ପୃ.464,

34: ତତ୍ରୈବ, ଓଡ଼ିଶାର ପାଉଁଲି ଗୀତ(ପ୍ରବନ୍ଧ) ପୃ.612,

35: ତତ୍ରୈବ, ପଲ୍ଲୀକବି ନନ୍ଦକିଶୋର (ପ୍ରବନ୍ଧ) ପୃ-565,

36: ମାନସିଂହ, ମାୟାଧର-ଅନ୍ୱେଷଣ(ଉପନ୍ୟାସ)-1957, ପୃ-30,

37: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ-1973)-ରବୀନ୍ଦ୍ରନାଥ(ପ୍ରବନ୍ଧ) ପୃ.416-417,

38: ତତ୍ରୈବ ପୃ.418,

39: ମାନସିଂହ, ମାୟାଧର-ଜୀବନୀ ଓ ପ୍ରବନ୍ଧ(1958) କାଳିଦାସ(ପ୍ରବନ୍ଧ) ପୃ-46,

40: Great minds not only work wonders out of their limitations, but do impose also limitations of their own on themselves for disciplined brilliance, measured perfection and trimmed beauty in their products. Beauty is not world, but free. Free in her own Truths, Beauty grows and walks and dances according to her own xxxxxx. x visible laws. A genius, Creature of Beauty in this world makes his very chains the mother of divine music of his pen.

M. Mansinh - Kalidasa and Shakespeare Page-145 (1969)

41: ମାନସିଂହ, ମାୟାଧର ।-ନବଜୀବନ, 6/11, ପୃ. 683,

42: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ-1973), ପଣ୍ଡିତ ଗୋପବନ୍ଧୁ (ପ୍ରବନ୍ଧ) ପୃ.514-515,

43: ମାନସିଂହ, ମାୟାଧର ।-ଜାତୀୟ ସାହିତ୍ୟର ଇତିହାସ (ଆଲୋଚନା) ନବଜୀବନ, 7/10, ପୃ. 643-646,

44: ତତ୍ରୈବ,

ନ ବ ମ ଅ ଧ୍ୟା ୟ

## — ସଂସ୍କୃତି —

ସଂସ୍କୃତି ବା କୃଷ୍ଟି ଶବ୍ଦ ଇଂରାଜୀ ଶବ୍ଦ 'କଲଚର' ର ପ୍ରତିଶବ୍ଦ ରୂପେ ଓଡ଼ିଆରେ ବ୍ୟବହୃତ । କଲଚର୍ ଶବ୍ଦର ଅର୍ଥକ୍ଷେତ୍ର ପ୍ରୟୋଗ ବିଶେଷରେ ସଂକୀର୍ଣ୍ଣ ଓ ବ୍ୟାପକ ହୋଇଯାଏ । ସଂକୀର୍ଣ୍ଣ ଅର୍ଥରେ ଏହା ମଣିଷ, ଜାତି ବା ସମାଜ ବିଶେଷର ମାନସିକ ଉତ୍କର୍ଷର ଅଭିଜ୍ଞାନ । କୌଣସି ଏକ ଜନ ଗୋଷ୍ଠୀର ଚିତ୍ ପ୍ରକର୍ଷର ଫଳ । ନୃ ବିଜ୍ଞାନୀ ଓ ସମାଜ ବିଜ୍ଞାନୀମାନେ ସଂସ୍କୃତିର ଏହିଭଳି ସୀମାବଦ୍ଧ ପ୍ରୟୋଗକୁ ଅସ୍ୱୀକାର କରିଥାନ୍ତି । ସଂସ୍କୃତିର ଏହିଭଳି ମୂଲ୍ୟ ଭିତ୍ତିକ ପ୍ରୟୋଗ ଗୋଟିଏ ସମାଜର ସମଗ୍ର ଜନଗଣର ବିସ୍ତାରକୁ ପ୍ରାକୃତ ପ୍ରତିଫଳନ କରେ ନାହିଁ । ଆର୍ଥିକ ଓ ସାମାଜିକ ଦୃଷ୍ଟିକୋଣରୁ ସମାଜର ଉପର ସ୍ତରରେ ଥିବା ଗୋଷ୍ଠୀର ମାନସିକ ଅଭିପ୍ସା ଓ ଜୀବନ ଦର୍ଶନ ନିର୍ଯ୍ୟାସକୁ ତଥାକଥିତ ସଂସ୍କୃତି ପ୍ରକାଶ କରେ । ସାଧାରଣ ପ୍ରୟୋଗ ଦୃଷ୍ଟିରୁ ସଂସ୍କୃତିର ଅର୍ଥ କେବଳ ଚିତ୍ ପ୍ରକର୍ଷ ନୁହେଁ; ସମାଜର ଭଲମନ୍ଦ ସବୁ ନେଇ ହିଁ ସଂସ୍କୃତି । ନୃତାତ୍ତ୍ୱିକ, ସମାଜ ତାତ୍ତ୍ୱିକମାନେ, ତେଣୁ ସଂସ୍କୃତିର କୌଣସି ସଂଜ୍ଞା ଦେବା ଅପେକ୍ଷା, ତାର ବର୍ଣ୍ଣନାତ୍ମକ ଦିଗ ଉପରେ ଗୁରୁତ୍ୱ ଦେଇଥାନ୍ତି । ଏହିଭଳି ନିରପେକ୍ଷ ଓ ବର୍ଣ୍ଣନା ଭିତ୍ତିକ ପରିଚୟ ଦୃଷ୍ଟିରୁ, ସଂସ୍କୃତି ହେଲା ଜୀବନର ପ୍ରକାଶ । ସମାଜ ବିଜ୍ଞାନୀ 'ଟାଇଲର'ଙ୍କ ମତରେ—— ସଂସ୍କୃତି ହେଉଛି ସେହି ଜଟିଳ ସାମଗ୍ରିକ ପ୍ରକାଶ, ଯାହା ମଧ୍ୟରେ ଗୋଟିଏ ସମାଜର ଜ୍ଞାନ, ବିଶ୍ୱାସ, କଳା, ନୀତିବୋଧ, ନିୟମାବଳୀ, ରୀତିନୀତି ଓ ଅନ୍ୟାନ୍ୟ ମୂଲ୍ୟ ବିସ୍ତର ପ୍ରକାଶ ପାଇଥାଏ । ଏହି ପ୍ରକାଶ ପରବର୍ତ୍ତୀ ବଂଶଧରମାନଙ୍କ ଜୀବନକୁ ନିୟନ୍ତ୍ରିତ ଓ ତାର ବୌଦ୍ଧିକ ପରିମଣ୍ଡଳକୁ ବିକଶିତ କରିଥାଏ । ତେଣୁ ଲୋଇ(Lowie) ଏହାକୁ ସାମାଜିକ ପରମ୍ପରାର ସମଗ୍ର ରୂପେ ବିବେଚନା କରିଥାନ୍ତି । ଅବଶ୍ୟ ଏହି ସମଗ୍ର ମଧ୍ୟରେ ତାର ଚିତ୍ତଗତ ଦିଗଟାହିଁ ପ୍ରଧାନ । ଚିତ୍ତର ଦୀପ୍ତି ମାତ୍ର ନୁହେଁ; ବାଞ୍ଛିତ, ଅବାଞ୍ଛିତ, ସମ୍ପଦ, ବିପଦ ସବୁ ନେଇ ସାମାଜିକ ଚିତ୍ତର ଅଭିବ୍ୟକ୍ତିହିଁ ସଂସ୍କୃତି ।

ବିଖ୍ୟାତ ସମାଜ ବିଜ୍ଞାନୀ କ୍ରୋବର ସଂସ୍କୃତିର ବର୍ଣ୍ଣନାତ୍ମକ ପରିଚୟ ଦେଇ ଲେଖିଛନ୍ତି ଯେ,—

(କ) ସଂସ୍କୃତି କେବଳ ମଣିଷର ହିଁ ରହିଛି ଓ ସେ ମଣିଷ ହେଉଛି, ସାମାଜିକ ମଣିଷ ।

(ଖ) ଗୋଟାଏ ଦିନରେ ଏହା ସୃଷ୍ଟି ହୁଏ ନାହିଁ । ସାମାଜିକ ସହାବସ୍ଥାନ ଭିତରେ ଏହା କ୍ରମଶଃ ବିକଶିତ ହୁଏ । ତେଣୁ ପରମ୍ପରା କ୍ରମରେ ଏହା ଗଡିଆସିଥାଏ । ରାଲ୍ଫ ଲିଣ୍ଟନଙ୍କ ଭାଷା ଉଦ୍ଧାର କରି ସେ କହିଛନ୍ତି—ଏହା ଏକ ସାମାଜିକ ବଂଶଗତି (Social heredity)

(ଗ) ସଂସ୍କୃତି ଯେମିତି, ପରମ୍ପରାଦ୍ୱାରା ପୂର୍ବ ନିୟନ୍ତ୍ରିତ, ସେମିତି ଏହା ଭବିଷ୍ୟତ ପାଇଁ ପଥ ନିର୍ଦ୍ଦେଶକ । ସଂସ୍କୃତି କୌଣସି ଅଚଳ ମହାମେରୁ ନୁହେଁ, ଏହା ଚଳମାନ ମାନବିକ ମୂଲ୍ୟବୋଧରହିଁ ଅନ୍ୟରୂପ ।

(ଘ) କିନ୍ତୁ ଏହା ବ୍ୟକ୍ତି ସର୍ବସ୍ୱ ବା ଜୈବିକ ନୁହେଁ । ଏହା ଅନେକ ସମୟରେ ବ୍ୟକ୍ତି ଓ ତାର ଜୈବ ସତ୍ତାକୁ ଅତିକ୍ରମ କରି ଏକ ନୂତନ ପରିଚୟ ଆହରଣ କରିଥାଏ ।

(ଙ) ଫଳତଃ ସଂସ୍କୃତି ଇତିହାସ ଓ ଅନୁଷ୍ଠାନକୁ ମୁଖ୍ୟତଃ ଆଶ୍ରୟ କରିଥାଏ । (।)

ମଣିଷ ପୃଥିବୀର ଜଟିଳତମ ଜୀବ । ଗୋଟିଏ ଦିଗରେ ପ୍ରତି ମଣିଷ ଯେପରି ଅନନ୍ୟ, ଅନ୍ୟ ଦିଗରେ ସେହିଭଳି ତା ଭିତରେ ବିଚିତ୍ର ସମ୍ଭାବନା ବର୍ତ୍ତମାନ । ଗୋଟିଏ ଦିଗରେ ସେ ଯେଉଁଭଳି ସ୍ୱତନ୍ତ୍ର, ଅପର ଦିଗରେ ସେ ସେହିଭଳି ସମାଜବଦ୍ଧ । ସମାଜବଦ୍ଧତା ମଧ୍ୟ ତାର ମୁକ୍ତି-ପିପାସାର ଅନ୍ୟତମ ଫଳଶ୍ରୁତି । ନିଜକୁ ନିଜ ଇଚ୍ଛା ଓ ବିବେକର ତାଗିଦ୍‌ରେ ଗଢିବାକୁ ସେ ସମାଜ ସୃଷ୍ଟି କରିଥାଏ । ପ୍ରକୃତିର ନିୟମ ଅଲଂଘନୀୟ, କିନ୍ତୁ ମଣିଷର ଇଚ୍ଛାଶକ୍ତି ସେ ନିୟମ ନିର୍ଦ୍ଦିଷ୍ଟତାକୁ ଅତିକ୍ରମ କରିବାକୁ ଚାହେଁ । ଇତିହାସର ପ୍ରତି ପାଦରେ, ସେ ନିଜକୁ ଯେଉଁଳି ଭାଙ୍ଗି ଭାଙ୍ଗି ଗଢେ, ଠିକ୍ ସେହିଭଳି ତା ଦ୍ୱାରା ଗଢା ହୋଇଥିବା ସମାଜ ମଧ୍ୟ ବାରମ୍ବାର ପୁନର୍ଗଠିତ ହୁଏ । ସଂସ୍କୃତିହିଁ ସମାଜର ଆତ୍ମ ପ୍ରକାଶ ହୋଇଥିବାରୁ, ତାହା ବାସ୍ତବତଃ ମାନବୀୟ ଆକାଙ୍କ୍ଷାର ସ୍ୱପ୍ରକାଶ । ମଣିଷର ସୃଜନ ଶକ୍ତି ବହୁ ବିଚିତ୍ର ହୋଇଥିବାରୁ ଏହି ସୃଜନ ଧର୍ମର ଫଳ ସଂସ୍କୃତି ବହୁ ବିଭକ୍ତ ଓ ବହୁ ବର୍ଣ୍ଣଯୁକ୍ତ ହେବା ସ୍ୱାଭାବିକ । ତେଣୁ ସଂସ୍କୃତିର ମୂଳରେ ରହିଛି ପ୍ରକୃତିର ଦାସତ୍ୱରୁ ମୁକ୍ତହୋଇ ଆପଣା ଜୀବନକୁ ନିଜ ଉଦ୍‌ଭାବିତ ଆଦର୍ଶ ଅନୁଯାୟୀ ତିଆରି କରିବାର ପ୍ରଚେଷ୍ଟା । ତେଣୁ ସଂସ୍କୃତି ଜୀବନର ଦର୍ପଣ ମାତ୍ର ହୋଇପାରେ ନାହିଁ; ଏହା ନୂଆ ସମାଜକୁ ଗଢେ । ମଣିଷ ଭିତରେ ଥିବା ସ୍ୱାଧୀନତା ଓ ସମବାୟ ପ୍ରକୃତି ଉପରେ ହିଁ ସଂସ୍କୃତିର ଭିତ୍ତି । ତେଣୁ ସଂସ୍କୃତି ଯେଉଁଳି ଏକ ନିର୍ଦ୍ଦିଷ୍ଟ ସମାଜ ଭିତରେ ସୀମାବଦ୍ଧ, ସେହିଭଳି ତାହା ବିଶ୍ୱ-ମାନବୀୟତା ଆଡକୁ ପ୍ରଧାବିତ, ଜୀବନ ଏହାର ସ୍ରଷ୍ଟା ହେଲେ ବି, ଏହାର ଏକ ସ୍ୱତନ୍ତ୍ର ପରିଚୟ, ସତ୍ତା ତଥା କାରୟିତ୍ରୀ-ପ୍ରତିଭା ରହିଛି । ସମାଜ ଓ ସଂସ୍କୃତିର ସମ୍ପର୍କ ଦ୍ୱାନ୍ଦ୍ୱିକ (dialectical ) ପରସ୍ପର ପରସ୍ପରର ବିରୋଧ କରେ, ପ୍ରଭାବିତ କରେ ଏବଂ ସୀମାବଦ୍ଧ କରେ ।

ଜୀବନର ମୁଖ୍ୟତମ ନିୟାମକ ଶକ୍ତି-ଉତ୍ପାଦନ ବ୍ୟବସ୍ଥା, ଉତ୍ପାଦନ-ଉତ୍ପାଦକ ସମ୍ପର୍କ । ଏହି ବ୍ୟବସ୍ଥା ସହ ସଂସ୍କୃତିର ସମ୍ପର୍କ ତର୍କାତୀତ । କିନ୍ତୁ ଏହି ସଂଯୋଗର ଘନିଷ୍ଠତା, ପ୍ରତ୍ୟକ୍ଷତା ଓ ଯାନ୍ତ୍ରିକତାର ସ୍ୱରୂପ

ନେଇ ଅନେକ ଯୁକ୍ତି ରହିଛି । ମାର୍କସ ଏହି ପ୍ରସଙ୍ଗରେ ସୌଧର ଯେଉଁ ଉପମା ଦେଇଥିଲେ ତାହା ଆଜି ବହୁ ପରିଚିତ । ଉତ୍ପାଦନ ବ୍ୟବସ୍ଥା ଯଦି ଭିତ୍ତି ହୁଏ, ତା ହେଲେ ସଂସ୍କୃତି ହେଉଛି ସୁପର ଷ୍ଟ୍ରକ୍ଚର ବା ସୌଧର ଉପରିଭାଗ କିନ୍ତୁ ଏହି ଉପମାର ସୀମାବଦ୍ଧତା ରହିଛି । ବାସ୍ତବ ଦୃଷ୍ଟିରୁ ଦେଖିଲେ ଭିତ୍ତି ଭଳି ଉତ୍ପାଦନ ବ୍ୟବସ୍ଥା ତଥା ସୁପର ଷ୍ଟ୍ରକ୍ଚର ଭଳି ସଂସ୍କୃତି–ଉଭୟ ସ୍ଥାବର ବା ରେଡିମେଡ୍ ଅଚଳ ବସ୍ତୁ ବିଶେଷ ନୁହଁ । ଉଭୟେ ଚଳମାନ ଓ ବିବର୍ତ୍ତିତ । ତେଣୁ ସଂସ୍କୃତି ସମାଜର କେବଳ ବାହ୍ୟ ରୂପ ନୁହେଁ, ତାର ଉତ୍ପାଦନ ବ୍ୟବସ୍ଥାକୁ ବି ଏହା ନିୟନ୍ତ୍ରିତ କରେ ।

କୌଣସି ଲେଖକର ସଂସ୍କୃତି ଜିଜ୍ଞାସା ବା ବିଶିଷ୍ଟ ସଂସ୍କୃତିର ଆଲୋଚନାକୁ, ପର୍ଯ୍ୟାଲୋଚନା କରିବାକୁ ହେଲେ, ସେ ସଂସ୍କୃତି ସଂପର୍କରେ କେତେକ ଅତି ସାଧାରଣ ତତ୍ତ୍ୱ ସହିତ ପରିଚିତି କି ନାହିଁ, ତାହା ଦେଖିବାକୁ ପଡିବ । ଦ୍ୱିତୀୟତଃ ଐତିହାସିକ ଯେଭଳି ନିଜର ସଂକୀର୍ଣ୍ଣ ଦେଶ, କାଳ ଭିତରେ ସୀମାବଦ୍ଧ ହୋଇ, ନିରବଧି କାଳର ରଚନା କରିବାକୁ ଯାଇ, ନିଜ ଦେଶ, କାଳର ସୀମାବଦ୍ଧତା ପ୍ରକାଶ କରିଥାଏ ଠିକ୍ ସେହିଭଳି ସଂସ୍କୃତିର ଆଲୋଚକ ନିଜର ଆଲୋଚନା ଭିତରେ ଆପଣା ସଂସ୍କୃତି ଓ ସାଂସ୍କୃତିକ ଜିଜ୍ଞାସାର ସୀମାବଦ୍ଧତା ପ୍ରକାଶ କରିଥାନ୍ତି ।

ଓଡିଆ ଲେଖକମାନେ ସଂସ୍କୃତିର ତାତ୍ତ୍ୱିକ ବିଗ୍ରହ ବା ବିଦେଶୀ ସଂସ୍କୃତିର ବିଗ୍ରହ କରିବା ତ ଦୂରର କଥା, ନିଜ ସଂସ୍କୃତିର ପରିଚୟ ମଧ୍ୟ ବହୁଦିନ ପର୍ଯ୍ୟନ୍ତ ଦେଇପାରି ନଥିଲେ । ଊନବିଂଶ ଶତାବ୍ଦୀରେ ଓଡିଶା, ବିଶେଷତଃ ପୂର୍ବ ଓଡିଶାର ରାଜନୈତିକ ଇତିହାସ ରଚନା କରାଯିବା ସମୟରେ ଆଞ୍ଚଳୀୟ ସଂସ୍କୃତିର ଚର୍ଚ୍ଚା କରାଯାଇ ଥିଲା । ବିଂଶ ଶତାବ୍ଦୀରେ ସାହିତ୍ୟ ତଥା ସ୍ଥାପତ୍ୟର ବିଗ୍ରହ କରିବାକୁ ଯାଇ, ନିର୍ମଳ କୁମାର ବସୁ, ପଣ୍ଡିତ ନୀଳକଣ୍ଠ ଦାସ ପ୍ରମୁଖ ଓଡିଆ ସଂସ୍କୃତିର ଚର୍ଚ୍ଚା ଆରମ୍ଭ କରିଥିଲେ । ଆଦିମ ଜନଜାତି ଗବେଷଣାର ପଥିକୃତ ଭେରିଅର ଏଲ୍ୱିନ୍, ନିର୍ମଳ କୁମାର ବସୁ ଓ ଶରତଚନ୍ଦ୍ର ରାୟ ଓଡିଶାର ସୀମାରେଖା ଭିତରେ ଥିବା ଅବହେଳିତ ମୁଣ୍ଡା, ଶବର, ଜୁଆଙ୍ଗ, ତଥା ସାନ୍ତାଳମାନଙ୍କର ଜୀବନଯାପନ ବିଧି ସଂପର୍କରେ ଆଲୋକପାତ କରିଥିଲେ । ତଥାପି ଦୁଃଖର ସହିତ କହିବାକୁ ପଡୁଛି ଓଡିଶାରେ ସଂସ୍କୃତି ଗବେଷଣା ବା ଆଲୋଚନା ତାର ପ୍ରାଥମିକ ଅବସ୍ଥା ଅତିକ୍ରମ କରିପାରି ନାହିଁ । ମାନସିଂହ ତାଙ୍କର 'ଦି ସାଗା ଅଫ୍ ଦି ଲ୍ୟାଣ୍ଡ ଅଫ ଜଗନ୍ନାଥ', 'ଓଡିଆ ସାହିତ୍ୟର ଇତିହାସ' ତଥା ବିଭିନ୍ନ ବିକ୍ଷିପ୍ତ ପ୍ରବନ୍ଧରେ ସଂସ୍କୃତି ସଂପର୍କରେ ଯେଉଁସବୁ ଆଲୋଚନା କରିଛନ୍ତି, ତାହା ହେଉଛି ରାଜନୈତିକ ଓଡିଶାର ଏକ ନିର୍ଦ୍ଦିଷ୍ଟ ଜାତିର ସଂସ୍କୃତି ଆଲୋଚନା । ମାନସିଂହଙ୍କର ଏହି ସୀମାବଦ୍ଧତା ଯେଉଁପରିମାଣରେ ଆମ ସଂସ୍କୃତି ଆଲୋଚନାର ସୀମାବଦ୍ଧତାକୁ ନିର୍ଦ୍ଦିଷ୍ଟ କରିଥାଏ, ଠିକ୍ ସେହିଭଳି ନିଜେ ଜନ୍ମଗ୍ରହଣ କରିଥିବା ପରଂପରାର ଖୋଳପା ଭିତରୁ ବାହାରି ଆସିବାର ଅସମର୍ଥତାକୁ ହିଁ ପ୍ରତିଫଳିତ କରିଥାଏ ।

ପୂର୍ବରୁ କୁହାଯାଇଛି ଯେ, ମାନସିଂହ ପାରିକୁଦ ମଧ୍ୟସ୍ଥ ଏକ ଗ୍ରାମୀଣ ମଧ୍ୟବିତ୍ତ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ସେ ପରିବାରର ବର୍ତ୍ତମାନ ଦୃଷ୍ଟିରେ ଆର୍ଥିକ ସ୍ୱଚ୍ଛଳତା ନଥିଲା ବା ନିଜ ପରିବେଶକୁ ଅତିକ୍ରମ କରି ବାହାର ଜଗତରେ ଅଧ୍ୟୟନ କରିବା ପାଇଁ ସୁଯୋଗ ଦେବାର ଆର୍ଥିକ ସ୍ୱଚ୍ଛଳତା ନ ଥିଲା, କିନ୍ତୁ ତାଂର

ଆଭିଜାତ୍ୟ ଥିଲା ଦୃଢ଼ମୂଳ । ତାଙ୍କର ପାରିବାରିକ ସଂଜ୍ଞା ମାନସିଂହଙ୍କ ହିଁ ତାର ସୂଚନା । ମାନସିଂହ ଏକ କ୍ଷତ୍ରିୟ ଉପାଧି । କ୍ଷତ୍ରିୟମାନେ ରାଜ ବଂଶଜ, ତେଣୁ ମାନସିଂହଙ୍କ ମନରେ, ସେ ଯେ ଅତୀତରେ ବୀରତ୍ୱ ଏବଂ ସମ୍ଭ୍ରାନ୍ତ୍ୟ ଥିବା ଏକ ପରିବାରର ଦାୟାଦ, ଏହିଭାବ ଚିରଦିନ ରହି ଆସିଥିଲା । ସାମନ୍ତ ପ୍ରତିଦ୍ୱନ୍ଦ୍ୱିତାକୁ ଘୃଣାକରେ । ଅର୍ଥର ମୋହକୁ ସେ ଅସ୍ୱୀକାର କରେ କିନ୍ତୁ ଭଲରେ ବଞ୍ଚିବା ପାଇଁ ଗ୍ରହେଁ । ମାନସିଂହ ଯେଉଁ ପରିବେଶରେ ବଢିବାପାଇଁ ବାଧ୍ୟ ହୋଇଥିଲେ ଓ ଯେଉଁ ପରିବେଶରେ ତାଙ୍କର ବୌଦ୍ଧିକ ଜୀବନର ବିକାଶ ହୋଇଥିଲା, ତାହା ଥିଲା କଟକ ସହର ଓ ପାଟନା ସହରର ବର୍ଦ୍ଧିଷ୍ଣୁ ଓ ପ୍ରତିଯୋଗିତାମୟ ଜୀବନ, ମାଳୁଦର ପ୍ରତିଯୋଗିତାହୀନ ଓ ସ୍ତିମିତ ସମାଜ ନୁହେଁ । ଗ୍ରାମ୍ୟ ସମାଜରେ ପ୍ରତ୍ୟେକ ବ୍ୟକ୍ତିର ଏକ ପରିଚୟ ଥାଏ । କିନ୍ତୁ ସହରରେ ସେ ପରିଚୟ ଖୋଜି ବସିଲେ ହତାଶ ହେବାକୁ ହୁଏ । ମାନସିଂହ ନିଜର ଛାତ୍ର ଜୀବନରେ ଏହି ପରିଚୟ ସଂକଟର ସମ୍ମୁଖୀନ ହୋଇଥିବା ସ୍ୱାଭାବିକ । ପରିଚୟ ସଂକଟରୁ ମୁକ୍ତିପାଇଁ ଗ୍ରାମର ଗ୍ରାମବାସୀ ସହରକୁ ଆସିଲେ ଜାତିଭାଇ ଶୃଙ୍ଖଳା କରେ । ନିଜ ଗାଁ, ଜାତି ବା ଅର୍ଥକୁ ନେଇ ସଂଘ ଗଢେ । କିମ୍ବା ନିଜ ଭିତରେ ସୁପ୍ତ ରହିଥିବା ଅଥଚ ସହରରେ ପରିଚୟ ଲାଭର ମାଧ୍ୟମ ହୋଇଥିବା ନାନା ପ୍ରତିଭାର ସନ୍ଧାନ କରେ । ମାନସିଂହ ନିଜ ଭିତରେ ଏହି କବି ପ୍ରତିଭାର ହିଁ ସନ୍ଧାନ କରିଥିଲେ । ଗ୍ରାମ୍ୟ ମଧ୍ୟବିତ୍ତ ସହରରେ ଦେଖାଦେଉଥିବା, ଆର୍ଥିକ ସଂକଟ, ପରିଚୟ ସଂକଟ ଓ ସମ୍ମାନ ସଂକଟ, ତାକୁ ଗ୍ରାମ, ଅତୀତ ଓ ପଶ୍ଚାତ୍ ଜୀବନ ପ୍ରତି ଆକର୍ଷିତ କରିଦିଏ । ନିଜେ ବଞ୍ଚିଥିବା ଜୀବନପ୍ରତି ତା ଭିତରେ ଏକ ଉନ୍ନାସିକ ଭାବ ଆଣିଦିଏ । ମାନସିଂହଙ୍କ କ୍ଷେତ୍ରରେ ମଧ୍ୟ ତାହା ହୋଇଛି । ତାଙ୍କର ଆତ୍ମଜୀବନୀ ମୂଳକ ଉପନ୍ୟାସ 'ଅନ୍ୱେଷଣ'ର ପ୍ରଭୁପାଦ ଚରିତ୍ରର କ୍ରିୟାକଳାପ ଭିତରେ ଏହି ସମସ୍ତ ସଂକଟ ପ୍ରକାଶ ପାଇଛି ।

କେବଳ ମାନସିଂହ ନୁହନ୍ତି ସମଗ୍ର ଭାରତର ସାଂସ୍କୃତିକ ଜୀବନ ବର୍ତ୍ତମାନ ପ୍ରତି ଏକ ଉନ୍ନାସିକତାରେ ଭରା । ବର୍ତ୍ତମାନର ଗ୍ଲାନିକୁ ଭୁଲି ଭବିଷ୍ୟତରେ ଉନ୍ନତ ହେବାପାଇଁ ବିବେକାନନ୍ଦଙ୍କ ଠାରୁ ଗାନ୍ଧିଙ୍କ ପର୍ଯ୍ୟନ୍ତ ଆମର ସମସ୍ତ ମହାପୁରୁଷ ଆହ୍ୱାନ ଦେଇଛନ୍ତି । ପୁଞ୍ଜିବାଦୀ ଅର୍ଥନୀତି ତାର ଜୟଯାତ୍ରା ଉଡାଇ ବିଶ୍ୱ ସମାଜକୁ କ୍ରମଶଃ କଳଙ୍କିତ କରିଛି । ଆଧୁନିକ ଜୀବନର ପ୍ରମୁଖ ମୂଲ୍ୟବୋଧ ଯଥା:—ନିୟମନିଷ୍ଠ ସମାଜ, ସାମାଜିକ ଅଧିକାର, ଜାତୀୟତା, ସାମାଜିକ ଶିକ୍ଷା, ତଥା ବୈଜ୍ଞାନିକ ବିଗ୍ରହବୋଧ, ଏହି ସମସ୍ତ ପୁଞ୍ଜିବାଦୀ ଅର୍ଥନୀତିର ପ୍ରତ୍ୟକ୍ଷ ବା ପରୋକ୍ଷ ଫଳଶ୍ରୁତି । ଭାରତ, ଇଂରେଜ ଉପନିବେଶବାଦୀ ଶାସନ କଳ ଓ ଆର୍ଥନୀତିକ ବ୍ୟବସ୍ଥା ଫଳରେ ପୁଞ୍ଜିବାଦର ସଂପର୍କରେ ଆସିଥିଲା । ଏହି ଔପନିବେଶିକ ପୁଞ୍ଜିବାଦୀ ଅର୍ଥନୀତି ଓ ସମାଜ ବ୍ୟବସ୍ଥା ଆମର ପୁରୁଣା ସାମନ୍ତତନ୍ତ୍ରକୁ ଭାଙ୍ଗି ଏକ ନୂଆ ସାମନ୍ତତନ୍ତ୍ରର ବ୍ୟବସ୍ଥା କରିଥିଲା । ଯେଉଁ ପରିଚୟରେ ମଧ୍ୟବିତ୍ତ ହେଲେ ବି ବାସ୍ତବତଃ ସେମାନେ ଥିଲେ ସାମନ୍ତ ମନୋବୃତ୍ତି ସଂପନ୍ନ । ମାନସିଂହଙ୍କ କ୍ଷେତ୍ରରେ ମଧ୍ୟ ତାହା ଘଟିଥିଲା । ଓଡିଶାର ଏହି ମଧ୍ୟବିତ୍ତ ଶ୍ରେଣୀର ଅଭ୍ୟୁଦୟ ବହୁ ପଛରେ ଘଟିଥିବାରୁ ଆଧୁନିକ ମାନଦଣ୍ଡରେ ତାର ବିକାଶ ମଧ୍ୟ ପଛରେ ପଡିଯାଇଥିଲା । ଆଧୁନିକ କାଳର ସଂସ୍କୃତି ମୁଖ୍ୟତଃ ମଧ୍ୟବିତ୍ତର ସଂସ୍କୃତି । ଏ ସଂପର୍କରେ ଓଡିଶାର ବିଖ୍ୟାତ ଐତିହାସିକ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ

ମତ ଉଲ୍ଲେଖ ଯୋଗ୍ୟ "ମଧ୍ୟବିତ୍ତ ଶ୍ରେଣୀ ହିଁ ସମାଜର ମେରୁଦଣ୍ଡ । ଓଡିଶାରୁ ଏହି ଶ୍ରେଣୀ ଲୋପପାଇ ଥିବାରୁ ଓଡିଆ ସଂସ୍କୃତିର ପ୍ରଗତି ଅତ୍ୟନ୍ତ ମନ୍ଥର ହୋଇ ପଡିଥିଲା ଓ ଓଡିଆମାନେ ଶିକ୍ଷା ଓ ସାଂସ୍କୃତିକ କ୍ଷେତ୍ରରେ ଅନ୍ୟ ଭାଷାଭାଷୀମାନଙ୍କ ବହୁପଛରେ ପଡିଯାଇଥିଲେ । କାଳର କ୍ରୂର ଚକ୍ରାନ୍ତରେ ଓଡିଆମାନେ ଏହିପରି ବହୁ ପଛରେ ପଡିଥିବାବେଳେ 1936 ମସିହାରେ ବ୍ରିଟିଶ ସରକାରଙ୍କ ଦୟାର ଦାନ ସ୍ୱରୂପ ସେମାନଙ୍କୁ ନୂତନ ପ୍ରଦେଶଟିଏ ମିଳି ଥିଲା । ଏହାର ନାମ ଓଡିଶା ପ୍ରଦେଶ ରଖାଯାଇଥିଲେ ମଧ୍ୟ ଏହା ପ୍ରାକୃତିକ ଓଡିଶାର ପ୍ରକୃତ ପ୍ରତିନିଧି ନ ଥିଲା । 'ନାହିଁମାମୁଁ ଠାରୁ କଣାମାମୁ ଭଲ'—ଏହି ନୀତିରେ ଓଡିଆମାନେ ଏହାକୁ ଗ୍ରହଣ କରି ନେଇଥିଲେ, କିନ୍ତୁ ଓଡିଶା ପ୍ରଦେଶରେ ପରିଣତ ହେବା ସଂଗେ ସଂଗେ ସାଂସ୍କୃତିକ କ୍ଷେତ୍ରରେ କୌଣସି ଚମକପ୍ରଦ ପ୍ରଗତି ଘଟି ନଥିଲା । ଦୀର୍ଘ ଶୃଙ୍ଖଳାବଦ୍ଧୀର ଦାରିଦ୍ର୍ୟ, ଦୁର୍ଭିକ୍ଷ ବନ୍ୟା, ରୋଗ, ଅଶିକ୍ଷା ଓ ହୀନମନ୍ୟତା ମଧ୍ୟରେ ନିଷ୍ପେଷିତ ଓଡିଆ 1936 ମସିହାରେ ପ୍ରଥମଥର ପାଇଁ ଆସିମେଳି ଗୁହିଥିଲା ସତ୍ୟ, କିନ୍ତୁ ପ୍ରତିବେଶୀମାନଙ୍କ ସଂଗରେ ପାଦମିଳାଇ ଚାଲିବାର ସାମର୍ଥ୍ୟ ତାର ନଥିଲା । ସନ 1936 ମସିହାରୁ 1947 ମସିହା ମଧ୍ୟରେ କେବଳ ଗୋଟିଏ ଉଲ୍ଲେଖଯୋଗ୍ୟ ଘଟଣା ଘଟିଥିଲା, ଯାହାକି ଓଡିଶାର ନୂତନ ସ୍ପନ୍ଦନ ଆଣି ଦେଇଥିଲା । ତାହା ହେଉଛି 1943 ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟର ସଂସ୍ଥାପନ । ଏହି ବିଶ୍ୱବିଦ୍ୟାଳୟ ସ୍ଥାପିତ ହେବା ସଂଗେ ସଂଗେ ସମ୍ବଲପୁର, ବାଲେଶ୍ୱର ଓ ପୁରୀରେ ତିନୋଟି କଲେଜ ମଧ୍ୟ ସ୍ଥାପିତ ହେବାରୁ ଓଡିଶାରେ ଉଚ୍ଚଶିକ୍ଷାର ଦାରିଦ୍ର୍ୟ କେତେକ ପରିମାଣରେ ହ୍ରାସ ହୋଇ-ଥିଲା । ତଥାପି ସ୍ୱାଧୀନତା ପୂର୍ବରୁ ସାଂସ୍କୃତିକ କ୍ଷେତ୍ରରେ ଓଡିଶା କିପରି ଅନଗ୍ରସର ଥିଲା, ତାହା ଗୋଟିଏ ଉଦା-ହରଣରୁ ସହଜରେ ଅନୁମିତ ହେବ । ଖ୍ରୀ: 1944 ମସିହାରେ ଦେଖାଯାଇଥିଲାଯେ ସମଗ୍ର ପ୍ରଦେଶଟିରେ ଗୋଟିଏ ସୁଦ୍ଧା ସାହିତ୍ୟ ପତ୍ରିକା ଜୀବିତ ନ ଥିଲା । ଏଣୁ ବାମଣ୍ଡା ରଜାଙ୍କ ସାହାଯ୍ୟରେ ଡକ୍ଟର ମାୟାଧର ମାନସିଂହ 'ଶଂଖ ' ନାମକ ଏକମାତ୍ର ପତ୍ରିକା ପ୍ରକାଶ କରିଥିଲେ ।"(2)

ମାନସିଂହ ତାଙ୍କର ଚାକିରୀକାଳ ମଧ୍ୟରେ ସରକାର, ରାଜା ବା ଧନୀସଂପ୍ରଦାୟ ସାହାଯ୍ୟରେ ଓଡିଶାର ସଂସ୍କୃତିକୁ ବାହାରେ ପରିଚିତ କରିବା ତଥା ଏହାର ଉତ୍କର୍ଷକୁ ପ୍ରତିଷ୍ଠା କରିବା ପାଇଁ ଉଦଗ୍ରୀବ ଥିଲେ । ମାନସିଂହଙ୍କ ସଂସ୍କୃତି ଆଲୋଚନା ତେଣୁ ତାଙ୍କର ଜାତିପ୍ରେମର ଅନ୍ୟଏକ ପ୍ରକାଶ । ମାନସିଂହଙ୍କର ସଂସ୍କୃତି ଜିଜ୍ଞାସା ତେଣୁ ଦୁଇଟି ରୂପରେ ହିଁ ପ୍ରକାଶ ପାଇଛି । ଗୋଟିଏ ହେଲା କବି ମାନସିଂହଙ୍କ ସଂସ୍କୃତି ବିଚାର, ଦ୍ୱିତୀୟଟି ହେଲା ସାହିତ୍ୟ ସଂସ୍କୃତି ପ୍ରତି ଶ୍ରଦ୍ଧାଶୀଳ ଐତିହାସିକ ମାନସିଂହଙ୍କର ସାଂସ୍କୃତିକ ଜିଜ୍ଞାସା । ଦୁଇଟି ଭିତରେ ବିରୋଧ ନାହିଁ, ବରଂ ଗୋଟିଏ ଅପରଟିର ପରିଣାମ କେବଳ । ମାନସିଂହ ଆଦ୍ୟ ବୟସରେ ଚିଲିକା ଅଞ୍ଚଳରୁ ବାହାରିଆସି, କଟକ ପୁରୀ ଘାଟରେ ଗୋଟିଏ ବିରାଟ ଜାତିର ଦାୟାଦ ଭାବରେ ଯେଉଁଳି ନିଜକୁ ଅନୁଭବ କରିଥିଲେ, ତାର ପ୍ରତିଫଳନ ଘଟିଛି ହେମା, ସାଧବଝିଅ, ରାଜକବି ଉପେନ୍ଦ୍ର, କୋଣାର୍କଠାରୁ ମାଟିବାଣୀର ଅଜସ୍ର କବିତାରେ । କୌଣସି କିଛିର ବିଚାର କରିବାକୁ ହେଲେ ବିଚାରକର ବିଚାର ବସ୍ତୁ ... ଠାରୁ ମାନସିକ

## ॥ ମାନସିଂହଙ୍କ ବିଗ୍ରହଧାରା ॥

ଦୂରତ୍ୱ ଆବଶ୍ୟକ । ବିଗ୍ରହପାଇଁ ଆବଶ୍ୟକ ମାନସିକ ଦୂରତ୍ୱର ଅଭାବ ଘଟିଲେ, ବିଗ୍ରହବସ୍ତୁ ବିଗ୍ରହକର ବ୍ୟକ୍ତିତ୍ୱ ସହ ଜଡିତ ହୋଇପଡେ । ବିଗ୍ରହବସ୍ତୁ ସଂପର୍କରେ ବିଗ୍ରହକର ବାଙ୍ମୟ ପ୍ରକାଶ ଆବେଗ ପ୍ରବଣ କବିତାରେ ରୂପାନ୍ତରିତ ହୁଏ । ମାନସିଂହଙ୍କର କବିତା ଏ ଗୁଡିକର ଏକ ଚମତ୍କାର ଦୃଷ୍ଟାନ୍ତ । ଦ୍ୱିତୀୟ ସ୍ତରରେ ମାନସିଂହଙ୍କର ଓଡିଶା ସଂସ୍କୃତି ସଂପର୍କରେ ବିଗ୍ରହ ଅଧିକ ବସ୍ତୁନିଷ୍ଠ ହେବାକୁ ବାଧ୍ୟ ହୋଇଛି । ସମୟ ଯେଉଳି ଜୀବନର ବିଭିନ୍ନ ପାହାଚ ଭିତରେ ଦୂରତ୍ୱକୁ ଅବଧାରିତ କରି ତୋଳେ । ଇଂଲଣ୍ଡ ଯାତ୍ରା ପରେ ମାନସିଂହ ଯେଉଁ ମୁକ୍ତ ଦୃଷ୍ଟି ଆହରଣ କରିଛନ୍ତି, ସେଇ ମୁକ୍ତ ଦୃଷ୍ଟି ତାଙ୍କୁ ନିଜ ସଂପର୍କରେ ଓ ନିଜର ସଂସ୍କୃତି ସଂପର୍କରେ ଅଧିକ ସଚେତନ କରିଛି । ମାନସିଂହଙ୍କ ପରବର୍ତ୍ତୀ ସାଂସ୍କୃତିକ ବିଗ୍ରହ ଏହିଭଳି ଏକ ସଚେତନତା ଦୃଷ୍ଟ ମାନସିକ ଦୂରତ୍ୱର ଭାଷାଗତ ପ୍ରକାଶ । କିନ୍ତୁ ଏଠାରେ ସ୍ମରଣ ଯୋଗ୍ୟ ଯେ, ତାଙ୍କର ଅଧିକାଂଶ ଆଲୋଚନା ମନସ୍ତ୍ୱଧର୍ମୀ, ତାର କାରଣ ଓଡିଶାର ସଂସ୍କୃତିକୁ ସେ ନିଜେ ଉତ୍ତରାଧିକାର ସୂତ୍ରରେ ପାଇଥିବା ଜୀବନଚର୍ଯ୍ୟାର ପରିଧି ବାହାରେ କେବେ ଦେଖିପାରି ନାହାନ୍ତି ।

ମାନସିଂହଙ୍କ ସଂସ୍କୃତି ବିଗ୍ରହର ଏହି ଦୁଇଟି ରୂପ, ତାଙ୍କର ୧୯୩୬ ମସିହା ପୂର୍ବର ପ୍ରବନ୍ଧ ଓ ପରର ପ୍ରବନ୍ଧକୁ ତୁଳନାତ୍ମକ ଭାବରେ ଉପସ୍ଥାପିତ କରି ଉଭୟ ମଧ୍ୟରେ ଥିବା ପାର୍ଥକ୍ୟକୁ ସ୍ପଷ୍ଟ କରାଯାଇପାରେ । ଓଡିଆ ଭାଷା ସାହିତ୍ୟର ବିକାଶ ଓ ରାଜନୈତିକ ଜୀବନର ପ୍ରତିଷ୍ଠା ପାଇଁ ୧୯୦୩ ମସିହା ପରେ ଯେଉଁ ସାଂସ୍କୃତିକ ଆନ୍ଦୋଳନ ମଧୁସୂଦନ ଦାସଙ୍କ ନେତୃତ୍ୱରେ ଆରମ୍ଭ କରାଯାଇଥିଲା, ଯୌବନରେ ମାନସିଂହ ସେଥିରେ ପ୍ରତ୍ୟକ୍ଷ ଅଂଶ ଗ୍ରହଣ କରିଥିଲେ । ସଂଗ୍ରାମ କାଳରେ ପ୍ରତ୍ୟେକ ବ୍ୟକ୍ତି, ଅନ୍ୟ ଗୋଷ୍ଠୀ ତଥା ବିରୋଧୀ ଜାତି ପ୍ରତି ସ୍ପର୍ଶ କାତର । ମାନସିଂହଙ୍କର ସ୍ୱ-ଜାତି ମୋହ ତାଙ୍କୁ ବଙ୍ଗ ସାହିତ୍ୟ ଓ ସଂସ୍କୃତି ପ୍ରତି କେତେକାଂଶରେ ବିଦ୍ୱେଷୀ କରି ଦେଇଥିଲା । ବଙ୍ଗଳା ଭାଷା ଓ ସଂସ୍କୃତିର ପ୍ରଭାବ ଓଡିଆ ସଂସ୍କୃତିର ସ୍ୱାତନ୍ତ୍ର୍ୟ ପ୍ରତି ହାନିକାରକ, ଏହିଭଳି ଏକ ଧାରଣା ସେ 'ପରଧର୍ମ' ପ୍ରବନ୍ଧରେ ଉପସ୍ଥାପିତ କରିଥିଲେ । ରବୀନ୍ଦ୍ରନାଥଙ୍କ ପ୍ରତି ଶ୍ରଦ୍ଧା ତାଙ୍କୁ ଏହି ଏକଦେଶଦର୍ଶୀ ସ୍ୱଜାତିପ୍ରୀତିରୁ ବିରତ କରିପାରି ନଥିଲା । ସବୁଜ କବିମାନେ ବଙ୍ଗଳା କବିମାନଙ୍କର ପ୍ରଭାବକୁ ସ୍ୱୀକାର କରି ନେଇ ଥିବାରୁ ସେ ଏହାର ପ୍ରତିବାଦ କରି ଲେଖିଥିଲେ :—"ସବୁଜ ସାହିତ୍ୟ ସମିତି' ଏହି ବଙ୍ଗ ପ୍ରଭାବ ପାଇଁ ବିଶେଷ ଭାବେ ଦାୟୀ । ଏହି ସମିତି ଯୋଗ୍ୟ ବ୍ୟକ୍ତିମାନଙ୍କ ଦ୍ୱାରା ପରିଚାଳିତ ହେଉଥିଲା, କିନ୍ତୁ ଦୋଷ ଏତିକି ଯେ, ଏହି ଓଡିଶା ଦେଶ ର ଧୂଳି-ମାଟି ସଂଗେ ଏମାନେ ସମ୍ପର୍କ ନ ରଖି ବଂଗାଳୀ ସମାଜର ଶିକ୍ଷିତ ସଖ୍ୟ ଉର୍ଦ୍ଧ୍ୱ ବାୟୁ ମଣ୍ଡଳରେ ଅନବରତ ବୁଲୁଥିଲେ । ଏ ଦେଶରେ ଯେ କିଆ-ପୋଲାଙ୍ଗ ଫୁଟି ଝଡି ପଡୁଛି, ସେ ଖବର ନ ରଖି ଏମାନେ ଗ୍ଲୁମେଲି, ଗୋଲାପ, ବେଲ୍‌ଫୁଲ୍, ହାସ୍ନା-ହେନାର ଗନ୍ଧ ଆଣି ଆମକୁ ଶୁଙ୍ଘାଇଲେ । ସାଧବଝିଅ ନଈରେ ଗାଧୋଉଥିଲା ବେଳେ ଛିଣ୍ଡି ପଡିଥିବା ବାରହାତ ଲମ୍ବାଳକୁ ସୁନା ଫରୁଆରେ ପୂରାଇ ପାଣିରେ ଭସାଇ ଦେଇ ଅନାଇ ରହିଛି, ସେ ଦୃଶ୍ୟ କବିମାନେ ଦେଖିପାରୁ ନାହାନ୍ତି, ସେମାନେ ସବୁଜପରି, ଆସମାନ-ପରୀ ର ନୃତ୍ୟ ଆମକୁ ଦେଖାଉଛନ୍ତି । ଏ ଜୀବ ଏମାଟିରେ ପରିଚିତ ନୁହେଁ । ଏମାନଙ୍କୁ ବୁଝିବାକୁ ଓଡିଆ ଜାତିକି ବହୁବର୍ଷ ଟ୍ରେନିଂ ପାଇବାକୁ ହେବ । ଏ

ପ୍ରଚାର ସାହିତ୍ୟ ଓ ଭାଷାର କେବେହେଲେ ସମୃଦ୍ଧି ସାଧନ କରିବ ନାହିଁ; କାରଣ ଏଥିରେ ଜାତିର ପ୍ରାଣ ପ୍ରଚାର ସାଉନାହିଁ । ପ୍ରତ୍ୟେକ ଜାତିର ଓ ପ୍ରତ୍ୟେକ ଭାଷାର ସ୍ୱତନ୍ତ୍ର ଧର୍ମ ଓ ପ୍ରାଣ ଅଛି । X X ଆମ ଦେଶରେ କାବ୍ୟ ଉପାଦାନ ଯଥେଷ୍ଟ ରହିଛି । ବିଚିତ୍ର ପ୍ରକୃତି, ଗାରିମାମୟ ଅତୀତ, ଉଜ୍ଜ୍ୱଳ ଭବିଷ୍ୟତ—ଏଥିରେ କ'ଣ କାବ୍ୟର ଉପାଦାନ ନାହିଁ ?"(୩) ପରବର୍ତ୍ତୀ କାଳରେ ସେ ଅପରସଂସ୍କୃତିର ମହନୀୟତାକୁ ଉପଲବ୍ଧ କରିଛନ୍ତି । ନିଜ ସଂସ୍କୃତିକୁ ପୁଷ୍ଟ କରିବାରେ ଯଦି ଅପର ସଂସ୍କୃତିର କିଛି ଭୂମିକା ଅଛି, ତେବେ ତାହା ଗ୍ରହଣ କରିବା ପାଇଁ ଉପଦେଶ ଦେଇଛନ୍ତି । ଏପରିକି ସେ ସବୁଠାରୁ ଅଧିକ ରବୀନ୍ଦ୍ରନାଥଙ୍କୁ ଅନୁସରଣ ମଧ୍ୟ କରିଛନ୍ତି । କଲିକତାରେ ଅନୁଷ୍ଠିତ ପ୍ରବାସୀ ଉତ୍କଳ ସାହିତ୍ୟ ସମ୍ମିଳନୀ(୧୨୪୧)ରେ ସଭାପତି ଅଭିଭାଷଣରେ ମାନସିଂହ କହିଥିଲେ :—

"ଆପଣମାନେ ଯେଉଁ ଯେଉଁ ଦେଶରେ ରହିଛନ୍ତି, ସେ ସ୍ଥାନରେ ଯାହାକିଛି ଶ୍ରେଷ୍ଠ ଓ ମହତ, ତାହା ଆମ କୃଷ୍ଟି ଓ ସାହିତ୍ୟରେ ପୁରେଇବାର ଚେଷ୍ଟା କରନ୍ତୁ । ଆମ ଅଧୋଗତିର ଗୋଟିଏ ବଡକାରଣ, ଆମର କୂପମଣ୍ଡୁକତା । ଆମର ଚିନ୍ତାନାୟକମାନେ ଆମର ଚାରିପଟେ ହୁଡା ଦେଇ ଆମ ଜାତିକୁ ଗୋଟିଏ ବଦ୍ଧ ଜଳାଶୟରେ ପରିଣତ କରିବାକୁ ଚାହାନ୍ତି । ସେମାନେ ଭାବୁଛନ୍ତି, ହୁଡା ଟବାଇଦେବେ ଆମର ନିଜତ୍ୱ ରକ୍ଷା ହେବ, କିନ୍ତୁ ମୁଁ କହେ ଚାରିଆଡୁ ଗିଆରି କାଟି ଦବାଅ, ଆମ ବିଲକୁ ଚାରିପଟର ପାଣି ଓ ପଟୁମାଟି ଆସି ତାକୁ ଉର୍ବରା କରିବ । X X X ତେଣୁ ତୁମେ ଓଡିଆ ନିଜର ନିଜତ୍ୱ କୃଷ୍ଟିକି ହରାଇବ ବୋଲି ଭୟ କରନାହିଁ । ତୁମେ ଅନ୍ୟର କୃଷ୍ଟିକୁ ଚିହ୍ନିଲେ, ନିଜ କୃଷ୍ଟିକୁ ଭଲ ଭାବରେ ଯାଚ ବିଗ୍ରହ କରିବ । ତେଣୁ ବିଦେଶରେ ଯିଏ ଯେଉଁଠି ଅଛ, ସେ ଦେଶର ସାହିତ୍ୟ ଓ ସମାଜର ଯାହା ଉତ୍କୃଷ୍ଟ, ସେ ସବୁ କୁ ତନ୍ନ ତନ୍ନ କରି ବିଶ୍ଳେଷଣ କର ଏବଂ ଦେଖ କାହିଁକି ସେମାନଙ୍କର ଉନ୍ନତି ହୋଇଛି ଏବଂ ଆମ ଲୋକଙ୍କୁ କୁହ, ତାଙ୍କର କେଉଁ କେଉଁ ଗୁଣ ଅନୁସରଣ କଲେ, ଆମର କଲ୍ୟାଣ ହେବ ।"(୪)

'ପରଧର୍ମ' ପ୍ରବନ୍ଧ ଓ ଏ ଅଭିଭାଷଣ ଯେ ପରସ୍ପର ବିରୋଧୀ ଭାବଧାରାର ପରିଚାୟକ ଏଥିରେ ସଂଦେହ ନାହିଁ । ଏଥିରୁ ଅନୁମିତ ହେବ ଯେ ମାନସିଂହ ମଧ୍ୟ ଏହିପରି ଏକ ବ୍ୟକ୍ତିତ୍ୱ ଯେ ସାହିତ୍ୟ ସଂସ୍କୃତି ସଂପର୍କରେ ତଥା କୌଣସି ଚିନ୍ତାରେ ସ୍ଥିର ବା ସ୍ଥାଣୁ ନୁହନ୍ତି । ସମୟକ୍ରମେ ଓ ଅଭିଜ୍ଞତାର ଅଭିବୃଦ୍ଧିରେ ଏପରି ପରିବର୍ତ୍ତନ ସ୍ୱାଭାବିକ ମଧ୍ୟ ।

## ମାନସିଂହଙ୍କ ଜୀବନର ଆଦି ପର୍ଯ୍ୟାୟରେ ସଂସ୍କୃତି ଚିନ୍ତା :

ପୂର୍ବରୁ ସୂଚନା ଦିଆଯାଇଛି ଯେ, କବିର ଅନ୍ତରଂଗ ଭାବନା ଓ ଅନୁଭବର ଅନ୍ତରଂଗତା ନେଇ ଆଦ୍ୟ ଜୀବନରେ ମାନସିଂହ ଓଡିଆ ସଂସ୍କୃତିକୁ ଆପଣାର କରିଛନ୍ତି । ଓଡିଆ ସଂସ୍କୃତିର ବହୁଦିଗ ଯଥା ତାର ବୀରତ୍ୱ ତା'ର ଧର୍ମ, ପର୍ବପର୍ବାଣି, ସମୁଦ୍ରଯାତ୍ରା ଇତ୍ୟାଦିକୁ ନେଇ ଓଡିଆ ଜୀବନର ସାମଗ୍ରିକ ପ୍ରକାଶ । କାଳର ପ୍ରବାହରେ ଓଡିଆ ସଂସ୍କୃତିର ସେଇ ନିଜ ସ୍ୱରୂପ ହଜିଯାଇଛି କିନ୍ତୁ ସଂସ୍କୃତିତ ସହଜରେ ମରେ ନାହିଁ । ସଭ୍ୟତା ପରି ଏହା

ଦ୍ରୁତ ପରିବର୍ତ୍ତନଶୀଳ ନୁହେଁ । କର୍ପୂର ଉଡିଗଲେ ବି ବନାରେ ତାହାର ମହକ କିଛିଦିନ ପର୍ଯ୍ୟନ୍ତ ରହି ଆସିଥାଏ । ଉତ୍କଳୀୟ ସାମରିକ ସଂସ୍କୃତିର ଅବକ୍ଷୟ ରୂପ ଓଡିଆ ପାଇକ ମାନଙ୍କ ଚଳଣି ଆଗ୍ଭର ମଧ୍ୟରେ ପରିଦୃଶ୍ୟ । ସେ ଚଳଣିକୁ ବର୍ଣ୍ଣନ କରିବା ଅନ୍ତରାଳରେ ମାନସିଂହଙ୍କ ମନରେ ସେ ସଂସ୍କୃତି ସମ୍ପର୍କରେ ଯେ ସୂକ୍ଷ୍ମ ପ୍ରୀତି ରହିଛି, ଏକଥା ଅସ୍ୱୀକାର କରାଯାଇ ନ ପାରେ । ରାଜ୍ୟ ଯାଇଛି, ଯୁଦ୍ଧ କ୍ଷେତ୍ରକୁ ଯାଇ ବଡିମା ଦେଖାଇବାର ଆବଶ୍ୟକତା ଆଉ ନାହିଁ ତଥାପି ଖୋର୍ଦ୍ଧା, ବାଣପୁର, ପାରିକୁଦ, ମାଳୁଦର ଖଣ୍ଡାୟତ ମନରେ ସେ ଅହଂକାର ବସାବାନ୍ଧି ରହିଛି । ଅସ୍ଥି କଂକାଳସାର, ଅର୍ଦ୍ଧ–ନଗ୍ନ, ଅର୍ଦ୍ଧ–ଭକ୍ଷ ଅବସ୍ଥାରେ ଓଡିଆ ପାଇକର କଳଙ୍କି ଲଗା ଖଣ୍ଡାଟି ଏବେ ବି ଦଶହରାରେ ପୂଜାପାଏ । ଏବେ ବି ବୌଳିକ ପ୍ରଥାକୁ ବଜାଏ ରଖି ଘରେ ଘରେ ଆଗେ ଆଗେ ଶାଢୀ ବାନ୍ଧୁଛନ୍ତି । ଜେମା କାବ୍ୟରେ ମାନସିଂହ ଲେଖିଛନ୍ତି :—

"ଖଣ୍ଡାୟତ ସେ ବଗତି ତେବେ ହପାଧିକ ଛୁଟି
ଘରେ ଘରେ ଆଗେ ଆଗେ ଶାଢୀ ବାନ୍ଧାଣ ।"(5)

ଏବର ଖଣ୍ଡାୟତଙ୍କୁ ଦେଖି ମାନସିଂହଙ୍କର ଅତୀତର ଗାଥା ମନେ ପଡିଛି । ସେ କାଳର ଗୌରବମୟ ସ୍ମୃତିକୁ ସ୍ମରଣ କରି ମାନସିଂହ ଲେଖିଛନ୍ତି:—

"ଯାଇଛି ସୁବ୍ଦି ସେ କାଳ ହାତେଧରି ତଲବାର
ବାଣ୍ଡକୁ କୁହାଟି ଖଣ୍ଡାଇତ ତେଜିଁବା,
ଖଣ୍ଡାପନେ ମଥା ଛୁଇଁ ମହିମାଙ୍କ ଆଗେ ଉଇଁ
ମତ୍ତ–ହାତୀ ପରି ଠେଲି ଧସେଇ ଯିବା ।" (6)

ସମୟର ପରିବର୍ତ୍ତନ ସାଙ୍ଗରେ ସେ ଦିନ ଉଭେଇ ଯାଇଛି । ପାଇକର ପ୍ରତାପ ଅନ୍ତର୍ହିତ ହେଲେ ମଧ୍ୟ ଉତ୍କଳୀୟ ପାଇକର ମନ ମଧ୍ୟରେ ରହିଯାଇଛି ବୀରତ୍ୱର ଅହମିକା । ଜେମା କାବ୍ୟରେ କୁହା ଯାଇଛି :—

"ହେଲା ନୂଆ ସରକାର ଛାଡି ତୀର ତଲବାର
ନଷ୍ଟ–ନଖ ବାଘ ପରି ହେଲେ ପାଇକେ,
x x x x x x x
ଗଲା ସୁବ୍ଦି ରାଜ ସମ୍ମାନ
ଲଢେଇ ନ କରି ହାତ କାଟିଲା ଧାନ ।"(7)

ଓଡିଆର ବୀରତ୍ୱ ସହିତ ତା'ର ଧର୍ମଧାରଣା ଘନିଷ୍ଠ ଭାବେ ସଂପୃକ୍ତ । ତାର ନିଜସ୍ୱ ଚଳଣି ସାଙ୍ଗରେ ଧର୍ମ ଏଭଳି ମିଶି ଯାଇଛି ଯେ ତାହା ସଂସ୍କୃତିର ଅଭିନ୍ନ ଅଙ୍ଗ ହୋଇ ରହିଛି । ମାନସିଂହ ଓଡିଆ ଜୀବନର ଚିତ୍ର ଦେବା ବେଳେ ଓଡିଆମାନଙ୍କର ଧର୍ମ ବିଶ୍ୱାସକୁ ହିଁ ଉପସ୍ଥାପିତ କରିଛନ୍ତି । 'ସାଧବଝିଅ' କାବ୍ୟରେ ଜନ ଜୀବନର ଦେବତା

॥ ମାନସିଂହଙ୍କ ବିଶ୍ୱରଧାରା ॥

ଶିବଙ୍କ ପୂଜା ଏହିଭଳି ଭାବେ ସ୍ଥାନିତ । ଗ୍ରାମର ସାଧାରଣ ଜନତା ନିଃସ୍ୱ, ତାର ଦେବତା ମଧ୍ୟ ନିଃସମ୍ବଳ ଶିବ । ଗ୍ରାମର କୁମାରୀ ମାନଙ୍କଠାରୁ ବୟସ୍କମାନଙ୍କ ପର୍ଯ୍ୟନ୍ତ ବିଭିନ୍ନ ରୂପରେ ତାଙ୍କୁ ପୂଜା କରନ୍ତି । ଭାରତର ଉପକୂଳବର୍ତ୍ତୀ ଅଞ୍ଚଳର ଏହି ବିଶିଷ୍ଟ ଉପଚାର, ବାଲୁକା ଲିଙ୍ଗ ବା ବାଲୁଙ୍ଗା ପୂଜା 'ସାଧବ ଝିଅ' କାବ୍ୟରେ ଉପସ୍ଥାପିତ ।

"ମାଟିର ଶିବ ଯେ

ନିତି ନିତି ପୂଜେ,

ମନାସିଲି ଦେବ ଦେବୀ,

ମାଣିକ ପ୍ରଦୀପ

ଡାଗରେ ଜାଳିଲି

ଠାକୁରାଣୀ ପଦ ସେବି ।"(୫)

'ସାଧବ ଝିଅ' କାବ୍ୟରେ ଲୋକଚଳଣି ଓ ଧର୍ମବିଶ୍ୱାସର ଅନ୍ୟତମ ନମୁନା ଭାବରେ ନିମ୍ନ ପଦଟିକୁ ନିଆଯାଇ ପାରେ—

"ସାଦେ କଳା ବିସ୍ମିତା ଯେ ମାଳୁଣୀ କୁହାଳ;

ଦୁର୍ଗା ଛୁରି କଲେ ଦୁହେଁ ଶୁଭେ ପାଦ—ସ୍ୱର ।"(୨)

ମାନସିଂହ ନିଜର ଅନ୍ତର ମଧ୍ୟରେ ଓଡିଆ ଧର୍ମ ଜୀବନର ବିଶ୍ୱାସବୋଧକୁ ଛାଡିପାରି ନାହାନ୍ତି । ଜଗନ୍ନାଥ ଓଡିଆ ସାଂସ୍କୃତିକ ଜୀବନର ପ୍ରକୃତ ସାକ୍ଷୀ । 'ଗୋପପ୍ରୟାଣେ' କବିତାରେ ମାନସିଂହ ଲେଖିଛନ୍ତି :—

"ପତିତପାବନ ବାନା ଯୁଗେ ଯୁଗେ

ଶରଣ ଉତ୍କଳର,

ସେହି ବାନାତଳେ ଉତ୍କଳ ମଣି

ଜଳୁଥାଉ ଭାସ୍ୱର ।

ପତିପାବନ ଦର୍ଶନ ବେଳେ

ନିଖିଳ ଓଡିଆ ଜାତି,

ବାଇଶି ପାହାଚେ ପାଇବ ପତିତ—

ବନ୍ଧୁ ଚରଣ ମାଟି ।"(୧୦)

ସେହିପରି ଜଗନ୍ନାଥଙ୍କ ବଡଦାଣ୍ଡର ଧୂଳି ବିଳାସୀ ଲୋକର ଅଙ୍ଗରେ ପଡି ତାକୁ ବିବ୍ରତ କରିଦେଇପାରେ—ମାତ୍ର ଭକ୍ତ ଧର୍ମଭାବରେ ମୋହିତ ହୋଇ କହେ:—"ଏ ଧୂଳି ପଡୁ ମୋ ମୁଣ୍ଡେ ଜନ୍ମ ଜନ୍ମାନ୍ତର,"(୧୧) ସଂସ୍କୃତି ଚିତ୍ ପ୍ରକର୍ଷର ଫଳଶ୍ରୁତି । ଏହି ଚିତ୍ ପ୍ରକର୍ଷ ପ୍ରତିଷ୍ଠା ପାଏ ନାନା ମୂଲ୍ୟାବଳୀର ପ୍ରତିଷ୍ଠା ଦ୍ୱାରା । ଓଡିଆ ଲୋକ ଜୀବନରେ ସତ୍ୟ କଥନ ଓ ସତ୍ୟ ବଚନ ଭଳି ନୈତିକ ମୂଲ୍ୟ ମାନ ସ୍ଥାନ ଅଛି ଉଚ୍ଚରେ ।

॥ ମାନସିଂହଙ୍କ ବିପ୍ଳବଧାରା ॥

"ମାଆ ତାର କଥା ବେଉଛି
ଆଗୁଁ ଶ୍ରୀ ନୀଳାଚଳେ
ଚେଳିତାଙ୍କୁ ପୁର ସାଧବ—
ଶ୍ରେଷ୍ଠୀସୁତ ସଂଘରେ ।
ସେ ଥାନୁ ବୋଇତ ଆସିଚ୍ଛି
ଖୋଜି ବୁଝିବି ଠିକ,
କିପାଇଁ ଏ ମନା କାଳେ ମୋ–
କଥା ହେବ ଅଲୀକ ?"(୧୨) ତତ୍ ସଂଗେ ସଂଗେ ବୋଇତ ଯାତ୍ରା

ଓ ବୋଇତ ବନ୍ଧାଣ ମଧ୍ୟବେଇ ଉତ୍କଳୀୟ ସଂସ୍କୃତିର ରୂପ ପ୍ରକାଶିତ ।

'ମହାନଦୀରେ ଜ୍ୟୋତ୍ସ୍ନାବିହାର'କବିତାରେ ମାନସିଂହ ଉତ୍କଳୀୟ ଆତ୍ମବିପ୍ଳବକୁ ସ୍ମରଣ କରିଛନ୍ତି । ବାରବାଟୀ ସନ୍ନିକଟ ପ୍ରସ୍ତର ସାବକ୍ଷରେ କବି ଉତ୍କଳର ଅତୀତ ସ୍ମୃତିକୁ କଳ୍ପନା ନେତ୍ରରେ ଅବଲୋକନ କରିଛନ୍ତି । ବେଶ ବର୍ଣ୍ଣନା ତଥା ସାଜସଜା ମଧ୍ୟରେ ସଂସ୍କୃତିର ସ୍ୱରୂପ ପ୍ରକାଶିତ ହୋଇଯାଏ । ମାନସିଂହ ଲେଖିଛନ୍ତି:–

"ସେ ଦିନ ଏ ଶିଳା ପରେ ଅବଗାହେ ଆସି
ସୁକୁମାରୀ ରାଜବାଳା ଅଙ୍କିହବ ତା'ର
ଲାକ୍ଷାରକ୍ତ ପଦଚ୍ଛବି, × × × ×
ସେ ଦିନ ସଜନୀ ମେଳେ ରୂପସୀ ମହିଷୀ
ଏକ କରେ ଦୁର୍ବାକ୍ଷତ, ଶଂଖ ଆନକରେ,
ବିଜୟୀ ପୁତ୍ରରେ ଶିରେ ମଂଗଳ ଆଶିଷି,
ବନ୍ଦି ନେଉଥିବେ ଗୃହେ ଏହି ଶିଳା ପରେ ।
ସେ ଦିନ ଏ ଶିଳାପରେ ନାଗରିକା ଯେତ
ହରିଦ୍ରା ପ୍ରଲେପେ ରଙ୍ଗି କନକ ବଦନ,
ବନ୍ଦିଥିବେ ଶଂଖ ବାଜ ରାଜାର ବୋଇତ,
କରିଛି ସେ ସିଂହଳରୁ ମୁକ୍ତା ଆନୟନ ।
ସେ ଦିନ ଏ ଶିଳାପରେ ନଗର–ଜନନୀ
ଏକତ୍ରେ ପଠାଇ ପୋତେ ସନ୍ତାନ ସମରେ,
ଗୁଞ୍ଜିଥିବ ଦୂର ଦିଶେ, ସେ ବୀର ରମଣୀ
ଲୁଚ୍ଛଇ ଆଖିର ଲୁହ ଅପମାନ ଡରେ ।"(୧୩)

॥ ମାନସିଂହଙ୍କ ବିଗ୍ରହଧାରା ॥

ଓଡିଆ ସଂସ୍କୃତି ମୂଖ୍ୟତଃ ଗ୍ରାମ ଭିତ୍ତିକ । ମାନସିଂହ ବିଭିନ୍ନ କବିତାରେ ଓଡିଆ ଗ୍ରାମର ଚିତ୍ର ଉପସ୍ଥାପନ କଲା ଭିତରେ ନିଜର ସାଂସ୍କୃତିକ ଅବବୋଧ ପ୍ରକାଶ କରିଛନ୍ତି । ଏହି ପ୍ରସଂଗରେ ବୋଇତ ବନ୍ଦାଣ କବିତାଟି ସ୍ମରଣ ଯୋଗ୍ୟ । ସାଧବ ପୁଅର ବୋଇତ ଆସିବାର ଶୁଣି, ଗ୍ରାମର ଲୋକମାନେ ବୋଇତ ଦର୍ଶନ ନିମନ୍ତେ, ତୀରରେ ଜଳରେ ବା କେହି ବୃକ୍ଷ ତଳରେ ହୁଅନ୍ତି ଉପବିଷ୍ଟ । ଗ୍ରାମର ପ୍ରୌଢମାନଙ୍କର ବୋଇତ ମଧ୍ୟରେ ପ୍ରବେଶ ଓ ଗୁରୁଜନ ଭାବଧରି ସାଧବପୁଅମାନଙ୍କୁ ସମ୍ବୋଧନ ପରେ ଅନ୍ୟାନ୍ୟ ଗ୍ରାମ୍ୟ ଶିଶୁମାନଙ୍କର ପ୍ରବେଶ ତଥା ପ୍ରୌଢ ମାନଙ୍କର ସେମାନଙ୍କୁ ଆକଟ, ବୋହିତ ବନ୍ଦାଣଲାଗି ସୀମନ୍ତିନୀମାନଙ୍କର ହୁଳହୁଳି ଶବ୍ଦ କରି ପ୍ରବେଶ, ହସ୍ତରେ ଶୁଭ କଳସ, ଅନ୍ୟ ହସ୍ତରେ ବନ୍ଦାପନା ଥାଳୀ, ଅଳକ୍ତ ରଂଜିତ ପଦନଖ, ଅତୀତର ଏହି ଦୃଶ୍ୟକୁ ମାନସିଂହ ମୁଗ୍ଧ ନେତ୍ରରେ ଅବଲୋକନ କରିଛନ୍ତି । ଉତ୍କଳୀୟ ପଲ୍ଲୀଜୀବନ ଓ ଚଳଣିର ଚିତ୍ର ମାନସିଂହ ତାଙ୍କର ପଲ୍ଲୀସଂଧ୍ୟା କବିତାରେ ପ୍ରକାଶ କରିଛନ୍ତି ।

ସଂଧ୍ୟା ଆଗମନରେ ପଲ୍ଲୀବଧୂ କାଖରେ ଗରିଆ ଧରି କନାରେ କଳା ବଜାଇ ଚଇଁକି ପଦରେ ଗମନ । ହାତ ଚୁଡିର ରୁଣୁଝୁଣୁ ଶବ୍ଦ ସହିତ ମିତଣିମାନଙ୍କ ସହଚରେ ଗମନ ତଥା କଥୋପକଥନ ଚିତ୍ରରେ ପଲ୍ଲୀ ଜୀବନର ଛବି ପରିସ୍ଫୁଟ । ପଲ୍ଲୀସଂଧ୍ୟାର ଅନ୍ୟତମ ଚିତ୍ର ହେଲା, ସଂଧ୍ୟାର ପ୍ରାକ୍‌କାଳରେ ମୁଣ୍ଡରେ ବୋଝ ଦେଇ, କାନ୍ଧରେ ଲଙ୍ଗଳ ଧରି କୃଷକର ଗୃହକୁ ପ୍ରତ୍ୟାବର୍ତ୍ତନ, ଆଗରେ ଘେରନ୍ତା ହଳ ଓ ଗୋଠବାହୁଡା ଗୋରୁଗାଈଙ୍କ ହମ୍ବା-ରଡି, ଗାଁ ପିଲାମାନଙ୍କର ଧୂଳିଘର କାଟି ବୋହୁ ବୋହୁବା ଖେଳ ମଧ୍ୟରେ ଉତ୍କଳୀୟ ପଲ୍ଲୀ ସଂସ୍କୃତିର ଚିତ୍ର ବର୍ଣ୍ଣିତ ।

ଗ୍ରାମ୍ୟ ଚଳଣିର ଅନ୍ୟତମ ଦୃଶ୍ୟ, ତୁଳସୀ ଚଉରା ମୂଳରେ ଗୃହ ବଧୂର ଦୀପ ଜାଳିବା ସମୟରେ ଗୃହର ପରସ୍ତଙ୍କର ଶୁଭ ମନାସିବା, ଗ୍ରାମ୍ୟ ଦେବାଳୟରେ ଘଣ୍ଟ ଘଣ୍ଟାର ଧ୍ୱନି ଶୁଣି ଦୂରାଗତ ଭକ୍ତର ମଥାନତ ମଧ୍ୟରେ ପଲ୍ଲୀ ସାଂସ୍କୃତିକ ଜୀବନର ଚିତ୍ର ପ୍ରତିଫଳିତ । କୃଷକମାନଙ୍କର ବଟୁଆ ମେଲାଇ ପରସ୍ପର ମଧ୍ୟରେ କଥୋପକଥନ ଗ୍ରାମର ଶ୍ରୋତାହୀନ ଭାଗବତଘରେ ଭାଗବତପଠନ ଇତ୍ୟାଦିଦୃଶ୍ୟରେ ପଲ୍ଲୀଜୀବନର ସଂସ୍କୃତି ବର୍ଣ୍ଣିତ ।(14)

ବେଶପରିପାଟୀ ଏକ କଳା ଯେଉଁଥିରେ ଜାତିର ରୁଚିବୋଧର ପରିଚୟ ମିଳିଥାଏ । ମଣିଷର ଅଳଂକାର ଓ ପ୍ରସାଧନ ଭିତରେ ତାର ରମ୍ୟବୋଧ ନିହିତ । ସଂସ୍କୃତି ଏହି ରୁଚିବୋଧର ନିୟାମକ । ଓଡିଆର ବେଶ ପୋଷାକ ତଥା ବେଶପରିପାଟୀ ମାନସିଂହଙ୍କ ନିକଟରେ ଅତିପ୍ରିୟ । ମଧ୍ୟଯୁଗୀୟ କାବ୍ୟ କବିତାରେ ଏହି ବେଶ ବର୍ଣ୍ଣନା ଦୀର୍ଘ ଭୂମିକା ଗ୍ରହଣ କରିଥିଲା । 'ସାଧବଝିଅ' କାବ୍ୟରେ ମାଲୁଣୀର କେଶ ବର୍ଣ୍ଣନାକୁ ଉଦାହରଣ ଭାବରେ ଗ୍ରହଣ କରାଯାଇପାରେ । ଏହି ବର୍ଣ୍ଣନା ମଧ୍ୟରେ କବି ମାନସିଂହଙ୍କର ଉତ୍କଳୀୟ ସଂସ୍କୃତିପ୍ରୀତିର ପରିଚୟ ସ୍ପଷ୍ଟ ।(15)

କିଆ କେତକି ପୋଲାଙ୍ଗ ବନମଧ୍ୟରେ ବାଲ୍ୟକାଳ ବିତାଇଥିବା କବି ମାନସିଂହଙ୍କ ରଚନାରେ ଗ୍ରାମ୍ୟ ପ୍ରୀତି ଓ କିଆଫୁଲର ଆକର୍ଷଣ ଲକ୍ଷ୍ୟ କରିବାର କଥା । 'ଧୂପ'ରକବିଙ୍କର କେଶସଜା ପ୍ରତି ଆକର୍ଷଣ ଗ୍ରାମ୍ୟ ଆଭୂଷଣ ବର୍ଣ୍ଣନାରେ ସଂସ୍କୃତି ପ୍ରୀତି ରହିଛି ।

॥ ମାନସିଂହଙ୍କ ବିଗ୍ଦରଧାରା ॥

କୌଣସି ଅପଶକୁନ ଦେଖିଲେ ସାଧାରଣତଃ ଲୋକମାନେ ବ୍ୟତିବ୍ୟସ୍ତ ହୋଇଉଠନ୍ତି । ମାନସିଂହଙ୍କର ମଧ୍ୟ ଅପଶକୁନ ଉପରେ ବିଶ୍ୱାସ ଥିଲା ତେଣୁ ସେ ଜେମାର କରୁଣ ଅବସ୍ଥା ପୂର୍ବରୁ ଜେମା ମା ମୁଖରେ ଅପଶକୁନର ସ୍ୱପ୍ନ ଶୁଣାଇଛନ୍ତି । (16)

ନୌବାଣିଜ୍ୟ ଉତ୍କଳୀୟ ସଂସ୍କୃତିର ଅନ୍ୟତମ ନମୁନା । ମାନସିଂହଙ୍କର ସଂସ୍କୃତି ସଚେତନ ପ୍ରାଣ 'ମା'ଓଡିଶା ' ସମେତ ବିଭିନ୍ନ କବିତା ଓ 'ସାଧବଝିଅ' କାବ୍ୟ ତଥା ବିଭିନ୍ନ ପ୍ରବନ୍ଧରେ ପ୍ରକାଶ କରିଛନ୍ତି ।

ମଣିଷର ନିଜ ସଂସ୍କୃତି ପ୍ରତି ଅନୁରାଗତାର ପ୍ରକାଶ ତାର ଦେଶପ୍ରେମ ବା ଜାତୀୟତା । ମଣିଷ ନିଜର ଜନ୍ମମାଟିକୁ ଭଲ ପାଇବା ଭିତ ର ଦେଇ ତାର ସମାଜ, ଅଧିବାସୀ ସେମାନଙ୍କର ବୀରତ୍ୱ ତଥା ଜୀବନ ଚର୍ଯ୍ୟାକୁ ଭଲପାଇ ବସେ । ଓଡିଆ ଅତୀତରେ ତାର ଜାତିକୁ ସେମିତି ଭଲ ପାଉଥିଲା । କିନ୍ତୁ ଏଇ ଭଲପାଇବା କିଛି ସଚେତନ କ୍ରିୟା ନଥିଲା । ଇଂରେଜମାନେ ଏ ଦେଶକୁ ଆସିଲା ପରେ ଜାତୀୟ ସଚେତନତା ଭାରତୀୟମାନଙ୍କ ମନରେ ସୃଷ୍ଟି ହେଲା । ଜାତୀୟ ଚେତନାରେ ଉଦବୁଦ୍ଧ ହୋଇ ମାନସିଂହଙ୍କ ଭଳି କବି ଓ ସାହିତ୍ୟିକମାନେ ଆପଣା ସଂସ୍କୃତିର ମୁଗଧସ୍ତାବକ ହେବାକୁ ଗର୍ବନେ । ତାର ସ୍ଥାପତ୍ୟ ଓ ଜୀବନଚର୍ଯ୍ୟାର ବିଭିନ୍ନ ଦିଗ ଭିତରେ ଦେଶୀୟ ସଂସ୍କୃତିର ଅଭିଜ୍ଞାନ ଆବିଷ୍କାର କଲେ । ଏ ସମ୍ପର୍କରେ ମାନସିଂହଙ୍କର ନିଜ ବକ୍ତବ୍ୟ ହେଲା ।—"ଇଂରେଜ ସଭ୍ୟତା ଦେଶରେ ପ୍ରବେଶ କରିବା ସଂଗେ ସଂଗେ ଦେଶର ଜାତୀୟ ଚେତନା ଜାଗ୍ରତ ହୋଇ ଉଠିଲା । ଇଂରେଜୀ ଶିକ୍ଷା ମଧ୍ୟ ନବ୍ୟ—ଶିକ୍ଷିତମାନଙ୍କର ସାହିତ୍ୟିକ ରୁଚିରେ ପରିବର୍ତ୍ତନ ଆଣିଲା । ସେମାନେ ଜାଣିଲେ, କିପରି ଇଂରେଜୀ କବି ମାନେ ନିଜ କ୍ଷୁଦ୍ର ଦ୍ୱୀପ ଖଣ୍ଡକର ପ୍ରକୃତି, ଇତିହାସ ଓ ସଭ୍ୟତା ଘେନି ପାଗଳ ହୋଇ ଉଠିଛନ୍ତି । ସେମାନେ ନିଜ ସାହିତ୍ୟରେ ଏହାର ଏକାନ୍ତ ଅଭାବ ଅନୁଭବ କଲାବେଳେ ରାଧାନାଥଙ୍କ କାବ୍ୟ ଉତ୍କଳର ପ୍ରକୃତି ଏବଂ ଇତିହାସକୁ ମନୋଜ୍ଞ ଭାଷାରେ ପ୍ରକାଶ କରି ସେମାନଙ୍କର ଦ୍ୱାରସ୍ଥ ହେଲା ।"(17)

ମାନସିଂହ ଉତ୍କଳର ସମୃଦ୍ଧ ଅତୀତକୁ ସ୍ମରଣ କରିଛନ୍ତି । ଉତ୍କଳର ଅତୀତ ସାମରିକ ଗୌରବ ତଥା କଳା ସାହିତ୍ୟର ଗରିମା ତାଙ୍କ ସୃଷ୍ଟି ମଧ୍ୟରେ ବର୍ଣ୍ଣିତ । 'ମା ଓଡିଆ', 'କୋଣାର୍କ', ବାରବାଟୀ', ପ୍ରମୁଖ ଆଦ୍ୟ ଜୀବନର କବିତାରେ ଉତ୍କଳୀୟ ସଂସ୍କୃତିର ଗୌରବଗାଥା ଓ ଇତିହାସର ଛୁଇଁ ଇଂଗିତରେ ଏଜାତି ବିଭଳି ପତନୋନ୍ମୁଖ ହୋଇ ପଡିଥିଲା, ସେ କଥା ଉଲ୍ଲେଖ କରିଛନ୍ତି । ସେହି କବିତାମାନଙ୍କରେ ଉତ୍କଳୀୟ ରମଣୀର ଦମ୍ଭ, ବୀରବେଶରେ ସ୍ୱାମୀକୁ ସଜାଇଦେଇ ଯୁଦ୍ଧ କ୍ଷେତ୍ରକୁ ପଠାଇବାର ଗୌରବ ଚିତ୍ର ମାନସିଂହ ସ୍ମରଣ କରିଅଛନ୍ତି । ଏହା କବିଙ୍କ ମନରେ ସମସାମୟିକ ଉତ୍କଳର ଆନ୍ଦୋଳନ, ଉତ୍କଳ ସମ୍ମିଳନୀ ତଥା ସତ୍ୟବାଦୀ ଗୋଷ୍ଠୀର ପ୍ରଭାବ । ଦେଶର ବୀର ସୈନିକ କେବଳ ନୁହେଁ, ଦେଶର ସାଧବ, ବେଶକାରୀ, ମାଳୀ ମଧ୍ୟ କବିଙ୍କ ଦୃଷ୍ଟିରେ ଗୌରବର ଅଧିକାରୀ । 'ସାଧବ ଝିଅ' କାବ୍ୟରେ ଉତ୍କୃଷ୍ଟ ପୁଷ୍ପସଜା ନିମନ୍ତେ ମାଲୁଣୀ ହାତରେ ସାଧବପୁଅ କହିଛି ———

॥ ମାନସିଂହଙ୍କ ବିଗ୍ରହଧାରା ॥

"ମାଳୁଣୀ ତୁ ବିଏ ଏ ମାଳାଟି
ଆଜି ନେଇ କିଶୋରୀକି ତୋର
ଯଦି ତାର ହୋଇବ ପସନ୍ଦ
କହିବୁ ମୁଁ ମାଳୀ କଳିଙ୍ଗର ।" (୧୪)

ମାନସିଂହଙ୍କର ବିଲାତ ଗମନର ପ୍ରାକ୍ କାଳର ଲେଖା ବା ଆଲୋଚନାରେ ସଂସ୍କୃତି ସଂପର୍କରେ କୌଣସି ବଳିଷ୍ଠ ମତାମତ ନଥିଲା । ଏ ସମୟରେ ସଂସ୍କୃତି ସଂପର୍କରେ ଯାହା ଧାରଣା, ତାହା କେବଳ ସାଂସ୍କୃତିକ ଜୀବନରେ ଅଂଶ ଗ୍ରହଣ କରିବାରୁ ତାଙ୍କ ପକ୍ଷରେ ସମ୍ଭବପର ହୋଇଥିଲା ।

## ସାଂସ୍କୃତିକ ଚେତନାର ଦ୍ୱିତୀୟ ପର୍ଯ୍ୟାୟ

ଅନ୍ୟାନ୍ୟ ବିଷୟ ଭଳି ସଂସ୍କୃତି କ୍ଷେତ୍ରରେ ମଧ୍ୟ ମାନସିଂହଙ୍କର ନିର୍ଦ୍ଦିଷ୍ଟ ଚିନ୍ତାଧାରା ଇଂଲଣ୍ଡ ରହଣୀ ପରେ ଆରମ୍ଭ ହୋଇଥିଲା । ଓଡ଼ିଶାର ଐତିହ୍ୟ, ସାଂସ୍କୃତିକ ପରମ୍ପରା ଓ ବନପ୍ରାନ୍ତରକୁ ଭଲ ପାଉଥିବା କବି ଇଂଲଣ୍ଡ ରହଣୀ କାଳରେ ଜଗତର ବୈଚିତ୍ର୍ୟ ଅନୁଭବ କରିପାରିଥିଲା । ଜୀବନର ପ୍ରାରମ୍ଭରେ ଥିବା ମୁଗ୍ଧ ଦୃଷ୍ଟି କ୍ରମଶଃ ମାର୍ଜିତ ଓ ପରିଶୀଳିତ ହେବାକୁ ଆରମ୍ଭ କରିଥିବା । ତାଙ୍କର ସଂସ୍କୃତି ସଚେତନ ମନ ବିଦେଶ ଯାତ୍ରା ପୂର୍ବରୁ କୌଣସି କୂଳ କିନାରା ପାଉ ନଥିଲା । ଗତାନୁଗତିକ ରୀତିରେ ଦେଶ ଓ ଜାତି ସଂପର୍କରେ ପ୍ରବୁଦ୍ଧ ହୋଇ ସେ ତାଙ୍କର ସୃଷ୍ଟି ମଧ୍ୟରେ ବା ଦୃଷ୍ଟିପାତ କର୍ମରେ ଯାହା ଆଲୋଚନା କରିଥିଲେ । ତାଙ୍କ ବିଦେଶ ରହଣୀ କାଳର ଗୋଟିଏ କଥା, ତାଙ୍କ ନିଜ ଭାଷାରେ ଉପସ୍ଥାପନ କଲେ କଥାଟା ସ୍ପଷ୍ଟ ହୋଇଯିବ । 'ପଶ୍ଚିମ ପଥିକ' ରେ ମାନସିଂହ ଲେଖିଛନ୍ତି :—"(ମିସେସ୍ ଡାଏନା ଲାଲ୍, କଳା ବିଦ୍ୟାଳୟର ଅଧ୍ୟାପିକା) ଭାରତର କଳା, ସଂସ୍କୃତି ଓ ଜୀବନଯାପନ ପ୍ରତି ତାଙ୍କର ଶ୍ରଦ୍ଧା ଏକାବେଳକେ ଅକୃତ୍ରିମ । ଅନେକ ସମୟରେ ଭାରତୀୟ କଳା ସମ୍ବନ୍ଧରେ ଆଳାପ ହୁଏ । କିନ୍ତୁ ଦେଖିଲି ଓଡ଼ିଶା, ଯାହାକି ହିନ୍ଦୁ କଳାର ଶ୍ରେଷ୍ଠ ପୀଠ ତା' ସମ୍ବନ୍ଧରେ ସେ କିଛି ଜାଣନ୍ତି ନାହିଁ । ମତେ ଏ କଥା ସହ୍ୟ ହେଲା ନାହିଁ ।ମୁଁ ବାରମ୍ବାର ତାଙ୍କୁ ଓଡ଼ିଶାର କଳା, ସ୍ଥାପତ୍ୟ ବିଷୟରେ କହିବାରୁ ସେ ଦିନେ କହିଲେ, 'ତମେ ଏ ବିଷୟରେ ଗୋଟିଏ ଟକ୍ (ଭାଷଣ) ଦିଅ । ତମେ କ'ଣ ଚାହୁଁ କହିଲେ ଆମେ ତାର ସବୁ ବନ୍ଦୋବସ୍ତ କରିଦେବୁ ।' ମୁଁ କେତେକ ବହିର ନାମ ଦେଲି, ସେ ବହି ସବୁ ଲଣ୍ଡନରୁ ମଗାଇ ଦିଆଗଲା । ସେ ସବୁ ବହିରୁ ବାଛି ବାଛି ଓଡ଼ିଶା କଳାର ଛବିତକର ସ୍ଲାଇଡ କରିବାକୁ କହିଲି । ତା'ପରେ ସେ ସ୍ଲାଇଡ ସାହାଯ୍ୟରେ ମୁଁ ଓଡ଼ିଶାର ମନ୍ଦିର ଓ ମୂର୍ତ୍ତିମାନଙ୍କ ବିଷୟରେ ଯାହା ଜାଣିଥିଲି ବା ପଢ଼ିଥିଲି, ତାକୁଇ ସମ୍ବଳ କରି ଗୋଟାଏ ଭାଷଣ ଦେଲି । ଏଇ ଭାଷଣ ପରେ ଆଉରି ଅନେକ ଜାଗାରୁ ନିମନ୍ତ୍ରଣ ଆସିଲା ।" (୧୨)

॥ ମାନସିଂହଙ୍କ ବିଶ୍ବରଧାରା ॥

ଯାହା ଅନୁମାନ କରାଯାଏ ଯେ, କେବଳ ପରୁଣୀ କାଳରେ ହିଁ ତାଙ୍କ ମନରେ କଳା ଓ ସଂସ୍କୃତି ପ୍ରତି ସଚେତନତା ଦେଖାଦେବା । କାରଣ 1937 ମସିହା ପୂର୍ବରୁ ତାଙ୍କର କୌଣସି ଆଲୋଚନା ଖୁବ୍ ତାତ୍ତ୍ୱିକ ହୋଇଥିବାର ଜଣାଯାଏ ନାହିଁ, ଯାହା 1939 ର ପରବର୍ତ୍ତୀ ଲେଖାରେ ଦୃଷ୍ଟିଗୋଚର ହୁଏ । ପାଶ୍ଚାତ୍ୟ ଦୃଷ୍ଟିଭଙ୍ଗୀ ହିଁ ତାଙ୍କୁ କଳା ଓ ସଂସ୍କୃତି ପ୍ରତି ଶ୍ରଦ୍ଧାଶୀଳ କରାଇଛି । ଯାହାର ଫଳ ସ୍ୱରୂପ ସେ କଳା ସଂସ୍କୃତି ସଂପର୍କରେ ଆଲୋଚନା କରିଛନ୍ତି ଓ ସ୍ୱର୍ଗତ ପାର୍ବତୀଙ୍କ ଭଳି ବିଖ୍ୟାତ କଳା ସମାଲୋଚକଙ୍କ ଦ୍ୱାରା ଓଡିଶାର କଳା ଓ ସଂସ୍କୃତି ସଂପର୍କରେ ଆଲୋଚନା କରାଇଛନ୍ତି ।

ସଂସ୍କୃତିର ସ୍ୱରୂପ ସଂପର୍କରେ ମାନସିଂହ ଲେଖିଛନ୍ତି :–"ପ୍ରକୃତିରେ ମନୁଷ୍ୟ ଯାହା ଯୋଗକରେ, ତାହା ସଂସ୍କୃତି ବା ସଭ୍ୟତା । ପ୍ରକୃତି କେବଳ କଥାମାନ ଯୋଗାଏ । ମନୁଷ୍ୟକୁ ବିଧାତା ଦେଇଛି ବୁଦ୍ଧି, ଅନୁଭୂତି ଓ କଳ୍ପନା—ଯାହା ବଳରେ ସେ ଏହି କଥାମାନଙ୍କୁ ରୂପାନ୍ତରିତ କରି ତାର ସଭ୍ୟତା ଗଢେ । ନଗଣ୍ୟ ହେୟ ପଥରରୁ ମନିଷ ସୃଷ୍ଟି କରିଛି ଅନୁପମ କୋଣାର୍କ ଓ ତାଜ ମହଲ, କୀଟବସାରୁ ସୃଷ୍ଟି କରିଛି ମନୋଜ୍ଞ ଚୀନାଂଶୁକ ଏବଂ ପାହା ସାଥ, ନରନାରୀଙ୍କ ସାମୟିକ ଯୌନ ସଂପର୍କ ମାତ୍ର ସେଥିରୁ ବିବର୍ତ୍ତିତ ହୋଇଛି ମାନବିକ ସମାଜର ରୋମାଞ୍ଚକ ପ୍ରେମ ଲୀଳା ।"(20) ସଂସ୍କୃତି ମଣିଷର ସହଜାତ ପ୍ରବୃତ୍ତି, ଯାହା ଆତ୍ମିକ ଓ ମଣିଷ ସହିତ ଚିରବର୍ତ୍ତ–ମାନ । ଏହାର ବାହ୍ୟ ରୂପ ସଭ୍ୟତା ।

ଭାରତୀୟ ଚଳଣିରେ ଦାନ ଦେବା ଓ ନେବା ଏକ ମହତ କର୍ମ । ଆମ ପୁରାଣ ଓ ପରମ୍–ପରା ଦାନ ସଂପର୍କରେ ଅନେକ ଉଚ୍ଚକୋଟୀର ଧାରଣା ବହନ କରି ଆସିଛି । ଦାନ ଗ୍ରହଣର ଏକ ଅବକ୍ଷୟ ରୂପ ହେଉଛି ଭିକ୍ଷାବୃତ୍ତି । ପାଶ୍ଚାତ୍ୟ ଦୃଷ୍ଟିରେ ଏହା ଅଧୋଗତିର ଲକ୍ଷଣ ହେଲେ ମଧ୍ୟ ପ୍ରାଚୀନ ଚଳଣିର ମହତ୍ୱକୁ ମାନସିଂହଙ୍କର ଇଉରୋପୀୟ ମନ ଠିକ୍ ଭାବରେ ଧରିପାରି ନଥିଲା । ଏଣୁ ଆତ୍ମ ନିର୍ଭରଶୀଳତା ସଂପର୍କରେ ସଚେତନ ମାନସିଂହଙ୍କ ମନ ଏହାକୁ ଅପସଂସ୍କୃତିର ଲକ୍ଷଣ ଭାବରେ ଗ୍ରହଣ କରିଛନ୍ତି । ପର ଉପରେ ନିର୍ଭର କରି ଚଳିବା ଆମ ଦେଶ ଲୋକଙ୍କର ଯେଉଁ କୁଅଭ୍ୟାସ, ତାକୁ ମାନସିଂହ ନିନ୍ଦା କରିଛନ୍ତି । ଭିକ୍ଷାବୃତ୍ତି ଆଚରିବା ବା ପୁରୁଷାନୁକ୍ରମିକ ପର ଉପରେ ନିର୍ଭରକରି ଚଳିବା ଯେପରି ଅପସଂସ୍କୃତ ଜାତିର ଲକ୍ଷଣ, ସେହିପରି ଘର, ପରିବାର ତଥା ଦେଶର ଝିଅମାନଙ୍କ ଉପରେ ନିର୍ଭର କରି ବଞ୍ଚିବା ମଧ୍ୟ ମନ୍ଦ ଅଭ୍ୟାସ । ଆତ୍ମ ନିର୍ଭରତା ଜାତିକୁ ମହତ କରେ ତଥା ସଂସ୍କୃତିସଂପନ୍ନ କରେ

ମାନସିଂହ ଇଉରୋପୀୟ ସଂସ୍କୃତିର କେତେକ ଦିଗକୁ ଅତ୍ୟନ୍ତ ଶ୍ରଦ୍ଧା କରୁଥିଲେ । ସେ ବିଶ୍ୱାସ କରନ୍ତି ଯେ ଇଉରୋପୀୟ ସଂସ୍କୃତିର କଠିନ ସମୟାନୁବର୍ତ୍ତିତା, ପ୍ରତ୍ୟେକ କର୍ମରେ ନିପୁଣତା ଓ ସଦାଜାଗ୍ରତ ଦୃଷ୍ଟି, ମାନବ ସେବାକୁ ଶ୍ରେଷ୍ଠ ମନେ କରିବା, କଠୋର ଶୃଙ୍ଖଳାରେ ବିଶ୍ୱାସ, ହସ୍ତକର୍ମ ପ୍ରତି ଗଭୀର ଶ୍ରଦ୍ଧା ଭଳି ଗୁଣ ସହିତ ଭାରତୀୟ ଚିନ୍ତାର ଗଭୀର ଆଧ୍ୟାତ୍ମିକତାର ସମାହାର ବାପୁଜୀଙ୍କ ନିକଟରେ ଥିବାରୁ ସେ ଭାରତୀୟ ଜନତାର ଶ୍ରଦ୍ଧାରପାତ୍ର ହୋଇପାରିଥିଲେ

## ।। ମାନସିଂହଙ୍କ ବିଚାରଧାରା ।।

ଅନ୍ୟ ପକ୍ଷରେ ୟୁରୋପୀୟ ସଂସ୍କୃତିର ଅନ୍ୟାନ୍ୟ କେତେକ ଗୁଣପ୍ରତି ମାନସିଂହ ବିଶେଷ ଶ୍ରଦ୍ଧାଶୀଳ ଥିବାପରି ମନେହୁଏ ନାହିଁ । ପ୍ରାଚୀନ ଗ୍ରୀକ୍ ସଭ୍ୟତାରୁ ୟୁରୋପୀୟ ସଭ୍ୟତାର ବିକାଶ । ଜୀବନ ସର୍ବସ୍ୱ ଗ୍ରୀସ୍ ବହୁକାଳରୁ ଧ୍ୱଂସ ପାଇଥିଲେ ବି ସେହି ଆଦର୍ଶରେ ଅନୁପ୍ରାଣିତ ୟୁରୋପ ନିଜ ସହିତ ସମଗ୍ର ବିଶ୍ୱକୁ ଧ୍ୱଂସ ମୁଖକୁ ଟାଣି ନେଉଛି । ମାତ୍ର ଶାନ୍ତ ନିରୁପଦ୍ରବ ପ୍ରତି ପ୍ରାଚୀନ ଭାରତୀୟ ଆଦର୍ଶ ଆଜି ମଧ୍ୟ ଜୀବନ୍ତ । କିନ୍ତୁ ଏଥିରେ କେତେକ ହାନିକର ତଥା ଗ୍ଲାନିକର ଉପାଦାନ ରହିଯାଇଛି, ଯାହା ଆମର ବ୍ୟକ୍ତିଗତ ତଥା ସାମାଜିକ ଜୀବନକୁ ପଙ୍ଗୁ ନିରାନନ୍ଦ ଓ ଛିନ୍ନ ଭିନ୍ନ କରି ପକାଉଛି । ଏଣୁ ମାନସିଂହ 'ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ' ପ୍ରବନ୍ଧରେ ଆଲୋଚନା କରି ଆଶା କରିଛନ୍ତି, ବୋଧହୁଏ ଏ ଜାତିରମୌଳିକ ଚିନ୍ତା ମଧ୍ୟରେ କିଛି ତ୍ରୁଟି ରହିଯାଇଛି ବା ଦୀର୍ଘ ଦିନର ପରାଧୀନତା, ପ୍ରାକୃତିକ ଦୁର୍ବିପାକରେ ଜାତିର ମେରୁଦଣ୍ଡ ଦୁର୍ବଳ ହୋଇଯାଇଛି । ଏଣୁ ଆର୍ଥନୀତିକ, ସାଂସ୍କୃତିକ ଓ ଶିକ୍ଷାର ଅବକ୍ଷୟ ନିମନ୍ତେ ପ୍ରତ୍ୟେକ ବ୍ୟକ୍ତି ସଚେତନ ହେବା ଆବଶ୍ୟକ । ଆମ ସଂସ୍କୃତି ସମ୍ପର୍କରେ ଚର୍ଚ୍ଚାକରି ଜାତିର ଭବିଷ୍ୟତ ବଂଶଧରଙ୍କୁ ସଚେତନ କରାଇବା ପାଇଁ ଶିକ୍ଷାନୁଷ୍ଠାନ ମାନଙ୍କର ଗୁରୁ ଦାୟିତ୍ୱ ରହିଛି । ମାନସିଂହ ଲେଖିଛନ୍ତି:—"ପ୍ରତ୍ୟେକ କୁଟୁମ୍ବ—ପତି ଯେପରି ବୁଝନ୍ତି ଯେ ତାଙ୍କ ପିଲେ ତାଙ୍କ ଘରର ମର୍ଯ୍ୟାଦା, ଘରର ଚଳଣି ଟାକୁ ଯେପରି ବଜାଏ ରଖିବେ, ପ୍ରତ୍ୟେକ ଜାତିମଧ୍ୟ ସେହିପରି ବୁଝିବା ସ୍ୱାଭାବିକ ଓ ଉଚିତ ଯେ ସେହି ଜାତିର ଯାହା ନିଜସ୍ୱ ସଂସ୍କୃତି ତାହା ବର୍ତ୍ତିରହୁ । ୟୁରୋପର ପ୍ରତ୍ୟେକ ଜାତିତାଙ୍କର ସ୍କୁଲ କଲେଜ ଭିତର ଦେଇ ଏହି ଆଦର୍ଶଟିକି ଯତ୍ନର ସହିତ ବର୍ତ୍ତାଇ ରଖନ୍ତି । କିନ୍ତୁ ଆମେ ଆମ ସଂସ୍କୃତି ବିଷୟରେ ପାଟିକରି ଆକାଶ ଫଟାଉ ସତ, ଆମେ ଏତେ ହତଭାଗ୍ୟ ଯେ, ଆମ ବିଦ୍ୟାଳୟମାନଙ୍କରେ ଆମ ସଂସ୍କୃତିର ଛନ୍ଦ ପ୍ରକାଶ ମଧ୍ୟ ନାହିଁ ।"(21)

ୟୁରୋପୀୟ ସଭ୍ୟତାର ଗ୍ରାସରେ ଭାରତୀୟ ସଂସ୍କୃତିର ମୂଲ୍ୟବୋଧ ବଦଳି ଯାଉଛି । 'କମଳାୟନ' କାବ୍ୟ, 'ଅନ୍ୱେଷଣ' ଉପନ୍ୟାସ ତଥା ବିଭିନ୍ନ ପ୍ରବନ୍ଧରେ ପଲ୍ଲୀ ସଂସ୍କୃତିର ଅବକ୍ଷୟର ଚିତ୍ର ପ୍ରଦତ୍ତ । ପଲ୍ଲୀ ଜୀବନ ଆଧୁନିକ ସହରୀ ସଭ୍ୟତାର ଗ୍ରାସରେ କ୍ରମଶଃ ଧ୍ୱଂସ ପାଇଯାଉଛି । ଗ୍ରାମର ଲୋକେ ସହରାଭିମୁଖୀ ହେଉଛନ୍ତି । ମାନସିଂହଙ୍କ ମତରେ ନବସଭ୍ୟତାର ଘାଆରେ ପଲ୍ଲୀର ସୁସ୍ଥ ଶରୀର ବିକୃତ, ତା'ର ଅନ୍ତର ପଚି ଯାଉଛି, ଅନ୍ତରର ବିଷରେ ପଲ୍ଲୀ ଜରଜର । ଏଠାରେ ସେ ସମ୍ପର୍କରେ ଏତିକି କୁହାଯାଇ ପାରେ ଯେ, ଜୀବନର ଶେଷାର୍ଦ୍ଧରେ ମାନସିଂହ ଅଧିକମାତ୍ରାରେ ସଂସ୍କୃତି ସଚେତନ ହୋଇପଡିଥିଲେ ଓ ସଂସ୍କୃତି ସମ୍ପର୍କରେ ଚର୍ଚ୍ଚା ଆରମ୍ଭ କରିଥିଲେ । ମାନସିଂହ ସଂସ୍କୃତି ସମ୍ପର୍କରେ ଯେତେମାତ୍ରାରେ ଗବେଷଣା କରି ନାହାନ୍ତି, ସଂସ୍କୃତିର ଅଧଃପତନ ପାଇଁ ତତୋଧିକ ବିବ୍ରତବୋଧ କରିଛନ୍ତି । ମାନସିଂହଙ୍କର ଅଧିକାଂଶ ସଂସ୍କୃତି ସମ୍ପର୍କୀୟ ଆଲୋଚନା ଓଡିଶା କୈନ୍ଦ୍ରିକ । ଯେଉଁ ସଂସ୍କୃତି ଭିତରେ ସେ ଜନ୍ମଲାଭ କରିଥିଲେ ତା'ର ଧଳା ଓ କଳା ଉଭୟ ଦିଗକୁ ସେ ଆଲୋଚନା ଦ୍ୱାରା ଆଲୋକିତ କରାଇବା ପାଇଁ ଚାହିଁଛନ୍ତି ।

<u>ଉତ୍କଳୀୟ ସଂସ୍କୃତି</u> — ଆଦ୍ୟ ଜୀବନର ଜାତୀୟ ଚେତନା ଦ୍ୱାରା ଅନୁପ୍ରେରିତ ତାଙ୍କର ସଂସ୍କୃତିବୋଧ, ସଂପ୍ରସାରିତ ଓ ପରିଶୀଳିତ ହେଲାପରେ, ସେ ଓଡିଶା ସଂସ୍କୃତିକୁ କିଛିଟା ଭିନ୍ନ ଦୃଷ୍ଟିରେ ଦେଖିବାକୁ ଆରମ୍ଭ କରିଛନ୍ତି । ଯାହାକିଛି ଉତ୍କଳୀୟ ସବୁ କିଛି ସୁନ୍ଦର ଓ ମଧୁର; ତାକୁ କେବଳ ଆପଣାର କରାଯାଇପାରେ, ବିଚାର କରାଯାଇପାରେ ନାହିଁ— ଏହିଭଳି ଧାରଣା ତାଙ୍କର ପ୍ରାଥମିକ କବିତା ଓ ପ୍ରବନ୍ଧମାନଙ୍କରେ ମିଳିଥାଏ । କିନ୍ତୁ ସଂସ୍କୃତି କହିଲେ କେବଳ ଓଡିଶାର ସଂସ୍କୃତି ନୁହେଁ ବା ନିର୍ଦ୍ଦିଷ୍ଟ ଭୂମିଖଣ୍ଡର ସଂସ୍କୃତି ନୁହେଁ; ଆଦିମ ମାନବର ଯାହା ଚିତ୍ ପ୍ରକର୍ଷ ଓ ବିକାଶର ହେତୁ ତାକୁ ସେ ମାନବ ସଂସ୍କୃତିର ମୂଳାଧାର ରୂପେ ବିଚାର କରିଛନ୍ତି । ସେ ଅନୁଭବ କରିଛନ୍ତି, ଓଡିଶାର ସଂସ୍କୃତି ଉନ୍ନତ ନିଶ୍ଚୟ କିନ୍ତୁ ନୂତନ ମୂଲ୍ୟବୋଧ ଦ୍ୱାରା ପରିଶୀଳିତ ନ ହେବା ଫଳରେ ତାହା ମ୍ଳାନ ହୋଇ ପଡିଛି । ତେଣୁ ସେ ପାଶ୍ଚାତ୍ୟ ମୂଲ୍ୟବୋଧ ପରିପ୍ରେକ୍ଷୀରେ ଓଡିଶାର ସଂସ୍କୃତି ଓ ଭାରତୀୟ ସଂସ୍କୃତିର ଧାରାକୁ ତୁଳନା କରିବାକୁ ଲାଗିଛନ୍ତି । ଓଡିଆମାନଙ୍କର ଦୈନ୍ୟ ଓ ଆର୍ଥନୀତିକ ଅଧଃପତନର କାରଣ ଅନୁସନ୍ଧାନ କରିବାକୁ ଯାଇ ସେ ମନେ ମନେ ସିଦ୍ଧାନ୍ତ କରିଛନ୍ତି ଯେ କୂପମଣ୍ଡୁକତାହିଁ ଏ ଜାତିର ଅବକ୍ଷୟର ପ୍ରଥମ କାରଣ । ଯେତେବେଳେ ଓଡିଆ ପଥ ଅପଥ ନମାନି ଜଳପଥରେ ଓ ଅଜ୍ଞାତ ଦେଶରେ ସାଗର ବୁକୁରେ ବୋଇତ ମେଲି ଯାଉଥିଲା, ସେତେବେଳେ ସେ ଥିଲା ଧନରେ ସମୃଦ୍ଧ ଓ ସାଂସ୍କୃତିକ ଜୀବନରେ ସୁସଂଗଠିତ । 'ପଶ୍ଚିମ ପଥିକ' ଭ୍ରମଣ କାହାଣୀରେ ମାନସିଂହ ସେହି କଥା ଚିନ୍ତା କରିଛନ୍ତି । "ଆମେ ଓଡିଆ ସେଇ ମାଟିକୁ କାମୁଡି ପଡିଛୁ—ଆମର ସାହସ ନାହିଁ ଏଥୁରୁ ଟେଣାଡ଼ କାଢିବାକୁ, ଆମକୁ ଭାତ ମିଳିବ କୁଆଡୁ ? ଖାଲି ମାଟିକୁ ଚୋଳିଲେ ମାଟି କେତେ ଦେଉଥିବ ? ବୁଦ୍ଧି କି ବିଦ୍ୟାକୁ ଚୋଳିଲେ ସିନା ଅସରନ୍ତି ସମ୍ପତ୍ତି ବାହାରନ୍ତା । ଆମ ଦେଶରେ ସେ ଚେଷ୍ଟା କାହିଁ ?"(22)

ସେ ଓଡିଆ ଜାତିକି କାହିଁକି ଭଲ ପାଆନ୍ତି ତାର କାରଣ ଦେଇ ଲେଖିଛନ୍ତି——"ମୁଁ ଓଡିଆ ଜାତିକୁ ତିନୋଟି କାରଣରୁ ଭଲପାଏ ।

ପ୍ରଥମ କାରଣ ଅବଶ୍ୟ ଏହି ଯେ, ମୋର ଜନନୀ ମତେ ଯେଉଁ ଭାଷା ଶିଖାଇଥିଲେ, ଓଡିଆ ଜାତି ସେହି ଭାଷା କହେ । ଏହି ଭାଷା ମୋର ରକ୍ତରେ ମିଶି ଯାଇଛି । ଅନ୍ୟ ଯେତେବେଳେ ବାଙ୍କ ରକ୍ତରେ ଏ ଭାଷା ମିଶିଛି, ସେମାନଙ୍କ ପ୍ରତି ମୋର ଆକର୍ଷଣ ହେବା ସ୍ୱାଭାବିକ୍ । ସେହିମାନେ ଓଡିଆ ଜାତି ।

କିନ୍ତୁ ଏ ଆକର୍ଷଣ ଆକସ୍ମିକ । ମୁଁ ଯଦି ବଙ୍ଗାଳୀ ବା ନିଗ୍ରୋ ପରିବାରରେ ଜନ୍ମ ହୋଇଥାନ୍ତି, ତା ହେଲେ ମୋର ଆକର୍ଷଣ ଅନ୍ୟ ପ୍ରକାର ଧରିଥାନ୍ତା ଏବଂ ହୁଏତ ମୁଁ ଓଡିଆ ଜାତିକୁ ଘୃଣା କରିଥାନ୍ତି ବା ହୁଏତ ମୁଁ ଜାତି ସମ୍ବନ୍ଧରେ ସଂପୂର୍ଣ୍ଣ ଅନ୍ଧ ଥାଆନ୍ତି ।

ଓଡିଆ ଜାତି ପ୍ରତି ମୋର ଆକର୍ଷଣର ଦ୍ୱିତୀୟ କାରଣ ଗୋଟିଏ ସ୍ୱଚ୍ଛନ୍ଦ, ଉନ୍ନତ, ସଭ୍ୟ ଜାତିର ଅଧଃପତନ । ଗ୍ରୀକ୍ ଓ ସେକ୍ସପିଅର ଟ୍ରାଜେଡି ପ୍ରତି ପାଠକର ଓ ଦର୍ଶକମାନଙ୍କର ଯେଉଁ ଆକର୍ଷଣ, ଏ ଆକର୍ଷଣ ତାର ଅନୁରୂପ ।

॥ ମାନସିଂହଙ୍କ ବିଗ୍ଭରଧାରା ॥

ଓଡ଼ିଆ ଜିନିଷକୁ ମୁଁ ଭଲ ପାଇବାର ତୃତୀୟ ଓ ଶ୍ରେଷ୍ଠ କାରଣ ଏହି ଯେ, ଓଡ଼ିଆ ଜାତି ଏକ ସଂସ୍କାର ଜାତି । ଓଡ଼ିଆର ସ୍ୱପ୍ନ ଅଛି । ସେ ତାର ସ୍ୱପ୍ନକୁ ଏପରି ଭାବରେ ରୂପଦେଇ ପାରିଛି, ଯାହା କେବଳ ସଭ୍ୟତମ ମାନବହିଁ କରିପାରେ ।"(23)

ଯେଉଁ ଉତ୍କଳୀୟ ସଂସ୍କୃତି ମାନସିଂହଙ୍କର ଗର୍ବର ବିଷୟ, ସେ ସଂସ୍କୃତି ମହାଭାରତୀୟ ସଂସ୍କୃତିର ଅଂଶ ବିଶେଷ । ବିଭିନ୍ନ ସଂସ୍କୃତିର ମିଳନ ଘଟିଲେ ପରସ୍ପର ମଧ୍ୟରେ କିଛି କିଛି ଉତ୍ତମ ଅଂଶ ବିନିମୟ ମାଧ୍ୟମରେ ପ୍ରସାରିତ ହୋଇଯାଏ । ମାନସିଂହଙ୍କ ମତରେ ଓଡ଼ିଶାର ସଂସ୍କୃତିରେ ବିଭିନ୍ନ ପାର୍ଶ୍ୱର ସଂସ୍କୃତି ମିଶିଛି ।"ଯଦିଓ ଉତ୍କଳ ବାସୀର ଭାଷା ଇଣ୍ଡୋ–ଏରିଆନ୍(ଭାରତୀୟ–ଆର୍ଯ୍ୟ)ଗୋଷ୍ଠୀର ଅନ୍ତର୍ଗତ, ଓଡ଼ିଆମାନଙ୍କର ଜାତୀୟ ଜୀବନ ଓ ସଂସ୍କୃତିର ତିନି ଚତୁର୍ଥାଂଶ ନିଶ୍ଚିତ ଭାବରେ ଦ୍ରାବିଡ଼ୀୟ । କିନ୍ତୁ ଏହି ନିବିଡ଼ ଦ୍ରାବିଡ଼ତା ଉପରେ ଆର୍ଯ୍ୟ–ସଂସ୍କୃତିର ଏକ ପତଳା ପଟି କେବଳ ଛାପ ଦିଆଯାଇଛି ଯାହାକୁହିଁ କୁହାଯିବ ଓଡ଼ିଆ ସଂସ୍କୃତି । ଓଡ଼ିଆ ଗୃହମାନଙ୍କରେ ନିତ୍ୟ ବ୍ୟବହୃତ ଅନେକ ଶବ୍ଦର ମୂଳ ଦ୍ରାବିଡ଼ ଭାଷାମାନଙ୍କରେ ହିଁ ମିଳିବ ଏବଂ ଓଡ଼ିଆମାନଙ୍କର ରୀତିନୀତି ଓ ବେଶଭୂଷା, ଉତ୍ତର ଭାରତୀୟ ଅପେକ୍ଷା, ଦକ୍ଷିଣ ଭାରତୀୟ ଗୁଡ଼ିଏ ସହିତ ନିକଟତର ବା ଅଧିକ ଆତ୍ମିକ ।"(24) ଏହା ସହିତ ଓଡ଼ିଆ ସଂସ୍କୃତିର ବିଶିଷ୍ଟତା ସେ ସାରା ଜୀବନ ଅନୁଭବ କରିଛନ୍ତି । ଅତୀତରେ ଆଦିମ ଅଧିବାସୀ ଓଡ଼୍ରମାନେ ପୂର୍ବ ଭାରତର ଏହିଁ ରାଜ୍ୟ ଟିକୁ ଦେଇଛନ୍ତି ନୂତନ ସ୍ୱାତନ୍ତ୍ର୍ୟିକତା । ଏହି ସ୍ୱାତନ୍ତ୍ର୍ୟିକତା ତାର ଭାଷା ଚଳଣିରେ ପରିସ୍ଫୁଟ ।(25)

ଓଡ଼ିଶାର ସଂସ୍କୃତି କହିଲେ ମୁଖ୍ୟତଃ ବୁଝାଯାଏ ଜଗନ୍ନାଥ ସଂସ୍କୃତି । ଜଗନ୍ନାଥ ଓଡ଼ିଆର ଜାତୀୟ ଜୀବନକୁ ଏପରି ପ୍ରଭାବିତ କରିଛନ୍ତି ଯେ, ଜଗନ୍ନାଥଙ୍କୁ ଛାଡ଼ିଦେଲେ ଓଡ଼ିଆର ଜାତୀୟ ଜୀବନର ସ୍ଥିତି ଅସମ୍ଭବ । ମାନସିଂହଙ୍କ ଭାଷାରେ—"ଜଗନ୍ନାଥ ମହାପ୍ରଭୁ ଏପରି ଭାବରେ ନିଜକୁ ସମ୍ପୂର୍ଣ୍ଣ ରୂପେ ଓଡ଼ିଶାର ଅଧିବାସୀ ବା ଓଡ଼ିଆମାନଙ୍କ ସହିତ ଏପରି ସାମିଲ କରିଦେଇଥିବା ଯୋଗୁଁ ଓଡ଼ିଆମାନେ ମଧ୍ୟ ନିଜ ସଂସ୍କୃତିର ସବୁ କିଛି ଉତ୍କୃଷ୍ଟ ଜିନିଷ ଯଥା:–ନୃତ୍ୟ ଓ କାବ୍ୟ କବିତା, ରନ୍ଧନ ପ୍ରଣାଳୀ ଓ ବିଳାସ ବ୍ୟସନ ବୋଲି ମନେ କରାଯାଉଥିବା ଅନ୍ୟାନ୍ୟ ଦ୍ରବ୍ୟ ଜଗନ୍ନାଥଙ୍କ ସେବାରେ ବିନିଯୋଗ କରିଦେଇଛନ୍ତି । ପ୍ରକୃତ ପକ୍ଷେ ଦେଖିବାକୁ ଗଲେ କାହାରି ପ୍ରଭାବରେ ପ୍ରଭାବିତ ହୋଇ ନଥିବା ଓଡ଼ିଶାର ଜୀବନ ଯାପନ ପ୍ରଣାଳୀରେ ଯାହାକିଛି ଉତ୍କୃଷ୍ଟ ସେ ସବୁର ରକ୍ଷକ ହେଉଛନ୍ତି ଜଗନ୍ନାଥ । ନିଜର ରୋଷଘରେ କଳ ତିଆରି ଚିନି, ଗୋଲ ଆଳୁ ବା ବନ୍ଧାକୋବି ବା ବିଲାତି ବାଇଗଣ ଆଦି ନୂଆ ପ୍ରକାର ଖାଦ୍ୟ ଉତ୍ପାଦନ ସବୁର ବ୍ୟବହାର କଡ଼ାକଡ଼ି ଭାବରେ ନିଷେଧ କରିବା ଦ୍ୱାରା ଜଗନ୍ନାଥ ଭାରତବର୍ଷର ହିନ୍ଦୁ ଦେବାଦେବୀଙ୍କ ମଧ୍ୟରେ ସର୍ବାପେକ୍ଷା ସ୍ୱଦେଶୀ ।"(26) ଜଗନ୍ନାଥ ସଂସ୍କୃତି ଭିତରେ ବହୁ ବିଶ୍ୱାସ ଓ ବହୁ ଧାର୍ମିକ ସତ୍ୟର ସମାହାର ସେ ଲକ୍ଷ୍ୟ କରିଛନ୍ତି । ବେଦରେ କୁହା ଯାଇଥିବା "ଏକଂ ସତ୍ ବିପ୍ରାଃବହୁଧା ବଦନ୍ତି"ଶ୍ଳୋକର ମୂର୍ତ୍ତିରୂପ ସେ ଜଗନ୍ନାଥଙ୍କ ଠାରେ ଲକ୍ଷ୍ୟ କରିଛନ୍ତି । (27)

॥ ମାନସିଂହଙ୍କ ବିଚାରଧାରା ॥

ଗତ ଏକ ଶତ ବର୍ଷ ହେବ ଓଡ଼ିଶାର ସଂସ୍କୃତିକୁ ଜଗନ୍ନାଥ ସଂସ୍କୃତି ରୂପରେ ଅବହିତ କରା ଯାଉଛି । ଓଡ଼ିଆ ଜାତୀୟତାର କେନ୍ଦ୍ରବିନ୍ଦୁ ରୂପେ ଜଗନ୍ନାଥ ଠିଆ ରହିଛନ୍ତି । ଚଳିତ ଶତାବ୍ଦୀରେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ସାଂସ୍କୃତିକ ଆଲୋଚନା ଜଗନ୍ନାଥଙ୍କୁ ଓଡ଼ିଶାର ପ୍ରାଣ ପୁରୁଷ କରିବାରେ ଆହୁରି ସହାୟକ ହୋଇଛି । ଓଡ଼ିଶା ଅତୀତରେ ସାମନ୍ତର ଅଧିଗତ ଥିଲା, ତେଣୁ ସାମନ୍ତ ସଂସ୍କୃତି ଥିଲା ସ୍ୱୀକୃତ ସଂସ୍କୃତି । ଜଗନ୍ନାଥ ସାମନ୍ତ ଦେବତା ଓଡ଼ିଆ ଗଜପତି ମାନଙ୍କର କ୍ଷମତାର ମାପକାଠି । କ୍ଷମତା ଶୂନ୍ୟରେ ତିଷ୍ଠି ରହିପାରେ ନାହିଁ, ସେ ଅନ୍ୟକୁ ଯେପରି ନିଜର କବଳିତ କରିବାକୁ ଚେଷ୍ଟାକରେ, ସେହିପରି ଅନ୍ୟର ସ୍ଥିତିକୁ ମଧ୍ୟ ସ୍ୱୀକାର କରିନିଏ । ଜଗନ୍ନାଥଙ୍କର ରୀତିନୀତି ପୂଜାର ଅନୁଷ୍ଠାନ ଭିତରେ ଏହି ପାରସ୍ପରିକ ଦେଣ ନେଣ ସ୍ପଷ୍ଟ । କିନ୍ତୁ ସେହି ଭିତ୍ତିରେ ଯଦି କୁହାଯାଏ, ଓଡ଼ିଶାର ସଂସ୍କୃତିକୁ ଜଗନ୍ନାଥ ସଂସ୍କୃତି, ତା ହେଲେ ଓଡ଼ିଶାର ଅଧିକାଂଶ ଲୋକଙ୍କର କୌଣସି ସଂସ୍କୃତି ନାହିଁ ବା ଓଡ଼ିଆ ସଂସ୍କୃତିର ଅଂଶ ନୁହନ୍ତି ବୋଲି ସ୍ୱୀକାର କରିବାକୁ ପଡ଼ିବ । ସଂସ୍କୃତି ସମାଜ ଭିତରୁ ଗଢ଼ିଉଠେ, ରାଷ୍ଟ୍ରଦ୍ୱାରା ପରିଚାଳିତ ହୁଏ ନାହିଁ । କ୍ଷମତା ଭିତରୁ ସୃଜନ ଧର୍ମ ଜନ୍ମ ନିଏନାହିଁ, ସେହିପରି ରାଷ୍ଟ୍ର ଭିତରୁ ସଂସ୍କୃତି ଜନ୍ମ ନିଏ ନାହିଁ । ରାଷ୍ଟ୍ର ଯେତେବେଳେ ସଂସ୍କୃତି ସୃଷ୍ଟି କରିବାକୁ ଚେଷ୍ଟାକରେ, ସେ ପ୍ରକୃତରେ ସଂସ୍କୃତି ସୃଷ୍ଟି କରିପାରେ ନାହିଁ, ରାଷ୍ଟ୍ରର ଏକ କେନ୍ଦ୍ରିକତା ସଂସ୍କୃତିର ବିଲୋପନ କରିଥାଏ । ଓଡ଼ିଶାର ସଂସ୍କୃତି କ୍ଷେତ୍ରରେ ଜଗନ୍ନାଥ ଓ ଜନତା ଏହି ପାରସ୍ପରିକ ସ୍ୱୀକରଣ ଫଳରେ କେହି ତାହାକୁ ଗ୍ରାସ କରିପାରି ନଥିଲେ । ବର୍ତ୍ତମାନ ସେ ଚେଷ୍ଟା ଚାଲିଛି ।

## ସାମାଜିକ ଜୀବନ :

ଜଗନ୍ନାଥ ଧର୍ମ ଓଡ଼ିଶାର ସାଂସ୍କୃତିକ ଜୀବନର କେନ୍ଦ୍ରରୂପେ ସ୍ୱୀକୃତ ହୋଇଥିଲେ ମଧ୍ୟ, ଓଡ଼ିଶାର ସାମାଜିକ ଜୀବନ କ୍ରମଶଃ କ୍ଷୟିଷ୍ଣୁ ଅବସ୍ଥାରେ ପହଁଚିଛି, ଅନ୍ୟ ଭାଷାରେ ଏହା ଏକ ସାଂସ୍କୃତିକ ଅଧଃପତନର ଫଳ । ଓଡ଼ିଶାର ସାମାଜିକ ଜୀବନ ସମ୍ପର୍କରେ ମାନସିଂହ ଇଂଲଣ୍ଡ ପ୍ରବାସ ପରେ ଅଧିକ ବିଚାର କରିବାକୁ ଲାଗିଲେ । ତାଙ୍କ ସିଦ୍ଧାନ୍ତକୁ ସହାୟତା କରାଉଥିବା ବିଚାରବୋଧ ସେ ପାଶ୍ଚାତ୍ୟ ଚିନ୍ତା ମଧ୍ୟରୁ ପାଇଲେ । ସାମାଜିକ ଜୀବନ ସମ୍ପର୍କରେ ମାନସିଂହଙ୍କର ମତ ଓ ସିଦ୍ଧାନ୍ତ ଅନେକ ଦିନରୁ ସୁପ୍ତବୀଜ ହୋଇଥିଲେ ମଧ୍ୟ—"ପ୍ରାୟ ଦୁଇବର୍ଷ କାଳ ଇଂଲଣ୍ଡରେ ରହିବା ଫଳରେ ଏବଂ ସେ ଦେଶର ସାମାଜିକ ଜୀବନର ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିବା ଫଳରେ ଆମ ଦେଶର ସାମାଜିକ ଜୀବନ ରୀତିକୁ ମୋ ମନରେ କେତେଗୁଡ଼ିଏ ପ୍ରତିକ୍ରିୟା ବହୁଦିନରୁ ଜାତ ହୋଇଅଛି ।"(୨୪) ସମାଜକୁ ସାଧାରଣତଃ ଗୋଟିଏ ସମୁଦ୍ର ସଙ୍ଗରେ ତୁଳନା କରାଯାଇପାରେ, ଯେଉଁଥିରେ କି ପ୍ରତ୍ୟେକ ବ୍ୟକ୍ତି ଗୋଟିଏ ଗୋଟିଏ ନୀର ବିନ୍ଦୁ, ପ୍ରତ୍ୟେକ ଅଭିନ୍ନ ଓ ସମ୍ବନ୍ଧାନ୍ୱିତ । ମାତ୍ର ଓଡ଼ିଆ ସମାଜରେ ସେ ସତ୍ୟ ନାହିଁ । ଏଠାରେ ବ୍ୟକ୍ତି ଓ ସମାଜର ସମ୍ବନ୍ଧ ଶିଥିଳ ।"ଏଠି ସମାଜ ଗୋଟିଏ ଅଭିନ୍ନ ଗୋଷ୍ଠୀ ନ ହୋଇ, ଅସଂଖ୍ୟ କ୍ଷୁଦ୍ର କ୍ଷୁଦ୍ର ପରିବାର, ଗୋଷ୍ଠୀ ସମାବେଶ ମାତ୍ର । ଏଠି ବ୍ୟକ୍ତି ଓ ସମାଜ ମଧ୍ୟରେ ବର୍ଣ୍ଣ ଓ କାଷ୍ଠ ମଧ୍ୟରେ ପାଚେରୀ ଠିଆ

ହୋଇ ପରସ୍ପରକୁ ବହୁଧା ଛିନ୍ନ ବିଚ୍ଛିନ୍ନ କରି ସହସ୍ର ସହସ୍ର କ୍ଷୁଦ୍ର ବୃତ୍ତ ସୃଷ୍ଟି କରିଅଛି । ତେଣୁ ଓଡିଆ ସମାଜକୁ ମୁଁ ସମୁଦ୍ରର ଉପମା ଦେଇପାରୁ ନାହିଁ । ବରଂ ଏହା ଏପରି ଗୋଟିଏ ଦୃଶ୍ୟ ସଂଗେ ତୁଳନା କରାଯାଇପାରେ— ଗୋଟିଏ ବିରାଟ ଭୂମି, ଯହିଁରେ ଜଳ ଭଣ୍ଡାର ରହିବା ପରିବର୍ତ୍ତେ ରହିଛି ଅଗଣିତ ଛୋଟ ଛୋଟ ଗୁଆ, ଯେଉଁଠିରେ ପାଣି ଏତେ ପଙ୍କିଳ ଓ ଅଗଭୀର ଯେ ସେଠି ବଡମାଛର ଜନ୍ମ ଓ ବୃଦ୍ଧି ଅସମ୍ଭବ, ତେଣୁ ସେଠି ଅଛନ୍ତି ଓ ରହି ପାରନ୍ତି କେବଳ ଛୋଟ ମୀନ । X X ଫଳରେ ଓଡିଆମାନେ, ଛୋଟ ଗୁଆରେ ଛୋଟ ମୀନ ବଞ୍ଚିବା ପରି ସଙ୍କୁଚିତ, ଆନନ୍ଦ ବର୍ଜିତ, ସ୍ୱାଧୀନତା—ବର୍ଜିତ ଦୁଃଖମୟ ଜୀବନ ଯାପନ କରୁଅଛନ୍ତି ।"(29)

ଭାରତୀୟ ସଂସ୍କୃତିର ପାରିବାରିକ ଜୀବନକୁ ସେ କେତେବେଳେ ପସନ୍ଦ କଲାବେଳେ, ଅନ୍ୟ ସମୟରେ ଓଡିଆ ଯୌଥ ପରିବାରକୁ ନିନ୍ଦା କରିଛନ୍ତି । ଆମ ଦେଶର ନିର୍ଭରଶୀଳ ପାରିବାରିକ ଜୀବନ ହିଁ ସାଂସ୍କୃତିକ ବିପର୍ଯ୍ୟୟର ଅନ୍ୟତମ କାରଣ । ବିବାହ ସାମାଜିକ ଜୀବନର ଏକ ମୁଖ୍ୟ ଅଙ୍ଗ । ଆମ ଦେଶର "ତରୁଣ ତରୁଣୀଙ୍କୁ ଛନ୍ଦାଛନ୍ଦି କରିବାର ଦାୟିତ୍ୱ ପିତାମାତାଙ୍କର । ପୁଅ ବା ଝିଅକୁ ବିବାହ ନ କରାଇ ପାରିଲେ, ବାପା ବା ମା ଶାନ୍ତିରେ ମରିପାରନ୍ତି ନାହିଁ । ନାତି ନାତୁଣୀ ଦେଖିବା ପାଇଁ ଏକ ଅବାଞ୍ଛନୀୟ ବସ୍ତ୍ରପ ମଧ୍ୟ ଏଥିରେ ନିହିତ । ଏକ ଘ୍ରଳତଳେ ବାପ ମା' ଓ ପୁଅ ଝିଅଙ୍କର ବଂଶବୃଦ୍ଧି ସମାନ ଗତିରେ ଚାଲିଛି ଏବଂ ସର୍ବ ମୁଖରେ ଆହାର ଦେବାର ଦାୟିତ୍ୱ ମୂଳ ମୁରବିର ।"(30) କିନ୍ତୁ ଶ୍ୱେତାଙ୍ଗ ଜାତି ମଧ୍ୟରେ ଏହି ବିବାହଟା ତରୁଣ ସମାଜର ନିଜ ଦାୟିତ୍ୱ । ସେମାନେ ଉପାର୍ଜନ କ୍ଷମ ହେଲେ ନିଜେ ବଛାବଛି ହୋଇ ବିବାହ କରିବେ । ଆମ ପରିବାରମାନଙ୍କରେ ଅନ୍ଧ ବୁଦ୍ଧାମଣା ବା ଅଦୂରଦର୍ଶିତାର ଏହା କାରଣ ହୋଇପାରେ, ମାତ୍ର ଭାରତୀୟ ପରିବାରରେ ଯେଉଁ ସାଂସ୍କୃତିକ ତଥା ସାମାଜିକ ବନ୍ଧନ ରହିଛି, ଯାହାକି ଆମ ଜଳବାୟୁ ପାଇଁ ଉପଯୋଗୀ ତଥା ଆମ ସଂସ୍କୃତିର ନିଜସ୍ୱ, ତାକୁ ପାଶ୍ଚାତ୍ୟ ନିକିତିରେ ତଉଲିବା ବିଡମ୍ବନା ମାତ୍ର । ମାନସିଂହ ସେ ଦୃଷ୍ଟିରୁ ଆମ ପାରିବାରିକ ଜୀବନକୁ ସମାଲୋଚନା କଲେ, ମଧ୍ୟ ନିଜେ ଏକ ବ୍ୟବସ୍ଥିତ ଶାନ୍ତିମୟ ପାରିବାରିକ ଜୀବନ ଗଢ଼ିଛନ୍ତି । 'କମଳାୟନ ' କାବ୍ୟରେ ଆଧୁନିକ ଜୀବନ ମଧ୍ୟରେ ଏହିପରି ଗୋଟିଏ ପରିବାର ଗଢ଼ିଛନ୍ତି, ଯେଉଁ ପରିବାର ମଧ୍ୟରେ କମଳର ସ୍ତ୍ରୀ ପରି ଜଣେ ସ୍ତ୍ରୀ ଲୋଡା:— ଯିଏକି——

"ସ୍ନାନ ସାରି ହୁଏ ସ୍ୱାମୀ ବିନୀତ ସେବିକା ।
ଘର ଲିପେ, ଚୁଲି ଧରେ, ଅନ୍ନ ଓ ବ୍ୟଞ୍ଜନ
କରାଇ, ସ୍ୱାମୀରେ ଡାକି କରାଏ ଭୋଜନ,
ସ୍ୱାମୀ ପରେ ସ୍ୱାମୀ ଥାଳେ ଖାଇ ଆନନ୍ଦରେ,
ଧ୍ୟାନ କରେ, —ମିଳୁ ଏହା ଜନ୍ମ ଜନ୍ମାନ୍ତରେ ।"(31)

॥ ମାନସିଂହଙ୍କ ବିଗ୍ରହଧାରା ॥

ଓଡିଶାର ସାମାଜିକ ଜୀବନ ଆଲୋଚନା କରି, ସେ ଗ୍ରାମରେଥିବା ସ୍ୱୟଂସମ୍ପୂର୍ଣ୍ଣତାକୁ ବେଳେ ବେଳେ ଉଚ୍ଚସ୍ଥାନ ଦେଉଛନ୍ତି । 'ଦି ସାଗା ଅଫ ଦି ଲ୍ୟାଣ୍ଡ ଅଫ୍ ଜଗନ୍ନାଥ' ପୁସ୍ତକରେ ଓଡିଆ ଗ୍ରାମର ସାଂସ୍କୃତିକ ଭିତ୍ତିକୁ ସମ୍ମାନ ଜଣାଉଛନ୍ତି । ଓଡିଆ ଗ୍ରାମରେ ବହୁ ଜାତିଙ୍କର ସହାବସ୍ଥାନ, ଏହାର ଜାତି ପ୍ରଥାକୁ ଯେଉଳି କରିଛି ଶିଥିଳ, ଏକ ସୁସ୍ଥ ସମାଜ ଜୀବନର ମୂଳଦୁଆ ଏହି ଏକକ ଗ୍ରାମହିଁ ସ୍ଥାପନ କରିଛି । ତା'ର ଭାଗବତ ଘର, ବ୍ୟାଟଶାଳୀ, ଜୀବନଯାତ୍ରା ଓ ପାରିପାର୍ଶ୍ୱିକ ସହଯୋଗ, ଗ୍ରାମ ଜୀବନ ଦେଇ ଗଢି ଉଠିଛି ।

ମାନସିଂହଙ୍କ ମନରେ ପାଶ୍ଚାତ୍ୟ ଜଗତର ଆଧୁନିକ ମୂଲ୍ୟବୋଧ ଓ ଅତୀତ ପ୍ରତି ଆସକ୍ତି ଉଭୟ ମଧ୍ୟରେ ଏକ ଦ୍ୱନ୍ଦ୍ୱ ଥିଲା । ଗ୍ରାମ୍ୟ ଜୀବନର ସୁସ୍ଥତା ତଥା ସହଯୋଗ ତାଙ୍କୁ ଆକୃଷ୍ଟ କଲାବେଳେ, ପାଶ୍ଚାତ୍ୟ ଜୀବନର ପ୍ରଗତିଶୀଳତା ତାଙ୍କୁ ପ୍ରଲୁବ୍ଧ କରିଛି । ଜୀବନ ଉପରେ ଅର୍ଥନୀତିର ପ୍ରଭାବ ସମ୍ପର୍କରେ ସେ ସଚେତନ ନଥିବାରୁ ବା ଉତ୍ପାଦନ ବ୍ୟବସ୍ଥା ସମାଜ ବ୍ୟବସ୍ଥାକୁ ନିୟନ୍ତ୍ରଣ କରେ ଓ ସମାଜ ବ୍ୟବସ୍ଥାରୁ ସଂସ୍କୃତି ଗଢି ଉଠେ, ଏହା ସ୍ୱୀକାର କରିବାକୁ ସେ ପରାଙ୍ମୁଖ ଥିବାରୁ, ତାଙ୍କ ଭିତରେ ଏହି ସ୍ୱବିରୋଧର ସୃଷ୍ଟି । ଓଡିଶାର ଯୌଥ ପାରିବାରିକ ଜୀବନ କୃଷି ଭିତ୍ତିକ ସାମନ୍ତବାଦୀ ଅର୍ଥନୀତିର ଫଳଶ୍ରୁତି । କେଉଠୋପର ଏକକ ପରିବାର ଓ ବ୍ୟକ୍ତି ସ୍ୱାଧୀନତା ପୁଞ୍ଜିବାଦୀ ଅର୍ଥନୀତିର ବିକାଶ ସହ ସଂପୃକ୍ତ । ମାନସିଂହ ମାନସିକ ସ୍ତରରେ ଗୋଟିଏ ସହ ଜଡିତ ହୋଇଥିଲାବେଳେ ବିଗ୍ରହ କଲାବେଳେ ଅନ୍ୟଗୋଟିକୁ ଗୁରୁତ୍ୱ ଦେଉଛନ୍ତି ।

**ଖାଦ୍ୟ :**

ଖାଦ୍ୟ ସାମଗ୍ରୀର ନିର୍ବାଚନ, ରନ୍ଧନ ଓ ପରିବେଷଣ ମଧ୍ୟରେ ଜାତିର ଚଳଣି ପ୍ରକାଶ ପାଇଥାଏ । ଓଡିଆର କଳା ନୈପୁଣ୍ୟ ତାହାର ଖାଦ୍ୟ ପ୍ରସ୍ତୁତ ପ୍ରଣାଳୀ ସହିତ ଓତଃପ୍ରୋତ ଜଡିତ । ଏଥିରୁ ସରଳତା ଆମ ସଂସ୍କୃତିର ଅନ୍ୟତମ ବୈଶିଷ୍ଟ୍ୟ । ଅଭାବରୁ ସ୍ୱଭାବ ନଷ୍ଟ ହେଲାପରି, କ୍ରମାଗତ ଦାରିଦ୍ର୍ୟ, ଶୋଷଣ, ଅତ୍ୟାଚାର ଓ ପରାଧୀନତା ମଧ୍ୟରେ ଓଡିଆ ସଂସ୍କୃତିର ଅବକ୍ଷୟ ଦେଖା ଦେଉଛି । ସମ୍ପ୍ରତି ଓଡିଶାର ରନ୍ଧନ ଭୋଜନ ଓ ଖାଦ୍ୟ ନିର୍ବାଚନ ଅତି ନିମ୍ନମାନର ହୋଇଯାଉଛି । ମାନସିଂହ ଇଂଲଣ୍ଡ ରହଣୀ କାଳରେ ସେଠାକାର ସଭ୍ୟତାକୁ ଆମର ଚଳଣି ସହିତ ତୁଳନା କରିବା ସଂଗେ ସଂଗେ ଓଡିଆର ଖାଦ୍ୟ ପ୍ରସ୍ତୁତିରେ ସଂସ୍କୃତିର ରୂପ ଦେଖି ଓଡିଆ ରନ୍ଧନ ପ୍ରଣାଳୀର ନିନ୍ଦା କରିଅଛନ୍ତି । ସେ କହନ୍ତି —"ଆମ ଦେଶର ଗୃହସ୍ଥ ଏବଂ ଗୃହିଣୀମାନଙ୍କର ଧାରଣା ନାହିଁ ଯେ, ଖାଦ୍ୟ ଜାତିର ଚରିତ୍ର ଉପରେ କ୍ରିୟା କରେ । ଆମ୍ଭମାନଙ୍କ ଘରେ ବଳଦପାଇଁ କୁଟୁଚି ରନ୍ଧା ହେଲାପରି ଗୁଡାଏ ରନ୍ଧା ହୁଏ । ଅନ୍ୟ ପକ୍ଷରେ ବଡଲୋକଙ୍କ ଘରେ ରନ୍ଧନ ଏପରି ଏକ ଜଟିଳ ପ୍ରଣାଳୀରେ ପରିଣତ ହୁଏ, ଯେଉଁଥିରେ ଶ୍ରମ ଓ ଅର୍ଥର ପ୍ରଚୁର ବ୍ୟୟ ହୁଏ, କିନ୍ତୁ ଖାଦ୍ୟରୁ ତାର ଗୁଣ ଲୁପ୍ତ ପ୍ରାୟ ହୁଏ ।"(୩୨) ଦାରିଦ୍ର୍ୟରୁ ବହୁ ଆହାର ଓ ଅନ୍ୟଚଳଣିର ପ୍ରଭାବରୁ ଜଟିଳ ପ୍ରଣାଳୀର ଆହାରକୁ ମାନସିଂହ ନିନ୍ଦା କରିଥିଲେ ମଧ୍ୟ, ଓଡିଆ ପଲ୍ଲୀ ଜୀବନରେ ଖାଦ୍ୟ ପ୍ରଣାଳୀର ଯେଉଁ

ସ୍ୱାତନ୍ତ୍ର୍ୟ ଓ ସାଂସ୍କୃତିକ ପ୍ରବାହ ରହିଛି, ତାକୁ ପୂର୍ଣ୍ଣ ପ୍ରାଣରେ ସମର୍ଥନ କରିଛନ୍ତି । 'ଅନ୍ୱେଷଣ' ଉପନ୍ୟାସରେ ଓଡିଆ ଖାଦ୍ୟ ପ୍ରଣାଳୀକୁ ଉଚ୍ଛ୍ୱସିତ ପ୍ରଶଂସା କରିଛନ୍ତି । ଶ୍ରୀକଣ୍ଠ ଚରିତ୍ର ମୁଖରେ ଓଡିଆର ବ୍ୟଞ୍ଜନ ମଧ୍ୟରୁ, କଂକଡାର ମହୁର, ଗୁହାଳିଆ ପାଚୁଆର ଖଟା, ମାଛ ମୁଣ୍ଡିର ବରା, ନଡିଆ ଛେଞ୍ଚି, ପୁର କାକରା, ଚେନାପୁଳି ଇତ୍ୟାଦି ଖାଦ୍ୟ ସମ୍ପର୍କରେ ଆଲୋଚନା କରିବା ସମୟରେ ମାନସିଂହ କ୍ଷୋଭ ପ୍ରକାଶ କରିଥିବେ ଯେ, ଆଜି ଓଡିଶା ବଙ୍ଗଳାର ପ୍ରଭାବରେ କ୍ରମେ ଦେହ ଓ ମନରେ ଧ୍ୱଂସ ହେବାକୁ ବସିଲାଣି । ଲୋକେ ପୂର୍ବର ଦହି, ଚକ୍କୁଲିପିଆ ଅଭ୍ୟାସ ଛାଡି, ଚ୍ୟା'ରେ ଏବେ ବୁଡି ରହିଲେଣି । ଚୁଡାଗୁଡ ନଡିଆର ପୁଷ୍ଟିକର ନିର୍ଦ୍ଦୋଷ ଖାଦ୍ୟ ପରିବର୍ତ୍ତେ ଗାଁଏ ଗାଁଏ ମିଠାଦେଲେ ବା ଡାଲଡାର ଭଜା ପୁରୀ ତରକାରୀ ପକୋଡିର ଦୋକାନରୁ ଖାଇବାରେ ବ୍ୟସ୍ତ । ମାନସିଂହ ଏହାକୁ ସାଂସ୍କୃତିକ ଅବକ୍ଷୟ ତଥା ରୁଚିର ବିକାର ଅବସ୍ଥା ବୋଲି କହିଛନ୍ତି ।

ଏହି ପ୍ରକାର ଖାଦ୍ୟପେୟ ଗତ ପରିବର୍ତ୍ତନକୁ ଜାତୀୟ ଜୀବନର ଅଧୋଗତି ପାଇଁ ସେ ଉନ୍ମୋଚନ କରିଛି । 'ସୁସ୍ଥ ଶରୀର' ପ୍ରବନ୍ଧରେ ବ୍ୟାପକ ଭାବରେ ଆଲୋଚନା କରି ମାନସିଂହ ଦେଖିଛନ୍ତି:—ଜାତୀୟ ଜୀବନର ଉନ୍ନତି କରିବାକୁ ହେଲେ—"ଦେଶବାସୀଙ୍କର ଅନେକ ଦୁରଭ୍ୟାସ ମଧ୍ୟ ତୁରନ୍ତ ଛାଡିବା ଉଚିତ । ଦେଶରେ ଦୁଧ ଦୁଷ୍ପ୍ରାପ୍ୟ ହେବାର ପ୍ରଧାନ କାରଣହେଉଛି, ସହରର ଗଳି କନ୍ଦିରେ ଗୁଡିଆ ଦୋକାନ ଓ ସେ ଦୋକାନମାନଙ୍କରେ ଦୁଧ ଜିନିଷର ମିଠାଇ ତିଆରି । ଏ ବ୍ୟାଧି ବଙ୍ଗଳାରୁ ଆସିଛି ଓଡିଶାକୁ । ଓଡିଆ ଘରର ପିଠା ପଣାରେ ବିରି, ଚାଉଳ, ନଡିଆ, ଗୁଡ, ଘିଅ ପ୍ରଧାନ ଉପାଦାନ । ଜଗନ୍ନାଥ ଦେଉଳରେ ବି ଏହି ବ୍ୟବସ୍ଥା, କିନ୍ତୁ ବଙ୍ଗାଳୀ ମିଠାଇର ପ୍ରଧାନ ଉପାଦାନ ହେଲା ଛେନା । ପାଖପେରେ ଖାଣ୍ଟିଦୁଧ ନଷ୍ଟକଲେ ସେରେ ଛେନା ମିଳିବ । ଆଜି କଟକର ଗୁଡିଆ ଦୋକାନକୁ ମହଣ ମହଣ ଛେନା ଯୋଗାଇବା ପାଇଁ, ଶତଶତ ଗାଁ ଏକାବେଳକେ ଦୁଗ୍ଧ ଶୂନ୍ୟ । ଏ ଏକ ଜାତିର ବିପତ୍ତି, ଯାହାକୁ ନାହିଁ ସରକାର ନାହିଁ ଲୋକେ ଦୃଷ୍ଟି ଦେଉଛନ୍ତି । ମିଠେଇ ଜିନିଷଟା ସ୍ଥାୟୀ ଚିଜରେ କରାଯିବା ର କଥା । ଇଉରୋପୀୟମାନଙ୍କର ପିଠା ମାସମାସ ଧରି ରହେ, କିନ୍ତୁ ଛେନାର ମିଠାଇ ସଦ୍ୟ କରିବ ସଦ୍ୟ ଖାଇବ ।

ପ୍ରାଚୀନ ଉତ୍କଳର ଲୋକମାନେ ଏପରି ଏପରି ମିଶ୍ରିତ ଖାଦ୍ୟ ଖାଉ ନଥିଲେ । ସେମାନେ ନିଜସ୍ୱ ଖାଦ୍ୟ ଓ ସ୍ୱକୀୟ ଚିନ୍ତାରେ ଓଡିଶାର ସାଂସ୍କୃତିକ ଜୀବନକୁ ଜୀବନ୍ତକରି ରଖିଥିଲେ । ମାନସିଂହଙ୍କ ଭାଷାରେ "ଯେଉଁମାନେ କୋଣାର୍କ ଗଢିଥିଲେ ସେମାନେ ରସଗୋଲା ଦେଖି ନଥିଲେ, ବା ପୁରୀ ମାଂସ ତରକାରୀ ଚାଖି ନ ଥିଲେ । ଓଡିଶା ମାଟିରେ ଯାହା ଜନ୍ମୁଥିଲା, ସେହି ଭାତ, ଦୁଧ, ମାଣ୍ଡିଆ, ବିରି, ନଡିଆ, କଦଳୀ ଖାଇ ସେମାନେ ଅଦ୍ଭୁତ କର୍ମୀ ହୋଇପାରିଥିଲେ । ଦେଶର ଧନ ଦେଶରେ ରହୁଥିଲା, ଜାତି ସ୍ୱାସ୍ଥ୍ୟ ମଧ୍ୟ ଅକ୍ଷୁଣ୍ଣ ରହୁଥିଲା । ଆମେ ତାଙ୍କ ତୁଳନାରେ କି ଛାର । ଆମେ ତାଙ୍କରି ସାଧାସିଧା ଜୀବନର ଅନୁକରଣ ନକରିବା କାହିଁକି ?" (୩୪)

## ।। ମାନସିଂହଙ୍କ ବିଗ୍ଭରଧାରା ।।

**କଳା ଓ ସାହିତ୍ୟ :**

କଳା ଓ ସାହିତ୍ୟ ସାମାଜିକ ଓ ସୃଷ୍ଟିଧର୍ମୀ ମନୀଷାର ଆତ୍ମପ୍ରକାଶ ହୋଇଥିବାରୁ, ତାହା ସଂସ୍କୃତି ର ଏକ ବିଶିଷ୍ଟ ଅଂଶ ହେବା ସ୍ୱାଭାବିକ । ଅନେକ ସମୟରେ କଳା ଓ ସାହିତ୍ୟ ଗୋଟିଏ ସମାଜର ସାଂସ୍କୃତିକ ପ୍ରତିନିଧିତ୍ୱ କରିଥାଏ । କଳା ଓ ସାହିତ୍ୟର ଅବକ୍ଷୟ ହେଲେ ସଂସ୍କୃତିର ଅବକ୍ଷୟ ହେବା ସ୍ୱାଭାବିକ୍ । ମାନସିଂହଙ୍କ ମତରେ—" ସାହିତ୍ୟରେ କୌଣସି ଧାରାକୁ ଜବରଦସ୍ତି ବା ଗୁରୁତ୍ୱ ପ୍ରଚଳିତ କରାଯାଇ ନପାରେ । ସାହିତ୍ୟ ର ରାଜ୍ୟ ହେଲା ବୋଧ ଓ ଅନୁଭବ ଜନିତ ଆନନ୍ଦର ରାଜ୍ୟ । ନଚେତ ସାହିତ୍ୟ ସୃଷ୍ଟି ହୋଇଥାନ୍ତା କାହିଁକି ?(35) ଓଡିଶା ପରାଧୀନ ହେବାର ଅବ୍ୟବହିତ ପୂର୍ବରୁ ଓଡିଶାର ଧର୍ମ ଓ ସଂସ୍କୃତିର ଅବକ୍ଷୟ ଦେଖାଦେଇଥିଲା । ଷୋଡଶ ଶତାବ୍ଦୀରେ ବଙ୍ଗଳାର ଧର୍ମସ୍ରୋତ ଆସି ଯେପରି ଓଡିଆର ଧର୍ମଧାରାକୁ ପ୍ରଭାବିତ କଲା, ସେହିପରି ଓଡିଆର ଦୈନନ୍ଦିନ ଜୀବନ ଓ ଚରିତ୍ରକୁ ରୂପାନ୍ତରିତ କରିଥିଲା । ଊନବିଂଶ ଶତାବ୍ଦୀରେ ବଙ୍ଗଳାର ସାହିତ୍ୟ ସ୍ରୋତ ସେହି- ପରି ଓଡିଆର ସାହିତ୍ୟକୁ ଦେଶାନ୍ତର କରିଦେଲା । (36)

କଳା ଓ ସାହିତ୍ୟର ଅବକ୍ଷୟ ସଂଗେ ସଂଗେ ଓଡିଆର ସାଂସ୍କୃତିକ ଜୀବନର ଅବକ୍ଷୟ ସମ୍ପର୍କ ରେ ମାନସିଂହ ବିସ୍ତୃତ ଭାବରେ ଆଲୋଚନା କରିଛନ୍ତି । ମାନସିଂହଙ୍କ ଭାଷାରେ—"ଆଧୁନିକ ଓଡିଆ ସାହିତ୍ୟ ଓ ସମାଜରେ ଘୁରିଆତେ ବିଗ୍ଭରହୀନତା, ଗତାନୁଗତିକତା ଓ ଅନ୍ଧ ଅନୁକରଣରେ ମୁଁ ଋର୍ଦ୍ଧ । ଅଧିକାଂଶ ଲେଖକଲେଖିକା କେବଳ ବଙ୍ଗଳାକୁ ଅନୁକରଣ କରି ଆତ୍ମ ପ୍ରସାଦ ଅନୁଭବ କରୁଛନ୍ତି । ନିଜର ପ୍ରାଚୀନ ସାହିତ୍ୟ ଓ ପୁରାତନ ଭାଷା ର ନିଜସ୍ୱ ଚରିତ୍ର ଆଲୋଚନା କରିବା ପାଇଁ ସେମାନଙ୍କର ଶକ୍ତି ବା ସ୍ପୃହା ନାହିଁ । ଓଡିଆ ଘରର ଶାଢୀ ଓ ଅଳଂ- କାର ଆଜି ପ୍ରସିଦ୍ଧ ଅଭିନେତ୍ରୀମାନେ ଗ୍ରହଣକରି ଗର୍ବ ଅନୁଭବ କରୁଥିଲାବେଳେ, ଶିକ୍ଷିତା ଓଡିଆ ସ୍ତ୍ରୀ ମାନେ କଲିକତୀ ଜହୁରୀମାନଙ୍କର ପ୍ରାଣହୀନ, ନାମହୀନ, କୁଦର୍ଶନ ଷ୍ଟାଇଲର ଭୂଷଣମାନଙ୍କୁ ଲେଟେଷ୍ଟ ଫେସନ ରୂପେ ଗ୍ରହଣ କରି ଆଦର କରୁଛନ୍ତି । ଖାଣ୍ଟି ଓଡିଆ ରନ୍ଧନ ପ୍ରଣାଳୀ ଯାହାକି ଜଗନ୍ନାଥ ମନ୍ଦିରରେ ଲକ୍ଷ୍ମୀଦେବୀଙ୍କର କଲ୍ୟାଣମୟ ହସ୍ତ ଏ ପର୍ଯ୍ୟନ୍ତ ବଢେଇ ରଖିଛି, ତାହା ଯେପରି ମୁଖ ରୋଚକ ସେହିପରି ବିଜ୍ଞାନ ସମ୍ମତ ଓ ସ୍ୱାସ୍ଥ୍ୟ କାରକ । କିନ୍ତୁ କୌଣସି ଓଡିଆ ଘରେ ସେ ତରକାରୀ ବା ପିଠାପଣା ଆଜି ଦେଖିବାକୁ ମିଳେନି । ଓଡିଆଣୀମାନେ ସେ ରନ୍ଧନ ପ୍ରଣାଳୀ ପାସୋରି ଦେଲେଣି । ବଙ୍ଗାଳୀ ଅନୁକରଣରେ ମିଶା ସୋରିଷ ତେଲ ଓ ପୁରୀ ଲୁଚି, ଭଜାଭଜିର ଅଭ୍ୟା- ସରେ ଓଡିଆ ଜାତି ଆଜି କ୍ରମେ ହୀନ ସ୍ୱାସ୍ଥ୍ୟ ଓ ରୋଗ ପ୍ରବଣ ହୋଇ ପଡୁଛି । ଏ ଦିଗରେ ଓଡିଆ ସାହି- ତ୍ୟିକ, ଲେଖକ ଓ କବିମାନଙ୍କର କର୍ତ୍ତବ୍ୟ ଅଛିବୋଲି ମୁଁ ମନେ କରେ । ସେମାନେ ନିର୍ଭିକ ଭାବରେ ଦେଶବାସୀ ର ବେଶଭୂଷା, ପାନଭୋଜନ, କଥୋପକଥନ ଓ ଲେଖାଲେଖିରେ ଖାଣ୍ଟି ଓଡିଆତ୍ୱର ପ୍ରଗ୍ଭର କରନ୍ତୁ ।"(37)

ସାହିତ୍ୟ ଓ କଳାରେ ଓଡିଆ ଜାତିର ଚିଭରେ ଚିତ୍ର ପ୍ରତିଫଳିତ । ସାମ୍ପ୍ରତିକ ସାହିତ୍ୟିକମାନଂ କ ମଧ୍ୟରୁ ଅଧିକାଂଶ ଜାତିର ଚିତ୍ର ପ୍ରଦାନରେ ବିମୁଖ । ମାନସିଂହଙ୍କ ମତରେ ସମସାମୟିକ ସାହିତ୍ୟିକ ତଥା ଶିଳ୍ପୀ

ମାନେ ସେହି ମନ୍ତ୍ରରେ ଦୀକ୍ଷିତ ହୁଅନ୍ତୁ । ଓଡ଼ିଆ ସାହିତ୍ୟରେ ରାଧାନାଥ ଉତ୍କଳୀୟ ସଂସ୍କୃତିର କେବଳ ବହିଃରଙ୍ଗ ହିଁ କେବଳ ପ୍ରକାଶ କଲେ, ଓଡ଼ିଆର ଅନ୍ତରଙ୍ଗର ଚିତ୍ର ତାଙ୍କ ଲେଖାରେ ଦୁର୍ଲଭ । ମାନସିଂହ କହନ୍ତି ଯେ, ଆମ୍ଭେମାନେ, 'ଛ ମାଣ ଆଠଗୁଣ୍ଠ', 'ମାମୁଁ' ବା ଆଲୋଚିକାରେ ଓଡ଼ିଆ ଜାତିର ଅବଚେତନ ମନର ଚିତ୍ର ଯେଉଁ ପ୍ରକାର ପାଉ ତାହା ରାଧାନାଥ ଲେଖାରେ ଫୁଟାଇପାରି ନାହାନ୍ତି । ଅତୀତରେ ସାରଳା ଦାସ, ଜଗନ୍ନାଥ ଦାସ ତଥା ପଞ୍ଚସଖାର ଅନ୍ୟମାନେ ଓଡ଼ିଆ ଜାତିର ପ୍ରାଣ ମନ୍ଦିକୁ ଚିହ୍ନି ପାରିଥିଲେ । ଏଣୁ ସାରଳା ମହାଭାରତ ଯଥାର୍ଥରେ ଓଡ଼ିଆ ଜନ ଜୀବନର ଚିତ୍ର ତଥା ଓଡ଼ିଆ ସଂସ୍କୃତିର ଏହା ଦର୍ପଣ ସଦୃଶ । ଏ ମହାଭାରତ ଖଣ୍ଡି ଓଡ଼ିଆ ଭାଷାର ରାଷ୍ଟ୍ରୀୟ ଗ୍ରନ୍ଥ କହିଲେ ଅତ୍ୟୁକ୍ତି ହେବନାହିଁ ।"କିନ୍ତୁ ମହାକବି ଆମର ପରିଚିତ ମାଟିର ସଂସାରକୁ ସିନା ଅମର କରିଦେଇଗଲେ, କିନ୍ତୁ ଏଇ ମାଟିର ନିମ୍ନ ଉପତ୍ୟକାରୁ, ଉପରେ ଥିବା ସଂସ୍କୃତିର ଓ ନିର୍ମଳ ଆଧ୍ୟାତ୍ମିକତାର ସ୍ୱର୍ଣ୍ଣ ଅଧିତ୍ୟକାକୁ ବାଟତ ଦେଖାଇଗଲେ ନାହିଁ ? ସର୍ବଶ୍ରେଷ୍ଠ କଳା, ଶିଳ୍ପ ଓ କବିତା ଏଇ ମାଟିକି ନେଇ ଗଢା । କିନ୍ତୁ ସେ ସବୁର ସ୍ୱର୍ଗ ଆମକୁ ଏଇ ମାଟିରେ ଲିପ୍ତ ରଖେନାହିଁ । ସେ ସବୁ ନେଇଯାଆନ୍ତି ଏକ ସୂକ୍ଷ୍ମ ସୁକୁମାର କଳ୍ପଲୋକକୁ ।"(38)

ଓଡ଼ିଆ ସାହିତ୍ୟର କଳା ଭାସ୍କର୍ଯ୍ୟ ଓ ଜାତୀୟ ସଂସ୍କୃତି ପରସ୍ପରର ପରିପୂରକ । ଅତୀତ ଓଡ଼ିଶାର ଏହି ମଧୁର ସାମଞ୍ଜସ୍ୟକୁ ମାନସିଂହ ମୁଗ୍ଧ ଭାବରେ ବର୍ଣ୍ଣନା କରିଛନ୍ତି ।:—"ଓଡ଼ିଶାରେ କବିମାନେ ଓଡ଼ିଶୀ ଦେଉଳରୁ ଓ ଓଡ଼ିଶାର ସ୍ଥପତି—ଭାସ୍କର ବର୍ଗ ଓଡ଼ିଶା କାବ୍ୟରୁ ପ୍ରେରଣା ସଂଗ୍ରହ କରୁଥିଲେ । ପୁଣି, କେବଳ କାବ୍ୟ ନୁହେଁ, ଓଡ଼ିଆର ନୃତ୍ୟ, ନାଟକ ଓ ସଂଗୀତ ମଧ୍ୟ ନିଃସନ୍ଦେହ ହୋଇଛି ଏହି ମନ୍ଦିରମାନଙ୍କରୁ । ମୋଟ ଉପରେ ଓଡ଼ିଶାର ମନ୍ଦିର ଗୁଡିକ ଓଡ଼ିଆମାନଙ୍କର ସାମାଜିକ ଓ ସାଂସ୍କୃତିକ ଜୀବନର ଏକ ଏକ ସୁନ୍ଦର ପ୍ରତିଛବି । ଓଡ଼ିଆମାନଙ୍କର ସ୍ୱତନ୍ତ୍ର ଭୋଜନ ପ୍ରଣାଳୀ ମଧ୍ୟ କେବଳ ସେହି ମନ୍ଦିରମାନଙ୍କରେହିଁ ଆମେ ଦେଖିବାକୁ ପାଇବା ।"(39) ସେହିପରି ଓଡ଼ିଶାର ବିଭିନ୍ନ ଲୋକନୃତ୍ୟ ତଥା ସାମରିକ ନୃତ୍ୟ, ପାଇକନାଚରେ ମାନସିଂହ ଓଡ଼ିଆ ସଂସ୍କୃତିର ସଂକେତ ଦେଖିପାରିଛନ୍ତି ।

**ରୂପଚର୍ଚ୍ଚା :**

ରୂପଚର୍ଚ୍ଚା ମଧ୍ୟରେ ସଂସ୍କୃତିର ପ୍ରତିଫଳନ ହୋଇଥାଏ । ନାରୀ ବା ନର ନିଜସ୍ୱ ସଂସ୍କୃତି ଅନୁସାରେ ରୂପଚର୍ଚ୍ଚା କରିଥାନ୍ତି । ଉତ୍କଳର ମନ୍ଦିର ଗାତ୍ରରେ, ରୂପଚର୍ଚ୍ଚାରେ ବ୍ୟସ୍ତଥିବା ଦର୍ପଣଧାରୀ ରମଣୀର ମୂର୍ତ୍ତି, ଉତ୍କଳୀୟ ପ୍ରସାଧନ କଳାର ନମୁନା । ଓଡ଼ିଶାର ମଧ୍ୟଯୁଗୀୟ କାବ୍ୟ କବିତାରେ ବେଶବର୍ଣ୍ଣନା ଓ ରୂପଚର୍ଚ୍ଚାର ବ୍ୟାପକ ବର୍ଣ୍ଣନା ମିଳେ । କାବ୍ୟ ନାୟିକାମାନଙ୍କୁ ରୂପଚର୍ଚ୍ଚାରେ ନିମଜ୍ଜନ କରାଇବା ଦିଗରେ ମାନସିଂହ କର୍ପଣ୍ୟ ପ୍ରକାଶ କରି ନାହାନ୍ତି । ରୂପଚର୍ଚ୍ଚା ତଥା ପ୍ରସାଧନ କର୍ମ ନିମନ୍ତେ ତାଙ୍କ କାବ୍ୟର ମାଲୁଣୀ ବେଶ ତତ୍ପର । ତାଙ୍କର ପ୍ରେମିକା ତଥା ମାନସୀ ଜୁଡାରେ କିଆଫୁଲ ଖୋଷି ପ୍ରେମିକକୁ ଅପେକ୍ଷା କରେ । ନାରୀର ଚକ୍ଷୁ ଓ କେଶ ମାନସିଂହଙ୍କୁ ଅଧିକମାତ୍ରାରେ ଆକୃଷ୍ଟ କରିଛି । 'ଧୂପ'ର ଗୁରୁକେଶୀ ବାଳିକା, ହେମପୁଷ୍ପର ଇରାନୀ କିଶୋରୀ'ସମେତ ତାଙ୍କର ସମସ୍ତ ନାରୀ କେଶବତୀ

କବି ମାନସିଂହ ବିଦେଶଯାତ୍ରା କାଳରେ ସେହି ଦେଶବତୀମାନଙ୍କୁ ଅବଲୋକନ କରିବାରି ଯାଉଛନ୍ତି । କେବଳ କେଶ ନୁହେଁ, ସୁନ୍ଦର ସ୍ୱାସ୍ଥ୍ୟ ସହିତ କେଶ ପ୍ରସାଧନହିଁ ମାନସିଂହଙ୍କୁ କରିଛି ରୂପ ପାଗଳ । ତେଲିଙ୍ଗୀ ରମଣୀମାନଙ୍କର ରମଣୀୟ ସ୍ୱାସ୍ଥ୍ୟ, ପୁଷ୍ପମଣ୍ଡିତ କୃଷ୍ଣ କେଶରାଶି, ସିଲୋନୀ ରମଣୀର ପରମ ମଙ୍ଗଳ ସମୃଦ୍ଧ ଚିକୁରର କବରୀ କବି ପ୍ରାଣକୁ ମୁଗ୍ଧ କରିଛି । ମାନସିଂହ କହନ୍ତି—"ଭାରତୀୟ ଶାଢୀ ସିଲୋନୀ ସୁଲୋଚନାମାନଙ୍କର ପୁଞ୍ଜୀଭୂତ ରୂପ ସମ୍ପଦକୁ କିପରି ତରଙ୍ଗାୟିତ ଓ ଲୀଳାୟିତ କରିଛି ମୁଁ ଠାଏ ଠାଏ ଦେଖିଛି । (40) ମାନସିଂହ ମିଶରୀୟ ନାରୀର ମୁଗ୍ଧ ଚକ୍ଷୁ ତଥା କେଶରାଶିକୁ ବୁଭୁକ୍ଷ ନୟନରେ ଅବଲୋକନ କରି କହନ୍ତି:-"କୌଣସି କୌଣସି ମିଶରିଣୀର କେଶଜାଲ କାର୍ପନ ପରି ଓ ଆଖି ଆକାଶପରି ନୀଳ । ମୁଁ ଏ ଯାଏ ମିଶରିଣୀମାନଙ୍କର ଅଙ୍ଗର ମଧୁରତା ଅନ୍ୟତ୍ର ଦେଖିନାହିଁ । କେଶଜାଲ ରୁମାଲରେ ଆଚ୍ଛାଦନ କରି କାର୍ପନ ପରି ସୁସ୍ପୃ କେଣୀକୁ ବକ୍ଷରେ ଦୋଳାୟିତ କରି ଏମାନଙ୍କୁ ଯିବା ଆସିବାର ଦେଖି ଦେଖି ମୁଁ ଆରବ୍ୟ ରଜନୀର ରୂପପୁରୀକୁ ସ୍ମରିଯାଉଥିଲି" । (41)

ମାନସିଂହଙ୍କ କବିମନ ଉତ୍କଳର କୋଣେ କୋଣେ ସେହିପରି ନାରୀ ନେତ୍ର ତଥା କେଶ ଖୋଜି ହତାଶ ହୋଇପଡିଛି । କୋଣାର୍କ ତଥା ଅନ୍ୟ ଦେଶର ନାରୀମାନେ ଅବଗୁଣ୍ଠନବତୀ ଓ ଅସୂର୍ଯ୍ୟମ୍ପଶ୍ୟା । ଉତ୍କଳର ସୁନ୍ଦରୀ ନାରୀମାନେ ରାଜପଥରେ ଗମନ କରନ୍ତି ନାହିଁ । ଗତିରେହିଁ ସୌନ୍ଦର୍ଯ୍ୟ ଫୁଟିଉଠେ । ସମଗ୍ରଜାତିମାନଙ୍କର ସୌନ୍ଦର୍ଯ୍ୟ ମଜାଗତ ।"ଆମ ଦେଶରେ ନଗ୍ନଙ୍କ କଥା ଛାଡିଦିଅ, ନାରୀମାନେବି ରୂପ ସଚେତନ ନୁହନ୍ତି । ରୂପଚର୍ଚ୍ଚା ଯେ ସଂସ୍କୃତିର ଏକ ଅପରିହାର୍ଯ୍ୟ ଅଙ୍ଗ, ତାହାବି ତାଙ୍କର ଅନୁଭବର ବାହାରେ । ଏ ଦେଶରେ ବହୁ ବଡ ବଡ ଲୋକଙ୍କ ଘରକୁ ଯାଅ, ଦେଖିବ ଘରେ ଗୁରିଆଡେ ଧୂଳି ଜମା ହୋଇଛି, ଜିନିଷ ପତ୍ରରେ ସାଜସଜା ନାହିଁ । (42) ରୂପସଜା ମଧ୍ୟରେ ମାନସିଂହ ଓଡିଆ ସଂସ୍କୃତିର ଅବକ୍ଷୟ ଅବସ୍ଥାକୁ ଦେଖିପାରିଛନ୍ତି ।

## ଓଡିଆ ସଂସ୍କୃତିର ଅବକ୍ଷୟ ଓ ଭବିଷ୍ୟତ :

ଓଡିଆ ଏକ କୃଷି ପ୍ରଧାନ ଦେଶ ହେଲେବି, ବୀରତ୍ୱ ଲାଗି ତାହା ଶାସ୍ତ୍ରମାନଙ୍କରେ ପ୍ରସିଦ୍ଧ । ବୀରତ୍ୱ ସହ ତାର ଶାନ୍ତିପୂର୍ଣ୍ଣ ଜୀବନର କୌଣସି ବିରୋଧ ଘଟିନାହିଁ । ଓଡିଆର ବନବିଲ ପ୍ରାନ୍ତର ଯେଉଁଳି ଏ ଜାତିକୁ ମାଟିର କବିତା ଶୁଣାଏ, କଳାକାରର ନିହଣ ମୁନରେ ଜାତିର ସ୍ୱପ୍ନ ସେହିଭଳି ପଥର ବୁକୁରେ ସଂସ୍କୁରିତ ହୁଏ । ମାନସିଂହ ତାଙ୍କର ବହୁ ପ୍ରବନ୍ଧ, କବିତା ତଥା ଜୀବନର ଶେଷ ଅବସ୍ଥାରେ ଲିଖିତ ଇଂରାଜୀ 'ଦି ସାଗା ଅଫ ଦି ଲ୍ୟାଣ୍ଡ ଅଫ ଜଗନ୍ନାଥ'ରେ ଓଡିଆ ସଂସ୍କୃତିର ମହାନତା, ତାର ବୈଶିଷ୍ଟ୍ୟ ଓ ଗୌରବ ସମ୍ପର୍କରେ ଆଲୋକପାତ କରିଛନ୍ତି । ଓଡିଆର ଧର୍ମ ଧାରଣା ଠାରୁ ତାର ସାହିତ୍ୟ ସୃଷ୍ଟି ପର୍ଯ୍ୟନ୍ତ, ତା'ର ପ୍ରାକୃତିକ ପରିବେଶଠାରୁ ଖାଦ୍ୟପେୟ ପର୍ଯ୍ୟନ୍ତ ସବୁ ମଧ୍ୟରେ ସେ ଗୋଟିଏ ସଂସ୍କୃତ ଜାତିର ଏକାଗ୍ର ସାଧନାହିଁ ଲକ୍ଷ୍ୟ କରିଛନ୍ତି । କିନ୍ତୁ ନିଜ ସମୟରେ

ତଥା ଇତିହାସ ପୃଷ୍ଠାରେ ସେ ଯେଉଁ ଓଡିଶାକୁ ଅବଲୋକନ କରିଛନ୍ତି, ତାହାକୁ ସେ କୌଣସି ପ୍ରକାର ଗ୍ରହଣ କରି ପାରି ନାହାନ୍ତି । ସେ ତେଣୁ ଅନୁଭବ କରିଛନ୍ତି ଯେ ସାଂସ୍କୃତିକ ଅବକ୍ଷୟ ଫଳରେ ଏହି ରୁଚିଶୀଳ, ସ୍ୱାସ୍ଥ୍ୟବାନ, କଳାପ୍ରିୟ ଓ ବୀରଜାତି ଆଜି ପରିଣତ ହୋଇଛି ଦରିଦ୍ର, ରୁଚିହୀନ, ଭୀରୁ ଓ ମୂର୍ଖ ଜାତିରେ । ଯେଉଁ ଜାତି ନିଜର ବିଶିଷ୍ଟତା ପାଇଁ ଗର୍ବିତ ଥିଲା, ତାଙ୍କ ଦୃଷ୍ଟିରେ ସେହି ଅବକ୍ଷୟପାଇଁ ସେ ଅନ୍ୟକୁ ଅନୁକରଣ କରିବାରେ ବ୍ୟସ୍ତ । ତା'ର ଦେବତା ଆଜି ତା'ଠାରୁ ବିଚ୍ଛିନ୍ନ, ତାର ଆଧ୍ୟାତ୍ମିକ ଜିଜ୍ଞାସା ମଧ୍ୟ ଅନୁକରଣ ସର୍ବସ୍ୱ । ଜୀବନର ଶେଷ ଅବସ୍ଥାରେ ଲିଖିତ 'ଓଡିଆମାନେ ଦରିଦ୍ର ଓ ପଛୁଆ କାହିଁକି ?' ଏକ ଦୀର୍ଘ ପ୍ରବନ୍ଧରେ ସେ ଏ ସବୁର କାରଣ ଖୋଜିଛନ୍ତି ଏବଂ ମନକୁ ପାଇଲାଭଳି କେତେକ କାରଣ ମଧ୍ୟ ଉପସ୍ଥାପିତ କରିଛନ୍ତି । ଓଡିଆର ଜାତୀୟ ଜୀବନର ସର୍ବ ସ୍ତରରେ ଅତୀତରେ ଯେଉଁ ସଂହତି ଥିଲା, ସେହି ସଂହତିର ବିନାଶ ଫଳରେ ହିଁ ଓଡିଆ ସାଂସ୍କୃତିକ ଜୀବନର ବିନାଶ ସମ୍ଭବପର ହୋଇପାରିଛି ।

ଓଡିଆ ସଂସ୍କୃତିର କେନ୍ଦ୍ର ହେଉଛି ଜଗନ୍ନାଥ ମନ୍ଦିର । ଜଗନ୍ନାଥ ଓଡିଆ ଜାତିର ଆଧ୍ୟାତ୍ମିକ ତୃଷ୍ଣାକୁ କେବଳ ନିବାରିତ କରୁ ନଥିଲେ, ତାର ଖାଦ୍ୟ ପେୟ, ପ୍ରସାଧନ ଓ ସୌନ୍ଦର୍ଯ୍ୟ ଦୃଷ୍ଟିକୁ ବି ନିୟନ୍ତ୍ରିତ କରୁଥିଲେ । ଜଗନ୍ନାଥ ବିଶ୍ୱର ଏକ ଅନୁପମ ଦେବତା, ଯାହାଙ୍କ ନିକଟରେ ବହୁ ସଂସ୍କୃତି ଓ ବହୁ ମତାଦର୍ଶର ଏକତ୍ର ମିଳନ ଘଟିଛି । ସମୁଦ୍ର ମନ୍ଥନ ସମସ୍ତ ବିଷକୁ ନିଶ୍ଚିହ୍ନ କରି ନୀଳକଣ୍ଠ ଧାରଣ କଲାପରି, ଜଗନ୍ନାଥ ବିଶ୍ୱର ସମସ୍ତ ବୈଶିଷ୍ଟ୍ୟକୁ ଆତ୍ମସ୍ଥ କରି ନୀଳକନ୍ଦରରେ ହିଁ ଅବସ୍ଥାନ କରିଛନ୍ତି । ହିନ୍ଦୁ ଦେବତାମାନଙ୍କ ମଧ୍ୟରେ ଜଗନ୍ନାଥ ବୋଧହୁଏ ଏକମାତ୍ର ଦେବତା ଯେଉଁଠି ବର୍ଣ୍ଣାଶ୍ରମ ଧର୍ମ ଦୁର୍ବଳ, ଆଚଣ୍ଡାଳ ବ୍ରାହ୍ମଣ ଏକପାତ୍ରରେ ଭୋଜନ କରିପାରନ୍ତି । ସେତିକି କେବଳ ନୁହେଁ, ଜଗନ୍ନାଥ ଜଣେ ଗୃହସ୍ଥ ମଧ୍ୟ । ମାଉଉଉଣୀ ସ୍ତ୍ରୀକୁ ନେଇ ତାଙ୍କ ପରିବାର ଗଠିତ । ସେ ପରିବାର ଓଡିଆ ଯୌଥ ପରିବାରର ଏକ ଚମତ୍କାର ଚିତ୍ର । କିନ୍ତୁ ଓଡିଆ ଜାତି ଜଗନ୍ନାଥ ସାଂସ୍କୃତିକ ଭୂମିକାକୁ ବିସ୍ମୃତ ହୋଇ ଆଜି ତାର ସାମାଜିକ ଅକ୍ଷମତାର ବିମୋଚନ ପାଇଁ ପୂଜାକରି ବସିଛି ।

ମାନସିଂହଙ୍କ ମତରେ ଓଡିଆ ଜାତିକୁ ଉନ୍ନତ କରିବାକୁ ହେବେ, ତାର ସେହି ଅତୀତ ଜୀବନ ଚର୍ଯ୍ୟାକୁ ନୂତନ ଭାବଭୂମିରେ ଅବସ୍ଥାପିତ କରିବାକୁ ହେବ । କୌଣସି ଜାତି ଅନ୍ୟର ବେଶଭୂଷା, ଖାଦ୍ୟପେୟ ତଥା ଅନ୍ୟାନ୍ୟ ସାମାଜିକ ଓ ସାଂସ୍କୃତିକ ଆଚାର ଅନୁଷ୍ଠାନକୁ ଅନୁକରଣକରି ବଡ ହୁଏନାହିଁ, ନିଜର ସଂସ୍କୃତିକୁ ସଜୀବରଖି, ସେ ଯଦି ଆଧୁନିକ ଯୁଗ ସାଙ୍ଗରେ ପାଦମିଳାଇ ଚାଲିପାରେ ତେବେ ତାର ବିକାଶ ସମ୍ଭବ । ତାମିଲମାନେ ରାମାନୁଜନ୍, ରମଣ ଓ ଚନ୍ଦ୍ରଶେଖରଙ୍କ ଭଳି ବୈଜ୍ଞାନିକ ରାଧାକୃଷ୍ଣନ୍, ମହାଦେବନ୍‌ଙ୍କ ଭଳି ଦାର୍ଶନିକ ସୃଷ୍ଟି କରିଛନ୍ତି ଆପଣାର ଚଳଣିକୁ ପରିତ୍ୟାଗ କରି ନୁହେଁ, ଚଳଣିର ଚଉହଦୀ ଭିତରେ ରହି । ବଙ୍ଗୀୟମାନଙ୍କ କ୍ଷେତ୍ରରେ ଏ କଥାବି ଆହୁରି ଅଧିକ ପ୍ରଯୋଜ୍ୟ, ରବୀନ୍ଦ୍ରନାଥଙ୍କଠାରୁ ସତ୍ୟେନ୍ ବସୁଙ୍କ ପର୍ଯ୍ୟନ୍ତ ସମସ୍ତେ ବଙ୍ଗାଳୀ ବେଶଭୂଷା ଖାଦ୍ୟକୁ ପରିତ୍ୟାଗ କରି ନାହାନ୍ତି । ତା ଭିତରେ ରହିହିଁ ବିଶ୍ୱବିଖ୍ୟାତ ହୋଇଛନ୍ତି । ପରମୁଖାପେକ୍ଷିତା ଓଡିଆ ଜାତିର ଅଧଃପତନର ପ୍ରଥମ ଓ ପ୍ରଧାନ କାରଣ ।

ଭାରତୀୟ ସଂସ୍କୃତି — ମାନସିଂହ ଓଡିଆ ସଂସ୍କୃତିର ସମର୍ଥକ ଗ୍ରାହକ ହେବେ ହେଁ, ତାଙ୍କର ବିଚାରଧାରା ଭାରତୀୟ ସଂସ୍କୃତିର ପରିପନ୍ଥୀ ନଥିଲା । ଭାରତୀୟ ସଂସ୍କୃତି ବିଭିନ୍ନ ଆଞ୍ଚଳିକ ସଂସ୍କୃତିର ସମାହାର ବା ଏକତ୍ରିତ ରୂପ । ଆଞ୍ଚଳିକ ସଂସ୍କୃତି ବିକଳାଙ୍ଗ ହେଲେ ଭାରତୀୟ ସଂସ୍କୃତିର ମୌଳିକତା ରହିବା ଅସମ୍ଭବ । ତଥାପି ଭାରତୀୟ ସଂସ୍କୃତିର ସାର୍ବ-ଜନୀନ ଆବେଦନ ବିଶ୍ୱର ବିଭିନ୍ନ ଚିନ୍ତାନାୟକଙ୍କୁ ଆକୃଷ୍ଟ କଲାପରି, ମାନସିଂହଙ୍କ ସଂସ୍କୃତି ସଚେତନ ମନକୁ ଆକୃଷ୍ଟ କରିଥିଲା । ସଂସ୍କୃତି ମଣିଷ ସହିତ ଗତିଗତି ସ୍ଥଳେ, ସଂସ୍କୃତି ସମ୍ପର୍କରେ ସଚେତନ ନହେଲେ, ସେଥିରେ ବିକାରଭାବ ପ୍ରବେଶ କରେ । "ଭଉରୋପର ପ୍ରତ୍ୟେକ ଜାତି ତାଙ୍କ ସ୍କୁଲ କଲେଜ ଭିତରଦେଇ ତାଙ୍କର ଏଇ(ସାଂସ୍କୃତିକ) ଆଦର୍ଶ ଟିକୁ ଯତ୍ନର ସହିତ ବଞ୍ଚାଇ ରଖନ୍ତି; କିନ୍ତୁ ଆମେ ଆମ ସଂସ୍କୃତି ବିଷୟରେ ପାଟିକରି ଆକାଶ ଫଟାଉ ସତ, ଆମେ ଏତେ ହତଭାଗ୍ୟ ଯେ, ଆମର ବିଦ୍ୟାଳୟମାନଙ୍କରେ ଆମ ସଂସ୍କୃତିର ଛୁଦ୍ରପ୍ରକାଶ ମଧ୍ୟ ନାହିଁ ।"(43)

ପ୍ରାଚୀନ ଭାରତର ଲୋକ ସମାଜରେ ସତ୍ୟପ୍ରତି ଗଭୀର ଅନୁରାଗ ଥିଲା, ସେହି ଅନୁରାଗ ଫଳରେ ଭାରତୀୟ ମସ୍ତିଷ୍କରୁ ଜଗତର ଶ୍ରେଷ୍ଠ ଦର୍ଶନ ଜାତ ହୋଇଅଛି । ସେହି ସତ୍ୟପ୍ରୀତି ଓ ନୈତିକତାହିଁ ଭାରତୀୟ ସଂସ୍କୃତିର ମହନୀୟ ଆଦର୍ଶ । ମାନସିଂହଙ୍କ ଭାଷାରେ:—"ରାବଣକୁ ମାରି ରାମଚନ୍ଦ୍ର ବୀର ହୋଇନାହାନ୍ତି, ସତ୍ୟ ଓ ଧର୍ମର ଜୟ ଓ ନାରୀର ସମ୍ମାନ ରକ୍ଷାପାଇଁ, ସେହି ରାଜକୁମାର ସାରାଜୀବନ ଯେଉଁ ଦୁଃଖ କ୍ଲେଶ ଭୋଗକଲେ, ତାହାହିଁ ରାମାୟଣ, ସେହି ଆଦର୍ଶହିଁ ତାଙ୍କ ବୀରତ୍ୱର ଶ୍ରେଷ୍ଠ ଉପାଦାନ ।"(44)

ପୁରୋହିତତନ୍ତ୍ର ଭାରତୀୟ ସାଂସ୍କୃତିକ ଜୀବନଧାରା ର ଭୂମି । ପୁରୋହିତଗଣର ଅତ୍ୟାଚାରରେ ଧର୍ମଭୟ ସମାଜ ମଧ୍ୟରେ ପ୍ରବେଶ କରିଥିଲା ବୋଲି ମାନସିଂହ 'ବାରବାଟୀ'ନାଟକର ଜଣେ ମୌଲବୀ ମୁଖରେ ପ୍ରକାଶ କରିଛନ୍ତି । ହିନ୍ଦୁ ଚଳଣି ମଧ୍ୟରେ ଥିବା ସତୀଦାହ, ଗଛମୂଳରେ ପଥରମୂର୍ତ୍ତି ପୂଜା, ସେ ପଥରରେ ସିନ୍ଦୁର ଲଗାଇ ତା ସମ୍ମୁଖରେ ପଶୁବଳି, ଧର୍ମଶାସ୍ତ୍ରର ଏକଗୁଟିଆ ଭାବ ତଥା ଅସ୍ପୃଶ୍ୟତା ଆଦି, ଭାରତୀୟ ସମାଜ ଜୀବନକୁ ପଙ୍ଗୁ କରି ଦେଇଛନ୍ତି । ଭାରତୀୟ ଜୀବନର ଅଧଃପତନ ପାଇଁ ଏହି ପୁରୋହିତ ତନ୍ତ୍ର ଦାୟୀ । ।

ଭାରତୀୟ ସଂସ୍କୃତି କହିଲେ ମୂଳତଃ ହିନ୍ଦୁ ସଂସ୍କୃତିକୁ ହିଁ ବୁଝାଏ । ମାତ୍ର ବର୍ତ୍ତମାନର ସାମ୍ପ୍ରଦାୟିକତା ଦୋଷରେ ସଂକୀର୍ଣ୍ଣ ରୂପ ହିନ୍ଦୁର ଆଦର୍ଶ ନୁହେଁ । ହିନ୍ଦୁ ସଂସ୍କୃତିର ଅସଲରୂପ ହେଉଛି ମଣିଷର ସଂସ୍କୃତି । ପଣ୍ଡିତ ଗୋପବନ୍ଧୁଙ୍କ ଭାଷାରେ:— "ନିଜ ସୁଖପାଇଁ ଜାତନୁହେଁ ହିନ୍ଦୁ, ବିଶ୍ୱହିତେ ହିନ୍ଦୁ ପ୍ରତିବନ୍ଧ ବିନ୍ଦୁ ।"(45) ନାନାଗ୍ରନ୍ଥ ତଥା ନାନା ମତ ମଧ୍ୟରେ ଋଦ୍ଧି ହୋଇଥିବା ହିନ୍ଦୁ ସଂସ୍କୃତିକୁ ମାନସିଂହ ଏକ ବିରାଟ ଅରଣ୍ୟ ଭାବରେ ବର୍ଣ୍ଣନା କରିଛନ୍ତି । ତା ଭିତରେ ସେଠୁ ସହଜରେ ଲୋକେ ବାଟ ପାଇବା କଷ୍ଟ ।" ଗୀତା କିନ୍ତୁ ମାତ୍ର ଅଠରଟି ବୃକ୍ଷର ଏକ ଛୋଟ ଉଦ୍ୟାନ ଦେଇ ସେହି ମହାରଣ୍ୟର ମହିମା ଆମ ଆଗେ ଯଥାର୍ଥରେ ଥୋଇ ପାରିଛନ୍ତି । ଆମେ ସେଥିରେ ଋଗ୍‌ବେଦର ପ୍ରକୃତି ପୂଜା ଠାରୁ ବୌଦ୍ଧ—ବେଦ—ବିରୋଧ ଓ ନୈରାଶ୍ୟ ପର୍ଯ୍ୟନ୍ତ ଏବଂ ଏପରିକି ଚୈତନ୍ୟ

ଭକ୍ତମାନଙ୍କର କୀର୍ତ୍ତନ ସର୍ବସ୍ୱତା ପର୍ଯ୍ୟନ୍ତ (ସତତଂ କୀର୍ତ୍ତୟନ୍ତୋମାଂ, ୨-14) ଭାରତବର୍ଷର ସକଳ ଧର୍ମୀୟ ଭାବ-ଭାବନାର ସାକ୍ଷାତ ପାଉଛୁ କେବଳ ନୁହେଁ, ସେମାନଙ୍କର ଆପାତ-ବିରୋଧ ତଳେ ଗଭୀର ତାତ୍ତ୍ୱିକ ଐକ୍ୟକୁ ଗ୍ରହଣ କରି ନେବାରେ ଆମର ଯେ କଷ୍ଟ ହେଉନାହିଁ, ତାହାହିଁ ଗୀତାର ପରମତମ ମାଧୁର୍ଯ୍ୟ ।" (46)

ସମୟର କଷାଘାତରେ ବିଭିନ୍ନ ସଭ୍ୟତାର ସଂସ୍ପର୍ଶରେ ଆସି ଭାରତୀୟ ଜନ ଜୀବନରେ ଅନେକ ବ୍ୟତିକ୍ରମ ଦେଖା ଦେଇଥିଲେ ମଧ୍ୟ, ଭାରତୀୟ ସଂସ୍କୃତି ଯେ ମହାନ୍, ଏକଥା ମାନସିଂହ ଅନୁଭବ କରିଥିଲେ । ଭାରତୀୟ ଚେତନାରେ ପାର୍ଥିବ ଜୀବନ ଓ ଅଧ୍ୟାତ୍ମିକ ଜୀବନ ମଧ୍ୟରେ ଏକ ଯୋଗସୂତ୍ର ରହିଥିଲା । ଆଧ୍ୟାତ୍ମିକ ମନୋବୃତ୍ତି ପାର୍ଥିବ ଜୀବନକୁ ନିୟନ୍ତ୍ରିତ କରୁଥିଲା । ବିଶ୍ୱର ମନ ଜଗତରେ ଯାହା ଅସମ୍ଭବ ବୋଲି ଜ୍ଞାତ ହେଉଥିଲା ଭାରତୀୟ ସଂସ୍କୃତିର ପରମ ପୂଜାରୀ ବାପୁଜୀ ତାକୁ ଦୃଷ୍ଟାନ୍ତ ଭାବରେ ଦେଖାଇ ଦେଲେ । ମାନସିଂହ କହନ୍ତି:— "ଭାରତୀୟ ଚିନ୍ତାଧାରାରେ ସମଗ୍ର ପାର୍ଥିବ ଜୀବନ ଥିଲା ଏକ ଅଖଣ୍ଡ ସତ୍ତା । ଏହାହିଁ ଭାରତୀୟ ସଭ୍ୟତା ବା ସଂସ୍କୃତିର ପରମ ବୈଶିଷ୍ଟ୍ୟ ଏବଂ ଗାନ୍ଧୀଙ୍କ ଜୀବନହିଁ ଏହି ଭାରତୀୟ ବୈଶିଷ୍ଟ୍ୟର ପରମ ଆଧୁନିକତମ ପ୍ରତୀକ । ସାରା ପୃଥିବୀରେ ଏବଂ ମନୁଷ୍ୟର ଦୀର୍ଘ ଇତିହାସ ଧରି ଧର୍ମ ଓ ରାଜନୀତିକୁ ସଂପୂର୍ଣ୍ଣ ଅଲଗା ଅଲଗା ବସ୍ତୁ କରି ଧରା ଯାଉଥିଲା, ଅର୍ଥାତ ଧରି ନିଆଯାଉଥିଲା ଯେ ହିଂସା ବା ମିଥ୍ୟା ମନ୍ଦିରର ପାପ ହୋଇପାରେ, କିନ୍ତୁ ରାଜ୍ୟ ଶାସନ କ୍ଷେତ୍ରରେ ନୁହେଁ । ସମଗ୍ର ମାନବେତିହାସରେ ଗାନ୍ଧିଜୀ ଧର୍ମ ଓ ରାଜନୀତିକୁ ନିଜ ଜୀବନରେ ଏକାକାର କରି, ଏହି ଭ୍ରାନ୍ତ ଧାରଣାକୁ ଏକ ଭ୍ରାନ୍ତିହୀନ, ଯନ୍ତ୍ର ଦାନବର ଯୁଗରେ ମଧ୍ୟ ସମୂଳେ ଅପ୍ରମାଣିତ କଲେ ।" (47) ଗାନ୍ଧୀଙ୍କ ଧର୍ମ ଚେତନା କେବଳ ହିନ୍ଦୁ ସଂସ୍କୃତି ବା ସାହିତ୍ୟରେ ସୀମାବଦ୍ଧ ନଥିଲା । ବୌଦ୍ଧ, ଖ୍ରୀଷ୍ଟିଆନ, ମୁସଲମାନ, ସବୁ ସଂସ୍କୃତିରୁ ଯେ ତାଙ୍କର ବୁଦ୍ଧି ଓ ଆତ୍ମାପାଇଁ ଖାଦ୍ୟ ସଂଗ୍ରହ କରିଥିଲେ, ତାହାରେ ସେ ସବୁ ପ୍ରକାଶ ପାଉଥିଲା । ତାଙ୍କର କର୍ତ୍ତବ୍ୟ ବୋଧ ଥିଲା ବିସ୍ମୟକର । ତାଙ୍କ ଚିନ୍ତା ଓ କର୍ମ ଭିତରେ ଥିଲା ଏକ ମହନୀୟ ଅଭିନ୍ନତା ଯାହାକି ଏକାନ୍ତରେ ଭାରତୀୟ ସଂସ୍କୃତି ।

ମାନସିଂହଙ୍କ ଶେଷ ଜୀବନର ଧର୍ମବିଗ୍ରହ, ସାଂସ୍କୃତିକ ବିଗ୍ରହରେ ପରିଣତ ହୋଇଥିଲା । ମାନସିଂହ ଅନୁଭବ କରିଥିଲେ ଯେ ଭାରତୀୟ ସଂସ୍କୃତିର ବାଣୀ ହିଁ ସାରା ବସୁଧାକୁ ଗୋଟିଏ ପରିବାର କରି ପାରିବ ପୁନଶ୍ଚ ସେ ଅନୁଭବ କରୁଥିଲେ ଯେ ଭାରତୀୟ ଜନଗଣ ମଧ୍ୟରେ କେତେକ ଅପସଂସ୍କୃତି ପଶି ଏହାର ମହାନତାକୁ ବିକୃତ କରି ଦେଉଛି । ପଲ୍ଲୀ ଜୀବନରେ ଭାରତୀୟ ସଂସ୍କୃତିର ଆତ୍ମା ବିଦ୍ୟମାନ, ସହରୀ ସଭ୍ୟତା କ୍ରମେ ଏହାକୁ ବିକଳାଙ୍ଗ କରୁଅଛି । ଇଂରେଜମାନେ ଦୁଇଶହ ବର୍ଷକାଳ ଶାସନ କରିମଧ୍ୟ, ଏ ଜାତିର ମର୍ମକୁ ଭେଦି ପାରିଲେ ନାହିଁ ନିର୍ବିଘ୍ନରେ ଭାରତୀୟମାନଙ୍କ ଉପରେ ଶିକ୍ଷା, ଶାସନ, ବିଗ୍ରହ, ଗ୍ରାମ-ତନ୍ତ୍ର ଉପରେ ପ୍ରୟୋଗ କରି ଗ୍ରାମୀୟ ସଂସ୍କୃତିର ଧ୍ୱଂସ ପାଇଁ ଚେଷ୍ଟାକରି ମଧ୍ୟ ଏହାକୁ ପରିବର୍ତ୍ତନ କରିପାରି ନଥିଲେ । ଏ ସଂସ୍କୃତି ବହୁ ପୁରାତନ ତଥା ଦୃଢ଼ ।

ମାନବ ସଭ୍ୟତାର ପ୍ରାଣ ଯାହା ଯୋଗେ, ସବୁ ଏଠି ଅଛି, ବଞ୍ଚିବାର ସଂସ୍କାର ଜୀବନ, ନୃତ୍ୟ, ଗୀତ, ଚିତ୍ର, ଶିଳ୍ପ, କବିତା ତଥା ସାହିତ୍ୟ । ଘୋର ଲଜ୍ଜାର କଥା ବିଦେଶୀ ସଭ୍ୟତାର ପ୍ରଭାବରେ ଲୋକମାନେ ଭାରତୀୟ ସଂସ୍କୃତିକୁ ଅବହେଳା କରୁଛନ୍ତି । ମାନସିଂହ 'କମଳାୟନ' କାବ୍ୟରେ ଦୃଢ ଭାବରେ ସେ ସମ୍ପର୍କରେ ମତ ପ୍ରଦାନ କରିଛନ୍ତି ।(48) "ଶାସନଚକ୍ର' ଏକାଙ୍କିକାରେ ମଧ୍ୟ ଅନୁରୂପ ଭାବରେ ଭାରତୀୟ ସଂସ୍କୃତିର ମହନୀୟତା ସମ୍ପର୍କରେ ଆଲୋଚନା କରିଛନ୍ତି । ଭାରତୀୟ ସଂସ୍କୃତିର ଆତ୍ମା ଯେପରି ଭାରତୀୟ ପଲ୍ଲୀରେ ବିଦ୍ୟମାନ, ଆବିମତମ ଭାଷା ସଂସ୍କୃତରେ ମଧ୍ୟ ସେହିପରି ଲୁଚି ରହିଛି ଭାରତୀୟ ଜୀବନ ଚର୍ଯାର ପ୍ରାଣ ସଂକେତ । ମାନସିଂହ କହନ୍ତି— ସଂସ୍କୃତ ମୋ ନିକଟରେ ଅନ୍ୟ ସହସ୍ର ଭାଷାମାନଙ୍କ ପରି ଗୋଟିଏ ଭାଷା ମାତ୍ର ନୁହେଁ । ସଂସ୍କୃତ ମୋ ଜାତିର, ସାର୍ଥ ହଜାର ବର୍ଷର ସଭ୍ୟତା ଓ ସଂସ୍କୃତିର ଜୀବନ ପ୍ରତୀକ ।

ଇଉରୋପୀୟ ସଂସ୍କୃତି :

ମାନସିଂହ ଇଂଲଣ୍ଡ ଅବସ୍ଥାନ କାଳରେ ପାଶ୍ଚାତ୍ୟ ଜୀବନଧାରା ଅନୁଶୀଳନ କରି ଭାରତୀୟ ସଂସ୍କୃତିର କେତେକଧାରା ପ୍ରତି ବିତସ୍ପୃହ ହେବା ସଂଗେ ସଂଗେ ପାଶ୍ଚାତ୍ୟ ସଂସ୍କୃତିର କେତେକ ଭଲ ଗୁଣକୁ ଆଦର କରିଛନ୍ତି । ମହାତ୍ମା ଗାନ୍ଧି, ରବୀନ୍ଦ୍ରନାଥ ତଥା ଆଧୁନିକ ଭାରତରେ ଅନ୍ୟ ନିର୍ମାତାଗଣ ଆତ୍ମାରେ ଭାରତୀୟ ହେଲେ ହେଁ, ପାଶ୍ଚାତ୍ୟ ସଂସ୍କୃତିର କେତେକ ମହତ ଗୁଣକୁ ଜୀବନରେ ପ୍ରୟୋଗ କରିଥିଲେ । ମାନସିଂହ ମଧ୍ୟ ଅନୁରୂପ ଭାବରେ ଭାରତୀୟ ସଂସ୍କୃତି ତଥା ଉତ୍କଳୀୟ ସଂସ୍କୃତିର ବ୍ୟାଖ୍ୟାକାର ହେଲେ ମଧ୍ୟ, ଗୃହିଚାଳଣିରେ ବେଶପୋଷାକରେ ପାଶ୍ଚାତ୍ୟ ଭାବଧାରା ଦ୍ୱାରା ଅନୁପ୍ରାଣିତ ହୋଇଥିଲେ ।

ଭାରତୀୟ ଖାଦ୍ୟ ପ୍ରସ୍ତୁତି ପ୍ରଣାଳୀରେ ଗୁଡ଼ରୀ ରହିଛି, ତାହା ବିଲାତ ଲୋକଙ୍କ ପାଇଁ ମଧ୍ୟ ରୁଚିକର । ଆମର ପିଠାପଣା, ଅନ୍ୟାନ୍ୟ ଖାଦ୍ୟ ପ୍ରସ୍ତୁତି ସହିତ ବିଲାତର ତୁଳନା ହୋଇ ନପାରେ କିନ୍ତୁ ମସ୍ତିଷ୍କର ଅର୍ଗ୍ରଗତି ତଥା ଜୀବନର ଅନ୍ୟାନ୍ୟ ମହତ କର୍ମ ପାଇଁ ଏ ପ୍ରକାର ରନ୍ଧନ ପ୍ରଣାଳୀ ଉପଯୋଗୀ ନୁହେଁ । ଖାଦ୍ୟରେ ବିଳାସ ବ୍ୟସନତା ପ୍ରାଚୀନ ଗ୍ରୀସର ଧ୍ୱଂସର କାରଣ ହେବାପରି, ଆମର ଆର୍ଥନୀତିକ ଦୁର୍ବଳତା ପାଇଁ ଏ ପ୍ରକାର ଖାଦ୍ୟ ପଦ୍ଧତି ହିଁ ଦାୟୀ । ମାନସିଂହଙ୍କ ଭାଷାରେ:—" ଆମର ରନ୍ଧନ ପ୍ରଣାଳୀ ଅତ୍ୟନ୍ତ ସ୍ୱାଦକର ଓ ସୁକୁମାର ସତ, କିନ୍ତୁ ପ୍ରସ୍ତୁତ କରିବାରେ କୁଳବଧୂର ଜୀବନ ନିଏ ଓ ଭୋଜ ଦେଖାଇ ପୁରୁଷକୁ ପେଟୁ ଓ ଅଳସୁଆ କରାଏ । ସିଧା ସିଧା ଖାଦ୍ୟ ଖାଇ ଏମାନେ(ବିଲାତଲୋକେ) କାମକୁ ଯିବେ । ଖରାବେଳେ ଶୋଇବା କ'ଣ ଏମାନେ ଜାଣନ୍ତି ନାହିଁ । ଆମରତ ଏଣେ ଭାତ ବଢା ହେଲାବେଳକୁ ତେଣେ ଶେଯ ପରା ହେବା କଥା । ଜାତି ଏଥିରେ ବଢିବ କିପରି କହ ? "(49)

॥ ମାନସିଂହଙ୍କ ବିଶ୍ୱଧାରା ॥

ମାନସିଂହ 'ପଶ୍ଚିମ ପଥିକ'ରେ ଇଂରେଜ ଜାତିର କେତେକ ବିଶିଷ୍ଟ ଗୁଣକୁ ଉଲ୍ଲେଖ କରିଛନ୍ତି, ଯାହା ଭାରତୀୟ ମାନଙ୍କ ପାଇଁ ବିଶେଷ ଭାବରେ ଆବଶ୍ୟକ । ଇଂରେଜ ଜାତି ବ୍ୟକ୍ତି ସ୍ୱାଧୀନତା ଓ ବାଣୀ ସ୍ୱାଧୀନତା ପାଇଁ, ତାର ସମଗ୍ର ଇତିହାସକୁ ରକ୍ତରେ ରଞ୍ଜିତ କରି ଆସିଛି । ବାଣିଜ୍ୟ ପାଇଁ ଇଂରେଜ ଅର୍ଦ୍ଧେକ ଧରଣୀକୁ ଅଧିକାର କରିଥିଲେ ହେଁ କଠିନ ପରିଶ୍ରମ ଓ ମାନବତାବୋଧ ପାଇଁ ଇଂରେଜ ବିଶ୍ୱରେ ଅଗ୍ରଗତି କରିପାରିଥିଲା । ଇଂରେଜର ବଡଗୁଣ ହେଉଛି ମଜ୍ଜାଗତ ଦେଶାତ୍ମବୋଧ । ସେମାନଙ୍କ ଚରିତ୍ରର ଦ୍ୱିତୀୟ ବୈଶିଷ୍ଟ୍ୟ ହେଲା, ସ୍ୱାବଲମ୍ବନ, କର୍ତ୍ତବ୍ୟ ପରାୟଣତା, ସାଧାରଣ ଇଂରେଜ ଭାବପ୍ରବଣ ନୁହେଁ । ସେ ଉନ୍ମାଦନାକୁ ପସନ୍ଦ କରେନା । ଯାହା ସେ କରେ ଭାବିଚିନ୍ତି କରେ । ଭଦ୍ରତା ଓ ଭଦ୍ର ବ୍ୟବହାର ଇଂରେଜ ଜାତିର ଆଉ ଏକ ମଧୁର ବୈଶିଷ୍ଟ୍ୟ । ଆମ ଦେଶର ଆଦର୍ଶ ଯେପରି ନିରାସକ୍ତି; ସେହିପରି ଇଂରେଜର ଶ୍ରେଷ୍ଠ ଜୀବନର ଆଦର୍ଶ ହେଲା, ଜେଣ୍ଟଲମ୍ୟାନ ହେବା । ଜେଣ୍ଟଲମ୍ୟାନ ଆଦର୍ଶର ମୂଳଭାବ ହେଲା କାହାରି ମନରେ କଷ୍ଟ ନ ଦେବା । ଖେଳପଡିଆରେ ମଧ୍ୟ ଇଂରେଜର ଶୃଙ୍ଖଳା ଲକ୍ଷ୍ୟ କରିବାର କଥା । ଦ୍ୱନ୍ଦ୍ୱ ମୁହଁରେ ଇଂରେଜ ଜେତା ଓ ବିଜେତା ସସ୍ମିତ ବଦନରେ ପରସ୍ପର କର ମର୍ଦ୍ଦନ କରି ଘରକୁ ଫେରି ଆସନ୍ତି ଅଥଚ ଆମ ଭାରତବର୍ଷରେ ଫୁଟବଲ ମ୍ୟାଚପରି ଏବପରି ବିନୋଦନକୁ ମୁଣ୍ଡ ଫଟାଫଟି ଆରମ୍ଭ ହୁଏ । ଇଂରେଜ ଶତ୍ରୁକୁ ମଧ୍ୟ ହସିକରି କଥାକହେ ।

ମାନସିଂହ ଇଂରେଜ ଜାତିକୁ ଖୁବ୍ ଉଚ୍ଚ ଆସନ ଦେଲେ ମଧ୍ୟ ଇଉରୋପୀୟ ସଭ୍ୟତାକୁ ସ୍ମୃତି ସଭ୍ୟତା, କୁତ୍ସିତ ସଭ୍ୟତା ଏବଂ ଏହା ଆଧୁନିକ ବିଜ୍ଞାନ ଦ୍ୱାରା ମାନବ ସଭ୍ୟତାକୁ ନଷ୍ଟ କରୁଛି ବୋଲି ମନେ କରନ୍ତି ।

## ଶେଷକଥା :

ପ୍ରଥମରୁ କୁହାଯାଇଛି, ମାନସିଂହ ଶିକ୍ଷିତ ଆଧୁନିକ ମଣିଷଭଳି ସହରରେ ତାଙ୍କ ଜୀବନର ଅଧିକାଂଶ ସମୟ କାଟିଛନ୍ତି, କୋଠାରେ ରହିଛନ୍ତି, ସରକାରୀ ଚାକିରୀ କରିଛନ୍ତି ଓ ଜୀବନରେ ନାନା ପ୍ରଗତିର ଆଶା ବି କରିଛନ୍ତି । ନନ୍ଦଳା ଗ୍ରାମର ମାୟାଧର, ଓଡିଶାର ବିଶିଷ୍ଟ ଶିକ୍ଷାବିତ୍ ଓ କବି ସାହିତ୍ୟିକ ମାୟାଧର ମାନସିଂହରେ ପରିଣତ ହୋଇଛନ୍ତି । ଜୀବନର ଏହି ବିକାଶ ତାଙ୍କ ସାଂସ୍କୃତିକ ଚେତନାର ବିକାଶ ପାଇଁ ପଥ ଦେଖାଇନାହିଁ । ସଂସ୍କୃତି କ୍ଷେତ୍ରରେ ସେ ସବୁବେଳେ ପଛକୁ ଚାହିଁଛନ୍ତି, ନିଜର ଚେର ଖୋଜିଛନ୍ତି ଓ ମନେ ମନେ ତାହାର ଶକ୍ତି ପରୀକ୍ଷା କରି, ତାହା ଦୃଢ ବୋଲି ଧରି ନେଇଛନ୍ତି । କିନ୍ତୁ ଏଇ ସନ୍ଧାନ ଯେତେବେଳେ କଳ୍ପନାରେ ବା ଭାବଲୋକରେ, ସେତେ ପରିମାଣରେ ଇତିହାସ ଭିତର ଦେଇ ନୁହେଁ । ସେ ଇତିହାସକୁ ଆପଣା ମନର ଚେହେରା ଅନୁସାରେ ଦେଖିଛନ୍ତି । ଓଡିଆ ଜାତି ବୀର ଜାତି, ଏହା ସ୍ୱୀକାର କଲାପରେ ଆମକୁ ମାନିବାକୁ ପଡିବ ଯେ ଏହା ଏକ ନୃଶଂସ ଜାତି । ବୀରତ୍ୱ ସହ ଯୁଦ୍ଧ, ଦିଗ୍‌ବିଜୟ, ଅନ୍ୟର ସ୍ୱାଧୀନତା ଅପହରଣ, ଅତୀତରେ ଘନିଷ୍ଠ ଭାବେ ଜଡିତ ଥିଲା ଏବେ ମଧ୍ୟ

ଜଡିତ । ତାହା ନୃଶଂସତା ଓ ଅମାନବିକତାର ଅପରନାମ ନୁହେଁକି ? ସାମନ୍ତ ଅର୍ଥନୀତିରେ ମଣିଷର ବିକାଶ ସୀମାବଦ୍ଧ, କିନ୍ତୁ ସାମନ୍ତମାନଙ୍କର ବ୍ୟକ୍ତିଗତ ଚରିତ୍ର ଅନୁସାରେ ସାଧାରଣ ମଣିଷର ଜୀବନ ନିୟନ୍ତ୍ରିତ । ଓଡିଶାର ରାଜସିଂହାସନରେ ଭୌମକର ରାଜତ୍ୱରେ ସ୍ତ୍ରୀଜଣ ରାଣୀ ବସିଥିଲେ । ସେଥିରୁ ଯଦି ଆମେ ଭାବିନେବା ଯେ, ଓଡିଶାର ସଂସ୍କୃତିରେ ନାରୀ ଓ ପୁରୁଷର ସଂପତ୍ତି ଅଧିକାର ଓ ସାମାଜିକ ସମ୍ମାନ ଏକା, ତେବେ ଆମେ ଭୁଲକରି ବସିବା ନାହିଁକି ? ମାନସିଂହ ବହୁ ସମୟରେ ଏଭଳି ଭୁଲକରି ବସିଥିଲେ । ଭାରତର ଅଧିକାଂଶ ଦେବପୀଠ କ୍ଷମତା ରାଜନୀତି ସହ ବା ରାଜତନ୍ତ୍ର ସହ ପରୋକ୍ଷ ଭାବରେ ଜଡିତ । ଜଗନ୍ନାଥ କିନ୍ତୁ ଐତିହାସିକ ଆବଶ୍ୟକତା ହେତୁ, ଓଡି । ରାଜତନ୍ତ୍ରର ପ୍ରାଣ ପ୍ରତିଷ୍ଠାତା । ରାଜସିଂହାସନରେ ଉଚ୍ଚ ଆସନରେ ରଜା ବସେ, କିନ୍ତୁ ଅପରକୁ ଘୃଣା କରି ସେ ଶାସନ ଚଳାଏ ନାହିଁ । ସେ ନୀଚତମ ବର୍ଗର ଅସ୍ପୃଶ୍ୟ ଠାରୁ ଉଚ୍ଚତମ ବ୍ରାହ୍ମଣଯାଏ ସମସ୍ତଙ୍କ ସ୍ଥିତିକୁ ସ୍ୱୀକାର କରେ, ସେମାନଙ୍କ ବର୍ତ୍ତିବାର କ୍ଷେତ୍ର ନିର୍ଦ୍ଦିଷ୍ଟ କରେ । ତା ନହେଲେ ରାଷ୍ଟ୍ର ବିପ୍ଳବ ଅନିବାର୍ଯ୍ୟ । ଜଗନ୍ନାଥ ରାଷ୍ଟ୍ର ସାଙ୍ଗରେ ସଂପୃକ୍ତ ଥିବାରୁ ଉଦାର ହେବାକୁ ବାଧ୍ୟ ହୋଇଛନ୍ତି । ଜଗନ୍ନାଥ ସଂସ୍କୃତି ଓଡିଆ ରାଜତନ୍ତ୍ରର ସଂସ୍କୃତି । ଅତୀତରେ ରାଜତନ୍ତ୍ର ପ୍ରତିଷ୍ଠିତ ଥିଲା । ଲୋକମାନେ ବେଳେ ବେଳେ ରାଜତନ୍ତ୍ରରେ ସୁଖ ସୁବିଧାରେ ବି ରହୁଥିଲେ । କିନ୍ତୁ ବର୍ତ୍ତମାନ ଯୁଗରେ ଯଦି ରାଜତନ୍ତ୍ରକୁ ସର୍ବଶ୍ରେଷ୍ଠ ଶାସନ ପଦ୍ଧତି ବୋଲି କୁହାଯାଏ, ତା ହେଲେ ହାସ୍ୟାସ୍ପଦ ହେବାହିଁ ସାର ହେବ ଅର୍ଥ ନୈତିକ ଅନଗ୍ରସରତା ଓ ସାମାଜିକ ଶୌଣତ୍ୱ ବୋଧ, ଆମ ଭିତରେ ସାମନ୍ତବାଦର ଯେଉଁ କେତେକ ଦୋଷ ଚିହ୍ନ ଛାଡି ଯାଇଛି ତାକୁ ଆମେ ପ୍ରୀଷ୍ମାର ସହ ସ୍ମରଣ କରିବା, ପଶ୍ଚାତ୍‌ଗାମୀତାର ପରିଚୟ ହିଁ ଦିଏ । ଉତ୍ପାଦନ ବ୍ୟବସ୍ଥା ଓ କ୍ଷମତା ସଂଘର୍ଷରେ ଓଡିଶାର ମାନଚିତ୍ର ବଦଳିଛି । ତାକୁ ବାହାର ଲୋକ କେହି ବାଧ୍ୟ କରି ବଦଳାଇ ନାହାନ୍ତି, ଆବଶ୍ୟକତାରୁ ସେ ବାଧ୍ୟ ହୋଇ ବଦଳିଛି, ଓଡିଆ ଚଳଣିରେ ବଙ୍ଗାଳୀ ହୋଇଛି । ସଂସ୍କୃତି ବିସ୍ତୃତ କ୍ଷେତ୍ରରେ ମାନସିଂହଙ୍କର ରକ୍ଷଣଶୀଳ ମନହିଁ ଅତ୍ୟଧିକ ଭାବରେ ପ୍ରକାଶ ପାଇଛି । ଧର୍ମ, ଶିକ୍ଷା କ୍ଷେତ୍ରରେ ପରିବର୍ତ୍ତନ ଘଟୁଥିବା ମାନସିଂହ ଯେ ପରିବର୍ତ୍ତନର ଟେଚହେରାଟା ଠିକ୍ ଠଉରାଇ ପାରି ନାହାନ୍ତି, ତାର କାରଣ ଏଇ ସାଂସ୍କୃତିକ ରକ୍ଷଣଶୀଳତା ।

---

## ନବମ ଅଧ୍ୟାୟର ସୂଚନା:


1: A.L. Krober-Anthropology P.I-252-259 Oxford & IBH publishing Co New Delhi(1967)

2: ପାଣିଗ୍ରାହୀ,(ଡଃ) କୃଷ୍ଣଚନ୍ଦ୍ର-(1978) ମୋ ସମୟର ଓଡିଶା'-ଅଷ୍ଟମ ପରିଚ୍ଛେଦ, ପୃ.92-93,

3: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଭାଗ-1973) ସ୍ୱଧର୍ମ(ପ୍ରବନ୍ଧ) ପୃ.603-604,

4: ତତ୍ରୈବ, ଓଡିଆ ଜାତିର ବୈଶିଷ୍ଟ୍ୟ(ପ୍ରବନ୍ଧ) ପୃ.589,

5: ମାନସିଂହ ଗ୍ରନ୍ଥାବଳୀ(ଦ୍ୱିତୀୟ ଖଣ୍ଡ-1964)- ଜେମା(କାବ୍ୟ) ପୃ.59,

6: ତତ୍ରୈବ,

7: ତତ୍ରୈବ,

8: ତତ୍ରୈବ, ସାଧବଝିଅ(କାବ୍ୟ) ପୃ.137,

9: ତତ୍ରୈବ, ପୃ.160,

10: ମାନସିଂହ ଗ୍ରନ୍ଥାବଳୀ(ପ୍ରଥମ ଖଣ୍ଡ-1962)-ଗୋପପ୍ରୟାଣ(କବିତା) ପୃ.344,

11: ତତ୍ରୈବ ତୀର୍ଥଧୂଳି(କବିତା) ପୃ.42,

12: ମାନସିଂହ ଗ୍ରନ୍ଥାବଳୀ(ଦ୍ୱିତୀୟ ଖଣ୍ଡ)-1964- ସାଧବଝିଅ(କାବ୍ୟ)-ପୃ.144,

13: ମାନସିଂହ ଗ୍ରନ୍ଥାବଳୀ(ପ୍ରଥମ ଖଣ୍ଡ-1962)-ମହାନଦୀରେ ଜ୍ୟୋତ୍ସ୍ନା ବିହାର(କବିତା) ପୃ.314,

14: ତତ୍ରୈବ, ପଲ୍ଲୀସନ୍ଧ୍ୟା(କବିତା) ପୃ.320-324,

15: ମାନସିଂହ ଗ୍ରନ୍ଥାବଳୀ(ଦ୍ୱିତୀୟ ଖଣ୍ଡ-1964) ସାଧବ ଝିଅ(କାବ୍ୟ) ପୃ.138-139,


"ମୁଣ୍ଡରେ ଝରାକାଠି ଖୋଷାରେ ଖୋସା
ପାଦରେ ଝୁମ୍ପା ଭଳି ଦେଇଛି ଯୋଷା ।
ପୃଥୁଳ ବାହୁ ଭଳି କୁଟିଛି ଚିତା
ନୟନେ ଖଞ୍ଜରୀଟ ହୋଇଛି ପୋଷା ।

ନାକକେ ନୋଥ,ନାକଚଣା ଆରେକେ
ଦଣ୍ଡି-ଝଲକା ଓଠେ ବାଜି ଝଲକେ ।
ଅଧର ଘନ ଲାଲ ବିଡିଆ ରାଗେ
ଚଳର ନାରୀ,ପାନ ଜାକି ଗାଲକେ ।

କପାଳେ କଳା-ଚିତା ପରେ ଟିକିକି
ମହଣ ଦେଇ ଟାଣେ ଦେଉଛି କିଳି,
ମହଣ ଦେଇ ପୁଣି କାଢ଼ିଛି ମାଂଗ,
ଖେଳାଇ ଢେଉ, କେଶ ଦେଉଛି ଭିଡି ।

ବାହୁରେ ତାଡ, ଗୋଡେ ପାହୁଡ ବଳା
ସରଣୀ କଂପେ ଯେବେ ଚାଲେ ଅବଳା,
ଧରଣୀ ନିଦ ଭାଂଗେ ଚରଣ ମୁଦି
ଶିଖାଇ ତରୁଣୀଙ୍କୁ ଚଳନ କଳା ।

16: ମାନସିଂହ ଗ୍ରନ୍ଥାବଳୀ(ଦ୍ୱିତୀୟ ଖଣ୍ଡ-1964) ହେମା(କାବ୍ୟ) ପୃ. 72,

କହୁଁ ଲାଗେ କମ୍ପନ ଦକ୍ଷିଣ ନୟନେ ।
'ମାଆଲୋ' ଚିହ୍ନାରି ସତୀ ବ୍ୟାକୁଳେ ହୋଇ ଅତି
ମନେ ମନେ ମନାସିଲେ କୋଟି ଦେବତା,
'ରଖ ବିଅଁ ମୋ ପିଲାରେ ଶଂଖ ଚକ୍ର ଆହୁଆଳେ'
ବୋଲି ଆସ୍ଥା ରହୁଛିଲା ଜଣାଇବ୍ୟଥା
ଛି ଛି ପୋଡା ଆଖିଟା କିଆଁ
ଥରୁଛି ଏପରି, ମୁହେଁ ପଡୁ ତା ନିଆଁ ।

17: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ-1973) ରାଧାନାଥ(ପ୍ରବନ୍ଧ) ପୃ.465-66,
18: ମାନସିଂହ ଗ୍ରନ୍ଥାବଳୀ(ଦ୍ୱିତୀୟ ଖଣ୍ଡ)-1964-ସାଧବଝିଅ, ପୃ.146,
19: ମାନସିଂହ- ପଶ୍ଚିମ ପଥିକ' ପୃ.134,
20: ମାନସିଂହ-ଜୀବନପଥ(1957) ପୃ.18,
21: ମାନସିଂହ-ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ(1957) ପୃ.7,
22: ମାନସିଂହ-ପଶ୍ଚିମ ପଥିକ(1964) ପୃ.132,
23: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ-1973)-ଓଡିଆ ଜାତିର ବୈଶିଷ୍ଟ୍ୟ, ପୃ-584-586,
24: ମାନସିଂହ-ଓଡିଆ ସାହିତ୍ୟର ଇତିହାସ(1976) ପୃ.35,
25: ମାନସିଂହ- ଦି ସାଗା ଅଫ ଦି ଲ୍ୟାଣ୍ଡ ଅଫ ଜଗନ୍ନାଥ-1969- ପୃ.3,
26: ମାନସିଂହ,-ଓଡିଶା ଓ ଜଗନ୍ନାଥ(ପ୍ରବନ୍ଧ) ଉତ୍କଳ ପ୍ରସଙ୍ଗ-ନବକଳେବର ବିଶେଷାଙ୍କ(1969) ପୃ.2,

॥ ମାନସିଂହଙ୍କ ବିଚାରଧାରା ॥

27: ମାନସିଂହ–ଦି ସାଗା ଅଫ ଦି ଲ୍ୟାଣ୍ଡ ଅଫ ଜଗନ୍ନାଥ'(1969)

28: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ–1973)– ଓଡିଶାର ସାମାଜିକ ଜୀବନ(ପ୍ରବନ୍ଧ) ପୃ.633,

29: ତତ୍ରୈବ,

30: ମାନସିଂହ–ପଶ୍ଚିମ ପଥିକ(1964) ପୃ–201,

31: ମାନସିଂହ ଗ୍ରନ୍ଥାବଳୀ(ଦ୍ୱିତୀୟ ଖଣ୍ଡ–1964) କମଳାୟନ(କାବ୍ୟ) ପୃ.257,

32: ମାନସିଂହ–ପଶ୍ଚିମ ପଥିକ(1964) ପୃ.2–3,

33: ମାନସିଂହ– ଜୀବନପଥ(1957) ପୃ. 100,

(କ) ଦି ସାଗା ଅଫ ଦି ଲ୍ୟାଣ୍ଡ ଅଫ ଜଗନ୍ନାଥ'(1969) ପୃ–22–23,

(ଖ) ଅନ୍ୱେଷଣ(ଉପନ୍ୟାସ)–1957– ପୃ– 85, 105,

34: ମାନସିଂହ– ଜୀବନପଥ(1957) ପୃ.102,

35: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ–1973) ନୂତନ କବିତାର ତନୁତ୍ୟାଗ(ଆଲୋଚନା) ପୃ.568,

36: ତତ୍ରୈବ,

37: ତତ୍ରୈବ ଓଡିଆ ସାହିତ୍ୟରେ ରୋମାଣ୍ଟିସିଜମ୍(ଆଲୋଚନା) ପୃ.622–23,

38: ମାନସିଂହ—ମାଟିର ମହାକବି ସାରଳା ଦାସ(1971) ପୃ.57,

39: ମାନସିଂହ—ଓଡିଆ ସାହିତ୍ୟର ଇତିହାସ(1976) ପୃ.38,

40: ମାନସିଂହ—ପଶ୍ଚିମ ପଥିକ(1964) ପୃ. 16.

41: ତତ୍ରୈବ ପୃ–57,

42: ମାନସିଂହ—ଶିକ୍ଷାର କି, କାଂଣ ଓ କାହିଁକି ?(1960) ପୃ.24,

43: ତତ୍ରୈବ ପୃ–7,

44: ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ–1973)–ଓଡିଆ ଜାତିର ବୈଶିଷ୍ଟ୍ୟ(ପ୍ରବନ୍ଧ) ପୃ–586,

45: ଗୋପବନ୍ଧୁ ରଚନାବଳୀ(ପଦ୍ୟ ଖଣ୍ଡ),ଅବକାଶ ଚିନ୍ତା–ବ୍ରାହ୍ମଣ ସମିତିର ଛାତ୍ରାବାସରେସମବେତ ଛାତ୍ରଙ୍କ ପ୍ରତି ପୃ.62,

46: ମାନସିଂହ,ଗୀତାମହାତ୍ମ୍ୟ(1969) ପୃ.101,

47: ମାନସିଂହ–ଭାରତରେ କର୍ତ୍ତବ୍ୟବୋଧ(ପ୍ରବନ୍ଧ) (ନବରବି,–2–11 ପୃ.11) ମଇ–1972,

48: ମାନସିଂହ ଗ୍ରନ୍ଥାବଳୀ(ଦ୍ୱିତୀୟ ଖଣ୍ଡ–1964) କମଳାୟନ(କାବ୍ୟ) ପୃ–305,

49: ମାନସିଂହ,ପଶ୍ଚିମ ପଥିକ(1964) ପୃ.96,

# ମାନସିଂହଙ୍କ ଚିନ୍ତାଧାରା

# ଉପସଂହାର

(କ)- ମାନସିଂହଙ୍କ ଲେଖକ ଜୀବନ ସହିତ ତାଙ୍କ ଚିନ୍ତାଧାରାର ବିକାଶ ଓ ବିଭିନ୍ନ ସ୍ତର

(ଖ)- ମାନସିଂହଙ୍କ ଚିନ୍ତାର ବୈଶିଷ୍ଟ୍ୟ

(ଗ)- ମାନସିଂହଙ୍କ ବ୍ୟକ୍ତିତ୍ୱ

## ଉ ପ ସଂ ହା ର

ଅଠର ଶହ ସତର ମସିହାରେ ଇଂରେଜ ଶାସକ ଓ ଓଡ଼ିଆ ଦାନକମାନଙ୍କ ମଧ୍ୟରେ ହୋଇଥିବା ସଂଗ୍ରାମ ଇଂରେଜମାନଙ୍କ ବିପୁଳ ବିଜୟରେ ହିଁ ପରିଣତି ଲାଭ କରିଥିବା । ସ୍ୱାଧୀନତାର ଶେଷ ଆଶାନ ସ୍ୱପ୍ନ କ୍ରମଶଃ ସମାଧି ନେବାକୁ ଆରମ୍ଭ କରିଥିବା । ପଚାଶ ବର୍ଷ ପରେ ସେ ସ୍ୱପ୍ନ ପୁନର୍ଜାଗ୍ରତ ହୋଇ ଉଠିଥିଲା ନଅଙ୍କ ଦୁର୍ଭିକ୍ଷ, ଓ ଭାଷା ବିଲୋପ ଆଂଦୋଳନ ଜନିତ ଗ୍ଲାନିର ନୂଭ ମଧ୍ୟରୁ । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଓଡ଼ିଆ ଜାତିର ମଧ୍ୟବିତ୍ତ ବର୍ଗ ଏକ ସଙ୍କଟର ସମ୍ମୁଖୀନ ହୋଇଥିଲେ । ସେ ସଙ୍କଟରୁ ସେମାନଙ୍କୁ ମୁକ୍ତି ଦେଇଥିଲେ ରେଭେନ୍ସା ଓ ବିମ୍‌ସ୍‌ଙ୍କ ଭଳି ସାହେବ, ଗୌରୀଶଙ୍କରଙ୍କ ଭଳି ବଂଗଭାଷୀ ଓଡ଼ିଆ, ରଂଗଲାଲଙ୍କ ଭଳି ବଂଗଳାର ବିଶିଷ୍ଟ କବି ଓ ସାହିତ୍ୟିକ ତଥା ଇଂରେଜମାନଙ୍କ ଅନୁସୃତ ବିଭାଜୀକରଣ ଓ ଶାସନ ନୀତି( Divide & rul policy ) । ଜୀବ ଜଗତର ନିୟମ ଅନୁସାରେ ସବଳ ଦୁର୍ବଳକୁ ଆତ୍ମସାତ କରେ, ସଂସ୍କୃତି କ୍ଷେତ୍ରରେ ବି ତାହା ବେଳେବେଳେ ଦେଖାଯାଏ । ଯେଉଁଠି ଗୋଟିଏ ସମାଜର ସଂସ୍କୃତି କ୍ରମଶଃ ଉତ୍‌କୈର୍ଦ୍ଧିକ ହୋଇ ସଂସ୍କୃତି ପ୍ରସାର ବ୍ୟାଜରେ ଶୋଷଣକୁ ହିଁ ଆପଣାର ପ୍ରକୃତ କାର୍ଯ୍ୟବୋଲି ମନେ କରୁଥାଏ ସେଠାରେ ଏହା ଘଟିବା ସ୍ୱାଭାବିକ । କିନ୍ତୁ ମଣିଷତ ସାଧାରଣ ଜୀବଟିଏ ନୁହେଁ, ସେ ବଞ୍ଚିବା ପାଇଁ ଯେଉଁଠି ଇଚ୍ଛା କରେ, ଆତ୍ମରକ୍ଷାପାଇଁ ଯେତେବେଳେ ପ୍ରେରଣା ପାଏ, ସେତେବେଳେ ଶୋଷଣର ରାହୁଗ୍ରାସ ତାକୁ ନିଶ୍ଚିହ୍ନ କରିପାରେ ନାହିଁ । ଓଡ଼ିଆ ଜାତି କ୍ଷେତ୍ରରେ ତାହାହିଁ ଘଟିଥିଲା । ବଂଗୀୟ ମଧ୍ୟବିତ୍ତର ଶୋଷଣ-ଚକ୍ର ଓ ସାଂସ୍କୃତିକ-ରାହୁଗ୍ରାସରୁ ନିଜକୁ ମୁକ୍ତ କରିବା ପାଇଁ ସଂଗ୍ରାମ କରି କ୍ରମଶଃ ନିଜକୁ ସେ ପ୍ରତିଷ୍ଠା କରିବାକୁ ଚାହିଁଥିଲା । ଊନେଇଶ ଚଉତିଶ ମସିହା ପର୍ଯ୍ୟନ୍ତ ଓଡ଼ିଆର ଥିଲା ତାହା ଏକାନ୍ତ ଧ୍ୟାନ ଓ ସାଧନା । ମାନସିଂହଙ୍କର ଜନ୍ମ ଓଡ଼ିଆ ଜନ-ଜୀବନର ତଥା ସାଂସ୍କୃତିକ ମୂଲ୍ୟବୋଧର ଏଇଭଳି ଏକ ଆତ୍ମ-ପ୍ରତିଷ୍ଠା ପାଇଁ ସଂଗ୍ରାମ କାଳରେ । ପ୍ରତ୍ୟେକ ସନ୍ଧି-କାଳ ଭିତରେ ବହୁ ସମ୍ଭାବନା ସଂଗୁପ୍ତ ଥାଏ । ସମୟ ବ୍ୟକ୍ତିକୁ କେବଳ ଜାଗରୁକ ଓ ଚଳମାନ କରେ ନାହିଁ, ତା ଭିତରେ ଥିବା ନବନବ ସମ୍ଭାବନା ପାଇଁ ପଥ ପରିଷ୍କାର କରେ । ସମୟର ଏହି ପ୍ରଭାବ ଫଳରେ ସୁଦୂର ପାରିକୁଦର ଅଜ୍ଞାତ ନନ୍ଦଳା ଗ୍ରାମର ସତ୍ୟବାଦୀ ନାୟକଙ୍କ ପୌତ୍ର ଓ ପଦ୍ମଚରଣ ମାନସିଂହଙ୍କର ପୁତ୍ର, ମାୟାଧର ପାରିବାରିକ ସାହାରାହୀନ ହୋଇ ମଧ୍ୟ ନିଜ ସମୟ ର ସଂସ୍କୃତି କ୍ଷେତ୍ରରେ ଜଣେ ପ୍ରତିଷ୍ଠିତ ଓ ଖ୍ୟାତିବାନ୍ ପୁରୁଷ ହୋଇ ପାରିଥିଲେ ।

ଭାରତବର୍ଷରେ ଇଂରେଜମାନଙ୍କର ପୁଞ୍ଜିବାଦୀ ଅର୍ଥନୀତିର ପ୍ରଚଳନ ଆଧୁନିକ କାଳର ସୂଚନା ଦେଇଥିଲା । ପୁଞ୍ଜିବାଦୀ ଅର୍ଥନୀତି ସହ ଆଧୁନିକତା ଓ ମଧ୍ୟବିତ୍ତ ଶ୍ରେଣୀ ଘନିଷ୍ଠ ଭାବେ ଜଡ଼ିତ । ବ୍ୟକ୍ତି ତାର ଜନ୍ମ ନେଇ ନୁହେଁ, ତାର ପ୍ରତିଭା ଓ ସାଧନା ଫଳରେ ସେ ସମାଜରେ ପ୍ରତିଷ୍ଠା ଲାଭ କରେ । ଟଙ୍କା ଯେଭଳି କ୍ଷଣଭଙ୍ଗୁର ଓ ନିତ୍ୟଚଳମାନ, ସାମାଜିକ ମର୍ଯ୍ୟାଦାବୋଧ ଆଧୁନିକ ସମାଜରେ ନିତ୍ୟ ଚଳମାନ ।

ଆଧୁନିକ ସମାଜରେ ପ୍ରତ୍ୟେକ ବ୍ୟକ୍ତିର ସାଧନା ହେଉଛି ମଧ୍ୟବିତ୍ତ ହେବାର ସାଧନା । ଅବଶ୍ୟ ଭାରତରେ ମଧ୍ୟବିତ୍ତ ଶ୍ରେଣୀର ବିକାଶ ବିଭିନ୍ନ କାରଣରୁ ସୀମାବଦ୍ଧ ହେବାକୁ ବାଧ୍ୟ ହୋଇଥିଲା । ଔପନିବେଶିକ ଅର୍ଥନୀତି ଭାରତୀୟ ମଣିଷକୁ ପରିପୂର୍ଣ୍ଣଭାବେ ବ୍ୟକ୍ତି ହେବାର କ୍ଷମତାରୁ ବଞ୍ଚିତ କରିଥିଲା ବିଶେଷତଃ ଓଡ଼ିଶା ଭଳି ଅନଗ୍ରସର ରାଜ୍ୟରେ ମଧ୍ୟବିତ୍ତର ଖୋଳପା ତଳେ ସାମନ୍ତବାଦର କଙ୍କାଳ ନୂଆ ଜୀବନ ପାଇଁ ପଥ ଖୋଜୁଥିଲା । ମଧୁସୂଦନ ଦାସଙ୍କ ଠାରୁ ଆରମ୍ଭକରି ବିଶ୍ୱନାଥ କରଙ୍କ ପର୍ଯ୍ୟନ୍ତ ମାନସିଂହଙ୍କ ପୂର୍ବବର୍ତ୍ତୀ ବହୁ ଅଗ୍ରଣୀ ଓଡ଼ିଆଙ୍କ ଜୀବନୀକୁ ବିଶ୍ଳେଷଣ କଲେ ଆମେ ଏହି ଦ୍ୱନ୍ଦ୍ୱ ଦେଖିପାରିବା । ଓଡ଼ିଆମାନେ ପରିପୂର୍ଣ୍ଣ ଭାବରେ ବ୍ୟକ୍ତି ହୋଇ ପାରନ୍ତୁ ବା ନ ପାରନ୍ତୁ, ଅନ୍ତତଃ ଗୋଟିଏ ଦିଗରେ, ସେମାନଙ୍କ ସାଧନା ଅଖଣ୍ଡ ଓ ଧାରାବାହିକ ଥିଲା: ତାହା ହେଲା ନିଜ ଭାଷା ଏବଂ ସାହିତ୍ୟର ଉନ୍ନତି ଓ ରଚନା ମାଧ୍ୟମରେ ଆତ୍ମ ପ୍ରକାଶ କରିବାର ଇଚ୍ଛା । ଛାତ୍ର ଅବସ୍ଥାରୁ ଲେଖିବା ତଥା ଲେଖା ମାଧ୍ୟମରେ ପରିଚିତ ହେବାର ବାସନା ମାନସିଂହ ଆପଣା ସମୟରୁ ହିଁ ଲାଭ କରିଥିଲେ ।

ବର୍ତ୍ତମାନ ମିଳୁଥିବା ମାନସିଂହଙ୍କ ପ୍ରଥମଲେଖାର ସମୟକାଳ 1923, ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କର ଲେଖନୀ ଅଜସ୍ରସ୍ରାବୀଥିଲା । ଗଳ୍ପ, ପ୍ରବନ୍ଧ, ଉପନ୍ୟାସ, କବିତା, କାବ୍ୟ, ନାଟକ, ସମାଲୋଚନା, ଭାଷ୍ୟ, ଟିପ୍ପଣୀ, ଅନୁବାଦ ମାଧ୍ୟମରେ ମାନସିଂହ ଏକ ବିରାଟକାୟ ଅକ୍ଷର କିର୍ତ୍ତୀ ଛାଡିଯାଇଛନ୍ତି । ସଂପୃକ୍ତ ନିବନ୍ଧର ଗତ ଛଅଟି ଅଧ୍ୟାୟରେ ଏହି ବିପୁଳ ରଚନାବଳୀକୁ ଭିତ୍ତିକରି ତାଙ୍କ ବିଗ୍ରହଧାରାର ସ୍ୱରୂପ ନିର୍ଣ୍ଣୟ କରାଯାଇଛି । ସାମଗ୍ରିକ ଭାବରେ ଅଧ୍ୟୟନ କଲେ ତାଙ୍କ ରଚନାବଳୀରେ ସ୍ପଷ୍ଟ ତିନୋଟି ସ୍ତର ଲକ୍ଷ୍ୟ କରାଯାଇପାରେ । ଲେଖକ ଜୀବନର ଆରମ୍ଭରୁ ବିଲାତଯାତ୍ରା ପର୍ଯ୍ୟନ୍ତ, ବିଲାତ ପ୍ରତ୍ୟାବର୍ତ୍ତନ ପରଠାରୁ 1948–49 ପର୍ଯ୍ୟନ୍ତ ଓ 1949 ରୁ ଶେଷ ପର୍ଯ୍ୟନ୍ତ ପ୍ରତ୍ୟେକ ସ୍ତର ଭିତରେ କିଛି ବ୍ୟତିକ୍ରମ ଅବଶ୍ୟ ଲକ୍ଷ୍ୟ କରାଯାଇ ପାରେ ତଥାପି ନିଜେ ନିଜର ପରିଦୃଶ୍ୟମାନ ଜଗତ, ମାନସିକ ବିଶ୍ୱ ଓ ପରିଚିତ ସାଂସ୍କୃତିକ ଜଗତ ଏହି ସମସ୍ତ କ୍ଷେତ୍ରରେ ସେ ଏକ ନିର୍ଦ୍ଦିଷ୍ଟ ପ୍ରକାରର ବିଗ୍ରହବୋଧ ଏକ ନିର୍ଦ୍ଦିଷ୍ଟ ସମୟ ସୀମା ଭିତରେ କରିଛନ୍ତି । ପ୍ରାରମ୍ଭିକ ଜୀବନରେ ମାନସିଂହ କବି, ଦ୍ୱିତୀୟ ସ୍ତରରେ ସାମାଜିକ ଅସ୍ୱୀକାରବଦ୍ଧ ଜଣେ ବୁଦ୍ଧିଜୀବୀ ଏବଂ ତୃତୀୟ ସ୍ତରରେ ସେ ଜଣେ ତତ୍ତ୍ୱ ଜିଜ୍ଞାସୁ ଚିନ୍ତା-ନାୟକ ।

ପ୍ରଥମ ଜୀବନରେ ମାନସିଂହ ଜଣେ ମୁଗ୍ଧ ଦ୍ରଷ୍ଟା । ଜୀବନକୁ ଜଗତକୁ ଓ ଉଭୟର ପ୍ରକାଶକୁ ବିଗ୍ରହ କରିବା ଅପେକ୍ଷା, ମାନସିଂହ ପ୍ରଥମେ ଭଲପାଇ ବସିଛନ୍ତି । ବିଗ୍ରହ କରିବା ପାଇଁ ବିଗ୍ରହ୍ୟ ବସ୍ତୁଠାରୁ ଯେଉଁ ମାନସିକ ଦୂରତ୍ୱ ଦରକାର, ତାହା ଏହି ସମୟରେ ମାନସିଂହଙ୍କ ମଧ୍ୟକୁ ଆସିନାହିଁ । କେତେବେଳେ 'ଇରାନୀ କିଶୋରୀର ଗୁଲ୍ ବଦନତ କେତେବେଳେ 'ଧୂପର ନାୟିକା ତ ଅନ୍ୟ କେତେବେଳେ ଗାନ୍ଧି ଗୋପବନ୍ଧୁଙ୍କ ପରି ମହାମାନବଙ୍କ ପାଇଁ ତାଙ୍କ ପ୍ରାଣ ସ୍ପନ୍ଦିତ ହୋଇ ଉଠିଛି । ମଣିଷକୁ ସେ ଦେଖିଛନ୍ତି, ଆନନ୍ଦର ରସଘନ ରୂପ ହିସାବରେ, ତା ମଧ୍ୟରେ ସେ ଲକ୍ଷ୍ୟ କରିଛନ୍ତି ଦେବତ୍ୱର ଦୀପ୍ତି । ମଣିଷ ରୂପନେଇ ଜନ୍ମ ନେଲେ ବି, ଗାନ୍ଧି ଓ ଗୋପବନ୍ଧୁ ତାଙ୍କୁ ଦେବତ୍ୱର ଆଭା ନେଇ ଦେଖା ଦେଇଛନ୍ତି । ମଣିଷ ପ୍ରତି ଏହି ଦୃଷ୍ଟିକୋଣ ତାଙ୍କ ପ୍ରବୃତି

ଦୃଷ୍ଟିକୋଣକୁ ମଧ୍ୟ ସଂକ୍ରମିତ । ପ୍ରକୃତି ସେଠି ମାନବୀୟ ଅନୁଭବର ହିଁ ପ୍ରକାଶ । ଏହି ବିଚିତ୍ରବର୍ଣ୍ଣ ବିଶ୍ୱ ଭିତରେ ମଣିଷର ସ୍ରଷ୍ଟା-ସୁଲଭ ମନ ଅଜସ୍ର ରୂପରେ ଆତ୍ମ ପ୍ରକାଶ କରେ । ତେଣୁ ମହାନଦୀରେ ସେ ଜ୍ୟୋତ୍ସ୍ନାବିହାର ଦେଖେ । ପ୍ରକୃତି ବକ୍ଷକୁ ନୂତନ ମୂଲ୍ୟବୋଧରେ ସେ ଉଦ୍ଦୀପ୍ତ କରେ । ଭଗବାନ ମଧ୍ୟ ଏହି ମାନବତ୍ୱର ସମ୍ପ୍ରସାରଣ । ମଣିଷ ଭିତରେ ହିଁ ଭଗବାନ ଜନ୍ମ ନିଅନ୍ତି ବିଶ୍ୱକୁ ସୁନ୍ଦର ଓ ନିରାମୟ କରିବା ପାଇଁ । ଶିକ୍ଷା ସଂସ୍କୃତି ତଥା ସାହିତ୍ୟ ସବୁ ମଧ୍ୟ ମାନବୀୟ କଳ୍ପନାର ଏକ ମଧୁଚକ୍ର । ଖ୍ରୀ: ୧୯୩୫ ମସିହା ପର୍ଯ୍ୟନ୍ତ ମାନସିଂହ କବି ଭାବରେ ହିଁ ଜଗତ ଓ ଜୀବନକୁ ଉପଲବ୍ଧିକରି ତାର ରୂପାୟନ କରିଛନ୍ତି । ତେଣୁ ପ୍ରାଥମିକ ଜୀବନରେ ମାନସିଂହଙ୍କର ରଚନା ଜଗତ ଅଭିବ୍ୟକ୍ତିର ମାଧୁର୍ଯ୍ୟରେ ଯେତିକି ମନୋମୁଗ୍ଧକର, ପାଠକର ପ୍ରାଣକୁ ଅଭିଭୂତ କରିବାରେ ଯେତିକି ସମର୍ଥ, ତା ଭିତରେ ନୂଆ ବିଦ୍ରୋହଧାରା ସୃଷ୍ଟି କରିବାରେ ସେତିକି ଅସମର୍ଥ ।

୧୯୩୬ ରେ ଓଡିଶା ସ୍ୱତନ୍ତ୍ର ପ୍ରଦେଶ ହେଲା । ଓଡିଆମାନଙ୍କର ବହୁଦିନର କଳ୍ପନା, ସ୍ୱପ୍ନ, ସଂଗ୍ରାମ, ସ୍ୱତନ୍ତ୍ର ପ୍ରଦେଶ ହେଲାପରେ ତିରୋହିତ ହେବାକୁ ବାଧ୍ୟ ହୋଇଥିଲା । ମାନସିଂହ ମନ ପ୍ରାଣରେ ଥିଲେ ଜଣେ ଓଡିଆ । ଓଡିଶାର ଅତୀତ, ତାର ଗୌରବ, ତାଙ୍କ କାବ୍ୟ ଜଗତକୁ ବହୁ ଭାବରେ ଘେରି ରହିଥିଲା । ବହୁ ସମୟରେ ମନେହୁଏ ତାଙ୍କ କାବ୍ୟ କବିତାର ପ୍ରାଥମିକ ଆବେଦନ ଭଳି ସ୍ୱଦେଶପ୍ରେମ । ପ୍ରେମିକାର ଅବର୍ତ୍ତମାନରେ ପ୍ରେମିକ ଯେଉଳି ତାକୁ ସ୍ମରଣ କରେ, ବିରହ ବେଦନାରେ ଘାରିହୁଏ, ସନ୍ତାନର ଅବର୍ତ୍ତମାନରେ ମାତା ପ୍ରାଣ ଯେଉଳି 'ମା' 'ମା' ବୋଲି ଚିତ୍କାର କରେ, କବି ମାନସିଂହ ୧୯୩୬ ମସିହା ପୂର୍ବରୁ ଏହି ରୂପସୀ ଓ ଐତିହ୍ୟ ସମ୍ପନ୍ନ ଓଡିଆ ଜାତିକୁ ନେଇ ସେହିଉଳି କାନ୍ଦିଛନ୍ତି, ସ୍ମରଣ କରିଛନ୍ତି ତା ପାଇଁ ଆର୍ତ୍ତନାଦ କରିଛନ୍ତି । କିନ୍ତୁ ସମସ୍ତ ସ୍ୱପ୍ନ ରୂପ ପାଇଗଲାପରେ, ସେହି ବାସ୍ତବ ଜଗତକୁ ମଣିଷ ଯେଉଳି ପୁଣି ଥରେ ଦେଖି ଉଦ୍‌ଭ୍ରାନ୍ତ ହୋଇ ଉଠେ, ମାନସିଂହ ୧୯୩୬ ପରେ ଓଡିଶାକୁ ଦେଖି ଉଦ୍‌ଭ୍ରାନ୍ତ ହୋଇ ଉଠିଛନ୍ତି । ପ୍ରେମ ଓ ପ୍ରଣୟବୀଣାର ଝଙ୍କାର ମଧ୍ୟ ଏହି ସମୟ ବେଳକୁ କ୍ଷୀଣ ହୋଇ ଆସିଛି । ଅତୀତର ପ୍ରେମ ଜୀବନ ବିସ୍ମୃତ ହୋଇ ଆସିଛି ଘର ସଂସାରର ଜଞ୍ଜାଳ ଭିତରେ । ପ୍ରେମିକ ମାନସିଂହ ପିତା ମାନସିଂହରେ କ୍ରମଶଃ ପରିଣତ ହୋଇଛନ୍ତି । ଅପର ପକ୍ଷରେ ପ୍ରାଦେଶିକ ସ୍ୱାୟତ୍ତ ଶାସନ ଆଇନ ଅନୁସାରେ ଗଠିତ କଂଗ୍ରେସ ମନ୍ତ୍ରୀ ସଭାର ଦୁର୍ନୀତି ମାନସିଂହଙ୍କ ଆଗରେ ଗାନ୍ଧିଙ୍କ ଆଦର୍ଶର ଅନୁଗାମୀମାନଙ୍କର ସଂସ୍ଥା ରୂପକୁ ପ୍ରକାଶ କରିଦେଇଥିଲା । ତେଣୁ ଇଂଲଣ୍ଡ ରହଣୀ କାଳରେ ସେ ସେଠାରେ ଜୀବନ ଯାତ୍ରା, ସେମାନଙ୍କର ଶ୍ରମ ନିଷ୍ଠା, ଶୃଙ୍ଖଳା ପ୍ରିୟତା, ସମୟାନୁବର୍ତ୍ତିତା, ଉଚ୍ଚ ନୈତିକ ମୂଲ୍ୟବୋଧ ଓ ସ୍ୱାଧୀନ ଭାବରେ ବଞ୍ଚିବାର ଇଚ୍ଛା, ଏହି ସମସ୍ତ ଗୁଣାବଳୀ ଦ୍ୱାରା ଆକୃଷ୍ଟ ହୋଇଥିଲେ । ପ୍ରାଥମିକ ଜୀବନରେ ଥିବା ବହୁ ସ୍ୱପ୍ନଗତ କ୍ରମଶଃ ଭାଙ୍ଗି ଭାଙ୍ଗି ଆସୁଥିଲା ବେଳେ ଏହି ନୂତନ ମୂଲ୍ୟ ସକଳ ତାଙ୍କ ନୂତନ ଭାବରାଜ୍ୟକୁ ଆଲୋଡିତ କରିଥିଲା । ଜୀବନକୁ ଯେଉଁମାନେ ନୂଆ ଦିଗ୍‌ଦର୍ଶନ ଦେଇଛନ୍ତି, ସୁସ୍ଥ ଓ ସୁନ୍ଦର କରାଇଛନ୍ତି ମାନସିଂହ ସେମାନଙ୍କୁ ସମକାଳରେ

ସ୍ମରଣ କରିଛନ୍ତି । ଏହି ବୀରମାନଙ୍କ ଭିତରେ ସେ ଦାର୍ଶନିକ, ଦେଶ-ସେବକ, କବି ପ୍ରମୁଖଙ୍କୁ ଅନ୍ତର୍ଭୁକ୍ତ କରିଛନ୍ତି । ତାଙ୍କର ଭଗବତ ବିଶ୍ୱାସ ସହ ବୀରପୂଜା ମଧ୍ୟ ସମ୍ପର୍କିତ ହୋଇପଡିଛି । ସାମାଜିକ ଜୀବନରେ ଥିବା ବ୍ୟଭିଚାରର ପ୍ରତିବାଦ କରିବାକୁ ଯାଇ ଜୀବନରେ ନୀତି ଓ ଶୃଙ୍ଖଳାର ପ୍ରତିଷ୍ଠା କରି ମଣିଷକୁ ଅମୃତଲୋକକୁ ନେଇଯିବାର ପଥ ଆବିଷ୍କାର କରିଥିବାରୁ ସେ ବୁଦ୍ଧଙ୍କ ପ୍ରତି ଶ୍ରଦ୍ଧାଶୀଳ ହୋଇ ଉଠିଛନ୍ତି । ଧର୍ମ ସିଦ୍ଧୁକା ପୂଜା ନୁହେଁ, ଅରୂପ ଦେବତାର ଉପାସନା ନୁହେଁ, ତାହା ଜୀବନର ଶୃଙ୍ଖଳା ଓ ସର୍ବୋଦୟ ବିକାଶପାଇଁ ଏକ ଶିକ୍ଷାପୀଠ । ବୁଦ୍ଧ ପ୍ରଚାରିତ ଧର୍ମ ଏହି ଭୂମିକା ନିର୍ବାହ କରିଥିବାରୁ, ସେ ବୌଦ୍ଧଧର୍ମ ପ୍ରତି କ୍ରମଶଃ ଆକୃଷ୍ଟ ହୋଇଥିଲେ । ସଂପୃକ୍ତ କାଳରେ ତେଣୁ ମାନସିଂହ ମୁଖ୍ୟତଃ ଜଣେ ଶିକ୍ଷକ ଓ ଶିକ୍ଷା ସଂପର୍କରେ ମୌଳିକ ଚିନ୍ତାବିତ୍ । ଶିକ୍ଷା ସଂପର୍କୀତ ରାଶି ରାଶି ପ୍ରବନ୍ଧ ସେ 1936 ରୁ 1947 ମଧ୍ୟରେ ଲେଖିଛନ୍ତି । ଜୀବନର ଦ୍ୱିତୀୟପର୍ଯ୍ୟାୟରେ ମାନସିଂହ ମୁଖ୍ୟତଃ ଜଣେ କର୍ମନିଷ୍ଠ ସାମାଜିକ ମଣିଷ ।

1948–49 ପରେ ମାନସିଂହଙ୍କ ଜୀବନ କ୍ରମଶଃ ସ୍ଥିତିଶୀଳ ହେବାକୁ ଆରମ୍ଭ କରିଥିଲା । ଶିକ୍ଷା ପରାମର୍ଶଦାତା, ବିଦ୍ୟାଳୟ ନିରୀକ୍ଷକ ପ୍ରଭୃତି ଜଙ୍ଗମ ଚାକିରୀ ପରିବର୍ତ୍ତେ ସେ ମେହେର କଲେଜର ଅଧ୍ୟକ୍ଷ ପଦ ଗ୍ରହଣ କଲେ । ଖ୍ରୀ: 1956 ରୁ 1960–61 ପର୍ଯ୍ୟନ୍ତ ସରକାରୀ ଚାକିରୀ ଦୃଷ୍ଟିରୁ ତାଙ୍କ ଜୀବନ କିଛିଟା ବିଶୃଙ୍ଖଳ ହୋଇଥିଲେ ବି ତାହା ତାଙ୍କୁ ଭ୍ରାମ୍ୟମାଣ କରି ନଥିଲା । ମାନସିଂହଙ୍କ ଜୀବନର ବିଭିନ୍ନ ଦିଗ ସଂପର୍କରେ ବିଚାର ଏହି କାଳରେ ନିର୍ଦ୍ଦିଷ୍ଟ ଦାନା ବାନ୍ଧିବାକୁ ଆରମ୍ଭ କରିଛି । ଶିକ୍ଷା ସଂପର୍କରେ ବହୁ ପୁସ୍ତକାବଳୀ, ଗୀତାମହାତ୍ମ୍ୟ, ପାର୍ବ–ଜନୀନ ଗୀତା, ଓଡିଆ ସାହିତ୍ୟର ଇତିହାସ, ଆଗା ପଇ ଦି ଲ୍ୟାଣ୍ଡ ଅଫ ଜଗନ୍ନାଥ, ସରସ୍ୱତୀ ଫକୀରମୋହନ ଭଳି ପ୍ରବନ୍ଧ ଓ ଗବେଷଣା ପୁସ୍ତକ ତଥା ସିନ୍ଧୁ ଓ ବିନ୍ଦୁ, 'ରୁଷ' ଭଳି କବିତା ସଂକଳନ 'ବୁଦ୍ଧ' ଭଳି ନାଟକ ସଂପୃକ୍ତ କାଳରେ ପ୍ରକାଶିତ ହୋଇଛି । ଜୀବନ ସଂପର୍କରେ ତଟସ୍ଥ ତଥା ବୈଚିତ୍ର୍ୟପୂର୍ଣ୍ଣ ମନୋଭାବର ଆଭାଷ ଥିଲେବି ମାନସିଂହଙ୍କ ଏହି ରଚନାବଳୀ ପଢିଲେ ମନେ ହୁଏ ଯେ ମଣିଷ ଠାରୁ ଆରମ୍ଭକରି ଶିକ୍ଷା ଓ ସାହିତ୍ୟ ପର୍ଯ୍ୟନ୍ତ ସବୁ ସଂପର୍କରେ ସେ ଯେଉଁଳି ସେ କିଛି ନୂଆ କଥା କହିବାକୁ ଚାହୁଁଛନ୍ତି । ମଣିଷର ଶକ୍ତି ଯେତେବେଳେ ସ୍ତିମିତ ହୋଇଆସେ ତାର ହାତ ଗୋଡର ଶକ୍ତି ଯେତେବେଳେ କ୍ରମଶଃ କ୍ଷୀଣ ହୋଇଆସେ, ବହୁ ସମୟରେ ନିଜର ଅଜ୍ଞାତରେ ସେ ଏକ ବୃହତ୍ତର ଶକ୍ତିର ଓ ଅଧିକ ଶକ୍ତିଶାଳୀ ହସ୍ତ ଯୁଗଳର ଉପସ୍ଥିତି ଅନୁଭବ କରେ । ମାନସିଂହ ସମକାଳରେ କ୍ରମଶଃ ଅତୀନ୍ଦ୍ରିୟବାଦୀ ହୋଇ ଉଠିଛନ୍ତି । ବୁଦ୍ଧଙ୍କର ଧମ୍ମପଦର ସରଳତା ତାଙ୍କ ଚେତନାର ଉର୍ଦ୍ଧ୍ୱଗମନ କୁ ରୋକିପାରି ନାହିଁ । ତାହା ସେତେବେଳେ ସିନ୍ଧୁ ଭିତରେ, ଅନ୍ୟ କେତେବେଳେ ବିନ୍ଦୁ ଭିତରେ ଜୀବନର ଅଭି–ବ୍ୟକ୍ତିର ସନ୍ଧାନ କରିଛି । ନିଜକୁ ଜଣେ ନାସ୍ତିକ ଓ ବୌଦ୍ଧ ବୋଲି ସ୍ୱୀକାର କଲାପରେ ସେ ହିନ୍ଦୁ ଧର୍ମର ପରମ ଉପାସିତ ଗ୍ରନ୍ଥ ଭଗବତ୍‌ଗୀତାର ଭାଷ୍ୟ ଲେଖିବସିଛନ୍ତି । କୃଷ୍ଣ, ବୁଦ୍ଧ, ଖ୍ରୀଷ୍ଟ, ନାନକ ଓ ମହମ୍ମଦ ତଥା ମହାତ୍ମାଗାନ୍ଧି ପ୍ରମୁଖଙ୍କୁ ସେହି ପରମ କାରୁଣିକ ଓ ଭଗବାନଙ୍କର ବିଭିନ୍ନ ରୂପ ଭାବରେ ପରିକଳ୍ପନା କରିଛନ୍ତି । ଠିକ୍ ସେହିଭଳି

ଶିକ୍ଷା ସମ୍ପର୍କରେ ତାଙ୍କର ମନୋଭାବ କ୍ରମଶଃ ଜଟିଳ ହୋଇ ପଡ଼ିଛି । ପ୍ରଚଳିତ ଶିକ୍ଷା ବ୍ୟବସ୍ଥାର ହୋଇ ଉଠିଛନ୍ତି ଜଣେ ଉଗ୍ର ସମାଲୋଚକ । ଆଧୁନିକ ଯୁଗ ଯେଉଁ ଶିକ୍ଷା ଆବଶ୍ୟକ କରେ ସେ ଶିକ୍ଷାକୁ ସେ ଆମେରିକା ଠାରୁ ବୈଦିକ ଆଶ୍ରମ ପର୍ଯ୍ୟନ୍ତ ବିଭିନ୍ନ ଆଡେ ଖୋଜିଛନ୍ତି । ଜୀବନର ଶେଷ ଭାଗରେ ସେ ଅନୁଭବ କରିଛନ୍ତି, ଇଂରେଜ ମାନେ ଏ ଦେଶରେ ଯେଉଁ ଶିକ୍ଷା ବ୍ୟବସ୍ଥା କରିଥିଲେ, ତାହା ବୋଧହୁଏ ଏ ଦେଶପାଇଁ ସବୁଠାରୁ ବେଶି ଉପଯୋଗୀ । ତେଣୁ ପରିବର୍ତ୍ତନ ପୁଣି ସ୍ଥିତିଶୀଳତାର ଆମନ୍ତ୍ରଣ ଏଇ ଉଭୟ ମନୋବୃତ୍ତି ଏକ ସଙ୍ଗରେ ତାଙ୍କ ଭିତରେ ରହିଛି । ସାହିତ୍ୟ ଓ ସଂସ୍କୃତି ଆଲୋଚନା କ୍ଷେତ୍ରରେ ବି ସେ ଅନୁରୂପ ମନୋବୃତ୍ତିର ପରିଚୟ ଦେଇଛନ୍ତି । ସେ ପ୍ରଚଳିତ ଧାରାକୁ ସ୍ୱାଗତ କରିପାରି ନାହାନ୍ତି କିନ୍ତୁ ଯେଉଁ ପରିବର୍ତ୍ତନର ଇଙ୍ଗିତ ସେ ଦେଉଛନ୍ତି, ତାହା ସ୍ଥିତି ସ୍ଥାପକ, ଚଳନଧର୍ମୀ ନୁହେଁ । ସଂପୃକ୍ତ କାଳରେ ସେ ଆଦର୍ଶର ସ୍ୱୈରାଠାରୁ ମୁକୁଳି ଜୀବନର ବାସ୍ତବ ଭୂମିକୁ ସ୍ପର୍ଶ କରିପାରି ନାହାନ୍ତି । ତେଣୁ ଆଦର୍ଶ-ବାଦ ଚିହ୍ନିତ କରିଥିବା ପୂର୍ବ ନିର୍ଦ୍ଧାରିତ ରାସ୍ତାରେ କିଛିବାଟ ଗଲାପରେ ସେ ବାରମ୍ବାର ଦିଗହରା ହୋଇଛନ୍ତି ।

କୌଣସି ଚିନ୍ତାନାୟକଙ୍କର ବିଚାରଧାରା ଆଲୋଚନାର ବିଶିଷ୍ଟତମ ଦିଗ ହେଲା ତାହାର ସଂହତି ତଥା ମୌଳିକତା । ଏହି ଉଭୟ ବିଷୟ ନାନା ଦିଗରୁ ଅସଂପୂର୍ଣ୍ଣ ଓ ବିତର୍କିତ ହେବାକୁ ବାଧ୍ୟ । କାରଣ ଲେଖକଂ କର ଚିନ୍ତାଧାରାକୁ ବେଳେବେଳେ ଆଲୋଚକଙ୍କ ନିଜସ୍ୱ ଆରୋପଣ ମଧ୍ୟରେ ନୂତନଭାବେ ଆବିଷ୍କାର କରିବାର ସମ୍ଭାବନା ଥାଏ । ମାନସିଂହଙ୍କ ବିଚାରଧାରାର ତିନୋଟି ସ୍ତର ରହିଛି, ଏ କଥା ବାରମ୍ବାର ଉଚ୍ଚାରିତ । ଏଇ ତିନୋଟି ଧାରା ଭିତରେ କିଛିଟା ବିବର୍ତ୍ତନ ବି ଲକ୍ଷ୍ୟ କରିହୁଏ । ମାନସିଂହଙ୍କ ମନ ଯେଉଁଠି ବାସ୍ତବ ଜଗତର ସୀମା ସରହଦ ଭିତରକୁ ପ୍ରବେଶ କରିନାହିଁ, ସେଠାରେ ତାଙ୍କ ମତାମତର ଗତିପଥ ମଧ୍ୟ ସରଳ । କିନ୍ତୁ ମଣିଷ, ଧର୍ମ ଓ ଭଗବାନ, ଶିକ୍ଷା ତଥା ସାହିତ୍ୟ ଭଳି ବିତର୍କିତ ବିଷୟ ଭିତରକୁ ଯେତେବେଳେ ସେ ଆସିଛନ୍ତି, ବିଚାର୍ଯ୍ୟ ବିଷୟର ଜଟିଳତା, ବିରୋଧୀ ଯୁକ୍ତିର ସବଳତା ତାଙ୍କ ବିଚାରଧାରାକୁ ଜଟିଳତର କରି ପକାଇଛି । ତେଣୁ ବେଳେବେଳେ ବିଶେଷତଃ ଧର୍ମ ଓ ଶିକ୍ଷା ଆଲୋଚନାରେ ସେ କେତେକ ପରସ୍ପର ବିରୋଧୀ ମତ ଦେଇଛନ୍ତି । ଗୋଟାଏ ଦିଗରେ ନିଜକୁ ରେସନାଲିଷ୍ଟ ବା ହେତୁବାଦୀ କହିଲାବେଳେ ଅପର ଦିଗରେ ମଣିଷ, ପୃଥିବୀ ଓ ପୃଥିବୀର ସମସ୍ତ ସୃଷ୍ଟି କୌଣସି ଏକ ଅଦୃଶ୍ୟ ଶକ୍ତିଙ୍କ ଅମୋଘ ନିୟମଦ୍ୱାରା ଚାଳିତ, ଏହା ସେ ସ୍ୱୀକାର କରିଛନ୍ତି । ଇନ୍ଦ୍ରିୟଭୋଗ୍ୟ ଜଗତରୁ ଇନ୍ଦ୍ରିୟା-ତୀତ ଜଗତକୁ ତାଙ୍କ ଚିନ୍ତାଧାରାର ଗତି ସବୁବେଳେ ସ୍ପଷ୍ଟ ଓ ଯୁକ୍ତିଗ୍ରାହ୍ୟ ନୁହେଁ । ଇନ୍ଦ୍ରିୟଭୋଗ୍ୟ ଭୂମି ବେଳେବେଳେ ଇନ୍ଦ୍ରିୟାତୀତର ଶୂନ୍ୟ ଜଗତରେ ପରିଣତ ହୁଏ, ଭୂମି ଓ ଭୂମା ଭିତରେ ସମନ୍ୱୟ କେଉଁ ଅବସ୍ଥାରେ ଆସେ, ସ୍ଥାଣୁ କେତେବେଳେ ଚଳତ୍ଶକ୍ତି ସଂପନ୍ନ ହୋଇଉଠେ, ମାନସିଂହଙ୍କ ବିଚାରଧାରା ତାହା ସନ୍ଧାନ କରିପାରିନାହିଁ । ବୁଦ୍ଧିଗ୍ରାହ୍ୟ ଭାବରେ ଓ ଅନୁଭୂତି ତଥା ଅନୁଭବର ମାପକାଠି ନେଇ ଏଇ ରହସ୍ୟକୁ ଉନ୍ମୋଚିତ କରିବା ପରିବର୍ତ୍ତେ କୌଣସି ଏକ ଅଦୃଶ୍ୟ ସତ୍ତାର ଅଲୌକିକ—କାରିଣୀ—ଶକ୍ତି ସେ ଅନୁଭବ କରିଛନ୍ତି ଏବଂ ତାର ପରିଚୟ ପାଇବାପାଇଁ

ସେ ଜୀବନ ସାରା ଭ୍ରମିଛନ୍ତି । ମାନସିଂହଙ୍କର ଏହି ମାନସ-ଯାତ୍ରା ଏକ ରୋମାଣ୍ଟିକ ମନର ଯାତ୍ରା । ମସ୍ତିଷ୍କ କେବଳ ବୁଦ୍ଧିର ଆକର ନୁହେଁ, ଜୀବନର ପ୍ରଗତି ପାଇଁ, ଅଜଣା ଭୂମିର ଆବିଷ୍କାର ପାଇଁ ତାର ଆଉଏକ ମନ ଦରକାର । ସେଇ ମନକୁ ଆମେ ରୋମାଣ୍ଟିକ୍ ମନ ବୋଲି କହିଥାଉ । ମାନସିଂହଙ୍କ ବିଗ୍ରହଧାରା ତେଣୁ ସ୍ଥିର ବିଗ୍ରହ ବୁଦ୍ଧି ଅପେକ୍ଷା ସ୍ଥାଣୁ ଅନୁଭବ ଅପେକ୍ଷା, ନିର୍ଭର କରିଛି ଜୀବର ଗତିଶୀଳତା ଉପରେ । ତେଣୁ ମାନସିଂହଙ୍କ ବିଗ୍ରହଧାରାରେ ତାଙ୍କର ବୁଦ୍ଧି ଅପେକ୍ଷା ହୃଦୟାନୁଭବ, ଚିଉର ବିକର୍ଷିତ ପ୍ରଜ୍ଞା ଅପେକ୍ଷା ମନର ଇଂଗିତ ଅଧିକ ।ଏହିଦୃଷ୍ଟିରୁ ସେଥିରେ ଏକ ଶୃଙ୍ଖଳାଅଛି

ମାନସିଂହଙ୍କ ସମକାଳରେ ବା ତାଙ୍କର ପୂର୍ବବର୍ତ୍ତୀ କାଳରେ ଯେଉଁମାନେ ଲେଖୁଥିଲେ ସେମାନଙ୍କର ରଚନାବଳୀ ଓ ଚିନ୍ତା ଜଗତସହ ମାନସିଂହଙ୍କ ଚିନ୍ତା ଜଗତର ତୁଳନାତ୍ମକ ସମୀକ୍ଷା କଲାପରେ ହିଁ ତାଙ୍କର ବିଶିଷ୍ଟତା ସମ୍ପର୍କରେ ମତ ପ୍ରଦାନ କରାଯାଇ ପାରେ । ଓଡିଆ ପ୍ରବନ୍ଧ କ୍ଷେତ୍ରରେ ଦୁଇଜଣ ପ୍ରାବନ୍ଧିକଙ୍କୁ ସେ ସ୍ୱାଧୀନ ଚିନ୍ତକ ଭାବରେ ସ୍ୱୀକାର କରିଛନ୍ତି, ସେମାନେ ହେଲେ ଜଳନ୍ଧର ଦେବ ଓ ମୋହିନୀମୋହନ ସେନାପତି । ଜଳନ୍ଧର ଦେବଙ୍କ ସମ୍ପର୍କରେ ସେ ଆଲୋଚନା କରି ଲେଖିଛନ୍ତି:—"ଗତ ଶତାବ୍ଦୀରେ ଆରଣ୍ୟକ ରାଜ୍ୟ ବାମଣ୍ଡାରେ ପୁଣି ରାଜ ବଂଶରେ ଜାତ ହୋଇ ମଧ୍ୟ ଜଳନ୍ଧର ଦେବ ଯେଉଁ ବଳିଷ୍ଠ ସ୍ୱାଧୀନ ଚିନ୍ତା ଓ ବୈଜ୍ଞାନିକ ଦୃଷ୍ଟିକୋଣ ଦେଖାଇ ଯାଇଛନ୍ତି, ତାହା ପ୍ରକୃତରେ ବିସ୍ମୟକର । X X X ଯୁକ୍ତିସିଦ୍ଧ ଆଲୋଚନାରେ ସେ ମହାକାବ୍ୟର ନାୟକନାୟିକାମାନଙ୍କୁ କେବଳ ଆମପରି ଭ୍ରାନ୍ତିଶୀଳ ସାମାନ୍ୟ ମନୁଷ୍ୟମାତ୍ର ବୋଲି ହିଁ ପ୍ରମାଣିତ କରିଯାଇଛନ୍ତି । ଯଦିଓ ବିଶ୍ୱବିଦ୍ୟାଳୟର ଡିଗ୍ରୀ ପ୍ରାପ୍ତ ନଥିଲେ, ଚିନ୍ତା ଓ ଧାରଣାରେ ସେ ଥିଲେ ସମ୍ପୂର୍ଣ୍ଣ ଇଉରୋପୀୟ ଓ କୌଣସି ପ୍ରକାର ରକ୍ଷଣଶୀଳ କୁସଂସ୍କାରକୁ ମାନିବାକୁ ପ୍ରସ୍ତୁତ ନଥିଲେ ।"(।)

ଜଳନ୍ଧର ଦେବଙ୍କ ଆଲୋଚନାର ଅପାରମ୍ପରିକତା ପ୍ରତି ମାନସିଂହଙ୍କର ଥିଲା ସବୁଠାରୁ ବଡ ଆକର୍ଷଣ । ଠିକ୍ ସେହିପରି ମୋହିନୀମୋହନଙ୍କ ସହ ସେ ଏକମତ ନ ହେଲେ ବି ତାଙ୍କୁ ଜଣେ ସ୍ୱାଧୀନ ଚିନ୍ତକ ଭାବରେ ସେ ସ୍ୱୀକାର କରିଛନ୍ତି । ବିଶ୍ୱନାଥ କରଙ୍କ ସମ୍ପର୍କରେ ମାନସିଂହ ଯେଉଁ ମନ୍ତବ୍ୟ ଦେଇଛନ୍ତି ତା ଭିତରେ କିଛି ରୂପମଧ୍ୟ ଖୋଜା ଯାଇ ପାରେ । ସାମାଜିକ ଅବିଗ୍ରହ ଭିତରେ ସତ୍ୟବୋଧ ଓ ଭୟହୀନ ବିଦ୍ରୋହବୋଧ ବିଶ୍ୱନାଥ କରଙ୍କର ଥିଲା ପରମ ସମ୍ପଦ। ମାନସିଂହ ସଚେତନ ଭାବରେ ତାଙ୍କର ରଚନାବଳୀରେ ନିଜର ସତ୍ୟନିଷ୍ଠା, ଅକୁତୋଭୟତା ଅପାରମ୍ପରିକ ନୂତନ ଦୃଷ୍ଟିକୋଣ ପ୍ରକାଶ କରିବାକୁ ଯାଇଛନ୍ତି । କିନ୍ତୁ ଏହାସହ ସ୍ୱୀକାର କରିବାକୁ ହେବ ଯେ, ଏକ ନିର୍ଦ୍ଦିଷ୍ଟ ସମୟରେ ଜଗତ ଜୀବନର ମୌଳ ପ୍ରଶ୍ନ ତଥା ନାନା ବିଦ୍ୟା ସମ୍ପର୍କରେ ଏକ ବିଧିବଦ୍ଧ ଧାରଣା ତାଙ୍କ ମନ ଭିତରେ ରହିଥିଲା ଯେତେବେଳେ ସେ ଏଇ ଧାରଣାର କିଛି ପ୍ରତିକୂଳ ଦେଖୁଥିଲେ ତାଙ୍କୁ ନିର୍ବିଗ୍ରହରେ ଆକ୍ରମଣ କରୁଥିଲେ । ସମୟକ୍ରମେ ତାଙ୍କର ଏହି ମାନବିକ ପ୍ରେମର ରୂପ ବଦଳିଛି, ଧାରଣା ବି ବଦଳିଛି । ମଧୁସୂଦନ ବିଶ୍ୱନାଥ, ଗୋପବନ୍ଧୁ, ନୀଳକଣ୍ଠ, ବ୍ରଜବିହାରୀ ମହାନ୍ତି, କାଳିନ୍ଦୀଚରଣ ପାଣିଗ୍ରାହୀ, ଅନ୍ନଦାଶଙ୍କର ରାୟ

ପ୍ରମୁଖ ତାଙ୍କର ପୂର୍ବବର୍ତ୍ତୀ ବା ସମସାମୟିକ ଲେଖକଙ୍କ ସହ ଏହି ଦୃଷ୍ଟିରୁ ତାଙ୍କର ଏକ ବିଶେଷ ଅମେଳ ଥିଲା । ମଧୁସୂଦନଙ୍କ ଚିନ୍ତାର ସ୍ୱରୂପ ସ୍ପଷ୍ଟ, ବିକାଶ ତାର ଅତ୍ୟନ୍ତ ମନ୍ଥର, ବୈଚିତ୍ର୍ୟ ସେଥିରେ ପ୍ରାୟ ନାହିଁ । ବିଶ୍ୱନାଥଙ୍କ ଚିନ୍ତାଧାରାରେ ବୈଚିତ୍ର୍ୟ ରହିଛି, କିନ୍ତୁ ବିକାଶ ନାହିଁ ଯଦିଓ ସ୍ପଷ୍ଟତାର ଅଭାବ ନାହିଁ । ଗୋପବନ୍ଧୁଙ୍କ ଚିନ୍ତାଧାରା ଗତିଶୀଳ ଅଥଚ ସେଥିରେ ସଂହତିର ଅଭାବ ନାହିଁ ବୃଥା ନୂତନତ୍ୱ ଦେଖାଇବା ଅହଂକାର ମଧ୍ୟ ସେଥିରେ ନାହିଁ । ଜନ ଜୀବନକୁ ଅନୁପ୍ରାଣିତ କଲାଭଳି ଆବେଗାନ୍ୱିତ ଭାଷାରେ ତାଙ୍କ ଚିନ୍ତାଧାରା ଅଭିବ୍ୟକ୍ତ । ନୀଳକଣ୍ଠଙ୍କ ପୂର୍ବ ପର୍ଯ୍ୟନ୍ତ ଓଡ଼ିଆ ଲୋକେ ଯେ ଗଭୀର ଭାବରେ ଚିନ୍ତା କରିପାରନ୍ତି, ଏହା ଦେଖିବାକୁ ମିଳେ ନାହିଁ । ଜ୍ଞାନର ବହୁବିଧ ରୂପ ରହିଛି ଓ ସେଗୁଡ଼ିକ ଭିତରେ ଯେ ସାମଞ୍ଜସ୍ୟ କଳ୍ପନା କରାଯାଇପାରେ ନୀଳକଣ୍ଠଙ୍କ ପୂର୍ବ ଚିନ୍ତାନାୟକମାନେ ଏ ସମ୍ପର୍କରେ ଖୁବ୍ ସଚେତନ ନଥିଲେ । ଜଳନ୍ଧର ଦେବ ତଥା ମୋହିନୀମୋହନ ନୀଳକଣ୍ଠଙ୍କ ପୂର୍ବସୂରି । ମନେହୁଏ ନୀଳକଣ୍ଠ ଏ ଉଭୟଙ୍କ ରଚନାରେ ଓ ଚିନ୍ତାରେ ବୈପ୍ଳବିକତା ସତ୍ତ୍ୱେ ଯେଉଁ ଜ୍ଞାନଦୈନ୍ୟ ଲକ୍ଷ୍ୟ କରିଥିଲେ ନିଜ ରଚନାବଳୀକୁ ତାହାର ଊର୍ଦ୍ଧ୍ୱରେ ପ୍ରତିଷ୍ଠା କରିବାକୁ ଚାହୁଁଥିଲେ । ମାନସିଂହଙ୍କ ସମକାଳୀନ ଅନ୍ନଦାଶଙ୍କର ରାୟଙ୍କ ବିଚାରର ତୀକ୍ଷ୍ଣତା ଓ ପ୍ରକାଶ ଭଙ୍ଗୀର ସ୍ପଷ୍ଟତା ଉଲ୍ଲେଖଯୋଗ୍ୟ । କବିତାରେ ତାଙ୍କର ଚିନ୍ତା କିଛିଟା ବିଶୃଙ୍ଖଳ ଓ ବିଭ୍ରାନ୍ତ ମନେ ହେଲେ ବି, ଖୋଲାଚିଠି ଓ ଅନ୍ୟାନ୍ୟ ପ୍ରବନ୍ଧରେ ଅନ୍ନଦାଶଙ୍କର ଜଣେ ତୀକ୍ଷ୍ଣଧୀ ବୁଦ୍ଧିଜୀବୀର ପରିଚୟ ଦିଅନ୍ତି । ମାନସିଂହଙ୍କ ସମସାମୟିକ ଲେଖକମାନେ ହୁଏତ ମୌଳିକ ସାହିତ୍ୟ ସୃଷ୍ଟିରେ ବେଶୀ ଶ୍ରମ, ସମୟ ବିନିଯୋଗ କରିଛନ୍ତି କିମ୍ବା ଭାବାତ୍ମକ ମୌଳିକ ଅଳ୍ପ କେତେକ ପ୍ରବନ୍ଧ ଲେଖିବାରେ ନିଜକୁ ନିୟୋଜିତ କରିଛନ୍ତି କିନ୍ତୁ ତର୍କ ବିଚାର ଭିତରକୁ ଖୁବ୍ ବେଶୀ ପ୍ରବେଶ କରି ନାହାନ୍ତି, ଯାହା ଫଳରେ ଓଡ଼ିଆ ଭାଷାର ବୌଦ୍ଧିକ ସ୍ତର ଉନ୍ନତ ହୋଇପାରି ନାହିଁ । ମାନସିଂହଙ୍କ ପରବର୍ତ୍ତୀ ଚିତ୍ତରଞ୍ଜନ, ଗୋଲୋକ ବିହାରୀ, ବୈଦ୍ୟନାଥ ମିଶ୍ର ତଥା ସୂର୍ଯ୍ୟକାନ୍ତ ଦାସ ପରିଚ୍ଛନ୍ନ ଭାଷାରେ ଜ୍ଞାନରାଜ୍ୟର ବିଭିନ୍ନ ମୌଳ ସମସ୍ୟା ଓଡ଼ିଆ ଜାତି ଆଗରେ ଉପସ୍ଥାପିତ କରି ଅଛନ୍ତି । କିନ୍ତୁ ଚିତ୍ତରଞ୍ଜନ ଓ ଗୋଲୋକ ବିହାରୀଙ୍କ ବ୍ୟତୀତ କାହାରି ବ୍ୟକ୍ତିତ୍ୱର ଅନନ୍ୟତା ପ୍ରବନ୍ଧ ବା ରଚନାରେ ପରିଲକ୍ଷିତ ହୁଏ ନାହିଁ । ବସ୍ତୁବାଦୀ ବିଚାର, ନିର୍ମୋହ ତର୍କ ଓ ଜ୍ଞାନ ରାଜ୍ୟର ବିଭିନ୍ନ ପରିସୀମା ସହ ଘନିଷ୍ଠ ସମ୍ପର୍କ ମାନସିଂହଙ୍କ ସମସାମୟିକ କୌଣସି ବୁଦ୍ଧିଜୀବୀଙ୍କର ଥିଲା ଭଳି ମନେ ହୁଏ ନାହିଁ । ତେଣୁ ତାଙ୍କୁ ଭାବବାଦୀ ରୋମାଣ୍ଟିକ୍ ବା କିଛିଟା ବିଶୃଙ୍ଖଳ ଚିନ୍ତାଧାରାର ଲୋକ କହିଲେ ବି, ଆମକୁ ସ୍ୱୀକାର କରିବାକୁ ହୁଏ, ଓଡ଼ିଆ ଜାତି ସମ୍ମୁଖରେ ଯେତେଜଣଙ୍କ ବିଚାରଧାରା ଉପସ୍ଥାପିତ ସେମାନଙ୍କ ମଧ୍ୟରେ ମାନସିଂହଙ୍କ ବିଚାରଧାରା ବୈଚିତ୍ର୍ୟ, ମୌଳିକତା ଓ ବୈଶିଷ୍ଟ୍ୟ ଦିଗରୁ ଅନୁପମ ।

( ଦୁଇ)

ମନନର ଦୁଇଟି ସ୍ତର ରହିଛି, ଅବବୋଧ ଓ ବିଗ୍ରହ । ବିଗ୍ରହହୀନ ଅବବୋଧ ମନନକୁ ପଙ୍ଗୁ ଚଳତ୍‌ଶକ୍ତିହୀନ ଏବଂ ଅନ୍ଧ ଭକ୍ତିକତାରେ ରୂପାନ୍ତରିତ କରେ । ତେଣୁ ମନନର ବାସ୍ତବ ପରିପ୍ରକାଶ ବିଗ୍ରହବୋଧରେ । ବିଗ୍ରହ କରିବାର ଶକ୍ତି ମଣିଷର ଯୁକ୍ତିଶୀଳ ମନୋବୃତ୍ତି ଓ ନିଜର ବ୍ୟକ୍ତିସତ୍ତାର ସଚେତନ ସ୍ୱୀକୃତି ଉପରେ ନିର୍ଭର କରେ । ତେଣୁ ଅବବୋଧର ଇତିହାସ ଯେତେ ଦୀର୍ଘ, ବିଗ୍ରହର ଇତିହାସ ସେଇ ପରିମାଣରେ ଦୀର୍ଘ ନୁହେଁ । ଇତିହାସରେ ଦେଖାଯାଏ ଯେଉଁ ସମାଜରେ ବ୍ୟକ୍ତି ସତ୍ତା ସ୍ୱୀକୃତ ଓ ପ୍ରତ୍ୟେକ ମଣିଷ ସ୍ୱତନ୍ତ୍ର ମଣିଷ ହିସାବରେ ସମଷ୍ଟିର ଅଂଶ ଭାବରେ ନୁହେଁ ବା ଦେବତ୍ୱର ଅବରୋହଣ ଭାବରେ ନୁହେଁ, ସେ ସେତିକି ସମ୍ମାନିତ, ସେଠି ଜ୍ଞାନ–ବିଜ୍ଞାନର ବିଭିନ୍ନ ଦିଗ ସମ୍ପର୍କରେ ବିଗ୍ରହ ପ୍ରକାଶ ପାଇଛି । ଇଉରୋପୀୟ ଇତିହାସରେ ପ୍ରାଚୀନ ଗ୍ରୀସ୍‌ର ନଗର ରାଷ୍ଟ୍ର ଏଥେନ୍‌ସ ଏହାର ଦୃଷ୍ଟାନ୍ତ । ପ୍ରାଚୀନ ଗ୍ରୀସ୍‌ରେ ଦାସତନ୍ତ୍ର ଥିଲେ ବି ବ୍ୟକ୍ତିର ସ୍ୱକୀୟତାକୁ, ତାର ବ୍ୟକ୍ତିତ୍ୱକୁ ସ୍ୱୀକାର କରାଯାଉଥିଲା । ତାହା ଫଳରେ ଆମେ ସକ୍ରେଟିସ୍—ପ୍ଲାଟୋ—ଆରିଷ୍ଟଟଲ୍, ଉସି ଡାଇଡ୍—ସଫୋକ୍ଲିସ୍—ଇଉରିପିଡିସ୍, ଏରିଷ୍ଟୋଫେନ୍ ହେରୋଡଟସ—ପିଥାଗୋରସଙ୍କ ପରି ଅସୀମ ବ୍ୟକ୍ତିତ୍ୱ ସମ୍ପନ୍ନ ମନୁଷ୍ୟମାନଙ୍କୁ ଦେଖିବୁ । ଇଟାଲିରେ ରେନେସାଁ ଏଭଳି ଏକ ବ୍ୟକ୍ତିତ୍ୱବୋଧର ଜାଗରଣ ଆଣିଥିଲା । ରେନେସାଁସର ବିଖ୍ୟାତ ଐତିହାସିକ ବୁର୍କହାର୍ଟ ବ୍ୟକ୍ତିର ପ୍ରାତିସ୍ୱିକତା ଓ ମାନବତ୍ୱର ଅଭିଯାନ ରେନେସାଁର ବିଶିଷ୍ଟତମ ଅବଦାନ ବୋଲି ପ୍ରତିପାଦନ କରିଛନ୍ତି ।(2) ଭାରତରେ ନାନା ସୀମିତତା ସତ୍ତ୍ୱେ ଊନବିଂଶ ଶତାବ୍ଦୀ ଏଭଳି ଏକ ନବଜାଗରଣର ଆଲୋକ ଆଣିଥିଲା । ଯାହାଫଳରେ ସମଗ୍ର ଭାରତବର୍ଷରେ ବିଗତ ଏକଶହ ବର୍ଷ ମଧ୍ୟରେ ଆମେ ବ୍ୟକ୍ତିତ୍ୱ ସମ୍ପନ୍ନ ଓ ମାନବିକ ମର୍ଯ୍ୟାଦାରେ ଅଭିଷିକ୍ତ ବହୁ ମନୀଷୀଙ୍କୁ ଦେଖିବାକୁ ପାଉ । ରାମମୋହନଙ୍କ ଠାରୁ ପଣ୍ଡିତ ନେହେରୁଙ୍କ ପର୍ଯ୍ୟନ୍ତ ସମସ୍ତେ ଏଇ ବ୍ୟକ୍ତିତ୍ୱ ଅଭିଯାନର ଜଣେ ଜଣେ ସେନାନୀ । ମାନସିଂହ ସଂପୃକ୍ତ କାଳ ମଧ୍ୟରେ ଜନ୍ମ ଗ୍ରହଣ କରିଥିଲେ । ରବୀନ୍ଦ୍ର, ଗୋପବନ୍ଧୁ, ମହାତ୍ମାଗାନ୍ଧି ପ୍ରମୁଖ ମନୀଷୀମାନଙ୍କ ବ୍ୟକ୍ତିତ୍ୱଦ୍ୱାରା ଉଦ୍‌ବୋଧିତ ହୋଇ ତାଙ୍କ ଭିତରେ ବ୍ୟକ୍ତିତ୍ୱବୋଧର ଜାଗରଣ ଘଟିଥିଲା । ମାନସିଂହଙ୍କ ବିଗ୍ରହଧାରାର ଉତ୍ସ ତାଙ୍କର ବ୍ୟକ୍ତିତ୍ୱ ଓ ତାଙ୍କର ବିଗ୍ରହଧାରାର ପ୍ରକାଶ ତାଙ୍କର ଗଦ୍ୟ ।

ଆଧୁନିକ ଓଡିଆ ସାହିତ୍ୟର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ନୂତନତ୍ୱ ହେଲା, ତାର ଗଦ୍ୟ ଭାଷାର ବିକାଶ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ସଂସ୍କୃତିର ସଂଯୋଗ ଓ ସଂଘର୍ଷ ଫଳରେ ଓଡିଆର ଚିନ୍ତା ତଥା ବିଗ୍ରହବୋଧ ଦେଶ କାଳକୁ କିଛିଟା ଅତିକ୍ରମ କରି ବୈଚିତ୍ର୍ୟ ଅର୍ଜନ କରିଛି । ଓଡିଶାର ଲେଖକ ମାନଙ୍କ ଅନୁଭବ ଓ କଳ୍ପନା କ୍ରମଶଃ ସୂକ୍ଷ୍ମତା ଓ ଅଭାବିତ ବର୍ଣ୍ଣାଳୀ ଲାଭ କରିଛି । ଚିନ୍ତାର ଜାଗରଣ ନଘଟିଲେ ଗଦ୍ୟ ପୁଷ୍ଟି ଲାଭ କରେନାହିଁ । ଅପର ପକ୍ଷରେ ସମୃଦ୍ଧ ଗଦ୍ୟ ରଚନା ବ୍ୟତିରେକେ ଗୋଟିଏ ଜାତିର ଚିନ୍ତାର ଦୈନ୍ୟ ବିମୋଚିତ ହୁଏନାହିଁ ।

## ।। ମାନସିଂହଙ୍କ ବିଗ୍ଗରଧାରା ।।

ମାନସିଂହଙ୍କ ଚିନ୍ତାକୁ ଓଡିଆ ଗଦ୍ୟ ରଚନା ବିକଶିତ କରିଛି ଓ ତାଙ୍କର ଚିନ୍ତାର ବିଶିଷ୍ଟତା ଓଡିଆ ଗଦ୍ୟର ସୀମାନ୍ତକୁ ପରିବ୍ୟାପ୍ତ କରିଛି । ମାନସିଂହଙ୍କ ବିଗ୍ଗରଧାରା ଆଲୋଚନା କଲାବେଳେ ଗଦ୍ୟଶିଳ୍ପୀ ମାନସିଂହ ଅଲକ୍ଷ୍ୟରେ ଆମର ବିଗ୍ଗର କ୍ଷେତ୍ରକୁ ପଶି ଆସନ୍ତି । ଚିନ୍ତା ଯେଉଳି ପ୍ରାଥମିକ ଭାବରେ ନିତି ଦିନିଆ ସମସ୍ୟା ସମାଧାନର ଅସ୍ତ୍ର, ଦୈନନ୍ଦିନ କାର୍ଯ୍ୟର ଦିଗ୍‌ଦର୍ଶକ, କାର୍ଯ୍ୟୋଦ୍ଧାରର ହତିଆର, ଗଦ୍ୟଭାଷା ମଧ୍ୟ ସେହିଭଳି ପ୍ରାଥମିକ ଭାବେ ଆମର ଦୈନନ୍ଦିନ କାର୍ଯ୍ୟସହ ସଂଯୁକ୍ତ, ଆମର କ୍ରିୟାଶୀଳ ମନର ପ୍ରକାଶ । ମନନର ଅଭିବୃଦ୍ଧି ନ ଘଟିଲେ ମଣିଷ ଯେଉଳି ତାର ପ୍ରାତ୍ୟହିକତାର ଉର୍ଦ୍ଧ୍ୱକୁ ଉଠିପାରେ ନାହିଁ, ନିଜ ଭିତରର ବିଶିଷ୍ଟତା ଓ ସମ୍ଭାବନାକୁ ସେ ଆବିଷ୍କାର କରିପାରେ ନାହିଁ, ତାହାମଧ୍ୟ ଘଟେ ଗଦ୍ୟର କ୍ଷେତ୍ରରେ । ଗଦ୍ୟ ଯେଉଁଠି ଉଦ୍ଦେଶ୍ୟହୀନ, ସେଠାରେ ତାହା ଅନାବଶ୍ୟକ ବାକ୍ ଗୁଡୁରୀ, ଅନ୍ତସାରଶୂନ୍ୟତା ପାଇଁ ଦୁର୍ବଳ । କର୍ମଜୀବନର ବୈଚିତ୍ର୍ୟ ଓ ବିକାଶ ମଣିଷର ଅନୁଭୂତିକୁ କେବଳ ପରିବ୍ୟାପ୍ତ କରେ ନାହିଁ, ତାର ଚିନ୍ତାକୁ ମାର୍ଜିତ ଓ ଶାଣିତ କରେ । ଓଡିଶାର ଚିନ୍ତାଜୀବନ ସଂକୁଚିତ, ତାର କର୍ମକ୍ଷେତ୍ର ସୀମିତ । ସେଇଥିପାଇଁ କଳ୍ପନାଲୋକ ମଧ୍ୟ ଦୀନ, ଓଡିଆ ଗଦ୍ୟର ଧାରଣ ଶକ୍ତି ଦୁର୍ବଳ । ବାହ୍ୟ ଔଜଲ୍ୟ ସତ୍ତ୍ୱେ ତାର ଦୃଢତା ଅତ୍ୟନ୍ତ କମ୍ । ମାନସିଂହଙ୍କ ଗଦ୍ୟ ରଚନା ଆଲୋଚନା କଲାବେଳେ ତାଙ୍କ ଗଦ୍ୟର ଯେଉଁ ବିଧୂନତା, ବୈଚିତ୍ର୍ୟ ହୀନତା ଓ କେଳେବେଳେ ବାକ୍ ବାହୁଲ୍ୟ ଦେଖିବାକୁ ମିଳେ, ତାହା ତାଙ୍କର କର୍ମ ଜୀବନ ସହ ଘନିଷ୍ଠଭାବେ ସଂଶ୍ଳିଷ୍ଟ ।

ମାନସିଂହ ଜୀବନର ଆରମ୍ଭରୁ ନିଜର ସ୍ୱାତନ୍ତ୍ର୍ୟ ଓ ବ୍ୟକ୍ତିତ୍ୱ ସମ୍ପର୍କରେ ସଚେତନ ଥିଲେ । 'ଧୂପ', 'ହେମଶସ୍ୟ' ଓ 'ହେମପୁଷ୍ପ'ର କବିତା ଗୁଡିକରେ ମାନସିଂହଙ୍କର ଏହି ଚିନ୍ତାମାନସର ସ୍ୱାକ୍ଷର ସ୍ପଷ୍ଟ । ପ୍ରେମ-ପ୍ରଣୟ, ଦେଶପ୍ରୀତି, ମମତା, ରୂପାନୁଭବ, ମଣିଷ ଜୀବନର ଅତି ସାଧାରଣ ଘଟଣା । କିନ୍ତୁ ଅତି ସାଧାରଣ ଘଟଣାର ପଛଆଡେ ଥିବା ବ୍ୟକ୍ତିର ବିଶିଷ୍ଟତା ପ୍ରତ୍ୟେକ ଅନୁଭବକୁ ସ୍ୱତନ୍ତ୍ର ଗୁରିତ୍ୱ ମହିମାରେ ଉଦ୍‌ଭାସିତ କରିଥାଏ । ସେଇଥିପାଇଁ ଅଜସ୍ରଲୋକ ମହାନଦୀରେ ଜ୍ୟୋତ୍ସ୍ନାବିହାର କରିଥିଲେ ବି ମାନସିଂହଙ୍କର ଜ୍ୟୋତ୍ସ୍ନାବିହାର ଏକକ । ବହୁ ପ୍ରେମିକ ସହକାର ତରୁତଳେ ପ୍ରେମଲୀଳା ରଚନା କରିଥିଲେ ବି ମାନସିଂହଙ୍କର ପ୍ରେମ ଅନନ୍ୟ । ବ୍ୟକ୍ତିର ବ୍ୟକ୍ତିତ୍ୱ ଏକ ସାଂସ୍କୃତିକ ପରିଧି ଭିତରେ ବିକଶିତ ହୁଏ । ବ୍ୟକ୍ତି ଓ ସମାଜ ଏକ ସାଂସ୍କୃତିକ ପରିଧି ଭିତରେ ପରସ୍ପରକୁ ପୁଷ୍ଟ କରିବାକୁ ଚେଷ୍ଟା କରନ୍ତି । ସମାଜ ତାର ପ୍ରତିଷ୍ଠିତ ମୂଲ୍ୟାବଳୀକୁ ଆରୋପକରି ବ୍ୟକ୍ତିର ଚରିତ୍ର ଗଠନ କରେ, ବ୍ୟକ୍ତି ମଧ୍ୟ ସମାଜ ଭିତରେ ଥିବା ଦ୍ୱନ୍ଦ୍ୱକୁ ପ୍ରତ୍ୟକ୍ଷକରି କୌଣସି ଏକ ଶକ୍ତିର ସାହାଯ୍ୟରେ ନିଜ ସମାଜକୁ ଅତିକ୍ରମ କରିବାକୁ କରିବାକୁ ଗ୍ଭହେଁ ।(3) ମାନସିଂହ ଯେଉଁ ଗ୍ରାମୀଣ ସମାଜରେ ଜନ୍ମ ହୋଇଥିଲେ, ସେଇ ସମାଜ ମଣିଷକୁ ସମାଜ-ସଂଗଠନର ଏକ ଅଂଶବିଶେଷ କରିବାରେ ଯେତିକି ଅଗ୍ରହାନ୍ୱିତ, ତାର ବ୍ୟକ୍ତିତ୍ୱକୁ ସ୍ୱୀକାର କରିବାରେ ସେତିକି ପରାଙ୍ମୁଖ । କିନ୍ତୁ ଇଂରାଜୀ ଶିକ୍ଷାପ୍ରତି ମୋହ ଓ ଆଧୁନିକ ଜୀବନପ୍ରତି ଆକର୍ଷଣ ସୁଦୂର ନନ୍ଦଳା ଗ୍ରାମର ଏକ ସଂଖ୍ୟାଲଘୁ ଜନଗୋଷ୍ଠୀ ମନ ଭିତରେ ଆସିଥିଲା, ଯେଉଁମାନଙ୍କଠାରୁ ମାନସିଂହ ଆଧୁନିକ ହେବାର ପ୍ରେରଣା ଲାଭ କରିଥିଲେ ।

## ॥ ମାନସିଂହଙ୍କ ବିଗ୍ରହଧାରା ॥

୧୨୩୦ ମସିହା ପର୍ଯ୍ୟନ୍ତ ମାନସିଂହ ମୁଖ୍ୟତଃ ତାଙ୍କର ଛାତ୍ର ଜୀବନ ଓ ଅଳ୍ପ କେତେବର୍ଷର ଉଚ୍ଚାଭିଳାଷୀ ଶିକ୍ଷକର ଜୀବନ ଅତିବାହିତ କରିଥିଲେ । ସଂପୃକ୍ତ କାଳରେ ତାଙ୍କ ଭାବ ଜୀବନର ଯେଉଁ ଗଭୀରତା ରହିଛି, କର୍ମ ଜୀବନରେ ସେ ପ୍ରକାର ବୈଶିଷ୍ଟ୍ୟ ନାହିଁ । ତା ସତ୍ତ୍ୱେ ସଂପୃକ୍ତ କାଳରେ ତାଙ୍କ ବ୍ୟକ୍ତିତ୍ୱର କେତେ ଗୁଡ଼ିଏ ବିଶିଷ୍ଟ ଦିଗ ତାଙ୍କର ଲେଖାବଳୀ ଓ ଜୀବନର ଘଟଣା ବିଶେଷରୁ ଅଭିବ୍ୟକ୍ତ ହୋଇ ପଡିଥିଲା । ସେ ଗୁଡିକ ହେଲା: ଅପାରମ୍ପରିକ ବସ୍ତୁ ବା ଘଟଣାକୁ ଏକାନ୍ତ ଆପଣାର କରି ବିଗ୍ରହ କରିବାର ଇଚ୍ଛା ଓ ପ୍ରତ୍ୟେକ କ୍ଷେତ୍ରରେ ନିଜର ବିଶିଷ୍ଟତାର ଚିହ୍ନ ଛାଡିଯିବାର ଆଗ୍ରହ ।

୧୨୩୦ ମସିହା ପରେ ମାନସିଂହଙ୍କ ଦୃଷ୍ଟି ତଥା କର୍ମଜୀବନ ପରିବ୍ୟାପ୍ତ ହୋଇଛି । ନିଜର ସୀମିତ ପରିବେଶ ମଧ୍ୟରେ ଦେଖିଥିବା ସ୍ୱପ୍ନକୁ ବାସ୍ତବ କରିବାର ସମୟ ତାଙ୍କ ପାଇଁ ଆସିଛି । ମଣିଷ ଯେତେବେଳେ ତରୁଣ ଥାଏ ତାରସୀମିତ ଅନୁଭୂତିକୁ ପାଥେୟ କରି ସେ ନିରବଧି ପୃଥ୍ୱୀ ଓ ବିରାଟ ବିଶ୍ୱ ଜଗତର ସଂକୃତ ରୂପ କଳ୍ପନା ମଧ୍ୟରେ ଆଣିଥାଏ । ମାନସିଂହ ପ୍ରାଥମିକ ଜୀବନରେ ଯେଉଁ ପୃଥିବୀର କଳ୍ପନା କରିଥିଲେ ,ତାଙ୍କର ବାସ୍ତବ ଜୀବନରେ ସେ ପୃଥିବୀ ପାଖରେ ପହଁଚି ପାରି ନାହାନ୍ତି । ଯେଉଁ ବ୍ୟକ୍ତି ସଂସ୍କୃତି ପିଠିରେ ପରାଦେଶ ଅଗ୍ରଗମନ କରୁଥାଏ, ସେ ଆପଣାର ସଂସ୍କୃତି ସହିତ ଜଡିତ ଥିଲେବି, ତାକୁ ଶ୍ରଦ୍ଧା କରୁଥିଲେ ବି, ପଛକୁ ଫେରି ଚାହିଁବାକୁ ଇଚ୍ଛା କରେ ନାହିଁ ବା ତା ଭିତରେ ଭଡି ଯିବାକୁ ଆବଶ୍ୟକ ମନେ କରେ ନାହିଁ । ପ୍ରାଥମିକ ଜୀବନରେ ବିରାଟ ଭୂମା, ଅପରିଚିତ ମାନବ ସନ୍ତାନ, ରୂପ ସୌନ୍ଦର୍ଯ୍ୟର ଅଶେଷ ପ୍ରକାଶ ମାନସିଂହଙ୍କୁ ମୁଗ୍ଧ କରିଥିଲା । ଏ ସବୁକୁ ଗ୍ରହଣ କରିବା ପାଇଁ ନିଜ ବ୍ୟକ୍ତିତ୍ୱ ଭିତରେ ସେ ସେହି ପ୍ରକାର ଶକ୍ତିର ସଞ୍ଚାର କରିଥିଲେ । ଅତୀତ ବି ତାଙ୍କୁ ଆପଣାର ମନେ ହୋଇଥିଲା, କିନ୍ତୁ ତା ପାଖରେ ସେ ଜଡିଯାଇ ନଥିଲେ । ମୁଗ୍ଧ ଦୃଷ୍ଟି ସେଠି ସଂକୀର୍ଣ୍ଣ ଦୃଷ୍ଟିରେ ପରିଣତ ହୋଇ ନଥିଲା । କିନ୍ତୁ ୧୨୩୦ ପରେ ତାଙ୍କ କର୍ମ ଜୀବନରେ ପରିବ୍ୟାପ୍ତି ଘଟିଲା ସତ୍ୟ କିନ୍ତୁ ଈପ୍ସିତ କାମନା ସମ୍ଭବ ନ ହେବାରୁ ତାଙ୍କର ବ୍ୟକ୍ତିତ୍ୱ ପଶ୍ଚାତ୍‌ଗାମୀ ହେଲା । ବର୍ଣ୍ଣ, ଜାତି, ଧର୍ମର ସଂକୀର୍ଣ୍ଣ ଗଣ୍ଡି ଭିତରୁ କ୍ରମଶଃ ମୁକ୍ତି ପାଉଥିବା ପ୍ରୟାସ କରୁଥିବା ଗୋଟିଏ ବ୍ୟକ୍ତିମାନସ ନିଜର ଅଜ୍ଞାତରେ ସେହି ବର୍ଣ୍ଣ, ଜାତି ଓ ଧର୍ମ ଭିତରେ ଆତ୍ମ ଗୋପନ କରିବାକୁ ଚେଷ୍ଟା କଲା । ମାନସିଂହଙ୍କ ବିଗ୍ରହଧାରା ଆଲୋଚନା କଲାବେଳେ ଦେଖାଯାଏ ଯେ, ବୃଥା ସଂକୀର୍ଣ୍ଣ ବର୍ଣ୍ଣ ଅଭିମାନ, ଓଡିଆ ଜାତୀୟତା ଓ ଧାର୍ମିକ ବିଗ୍ରହର ସଂକୀର୍ଣ୍ଣତାରୁ ତାଙ୍କ ବିଗ୍ରହ ମୁକ୍ତି ପାଇ ନାହିଁ । ତାହା ତାଙ୍କର ବିଗ୍ରହବୋଧର ଦୁର୍ବଳତା ନୁହେଁ ବ୍ୟକ୍ତିତ୍ୱର ଦୁର୍ବଳତା , କେତେକାଂଶରେ ଓଡିଆ ସଂସ୍କୃତିର 'ବି ଦୁର୍ବଳତା ।' ପ୍ରତ୍ୟେକ ବ୍ୟକ୍ତିତ୍ୱ ଯେଉଁଳି ଅନ୍ୟଠାରୁ ନିଜର ସ୍ୱାତନ୍ତ୍ର୍ୟ ପ୍ରକାଶ କରେ ଏବଂ ସେଇଥିରେ ତାର ଯାଥାର୍ଥ୍ୟ, ଠିକ୍ ସେଇ ଭଳି ଅନ୍ୟ ବ୍ୟକ୍ତିତ୍ୱ ପ୍ରତି ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନରେ ତାର ବିକାଶ ସମ୍ଭବ । ଭକ୍ତି ଯେଉଁଳି ଅନ୍ଧ, ବ୍ୟକ୍ତିତ୍ୱ ବିକାଶ ପଥରେ ବାଧା ସ୍ୱରୂପ ଠିକ୍ ସେଇଭଳି ଶ୍ରଦ୍ଧାର ଅଭାବ ମଣିଷର ବ୍ୟକ୍ତିତ୍ୱକୁ ନିମ୍ନଗାମୀ, ସଂକୀର୍ଣ୍ଣ, ଅସହିଷ୍ଣୁ କରିବା ପାଇଁ ବାଧ୍ୟ । ପୂର୍ବସୂରିମାନଙ୍କ ପ୍ରତି ମାନସିଂହଙ୍କ ଶ୍ରଦ୍ଧା ଓ ସେମାନଙ୍କର ବ୍ୟକ୍ତିତ୍ୱ ସହ ମାନସିଂହଙ୍କ ବ୍ୟକ୍ତିତ୍ୱର ତୁଳନାତ୍ମକ

ଅଧ୍ୟୟନ କରି ତାଙ୍କ ବ୍ୟକ୍ତିତ୍ୱର ବିଶିଷ୍ଟତମ ଦିଗ ଉପରେ ଆଲୋଚନା କରାଯାଇ ପାରେ ।

ମାନସିଂହଙ୍କ ପୂର୍ବରୁ ଓଡିଶାର ବୌଦ୍ଧିକ ଜୀବନର ଇତିହାସରେ ଗୌରୀଶଙ୍କର, ଫକୀରମୋହନ, ମଧୁସୂଦନ ଦାସ, ବିଚିତ୍ରାନନ୍ଦ ଦାସ, ରାଧାନାଥ ରାୟ, ମଧୁସୂଦନ ରାଓ, ଗଙ୍ଗାଧର ମେହେର, ନନ୍ଦଧର ଦେବ, ସତ୍ୟବାଦୀର ବରେଣ୍ୟ ଶିକ୍ଷକ ବୃନ୍ଦ, ମୋହିନୀମୋହନ, ଗୋପାଳଚନ୍ଦ୍ର ପ୍ରହରାଜ, ବିଶ୍ୱନାଥ କର ଓ ନୀଳମଣି ବିଦ୍ୟାରତ୍ନ ପ୍ରମୁଖ ବହୁ ବ୍ୟକ୍ତିତ୍ୱ ସଂପନ୍ନ ମଣିଷ ଆବିର୍ଭୂତ ହୋଇଥିଲେ । ଏମାନଙ୍କ ଭିତରୁ ଅଧିକାଂଶଙ୍କୁ ମାନସିଂହ ତାଙ୍କର ଶ୍ରଦ୍ଧା ନିବେଦନ କରିଛନ୍ତି ଓ ପ୍ରତ୍ୟେକଙ୍କ ସଂପର୍କରେ ତାଙ୍କର ଏକ ବିତର୍କିତ ଦୃଷ୍ଟିଭଙ୍ଗୀ ବି ରହିଛି । ଏହି ବୁଦ୍ଧିଜୀବୀମାନଙ୍କ ଭିତରେ ଚିନ୍ତାର ଅନନ୍ୟତା ଓ କର୍ମଜୀବନର ବୈଚିତ୍ର୍ୟ ଦେଖିଛନ୍ତି । ନିଜର ମତ ପ୍ରକାଶରେ ଅକୁତୋଭୟତା ପାଇଁ ଗୌରୀ ଶଙ୍କର, ଫକୀରମୋହନ, ବିଶ୍ୱନାଥକର, ନୀଳମଣି ବିଦ୍ୟାରତ୍ନ, ନନ୍ଦଧର ଦେବ ଓ ମୋହିନୀମୋହନ ସେନାପତି, ନୀଳକଣ୍ଠ ଦାସ ପ୍ରମୁଖ ଦାବୀ କରନ୍ତି । ମାନସିଂହ ନନ୍ଦଧର ଦେବଙ୍କୁ ସମ୍ମାନ ଦେଉଛନ୍ତି, ବିଶ୍ୱନାଥ କର ଓ ନୀଳମଣି ବିଦ୍ୟାରତ୍ନଙ୍କୁ ଶ୍ରଦ୍ଧା ନିବେଦନ କରିଛନ୍ତି । ସ୍ୱାଧୀନ ଚିନ୍ତାନାୟକ ଭାବରେ ନନ୍ଦଧର ଦେବ, ଫକୀରମୋହନ ଓ ମଧୁସୂଦନ ଦାସଙ୍କୁ ଆଧୁନିକତମ ତଥା ସବୁଠାରୁ ବିଚକ୍ଷଣ ମେଧା-ସଂପନ୍ନ ଓଡିଆ ଭାବରେ ସେ ପ୍ରତିଷ୍ଠା କରିଛନ୍ତି । 'କୋଣାର୍କେ'ର କବି ନୀଳକଣ୍ଠଙ୍କର ମୂଲ୍ୟନାହିଁ ବୋଲି ଅତି ସ୍ପଷ୍ଟ ଭାଷାରେ ବ୍ୟକ୍ତ କରିଛନ୍ତି । ଗୌରୀଶଙ୍କର, ବିଚିତ୍ରାନନ୍ଦ ଓ ମୋହିନୀମୋହନଙ୍କ ଆଲୋଚନା କ୍ଷେତ୍ରରେ ତାଙ୍କର ସେହିଭଳି ପୂରୋଦୃଷ୍ଟି ପ୍ରକାଶ ପାଇନାହିଁ । ମାନସିଂହଙ୍କର ବ୍ୟକ୍ତିତ୍ୱର ବ୍ୟାପ୍ତି ଓ ସୀମିତତାକୁ ଏହା ପ୍ରତୀତ କରେ । ମାନସିଂହଙ୍କ ବ୍ୟକ୍ତିତ୍ୱ ସମକାଳୀନ ଓଡିଶାର ଏକ ବିତର୍କିତ ବ୍ୟକ୍ତିତ୍ୱ ଏଥିରେ ସଂଦେହ ନାହିଁ । ତାର କାରଣ ସେ ପାରମ୍ପାରିକ ଗତ ଗୁଳାରେ ଚାଲିବାକୁ ଇଚ୍ଛାକରି ନାହାନ୍ତି କିନ୍ତୁ ନୂଆ ପଥବି ସେ ପ୍ରସ୍ତୁତ କରି ନାହାନ୍ତି । ତାଙ୍କ ବିଚାରଧାରା ସଂଶୟ ସଂଦେହରେ ପୀଡିତ, କିନ୍ତୁ ନୂଆପଥ ଦେଖାଇବାରେ ଉଜ୍ଜ୍ୱଳ ନୁହେଁ । ତା ସତ୍ତ୍ୱେ ସ୍ୱୀକାର କରିବାକୁ ପଡିବ ମାନସିଂହ ଗତ ୀହେ ବର୍ଷ ଭିତରେ ଜନ୍ମ ନେଇଥିବା ପ୍ରମୁଖତମ ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ଅନ୍ୟତମ, ଜଣେ ଅନନ୍ୟ ବ୍ୟକ୍ତିତ୍ୱ ସଂପନ୍ନ ଓଡିଆ ଗୌରୀଶଙ୍କର, ଫକୀରମୋହନ ସେନାପତିଙ୍କ ଭଳି ଚିନ୍ତାନାୟକମାନଙ୍କ ପରି ଆଗାମୀଯୁଗ ପାଇଁ ନିଜର ବିଚାରବୋଧ ଭିତରେଦେଇ ସେ କିଛି ନୂତନତ୍ୱ ଛାଡି ଯାଉଛନ୍ତି ।

——————00000——————

ସୂ ଚ ନା:—

1: ମାନସିଂହ–ଓଡିଆ ସାହିତ୍ୟର ଇତିହାସ(1976) ଚତୁର୍ଦ୍ଦଶ ଅଧ୍ୟାୟ, ପୃ.304,

2: Burckhardt, Jacob-The Civilization of the Renaissance in Italy(See Chapter Rise of individual, London 1945)

3: Ralph, Linton- The Cultural Background of personality PP-66-67 Routledge and Kegan Paul.Ltd London(1968)

## ପ୍ରାଥମିକ ଉପାଦାନ-ପଞ୍ଜି (କ)

ଲେଖକ- ଡକ୍ଟର ମାୟାଧର ମାନସିଂହ(1905-1973)

1931 'ଧୂପ' ପ୍ରକାଶକ- ପ୍ରଗତି ସଂଘ, କଟକ ।

1932 'ପୂଜାରିଣୀ'(ନାଟିକା) ପ୍ର-ସବୁଜ ସାହିତ୍ୟ ସମିତି, କଟକ ।

1933 'ହେମଶସ୍ୟ'(କବିତା) ପ୍ର- ପ୍ରଗତି ସଂଘ, କଟକ ।

1935 'ହେମପୁଷ୍ପ'(କବିତା) ପ୍ର- ପ୍ରଗତି ସଂଘ, କଟକ ।

1939 ନଷ୍ଟନୀଡ଼(ନାଟକ) ପ୍ର-ନବଭାରତ ଗ୍ରନ୍ଥାଳୟ, ଚାନ୍ଦିନୀଚୌକ କଟକ,

1946 ଅକ୍ଷତ(କବିତା) ପ୍ର-ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ ।

1947 କମଳାୟନ (କାବ୍ୟ) ପ୍ର-ଭାରତୀ ବିହାର କଟକ ।

1947 ମାଟିବାଣୀ(କବିତା) ପ୍ର-ଭାରତୀବିହାର, କଟକ ।

1947, 1951, ଜେମା(କାବ୍ୟ) ପ୍ର-ନିଉଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ ।

1947 ଜୀବନଚିତା(କବିତା) ପ୍ର-ଷ୍ଟୁଡେଣ୍ଟସ ଷ୍ଟୋର, ବ୍ରହ୍ମପୁର ।

1947 ସାହିତ୍ୟ ପ୍ରଭା(ପାଠ୍ୟପୁସ୍ତକ)ପ୍ର-କଟକ ଟ୍ରେଡିଂ କମ୍ପାନୀ, କଟକ ।

1947 ଗଳ୍ପ ମଞ୍ଜରୀ(ପାଠ୍ୟପୁସ୍ତକ) ପ୍ର-କଟକ ଟ୍ରେଡିଂ କମ୍ପାନୀ, କଟକ ।

1948 କବି ଓ କବିତା(ସମାଲୋଚନା)-ଭାରତୀ ବିହାର, କଟକ ।

1949, 1957, ଜୀବନ ପଥ(ପ୍ରବନ୍ଧ) ପ୍ର- ନିଉଷ୍ଟୁଡେଣ୍ଟସ ଷ୍ଟୋର, କଟକ ।

1950, ଗଦ୍ୟ ସଂଗ୍ରହ(ସଂ-ଶିବ ପ୍ରସାଦ ଦାଶ) କଟକ ଟ୍ରେଡିଂ କମ୍ପାନୀ , କଟକ ।

1951 ଓଡ଼ିଆ ସମାଜ ଓ ସାହିତ୍ୟ(ସମାଲୋଚନା) ଭାରତୀ ବିହାର , କଟକ ।

1951 ବୁଦ୍ଧ(ନାଟକ) ପ୍ର-ନିଉଷ୍ଟୁଡେଣ୍ଟସ ଷ୍ଟୋରର୍ସ ଲିଃ, କଟକ ।

1952 ସାହିତ୍ୟ ସୌରଭ(ସଂ-ରାମଚନ୍ଦ୍ର ମହାପାତ୍ର ଓ କାଶୀନାଥ ମିଶ୍ର)ଓଡ଼ିଶା ବୁକ୍ ଏମ୍ପୋରିଅମ୍,

1952 ନୂତନ ସାହିତ୍ୟ ସଂଗ୍ରହ(ସଂ-ଜୟକୃଷ୍ଣ ମିଶ୍ର ଓ ଶ୍ରୀଧର ଦାସ)ନିଉଷ୍ଟୁଡେଣ୍ଟସ ଷ୍ଟୋର, ବ୍ରହ୍ମପୁର ।

1953 ନାଗରିକ ପାଠମାଳା(ପାଠ୍ୟପୁସ୍ତକ), ଓଡ଼ିଶା ପବ୍ଲିସିଂ ହାଉସ, କଟକ ।

1953, 1957, ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ ପ୍ର-ନିଉଷ୍ଟୁଡେଣ୍ଟସ୍ ଷ୍ଟୋର, ବ୍ରହ୍ମପୁର ।

॥ ମାନସିଂହଙ୍କ ବିଗ୍ରହଧାରା ॥

1954, 1957 ଆଦର୍ଶ ଜୀବନୀମାଳା(ପାଠ୍ୟପୁସ୍ତକ) ପ୍ର-ଓଡିଶା ପବ୍ଲିସିଂ ହାଉସ, କଟକ ।
1955 ଓଡିଆ ଜ୍ଞାନକୋଷ(ନମୁନା ଖଣ୍ଡ) ପ୍ର-ନିଉଷ୍ଟୁଡେଣ୍ଟସ ଷ୍ଟୋର, କଟକ ।
1955 ଦୁର୍ଭିକ୍ଷ(ନାଟିକା) ପ୍ର- ନିଉଷ୍ଟୁଡେଣ୍ଟସ ଷ୍ଟୋରସ, କଟକ ।
1955, 1963, ମାନସିଂହ ଚୟନ(ପ୍ରଥମ ଖଣ୍ଡ)ପ୍ର- '' ''
1955, 1963, ମାନସିଂହ ଚୟନ(ଦ୍ୱିତୀୟ ଖଣ୍ଡ)ପ୍ର- '' ''
1955 ବାରବାଟୀ(ନାଟକ) ପ୍ର- '' ''
1956 ଗ୍ରାମୋନ୍ନତିର ରୋମାଞ୍ଚକର କାହାଣୀ(ଅନୁବାଦ) ''
1956, 1958, ଜୀବନୀ ଓ ପ୍ରବନ୍ଧ(ପ୍ରବନ୍ଧ) '' ''
1956 ଛୁରି(ସନେଟ ଶତକ) ପ୍ର- ଜନଶକ୍ତି, ପୁସ୍ତକାଳୟ, କଟକ ।
1957 ଅନ୍ୱେଷଣ(ଉପନ୍ୟାସ) ପ୍ର- କଟକ ପବ୍ଲିସିଂ ହାଉସ, କଟକ
1958, 1971, ମାଟିର ମହାକବି ସାରଳା ଦାସ, ପ୍ର-ଦାସ ବ୍ରଦର୍ସ, ବ୍ରହ୍ମପୁର ।
1959, 1967, ଅଥେଲୋ(ଅନୁବାଦ, ନାଟକ), ପ୍ର- ଦାସ ବ୍ରଦର୍ସ, ବ୍ରହ୍ମପୁର(ଜାତୀୟ ସାହିତ୍ୟ ଏକାଡେମୀ)
1960 ଶିକ୍ଷାର କି', କଣ ଓ କାହିଁକି ? ଦାସ ବ୍ରଦର୍ସ, ବ୍ରହ୍ମପୁର ।
1960 ପୂଜାରିଣୀ(ନାଟିକା) ପ୍ର- ନିଉଷ୍ଟୁଡେଣ୍ଟସ ଷ୍ଟୋରର୍ସ, ବ୍ରହ୍ମପୁର ।
1960 ସେ ଦିନର କବିତା ପ୍ର-ନିଉଷ୍ଟୁଡେଣ୍ଟସ ଷ୍ଟୋରର୍ସ, ବ୍ରହ୍ମପୁର ।
1961 ମହୀୟସୀ ନାରୀ(ସଂ-ହେମଲତା ମାନସିଂହ) ପ୍ର-କଟକ ପବ୍ଲିସିଂ ହାଉସ, କଟକ ।
1961 (ମୁଖବନ୍ଧ)ମାର ଗୀତିକା(ଅନୁବାଦ ଜାନକୀ ବଲ୍ଲଭ ମହାନ୍ତି)ପ୍ର-ରାଜହଂସ ସାହିତ୍ୟ ମନ୍ଦିର, କଟକ ।
1962 ମାନସିଂହ ଗ୍ରନ୍ଥାବଳୀ(ପ୍ରଥମ ଖଣ୍ଡ) ପ୍ର- ଗ୍ରନ୍ଥ ମନ୍ଦିର, କଟକ ।
1962 କମଳାୟନ(କାବ୍ୟ) ପ୍ର- ଆଲୋକ ସାହିତ୍ୟ ପ୍ରତିଷ୍ଠାନ, କଟକ ।
1962 ବ୍ରଜମାଧୁରୀ, ମୁଖବନ୍ଧ(ସ୍ୱର୍ଗତ ସତ୍ୟବାଦୀ ନାୟକ) ପ୍ର-ଗ୍ରନ୍ଥ ମନ୍ଦିର, କଟକ ।
1963 ପୁଷ୍ପିତା(ନାଟିକା) ପ୍ର- ନିଉଷ୍ଟୁଡେଣ୍ଟସ ଷ୍ଟୋରର୍ସ, ବ୍ରହ୍ମପୁର ।
1963 ସଂକ୍ଷିପ୍ତ ଓଡିଆ ଜ୍ଞାନକୋଷ(ସଂପାଦନା)ପ୍ର-ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର ।
1964 ସଂକ୍ଷିପ୍ତ ଓଡିଆ ଜ୍ଞାନକୋଷ(ସଂପାଦନା)ପ୍ର- ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର ।
1964 ମାନସିଂହ ଗ୍ରନ୍ଥାବଳୀ(ଦ୍ୱିତୀୟ ଖଣ୍ଡ) ପ୍ର- ଗ୍ରନ୍ଥ ମନ୍ଦିର କଟକ ।
1964 1980, ପଶ୍ଚିମ ପଥିକ(ଭ୍ରମଣ କାହାଣୀ) ପ୍ର-ନିଉଷ୍ଟୁଡେଣ୍ଟସ ଷ୍ଟୋରସ , ବ୍ରହ୍ମପୁର ।

| | |
|---|---|
| 1965 | ସଂକ୍ଷିପ୍ତ ଓଡିଆ ଜ୍ଞାନକୋଷ(ସମ୍ପାଦନା)—ତୃତୀୟ ଖଣ୍ଡ, ପ୍ର ଉତ୍କଳ ବିଶ୍ୱ ବିଦ୍ୟାଳୟ, ଭୁବନେଶ୍ୱର |
| 1965 | ଶିକ୍ଷାବିତର ଗାଥା(ଆତ୍ମଜୀବନୀ) ପ୍ର— ଓଡିଶା ବୁକ୍ଷ୍ଟୋରସ, କଟକ । |
| 1965 | ସାହିତ୍ୟ ପ୍ରସୂନ(ପାଠ୍ୟପୁସ୍ତକ—ସଂ—ଚିନ୍ତାମଣି ବେହେରା), ଦାସ ବ୍ରଦର୍ସ, ବ୍ରହ୍ମପୁର । |
| 1966 | ମହତବାଣୀ(ସଂକଳନ) ପ୍ର— ଜେ.ମହାପାତ୍ର ଏଣ୍ଡ କୋ, କଟକ । |
| 1966 | ଗୁରୁ ଗୋବିନ୍ଦ ସିଂହ(ଅନୁବାଦ) ପ୍ର—ଗୁରୁ ଗୋବିନ୍ଦସିଂହ ଫାଉଣ୍ଡେସନ, ଚଣ୍ଡିଗଡ, ପଞ୍ଜାବ । |
| 1967, 1976, | ଓଡିଆ ସାହିତ୍ୟର ଇତିହାସ, ପ୍ର— ଗ୍ରନ୍ଥ ମନ୍ଦିର, କଟକ । |
| 1969 | ଗୀତା ମହାତ୍ମ୍ୟ ପ୍ର—ଜେ.ମହାପାତ୍ର ଏଣ୍ଡ କୋ, କଟକ । |
| 1969 | ସାର୍ବଜନୀନ ଗୀତା(ପ୍ରଥମ ଖଣ୍ଡ) ,, |
| 1972 | ସରସ୍ୱତୀ ଫକୀରମୋହନ(ଜୀବନୀ) ପ୍ର—ଗ୍ରନ୍ଥ ମନ୍ଦିର, କଟକ । |
| 1973 | ଗୁରୁନାନକ ବାଣୀ(ଅନୁବାଦ) ପ୍ର. ନ୍ୟାସନାଲ ବୁକ୍ ଟ୍ରଷ୍ଟ ଅଫ ଇଣ୍ଡିଆ, ଦିଲ୍ଲୀ । |
| 1973 | ଓଡିଆ ସମାଜ ଓ ସାହିତ୍ୟ, ପ୍ର—ଗ୍ରନ୍ଥ ମନ୍ଦିର, କଟକ, |
| 1973 | କବି ଓ କବିତା(ସମାଲୋଚନା) ପ୍ର— ଗ୍ରନ୍ଥମନ୍ଦିର, କଟକ । |
| 1973 | ମାନସିଂହ ଗ୍ରନ୍ଥାବଳୀ(ତୃତୀୟ ଖଣ୍ଡ) ପ୍ର— ଗ୍ରନ୍ଥ ମନ୍ଦିର, କଟକ । |
| 1980 | ପଶ୍ଚିମ ପଥିକ(ଭ୍ରମଣ କାହାଣୀ), ପ୍ର— ଗ୍ରନ୍ଥ ମନ୍ଦିର, କଟକ । |
| 1981 | ସାର୍ବଜନୀନ ଗୀତା(ଦ୍ୱିତୀୟ ଖଣ୍ଡ) ପ୍ର— ଜେ.ମହାପାତ୍ର ଏଣ୍ଡ କୋ, କଟକ । |
| 1981 | ସାର୍ବଜନୀନ ଗୀତା(ତୃତୀୟ ଖଣ୍ଡ) ପ୍ର— ,, |

## ହିନ୍ଦି

| | |
|---|---|
| 1951 | ଭାରତୀୟ ବାଙ୍ମୟ, ପ୍ର—ରାଷ୍ଟ୍ରଭାଷା ପ୍ରଚାର ସମିତି, ୱାର୍ଦ୍ଧା |

## ପ୍ରାଥମିକ ଉପାଦାନ-ପଞ୍ଜି...(ଖ)

ପତ୍ର-ପତ୍ରିକା, ଡଃ ମାୟାଧର ମାନସିଂହଙ୍କ ରଚନା ଓ ମାନସିଂହଙ୍କ ସମ୍ପର୍କରେ ସୂଚନା ।

| | |
|---|---|
| ଆଲୋକ | 1/3, 2/1, 2/2, 2/3, |
| ଆରତି | 1/1, 1/2, 1/3, 1/4, 1/5, 1/6, 1/7, |
| ଆସନ୍ତା କାଲି | 10/2, 11/7, 1972 ପୂଜା ସଂଖ୍ୟା, |
| ଉତ୍କଳ ପ୍ରସଂଗ | 1969 ଜୁଲାଇ, ନବକଳେବର ବିଶେଷାଙ୍କ, |
| ଉତ୍କଳ ସାହିତ୍ୟ | 30/8, 30/10, 31/5, 31/8, 32/1, 32/3, 32/8, 32/10, 32/12, 33/2, 33/5, 33/7, 33/8, 35/3, |
| ଉତ୍କଳ ସାହିତ୍ୟ(ନୂତନ ପର୍ଯ୍ୟାୟ-1956) | 2/10, 11, 3/7, |
| ଉତ୍କଳ ସାହିତ୍ୟ(ନୂତନ ପର୍ଯ୍ୟାୟ-1973) | 1/1, 1/2, |
| ଉର୍ଜନା | 2/1, 2/2, 2/4, 2/5, 2/6, |
| ଉଦୟ | 1/2, |
| କଳିଂଗ | 1964, ଅକ୍ଟୋବର, 1968, ଜାନୁୟାରୀ, ବିଶେଷାଙ୍କ, |
| କୋଣାର୍କ | 3/1, 2, 27 ସଂଖ୍ୟା, |
| ଚତୁରଙ୍ଗ | 1/10, 2/5, |
| ଝଙ୍କାର | 1/12, ଏପ୍ରିଲ, ମେ, ଜୁନ୍, ଅଗଷ୍ଟ, ଡିସେମ୍ବର—1950, 2/2, 2/8, 2/9, 2/12, ଫେବ୍ରୁୟାରୀ, ଏପ୍ରିଲ-1951, 3/2, 3/6, 3/12, 4/1, 4/5, 4/6, 4/7, 5/2, 5/5, 5/6, 5/10, 6/1, 6/6, 6/9, 6/10, 8/1, 8/5, 9/1, 9/10, 10/10, 11/3, 12/1, 13/3, 13/12, 14/7, 15/12, 20/3, 20/4, 20/6, 23/11, 25/8, 25/9, 28/1, ମେ, 1972, |

ଡଗର 4/5, 5/19, 6/9, 7/12, 8/20, 9/12, 10/23, 11/46, 47, 12/15, 16, 17, 18, 13/8, 13/27, 14/1, 18/9, 19/1, 19/2, 19/5, 20/10, 11, 21/1, 21/4, 5, 21/7, 22/1, 22/2, 3, 22/4, 22/5, 22/6, 22/8, 23/1, 24/4, 24/10, 25/1, 25/2, 3, 25/8, 9, 26/2, 3, 27/11, 12, 28/3, 4, 28/5, 6, 47/2, ଏବଂ 1.8.48, 1.10.49, 6.10.49, 16.12.49, ସଂଖ୍ୟା,

ନବଜୀବନ 4/4, 5/10, 6/6, 6/10, 6/11, 6/12, 7/5, 7/9, 7/10, 7/11, 8/3, 4,

ନବଭାରତ 1/1, 1/5, 2/2, 2/6, 7, 2/8, 2/9, 2/10, 2/12, 3/4, 3/5, 4/1, 4/8, 5/ 2, 6/8,

ନବଭାରତ (ନୂତନ ପର୍ଯ୍ୟାୟ) 1/10, 2/11,

ନବରବି 2/10, 2/11, 3/1, 3/4, 3/6, 3/7, 3/9, 3/10, 3/12, 4/2, 4/5, 5/2, ମଇ, 1972, ଜୁଲାଇ, 1972, ନଭେମ୍ବର 1973,

ବନଫୁଲ 2/5,

ବିଚ୍ଛିନ୍ନ 1/1, 1/2,

ଯୁଗବୀଣା 3/1,

ରସଚକ୍ର 1/1, 1/2, 1/3, 1/4, 1/5, 1/6,

ଶଂଖ 1/1, 1/2, 1/3, 1/4, 1/5, 1/7, 1/9, 1/10, 1/11, 12, 2/1,

ସତ୍ୟବାଦୀ (ନବ ପର୍ଯ୍ୟାୟ) 1/8,

ସମାଜ (ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟା) 1968, 1970,

ସମାବେଶ ଏପ୍ରିଲ 1956,

ସହକାର 5/3, 5/7, 5/2, 8/12, 9/1, 9/2, 10/4, 10/9, 11/4, 11/5, 11/6, 11/8, 9, 12, 3, 12/7, 12/8, 12/12, 13/5, 13/7, 13/9, 13/10, 13/11, 13/12, 14/5, 14/10, 16/ 2, 16/4, 22/2, 23/1, 23/3, 23/10, 23/11, 26/9,

ସ୍ୱରାଜ୍ୟ 6.5.1971, ଓ 15.5.1971 ସଂଖ୍ୟା ।

1942 Citizen Education: Gopabandhu Sahitya Mandir, Cuttack.

1957 ContemporaryIndian Literature: Sahitya Akademy, New Delhi.

1957 Literature in Mouern Indian Language:
Fublidation Division, New Delhi.

1962 History Of Oriya Literature: Sahitya Akademy, New Delhi.

1968 Dream's in Education Orissa Books Store, Cuttack.

1969 Kalidas and Shakespear : MotilalBanarasidas, Delhi.

1971 Ripples Of the Mohanadi The Minorva Associate, Calcutta.

1971 The Saga of the land of Jagannath J.Mohapatra & Co. Cuttack.

1976 Fakirmohan Senapati Sahitya Akademi, New Delhi.

BY DR.MAYADHAR MANSINGH

*1.Revenshaw College Centenary Volume-1968

2. The Ravenshawvein -Volume-XLX-1969-70

3.Illustruted Weeklyof India -Volume-88, 06.8.1967.

4.The Mahabudhi-Volume-LXXVI-1968.

5.Orissa Review-Volume -XXV, No.12, 1969.

6.Illustroted Weekly of India -Volume -82.

7.Marg-Volume-XII, No.1

8.Marg Volume-XIII, No.2

1- Abram's, M.S. 1971-The Mirror and the Lamp"
Oxford University Press,Neuyork.

2- Briggs, M.S. 1947- Men of Taste,London

3- Burckhardt,J.- The Renaissance in Italy
(Tr,S.G.C. Middlemore)

4- Desai, A.R. - 1976- Social Background of Indian Nationalism.
Popular Prakashan, Bombay.

5- Dhar,N. 1973- Vedanta & Bengal Renaissance.
Minerva Associate Calcutta.

6-Durkheim, Emile.- The elementary forms of the Religious life.
Translated by J.W.Swain-Free Press,New Delhi.

7- History and Culture of Indian People- 1981
(Ed) R.C.Majumdar VOL-X
Bharatiya Vidya Bhawan, Bombay.

8- Krober ,A.L. 1967 - Anthropology
Oxford & IBH,New Delhi

9- Linton Ralf- 1947-The Cultural Background of Personality
Roulledge and Kegan Paul,London

10- Marx and Engels-1964- On Religion-Schoken Books,Neuyork

11- Mclean G.F.(ed) Man and Nature-1978 Oxford University
Press,Calcutta.

Cont......2

-2-

12- Mishra,B.B.- 1978 -Indian Middle Class-Oxford University Press
LONDON

13- Mohanty,Nevedita 1982-Oriya Nationalism-
Manohar,Delhi.

14- Ray,Raja Rammohan-1901-English Works
Sadharan Bramha Samaj,Calcutta.

15-Roy,M.N.-1951,56 -Reason,Romanticism and
Revolution Vol. I and II
Renaissance Publishers,Calcutta.

16- Russel, B- 1977 -Education and the Social Order.
Unwin Paperbacks, London.

17- Samal, J.K. - 1984- History of Education in Orissa
Punthi Pustak,Calcutta.

18- Selection from Gandhi, 1983 -Ed-BxxxxxxxRx
Duncan,R.Fontana,London

19- Sen, P.R.-1966- Western Influence in Bengali Literature
Academic Publisher,Calcutta.

20-Tripathy ,K. B.-1973- A Brief review of History of Oriya
Literature.Cuttack.
1972-A Brief History of Oriya Literature
Bijay Bookstore-Berhampur

ଆନୁଷଙ୍ଗିକ ଉପାଦାନ–ପଞ୍ଜି······(ଖ)     (ବଙ୍ଗଳା ପୁସ୍ତକ)

ଘୋଷ, ବିନୟ–     ୧୨୭୦– ବିଦ୍ୟାସାଗର ଓ ବାଙ୍ଗାଲୀ ସମାଜ ।
ଓରିଏଣ୍ଟ ଲଂମ୍ୟାନ, କଲିକତା,
୧୨୪୦– ଶିଳ୍ପ, ସଂସ୍କୃତି ଓ ସମାଜ (ଦ୍ୱିତୀୟ ସଂ)
ଅରୁଣା ପ୍ରକାଶନୀ, କଲିକତା,
ଚଟୋପାଧ୍ୟାୟ, ସୁଧାକର– ୧୨୬୭– ରବୀନ୍ଦ୍ରନାଥ ଓ ଆଧୁନିକ ଭାରତୀୟ ସାହିତ୍ୟ ।।
ଏ·ମୁଖାର୍ଜୀ ଏଣ୍ଡ କୋ, କଲିକତା ।
ଚୌଧୁରୀ, ପ୍ରବାସଜୀବନ– ୧୨୫୬–ରବୀନ୍ଦ୍ରନାଥେର ସୌନ୍ଦର୍ଯ୍ୟ ଦର୍ଶନ ।।
ଏ·ମୁଖାର୍ଜୀ ଏଣ୍ଡ କୋ:, କଲିକତା ।।
ଠାକୁର, ରବୀନ୍ଦ୍ରନାଥ—ରବୀନ୍ଦ୍ର ରଚନାବଳୀ (ଶତବାର୍ଷିକ ସଂସ୍କରଣ)
ଦତ୍ତ, ଭବତୋଷ,     –୧୨୪୩–ଚିନ୍ତାନାୟକ ବଙ୍କିମଚନ୍ଦ୍ର(ଦ୍ୱିତୀୟ ସଂ)
ଜ୍ୟାସିୟସ, କଲିକତା ।।
ପୋଦାର, ଅରବିନ୍ଦ—୧୨୬୧– ରବୀନ୍ଦ୍ର ମାନସ (ତୃତୀୟ ସଂସ୍କରଣ) ।। ଲେଖକ ସମବାୟ ସମିତି
କଲିକତା ।।
୧୨୭୫–ବଙ୍କିମ୍ ମାନସ(ତତୀୟ ସଂ) ଗ୍ରନ୍ଥ ବିତାନ, କଲିକତା ।
ମଜୁମ୍‌ଦାର, ମୋହିତଲାଲ–କବି ଶ୍ରୀମଧୁସୂଦନ (୧୨୭୫)–ବିଦ୍ୟୋଦୟ, କଲିକତା ।
ରାୟ, ନିହାର ରଞ୍ଜନ– ୧୨୩୬/୩୭, –କୃଷ୍ଟି, କଲଚର ଓ ସଂସ୍କୃତି ।। ଜିଜ୍ଞାସା, କଲିକତା ।।
ରାୟ, ଶିବ୍ ନାରାୟଣ—୧୨୭୩– କବିର ନିର୍ବାସନ ଓ ଅନ୍ୟାନ୍ୟ ଭାବନା– ପ୍ରକାଶ ଭବନ କଲିକତା,
ରାୟ, ସତ୍ୟେନ୍ଦ୍ରନାଥ—୧୨୪୮– ରବୀନ୍ଦ୍ରନାଥେର ବିଶ୍ୱାସେର ଜଗତ, ଗ୍ରନ୍ଥାଳୟ, ପ୍ରା: ଲି, କଲିକତା ।
୧୨୭୨–ସାହିତ୍ୟ ତତ୍ତ୍ୱେ ରବୀନ୍ଦ୍ରନାଥ ।। ''
୧୨୭୪–ସାହିତ୍ୟ ସମାଲୋଚନାୟେ ବଙ୍କିମଚନ୍ଦ୍ର ଓ ରବୀନ୍ଦ୍ରନାଥ? ''
ସେନ, ଅମୀୟକୁମାର—୧୨୪୭–ପ୍ରକୃତିର କବି ରବୀନ୍ଦ୍ରନାଥ, ବିଶ୍ୱଭାରତୀ ଗ୍ରନ୍ଥାଳୟ, କଲିକତା,
ସେନ, ସୁକୁମାର–୧୨୪୦– ସମାଜ ବିପ୍ଲବେ ସଂସ୍କୃତିର ପ୍ରଶ୍ନ–ଭାରତୀୟ ସମାଜ ।
ସି·କେ· ବାଗଚୀ ଏଣ୍ଡ କମ୍ପାନୀ, କଲିକତା,
ହାଲଦାର, ଗୋପାଲ–୧୨୬୫– ସଂସ୍କୃତିର ରୂପାନ୍ତର ।।
ଓରିଏଣ୍ଟ ବୁକ୍ କୋମ୍ପାନୀ, କଲିକତା ।।

ଆଗ୍ରୁର୍ଯ୍ୟ, ବୃନ୍ଦାବନ ଚନ୍ଦ୍ର–।୨୭୦–ସତ୍ୟବାଦୀ ଯୁଗ, ଦାସ ବବର୍ସ, ବ୍ରହ୍ମପୁର ।।

।୨୬୩–ଓଡିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ, (ପଂଚମ ସଂ), ଗ୍ରନ୍ଥ ମନ୍ଦିର, କଟକ ।

ଆନନ୍ଦ ବର୍ଦ୍ଧନ–।୨୬4–ଧ୍ୱନ୍ୟାଲୋକ–(ଅନୁବାଦ–ପଣ୍ଡିତ ବୁଳମଣି ମିଶ୍ର), ଓଡିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର ।

କର, ବିଶ୍ୱନାଥ—।୨5।—ବିବିଧ ପ୍ରବନ୍ଧ(ପଂଚମ ସଂ), କଟକ ।।

କାର୍ଲ ମାର୍କସ, —।୨୫5–ରାଜନୈତିକ ଅର୍ଥନୀତି ସମୀକ୍ଷା ପ୍ରତି ଅବଦାନ–

(ଅନୁବାଦ–ଗୁରୁଚରଣ ପଟ୍ଟନାୟକ) ନବଯୁଗ ଗ୍ରନ୍ଥାଳୟ, କଟକ ।।

ତ୍ରିପାଠୀ, କୃଷ୍ଣଚନ୍ଦ୍ର—।୨୬୨—କୃଷ୍ଣଚନ୍ଦ୍ର ଗ୍ରନ୍ଥାବଳୀ– ଫ୍ରେଣ୍ଡସ ପବ୍ଲିଶର୍ସ, କଟକ ।।

ଦାଶ, କୁଞ୍ଜ ବିହାରୀ(ଲୋକରତ୍ନ)—

।୨5୫– ଓଡିଆ ଲୋକଗୀତ ଓ କାହାଣୀ, ବିଶ୍ୱଭାରତୀ, ଶାନ୍ତି ନିକେତନ ।।

।୨62–(ସଂପାଦନା)–ଆଧୁନିକ ଓଡିଆ ସାହିତ୍ୟର ଭୂମି ଓ ଭୂମିକା,

ଓଡିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର ।।

।୨75–(ସଂପାଦନା)–ସାହିତ୍ୟିକ ପରିଭାଷଣ, –ଗ୍ରନ୍ଥ ମନ୍ଦିର, କଟକ ।।

।୨76– ମୋ କାହାଣୀ–, କଟକ ।।

।୨୫0–ସାହିତ୍ୟ ଓ ସମାଲୋଚନା, ଓଡିଶା ବୁକଷ୍ଟୋର, କଟକ ।।

ଦାଶ, ଗଗନେନ୍ଦ୍ରନାଥ–।୨୫୩–ଓଡିଆ ଭାଷାଚର୍ଚ୍ଚାର ପରମ୍ପରା–ଓଡିଆ ଗବେଷଣା ପରିଷଦ, କଟକ ।।

ଦାଶ, ସୂର୍ଯ୍ୟନାରାୟଣ–।୨75–ଉତ୍କଳମଣି ଗୋପବନ୍ଧୁ–ଗ୍ରନ୍ଥ ମନ୍ଦିର, କଟକ ।।

।୨7୫ –ଦେଶପ୍ରାଣ ମଧୁସୂଦନ–(ଦ୍ୱିତୀୟ ସଂ) ଗ୍ରନ୍ଥ ମନ୍ଦିର, କଟକ ।।

ଦାସ, ଗୋପବନ୍ଧୁ–।୨67–ଧର୍ମପଦ(ସପ୍ତଦଶ ସଂ), ଗୋପବନ୍ଧୁ ସାହିତ୍ୟ ମନ୍ଦିର, କଟକ ।।

।୨7।–ଅବକାଶ ଚିନ୍ତା(ପଂଚମ ସଂ), ଗୋପବନ୍ଧୁ ସାହିତ୍ୟ ମନ୍ଦିର , କଟକ ।।

।୨୫0–ଗୋପବନ୍ଧୁ ରଚନାବଳୀ(ଦ୍ୱିତୀୟ ଭାଗ) ଓଡିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର ।।

ଦାସ, ଚିତ୍ତରଞ୍ଜନ–।୨୫।– ଓଡିଆ ସାହିତ୍ୟର ସାଂସ୍କୃତିକ ବିକାଶ ଧାରା

ଓଡିଶା ରାଜ୍ୟ ପାଠ୍ୟ ପୁସ୍ତକ ଓ ପ୍ରଣୟନ ସଂସ୍ଥା, ଭୁବନେଶ୍ୱର ।।

ଦାସ, ଦାଶରଥି– ।୨75– ସାହିତ୍ୟ ସନ୍ଧାନ–, ଅଗ୍ରଦୂତ, କଟକ ।।

।୨୫।– ବିବିଧ ଆଲୋଚନା– ଅଗ୍ରଦୂତ, କଟକ ।।

।୨୫୩– କାବ୍ୟ ସମ୍ବାଦ(ଦ୍ୱିତୀୟ ସଂ), ଫ୍ରେଣ୍ଡସ ପବ୍ଲିଶର୍ସ, କଟକ ।।

ଦାସ, ନୀଳକଣ୍ଠ—1954— ଓଡ଼ିଆ ଭାଷା ଓ ସାହିତ୍ୟ(ଦ୍ୱିତୀୟ ସଂ), ନିଉଷ୍ଟୁଡେଣ୍ଟସ ଷ୍ଟୋର, ବ୍ରହ୍ମପୁର ।।

1963—ଶ୍ରୀମଦ୍ଭଗବତ ଗୀତା, ''

1972—ସଂସ୍କୃତ ଓ ସଂସ୍କୃତି(ଦ୍ୱିତୀୟ ସଂ) ''

1977—ଓଡ଼ିଆ ସାହିତ୍ୟର କ୍ରମପରିଣାମ(ଦ୍ୱିତୀୟ ସଂ) ''

ଦାସ, ସର୍ବେଶ୍ୱର—1956—ନାଟକ ବିଗ୍ୟୁର, ଉତ୍କଳ ବିଶ୍ୱବିଦ୍ୟାଳୟ ।।

ଦାସ, ହେମନ୍ତକୁମାର—1940—ଓଡ଼ିଆ ନାଟକର ବିକାଶଧାରା(ଦ୍ୱିତୀୟ ଖଣ୍ଡ), ସାଥି ମହଲ, କଟକ ।।

ଦେ, ନାରାୟଣମୋହନ—1952—ସାହିତ୍ୟ ଓ ସମାଲୋଚନା(ପ୍ରଥମ ଭାଗ), ଉତ୍କଳ ବିଶ୍ୱବିଦ୍ୟାଳୟ ।।

1953—ସାହିତ୍ୟ ଓ ସମାଲୋଚନା(ଦ୍ୱିତୀୟ ଭାଗ), ଉତ୍କଳ ବିଶ୍ୱବିଦ୍ୟାଳୟ ।।

ଦେବ, ଜଳନ୍ଧର— 1946—ଜଳନ୍ଧର ଦେବ ରଚନାବଳୀ(ପ୍ରଥମ), ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର ।।

ଧଳ, ଉମେଶ—1973—(ସଂପାଦନା) ମାନସିଂହ ସ୍ମରଣିକା, ଏକାମ୍ର ଥିଏଟର୍ସ, ଭୁବନେଶ୍ୱର ।।

ପଟ୍ଟନାୟକ, ଶ୍ରୀଗୁରୁଚରଣ—ଓଡ଼ିଆ ସାହିତ୍ୟର ମତି ଓ ଗତି, ନବଯୁଗ ଗ୍ରନ୍ଥାଳୟ, କଟକ ।।

ପଟ୍ଟନାୟକ, ଦେବୀ ପ୍ରସନ୍ନ—1944—ସାହିତ୍ୟ ବୀକ୍ଷା(ଦ୍ୱିତୀୟ ସଂ), ଗ୍ରନ୍ଥ ମନ୍ଦିର, କଟକ ।।

ପଟ୍ଟନାୟକ, ବୈକୁଣ୍ଠନାଥ—1976—ବୈକୁଣ୍ଠନାଥ ଗ୍ରନ୍ଥାବଳୀ(ପ୍ରଥମ ଭାଗ), ଉତ୍କଳ ସାହିତ୍ୟ ସମାଜ, କଟକ ।।

1979—ବୈକୁଣ୍ଠନାଥ ଗ୍ରନ୍ଥାବଳୀ(ଦ୍ୱିତୀୟ ଭାଗ), ଉତ୍କଳ ସାହିତ୍ୟ ସମାଜ, କଟକ ।।

ପଟ୍ଟନାୟକ, ସୁଧାକର—1972—ସମ୍ବାଦପତ୍ରରୁ ଓଡ଼ିଶାର କଥା—ଗ୍ରନ୍ଥ ମନ୍ଦିର, କଟକ ।।

ପଣ୍ଡା, ରାଧାଚରଣ— 1977— ଚିଲିକା, କଟକ ଷ୍ଟୁଡେଣ୍ଟସ ଷ୍ଟୋର, କଟକ ।।

ପାଣିଗ୍ରାହୀ, କାଳିନ୍ଦୀଚରଣ—1971— କାଳିନ୍ଦୀ ରଚନା ଚୟ(ପ୍ରଥମ ଭାଗ), ନିଉଷ୍ଟୁଡେଣ୍ଟସ ଷ୍ଟୋର, କଟକ ।।

ପାଣିଗ୍ରାହୀ, କୃଷ୍ଣଚନ୍ଦ୍ର—ପ୍ରବନ୍ଧ ମାନସ, କିତାବ ମହଲ, କଟକ ।।

1974—ମୋ ସମୟର ଓଡ଼ିଶା, କିତାବ ମହଲ, କଟକ ।।

ବଳ, ନନ୍ଦକିଶୋର—1962—ନନ୍ଦକିଶୋର ଗ୍ରନ୍ଥାବଳୀ(ଦ୍ୱିତୀୟ ସଂସ୍କରଣ)

ପ୍ରକାଶକ—ହେମନ୍ତ କିଶୋର ବଳ, ବସନ୍ତ କିଶୋର ବଳ,

ବେହେରା, ଚିନ୍ତାମଣି—1975—ବିଦଗ୍ଧ ପାଠକ, ଜଗନ୍ନାଥ ରଥ, କଟକ ।।

1976—କାବ୍ୟ ଓ କଳାକାର(ଦ୍ୱିତୀୟ ସଂ) ଜଗନ୍ନାଥ ରଥ, କଟକ ।।

1931—କଳାଦୃଷ୍ଟି, ବୁକ୍ସ ଏଣ୍ଡ ବୁକ୍ସ, କଟକ ।।

ବେହୁରା, ରାଧାଶ୍ୟାମ— ମାନସିଂହ: ସୃଷ୍ଟି—ସମୀକ୍ଷା(1974), ଓଡ଼ିଶା ବୁକ୍ ଷ୍ଟୋର, କଟକ ।।

ବୋଲଟନ, ଜେ. ଡି.—1976—ଦେଶ, କାଳ, ପାତ୍ର ଓ ମନୀଷୀ ଫକୀରମୋହନ ।

ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର ।।

ମହାନ୍ତି, ଜାନକୀବଲ୍ଲଭ(ଭରଦ୍ୱାଜ)—ଆଧୁନିକ ଓଡିଆ କବି ଓ କାବ୍ୟଧାରା,
1974— ଆଧୁନିକ ଓଡିଆ ସାହିତ୍ୟ(ତୃତୀୟ ସଂସ୍କରଣ) ଗ୍ରନ୍ଥ ମନ୍ଦିର, କଟକ ।।

ମହାନ୍ତି, ଶ୍ରୀଚରଣ—1943— ମାନସିଂହ ମାନସ(ପ୍ରଥମ ଖଣ୍ଡ) ପ୍ର—ମନମୋହନ ମହାନ୍ତି, ଗଜପୀଠ, କଟକ ।।
ମହାନ୍ତି, ସୁରେନ୍ଦ୍ର—1970—ଶତାବ୍ଦୀର ସୂର୍ଯ୍ୟ, ନାର୍କ ବୁକ୍ସ, କଟକ ।।
1974—କୁଳବୃକ୍ଷ, ''
1974— ଓଡିଆ ସାହିତ୍ୟର କ୍ରମବିକାଶ, ଅଗ୍ରଦୂତ, କଟକ ।।
ମହାପାତ୍ର, ଯଗେଶ୍ୱର—(1972)—ସମାଲୋଚନାର ଦିଗ ଦିଗନ୍ତ, ଫ୍ରେଣ୍ଡସ ପବ୍ଲିଶର୍ସ, କଟକ ।।
—(ସମ୍ପାଦକ) ଓଡିଆ ପ୍ରବନ୍ଧ ସଂକଳନ—ଓଡିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର ।।
ମିଶ୍ର, ଗୋଦାବରୀଶ—1971—ଅର୍ଦ୍ଧ ଶତାବ୍ଦୀର ଓଡିଶା ଓ ତହିଁରେ ମୋ ସ୍ଥାନ,
ଗ୍ରନ୍ଥ ମନ୍ଦିର, କଟକ ।।

ଦାସ, ନୀଳକଣ୍ଠ

ମିଶ୍ର, ନରେନ୍ଦ୍ରନାଥ—1964—ଆଧୁନିକ ଓଡିଆ କାବ୍ୟଧାରା(ଆଦିଯୁଗ), ବିଶ୍ୱଭାରତୀ, ଶାନ୍ତିନିକେତନ ।।
1973—ଆଧୁନିକତା ଓ ଆଧୁନିକ ସାହିତ୍ୟ, ଫ୍ରେଣ୍ଡସ ପବ୍ଲିଶର୍ସ, କଟକ ।।
1973—ଆଧୁନିକ ଓଡିଆ କାବ୍ୟଧାରା(ନବଜାଗରଣ ଯୁଗ), ବିଶ୍ୱଭାରତୀ, ଶାନ୍ତିନିକେତନ ।।
ମିଶ୍ର, ଭାବଗ୍ରାହୀ—1970— ସାହିତ୍ୟ ଦୃଷ୍ଟି, ଫ୍ରେଣ୍ଡସ ପବ୍ଲିଶର୍ସ, କଟକ ।।
ରଥ, ମୃତ୍ୟୁଞ୍ଜୟ— 1971—ମୃତ୍ୟୁଞ୍ଜୟ ଗ୍ରନ୍ଥାବଳୀ, କଟକ ଷ୍ଟୁଡେଣ୍ଟସ ଷ୍ଟୋର, କଟକ ।।
ରାଓ, ମଧୁସୂଦନ—1965— ମଧୁସୂଦନ ଗ୍ରନ୍ଥାବଳୀ, ଗ୍ରନ୍ଥ ମନ୍ଦିର, କଟକ ।।
ରାୟ, ଅନ୍ନଦାଶଙ୍କର—1966— ସବୁଜ ଅକ୍ଷର, ଦାସ ବ୍ରଦର୍ସ, କଟକ ।।
ରାୟ, ଦୁର୍ଗାଚରଣ—1941—ରାଧାନାଥ ଜୀବନୀ—କଟକ ।।
ରାୟ, ରାଧାନାଥ—1975—ରାଧାନାଥ ଗ୍ରନ୍ଥାବଳୀ(ସଂ—କ୍ଷେତ୍ରବାସୀ ନାୟକ), ପୁସ୍ତକ ଭଣ୍ଡାର, ବ୍ରହ୍ମପୁର ।।
ରାୟ, ରାମଶଙ୍କର—1969—(ସମ୍ପାଦନା) ମନୁସ୍ମୃତି ବା ମନୁ ସଂହିତା, ଧର୍ମଗ୍ରନ୍ଥ ଷ୍ଟୋର, କଟକ ।।

ଶତପଥୀ, ନିତ୍ୟାନନ୍ଦ– 1977–ଆଧୁନିକ ଓଡ଼ିଆ ସାହିତ୍ୟ, ବିଦ୍ୟାପୁରୀ, କଟକ ॥

1979–ସମ୍ପାଦନା–ମାନସିଂହ ପରିକ୍ରମା–ଓଡ଼ିଶା ପୁଜ୍ୟପୂଜା ସଂସଦ, କଟକ

1979–ସବୁଜରୁ ସାମ୍ପ୍ରତିକ, ଗ୍ରନ୍ଥ ମନ୍ଦିର, କଟକ ॥

ଶତପଥୀ, ଶ୍ରୀମତୀ ପ୍ରତିଭା–1982– କଳ୍ପନାର ଅଭିଷେକ– ଓଡ଼ିଆ ବୁକ୍ ଷ୍ଟୋର, କଟକ ॥

ଶତପଥୀ, ବାଳକୃଷ୍ଣ–1983–ଆଧୁନିକ ଓଡ଼ିଆ କବିତାର ଅନ୍ତଃସ୍ୱରୂପ ଓ ଅଭିବ୍ୟକ୍ତି

ମହାଲକ୍ଷ୍ମି ଏଣ୍ଡ ଡିଷ୍ଟ୍ରିବ୍ୟୁଟର୍ସ, ସମ୍ବଲପୁର ॥

ସାମନ୍ତରାୟ, ନଟବର,–1964–ଆଧୁନିକ ଓଡ଼ିଆ ସାହିତ୍ୟର ଭୂମିକା, ଫ୍ରେଣ୍ଡସ ପବ୍ଲିସର୍ସ, କଟକ ॥

–1964–ଗଳ୍ପ ନୁହେଁ ସମାଲୋଚନା, ଗ୍ରନ୍ଥ ମନ୍ଦିର, କଟକ ॥

–1964– ଓଡ଼ିଆ ସାହିତ୍ୟର ଇତିହାସ, ଭୁବନେଶ୍ୱର ॥

–1970–ଯୁଗପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ, ନିଉଷ୍ଟୁଡେଣ୍ଟସ ଷ୍ଟୋର, କଟକ ॥

–1972–ବ୍ୟାସକବି ଫକୀରମୋହନ, (ଦ୍ୱିତୀୟ ସଂ) ଭୁବନେଶ୍ୱର ॥

–1977–ଓଡ଼ିଆ ସାହିତ୍ୟର ସମୀକ୍ଷା ଓ ସଂଗ୍ରହ, ଭୁବନେଶ୍ୱର, ॥

ସିଂହ, ରବୀନ୍ଦ୍ରନାଥ–1969–ଓଡ଼ିଆ ସାହିତ୍ୟର ଧର୍ଷଣ, କଟକ ॥

1977–ସଂସ୍କୃତିର ବୈପ୍ଳବିକ ମୂଲ୍ୟବୋଧ, ଓଡ଼ିଶା ବୁକ୍ଷ୍ଟୋର, କଟକ ॥

1985– ନିଃସଙ୍ଗ ପଦାତିକ, ''

ସେନାପତି, ଫକୀରମୋହନ,–1963–ଫକୀରମୋହନ ଗ୍ରନ୍ଥାବଳୀ, କଟକ ଷ୍ଟୁଡେଣ୍ଟ ଷ୍ଟୋର, କଟକ ॥

ସେନାପତି, ମୋହିନୀମୋହନ—1939– ବିବିଧ ପ୍ରସଙ୍ଗ– କଟକ ॥

—o0o0o—

Established by L. N. Sahu, M. A.




ମାସିକପତ୍ର ।

୫ମ ଭାଗ ]　　ଚୈତ୍ର—୧୩୩୬　　[ ୨ୟ ସଂଖ୍ୟା ।

ସମ୍ପାଦକ ଶ୍ରୀ ଅଲେଖପ୍ରସାଦ ଦାସ

Member, League of Nations Union and F. T. S.

ସହକାରର ବାର୍ଷିକ ମୂଲ୍ୟ ୫୨୪, ପ୍ରତି ସଂଖ୍ୟା ୫ ୦ I. ଛାତ୍ରମାନଙ୍କ ପକ୍ଷରେ ଏକିକ ୫୨୧



ସହକାର, 5/7, ଚୈତ୍ର–1332,

## ସୂଚୀ ପତ୍ର ।



Printed & Published by A. P Das.
SHREE RADHANATH CO-OPERATIVE PRESS, CUTTACK

ମୃତ୍ୟୁ-ରାଜ୍ୟର ନିକଟବର୍ତ୍ତୀ ହେଉଛି । ଅନ୍ନବସ୍ତ୍ରହୀନା ବିଧବାର ଅବସ୍ଥା କହିଲେ ନ ସରେ, ଶିଶୁପୁତ୍ର ଦର୍ଶକଙ୍କ ମୁହଁରୁ କଥା ବାହାରୁ ନାହିଁ, ଦୟାଳସାର ଦେଶ ଦର୍ଶକ ଅନ୍ନ ମରିବେ, ତ ଭାଇ ମରିବେ, ଏହିପରି ଅବସ୍ଥା । ଅଥଚ ପ୍ରତିବେଶୀ ଅନ୍ୟାନ୍ୟ ବ୍ରାହ୍ମଣମାନେ ବେଶ୍ ସ୍ବଚ୍ଛନ୍ଦବସ୍ଥ । ଲେଖକ ଚେଷ୍ଟା କରି ସେହି ବିଧବା ଓ ତାହାର ଶିଶୁ ପୁତ୍ରମାନଙ୍କ ପାଇଁ ସରକାରୀ ସାହାଯ୍ୟର ବ୍ୟବସ୍ଥା କରାଇ ଦେଲେ ଏବଂ ସେମାନଙ୍କୁ କେବେ କେବେ ସାହାଯ୍ୟ କରିବାପାଇଁ ପ୍ରତିବେଶିମାନଙ୍କୁ କହି ଆସିଲେ । କେତେକ ଘଣ୍ଟା ପରେ, ଲେଖକ ଖବର ପାଇଲେ, ପ୍ରତିବାସୀମାନେ ବିଧବାକୁ ସାହାଯ୍ୟ କରିବା ଦୂରେ ଥାଉ, ସଭା କରି ସ୍ଥିର କରିଅଛନ୍ତି ଯେ, ବ୍ରାହ୍ମଣୀ "ଦୁର୍ଭିକ୍ଷ ଚାଉଳ" ଖାଇଲେ ତାକୁ ଅଜାତି କରିବେ ଓ ଗ୍ରାମରୁ ତଡ଼ିଦେବେ ଏବଂ ସେ ଖବର ପାଇ ବିଧବା ଲେଖକ ନିକଟକୁ ଖବର ଦେଲେଣି, ସେ ବରଂ ଖାଇବା ବିନା ଶିଶୁପୁତ୍ର ଦର୍ଶକଙ୍କୁ ନେଇ ନିଜ ଗୃହରେ ମରିବ, ସରକାରୀ ସାହାଯ୍ୟ ନେଇ ନିଜର ସ୍ୱାମିଙ୍କ ଘରୁ ବିତାଡ଼ିତ ହେବ ନାହିଁ । ଏପରି ଯେଉଁ ସମାଜର ନିତ୍ୟନୈମିତ୍ତିକ ଘଟଣା, ସେ ସମାଜର ନେତାମାନଙ୍କୁ କେବଳ ରାଜନୀତି କ୍ଷେତ୍ରରେ ଅବତରଣ କରିବା ସାଜେ ନାହିଁ । ଯେଉଁ ଉପାଦାନ ଯୋଗେ ଭବିଷ୍ୟତ୍ ସ୍ୱରାଜ୍ୟର ସୌଧ ଗଢ଼ି ଉଠିବ, ତାହା ଯେ ଅବର୍ଜନାପୂର୍ଣ୍ଣ । ଉତ୍କଳର ଶତକଡ଼ା ଅଶୀ ଜଣ ଲୋକ କୃଷି-ବ୍ୟବସାୟୀ । ଏ ବିଶାଳ ଜନସଙ୍ଘକୁ ଅଜ୍ଞାନ ଓ ଅଭାବର ଗର୍ଭରେ ରଖି ଏବଂ ସେମାନଙ୍କ ଦୁର୍ଭାଗ୍ୟ ଉପରେ ସାମାଜିକ ଅତ୍ୟାଚାରର ଲଳିତାବଢ଼ା ଲଦିଦେଇ ସ୍ୱରାଜ୍ୟନ ଘର ଚେଷ୍ଟା କରିବା ବିଡ଼ମ୍ବନା ମାତ୍ର ! କେବେ ଶିକ୍ଷିତ ଉତ୍କଳର ଦୃଷ୍ଟି ଏ ଦିଗକୁ ପଡ଼ିବ ?

କଥକ ।



## ବାରବାଟୀ ।

ମହିମାର ଶିରତାର ଇତିହାସ ଶିରେ
ରାଜଟୀକା ସମ
ନମସ୍ୟ ପରମ,
ତୁମେ ତୁଙ୍ଗ ବାରବାଟୀ ବୀରକ୍ରମାଂଶରେ ଗଠିତ,
ଅତୀତର ବକ୍ଷ ପରେ
ଏ ଜାତିର ଜୟସ୍ତମ୍ଭ ପରି
ଦର୍ପଭରେ ମଥା ଟେକ କରି
ବିଜୟପତାକା ତବ ଚକ୍ରେଶ୍ବର ଶିର ଉନ୍ନମିତ ।
ଯାଇଛି ବିଶାଳ ରାଜ୍ୟ ମାନ ସ୍ୱାଧୀନତା
ରାଜନ୍ୟ ସମ୍ମାନ
ବୁଦ୍‌ବୁଦ ସମାନ
ସର୍ବଗ୍ରାସୀ ସମୟାବ୍ଧି-ସୁବିଶାଳ-ଜଳଧିରେ ଭାସି,
ତୁମର ମୂର୍ତ୍ତି ମାତ୍ର
ଏ ଜାତିର ଅନ୍ତରେ ଅନ୍ତରେ
ଏ ଦେଶର ସାଗର ପ୍ରାନ୍ତରେ
ରାହୁମୁକ୍ତ ଶଶୀ ସମ ଚବନାଶି ଉଠେ ପ୍ରକାଶି ।
କେତେ ରାଜ୍ୟ କେତେ ଜାତି ଅତୀତ ଗର୍ଭରେ
ହଜିବ ଦୈନ୍ୟତା !
ଉଦାର ବୀରତା
କେବେ କିନ୍ତୁ ଲୁଚି ନାହିଁ;
କାଳ ବଳୀ ତାହା ନ ପାରୁଛି ।
ବିଶ୍ୱ ପାଇଁ କାନ୍ଦୁଛି ଯେ
ଘଣେ ଦେଲେ ଅରୁଣେ ଅକୂଳେ
ସମସ୍ତ ସମୁଦ୍ର କୂଳେ କୂଳେ
ତୋର ନାମେ ସ୍ମୃତି ପାଇଁ
ସମାରୋହେ ଦେଉଳ ଉଠିଛି ।

ହୃଦୟଙ୍ଗମ କଲେ କମ୍ୱା ତାଙ୍କ କବିତା ପାଠ କଲେ, ଶୁଷ୍କ ଗୋଲାପ ବୃକ୍ଷରୁ ଝଡ଼ି ପଡ଼ିଲା ପରି, ଆମ୍ଭମାନଙ୍କ ମନ ମଧ୍ୟରୁ ମରଣର ପରପାରର ଚିନ୍ତା ଅସାର ନିରର୍ଥକ ପ୍ରଶ୍ନ ଆପେ ଆପେ ଝଡ଼ି ପଡ଼େ । ଓମାର ଦ୍ରାକ୍ଷାରସ ମଧ୍ୟରେ ଏକାଧାରରେ ଅମୃତ ଏବଂ ହଳାହଳର ମିଶ୍ରଣ ଅନୁଭବ କରୁଥିଲେ ।

ତାଙ୍କୁ କମିଡ କବି ବୋଲିବାକୁ ମନ ସହଜରେ ଯାଏ ନାହିଁ । ତାଙ୍କ ହୃଦୟ ନୈରାଶ୍ୟରେ ଏତେ କାତର ହୋଇ ପଡ଼ିଥିଲା ଯେ, ସେ ଈଶ୍ୱର କଳ୍ପନା କରିବାକୁ ସମୟ ପାଉ ନାହାନ୍ତି । ତାଙ୍କ ହୃଦୟ ସେହି ନୈରାଶ୍ୟରେ ଯେତେବେଳେ ଖଣ୍ଡ ବିଖଣ୍ଡ, ସେ କେବଳ ପ୍ରେୟସୀଙ୍କି ନେଇ ନଦୀକୂଳରେ ବିଜନ କୁଞ୍ଜଛାୟାରେ ବୀଣା ବଜାଇ ସ୍ୱର୍ଗର କଳ୍ପନା କରୁଥିଲେ । ତଥାପି ସୁନ୍ଦରୀର କଳରବ, ବୀଣାର ସ୍ୱରଲହରୀ, ସୁରାର ମଧୁରତା କମ୍ୱା ଗୋଲାପର ଗନ୍ଧ ତାଙ୍କୁ ସେ ସ୍ୱର୍ଗ ଦେଇ ପାରୁ ନାହିଁ । ତଥାପି ନୈରାଶ୍ୟଜର୍ଜ୍ଜରିତ ପ୍ରାଣରେ ଅଥଚ ପ୍ରେମ, ସ୍ନେହ ଏବଂ ମୁକ୍ତ-କଳ୍ପନା ମଧ୍ୟରେ ସେ ଯେଉଁ ମଙ୍ଗଳମୟ ସଙ୍ଗୀତ ଗାଇଥିଲେ, ତାହା ଆଜ ପୃଥିବୀର ଏକ ପ୍ରାନ୍ତରୁ ଅପର ପ୍ରାନ୍ତଯାଏ ସ୍ୱର ତୋଳି ମାନବପ୍ରାଣଙ୍କୁ ପୁଲକିତ କରୁଅଛି । ଧନ୍ୟ ଓମାର କବି ।

ଶ୍ରୀ ଚନ୍ଦ୍ରଶେଖର ମିଶ୍ର ।



## କବିର ନିମନ୍ତ୍ରଣ ।



କବି ଯେବେ ଥିଲେ ଶୈଶବେ
ଜୋଛ୍ନା-ସ୍ୱପ୍ନ-ହୃଦ ଶାନ୍ତି ଧରି,
ପାଇଲେ ସେ ଦିନେ ନିମନ୍ତ୍ରଣ,
ବୁଝିଲେ ସେ ଡ଼ାକ ଅନ୍ତରୁ !

ଭୁଲି ଭୁଲି ବିଜୟର ସାଥ୍
ନ ପାଇଲେ ତାହା ପ୍ରାଣେ ପ୍ରୀତି ।
ଶେଷେ କବି ଶୁଣିଲେ କାନନେ
ଏତ ପୂଲୁ ସେ ବକୁଳ ଗୀତ !

କବି ଯେବେ ଫେରିଲେ ଯୌବନେ
ପୁଣି ତାଙ୍କୁ ଅସିଲା ଅହ୍ୱାନ,
ଭୁଲ ଭୁଲ ଭୁଝିଲେ ତା କବି
ଷୋଡ଼ଶୀର ଅଦ୍ୟ-ପ୍ରେମଗାନ ।

ବୃଦ୍ଧ ଯେବେ ହେଲେ କବି ପୁଣି
ଡ଼ାକ ଅସି ବାଜେ କାନେ କାନେ,
ଭ୍ରମି ଭ୍ରମି ଶୀର୍ଣ୍ଣ କଲେ ଦେହ,
ନ ଶୁଣିଲେ ଡ଼ାକ ତାହା ପ୍ରାଣେ ।

ଅବଶେଷେ ବୁଝିଲେ ସହସା,
ନିଜ ହୃଦୁ ଅସିଛି ସେ ବାଣୀ,
ମରଣର ଅବାହନ ସେ ଯେ
ଏ ଜୀବନେ ଅମୃତ-କାହାଣୀ !

ଶ୍ରୀ ମାଯ୍ୱାଧର ମାନସିଂହ ।



॥ ମାନସିଂହଙ୍କ ବିପ୍ଳବଧାରା ॥



ପରିଶିଷ୍ଟ– ଦୁଇ

# ଉତ୍କଳ-ସାହିତ୍ୟ ।

୩୨ଶ ଭାଗ | ବୈଶାଖ, ୧୩୩୫ | ୧ମ ସଂଖ୍ୟା ।

## ତରୁଣ କବିର ଆଶା ।



ଏତେ ବସନ୍ତ ସେ, ପାଏ ନ ଭାଷା,
ହାୟ ରେ ତରୁଣ କବିର ଆଶା !

ଭାବିଥିଲି ଯିବି ଅସୀମ ପଥେ
ସୁରଭି-ଶୀତଳ-ମଳୟରଥେ
କୁସୁମ-ଫଗୁଲ ଫଗୁଣ-ପୁରେ
ବାହୁ ଗୋ ଦୂରେ !

ଅଶୋକକଳିକା ଶ୍ରବଣେ ଗୁଞ୍ଜି
ଚରଣେ ଝୁଲାଇ ବଉଳ-ପୁଞ୍ଜି
ପରିମଳ ଦଇ ଯାଆନ୍ତି ମିଶି
ମୁଁ ଦଶଦିଶି ।

ପରିମଳ ସମ ଗଗନେ ଭାସି
ପାଗଳ କରନ୍ତି ଜୋଛନାରାଶି,
ଜୋଛନା ଡାକନ୍ତା 'ଅସ ହେ ପ୍ରିୟ,
ଚୁମ୍ବନ ନିଅ !'

ମଳୟପବନ-ସଙ୍ଗୀତ ଧରି
ସେ ପାରି ଆକାଶେ ଯାଆନ୍ତି ଚଳି,
ମୁକତ ଲଭନ୍ତା ପରାଣ ମମ
ବିହଗ ସମ !

କୋକିଳ ଡାକନ୍ତା, ଥାଅ ରହି ଭାଇ,
ତରୁଣ ସେ କବି ହୁଅନ୍ତା ବାଇ,
ଗୋଲାପ କହନ୍ତା 'ଆସିଲି ସତେ
ଏବେ ଏ ପଥେ !'

ଭାବିଥିଲି ଘନ ବକୁଳ ତଳେ
ସୁରଭି କୁସୁମଶୟନ ପରେ
ଯାପିବି ଜୀବନ ପ୍ରେୟସୀ ଧରି
ସ୍ୱପନ ପରି !

ବାଛି ନେଇଥିଲି ମୋର ପ୍ରେୟସୀ
ଲାବଣ୍ୟ ପ୍ରତିମା, ସମବୟସୀ,
ଭାବିଥିଲି ତାରେ କରିବି ସାଥୀ
ପରାଣ ପାତି !

ଭାବିଥିଲି ଯେତେ ପୃଥିବୀ ବାଧା
ପୂରିବ ସେ ମୋର ହୃଦୟରାଧା
ବଜାଇ ମୁରଲୀ ମୁଁ ଅହରହ,
କାହିଁ ବିରହ ?

ଅମର ଚନ୍ଦ୍ରିକା ଯାମିନୀ ତଳେ
ସେ ରାଧା କୋମଳ ଜଘନପରେ
ଜୀବନ ମରଣ ଯାଆନ୍ତି ଭୁଲି
ସପନ ପରି !

## ॥ ତରୁଣ କବିର ଆଶା ॥



ବଳନ ତଟିନୀ ବେତସ ଗେହେ
ଚାଳ ଦେଇଥାନ୍ତି ଅଳସ ଦେହେ,
ଚମକନ୍ତ ଶୁଣି ନୂପୁର ଧ୍ୱନି
ପ୍ରେୟସୀ ମଣି !

ମାନସୀ ଅସନ୍ତା ହଲଇ ବେଣୀ
ଚକ୍ଷୁରେ ଚଳାଇ ନୟନ ବେନି,
ଲଗାଇ ଦଅନ୍ତା ସ୍ୱପ୍ନରେ ତାର
କୁସୁମ ହାର !

ଧାଣରେ ଥାଅନ୍ତା ରସ କବିତା
ଛଡ଼ ଯଉବନ ପ୍ରଣୟ-ଗୀତା
ପ୍ରେୟସୀ ଗାଅନ୍ତା, ଚୁମନ୍ତ ମୁଖ,
ପୂରନ୍ତା ବୁକ !

ଭୁଲନ୍ତ ପୁଣି ମୁଁ ରସିକ ପର;
ସତ୍ୟ ଜଗତର ଚବୁକ ଧର
ବୋଲନ୍ତ 'ସବୁର ବାନ୍ଧବ ମୁହିଁ,
ଜାଣ ସମୁହିଁ !'

ହାଇରେ ତରୁଣ କବିର ଆଶା
ଏତେ ବଧାଁଚ ଯେ, ପାଏ କି ଭାଷା
ଅକାଶ କଳ୍ପନା କେତେ ସେ କରେ
ନିମେଷକରେ !

ହାୟ କଳପନା କାହିଁ ଜୀବନ,
ତରୁଣ କବିର ଜଳଇ ମନ,
ଗୃହଅଜ୍ଞ ବାଜେ ଦାରୁଣ ବାଧା,
କାହିଁ ତା ସୁଧା !

ନାହିଁ ସୁଧା ନାହିଁ ବେତସ-ମାଳା,
ନାହିଁ ପାଶେ ବେଣୀ ହଲା ଛଇଳା,
ପ୍ରଣୟରେ ମାତ ହେବାକୁ ଖେଳ
କାହିଁ ତା ବେଳ !

ବାସ୍ତବର ସାଥୀ ନାହିଁ ତା ପାଶେ,
ବାଳିକା ସେ ଗଳ୍ପ ଅନର ଅଶେ,
କାହା ଟଳେ ସୁଖେ ଛନ୍ଦିବ ବାହୁ
କହ ସେ ଆଉ ?

ରସିକ ହେବାର ଛାଡ଼ିଛି ଆଶ,
କେ ବାଳା ବାନ୍ଧଇ ପ୍ରଣୟ-ପାଶ
କେବଳହିଁ ପ୍ରାଣ-ପୀରତି ଲଭି;
ଗଉବ କବି !

ଝରବ କବିରେ ଫସାର ପିଠେ,
କବିତାକୁ ବେଳ ନାହିଁ ଏ ଭିଡ଼େ,
ଫଗୁଣ ଚଳଇ ଚଇତ ଆସେ,
କି ଯାଏ ଆସେ !

ପ୍ରଣୟ-କବିତା-ସ୍ୱପନ ନାହିଁ,
ନିମିଷେ ନିମିଷେ ଗଲେ ଉଭାଇ,
ମଣିଷ ବେଶରେ ଯାଉଛି ଦ୍ରବ
ତରୁଣ କବି !

ମଣିଷ ହୋଇ ତା ଏତେ ବସ୍ତୁର,
ଧରାରେ ସରଗ ସୃଜନା ତାର,
ଏ କଳପନାକୁ ପାଏ କି ଭାଷା,
ହାଇରେ ତରୁଣ କବିର ଆଶା !

ମାୟାଧର ମାନସିଂହ ।



## ଗୋପ-ତର୍ପଣ ।



୧

ତୁମେ ତାଣ୍ଡବନଟ ନୁହ ଶଂକର ଭୋଳା,
ନୁହ ବୈଶାଖ ରକ୍ତ-ପ୍ଳବଣ-ଦୋଳା,
ତୁମେ ଧର ନାହିଁ କେବେ ରୁଦ୍ରର ଅବତାର
ଅତ୍ୟାଚାରର କରିବାକୁ ପ୍ରତୀକାର,
ରାଜା ହୋଇ ହାତେ ଧର ନାହିଁ ରାଜଦଣ୍ଡ,
ଗର୍ଜନ ବଚନେ ନ କରିଛ ନରଷଣ୍ଡ ।
ତୁମେ ପ୍ରଳୟଙ୍କର ନୁହ ହେ ମଉଷଳମୀ,
ଅଥବା ଲେନିନ୍ ଭୀମ-ବିପ୍ଳବ-ବାଣୀ ।
ତୁମେ ଅଟ ହେ ଶାନ୍ତ, ସତ୍ୟର ପୁରୋହିତ,
ସନ୍ନ୍ୟାସୀ ଋଷି, ଅବତାର-ପରହିତ ।
ତୁମେ ଥିଲ ହେ କେବଳ ପତିତ ଜନର ବନ୍ଧୁ,
ଓଡ଼ିଆ ଜାତିର ଅପଣାର ଗୋପବନ୍ଧୁ ।

୨

ତୁମେ ସନ୍ନ୍ୟାସୀ ପରି ରଚିଲ ବକୁଳ ବନ,
ଗାଇଲ କଣ୍ଠେ ସତ୍ୟଯୁଗର ଗାନ,
ପାଖେ ଯେ ଅସିଲେ ପୁରୁଷ ଭାଗ୍ୟବାନ,
କରାଇଲ ତାଙ୍କୁ ସଂଯମ-ରସାସ୍ୱାନ ।
ତୁମର କଣ୍ଠେ ମିଶାଇ କଣ୍ଠବାଣୀ
ସଭିଏ ଗାଇଲେ ମୁକ୍ତିର ଅହ୍ୱାନ ।

୩

ତୁମେ ବାହାର ପଡ଼ିଲ ଭିକାରି ଝୁଲି ଧରି,
ଘାଟେ ଘାଟେ ନେଇ ବୁଲିଲ ତୁମର ତରୀ,
ଯାହା ପାଖେ ଗଲ ସେ ଦେଲା ଅଜାଡି ଦାନ
ମହା ଭିଖାରିର ମହା ଇଙ୍ଗିତ ମାନ ।
ସକଲେ କହିଲେ, ଅସ ସନ୍ନ୍ୟାସି ଅସ,
ପରଶେ ଫେରାଅ ହତଭାଗାର ଶ୍ୱାସ ।

୪

ତୁମେ ଦେଶ ଦେଶ ବୁଲି ଫେରିଛ ଜାତିର ଘରେ
ଭୋକାରେ ଦେବାକୁ ଅନ୍ନ ଅପଣା କରେ,
ପାଇଲେ ଯେ ଗଲେ ସାନନ୍ଦେ ଘରେ ଫେରି
ଅଭୁକ୍ତ ଯେତେ କାନ୍ଦିଲେ ପାଖେ ଘେରି,
ସେମାନଙ୍କ ପାଇଁ ବାଣ୍ଟିଲ ଶ୍ରେଷ୍ଠ ଦାନ
ଦିଓଟି ଅଶ୍ରୁ, ଗୋଟିଏ ଆଲିଙ୍ଗନ ।
କରୁଣ କୋମଳ ଦିଓଟି ବଚନ କହି
ଦେଲ ଦୁଃଖୀର ବୁକୁର ଦୈନ୍ୟ ଦହି ।
ତୁମେ ସନ୍ନ୍ୟାସୀ, ତୁମେ ଲକ୍ଷ୍ମୀଛଡ଼ାର ବନ୍ଧୁ,
ଓଡ଼ିଆ ଜାତିର ଦରିଦ୍ର ଗୋପବନ୍ଧୁ ।

୫

ପରବର କଥା ଅନ୍ତରଗତେ ଜାଣି
ଅନ୍ତରତମେ ଢାଳିଲ ବୁହାଇ ପାଣି ।
ପରପାଇଁ ନିଜ ଦେବତାରେ ଅଛ ଡାକି
ବାବାଜର ଅଜି କି ବାସନା ଥିଲା ବାକି ?
ବନ୍ଧୁ ବନ୍ଧୁ ଶୋଣିତ ଢାଳିଛ ସୁଖେ
ଶାନ୍ତି ଦେବାକୁ ଦୀନଦରିଦ୍ର ବୁକେ ।
ବୁଝିବାକୁ ଯାଇ ସକଳ ବୁକୁର ବଥା
ସକଳର ପାଇଁ ଦେବାକୁ ବସିଲ ମଥା ।

୬

ଦରିଦ୍ର ପାଇଁ କରିବାରୁ ସବୁ ଦାନ
ସବୁର ବୁକେ ପାଇଅଛ ଅଜ ଥାନ ।
ନଇଁବାକୁ ଯାଇ ବରିଷ୍ଠ ହୋଇଛ ଅପେ,
ପୁଣ୍ୟ ଅଣିଛ ଧୂଆଇ ଅଭିଶାପେ ।
ପତିତପାବନ ହୋଇଛ ପତିତେ ବରି,
ରାଜା ହୋଇଅଛ ଭିକାରି ଝୁଲି ଧରି,
ଜୀବନ ଗଢ଼ିଲ ସକଳ ଅନ୍ତରାଳେ,
କୋଟି ଅନ୍ତର ତୁମର ଜୀବନ ଢାଳେ,
ସକଳର ସୁଖେ ଲୁଚାଇ ଅପଣା ବଥା
ମାତ୍ର ବହିଅଛ ସକଳ ଜନର ମଥା ।

୭

ସନ୍ନ୍ୟାସୀ ଅଜ ସାରିଛ ତୀର୍ଥାଟନ,
ଶେଷ ହୋଇଅଛି ଭିକାରି ବରଣ,

ଗନ୍ତବ୍ୟ ପାଇଛ ସୁଧାର ସ୍ୱର୍ଣ୍ଣହଂସ
କେଉଁ ବଳବାନ ରଖିବ ତାହାରେ ଧରି ?
ଯାଅ ବୀର ଯାଅ, ଧରି ହେ ତୁମର ପଥ,
ଅପେକ୍ଷା କରେ ଦୁଆରେ ଦେବତା ରଥ,
ଆପଣାର ଘରେ ଏତେଦିନେ ଯିବ ଫେରି,
ଦେବତା ନାଚିବେ ଅନନ୍ଦେ ପାଶେ ଘେରି,

ଶ୍ମଶାନ ମୁଖ ଉଜଳ କରିବ ଧୀରେ,
କନକସି ଅଛି ପୋଛିବେ ଅଶ୍ରୁନୀରେ,
ତର ତର ହୋଇ ବହିବ ମନ୍ଦାକିନୀ,
ତା ତୀରେ ଗୁଞ୍ଜିବ ତୁମର ଅମୀକାହାଣୀ,
ମନେ କି ପଡିବ ସେବେ ଅମୃତପାୟୀ
ବହୁ ଚଞ୍ଚିରେ ବକୁଳ ବନର ଛାଇ ?

ମାୟାଧର ମାନସିଂହ ।

## ଶୋକ-ବାର୍ତ୍ତା ।

୧ । ଉତ୍କଳଖଣ୍ଡର ଏକନିଷ୍ଠ ଦେଶ-ସେବକ, କର୍ମୀ, ଜନପ୍ରିୟ ନେତା ପଣ୍ଡିତ ଗୋପବନ୍ଧୁ ଦାଶ ଇହଜଗତରେ ନାହାନ୍ତି ! ତାଙ୍କର ଆକସ୍ମିକ ଓ ଅକାଳ ପ୍ରୟାଣରେ ସମଗ୍ର ଉତ୍କଳରେ ଶୋକର ପ୍ରବଳ ତରଙ୍ଗ ଉତ୍ଥିତ ହୋଇଅଛି—ସମଗ୍ର ଭାରତଖଣ୍ଡରେ ମଧ୍ୟ ସେ ତରଙ୍ଗର ଆଘାତ ଲାଗିଅଛି । ଯଥାର୍ଥରେ ନାନା ଗୁଣରେ ମଣ୍ଡିତ ଥାଇ ଏବଂ ସରଳ ମଧୁର ପ୍ରକୃତି ଯୋଗୁଁ ଗୋପବନ୍ଧୁ ଉତ୍କଳଜନନୀଙ୍କର ଅତି ପ୍ରିୟ ସନ୍ତାନରୂପରେ ସର୍ବତ୍ର ସମାଦୃତ ହୋଇଥିଲେ ଏବଂ ନିଜର କର୍ମଜୀବନ ଓ ସାଧୁ ଚରିତ୍ର ପ୍ରଭାବରେ ଉତ୍କଳ ବାହାରେ ମଧ୍ୟ ଖ୍ୟାତି ପ୍ରତିପତ୍ତି ବିସ୍ତାର କରି ପାରିଥିଲେ । ଅଜି ଅକାଳରେ ତାଙ୍କୁ ହରାଇ ଉତ୍କଳ ଦୀନତର ହୋଇଅଛି । ଉତ୍କଳ ନାନା ବିଭାଗରେ ଅନେକ କୃତୀ ସନ୍ତାନଙ୍କୁ ହରାଇ କାତରପ୍ରାଣରେ ହାହାକାର କରୁଅଛି—ବ୍ୟାକୁଳ-ନେତ୍ରରେ ଶୂନ୍ୟ ଅଙ୍କକୁ ଅନାଇଅଛି; ମାତ୍ର ତାହାର କୌଣସି ଅଭାବ କୌଣସି କାଳେ ପୂର୍ଣ୍ଣ ହୋଇ ନାହିଁ । ଏବେ ନାନା ଦିଗରେ କର୍ମନିରତ, ସ୍ୱଦେଶର ସେବାରେ ସମ୍ପୂର୍ଣ୍ଣରୂପେ ଉତ୍ସର୍ଗୀକୃତ-ପ୍ରାଣ ଗୋପବନ୍ଧୁଙ୍କ ଅଭାବ କିଏ ବା ପୂରଣ କରିବ ?

କିନ୍ତୁ ଆମ୍ଭେମାନେ ଗୋପବନ୍ଧୁଙ୍କ ଜାଣିଅଛୁଁ—ତାଙ୍କର ପ୍ରାଣର ଆବେଗ ବୁଝିଅଛୁଁ । ନାନା ପରିବର୍ତ୍ତନ ଓ ଘାତ ପ୍ରତିଘାତ ଭିତରେ ତାଙ୍କ ଜୀବନର ଯେ ବର୍ତ୍ତମାନ ପରିଣତି ଘଟିଥିଲା, ତାହା ମଧ୍ୟ ଦୂରରେ ଥାଇ ଲକ୍ଷ୍ୟ କରିଅଛୁଁ । ସେହି ଯୌବନର ଉନ୍ମେଷରୁ ତାଙ୍କ ପ୍ରାଣର ଅନ୍ତସ୍ତଳରେ ଯେ ଚିନ୍ତା ଓ ଭାବର ଧାରା ଅକ୍ଷୁଣ୍ଣଭାବରେ ପ୍ରବାହିତ ହୋଇ ଆସିଅଛି, ଏହା ତାଙ୍କ ଜୀବନକୁ ସର୍ବଥା ଗୌରବମଣ୍ଡିତ କରିଅଛି ଏବଂ ଏହାହିଁ ଜାତି ପକ୍ଷରେ ତାଙ୍କର ସର୍ବଶ୍ରେଷ୍ଠ ଦାନ । ସେହି ଚିନ୍ତା ଓ ଭାବହିଁ କର୍ମକ୍ଷେତ୍ରରେ ନାନା ଅବସ୍ଥାରେ ନାନା ଭାବରେ ଆତ୍ମପ୍ରକାଶ କରିଅଛି—କେତେବେଳେ ସାଫଲ୍ୟମଣ୍ଡିତ ହୋଇ-ଅଛି, କେତେବେଳେ ବା ବ୍ୟର୍ଥତାରେ ପର୍ଯ୍ୟବସିତ ହୋଇଅଛି । କିନ୍ତୁ କୌଣସିଥିରେ ସେହି ଧୀର ପ୍ରଶାନ୍ତ ପ୍ରାଣଟି ଭୀତ ବା କ୍ଷୁବ୍ଧ ହୋଇ ନାହିଁ । ଏହାହିଁ ଗୋପବନ୍ଧୁଙ୍କ ଜୀବନର ମହତ୍ତ୍ୱ ଓ ଚରିତ୍ରର ମାଧୁରୀ । କର୍ମକ୍ଷେତ୍ରରେ ତାଙ୍କ ସହିତ କେତେ ସ୍ଥଳରେ ମତଭେଦ ଘଟିଅଛି—ସମୟ ସମୟରେ ଉଭୟପକ୍ଷରୁ ତୀବ୍ର ସମାଲୋଚନା ମଧ୍ୟ ହୋଇଅଛି । କିନ୍ତୁ ସେଥିପାଇଁ ପରସ୍ପର ମଧ୍ୟରେ ସ୍ନେହ ସୌହାର୍ଦ୍ଦ୍ୟର ଅଭାବ କେବେ ହେଲେ ଘଟି ନାହିଁ । ଅଜକାଲି ଦିନରେ ଏହାଟା ସାମାନ୍ୟ ମୂଲ୍ୟବାନ୍ ବସ୍ତୁ ନୁହେ

# ଉତ୍କଳ-ସାହିତ୍ୟ ।

୩୨ଶ ଭାଗ | ମାର୍ଗଶିର ୧୩୩୬ | ୮ମ ସଂଖ୍ୟା ।

## ନିଦ୍ରିତ ଭଗବାନ ।



ଦେବଶିଶୁ ଚଳେ ନରକର ଅଭିସାରେ,
ଭଗବାନ ତୁମେ ନିଦ୍ରିତ କେଉଁଠାରେ ?

୨

ଶିଶୁ ହୋଇ ମୁଁ ଆସିଥିଲି ଯେବେ
ଅନନ୍ତ ସ୍ୱର୍ଗବର୍ଣ୍ଣ,
ଚାହିଁବ ବୋଲି ଅମୃତ ଏହି
ପୃଥିବୀର କଣେ କଣେ ?
ଅମୃତଶିଶୁ ଅମୃତ ପିଇ
ଆସିଥିଲି ଧରାତଳେ
ଦେବତାର ସୁଖ ଅଜାଡ଼ିବ ବୋଲି
ମନୁଷ୍ୟର ପଦତଳେ ?
ମନ୍ଦାକିନୀରେ ଅବଗାହିଥିଲି
ଗଙ୍ଗା-ଅକୂଳ ଜଳେ
ସନ୍ତରଣ କରିବାକୁ ଯେବେ
ଧରଣୀରେ ପଙ୍କେ ପଙ୍କେ ?
ଅମ୍ଳାନ ଦେହ ଅକ୍ଳେଶ ମୁଁ ଗୋ
ଆଣିଥିଲି ସାଥେ ବନ୍ଧୁ
ଏବେ ମୋହର ସ୍ନିଗ୍ଧ ମଧୁର
କରିବାକୁ ଏହି ମନ୍ଥ,
ଦେବ-ମାତା ଯେବେ ମଙ୍ଗଳ ହାତେ
ଫନ୍ଦି କପାଳ କେଶ
ପଠାଇଲେ ଦେଲେ ମନ୍ତ୍ରେ ନିଃଶେଷ
ମୋର ଶଙ୍କର ବେଶ ।
ଧରଣୀରେ ଆସି ମନ୍ତ୍ର ଭୁଲିଲି ମୁଁ ଯେ,
ଭଗବାନ ତୁମେ ନିଦ୍ରିତ କେଉଁ କୁଞ୍ଜେ ?

୩

ପଠାଇଲ ଦେଲ ଖୁନ୍ଦିଲ ନାହିଁ କି ଆଉ,
କି ଦେଲ ମୋ ତବ ଦର୍ଶିତ ପଥ ବାହୁ ।
ରହିଲ କାହିଁ ହେ କୁହୁଳି ଅନ୍ତରାଳେ
ଡାକିବ ବୋଲି ମୁଁ ସୁପଦେ ବା କେଉଁ କାଳେ ?
ପଥେ ଅସ୍ତ ଅସ୍ତ ଡାକିଲି ଅନେକ ବାର
ଲୋଚନେ ଚନ୍ଦ୍ରାଇ ବସି ମୋ ଅନ୍ଧକାର,
କନ୍ଦନେ ମୋର ଥରିଲେ ଯେ ପାଷାଣ ଥିଲେ,
କୃପାନିଧି ତୁମେ ଶୁଣି ନ ପାରିଲ ଟିକେ ?
ଜୀବନ ଦେଇ ଯେ ନ ବୁଝିଲା ସ୍ନେହ-ଶୋଷ,
କି ପରି କହ ତ ବୁଝାଇବ ତାର ଦୋଷ ।
ପାଥେୟ ନ ଦେଇ ବରଗଲ ଯେ ବା ଦୂତ,
ପ୍ରଭୁ ବୋଲି ତାରେ ଡାକିବାର ଅଦଭୁତ ।
ତେଣୁ ପିନା ମୁହିଁ ଠକିଲି ଧରାରେ ଆସି,
ଅଶ୍ରୁ ନିକ୍ତ ଗୋ ଜାଣଇ ସରଗ-ବାସୀ ?

ମାର୍ଗଶୀର, 1336, ପୃ.310,

୪

ପଥେ ଅସ୍ତ ଅସ୍ତ କରିଲି ଦର୍ଶିହି ସାଥୀ
ନେବାକୁ ହୃଦର ଦୁର୍ବହ ଲୁହ ବାଣ୍ଟି,
ବକ୍ଷେ ଧରି ସେ ପୋଛିଲେ ନୟନ-ତଟ,
ଅଶ୍ରୁ ବୁହାଇ କହିଲେ ପ୍ରାଣର କଥା,
(ମୁଁ ଗୋ) ତାଙ୍କର ହୋଇ ରହିଲି ତାଙ୍କୁ ଘେରି,
ଅତୀତ ଭୁଲିଲି ନ ଚାହିଁଲି ପଛେ ଫେରି,
ନଗଣ୍ୟର ବା ଭବିଷ୍ୟତ କି ଗୋ ଥାଏ,
ବର୍ତ୍ତମାନର ଜଞ୍ଜାଳେ ତ ଦିନ ଯାଏ ।
ଦୁଇ ସାଥୀ ଧରି ରଚିଲି ବସ୍ତି ମୋର,
ଏକଦା ଅସିଲା ମୋ ଘରେ ବସ୍ତି-ଚୋର ।
ଝୁଲିଗଲା ଧରି ଦୁଇରୁ ଗୋଟିଏ ସାଥୀ,
ସହସା ଘେରିଲା ମତେ ଦୁର୍ବଳ ରାତି,
ପଥତଟେ ବସି ପ୍ରଳୟର ଅଖିତଳେ
ଦୁହେଁ ଗୋ ତୁମ୍ଭଙ୍କୁ ଡାକିଲି ଅଖିଜଳେ
ଡାକିଲି ଉଚ୍ଚେ—'ଶଂକର' 'ଶଂକର',
ତମେ ତ ଅସିଲ, ଅଉ ଯେତେ ପଥ୍ୟକର ।
ରହିଲ କାହିଁ ହେ 'କୃପାମୟ' ଭଗବାନ,
କାହିଁ ବା ରହିଲା ତବ ମଙ୍ଗଳ-ଦାନ ?
ସକଳେ ଶୁଣିଲେ, ତୁମେ ନ ଶୁଣିଲ କାହିଁ ?
କପଟ ସେ ଦୟା ସାଇତଛ ତବ ହୃଦୟା ?
ସାଥୀରେ ଛଡ଼ାଇ ଏ ଜୀବନ ଦୁର୍ବହ
କରିଛ; କିଏ ସେ ପୋଛିବ ଏ ମୋର ଲୁହ ?
ଉଷ୍ଣତା ଏ ମୋ ଲୋକତର ବୁଝୁଛ ?
ସ୍ଵାଦ ପାଅ ବା ଅନାଶିତରେ ଠକି ।

୫

ଝୁଲି ମୁଁ ଅଟିଛି ବହୁଦୂର ପଥେ ପଥେ,
ଦେଖିନି ତୁମର ଦଣ୍ଡ ନାହିଁ ଅଜ ମତେ,
ଫେରି ପଛେ, ଉଠି ପଥକଣ୍ଟକିର ଘାତେ,
ନିରେଖି ଚାହିଁଛି ଦେଉଳରେ ଅ-ଖ ଅଟଖ,
ରଥ, ପତାକା କେବେ ବା ପଡ଼ିବ ଧରା,
ପଥ ମୁଁ ପାଅନ୍ତି ପରଦେଶୀ ପଥହରା,
କାହିଁ ହେ ରଥ, କାହିଁ ହେ ପତାକା ତବ ?
ସାରିଲିଣି ମତେ ଧରଣୀର ପରିଭବ ।
ଅଲେଖବାସୀ ମୁଁ ଅନ୍ଧାରେ ଗଲି ମିଶି,
ମୁକ୍ତ ମୁଁ—ମତେ ଅବରୋଧ ଦଶଦିଶି ।
ରଥ ରଖିଲ; ପତାକା ନୋଇଁଲ ତଳେ,
ସହଚ ମୁଁ ପାରି ହେବ କହ କାହା ବଳେ ?
ଅନ୍ଧେକ ଦେଖାଅ, ଜାଗି ଶୁଣ ମୋର କଥା,
ନିଦ୍ରା କି ଶୋଭେ, ଅସ୍ଥିର ପାଇଁ ବଥା ?

୬

ଅପୂର୍ବ-ଦେହ-ଅଶ୍ଳେଷ ଧରି ଦେହେ
ଅସିଥିଲି ପରା ସେ ଦିନ ଏ ଭବ-ଗେହେ ?
କାହିଁ ସହବର ? କାହିଁ ଦେବତାର ଶିଶୁ ?
ଏଇ ଦେହେ ମୋର ଚୁମ୍ବିଥିଲା କି ପଶୁ ?
ଏ ବପୁ ଘେନି କି ସ୍ଵର୍ଣ୍ଣ-ଜୀବନପଥେ,
ଲକ୍ଷ୍ୟବ୍ୟାକୁଳ, ନେତ୍ର ଟେକିତ ରଥେ,
ଛଳଚଞ୍ଚଳ ସ୍ଵପ୍ନାକୁଳ ଘାସେ
ଅଳସେ ଅଭଜ, ଶମାଇ ବେଣପ୍ରାସେ
ଚୁମ୍ବିଥିଲି ମୁଁ ଜଗତ ସୁରବାଳା,
ଅଙ୍ଗନେ ତା ବାଜୁଥିଲା ଭରବଳା ।
ଦେବତାପ୍ରସାଦ ମନୁଷ୍ୟ ଦୂର କରେ,
ବର୍ତ୍ତମାନ ଏ ଦେଖିଛ କି କିଏ ଥରେ ?
ଅତ୍ୟାଚାରେ ମୁଁ ଖାଇଛି ଦେବତା-ଶିଶୁ
ହଇତାନ ମୋର ଲକ୍ଷ୍ମୀରେ ଦେଲା ଚିରି ।
ଏବେ ଗୋ ଅଦ୍ଭୁର ପଳ ପଳ କରି ଖାଏ,
ଅଭୁର ପରାଣ ଭଗବାନେ ଡାକୁଥାଏ ।
ବୁଝିଲ କି କିଏ ସ୍ଵର୍ଗ ନିଶ୍ୱାସମାନ ?
ତେଣୁ ମୁଁ ବୋଲଇଁ ନିନ୍ଦିତ ଭଗବାନ ।

୭

ଧରଣୀରେ ଅସି ମନ୍ତ୍ର ଭୁଲିଲି ପରା,
ପାଇବ କି ହେ ନିସ୍ତାର ପଥହରା ?
ଦେବତାରେ ଏ ଯେ ସଂସାର ଭୁଲାଇଲା,
ଚିରବାସୀ ସେ ମୃତ୍ତିକା ଅଦରିଲା,
ବିପ୍ରବ ସେ ଅଜ ଧାଉଁଛି ଦୃପ୍ତ ଅଶେଷ,
ସନାତନ ପ୍ରାଣ ଚକୁଛି ଷଣ୍ଢ ପାଟଣ,
ଦୁଇଚ ସେ ଗୋ ଭୁଲୁଛି ଲତର ବୁଦେ,
ଚିର ଉର୍ଦ୍ଧ୍ୱଗ ଖସୁଛି ଅତଳ କୂପେ ।

ଉତ୍କଳ ସାହିତ୍ୟ, 32/8, ମାର୍ଗଶୀର, 1336, ପୃ.311.

ନାହିଁ ନସ୍ରାବ ! ନସ୍ରାବ ନାହିଁ କି ହେ !
ମଙ୍ଗଳହାତ ପାତିବାକୁ ନାହିଁ କିଏ ?
ଅମୃତପାୟୀ ମରଣରେ ହେଏ ଯଦି,
ନନ୍ଦନବାସୀ ନରକେ ନେଲେ ପଦି ?
କେଉଁ ଦେବତାର ଭାଙ୍ଗିବ ଭକ୍ତ ନିଦ
ସଇତାନ ସଙ୍ଗେ ବାଧିବାକୁ ଅରେ ଯୁଦ୍ଧ ?
ଶଂକର ଶୂଳ ଗର୍ଜନ ଉଠିବ କିକ
ଅତ୍ୟାଚାରର ଏ କାଟିବାକୁ ଟିକ ଟିକ ?
ବିଷ୍ଣୁର ଗଦା କାହିଁ ବା ରହିଲା ଲୁଚି,
ଅପମାନ ଭକ୍ତ ଦେଉଛି ପଛକୁ ଘୁଞ୍ଚି ?
ଯୋଗନିଦ୍ରାରେ ଶୋଇଲ ଦେବତାବୃନ୍ଦ,
ବୁଝିବ କିଏସେ ଏ ମୋର ଦାରୁଣ ଦ୍ୱନ୍ଦ୍ୱ ?
ବିଶ୍ୱେ ମୁହିଁ ଯେ ସୃଷ୍ଟି କରୁଛି କଷ୍ଟ,
ପ୍ରତିକ୍ରିୟା ତାର ହେବଟି ହେ ଅବକାଶ ?
କରିବାର ଯାହା, ଦ୍ରୁତ ଦେଉ ଅବଧାନ,
ଡାକେ ଦେବଶିଶୁ, ନିଦ୍ରାରୁ ଭଗବାନ !

ଶ୍ରୀ ମାୟାଧର ମାନସିଂହ ।

## ଅନ୍ଧ ନାଚୁଣୀ ।

( ଗଳ୍ପ )



ଗୋପାଳପୁରକୁ ଅନେକ ଦିନରୁ ଯାଇ ନ ଥିଲି । ପ୍ରାୟ ଚାରି ବର୍ଷ । ଗୋପାଳପୁରରେ ମୋର ସାନ ମାଉସୀଙ୍କ ଘର । ଆମ ଗ୍ରାମରୁ ପ୍ରାୟ ପାଞ୍ଚ କୋଶ ଦୂର । ଏ ଗ୍ରାମକୁ ମୁଁ ପ୍ରାୟ ଯାଏ । ମାଉସୀ ମତେ ଖୁବ ସ୍ନେହ କରନ୍ତି ।

ମୋର ଅଠର ବର୍ଷ ବୟସରେ ମୁଁ ପ୍ରବେଶିକା ପରୀକ୍ଷା ପାସ୍ କଲି । କଲେଜରେ ଭର୍ତ୍ତି ହେଲାବେଳେ ପ୍ରତିଜ୍ଞା କଲି ଯେ, ବି. ଏ. ପରୀକ୍ଷା ନ ଦେବାଯାଏ ଗୃହମୁଖ ଦେଖିବି ନାହିଁ । ଚାରି ବର୍ଷ ବିଦେଶରେ ରହିଲି । ବି. ଏ. ପରୀକ୍ଷା ଦେଇ ବୈଶାଖ ମାସରେ ଘରକୁ ଫେରିଲି । ଗୃହରେ କିଛିଦିନ ଅବସ୍ଥାନ କରି ବନ୍ଧୁ ବାନ୍ଧବଙ୍କ ଖୋଜା ପଡ଼ିଲା । ପ୍ରଥମରେ ସାନ ମାଉସୀଙ୍କ ଘର ଗୋପାଳପୁରକୁ ଗଲି ।

ବୈଶାଖ ମାସର ଶେଷ, ପ୍ରଚଣ୍ଡ ଖରା; ବାଟରେ ବସି ବସି ଚାଲି ଚାଲି ପ୍ରାୟ ଦଶଘଣ୍ଟା ବେଳେ ଗୋପାଳପୁରରେ ପହଞ୍ଚିଲି । ଗ୍ରାମର ପଶ୍ଚିମରେ ଗୋଟିଏ ବଡ଼ ପୁଷ୍କରିଣୀ । ପୁଷ୍କରିଣୀ ନିକଟ ଦେଇ ଗ୍ରାମର ରାସ୍ତା । ରାସ୍ତା ନିକଟରେ ପୂର୍ବକୁ ଚାରି ଛଅଟା ଆମ୍ବ ଗଛ । ମୁଁ ସେଠାରେ ପହଞ୍ଚିଲାବେଳେ ଗ୍ରାମରୁ ଜଣେ ବୃଦ୍ଧା ଓ ଜଣେ ଯୁବତୀ ସେଠାରେ ଉପସ୍ଥିତ ହେଲେ । ମୁଁ ବୃଦ୍ଧାଙ୍କୁ ଦେଖି ପ୍ରଣାମ କଲି । ବୃଦ୍ଧା କହିଲେ, "ବାପା, ଚାରି ବର୍ଷରେ ଗ୍ରାମରେ ପାଦ ପଡ଼ିଲା, ଆଜି ଆମେମାନେ ମନରେ ପଡ଼ିଲୁଁ ? ତୁମେ ବଡ଼ ନିଷ୍ଠୁର ପିତାର ପୁଅ । ଯାଅ ବାପା, ଯାଅ; ତୁମ ମାଉସୀର ଆଖି ଫୁଟି ଯାଇଛି, ତୁମକୁ କେତେ ଖୋଜୁଛି, ମନେ କରୁଛି ।" ତାଙ୍କ ସଙ୍ଗରେ ଥିବା ଯୁବତୀ ମୋତେ ଦେଖି ମୁହଁରେ ଲୁଗା ଘୋଡ଼ାଇ କାନ୍ଦିବାକୁ ଲାଗିଲା । ମୁଁ ତାହାର ମୁହଁ ଦେଖି ପାରିଲି ନାହିଁ; ଚିହ୍ନି ପାରିଲି ନାହିଁ । ପଚାରିଲି, "ଏ କିଏ ଗୋ ମାଉସି ?" ବୃଦ୍ଧା କହିଲେ, "ଚିହ୍ନି ପାରିଲ ନାହିଁ ବାପା, କାହୁଁ ଚିହ୍ନିବ, ତାର ସେ ରୂପ, ବେଶ, ଭୂଷଣ ଅଛି ଯେ ଚିହ୍ନିବ । ତାର ସବୁ କପାଳ ଫାଟିଲା ! ହେମାନନ୍ଦ ମିଶ୍ରଙ୍କ ନାଚୁଣୀ ଅହଲ୍ୟା ।" ଏହା ଶୁଣି ମୁଁ କିଂକର୍ତ୍ତବ୍ୟ-ବିମୂଢ଼ ହୋଇ ରହିଲି । ଅହଲ୍ୟା ମୁଖରୁ ବସ୍ତ୍ର ଅପସାରିତ କଲା । ଚକ୍ଷୁରୁ ଦରଦର ଲୋତକଧାରା

ଉତ୍କଳ ସାହିତ୍ୟ, 32/9, ପୌଷ– 1336,

ଶ୍ରୀ ମାୟାଧର ମାନସିଂହଙ୍କ ପ୍ରଣୀତ ଗୀତିନାଟ୍ୟ

# ରାଜକବି

ଓଡ଼ିଆ ଭାଷାରେ ସମ୍ପୂର୍ଣ୍ଣ ନୂତନ ।

ମୂଲ୍ୟ ୫୦ । ମାତ୍ର ।

ସୁପରିଚିତ ସୁକବି ପଦ୍ମଚରଣ ପଟ୍ଟନାୟକ କହନ୍ତି :— × × ତମ ବନ୍ଧୁର କଳ୍ପନା ଓଡ଼ିଶାରେ ଗୋଟାଏ ନୂଆ କଥା । ଏ ଧରଣର ସୃଷ୍ଟି କେବଳ ଦୃଶ୍ୟ କାବ୍ୟରେ କାହିଁକି, ଆମଦେଶର ଆଧୁନିକ ସାହିତ୍ୟର କୌଣସି ବିଭାଗରେ ଏତେ ସୁସ୍ପଷ୍ଟ ଓ ଦରଦପୂର୍ଣ୍ଣଭାବରେ ପଢ଼ିଥିବାର ମୁଁ ଦେଖି ନାହିଁ । × × × ରଙ୍ଗମଞ୍ଚର ଏହା କେତେଦୂର ଉପଯୋଗୀ କହି ପାରୁ ନାହିଁ, କିନ୍ତୁ କବିତାର "ଯେଉଁ ସନାତନ ସୁଧାସ୍ରୋତ ସୃଜାଅଛ" ତାହା ଚିତ୍ତ ପ୍ରାଣରେ ଆନନ୍ଦ ଦେବ । × × ତୁମ୍ଭେ ପ୍ରଥମ ଦୁଇଟି ଦୃଶ୍ୟରେ ଗ୍ରାମ ଓ ନଗର ଜୀବନର ଯେଉଁ ଚିତ୍ର ଦେଇଅଛ, ତାହା ତ ଜୀବନ୍ତ ସ୍ୱାଭାବିକ ।"

'ଆଶା' କହେ :— × × ନବୀନଯୁଗର ନବୀନ ନାଟକ । × × ଭାଷା ବଡ଼ ମଧୁର, ବଡ଼ ଲଳିତ । × ଉଦୀୟମାନ ସାହିତ୍ୟିକ ଶ୍ରୀମାନ୍ ମାୟାଧର ମାନସିଂହ ରାଜକବିର ରଚନାରେ ବିଶେଷ ଦକ୍ଷତାର ପରିଚୟ ଦେଇଅଛନ୍ତି ।

ଅଧ୍ୟାପକ ପ୍ରାଣକୃଷ୍ଣ ପରିଜା କହନ୍ତି :— × × × ପ୍ରକୃତ ବର୍ଣ୍ଣନାରେ ବାହାଦୁରୀ ଅଛି । × ଏ ପ୍ରଥମ ଉଦ୍ୟମ । ଏ ଦୃଷ୍ଟିରେ 'ରାଜକବି' ପ୍ରଶଂସାର୍ହ ।

ପ୍ରାପ୍ତିସ୍ଥାନ —

କଟକ ଟ୍ରେଡ଼ିଂ କୋମ୍ପାନୀ, ମୁକୁର ପୁସ୍ତକାଳୟ,
ଓ କଟକର ଅନ୍ୟାନ୍ୟ
ବଡ଼ ବଡ଼ ପୁସ୍ତକ ଦୋକାନ

ଶଂଖ, 2/1, ଆଷାଢ଼- 1946,

# ମେହେରଙ୍କ ମହତ୍

ମାୟାଧର ମାନସିଂହ

ମେହେର କବି ରାଧାନାଥଙ୍କ ପ୍ରତିପତ୍ତି-କାଳ ଭିତରେ ଜନ୍ମ ହୋଇ ଥିଲେ ବୋଲି, ଅନ୍ୟମାନଙ୍କ ପରି ତାଙ୍କୁ ମଧ୍ୟ ରାଧାନାଥଙ୍କର ଉପଗ୍ରହ ମାତ୍ର କହିବା ଏକାନ୍ତ ଅଯୌକ୍ତିକ । ରାଧାନାଥ ଓ ଗଙ୍ଗାଧରଙ୍କ ରଚନା ମଧ୍ୟରେ ସାମ୍ୟ ଯତ୍‌କିଂଚିତ୍, କିନ୍ତୁ ଭିନ୍ନତା ପ୍ରଚୁର । ଦୁଇ କବି-ପ୍ରତିଭାର ଉପାଦାନ ଭିନ୍ନ ଏବଂ ତେଣୁ ବିକାଶ ମଧ୍ୟ ଭିନ୍ନ । ରାଧାନାଥ ଯଦି ଏକ ସୁଦୃଶ୍ୟ ପର୍ବତ ବୋଲି ଧରିଯାନ୍ତି, ଗଙ୍ଗାଧରଙ୍କୁ ତାହାର ତଳସ୍ଥ ହ୍ରଦଜଳରେ ସେହି ପାହାଡ଼ର ପ୍ରତିବିମ୍ବ ବୋଲି ଧରି ଯାଇ ନ ପାରେ । ଗଙ୍ଗାଧର, ଛୋଟ ହେଉ ବରଂ, ରାଧାନାଥଙ୍କ ପରି ଆଉ ଏକ ସୁଦୃଶ୍ୟ ପର୍ବତ ।

ସାହିତ୍ୟର ଇତିହାସରେ ଦେଖାଯାଇଛି ଯେ, ଅପେକ୍ଷାକୃତ ନ୍ୟୂନ ପ୍ରତିଭାଶାଳୀ ସାହିତ୍ୟିକ ଯୁଗମାନଙ୍କର ପ୍ରବର୍ତ୍ତନ କରାଇଛନ୍ତି । ଉଚ୍ଚତର ମୌଳିକ ପ୍ରତିଭାର ପୁରୋଗାମୀମାନଙ୍କର ଅନୁକରଣ ଭିତରେ ଫୁଟି ଉଠିଛି ମାତ୍ର । ସେକସପିୟରଙ୍କର କୌଣସି ଶୈଳୀ ତାଙ୍କର ନିଜସ୍ୱ ନୁହେଁ । ସେ ଯାହା ଯାହା ଲେଖିଛନ୍ତି, ତାଙ୍କର ଠିକ୍ ପୂର୍ବରୁ ଅନ୍ୟମାନେ ପ୍ରଥମ କରି ସେ ସବୁ ଇଂରେଜୀ ସାହିତ୍ୟରେ ପ୍ରବର୍ତ୍ତନ କରି ଯାଇ ଥିଲେ । ଅସାଧାରଣ ପ୍ରତିଭା ଫଳରେ ସେକ୍ସପିୟର କିନ୍ତୁ ଯେଉଁଥିରେ ହାତ ଦେଲେ ତାର ଉତ୍କର୍ଷ ଅନ୍ୟ ସମସ୍ତଙ୍କ ଠାରୁ ବଳି ଯାଇଛି । ମାର୍ଲୋ ଓ ଓ୍ୱାଇଟ୍ ନବପ୍ରବର୍ତ୍ତକ ସତ, କିନ୍ତୁ ପ୍ରତିଭା ହିସାବରେ ସେକସପିୟରଙ୍କ ଠାରୁ ଢେର ନ୍ୟୂନ ।

ରାଧାନାଥ ଓଡ଼ିଆ କାବ୍ୟ-ସାହିତ୍ୟର ନବଯୁଗର ପ୍ରବର୍ତ୍ତକ ହେଲେହେଁ, ମୁଁ ମନେ କରେଁ ଯେ ପ୍ରତିଭାର ନିଛକ ମୌଳିକତାର କଷ୍ଟିରେ ଗଙ୍ଗାଧର ଉଚ୍ଚତର ଆସନର ଯୋଗ୍ୟ । ସେ ପ୍ରତିଭା ତା'ର ପ୍ରକୃଷ୍ଟ ବିକାଶ ପାଇଁ ଅବକାଶ ପାଇ ପାରିଲା ନି, ତେଣୁ ତା'ର ସିଦ୍ଧି ଏତେ ଅଳ୍ପ । କିନ୍ତୁ ସେଇ ସ୍ୱଳ୍ପ କୃତି ଭିତରେ ଆମ୍ଭେମାନେ ଉଜ୍ଜ୍ୱଳ ମୌଳିକତାର ଯେଉଁ ପରିଚୟ ପାଉ, ସେଥିରେ ସ୍ତବ୍ଧ ହୋଇ ଏହାହିଁ କହୁଁ "ଉପଯୁକ୍ତ ଭାବରେ ବିକଶିତ ହୋଇଥିଲେ, ଏ ପ୍ରତିଭା ନ ଜାଣି କି ଫଳ ପ୍ରସବ କରି ପାରିଥାନ୍ତା ! "

ରାଧାନାଥ, ମଧୁସୂଦନ, ନନ୍ଦକିଶୋର ପ୍ରଭୃତି, ଗଙ୍ଗାଧରଙ୍କ ସମସାମୟିକ ସମସ୍ତ ବାଦ୍ ପ୍ରତିଷ୍ଠ ସାହିତ୍ୟିକମାନେ ନାନା ଭାଷା, ବିଶେଷତଃ ଇଂରେଜୀ ଭାଷାରେ ସୁପଣ୍ଡିତ ଥିଲେ । ସମସ୍ତଙ୍କ ଭିତରେ ଗଙ୍ଗାଧର ଶିକ୍ଷାରେ ଓ ଧନରେ ନିମ୍ନତମ । କୀଟକାଟାଇଁ ତନ୍ତ-ବେଉସା ଚଳେଇ ଦିନ ଯାପନ କରି, ଗ୍ରନ୍ଥ-ଚର୍ଚ୍ଚା ପାଇଁ କେତେ ଅବସର ବା ମିଳନ୍ତା ? ପ୍ରତିଭାର ଅଭିଶାପ-ଭୂମି ଓଡ଼ିଶାରେ ଗଙ୍ଗାଧରଙ୍କ ପ୍ରତିଭା ସବୁଠାରୁ ଅଭିଶପ୍ତତମ ।

ଓଡ଼ିଆ ଭାଷାରେ ଯାହା କିଛି ପ୍ରାଚୀନ ବା ନବୀନ କାବ୍ୟ କବିତା, ତାହାହିଁ ଥିଲା ଗଙ୍ଗାଧରଙ୍କ ମାନସିକ କ୍ଷୁଧାର ପ୍ରଧାନ ଖାଦ୍ୟ । ସେ ଭଞ୍ଜ, ଅଭିମନ୍ୟୁଙ୍କ ସଙ୍ଗେ ରାଧାନାଥ ଓ ମଧୁସୂଦନଙ୍କଠାରୁ ରସ ସଂଗ୍ରହ କରିଁ ତାଙ୍କର ଯାହା କିଛି ମାନସିକ ଅଭିବୃଦ୍ଧି ଘଟିଥିଲା ।

16·

# ॥ ମାନସିଂହଙ୍କ ବିପ୍ଳବଧାରା ॥

## ପରିଶିଷ୍ଟ—ଷୋହଳ,

'ଅକ୍ଷତ' ବହିର ପ୍ରଥମ ମୁଦ୍ରଣ

ପ୍ରକାଶକ

**ଷ୍ଟୁଡେଣ୍ଟସ୍ ଷ୍ଟୋର**

ଲୁଦ୍ରପୁର: କଟକ:

—ଆଠଅଣା—

॥ ମାନସିଂହଙ୍କ ବିଚାରଧାରା ॥

## ପରିଶିଷ୍ଟ— ସତର

'କମଳାୟନ' କାବ୍ୟ ପ୍ରଥମ ମୁଦ୍ରଣ

ପ୍ରକାଶକ

ଭାରତୀ ବିହାର

ବୃଝଲାଅଗଞ୍ଜ

କଟକ

ପ୍ରଥମ ସଂସ୍କରଣ, ୧୦୦୦

୧୯୪୭

ମୂଲ୍ୟ — ଦୁଇ ଟଙ୍କା

ମୁଦ୍ରାକର

ବନମାଳୀ ମିଶ୍ର

ନବଭାରତ ପ୍ରେସ

କଟକ

ଏବଂ ତାର ପ୍ରାଣର ଉପଧାର ଭେଦେ ଭେଦେ [illegible] ଓ ବୈଚିତ୍ର୍ୟ ଦେଉଛି । ବାପୁଜୀଙ୍କ ସାହିତ୍ୟର ଗଣର ମୂଳତତ୍ତ୍ୱ ଏହିଠାରେ । ତାଙ୍କ ପା [illegible] ଉଠାଇବା [illegible] ସମାଜ ଲାଗି କାନ୍ଦୁଥିଲା । ତାଙ୍କର ହୃଦୟରେ [illegible] ଜନିବା ଲାଗି ଅଗାଧ ଆକାଂକ୍ଷା [illegible] ରହିଥିଲା । ସେ ଯାହା କହୁଥିଲେ [illegible] ଅନୁଭବ କରିବାର [illegible] ଥିଲା । ତେଣୁ ତାଙ୍କ [illegible] ଓ ତାଙ୍କ ବାଣୀ [illegible] [illegible] ।

ବାପୁଜୀଙ୍କର ଭାଷା-ଶିକ୍ଷା [illegible] । [illegible] ଗୁଜରାଟୀ ଭାଷା ଜାଣିଥିଲେ । ଇଂ [illegible] ଓ [illegible] । ଅଧିକାଂଶ କ୍ଷେତ୍ରରେ ତାଙ୍କ ଭାବର ମାଧ୍ୟମ [illegible] ଥିଲା, ତା' ପଛକୁ ତାଙ୍କର ମାତୃଭାଷା ଗୁଜରାଟୀ । ବାପୁଜୀଙ୍କ ସାହିତ୍ୟିକ ମତ ସାଙ୍ଗ ବନ୍ଧୁରେ ପ୍ରକୃତ [illegible] ତାଙ୍କର ଇଂରେଜି ଲେଖାର [illegible] । ଇଂରେଜୀ ଭାଷାରେ ଅଧିକାଂଶ ଲୁକେ ଧରିଯାଏ [illegible] ଓ [illegible] ନାହିଁ । ବାପୁଜୀଙ୍କ ଇଂରେଜୀ ଗଦ୍ୟର ତୁଳନା [illegible] କୌଣସି ଇଂରେଜ [illegible] ଲେଖାରେ ମଧ୍ୟ ମିଳିବ ନାହିଁ । ଏହାର ସୌନ୍ଦର୍ଯ୍ୟ ଓ ମହିମା କେବଳ [illegible] ଗଦ୍ୟ ସାହିତ୍ୟ ସଙ୍ଗେହିଁ ତୁଳନୀୟ । ମନେ ଅଛି 'ହରିଜନ' କାଗଜର ମୁଦ୍ରଣ ବନ୍ଦ କରି ଦଆଯିବା ଶୁଣି, କଲିକତାର ତତ୍କାଳୀନ ସରକାରୀ ମୁଖପତ୍ର 'ଷ୍ଟେଟ୍ସମ୍ୟାନ' ମଧ୍ୟ, ବଡ଼ ଅବସୋସ କରିଥିଲେ ଯେ ଗାନ୍ଧିଙ୍କର ଅସାଧାରଣ ମନୋଜ୍ଞ ଗଦ୍ୟ ଆଉ ପଢ଼ିବାକୁ ମିଳିବ ନାହିଁ ।

ବାପୁଜୀଙ୍କ ଲେଖାର ପ୍ରଧାନ ଗୁଣ ହେଉଛି 'ଯାଥାର୍ଥ୍ୟ' । ଯେଉଁଟି ଠିକ୍ ଯେଉଁ ଶବ୍ଦ ଯେଉଁ ଅର୍ଥରେ ପ୍ରୟୋଗ ହେବାର କଥା ସେ ସେହି ଶବ୍ଦଟି ପ୍ରୟୋଗ କରୁଥିଲେ । ତାଙ୍କ ଲେଖାରେ କୌଣସି ଗୋଟିଏ ଶବ୍ଦକୁ ଉଠାଇ ନେଇ ଅନ୍ୟ ଶବ୍ଦଟିଏ ବସାଇବା ଅସମ୍ଭବ ଥିଲା । ତାଙ୍କର ବାକ୍ୟଗୁଡ଼କ ଛୋଟ ଛୋଟ । ଏଣୁ ତେଣୁ ଗୁଡ଼ାଏ କହିବାର ବ୍ୟସନ ତାଙ୍କୁ ସ୍ପର୍ଶ କରି ନ ଥିଲା । କଠୋର ସତ୍ୟରୁ ଯେଉଁ ସୌନ୍ଦର୍ଯ୍ୟ ଫୁଟେ, ତାଙ୍କ ଲେଖାରେ ସେହି ନିଷ୍ଠୁର ସୌନ୍ଦର୍ଯ୍ୟ ଦୀପଶିଖା ପରି ଜଳି ଉଠୁଥିଲା । ଆଶ୍ଚର୍ଯ୍ୟର କଥା ଏହି ଯେ ଅମର ହିନ୍ଦୁ ମହାକବି କାଳିଦାସଙ୍କର ଏହି 'ଯାଥାର୍ଥ୍ୟ'ହିଁ ଥିଲା ରଚନାର ଚରମ ଆଦର୍ଶ । ସେଥିପାଇଁ ରଘୁବଂଶ ମହାକାବ୍ୟର ଆରମ୍ଭରେ ମହାକବି ଶିବଙ୍କୁ ବାକ୍ ଓ ଅର୍ଥର ଭଳି ପ୍ରତିପତ୍ତି ପାଇଁ ଏହିପରି ଭାବରେ ବନ୍ଦନା କରିଥିଲେ—

ବାଗାର୍ଥାବିବସଂପୃକ୍ତୌ ବାଗାର୍ଥ ପ୍ରତିପତ୍ତୟେ
ଜଗତଃ ପିତରୌ ବନ୍ଦେ ପାର୍ବତୀ ପରମେଶ୍ୱରୌ ।

[ ୨୦ ]

ସୌନ୍ଦର୍ଯ୍ୟ-ପିପାସୀ କବି ଓ ସତ୍ୟାନୁସନ୍ଧୀ କର୍ମଯୋଗୀଙ୍କର ଏହି ମିଳନ ଦେଖି ବୁଝାଯାଉଛି ଯେ ସଚ୍ଚିଦାନନ୍ଦଙ୍କ ଆଖିରେ ଧର୍ମ ଏବଂ କବିତା, ପୁଣ୍ୟ କର୍ମ ଯଥା ଉଭୟ ମଧ୍ୟରେ ପ୍ରକାଶ ପାଏ ସତ୍ୟ ଓ ଆନନ୍ଦ। ଆଜିକାଲିକାର ଲେଖକ ଯେଉଁମାନେ କେଉଁଆଏ ଭାବ ପାଇଁ କେତୋଏ ଭାଷା ପ୍ରୟୋଗ କରୁ ସେମାନଙ୍କର ଗାନ୍ଧିଜୀ ଓ କାଳିଦାସଙ୍କ ଲେଖାରୁ ଲେଖନ-କଳାର କ'ଣ ଆଦର୍ଶ ଉଚିତ, ତାହା ଶିଖିବାର କଥା।

ବାପୁଜୀଙ୍କ ନିଜ ଭାଷା ଗୁଜରାଟୀ ବାପୁଜୀଙ୍କ ବାଣୀ ବହନ କରି ମହାଗୌର ଗରବିଣୀ ହୋଇ ଉଠିଛି। ବାପୁଜୀଙ୍କ ଗଦ୍ୟହିଁ ଗୁଜରାଟୀ ଭାଷାର ଶ୍ରେଷ୍ଠ ଗଦ୍ୟ-ଶୈ ତାଙ୍କର 'ନବଜୀବନ' କାଗଜ କେବଳ ବାପୁଜୀଙ୍କ ଗଦ୍ୟର ମାଦକତା ଯୋଗୁଁ ଗୁଜରାଟରେ ଘରେ ଘରେ ପଠିତ ହେଉଥିଲା।

ବାପୁଜୀ ଯେ ଲେଖକ ବୋଲି ପରିଚିତ ହେବା ପାଇଁ କେବେ ହେଲେ ବା ଇଚ୍ଛା କରି ନଥିଲେ, ତାହା ନିଶ୍ଚୟ କୁହାଯାଇଛି। ତେଣୁ ସେ 'ହିନ୍ଦ-ସ୍ୱରାଜ' 'ସ୍ୱାସ୍ଥ୍ୟ-ବିଧାନ' ପ୍ରଭୃତି କେତେଖଣ୍ଡି ପତ୍ର-ମୂଳକ ପୁସ୍ତକ ଛଡ଼ା ବେଶି କିଛି ଛପାଇ ନାହାନ୍ତି। କିନ୍ତୁ ସେ ଅନବଚ୍ଛିନ୍ନ ଭାବରେ ଗତ ୫୦ ବର୍ଷ ଧରି ଆସୁଛନ୍ତି। ସେ ସମସ୍ତ ଏକତ୍ର କଲେ ଏକ ଲାଇବ୍ରେରୀ ହେବ। କେତେ ତାଙ୍କ ଲେ ସ୍ତୁପରୁ ଚୟନ କରି 'ଗାନ୍ଧିଜୀ ଓ ନାରୀ' 'ଗାନ୍ଧିଜୀ ଓ ଛାତ୍ରସମାଜ' ପ୍ରଭୃତି ବହି ବାହାର ଏବଂ ଏ ପ୍ରକାର ବହି ପରେ ଅନେକ ବାହାରିବ। କିନ୍ତୁ ସେ ବିଶେଷ ଭାବରେ ବିଶ୍ୱ ସାହିତ୍ୟକୁ ଏକ ମହାଦାନ ଦେଇ ଯାଇଅଛନ୍ତି, ତାହା ହେଉଛି ତା 'ଆତ୍ମଚରିତ'। ଏହି ଆତ୍ମଚରିତ କେବଳ କେତେଗୁଡ଼ିଏ ଘଟଣା ପରମ୍ପରାର ବ ନୁହେଁ। ଏହା ଏକ ବିରାଟ ଆତ୍ମାର ଅନ୍ଧକାରରୁ ଆଲୋକକୁ ଆସିବାର ଅକପ ମହିମାମୟ କାହାଣୀ। ଏହା ଏକ ଅସାଧାରଣ ଆଧ୍ୟାତ୍ମିକ ଡକୁମେଣ୍ଟ। ବାପୁଜୀ ଏ କିଛି କଥା ଲୁଚାଇ ନାହାନ୍ତି। କୌଣସି ସିଦ୍ଧି ବା ଗୌରବ ପାଇଁ ଏଥିରେ ଅହ ଲେଶ ନାହିଁ। ଏହା ତାଙ୍କ ପ୍ରାଣର ଇତିହାସ, ଅହିଂସା-ବାଦ ଓ ସତ୍ୟାଗ୍ରହର ବୈ ବିବରଣୀ। ଏଥିରେ ସମାଜର ସବୁ ସ୍ତରର ଲୋକେ ସବୁ ଅବସ୍ଥାରେ ଶିଖିବାର କଥା ଅଛି। ଭବିଷ୍ୟତ କାଳରେ ଭାରତବର୍ଷରେ ଏହାହିଁ ହେବ ଶ୍ରେଷ୍ଠ ଗାନ୍ଧି ସାହିତ୍ୟ ଗଣସାହିତ୍ୟ।

---




ଦ୍ୱିତୀୟ ବର୍ଷ
୨ୟ ସଂଖ୍ୟା

ବୃଷ ୧୩୫୭
ମଇ—୧୯୫୦

# ସାହିତ୍ୟର ସାଧନା

ଡାକ୍ତର ମାୟାଧର ମାନସିଂହ

(ବିଷୁବ ମିଳନର ପ୍ରଥମ ଅଧିବେଶନର ସଭାପତିରୂପେ ଡାଃ ମାୟାଧର ମାନସିଂହ ନିମ୍ନଲିଖିତ ଦୁଃଶନ୍ତର ଭାଷଣ ଦେଇଥିଲେ)

ଏପରି ଏକ ପଣ୍ଡିତ ଓ ଗଣ୍ୟମାନ୍ୟ ସୁଧୀ ସମାଜରେ ମୋପରି ଏକ ଅର୍ବାଚୀନ ସଭାପତିତ୍ୱ କରୁଥିବାରୁ ମୁଁ ଅତ୍ୟନ୍ତ ସଂକୁଚିତ ବୋଧ କରୁଛି, କିନ୍ତୁ ଏପରି ଏକ ସଭା ଦରବାର ଡାକି ଓ ଏଥିର ଆୟୋଜନ କରିଥିବାରୁ ଏହାର କର୍ତ୍ତୃପକ୍ଷଙ୍କୁ ମୁଁ ଅନ୍ତରର ଧନ୍ୟବାଦ ଦେଉଅଛି । ଆମ୍ଭେ କେବଳ ପିଲାଦିନେ ଶୁଣିଥିଲୁ ଯେ ଓଡ଼ିଶାରେ ବାମଣ୍ଡାର ପୂର୍ବତନ ରାଜା ସାର୍ ସୁଢ଼ଳ ଦେବ ଓ ତାଙ୍କ ପୁତ୍ର ସଚ୍ଚିଦାନନ୍ଦ ଦେବଙ୍କ ଦରବାରରେ ଏ ପ୍ରକାର ସାହିତ୍ୟିକମାନଙ୍କର ମିଳନ ସମୟ ସମୟରେ ହେଉଥିଲା, କିନ୍ତୁ ଆମ୍ଭମାନଙ୍କର ଅଭିଜ୍ଞତା ଭିତରେ କେବେ ହୋଇ ନଥିଲା । ମାନ୍ୟବର ମହତାବଙ୍କ ପ୍ରଚେଷ୍ଟାରେ ଏ ପ୍ରକାର ସାହିତ୍ୟିକମାନଙ୍କର ସାମାଜିକ ମିଳନ ଯେ ଘଟିପାରିଛି ସେଥିପାଇଁ ସେ ସମସ୍ତଙ୍କର ଧନ୍ୟବାଦାର୍ହ । କିନ୍ତୁ ଗୋଟିଏ କଥା ସମସ୍ତଙ୍କର ମନେ ରଖିବା ଉଚିତ ଯେ, ଏ ପ୍ରକାର ଭୋଜି, ନାଟ୍ୟ ଉତ୍ସବ ବା ଦରବାରର ଆଡ଼ମ୍ବର ସାହିତ୍ୟ ନୁହେଁ, ସାହିତ୍ୟ ଏକାନ୍ତ ଅନ୍ତରର କଥା । ଆମ୍ଭେମାନେ ବାହାରର ଘଟାଟୋପରେ ଯେପରି ଆତ୍ମସନ୍ତୋଷ ନେଇ ନ ବସୁ ଯେ ଆମର ସାହିତ୍ୟ-ସେବା ହୋଇଗଲା ।

ଏସବୁର ପ୍ରାରମ୍ଭରେ ଶ୍ରୀଯୁକ୍ତ ଭଗବାନ ପତି କହିଥିଲେ ଯେ ଏ ଦେଶରେ ସାହିତ୍ୟିକ ସମ୍ମାନ ପାଏନା । ତାଙ୍କ ଲେଖାର ଦାମ ପାଏନା ଓ ତାକୁ କେହି ପଚାରନ୍ତି ନାହିଁ କିନ୍ତୁ ଆମ୍ଭମାନଙ୍କ ଭିତରୁ ଅନେକ ଜାଣନ୍ତି ନାହିଁ ଯେ ପାଶ୍ଚାତ୍ୟ ଦେଶରେ ଅନେକ ବିଶ୍ୱବିଖ୍ୟାତ ସାହିତ୍ୟିକ ଦୁଃଖ ବା ଯନ୍ତ୍ରଣା ବା ଅତ୍ୟାଚାର ସହ୍ୟ କରି ନିଜର ଅପୂର୍ବ ସାହିତ୍ୟିକ ଦାନ ଜଗତକୁ ଦେଇ ଯାଇଅଛନ୍ତି । ସେସବୁ ତୁଳନାରେ ଆମ୍ଭମାନଙ୍କର ଦୁଃଖ ଯନ୍ତ୍ରଣା ବା ଅସମ୍ମାନ କିଛି ନୁହେଁ । ଭାରତବର୍ଷରେ ଅନେକ କବି ଉଚ୍ଚ ରାଜ ସମ୍ମାନ ଓ ଜୀବନର ସ୍ୱାଚ୍ଛନ୍ଦ୍ୟ ପାଇ ଅଛନ୍ତି । କିନ୍ତୁ ସେ ତୁଳନାରେ ତାଙ୍କର ସାହିତ୍ୟ-ସୃଷ୍ଟିର ସେପରି କିଛି ମୂଲ୍ୟ ନାହିଁ । ଆପଣମାନେ ପ୍ରସିଦ୍ଧ ରୁଷ ଲେଖକ ଦସ୍ତୋଭସ୍କିଙ୍କର ନାମ ଶୁଣିଥିବେ । ଏହି ଦସ୍ତୋଭସ୍କି ରୁଷିଆର ସର୍ବଶ୍ରେଷ୍ଠ ଲେଖକ ବୋଲି ବର୍ତ୍ତମାନ ଧରାଯାଉଅଛନ୍ତି । ସେ କେବଳ ଉଚ୍ଚ ଦରର ସାହିତ୍ୟ-ସ୍ରଷ୍ଟା ନୁହନ୍ତି, ସେ ଜଣେ ପ୍ରଫେଟ ବା ଭବିଷ୍ୟତ-ଦ୍ରଷ୍ଟା ଭାବରେ ପାଶ୍ଚାତ୍ୟ ଦେଶରେ ବୁଦ୍ଧିଜୀବୀମାନଙ୍କ ନିକଟରେ ଅତି ସମ୍ମାନିତ । କାରଣ ୧୯୧୭ ପରେ ରୁଷିଆରେ

ଓଡ଼ିଆ ସମାଜ ଓ ସାହିତ୍ୟ, ପ୍ରଥମ ମୁଦ୍ରଣ 1951,

ପ୍ରକାଶକଂକ ପ୍ରତ—

ଓଡ଼ିଅ ଲିପିକୁ ଉଚ୍ଚାରଣାନୁସାରୀ କରିବା ଏକାନ୍ତ କର୍ତ୍ତବ୍ୟ। ତେଲୁଗୁରେ କେବଳ 'ସ' ବ୍ୟବହାର କରାଯାଏ। ଆମର ଓଠୋଷ୍ଠ 'ଶ ଷ ସ'ର ଭେଦ ବୁଝନ୍ତି ନାହିଁ। ଅପନ୍ତ ଏ ପୁସ୍ତକରେ କେବଳ 'ସ' ହିଁ ରଖିବେ। ପାଣ୍ଡୁଲିପି ଦୁଇ ଶୈଳୀରେ ଲେଖା ହୋଇ ଯାଇଛି। ଛପାରେ ବର୍ଣ୍ଣର ପ୍ରୟୋଗ କରିବେ। ଗାଈ କୁ ଗାଇ ଲେଖିବାହିଁ ଉଚିତ, କାରଣ, 'ଈ'କୁ ଏଠାରେ ଦୀର୍ଘ ଉଚ୍ଚାରଣ ଆମେ କରୁନା। ଈ, ଊ, ଔ ସେମାନଙ୍କର ମାତ୍ରା ତେଣୁ ଏ ପୁସ୍ତକରେ ଉଚ୍ଚାରଣାନୁସାରୀ କରିବେ। ସେହିପରି 'ଜ' ଓ 'ଯ' 'ଷ' ଓ 'ଖ୍ୟ' ଓ 'ଛ' ଓ ର୍ଗ ୍ୟ ଇତ୍ୟାଦି······

ମାନସିଂ



# ସମ୍ପାଦକୀୟ

## ଅଗଷ୍ଟ, ପନ୍ଦର—

୧୯୪୭ ସାଲ ଅଗଷ୍ଟ ପନ୍ଦର ତାରିଖ । ଏହିଦିନ ବ୍ରିଟିଶ ଶାସନ ଭାରତରୁ ବିଦାୟ ନେଲା । ଠିକ ଶହେ ନବେ ବର୍ଷ ପୂର୍ବରୁ ଏହିଦିନ—ଖ୍ରୀ: ୧୭୫୭ ସାଲ ଅଗଷ୍ଟ ପନ୍ଦର ତାରିଖ ଦିନ ପଲାସୀ ପ୍ରାଙ୍ଗଣରେ କ୍ଲାଇଭଙ୍କ ବିଶ୍ୱାସଘାତକତା ଭାରତର ତତ୍କାଳୀନ ନୈତିକ ଅଧଃପତନକୁ ଉପହାସ କରି ଯେଉଁ ବିଜୟ ଦୁନ୍ଦୁଭି ବଜାଇ ଥିଲା, ତାହାର ପ୍ରତିଧ୍ୱନି ଶୁଣାଗଲା ୧୯୫୭ ସାଲ ଅଗଷ୍ଟ ପନ୍ଦର ତାରିଖ ଦିନ । ଦେଶ ପରାଧୀନ !!! ପୁଣି ଅର୍ଦ୍ଧ ଶହେ ନବେ ବର୍ଷ ପରେ ଦେଶ ସ୍ୱାଧୀନ !!! ଏ ଏପରି ଏକ ଘଟଣା, ଯେଉଁଥିରେ ଯେ କୌଣସି ଲୋକର ରୋମାଞ୍ଚ ଜାତ ହେବ । ମୃତ୍ୟୁମୁଖରେ ଥାଇ ବୁଢ଼ା ଜଣେ ଜୟଜୟକାର କରି ଉଠିବ । କିନ୍ତୁ ଦୁଃଖର କଥା, ଭାରତ ଇ... ...ନୂତନ କଥା ନୁହେଁ, ଘର୍ଷା ଦ୍ୱେଷର ଶ୍ରୀବୃଦ୍ଧି ହୋଇ କେତେକ ଏହିଦିନଟିକୁ ଭାରତ ଇତିହାସରେ ଏକ ଦୁର୍ଦ୍ଦିନ ବୋଲି ବର୍ଣ୍ଣନା କରିବାକୁ ଲଜ୍ଜା ବା ସଙ୍କୋଚ ଅନୁଭବ କରନାହାନ୍ତି । ସ୍ୱାଧୀନତା ଯେ ଏକ ଦେବତାଙ୍କ ବର, ଏହା ଅନେକେ ଅନୁଭବ କରୁନାହାନ୍ତି, ଅଳ୍ପ ମଧ୍ୟ—ଶତ ଶତ ବର୍ଷର ପରାଧୀନତାର ଲାଞ୍ଛନା ଭୋଗି ମଧ୍ୟ । ଏହାହିଁ ଭାବିବାର ବିଷୟ । ଏ ଦିଗରେ ସାହିତ୍ୟ କେତେ ପରିମାଣରେ ଦାୟୀ ତାହାହିଁ ଏଠାରେ ବିଚାର୍ଯ୍ୟ ବିଷୟ । ସ୍ୱାଧୀନତାର ପାଞ୍ଚବର୍ଷ ମଧ୍ୟରେ, ସ୍ୱାଧୀନତା ପ୍ରତି ଦେଶକୁ ଓତଃପ୍ରୋତ ଭାବରେ ଅନୁପ୍ରାଣିତ କରିବା ପାଇଁ ସାହିତ୍ୟ ଯେତିକି କରିବାର କଥା କରିଛି କି ? ଦେଶର ସ୍ୱାଧୀନତାକୁ ଯେଉଁମାନେ ତୁଚ୍ଛ ତାଚ୍ଛଲ୍ୟ ଭାବ ପ୍ରକାଶ କରୁଛନ୍ତି, ସେମାନଙ୍କୁ ସାହିତ୍ୟ ଯଥାଯଥ ଭାବରେ ଚାପି କରୁଛି କି ? ଶତ ନିର୍ଯ୍ୟାତନା ଠାରୁ ପରାଧୀନତାର ନିର୍ଯ୍ୟାତନା ଯେ ଅତି ବେଶୀ, ଏହା ସାହିତ୍ୟ ପ୍ରତିପାଦନ କରୁଛି କି ? ଏସବୁ ପ୍ରଶ୍ନ ଭାରତ ଇତିହାସର ପୃଷ୍ଠଭୂମିକା ଉପରେ ଛିଡ଼ା ହୋଇ ସ୍ୱତଃ ମନକୁ ଉଠୁଛି । ସାହିତ୍ୟ ଜୟଚନ୍ଦ୍ରଙ୍କୁ ଯେଉଁଳି ଚିତ୍ର କରିଛି ଓ ଯେଉଁ ଅସନ ପୃଥ୍ୱୀରାଜଙ୍କୁ ଦେଇଛି, ସେଥିରେ ଦେଶଦ୍ରୋହିତା ଚିରନିନ୍ଦିତ ହୋଇ ରହିଛି । କିନ୍ତୁ ସେ କଅଣ ପ୍ରାଚୀନ ସାହିତ୍ୟ ବୋଲି ପରିଗଣିତ ହେବ ? ନୂତନ ସାହିତ୍ୟ ମଧ୍ୟ ସ୍ୱାଧୀନତାର ଅପବାଦକୁ ସେହି ଚକ୍ଷୁରେ ଦେଖିବ, ଯେପରି ପ୍ରାଚୀନ ସାହିତ୍ୟ ଜୟଚନ୍ଦ୍ରଙ୍କର ଆଚରଣକୁ ଦେଖିଥିଲା । ଏହାଛଡ଼ା ଦେଶବ୍ୟାପୀ ଉନ୍ମାଦନା ସୃଷ୍ଟି କରିବା ପାଇଁ, ସ୍ୱାଧୀନତାର ଝଙ୍କାର ଦେଶର ଅନ୍ତସ୍ତଳ ସର୍ବତ୍ର ପହଞ୍ଚାଇବା ପାଇଁ ସାହିତ୍ୟର ଦାୟିତ୍ୱ ଅଛି । ରାଜନୀତି କ୍ଷେତ୍ରରେ ଦଳଗତ ବାଦ ବିବାଦ ସହିତ ସ୍ୱାଧୀନତାର ସମ୍ପର୍କ ନାହିଁ । ଦେବୀ ବେଦୀରେ ପୂଜାରୀମାନଙ୍କ ମଧ୍ୟରେ ଯେଉଁ କଳଗୋଳ ସେଥିରେ ଦେବୀଙ୍କର କିଛି ନାହିଁ । ଦେବୀ ସମସ୍ତଙ୍କର ନମସ୍ୟ ଓ ପୂଜ୍ୟ । ଦେବୀଙ୍କ ପ୍ରତି ଶ୍ରଦ୍ଧା ଓ ଭକ୍ତିକୁ ଜାଗରୁକ କରିବା ସାହିତ୍ୟର କାମ । ଏହି ନିର୍ଦ୍ଦିଷ୍ଟ ଦାୟିତ୍ୱକୁ ଯେପରି ସାହିତ୍ୟିକ ଭୁଲି ନ ଯାଆନ୍ତି, ଏହାହିଁ ଅଗଷ୍ଟ ପନ୍ଦରର ସନିର୍ବନ୍ଧ ଅନୁରୋଧ ।

---

## ଓଡ଼ିଆ ବିଶ୍ୱକୋଷ—

ଶ୍ରୀଯୁକ୍ତ ଗୋଲକବିହାରୀ ଧଳଙ୍କର 'ଅ' ପ୍ରବନ୍ଧ ସହିତ ଆମେ ଯେଉଁ ଟିପ୍ପଣୀ ଦେଇଥିଲୁଁ, ସେଥିରେ କିଛି ପ୍ରମାଦ ଥିବାର ଦର୍ଶାଇ ଡକ୍ଟର ମାନସିଂହ ଏକ ପତ୍ର ଲେଖିଛନ୍ତି । 'ବିଶ୍ୱକୋଷ' ପ୍ରଣୟନ ପାଇଁ ଡକ୍ଟର ମାନସିଂହଙ୍କର ଉଦ୍ୟମ ଅତି ପ୍ରଶଂସିତ । ଏହି କାର୍ଯ୍ୟରେ ପାଠକମାନଙ୍କର ସହଯୋଗ ମାଗିବା ପାଇଁ ସେ ନିବେଦନ କରିଛନ୍ତି । ତେଣୁ ଚିଠି ଅବିକଳ ପ୍ରକାଶ କରୁଛୁଁ । ଆଶା, ପାଠକମାନଙ୍କର ପୂର୍ଣ୍ଣ ସହଯୋଗ ମିଳିବ ।

ଓଡ଼ିଆ ବିଶ୍ୱ-କୋଷ ସମ୍ପର୍କରେ ଚିଠି, ଝଙ୍କାର 5/5, ଅଗଷ୍ଟ, 1953, ପୃ.487.



ପ୍ରିୟ ଶଶୀ ବାବୁ,

ଶ୍ରୀଯୁକ୍ତ ଗୋଲକ ବିହାରୀ ଧଳଙ୍କର 'ଅ' ପ୍ରବନ୍ଧ ଭିତରେ ଆପଣ ଓଡ଼ିଆ ଏନ୍‌ସାଇକ୍ଲୋପିଡିଆ ବା ବିଶ୍ୱକୋଷ ସମ୍ବନ୍ଧରେ ସାମାନ୍ୟ ଯାହା କହିଛନ୍ତି ସେଥିରେ କିଛି ପ୍ରମାଦ ରହିଯାଇଛି । ଝଙ୍କାରର ପାଠକମାନଙ୍କ ମନରୁ ତାହା ଦୂର କରିଦେବା ଉଚିତ ଭାବି, ମୁଁ ଏ ପତ୍ର ଲେଖୁଛି । ଆପଣ ଲେଖିଛନ୍ତି, ଆମେ ଏ ଯାବତ୍ ଏନ୍‌ସାଇକ୍ଲୋପିଡ଼ିଆ ଲାଗି ପଚିଶଟି ମାତ୍ର ପ୍ରବନ୍ଧ ପାଇଛୁ, ତାହା ଭିତରୁ ଡକ୍‌ଟର ବସନ୍ତ କୁମାରଙ୍କର 'ଅଦ୍ୱୈତବାଦ' ପ୍ରବନ୍ଧ ଏକତମ । ଆମେ ପ୍ରକୃତରେ ପଚିଶରୁ ଅନେକ ବେଶୀ ପ୍ରବନ୍ଧ ପାଇଛୁ । ଆମେ ପ୍ରଥମେ ସମଗ୍ର ଅ-ଅକ୍ଷର ଉପରେ ପ୍ରବନ୍ଧ ସବୁ ସଂଗ୍ରହ କରିବାରେ ଲାଗିଥିଲୁ । ସେହି କ୍ରମରେ ଆମେ 'ଅଦ୍ୱୈତବାଦ', 'ଅଣୁ', 'ଅକ୍ଷତ' 'ଅରେସ୍ତବୋରଅଜଣ୍' ଇତ୍ୟାଦି ଶବ୍ଦ ଉପରେ ଉତ୍କୃଷ୍ଟ ପ୍ରବନ୍ଧ ସବୁ ପାଇଛୁ । କିନ୍ତୁ ସେ ସବୁ ପାଇବା ପରେ ମଧ୍ୟ ଆମେ ଦେଖିଲୁ ଯେ ସମଗ୍ର ଅ-ପୂର୍ବ ଶବ୍ଦମାଳା ଉପରେ ପ୍ରବନ୍ଧ ସବୁ ସଂଗ୍ରହ କରି ଏନ୍‌ସାଇକ୍ଲୋପିଡ଼ିଆର ଅ-ଖଣ୍ଡ ବାହାର କରିବା ଆମ ପକ୍ଷରେ ଅନ୍ତତଃ ନିକଟ ଭବିଷ୍ୟତରେ ସମ୍ଭବ ହେବ ନାହିଁ । ତେଣୁ ଆମେ ସ୍ଥିର କଲୁ ଯେ, ଅ-ଅକ୍ଷରର ପ୍ରଥମ ଅର୍ଦ୍ଧ-ଶତ ଶବ୍ଦ ଉପରେହିଁ ଓଡ଼ିଆ ବିଶ୍ୱ-କୋଷର ଆଦ୍ୟ-ଖଣ୍ଡ ବାହାର କରି ଦିଆଯିବ । ଏହି ଆଦ୍ୟଖଣ୍ଡ ମୁଦ୍ରଣ ପାଇଁ ପ୍ରାୟ ପ୍ରସ୍ତୁତ । ଶ୍ରୀ ଧଳଙ୍କ ପ୍ରବନ୍ଧଟି ଏହି ଆଦ୍ୟଖଣ୍ଡର ଆଦ୍ୟ ପ୍ରବନ୍ଧ । ଡକ୍‌ଟର ବେହୁରିଆଙ୍କ ପ୍ରବନ୍ଧ ଏହି ଆଦ୍ୟ ପୁସ୍ତକରେ ରହିବ ନାହିଁ । ହୁଏତ ତାହା ଚତୁର୍ଥ ପଞ୍ଚମ ପୁସ୍ତକରେ ସ୍ଥାନ ପାଇବ ।

ଗତ ଦୁଇବର୍ଷ ଧରି ମୁଁ ଓ ଗଙ୍ଗାଧର ମେହେର କଲେଜରେ ମୋର ସହକର୍ମୀ ଅଧ୍ୟାପକ ଶ୍ରୀ ସର୍ବେଶ୍ୱର ଦାସ ଏହି ଏନ୍‌ସାଇକ୍ଲୋପିଡିଆ କାମରେ ଲାଗିଛୁ । ଏହି ପଚିଶଟି ପ୍ରବନ୍ଧ ସମ୍ବଳିତ ପ୍ରଥମ ଖଣ୍ଡଟି ପ୍ରସ୍ତୁତ କରିବାକୁ ଆମ୍ଭେମାନେ ଗଳଦ୍‌ଘର୍ମ ହୋଇ ସାରିଲୁଣି । ଅନେକଙ୍କର ଧାରଣା ଏହି ବିଶ୍ୱକୋଷ ଗୋଟିଏ ନୂଆ ଅଭିଧାନ ମାତ୍ର । ଏନ୍‌ସାଇକ୍ଲୋପିଡ଼ିଆର ସ୍ପଷ୍ଟ ଧାରଣା ଦେଶରେ ସୃଷ୍ଟି କରେଇବାପାଇଁ ଅନ୍ତତଃ ଆମେ ପ୍ରଥମେ ଏହି ପୂର୍ଣ-ପ୍ରବନ୍ଧ-ଯୁକ୍ତ ଆଦ୍ୟଖଣ୍ଡଟି ପ୍ରକାଶ କରି ଦେବାକୁ ଉତ୍ସୁକ । ସେହି ଉଦ୍ଦେଶ୍ୟରେ ମଧ୍ୟ ଗୋଟିଏ ଦୁଇଟି ପ୍ରବନ୍ଧ ଝଙ୍କାରରେ ପ୍ରକାଶିତ ହେବାକୁ ଦିଆ ହେଉଛି । ଦେଶର ଜ୍ଞାନୀ ଓ ସାହିତ୍ୟିକମାନେ ଏହି ଛୋଟଛୋଟ ପ୍ରକାଶିତ ପ୍ରବନ୍ଧ ଉପରେ ନିଜ ନିଜର ମତାମତ ଆମକୁ ଜଣାଇଲେ ବା ଏହି ଝଙ୍କାରରେ ପ୍ରକାଶ କଲେ, ପ୍ରଥମ ଖଣ୍ଡଟି ଯନ୍ତ୍ରସ୍ଥ ହେବା ପୂର୍ବରୁ ମଧ୍ୟ ଯଥା ସ୍ଥାନରେ ଯଥୋପଯୁକ୍ତ ପରିବର୍ତ୍ତନ କରିନେବାରେ ଆମେ ଆନନ୍ଦ ଲାଭ କରନ୍ତୁ ।

ପ୍ରଥମ ଖଣ୍ଡଟି ପ୍ରକାଶିତ ହୋଇସାରି[illegible]ରେ ସମଗ୍ର ଓଡ଼ିଆ ବିଶ୍ୱକୋଷକୁ ନିୟମିତଭାବରେ ଇ[illegible] ଓ ପ୍ରକାଶିତ କରିବାକୁ ହେବ ତାର ଦାୟିତ୍ୱ [illegible] ଓ ଉତ୍କଳ ବିଶ୍ୱବିଦ୍ୟାଳୟହିଁ କରିବେ । କାରଣ [illegible] ଜଣେ ଦୁଇଜଣର ଅଂଶିକ ଶ୍ରମର କାମ ନୁହେଁ । ଏଥିପାଇଁ ଲେଖକ-ବାହିନୀ ଦରକାର । ପ୍ରଚୁର ଅର୍ଥ, ସ୍ୱତନ୍ତ୍ର କାର୍ଯ୍ୟାଳୟ ଓ କର୍ମଚାରୀ ଦରକାର । ସବୁ ବ୍ୟବସ୍ଥା କରିଦେଲେ ମଧ୍ୟ ପୂରା ହେବାକୁ ଏହା ଅନ୍ତତଃ ପନ୍ଦର ବର୍ଷରୁ କମ୍ ଲାଗିବ ବୋଲି ମୁଁ ଭାବୁନାହିଁ ।

ମାୟାଧର ମାନସିଂହ

।। ମାନସିଂହଙ୍କ ବିଚାରଧାରା ।। ପରିଶିଷ୍ଟ– ଚବିଶ, 24.

ଓଡ଼ିଆ ବିଶ୍ୱ-କୋଷ ସମ୍ପର୍କରେ ଚିଠି, ଝଙ୍କାର 5/5, ଅଗଷ୍ଟ, 1953, ପୃ.487.



ପ୍ରିୟ ଶଶୀ ବାବୁ,

ଶ୍ରୀଯୁକ୍ତ ଗୋଳକ ବିହାରୀ ଧଳଙ୍କର 'ଅ' ପ୍ରବନ୍ଧ ଭିତରେ ଆପଣ ଓଡ଼ିଆ ଏନ୍‌ସାଇକ୍ଲୋପିଡିଆ ବା ବିଶ୍ୱକୋଷ ସମ୍ବନ୍ଧରେ ସାମାନ୍ୟ ଯାହା କହିଛନ୍ତି ସେଥିରେ କିଛି ପ୍ରମାଦ ରହିଯାଇଛି । ଝଙ୍କାରର ପାଠକମାନଙ୍କ ମନରୁ ତାହା ଦୂର କରିଦେବା ଉଚିତ ଭାବି, ମୁଁ ଏ ପତ୍ର ଲେଖୁଛି । ଆପଣ ଲେଖିଛନ୍ତି, ଆମେ ଏ ଯାବତ୍ ଏନ୍‌ସାଇକ୍ଲୋପିଡ଼ିଆ ଲାଗି ପଚିଶଟି ମାତ୍ର ପ୍ରବନ୍ଧ ପାଇଛୁ, ତାହା ଭିତରୁ ଡକ୍‌ଟର ବସନ୍ତ କୁମାରଙ୍କର 'ଅହିସିଜ' ପ୍ରବନ୍ଧ ଏକତମ । ଆମେ ପ୍ରକୃତରେ ପଚିଶରୁ ଅନେକ ବେଶୀ ପ୍ରବନ୍ଧ ପାଇଛୁ । ଆମେ ପ୍ରଥମେ ସମଗ୍ର ଅ-ଅକ୍ଷର ଉପରେ ପ୍ରବନ୍ଧ ସବୁ ସଂଗ୍ରହ କରିବାରେ ଲାଗିଥିଲୁ । ସେଇ କ୍ରମରେ ଆମେ 'ଅହିସିଜ', 'ଅଣୁ', 'ଅକ୍ଷତ' 'ଅଗ୍ରେସିବୋରିଅଜେଣ୍' ଇତ୍ୟାଦ ଶବ୍ଦ ଉପରେ ଉତ୍କୃଷ୍ଟ ପ୍ରବନ୍ଧ ସବୁ ପାଇଛୁ । କିନ୍ତୁ ସେ ସବୁ ପାଇଲା ପରେ ମଧ୍ୟ ଆମେ ଦେଖିଲୁ ଯେ ସମଗ୍ର ଅ-ପୂର୍ବ ଶବ୍ଦମାଳା ଉପରେ ପ୍ରବନ୍ଧ ସବୁ ସଂଗ୍ରହ କରି ଏନ୍‌ସାଇକ୍ଲୋପିଡ଼ିଆର ଅ-ଖଣ୍ଡ ବାହାର କରିବା ଆମ ପକ୍ଷରେ ଅନ୍ତତଃ ନିକଟ ଭବିଷ୍ୟତରେ ସମ୍ଭବ ହେବ ନାହିଁ । ତେଣୁ ଆମେ ସ୍ଥିର କଲୁ ଯେ, ଅ-ଅକ୍ଷରର ପ୍ରଥମ ଅର୍ଦ୍ଧ-ଶତ ଶବ୍ଦ ଉପରେହିଁ ଓଡ଼ିଆ ବିଶ୍ୱ-କୋଷର ଆଦ୍ୟ-ଖଣ୍ଡ ବାହାର କରି ଦିଆଯିବ । ଏହି ଆଦ୍ୟଖଣ୍ଡ ମୁଦ୍ରଣ ପାଇଁ ପ୍ରାୟ ପ୍ରସ୍ତୁତ । ଶ୍ରୀ ଧଳଙ୍କ ପ୍ରବନ୍ଧଟି ଏହି ଆଦ୍ୟଖଣ୍ଡର ଆଦ୍ୟ ପ୍ରବନ୍ଧ । ଡକ୍‌ଟର ବେହେରାଙ୍କ ପ୍ରବନ୍ଧ ଏହି ଆଦ୍ୟ ପୁସ୍ତକରେ ରହିବ ନାହିଁ । ହୁଏତ ତାହା ଚତୁର୍ଥ ପଞ୍ଚମ ପୁସ୍ତକରେ ସ୍ଥାନ ପାଇବ ।

ଗତ ଦୁଇବର୍ଷ ଧରି ମୁଁ ଓ ଗଙ୍ଗାଧର ମେହେର କଲେଜରେ ମୋର ସହକର୍ମୀ ଅଧ୍ୟାପକ ଶ୍ରୀ ସର୍ବେଶ୍ୱର ଦାସ ଏଇ ଏନ୍‌ସାଇକ୍ଲୋପିଡିଆ କାମରେ ଲାଗିଛୁ । ଏଇ ପଚିଶଟି ପ୍ରବନ୍ଧ ସମ୍ବଳିତ ପ୍ରଥମ ଖଣ୍ଡଟି ପ୍ରସ୍ତୁତ କରିବାକୁ ଆମ୍ଭେମାନେ ଗଳଦ୍‌ଘର୍ମ ହୋଇ ସାରିଲୁଣି । ଅନେକଙ୍କର ଧାରଣା ଏହି ବିଶ୍ୱକୋଷ ଗୋଟିଏ ନୂଆ ଅଭିଧାନ ମାତ୍ର । ଏନ୍‌ସାଇକ୍ଲୋପିଡ଼ିଆର ସ୍ପଷ୍ଟ ଧାରଣା ଦେଶରେ ସୃଷ୍ଟି କରେଇବାପାଇଁ ଅନ୍ତତଃ ଆମେ ପ୍ରଥମେ ଏହି ଶ୍ରେଣ-ପ୍ରବନ୍ଧ-ଯୁକ୍ତ ଆଦ୍ୟଖଣ୍ଡଟି ପ୍ରକାଶ କରି ଦେବାକୁ ଉତ୍ସୁକ । ସେହି ଉଦ୍ଦେଶ୍ୟରେ ମଧ୍ୟ ଗୋଟିଏ ଦୁଇଟି ପ୍ରବନ୍ଧ ଝଙ୍କାରରେ ପ୍ରକାଶିତ ହେବାକୁ ଦିଆ ହେଉଛି । ଦେଶର ଜ୍ଞାନୀ ଓ ସାହିତ୍ୟିକମାନେ ଏଇ ଛୋଟୋଟି ପ୍ରକାଶିତ ପ୍ରବନ୍ଧ ଉପରେ ନିଜ ନିଜର ମତାମତ ଆମକୁ ଜଣାଇଲେ ବା ଏଇ ଝଙ୍କାରରେ ପ୍ରକାଶ କଲେ, ପ୍ରଥମ ଖଣ୍ଡଟି ପୁସ୍ତକସ୍ଥ ହେବା ପୂର୍ବରୁ ମଧ୍ୟ ଯଥା ସ୍ଥାନରେ ଯଥୋପଯୁକ୍ତ ପରିବର୍ତ୍ତନ କରିନେବାରେ ଆମେ ଆନନ୍ଦ ଲାଭ କରନ୍ତୁ ।

ପ୍ରଥମ ଖଣ୍ଡଟି ପ୍ରକାଶିତ ହୋଇସାରି[illegible]ରେ ସମଗ୍ର ଓଡ଼ିଆ ବିଶ୍ୱକୋଷକୁ କ୍ରମବଦ୍ଧରେ [illegible] ଓ ପ୍ରକାଶିତ କରିବାକୁ ହେବ ତାର [illegible] ଓ ଉତ୍କଳ ବିଶ୍ୱବିଦ୍ୟାଳୟହିଁ କରିବେ । କାରଣ [illegible] ଜଣେ ଦୁଇ-ଜଣର ଆଂଶିକ ଶ୍ରମର କାମ ନୁହେଁ । ଏଥିପାଇଁ ଲେଖକ-ବାହିନୀ ଦରକାର । ପ୍ରଚୁର ଅର୍ଥ, ସ୍ୱତନ୍ତ୍ର କାର୍ଯ୍ୟାଳୟ ଓ କର୍ମଗୃହ ଦରକାର । ସବୁ ବ୍ୟବସ୍ଥା କରିଦେଲେ ମଧ୍ୟ ପୂରା ହେବାକୁ ଏହା ଅନ୍ତତଃ ପନ୍ଦର ବର୍ଷରୁ କମ୍ ଲାଗିବ ବୋଲି ମୁଁ ଭାବୁନାହିଁ ।

ମାୟାଧର ମାନସିଂହ





କଳିଙ୍ଗ ଶାରଦୀୟ ବିଶେଷାଙ୍କ— 1964,

# କବିର ପୁରସ୍କାର

ଅନୁଜ ପ୍ରତିମ, ତରୁଣ ସାହିତ୍ୟିକ ବନ୍ଧୁ
ଶ୍ରୀ ସୁରେନ୍ଦ୍ର ମହାନ୍ତି,
ଶ୍ରଦ୍ଧାସ୍ପଦେଷୁ,—

ଅର୍ଦ୍ଧଶତ ବର୍ଷ ସେବା କର ପୁରସ୍କାର,
ପାଇଲଣି ତାକୁ ଭୋଗିବାରେହିଁ, ମୁଁ ବ୍ୟସ୍ତ,
ହେ ବନ୍ଧୁ, ଆଉ କ ସେବା ଓଡ଼ିଆ ଭଣ୍ଡାର,
କରିବାକୁ ଅନୁରୋଧ ପଠାଅ ସଂପ୍ର ?

ଅନୁରୋଧ ପାଇଁ ତବ ବନ୍ଧୁ ଧନ୍ୟବାଦ ।
ଅନୁରୋଧ କରେ, ଖାଲି ମୋର ନାତଣର
ଭାବେ ବସିବାକୁ ଦିଅ; ନ ଦିଅ ସମ୍ବାଦ,
ନ ଶ୍ରାଅ କୃପା,—ସେହି, ଧନ୍ୟ ବାସ୍ତବିକ ।

ଶୁଭାନୁଧ୍ୟାୟୀ
ଶ୍ରୀ ମାୟାଧର ମାନସିଂହ

●

ସତ୍‌ସଙ୍ଗ ଓଡ଼ିଆ ମୁଖପତ୍ର

ଦ୍ୱିତୀୟ ବର୍ଷ

# ଉର୍ଜ୍ଜନା

ଦ୍ୱିତୀୟ ସଂଖ୍ୟା

ଆବାର୍ ବଲ ଶୋନ୍‌ନା
ଇଷ୍ଟନିଷ୍ଠା ରାଖିସ୍ ଅଟୁଟ୍
କର୍ମେ ଅନ୍ତରେ ଉର୍ଜ୍ଜନା,
ସ୍ୱତଃସତ୍ତା ଆନୁଗତ୍ୟ
କରସ୍ ନାକୋ ବର୍ଜନା ।

—ଶ୍ରୀ ଶ୍ରୀ ଠାକୁର



ଅଗଷ୍ଟ—୧୯୭୭

ସମ୍ପାଦକ—ପଦ୍ମଶ୍ରୀ ଡକ୍ଟର ମାୟାଧର ମାନସିଂହ

ନବଜୀବନ, 7/11, 1963, ପୃ.718,

# ସମସାମୟିକ ଓଡ଼ିଆ ସାହିତ୍ୟ ପ୍ରତି ଅବିଚାର

ଶରତ କୁମାର ମହାନ୍ତି

ଆମ ସାହିତ୍ୟରେ ସମାଲୋଚନାର ସୁସ୍ଥ ପରମ୍ପରା ନାହିଁ । ଅନେକ ସମୟରେ ସମାଲୋଚନା ଆକ୍ରୋଶ ମୂଳକ ହୋଇଥାଏ । ଜଣେ ଲେଖକର ବହି ଆଲୋଚନା କରିବାକୁ ଯାଇ ତାଙ୍କ ବ୍ୟକ୍ତିଗତ ଜୀବନର ଦୋଷ ଦୁର୍ବଳତା ଦେଖାଇ ତାଙ୍କ ନାମରେ ଅପପ୍ରଚାର କରାଯାଏ । ଏବେ କେନ୍ଦ୍ର ସାହିତ୍ୟ ଏକାଡେମି ତରଫରୁ ଡକ୍ଟର ମାନସିଂଙ୍କର ଓଡ଼ିଆ ସାହିତ୍ୟର ଇତିହାସ ପ୍ରକାଶ ପାଇଛି । ଏହି ବହିରେ ଅନେକ ସମସାମୟିକ ଲେଖକଙ୍କ ପ୍ରତି ଅନ୍ୟାୟ କରାଯାଇଛି ବୋଲି ମୁଁ ଗଭୀର ଭାବେ ଅନୁଭବ କରୁଛି । କେଉଁମାନଙ୍କ ପ୍ରତି କି ଭଳି ଅନ୍ୟାୟ କରାଯାଇଛି ତାହା ଦେଖାଇବାପାଇଁ ଏ ପ୍ରବନ୍ଧଟି ଲେଖିଲି । ଏହାର ଅନ୍ୟ କୌଣସି ଉଦ୍ଦେଶ୍ୟ ନାହିଁ ।

କେନ୍ଦ୍ର ସାହିତ୍ୟ ଏକାଡେମି ତରଫରୁ ଡକ୍ଟର ମାନସିଂଙ୍କର ବହିଟି ଇଂରେଜୀରେ ପ୍ରକାଶ ପାଇଛି । ଅନେକ ଅଣଓଡ଼ିଆ ପାଠକ ଏହି ବହିଟିକୁ ପଢ଼ିବେ । ସେମାନଙ୍କ ଆଗରେ ଓଡ଼ିଆ ସାହିତ୍ୟକୁ ବଡ଼ କରି ଦେଖାଇବାକୁ ମାନସିଂ ସମସାମୟିକ ଓଡ଼ିଆ ସାହିତ୍ୟକୁ ଅତି ପ୍ରଶଂସା କରିବା ଉଚିତ ଥିଲା ଏପରି ମନୋଭାବକୁ ମୁଁ ଆଦୌ ପସନ୍ଦ କରେନା । ଓଡ଼ିଆ ସାହିତ୍ୟରେ ଯେଉଁ କେତେ ଜଣ ପ୍ରତିଭାବାନ ଲେଖକ ଅଛନ୍ତି

ଧର୍ମର ପ୍ରଚୁର ଉକ୍ତ ଦ୍ୱନ୍ଦ୍ୱର ଅବସାନ ଘଟାଇଲେ ଗୀତାରେ ସକାମ କର୍ମକୁ ନିନ୍ଦାକରି ନିଷ୍କାମ କର୍ମ ଯୋଗର ଆଦର୍ଶ ସ୍ଥାପନ କଲେ । ମନୁଷ୍ୟ ନିଷ୍କାମ କର୍ମଯୋଗବଳରେ ଅନନ୍ତ ପଥର ଯାତ୍ରୀ ହେବ, ତଦ୍ୱାରା ସେ ଅନନ୍ତ ଶାନ୍ତି ଓ ଅନନ୍ତ ସୁଖ ଲାଭ କରିପାରିବ । ଏହି ଯୋଗହିଁ ସଚ୍ଚିଦାନନ୍ଦ ସାଗରର ମିଳନକାରୀ ଅଟେ ।

"ହେ ପାର୍ଥ ! ସ୍ୱର୍ଗ ମର୍ତ୍ତ୍ୟାଦି ତିନି ଲୋକରେ ମୋର କୌଣସି କର୍ତ୍ତବ୍ୟ ନାହିଁ । ମୋର ପ୍ରାପ୍ତବ୍ୟ ବା ଅପ୍ରାପ୍ତ ବୋଲି କିଛି ନାହିଁ । ତଥାପି ମୁଁ ଜନହିତକର କର୍ମରେ ସର୍ବଦା ବ୍ୟାପୃତ ଅଛି । ତୁମ୍ଭେ ସେହିପରି ନିଷ୍କାମ କର୍ମଯୋଗ ଆଶ୍ରୟ କର । ଯେଉଁମାନେ କୃପଣ, ଯେଉଁମାନଙ୍କ ବୁଦ୍ଧି ସୀମାବଦ୍ଧ ସେହିମାନେହିଁ ସକାମ କର୍ମରେ ଅଭିଳାଷ କରିଥାଆନ୍ତି । ଯେତେପ୍ରକାର ଯଜ୍ଞର ବିଧାନ ଅଛି, ସବୁଠାରୁ ବଳି ଜ୍ଞାନଯଜ୍ଞହିଁ ଶ୍ରେଷ୍ଠ । ସବୁ କର୍ମ, ସବୁ ଯଜ୍ଞ ଜ୍ଞାନରେ ପରିସମାପ୍ତି ହୋଇଥାଏ । ପ୍ରଜ୍ଜ୍ୱଳିତ ଅଗ୍ନି ଯେପରି କାଷ୍ଠରାଶିକୁ ଭସ୍ମୀଭୂତ କରେ ସେହିପରି ଜ୍ଞାନାଗ୍ନି ସମସ୍ତ ଶୁଭାଶୁଭ କର୍ମରାଶିକୁ ଭସ୍ମସାତ କରିଥାଏ । ଜ୍ଞାନ ସଦୃଶ ପବିତ୍ର ଓ ଶୁଚି ଆଉ କିଛି ନାହିଁ । ଜ୍ଞାନନିଷ୍ଠ ସନ୍ନ୍ୟାସିଗଣ ଯେଉଁ ସ୍ଥାନକୁ ପ୍ରାପ୍ତ ହୋଇଥାଆନ୍ତି, ନିଷ୍କାମ କର୍ମଯୋଗିଗଣ ମଧ୍ୟ ସେହି ସ୍ଥାନ ଲାଭ କରିଥାଆନ୍ତି । ଜ୍ଞାନଯୋଗ ଓ ନିଷ୍କାମ କର୍ମଯୋଗ ଉଭୟହିଁ ମୋକ୍ଷଦାୟକ । ଅଜ୍ଞ ବ୍ୟକ୍ତି ପୃଥକ୍ ବୋଲି ମନେକରେ । କିନ୍ତୁ ଯେଉଁମାନେ ତତ୍ତ୍ୱଦର୍ଶୀ, ସେମାନେ ଉଭୟକୁ ଏକ ବୋଲି କହିଥାଆନ୍ତି । ଜ୍ଞାନ ଯେଉଁ ସ୍ଥାନକୁ ନେଇଯାଏ, କର୍ମଯୋଗ ମଧ୍ୟ ସେହି ସ୍ଥାନକୁ ବହନ କରିନିଏ । କର୍ମଯୋଗ ଜ୍ଞାନର ପୁଷ୍ଟି ସାଧକ । ଗୀତାରେ ବହୁତ ମତ ବିରୋଧର ସମନ୍ୱୟ ଦେଖିବାକୁ ମିଳେ । ସମସ୍ତ ଉପନିଷଦର ସାରସ୍ୱରୂପ ଗୀତା । ଏଥିରେ ଦ୍ୱୈତବାଦ, ବିଶିଷ୍ଟ ଅଦ୍ୱୈତବାଦ, ବିଶିଷ୍ଟ ଦ୍ୱୈତବାଦ, ଭକ୍ତିତତ୍ତ୍ୱ, ଉପାସନାତତ୍ତ୍ୱ ପ୍ରଭୃତି ସମସ୍ତ ବିଷୟର ସନ୍ନିବେଶ ହୋଇଅଛି ।"

॥ ମାନସିଂହଙ୍କ ବିସ୍ମୟଧାରା ॥ ପରିଶିଷ୍ଟ– ଅଠେଇଶ,

ନବଜୀବନ, 7/11, 1963, ଲେ– ଶରତ କୁମାର ମହାନ୍ତି ।



ସେମାନଙ୍କୁ ତାଙ୍କର ପ୍ରାପ୍ୟ ଦିଆହୋଇନି ଏହାହିଁ ହେଲା ଦୁଃଖର ବିଷୟ ।

କେବଳ ଓଡ଼ିଆରେ ନୁହେଁ, ସବୁ ସାହିତ୍ୟରେ ଅନେକ ଲୋକ ଲେଖନ୍ତି କିନ୍ତୁ ସେମାନଙ୍କ ମଧ୍ୟରୁ ଅଳ୍ପ ଲୋକଙ୍କର ଲେଖାର ଚିରନ୍ତନ ମୂଲ୍ୟ ଥାଏ । ଶହେ ଜଣ ଲେଖକଙ୍କ ମଧ୍ୟରୁ ଅଶୀ ଜଣଙ୍କର ଲେଖା ମୂଲ୍ୟହୀନ ହୋଇପାରେ । ତେଣୁ ଜଣେ ଯଦି ଗୋଟିଏ ଭାଷାର ସାହିତ୍ୟିକମାନଙ୍କର ସାହିତ୍ୟର ମୂଲ୍ୟାଙ୍କନ କରିବସିବେ ତେବେ ଶତକଡ଼ା ଅଶୀଜଣଙ୍କୁ ବାଦ ଦେଇ ବାକି କୋଡ଼ିଏ ଜଣ ସାହିତ୍ୟିକଙ୍କର ସାହିତ୍ୟର ବିଚାର ତାଙ୍କୁ କରିବାକୁ ହେବ । ଏହି ଶତକଡ଼ା କୋଡ଼ିଏ ଜଣ ସୁସାହିତ୍ୟିକଙ୍କମଧ୍ୟରୁ କେତେଜଣ ପ୍ରତିଭାବାନ୍ ଲେଖକଙ୍କରଲେଖାକୁ ସେ ସାବଧାନ ଭାବେ ବିଚାର କରିବେ । କିନ୍ତୁ ସମସାମୟିକ ଓଡ଼ିଆ ସାହିତ୍ୟ ଓ ସାହିତ୍ୟିକମାନଙ୍କ ସମ୍ବନ୍ଧରେ ଡକ୍ଟର ମାନସିଂ ଯେପରି ଆଲୋଚନା କରିଛନ୍ତି ସେଥିରୁ ମନେହୁଏ ଯେ ଶତକଡ଼ା ଅଶୀ ନିକୃଷ୍ଟ ଧରଣର ସାହିତ୍ୟିକମାନଙ୍କର ସାହିତ୍ୟକୁ ସେ ସାବଧାନ ଭାବେ ବିଚାର କରି ତାର ଯେପରି ନିନ୍ଦା କରିଛନ୍ତି ବାକି କୋଡ଼ିଏ ଜଣ ସୁସାହିତ୍ୟିକ ସାହିତ୍ୟ ସୃଷ୍ଟି କରିବାରେ କେତେ ଦୂର ସଫଳ ହୋଇଛନ୍ତି ସେଥିପ୍ରତି ସେତିକି ଦୃଷ୍ଟି ଦେଇ ନାହାନ୍ତି । ଅଣଓଡ଼ିଆ ପାଠକମାନଙ୍କୁ ବର୍ତ୍ତମାନର ଓଡ଼ିଆ ସାହିତ୍ୟ ସମ୍ପର୍କରେ ଧାରଣା ଦେବାକୁ ଯାଇ ପ୍ରତିଭାହୀନ ଓ କେତେକ ସ୍ଥାନରେ ପ୍ରତିଭାବାନ୍ ଓଡ଼ିଆ-ଲେଖକଙ୍କୁ ନିନ୍ଦା କରି ଏତେ ଲେଖିଛନ୍ତି ଯେ ଯେଉଁମାନଙ୍କର ସାହିତ୍ୟିକ ପ୍ରତିଭା ଅଛି ସେମାନଙ୍କ ସମ୍ବନ୍ଧରେ ଲେଖିବାକୁ ସ୍ଥାନ ପାଇନାହାନ୍ତି । ଯେ କୌଣସି ସାହିତ୍ୟରେ ପ୍ରତିଭାହୀନ ସାହିତ୍ୟିକ ସଂଖ୍ୟା ବେଶି ଏବଂ ନିମ୍ନ ଧରଣର ଲେଖା ତୁଳନାରେ ଉଚ୍ଚକୋଟୀର ଲେଖା ବହୁତ କମ୍ । ତେଣୁ ପ୍ରତିଭାହୀନ ଲେଖକଙ୍କୁ ନିନ୍ଦା କରିବାରେ ସବୁ ସ୍ଥାନ ବ୍ୟୟ କରିବା କଣ ଉଚିତ ? କେତେକ ସ୍ଥାନର ପ୍ରତିଭାବାନ୍ ଲେଖକଙ୍କୁ ସେମାନଙ୍କର ପ୍ରାପ୍ୟ ଦିଆ ନ ଯାଇ ଆହୁରି ଅନ୍ୟାୟ କରାଯାଇଛି ।

ଆଧୁନିକ କବିତାକୁ ନିନ୍ଦା କରି ଡକ୍ଟର ମାନସିଂ ପ୍ରାୟ ପାଞ୍ଚପୃଷ୍ଠା ଲେଖିଛନ୍ତି ମାତ୍ର ସମସାମୟିକ ଓଡ଼ିଆ ଗଳ୍ପ ଉପରେ ଲେଖିଛନ୍ତି ମାତ୍ର ଷୋଳଟି ଧାଡ଼ି । ଗଳ୍ପ ଲେଖକମାନଙ୍କ ମଧ୍ୟରେ ସେ ସୁରେନ୍ଦ୍ର ମହାନ୍ତି, ରାଜକିଶୋର ରାୟ, ମହାପାତ୍ର ନୀଳମଣି ସାହୁ, ବାମାଚରଣ ମିତ୍ର, ଅଚ୍ୟୁତାନନ୍ଦ ପତି ଏବଂ ପ୍ରାଣବନ୍ଧୁ କର ଏହି ଛଅ ଜଣଙ୍କର ନାମୋଲ୍ଲେଖ କରିଛନ୍ତି । କେବଳ ସୁରେନ୍ଦ୍ର ମହାନ୍ତିଙ୍କୁ ବାଦ୍ ଦେଲେ ଅନ୍ୟ ଗାଳ୍ପିକମାନଙ୍କ ସମ୍ବନ୍ଧରେ ଗୋଟିଏ ପଦ କିଛି କହିନାହାନ୍ତି । ମହାପାତ୍ର ନୀଳମଣି ସାହୁ ଜଣେ ବ୍ୟଙ୍ଗ ଲେଖକ ବୋଲି କୁହାଯାଇଛି । ସେ କେତେଗୁଡ଼ିଏ ବ୍ୟଙ୍ଗାତ୍ମକ ଗଳ୍ପ ଲେଖିଛନ୍ତି ସତ କିନ୍ତୁ ସେ ଗୁଡ଼ିକ ତାଙ୍କର ଶ୍ରେଷ୍ଠ ରଚନା ନୁହେଁ କିମ୍ବା ତାଙ୍କର ଗଳ୍ପଗୁଡ଼ିକର ପ୍ରତିନିଧିତ୍ୱ କରନ୍ତି ନାହିଁ । ସେ ନିୟମିତ ଭାବେ କେତେବର୍ଷ ଧରି ଅନେକ ଗୁଡ଼ିଏ ସୁନ୍ଦର ଗଳ୍ପ ଲେଖିଛନ୍ତି ଏବଂ ଏଇ ଗୁଡ଼ିକ ତାଙ୍କର ଶ୍ରେଷ୍ଠ କୃତି ।

ସୁରେନ୍ଦ୍ର ମହାନ୍ତିଙ୍କ ପରି ଜଣେ ପ୍ରତିଭାବାନ୍ ଗଳ୍ପ ଲେଖକଙ୍କ ଉପରେ ଦୁଇଧାଡ଼ି ମନ୍ତବ୍ୟର କୌଣସି ମୂଲ୍ୟ ନାହିଁ । ପୁଣି ଏହି ଦୁଇଧାଡ଼ିରେ ସୁରେନ୍ଦ୍ର ମହାନ୍ତିଙ୍କୁ ଜଣେ ବ୍ୟଙ୍ଗ ବିଦ୍ରୂପକାରୀ ଲେଖକ ରୂପେ ଚିତ୍ରଣ କରାଯାଇଛି । ସୁରେନ୍ଦ୍ର ମହାନ୍ତି ଶେଷ କବିତା ପରି କେତୋଟି ବିଦ୍ରୂପଭରା ଗଳ୍ପ ଲେଖିଛନ୍ତି କିନ୍ତୁ ଏଗୁଡ଼ିକ ତାଙ୍କ ଗଳ୍ପର ପ୍ରତିନିଧିତ୍ୱ କରନ୍ତି ନାହିଁ । ତାଙ୍କର ଅନ୍ୟାନ୍ୟ ଗଳ୍ପ ଉପରେ ଉପରଠାଉରିଆ-ଭାବେ କିଛିଏ କୁହାଯାଇଛି । ଅନ୍ୟ ଗଳ୍ପ ଲେଖକ-ମାନଙ୍କ ଉପରେ କିଛି କୁହାଯାଇନି ।

ସାହିତ୍ୟ କ୍ଷେତ୍ରରେ ନୀରବ ସାଧକ ମାନଙ୍କୁ ଡକ୍ଟର ମାନସିଂ ପ୍ରଶଂସା କରନ୍ତି । କିନ୍ତୁ ଗଳ୍ପ ଲେଖକ-ମାନଙ୍କ ମଧ୍ୟରେ ସେ କିଶୋରୀଚରଣ ଦାସଙ୍କର ନାମ ସୁଦ୍ଧା ଦେଇ ନାହାନ୍ତି । ଏହା ଏକ ଗୁରୁତର ତ୍ରୁଟି । ଗଳ୍ପ ଲେଖକ ହିସାବରେ କିଶୋରୀ ଚରଣଙ୍କର ପ୍ରତିଭା ଓଡ଼ିଆ ସାହିତ୍ୟରେ ଅତୁଳନୀୟ । ତାଙ୍କର 'ଭଙ୍ଗାଖେଳନା' ବହିଟି ଓଡ଼ିଆ ସାହିତ୍ୟର ଏକ

ଡଃ. ମାୟାଧର ମାନସିଂହଙ୍କ ଜୀବନୀ ଓ ସାହିତ୍ୟ ସୃଷ୍ଟି ସମ୍ପର୍କରେ କେତେକ ପ୍ରଶ୍ନାବଳୀ ।

ତାରିଖ

ନାମ ............................... ବୟସ

ଠିକଣା

୧। ଡଃ. ମାୟାଧର ମାନସିଂହଙ୍କର ବ୍ୟକ୍ତିଗତ ସଂସ୍ପର୍ଶରେ ଆପଣ ଆସିଛନ୍ତି କି ? କେତେଦିନ ?

୨। ମାନସିଂହଙ୍କ ଜୀବନରେ ଆପଣ ଲକ୍ଷ୍ୟ କଲାଭଳି କେତେକ ଘଟଣା କହିବେକି ?

୩। ମାନସିଂହଙ୍କର ବଂଶ/ପାରିବାରିକ ଜୀବନ/ବ୍ୟକ୍ତିଗତ ଜୀବନ ସମ୍ବନ୍ଧରେ ଆପଣ ଜାଣନ୍ତି କି ? ଜାଣିଥିଲେ ବ୍ୟାପକ ଭାବରେ କୁହନ୍ତୁ ।

୪। ମାନସିଂହ ଜଣେ ଶିକ୍ଷାବିତ୍, ଏ ସମ୍ପର୍କରେ ଆପଣ ନିଜସ୍ୱ ମତାମତ ପ୍ରଦାନ କରନ୍ତୁ । ଭାରତର ପ୍ରଚଳିତ ଶିକ୍ଷା ବ୍ୟବସ୍ଥାର ମାନସିଂହ ଯେଉଁ ପରିବର୍ତ୍ତନ ଚାହୁଁଥିଲେ ସେ ବିଷୟରେ ଆପଣଙ୍କ ମତାମତ କଣ ?

୫। ଶିକ୍ଷାନୁଷ୍ଠାନ ପରିଚାଳନା ବା ପ୍ରଶାସନ କ୍ଷେତ୍ରରେ ମାନସିଂହଙ୍କୁ ଆପଣ କିପରି ଦେଖନ୍ତି ? ତାଙ୍କର କେଉଁ ଦିଗକୁ ଆପଣ ପସନ୍ଦ କରନ୍ତି ନାହିଁ ଓ କାହିଁକି ?

୬। ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ ସମ୍ବନ୍ଧରେ ମାନସିଂହ ଯେଉଁ ବିପୁଳ ବିଜ୍ଞାପନ/ନିର୍ଦ୍ଦେଶାବଳୀ ପ୍ରଦାନ କରନ୍ତି ସେ ଦିଗପ୍ରତି ଆପଣଙ୍କ ନିଜସ୍ୱ ମତାମତ ପ୍ରକାଶ କରିବେ କି ?

୭। ମାନସିଂହଙ୍କ ସାହିତ୍ୟର କେଉଁ ଦିଗ ଆପଣଙ୍କୁ ଭଲଲାଗେ ଓ କାହିଁକି ?

୮। ମାନସିଂହଙ୍କ କାବ୍ୟ କବିତାର କେଉଁଦିଗ ଆପଣଙ୍କୁ ଭଲଲାଗେ, ତାଙ୍କର କେଉଁ କେଉଁ ପୁସ୍ତକ ବା କାବ୍ୟ କବିତା ଆପଣଙ୍କୁ ଭଲ ଲାଗେ ଓ କାହିଁକି ?

୯। ମାନସିଂହଙ୍କ ନାଟକ ଓ ଗୀତିନାଟ୍ୟ ପ୍ରତି ଆପଣଙ୍କ ମତାମତ ପ୍ରଦାନ କରନ୍ତୁ ।

୧୦। ମାନସିଂହଙ୍କ ପ୍ରବନ୍ଧ ଓ ଆଲୋଚନାକୁ ଆପଣ କେଉଁ ଦିଗରୁ ବିଚାର କରନ୍ତି ?

୧୧। ମାନସିଂହଙ୍କ ସମାଲୋଚନାର ମାର୍ଗ ଓ ନିଜ ସୃଷ୍ଟି ମଧ୍ୟରେ ଆପଣ କୌଣସି ବୈଷମ୍ୟ ଦେଖି ପାରୁଛନ୍ତି କି ?

୧୨। ମାନସିଂହଙ୍କ 'ଓଡ଼ିଆ ସାହିତ୍ୟ ଇତିହାସ' ଉପରେ ଆପଣଙ୍କ ବ୍ୟକ୍ତିଗତ ମତ କଣ ?

୧୩। ମାନସିଂହଙ୍କ ଇଂରାଜୀ ରଚନା/ଅନୁବାଦ ସାହିତ୍ୟ ଉପରେ କିଛି ମନ୍ତବ୍ୟ ଦେବେ କି ?

୧୪। ମାନସିଂହଙ୍କ ବ୍ୟକ୍ତିଗତ ଶୈଳୀ (ଭାଷାଶୈଳୀ, ରଚନା ଶୈଳୀ) ବିଷୟରେ କିଛି ମନ୍ତବ୍ୟ ଦେବେ କି ?

୧୫। ମାନସିଂହ ଧର୍ମ ଓ ସଂସ୍କୃତି ସମ୍ବନ୍ଧରେ ଯେଉଁ ବିଚାର କରୁଥିଲେ ସେ ବିଷୟରେ ଆପଣ ଏକ ମତ କି ? ଯଦି ନୁହନ୍ତି ତେବେ ଜାହିଁକି ?

୧୬। ବିଭିନ୍ନ ସମୟରେ ମାନସିଂହଙ୍କ ବିରୋଧରେ ଯେଉଁ ଆନ୍ଦୋଳନ ହେଉଥିଲା ତାର ଯଥାର୍ଥ୍ୟ ଉପରେ ଆପଣଙ୍କ ମତାମତ କଣ ?

୧୭। ଆପଣଙ୍କ ଦୃଷ୍ଟିରେ ମାନସିଂହଙ୍କ ସୃଷ୍ଟିର ଆହରଣ ସ୍ଥଳ ବା ସାହିତ୍ୟିକ ଉତ୍ସ କେଉଁଠାରୁ ?

୧୮। ଆପଣଙ୍କ ବିଚାରରେ ଆଧୁନିକ ଓଡ଼ିଆ ସାହିତ୍ୟକୁ ମାନସିଂହଙ୍କର କୌଣସି ସ୍ୱତନ୍ତ୍ର ଅବଦାନ ରହିଛି କି ?

୧୯। ମାନସିଂହଙ୍କ ପତ୍ର ପତ୍ରିକା ସଂପାଦନା ବିଷୟରେ ଆପଣ କିଛି କହିବେକି ?

୨୦। ମାନସିଂହଙ୍କ ବିଷୟରେ ଆପଣ ଆଉ କଣ କହିବାକୁ ଚାହାନ୍ତି ?

ଯୋଗାଯୋଗ ଠିକଣା :-

Sricharan Mohanty, M.A., M.Phil.
Lecherer in Oriya
Qrs.No. C/151, Sector-16,
ROURKELA-769 003.

